# ସିଦ୍ଧାନ୍ତ ଦର୍ପଣଃ

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀ ବିହାର

ମୂଲ୍ୟ– ଷାଠିଏ ଟଙ୍କା ମାତ୍ର

# ସିଦ୍ଧାନ୍ତ ଦର୍ପଣଃ


ମୂଳ ଗ୍ରନ୍ଥକାରଃ—

ମହାମହୋପାଧ୍ୟାୟଃ ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ରଃ



ପ୍ରକାଶକ—ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର, ଭୁବନେଶ୍ୱର



ସମ୍ପାଦକ ଓ ଓଡ଼ିଆ ଅନୁବାଦକ—

ଅଧ୍ୟାପକ—ଶ୍ରୀ ବୀର ହନୁମାନ୍ ଶାସ୍ତ୍ରୀ,

ସାହିତ୍ୟାଚାର୍ଯ୍ୟ, ଜ୍ୟୋତିଷାଚାର୍ଯ୍ୟ, ଏମ୍. ଏ

ଜ୍ୟୋତିଷ ବିଭାଗ, ସଦାଶିବ ସଂସ୍କୃତ କଲେଜ, ପୁରୀ

# ସୂଚୀପତ୍ରମ୍

| ବିଷୟାଃ | ପୃଷ୍ଠାଙ୍କାଃ |
|---|---|

## ମଧ୍ୟମାଧିକାରେ



## ସ୍ପଷ୍ଟାଧିକାରେ



## ତ୍ରିପ୍ରଶ୍ନାଧିକାରେ



## ଗୋଳାଧିକାରେ

## କାଳାଧିକାରେ



## ପରିଶିଷ୍ଟୋ

# ସିଦ୍ଧାନ୍ତ ଦର୍ପଣସ୍ୟାନୁକ୍ରମଣିକା

[ ତାର ※ ଚିହ୍ନିତ ବିଷୟା ଗ୍ରନ୍ଥାକୃତା ନବାବିଷ୍କୃତାଃ ]

ଗ୍ରହ ଗଣିତାଖ୍ୟ ପୂର୍ବାର୍ଦ୍ଧେ ମଧ୍ୟମାଧିକାରେ

## ପ୍ରଥମ ପ୍ରକାଶ

## ଦ୍ୱିତୀୟ ପ୍ରକାଶେ

| ବିଷୟାଃ | ଶ୍ଲୋକାଙ୍କାଃ |
| --- | --- |
| ଚନ୍ଦ୍ରଦିନାନୟନମ୍ | ୭ |
| ତିଥିକ୍ଷୟାନୟନମ୍ | ୭ |
| ସୌର ଚନ୍ଦ୍ରମାସ ସଂଖ୍ୟା | ୮ |
| ଅଧିମାସ ସଂଖ୍ୟା | ୯ |
| ସୌରଚନ୍ଦ୍ର ଦିନ ସଂଖ୍ୟା | ୧୦ |
| ଭୂ ସାବନ ଦିନ ସଂଖ୍ୟା | ୧୧ |
| ତିଥିକ୍ଷୟ ସଂଖ୍ୟା | ୧୧ |
| ମନ୍ଦଶୀଘ୍ର କେନ୍ଦ୍ରଭଗଣ ସଂଖ୍ୟା | ୧୨ |
| କଳ୍ପ ଭଗଣୋପପତ୍ତିଃ | ୧୩ |
| ଶୀଘ୍ର ମନ୍ଦୋଚ୍ଚ ସଂଜ୍ଞା | ୧୩ |
| ନାକ୍ଷତ୍ର ସୌରଚନ୍ଦ୍ର ଭୌମ ଦିନାନାଂ ମଧ୍ୟମ ପ୍ରାଣ ସଂଖ୍ୟା | ୧୪ |
| ବ୍ୟାବହାରିକ ସାବନ ଦିନ କଥନମ୍ | ୧୫ |
| ଗ୍ରହାଣାଂ ଦିନଗତି ନିର୍ଣ୍ଣୟଃ | ୧୬ |
| ଭଗଣ ଦିନାଦ୍ୟାନୟନମ୍ | ୧୬ |
| ଦିନାଦିସ୍ୱକ କଥନମ୍ | ୧୬ |
| ସୂର୍ଯ୍ୟ ଭଗଣ ଦିନାଦି କଥନମ୍ | ୧୭ |
| ମଧ୍ୟ ଗୁରୁବର୍ଷ ଭୋଗ ଦିନାଦି କଥନମ୍ | ୧୮ |
| ସୂର୍ଯ୍ୟାଦିଗ୍ରହ ଚନ୍ଦ୍ରୋଚ୍ଚପାତ କଳାଦି ଦଣ୍ଡାଦ୍ୟ ଗତି କଥନମ୍ | ୧୯-୨୦ |
| ଜଗନ୍ନାଥ ତିଃ | ୨୫ |

## ତୃତୀୟ ପ୍ରକାଶେ

## ଚତୁର୍ଥ ପ୍ରକାଶେ

## ପଞ୍ଚମ ପ୍ରକାଶେ

ବିଷୟାଃ — ଶ୍ଲୋକାଙ୍କାଃ

## ଷଷ୍ଠ ପ୍ରକାଶେ

## ସପ୍ତମ ପ୍ରକାଶେ

## ଅଷ୍ଟମ ପ୍ରକାଶେ

## ଦଶମ ପ୍ରକାଶେ

## ଏକାଦଶ ପ୍ରକାଶେ

## ତ୍ରୟୋଦଶ ପ୍ରକାଶେ

ବିଷୟାଃ | ଶ୍ଳୋକାଙ୍କାଃ

## ଚତୁର୍ଦ୍ଦଶ ପ୍ରକାଶେ

ବିଷୟାଃ — ଶ୍ଳୋକାଙ୍କାଃ

## ପଞ୍ଚଦଶ ପ୍ରକାଶେ

## ଷୋଡ଼ଶ ପ୍ରକାଶେ

ବିଷୟାଃ | ଶ୍ଳୋକାଙ୍କାଃ

## ସପ୍ତଦଶ ପ୍ରକାଶେ

---

## ଅଷ୍ଟାଦଶ ପ୍ରକାଶେ

## ଊନବିଂଶ ପ୍ରକାଶେ

| ବିଷୟାଃ | ଶ୍ଳୋକାଙ୍କାଃ |
|---|---|
| * ତଥା ଚନ୍ଦ୍ରସ୍ୟ ବୃଦ୍ଧି ବିସମ୍ବାଦ କଥନମ୍ | ୪୪-୪୫ |
| * ଉପନଷ୍ଟ ପ୍ରମାଣ ଦୃକ୍‌ସିଦ୍ଧିଭ୍ୟାଂ ସୂର୍ଯ୍ୟାଦୀନାଂ ବିମ୍ବକକ୍ଷା ପରିଧି ସାମଞ୍ଜସ୍ୟ କଥନମ୍ | ୪୬-୫୦ |
| ଚନ୍ଦ୍ରକକ୍ଷା ବିମ୍ବଯୋରନ୍ତର କଥନମ୍ | ୫୫ |
| ଭୂକକ୍ଷା ନିର୍ଣ୍ଣୟେ ଯୁକ୍ତିଃ | ୫୬-୫୭ |
| * ତାର ବିମ୍ବୋପପତ୍ତିଃ | ୫୮-୬୧ |
| * ତାର ବିମ୍ବାନୟନୋପାୟ କଥନମ୍ | ୬୨-୬୯ |
| * ଅଥ ପ୍ରସଙ୍ଗତଃ ଶଙ୍କୁଚ୍ଛାୟାଦି ଘଟନୟା ଦୀପବୃନ୍ଦ ପର୍ବତାଦି ମାର୍ତ୍ତୋନ୍ନତ କଥନମ୍ | ୭୦-୭୭ |
| * ଏକଶଙ୍କୁ ଦ୍ୱିଶଙ୍କୁ ସ୍ଥାପନ ପ୍ରକାରଃ | ୭୮ |
| * ପର୍ବତସ୍ୟ ଦୃଶ୍ୟାଦୃଶ୍ୟ ଭାଗାଦି ନିର୍ଣ୍ଣୟଃ | ୭୯ |
| * ରବିଚନ୍ଦ୍ର ଜନ୍ୟଚ୍ଛାୟୟା ପ୍ରାସାଦାଦ୍ୟୁନ୍ନତ ଜ୍ଞାନମ୍ | ୮୦-୮୨ |
| ମେଘୋନ୍ନତ ଶ୍ରୁତି କଥନମ୍ | ୮୩-୮୫ |
| * ଅଥ ଭୂମେର୍ଗୋଲତା ପରିଚୟାର୍ଥଂ ଶଙ୍କାଦି ବିଶେଷ କଥନମ୍ | ୮୬ |
| କ୍ଷିତିଜ ବୃତ୍ତ ନିର୍ଣ୍ଣୟଃ | ୮୭ |
| * ଦୃଷ୍ଟିସୀମାନୁସାରେଣ ପର୍ବତ ଦୃଶ୍ୟାଦୃଶ୍ୟତ୍ୱ ନିର୍ଣ୍ଣୟଃ | ୮୮ |
| * ପର୍ବତାଗ୍ରେ ସୂର୍ଯ୍ୟୋଦୟାସ୍ତମୟ ଦର୍ଶନାଦ୍ଦିନ ବୃଦ୍ଧି କଥନମ୍ | ୮୯-୯୦ |
| * ବ୍ୟବହାରେ ତତ୍ତ୍ୟାଗ କଥନମ୍ | ୯୧-୯୯ |
| * ଭୂପରିଧି ହସ୍ତପ୍ରମାଣାଦେକାଦଶବିଧ ଶଙ୍କୂନାଂ ଦୃଷ୍ଟିସୀମ କଥନମ୍ | ୧୦୦ |
| * ଶଙ୍କୋର୍ଦୃଷ୍ଟିସୀମାନୟନମ୍ | ୧୦୧ |

## ଏକବିଂଶ ପ୍ରକାଶେ

## ଅଥକାଳାଧିକାରେ ଦ୍ୱାବିଂଶ ପ୍ରକାଶେ

## ଷଡ୍ୟୋଶଂଶ ପ୍ରକାଶେ



---

## ଚତୁର୍ବିଂଶ ପ୍ରକାଶେ

---

# ମୁଖବନ୍ଧ

ଜ୍ୟୋତିଷ୍ ଶବ୍ଦରୁ 'ଅ' ପ୍ରତ୍ୟୟରେ ଜ୍ୟୋତିଷ ଶବ୍ଦର ସୃଷ୍ଟି । ଜ୍ୟୋତିଃ ସମ୍ବନ୍ଧୀୟ ସମସ୍ତ ବିଷୟର ଆଲୋଚନା ଯେଉଁଥିରେ ହୁଏ, ତାହାକୁ ଜ୍ୟୋତିଷ ବା ଜ୍ୟୌତିଷ ଶାସ୍ତ୍ର କୁହାଯାଏ । ସୂର୍ଯ୍ୟ ପ୍ରଥମ ଜ୍ୟୋତିଷ ପିଣ୍ଡ; ଏଥିରୁ କିରଣ ପାତରେ ଅନ୍ୟ ଜ୍ୟୋତିଷ୍କ ପଦାର୍ଥର (ମଣିମୁକ୍ତା ଆଦି) ଏବଂ ଗ୍ରହାଦିର ସୃଷ୍ଟି ହୋଇଅଛି । ତାହା ଓ ସମସ୍ତ ବିଶ୍ୱ ଯେ ସୂର୍ଯ୍ୟାଲୋକରେ ପ୍ରଭାବିତ, ଏଥିରେ ସନ୍ଦେହ କରିବାର ନାହିଁ । ଗ୍ରହ ଉପଗ୍ରହର ସ୍ୱତନ୍ତ୍ର ଗତି ଥିଲେ ମଧ୍ୟ ସେ ସମସ୍ତ ଯେ ସୂର୍ଯ୍ୟଦ୍ୱାରା ଅତି ମାତ୍ରାରେ ପ୍ରଭାବିତ, ତାହା ଅତି ସ୍ପଷ୍ଟ ଭାବରେ ପ୍ରମାଣିତ । ମନୁଷ୍ୟ, ଜୀବଜନ୍ତୁ, ଉଦ୍ଭିଦ ଏପରିକି ବିଶ୍ୱ (Solar system)ର ସମସ୍ତ ପଦାର୍ଥକୁ ମୁଖ୍ୟତଃ ସୂର୍ଯ୍ୟ ପ୍ରଭାବିତ କରୁଥିଲେ ମଧ୍ୟ, ଅନ୍ୟ ଗ୍ରହମାନଙ୍କର ପ୍ରଭାବ, ସେମାନଙ୍କ ଉପରେ ଅନେକ କାର୍ଯ୍ୟ କରିଥାଏ । ସେଥିପାଇଁ ଲୋକରେ ପ୍ରଚଳିତ ଅଛି ଯେ "ଗ୍ରହାଧୀନଂ ଜଗତ୍ ସର୍ବଂ", ଏଥି ନିମନ୍ତେ ଗ୍ରହମାନଙ୍କ ଗତିବିଧି, ପ୍ରଭାବ ପ୍ରଭୃତି ଜାଣିବା ପାଇଁ, କେଉଁ ବୈଦିକ କାଳରୁ ମଧ୍ୟ ଚେଷ୍ଟା ହୋଇ ଆସିଛି । ବେଦରେ ଏବଂ ବେଦାଙ୍ଗ ଜ୍ୟୋତିଷରେ ଏହାର ସର୍ବ ପ୍ରଥମ ଚର୍ଚ୍ଚା ହୋଇଅଛି, ଅମାବାସ୍ୟା ଓ ପୂର୍ଣ୍ଣିମା ରାତ୍ରିର ବିଲକ୍ଷଣତା ସବୁବେଳେ ଜଗତ ଅତି ମାତ୍ରାରେ ଉପଲବ୍ଧି କରି ଆସିଛି । ଏଥିରୁ ବିଚାର କଲେ, ଭୂ-ଗୋଳ ଓ ସବୁ ରକମର ବିଜ୍ଞାନ ମଧ୍ୟ ଜ୍ୟୋତିଷର ଅଙ୍ଗ ବୋଲି ଧରି ନେଇ ହେବ । ତେବେ ମୁଖ୍ୟତଃ ଗ୍ରହ ଏବଂ ନକ୍ଷତ୍ରମାନଙ୍କର ପ୍ରଭାବରେ ବିଶ୍ୱରେ ଯେଉଁ ପରିବର୍ତ୍ତନ ସବୁ ସମ୍ପାଦିତ ହୁଏ, ତାହାକୁ ହିଁ ଜ୍ୟୋତିଷର ଆଲୋଚ୍ୟ ବିଷୟ ବୋଲି ଧରି ନିଆଯାଇଛି । ଗଣିତର ସାହାଯ୍ୟ ନ ନେଲେ ଏସବୁ ଧରି ହୁଏ ନାହିଁ, ଏଣୁ ପାଟୀ, ବୀଜ, ଜ୍ୟାମିତି, ପରିମିତି, ତ୍ରିକୋଣମିତି, କଳନ ଗଣିତ (Calculas) ଇତ୍ୟାଦିର ଆଲୋଚନା ନେଇ ଗଣିତ ଏକ ବିଶାଳ ଶାସ୍ତ୍ରରେ ପରିଣତ ହୋଇଛି ଏବଂ ଗ୍ରହ ଗଣିତରେ ପଶିବାକୁ ହେଲେ ଏ ସବୁର ଆଲୋଚନା ଅତି ମାତ୍ରାରେ ଆବଶ୍ୟକ ଥିବାରୁ ୧୧୫୦ ଖ୍ରୀଷ୍ଟାବ୍ଦରେ ମହାପଣ୍ଡିତ ଭାସ୍କରାଚାର୍ଯ୍ୟ ତାଙ୍କ ସିଦ୍ଧାନ୍ତ ଶିରୋମଣି ଗ୍ରନ୍ଥରେ ସ୍ପଷ୍ଟ ଭାବରେ ଲେଖିଛନ୍ତି —

> ଜ୍ୟୋତିଃ ଶାସ୍ତ୍ରଫଳଂ ପୁରାଣ ଗଣକୈରାଦେଶ ଇତ୍ୟୁଚ୍ୟତେ
> ନୂନଂ ଲଗ୍ନ ବଲାଶ୍ରିତଃ ପୁନରୟଂ ତତ୍ ସ୍ପଷ୍ଟଖେଟାଶ୍ରୟମ୍,
> ତେ ଗୋଲାଶ୍ରୟିଣୋଽନ୍ତରେଣ ଗଣିତଂ ଗୋଲୋପିନଜ୍ଞାୟତେ
> ତସ୍ମାତ୍ ଯୋ ଗଣିତଂନବେତ୍ତି ସ କଥଂ ଗୋଲାଦିକଂ ଜ୍ଞାସ୍ୟତି ।

ଗଣିତରେ ଗ୍ରହ କେଉଁ ରାଶିର କେତେ ଅଂଶ ଓ କଳାରେ ନିର୍ଦ୍ଦିଷ୍ଟ ସମୟରେ ଅଛି, ତାହା ଜାଣିବାପରେ ଏହାର ସମ୍ବନ୍ଧ ଫଳ କଣ, ତାର ଆଲୋଚନା ବୈଜ୍ଞାନିକ ଭାବରେ କରାଯାଇଥାଏ । ଏହି ଫଳ ଆଲୋଚନା ନିମନ୍ତେ ଗଣିତ ଜ୍ୟୋତିଷ ଉପରେ ଫଳିତ ଜ୍ୟୋତିଷର ଆବିର୍ଭାବ । ପୁଣି ଗ୍ରହସ୍ଥିତିକୁ ନେଇ କେତେବେଳେ କେଉଁ କାମ କଲେ, କିପରି ଫଳ ହୁଏ, ତାହାସବୁ ଅନୁଭବ କରି ଭବିଷ୍ୟତକୁ ଯେଉଁ ନିର୍ଦ୍ଦେଶ ଦିଆଯାଏ, ତାହାକୁ ମୁହୂର୍ତ୍ତ ଜ୍ୟୋତିଷ କହନ୍ତି । ଜ୍ୟୋତିଷର ଗଣିତ ଫଳିତ ଓ ମୁହୂର୍ତ୍ତ ଏହି ବିଭାଗ ଏହିପରି ଭାବରେ ବିକାଶ ଲାଭକରିଛନ୍ତି; ମାତ୍ର ଗଣିତ ଉପରେ ଯେ ଅନ୍ୟ ଦୁଇଟି ବିଭାଗ ସଂପୂର୍ଣ୍ଣରୂପେ ଅବଲମ୍ବିତ ଏଥିରେ ସମସ୍ତେ ଏକମତ । ଭାରତବର୍ଷରେ ବୈଦିକ କାଳରୁ ଆରମ୍ଭ କରି ଏପର୍ଯ୍ୟନ୍ତ, ଏହି ଗଣିତ କ୍ରିୟା ଚାଲିଛି ଏବଂ ତା'ର ଯୋଗେ ଏ ଦେଶର ବିଭିନ୍ନ ପ୍ରାନ୍ତରେ ଗ୍ରହସ୍ଥିତି ସୂଚକ ପଞ୍ଜିକାମାନ ବିଭିନ୍ନ ଭାଷାରେ ପ୍ରତିବର୍ଷ ସଂପାଦିତ ହୋଇ ଆସିଛି, ଯାହାକୁ ଦେଖି ଲୋକେ ବର୍ଷ ତମାମ୍ ଚଳୁଛନ୍ତି; କିନ୍ତୁ ଏହି ଯେଉଁ ଗଣିତ ସରଣିର କଥା କୁହାଯାଉଛି, ତାହା ଗ୍ରହମାନଙ୍କ ପରି ଚଳ—ସ୍ଥିର ନୁହେଁ । ଏଣୁ ଗଣିତ ସରଣି ଅକାମି ହେଲେ—ସେ ଅନୁସାରେ ନିର୍ଦ୍ଦିଷ୍ଟ ସମୟରେ ଗ୍ରହମାନଙ୍କର ଉଦୟ ଅସ୍ତ, ସୂର୍ଯ୍ୟ ଚନ୍ଦ୍ରାଦି ଗ୍ରହଣ ପରିଲକ୍ଷିତ ନ ହେଲେ, ସଂପୃକ୍ତ ଗଣିତ ସରଣି ଭ୍ରମପୂର୍ଣ୍ଣ ହୋଇପଡ଼େ ଏବଂ ଏହାକୁ ସୁଧାରିବାକୁ ଯାଇ—ନୂଆ ସରଣି ତିଆରିବାକୁ ଯାଇ, ଏ ଦେଶର ଜ୍ୟୋତିଷାଚାର୍ଯ୍ୟମାନେ ଚେଷ୍ଟା କରି ଆସିଛନ୍ତି ଏବଂ ଏବେ ମଧ୍ୟ ତାହା ପ୍ରତିହତ ନୁହେଁ । ଏହି ନୂଆ ସରଣିର ଯୁକ୍ତି ଦର୍ଶାଇବା ନିମନ୍ତେ ସିଦ୍ଧାନ୍ତ ଗ୍ରନ୍ଥମାନଙ୍କର ସୃଷ୍ଟି, ଏପରି ସିଦ୍ଧାନ୍ତ ଗ୍ରନ୍ଥ ଭାରତ ବର୍ଷରେ ୨୦ରୁ ଅଧିକ ହେବ । ସ୍ୱର୍ଗୀୟ ମହାମାନ୍ୟ ପଠାଣି ସାମନ୍ତଙ୍କ ସିଦ୍ଧାନ୍ତ ଦର୍ପଣ ଏହିପରି ସିଦ୍ଧାନ୍ତ ଗ୍ରନ୍ଥମାନଙ୍କର ଶେଷ ପର୍ଯ୍ୟାୟରେ (latest) ବର୍ତ୍ତମାନ ରହିଛି । ଏହା ଭାରତ ଓ ବିଶ୍ୱରେ ଉତ୍କଳର ଏକ ଜାଜ୍ୱଲ୍ୟ ଗର୍ବ, ମହା ପାଣ୍ଡିତ୍ୟ ଓ ସାଧନାର ପରିପ୍ରକାଶ ।

ପଠାଣି ସାମନ୍ତ ତାଙ୍କର ଜନ୍ମ, ପିତା, ମାତା, ଗୁରୁ, ଶିକ୍ଷକ ଓ ବଂଶପରଂପରା ଆଦି ସମ୍ବନ୍ଧେ ସ୍ପଷ୍ଟ ଭାବରେ ଏହି ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ୨୪ଶ ପ୍ରକାଶର ୮୪ ଶ୍ଳୋକଠାରୁ ୧୫୨ ଶ୍ଳୋକ ଭିତରେ ଲିପିବଦ୍ଧ କରି ଦେଇଛନ୍ତି । ଆଗ୍ରହୀ ପାଠକେ ତାହା ପଢ଼ିନେଇ ପାରିବେ । ସେ ଖଣ୍ଡପଡ଼ା ଗଡ଼ଜାତର ଅଧିବାସୀ ଏବଂ ସଂସ୍କୃତ ଜ୍ଞାନ ହାସଲ କରିବା ପରେ ତାଙ୍କ ପିତା, ଶ୍ୟାମବନ୍ଧୁଙ୍କ ଠାରୁ ସର୍ବପ୍ରଥମେ ଜ୍ୟୋତିଷ ଶିକ୍ଷା କରିଥିଲେ । ତାଙ୍କର ଜନ୍ମ ୧୮୩୫ ଖ୍ରୀଷ୍ଟାବ୍ଦରେ । ୧୮୬୬ ଖ୍ରୀଷ୍ଟାବ୍ଦରେ ସମଗ୍ର ଓଡ଼ିଶାରେ ମହା ଦୁର୍ଭିକ୍ଷ ହେଲାବେଳକୁ ତାଙ୍କର ବୟସ ମାତ୍ର ୩୧ ବର୍ଷ । ସେତେବେଳେ ପ୍ରଚଳିତ କୌଣସି ପଞ୍ଜିକାରେ ବର୍ଷା ନ ହୋଇ ଏପରି ଦୁର୍ବିପାକ ଘଟିବା କଥାର ସୂଚନା ନ ଥିଲା । ଏହି ଘଟଣା ତାଙ୍କୁ ଏପରି ବିଚଳିତ କଲା ଯେ, ସେ ଦୃଷ୍ଟ ଗଣିତ ବଳରେ ଏପରି ଭବିଷ୍ୟତ କଥାର ସ୍ପଷ୍ଟ ସୂଚନା ଦେବା ନିମନ୍ତେ ବିଶୁଦ୍ଧ ପଞ୍ଜିକା ରଚନା କିପରି କରାଯାଇ ପାରିବ, ସେ ଦିଗରେ ବାରମ୍ବାର ଚେଷ୍ଟା କଲେ ଏବଂ ଏହାର ଦୀର୍ଘ ୩ ବର୍ଷ ପରେ ତାଙ୍କୁ ୩୪ ବର୍ଷ ହେବାବେଳେ ୧୮୭୦-୭୧ ମସିହାରେ ସେ ଗ୍ରହ ଗଣିତ କରିବାର ପ୍ରବଳ ଚେଷ୍ଟା ଚଳାଇଲେ । ଏହି ସମୟରୁହିଁ ସେ

ତାଙ୍କର କରଣାବ୍ଦ ମାନ ଅଛନ୍ତି ଏବଂ ଏହିଠାରୁହିଁ ସିଦ୍ଧାନ୍ତ ଦର୍ପଣ ସମ୍ବଳିତ ସମସ୍ତ ଗ୍ରହ ଗଣିତର ଆରମ୍ଭ । ଏତେବେଳକୁ କଳି ଗତାବ୍ଦ ମଧ୍ୟ ୪୯୭୦ । ଏହି କଳ୍ୟବ୍ଦ ଅନୁସାରେ ସାମନ୍ତଙ୍କ ଜନ୍ମ ୪୯୩୬ରେ ଏବଂ ତାଙ୍କୁ ୩୪ ବର୍ଷ ବେଳେ (ଅର୍ଥାତ୍ ୪୯୩୬ + ୩୪ = ୪୯୭୦) ସେ ସିଦ୍ଧାନ୍ତ ଦର୍ପଣ ରଚନାରମ୍ଭ କଲେ । ଏହି ଦିନର ପୂର୍ଣ୍ଣ ବିବରଣ ମଧ୍ୟ ସେ ଏପରି ଦେଇଛନ୍ତି—

କର୍ମୈବଂ କରଣାବ୍ଦଜାଃ ଖନଗଗୋ ବେଦୋନ (୪୯୭୦) କଲ୍ୟବ୍ଦତୋ
ଘସ୍ରାଃସ୍ୟୁର୍ବିଧୁବାରତୋ ରବିମିତୈଃ ଖେଟୈର୍ବା ତଦଙ୍କା ଯୁତାଃ ।
ଷ୍ଣାର୍ଥେନ୍ଦ୍ୱିଷ୍ଟି ଭୂ-ସପ୍ତ ସପ୍ତଗୁଣବେ ୨୭୩୭୮୫୧୫୧ ଭକ୍ତାଃ ଫଳଂ ବାସରାଃ
ମେଷାର୍କ ସମଣଦ୍ଧିଷ୍ଣପୂର୍ବଦିନତସ୍ତତ୍‌ସଂକ୍ରମାନ୍ତାଗତାଃ ॥
ସଂକ୍ରାନ୍ତେଃ ସବିତା ଭୃଗୌପୁ ଦିବସେ ମଧ୍ୟୋଽଧୁନୈବ ତ ନିଧ୍ୟୁଂ
ପ୍ରାପ୍ୟେର୍ଣ୍ଣିତଦହସ୍ତତଃ କୃତମତଂ ମନ୍ନାଙ୍ଗ ପଞ୍ଜୀ ମୁଖମ୍ ।
ତତ୍ ପୂର୍ବାହ୍ନ ଯା ତାବାସର ଗତୈର୍ଣବାସାପୁ ମଧ୍ୟଗ୍ରହା—
ନେକତ୍ର୍ୟାଦିଷୁ ପଞ୍ଜିକା ଦିନଗଣେଷ୍ୱାଢ୍ୟାଃ ସ୍ୱଭୁକ୍ତୀଃ ନିପ୍ୟାତ୍ ॥
କେଚିତ୍ ପ୍ରସ୍ତୁ ଚମେଷସଂକ୍ରମଦିନଂ ଚୈତ୍ରାଦିମନ୍ୟେ ତଥୈବଂ
ମନ୍ୟନ୍ତେଽବ୍ଦ ମୁଖଂ ଚ ଦେଶ ବଶତୋ ଭେଦେଽପି ବର୍ଷେଽସ୍ମିନ୍ ॥
ଗ୍ଲୌବାରେ ପ୍ରତିପଦ୍ ପ୍ରଗେ ଗତନଶା ଶେଷେତୁ ମେଷେଽବିଶତ୍
ସୂର୍ଯ୍ୟୋଽର୍କସ୍ତଦିହ ଧ୍ରୁବୋଽରଚିଦନେ ମଧ୍ୟାର୍କ ବର୍ଷାନ୍ତଜେ ॥
ବର୍ଥ୍ୟନ୍ତେ କରଣାବ୍ଦ ପୂର୍ବ ଦିବସେ ବାରେ ବିଧୋଃ ସାଧିତା
ଲଙ୍କାର୍କୋଦୟ କାଳିକା ବିବିଷଦାଂ କ୍ଷେତ୍ରାଂଶକାଦି ଧ୍ରୁବାଃ
ଭୂୟୋଽପି ପ୍ରତିପତ୍ତ୍ୟେ ତନ୍ନୁଧିସ୍ଥାଂ ପ୍ରତ୍ୟବ୍ଦଶୁଦ୍ଧିସ୍ତଥା
ଦୃର୍ଯ୍ୟାରିକ ମନ୍ଦତୁଙ୍ଗ ନିଚୟସ୍ୟାରିଦ ପାତାବଳେଃ ॥

(ଗ୍ରୁ ପ୍ର: ଶ୍ଳୋକ ୫୧—୫୮)

କରଣାବ୍ଦ ପୂର୍ବଦିନ ସୋମବାର ଓ ଚୈତ୍ର ଶୁକ୍ଳ ପ୍ରତିପଦା ଥିଲା । ସ୍ପଷ୍ଟ ସୂର୍ଯ୍ୟ ପୂର୍ବ ରାତ୍ରିର (ରବିବାର) ଶେଷ ଆଡ଼କୁ ମେଷରାଶିରେ ପ୍ରବେଶକରି ସାରିଥିଲେ । ସେ ସବୁ ଠିକ୍‌କରି ଗ୍ରହ ଧ୍ରୁବ ଦେଲେ । ଏଣୁ କରଣାବ୍ଦବାର ଗଣନା ମଙ୍ଗଳବାରରୁ । ଏହି ଶ୍ଳୋକରୁ ପରିଷ୍କାର ଜଣାଯାଏ ଯେ କଳ୍ୟବ୍ଦ ୪୯୭୦ ମେଷ ସଂକ୍ରାନ୍ତିର (ମଧ୍ୟମମାନରେ) ପୂର୍ବଦିନ ସୋମବାର ଥିଲା ଏବଂ ସେହିଦିନ ଲଙ୍କାର (Astronomical) ସୂର୍ଯ୍ୟୋଦୟ କାଳରେ ଗ୍ରହମାନଙ୍କର ସ୍ଥିତି ମଧ୍ୟମ ମାନରେ ସେ ଲେଖି ଦେଇଅଛନ୍ତି । ଏଣୁ ସିଦ୍ଧାନ୍ତ ଦର୍ପଣର ପରିଶିଷ୍ଟରେ ଥିବା ସମସ୍ତ ଗ୍ରହସ୍ଥିତି ଏହି ଦିନର । ଏହି ଦିନଠାରୁ ଆରମ୍ଭ କରି ତାଙ୍କର କରଣାବ୍ଦ ଚଳିଛି ଏବଂ ୧ ଦିନରୁ ଆରମ୍ଭ କରି ଅର୍ବୁଦ ବର୍ଷ ପର୍ଯ୍ୟନ୍ତ (୧୦ କୋଟି) ସବୁ ଗ୍ରହ ଏବଂ ପାତାଦିର ସ୍ଥିତି ସେ ବହୁ ପରିଶ୍ରମ କରି ଆମମାନଙ୍କର ସୁବିଧା ନିମନ୍ତେ

ଦେଇଅଛନ୍ତି । ଏଥିରୁହିଁ ତାଙ୍କର ଗ୍ରହଗଣିତ ନିପୁଣତା ଯେକେହି ସ୍ୱୀକାର କରିବାକୁ ବାଧ୍ୟ । ସେ ଗୋଟିଏ ବର୍ଷରୁ ଆରମ୍ଭ କରି ୧୦୦ କୋଟି ବର୍ଷ ପର୍ଯ୍ୟନ୍ତ ପ୍ରତିବର୍ଷର ସାବନ ଦିନମାନ (civil days) ଦେବାଦ୍ୱାରା ପାଞ୍ଜି ଗଣକମାନେ ସିଦ୍ଧାନ୍ତ ଦର୍ପଣ ବହି ନ ପଢ଼ି ମଧ୍ୟ ନିର୍ଦ୍ଦିଷ୍ଟ ବର୍ଷ ଓ ଦିନରେ ସବୁ ଗ୍ରହାଦିର ପରିମାଣ ଅତି ସହଜରେ ହିସାବ କରି ତାହାର କରି ପାରୁଅଛନ୍ତି । ସାମନ୍ତେ କଳ୍ୟବ୍ଦ ୪୯୭୦ ବେଳକୁ ବ୍ରହ୍ମାଙ୍କ ଚଳିତ ଦିନର କେତେ ଦଣ୍ଡାଦି ସମୟ ହୋଇଥିଲା ତାହା ଦା୧୩।୨୨।୩।୪୩।୨୭ ବୋଲି ଗଣନା କରି ସିଦ୍ଧାନ୍ତ ଦର୍ପଣ ପ୍ରଥମ ପ୍ରକାଶର ଶ୍ଳୋ ୪୪ରେ ଲେଖି ଦେଇଥିବାରୁ ଏହା ନିର୍ବିବାଦ ଯେ ୧୮୬୯ ଖ୍ରୀଷ୍ଟାବ୍ଦର ମେଷ ସଂକ୍ରମଣ ଦିନହିଁ ସେ ଦର୍ପଣ ସାରଣୀ ପ୍ରସ୍ତୁତ କଲେ ଏବଂ ଏହି ଦିନହିଁ ସିଦ୍ଧାନ୍ତ ଦର୍ପଣର ଅଭ୍ୟାରମ୍ଭକାଳ । ଦୀର୍ଘ ବ ୨୩ କାଳ ଗ୍ରହଗଣନା, ଗ୍ରହପର୍ଯ୍ୟବେକ୍ଷଣ ଓ ଦର୍ପଣ ରଚନା ଆଦିରେ ପୂର୍ବାପର ନିନିଯୋଗ କରି ସେ ଏ କାମ ଶେଷକଲେ ୧୮୯୨ ଖ୍ରୀଷ୍ଟାବ୍ଦର ମାର୍ଗଶୀର କୃଷ୍ଣ ୯ମୀ ଶନିବାରେ, ସିଦ୍ଧାନ୍ତ ଦର୍ପଣର ଶେଷ ଶ୍ଳୋକରେ ଏହା ଅଛି—

ମୁକୁନ୍ଦ ଦେବସ୍ୟ ଚତୁର୍ଦ୍ଦଶାଙ୍କେ କାଳେ ବୃଷାଷ୍ଟେନ୍ଦୁସମେ ଚ ଶାକେ
ବାରେ ଶନେର୍ମାର୍ଗସିତେ ନବମ୍ୟାମିଦଂ ମୟା ପୁସ୍ତକ ମାଶୁପୂର୍ତ୍ତିମ୍ ॥

ଶକାବ୍ଦ ୧୮୧୪=୧୮୧୪+୭୮=୧୮୯୨ ଖ୍ରୀଷ୍ଟାବ୍ଦ । ଏହାର ୭ ବର୍ଷପରେ ୧୮୯୯ ରେ ଏହି ବହି ଆଠମଲ୍ଲିକ ମହାରାଜାଙ୍କ ଅର୍ଥ ସାହାଯ୍ୟରେ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟଙ୍କ ତତ୍ତ୍ୱାବଧାନରେ କଲିକତାରୁ ପ୍ରଥମଥର ପାଇଁ ଛପାହୋଇ ବିତରଣମାନ କରାଗଲା ।

ପ୍ରାଚୀନ ଜ୍ୟୋତିଷୀମାନେ ଗ୍ରହ ଆନୟନ ରୀତିକୁ ୩ ଭାଗରେ ବାଣ୍ଟି ଏହି ୩ ଉପାୟକୁ କରଣ, ତନ୍ତ୍ର ଓ ସିଦ୍ଧାନ୍ତ ନାମ ଦେଇଥିଲେ । ଅଭୀଷ୍ଟ କରଣାବ୍ଦରୁ ଯେଉଁ ପ୍ରଣାଳୀରେ ଗ୍ରହାନୟନ ହୁଏ ତାକୁ କରଣ କଳିଯୁଗାରମ୍ଭରୁ ଯେଉଁ ରୀତିରେ ବର୍ତ୍ତମାନ ସମୟ ପାଇଁ ଗ୍ରହାନୟନ କରୁଥିଲେ ତାହାକୁ ତନ୍ତ୍ର ଏବଂ ସୃଷ୍ଟ୍ୟାଦିରୁ ଅଭୀଷ୍ଟ ଦିନ ନିମନ୍ତେ ଯେଉଁ ରୀତିରେ ଗ୍ରହାନୟନ କରୁଥିଲେ, ତାହାକୁ ସିଦ୍ଧାନ୍ତ କହୁଥିଲେ । ଏଥି ନିମନ୍ତେ ୩ ପ୍ରକାର ଗ୍ରନ୍ଥର ରଚନା ହେଉଥିଲା । ପଠାଣୀ ସାମନ୍ତେ ସିଦ୍ଧାନ୍ତ ଦର୍ପଣରେ ଏହି ୩ ଟି ଯାକ ରୀତିରେ ଗ୍ରହାନୟନ କରିବାର ବାଟ ଫିଟାଇ ଥିବାରୁ ସିଦ୍ଧାନ୍ତ ଦର୍ପଣକୁ କରଣ, ତନ୍ତ୍ର ଓ ସିଦ୍ଧାନ୍ତ କୁହାଯାଏ । ଏହି କଥା ସେ ଦର୍ପଣର ୧୫ ଶ ପ୍ରକାଶସ୍ଥ ୭୭ ଶ୍ଳୋକରେ ପରିଷ୍କାର ଭାବରେ ଲେଖି ମଧ୍ୟ ଦେଇଛନ୍ତି ।

ଯସ୍ମିନ୍ ଖେଟାନୟନମୁଦିତଂ ସୃଷ୍ଟିକାଦ୍ୟର୍ଗଣେଭ୍ୟଃ
ସିଦ୍ଧାନ୍ତୋଽସୌ ଯୁଗାଦିନଗଣାତ୍ ଯତ୍ର ତନ୍ତ୍ରଂ ତଦେବ ।
ଯସ୍ମିନ୍ ଶାକାଦ୍ୟଭିମତସମା ବାସରେଭ୍ୟସ୍ତୁଦୁକ୍ତଂ
ଶାସ୍ତ୍ରଂ ପ୍ରାଜ୍ଞୈଃ କରଣମିତି ତତ୍ କାର୍ଯ୍ୟମସ୍ମାସ୍ତି ସର୍ବମ୍ ।

ତାଙ୍କ ମତରେ ଅଭୀଷ୍ଟ ଦିନର ମଧ୍ୟାହ୍ନ ଗ୍ରହ ପରିମାଣ ଆଣିବା ନିମନ୍ତେ ଏହି ୩ ଟି ଯାକ ଉପାୟ ଅତି ଉପଯୋଗୀ, କାରଣ ଗୋଟାଏ ଉପାୟରେ ଗ୍ରହର ପରିମାଣ ଆଣିବାରେ ଭୁଲଥିଲେ ଅନ୍ୟ ଉପାୟରେ ତାହା ସହଜରେ ଧରା ପଡ଼ିଯାଏ । ପ୍ରକାଶ ଥାଉକି ଭାରତବର୍ଷର କେହି ଜ୍ୟୋତିଷୀ ଏହି କଠିନ ଚେଷ୍ଟା କରିନାହାନ୍ତି । ସାମନ୍ତେ ଅନ୍ୟମାନଙ୍କ ଠାରୁ ଭିନ୍ନ ଅନେକ ସଂସ୍କାର ନିଜେ ସୃଷ୍ଟି କରିଥିଲେ ମଧ୍ୟ ସୂର୍ଯ୍ୟ ଗ୍ରହଣ ସାଧନ କଲାବେଳେ ଗୋଟାଏ ସଂସ୍କାରରେ ଭୁଲ ଦେଖାଯିବାରୁ ତା'ର ସଂସ୍କାର କରି ଧନ୍ୟବାଦାର୍ହ ହୋଇଅଛନ୍ତି । ଏଥି ନିମନ୍ତେ ସେ ସୂର୍ଯ୍ୟଗ୍ରହଣର (୧ମ ପ୍ରକାଶର) ୭୩ ଶ୍ଳୋକଠାରୁ ୮୨ ଶ୍ଳୋକ ପର୍ଯ୍ୟନ୍ତ ୧୦ଟି ଶ୍ଳୋକ ସେ ପ୍ରଥମେ ଲେଖିଥିଲେ ମଧ୍ୟ ତାହାର ପ୍ରୟୋଗରେ ସୂର୍ଯ୍ୟ ଗ୍ରହଣରେ ଭୁଲ୍ ଭଟକା ଦେଖାଯିବାରୁ ଏହି ଦଶଟି ଶ୍ଳୋକକୁ ଉଠାଇ ଦେଇ ଏମାନଙ୍କ ସ୍ଥାନରେ ଅନ୍ୟ ଦଶଟି ଶ୍ଳୋକ ସେ ଗ୍ରହଣ କରିବାକୁ ଲେଖିଦେଇଛନ୍ତି, ଏହା ସ୍ପଷ୍ଟ ଯେ ଏହି ଦଶଟି ଶ୍ଳୋକ ସେ ବଦଳାଇ ନ ଥିଲେ ଏବଂ ଭଲ ପର୍ଯ୍ୟବେକ୍ଷଣ ସହକାରେ ଏହି ପ୍ରଥମ ଲିଖିତ ଦଶଟି ଶ୍ଳୋକର ଭୁଲ ଧରି ପାରି ନଥିଲେ, ସିଦ୍ଧାନ୍ତ ଦର୍ପଣର ଉପଯୋଗିତା ଏ ପର୍ଯ୍ୟନ୍ତ ରହି ପାରି ନ ଥାନ୍ତା । ଆମ୍ଭେମାନେ ଏହି ଦଶଟି ପୁରୁଣା ଶ୍ଳୋକ, ଏହି ସଂସ୍କରଣରେ ଏକା-ବେଳକେ ଉଠାଇ ଦେଇଅଛୁ । କେବଳ ଆବଶ୍ୟକ କଲେ, ପାଠକମାନେ ସିଦ୍ଧାନ୍ତ ଦର୍ପଣ ପ୍ରଥମ ସଂସ୍କରଣରେ, ତାହା ଦେଖିବାକୁ ପାଇପାରନ୍ତି । ଏହି ଭ୍ରାମକ ଶ୍ଳୋକମାନଙ୍କର ଆଉ ଆବଶ୍ୟକତା ନ ଥିବାରୁ, ଏ ସଂସ୍କରଣରେ ତା'ର ସୂଚନା ମଧ୍ୟ ଦେବା ଆବଶ୍ୟକ ମନେ କରାଯାଇନାହିଁ ।

ଫଳ ସଂସ୍କାର ସମ୍ବନ୍ଧେ ଦର୍ପଣୋକ୍ତ ଅତ୍ୟନ୍ତ ଆବଶ୍ୟକ, ଏହା ଅତି କଠିନ ହେଲେ ମଧ୍ୟ ବ୍ୟବହାର ନ କଲେ, ଚଳେ ନାହିଁ—ଗଣନାସ୍ଥୂଳ ହୋଇ ପଡ଼େ । ପରୋକ୍ଷ ପାତ ଉଦୟାନ୍ତରାଦି ସଂସ୍କାର ଅତି ମାତ୍ରାରେ ଆବଶ୍ୟକ । ମଂଗଳ ସ୍ପଷ୍ଟ ନିମନ୍ତେ ଏବଂ ମଂଗଳର ମହାସୂକ୍ଷ୍ମତା ସାଧନ ନିମନ୍ତେ ଯେଉଁ ୭ଟି ବିଶେଷ ସଂସ୍କାରର କଥା ସାମନ୍ତେ ଲେଖିଛନ୍ତି, ତାହା କୌଣସି ସିଦ୍ଧାନ୍ତ ଗ୍ରନ୍ଥରେ ନାହିଁ ।

ପାଶ୍ଚାତ୍ୟମାନେ ସୂର୍ଯ୍ୟକୁ କେନ୍ଦ୍ର କରି ସବୁ ଗ୍ରହକକ୍ଷା ରଚନା କରନ୍ତି । କେବଳ ଚନ୍ଦ୍ର ପୃଥିବୀର ଉପଗ୍ରହଥିବାରୁ ପୃଥିବୀ କେନ୍ଦ୍ରହିଁ ସେମାନଙ୍କ ମତରେ ଚନ୍ଦ୍ର କକ୍ଷାର କେନ୍ଦ୍ର । ଭାରତୀୟ ଜ୍ୟୋତିଷୀମାନେ ଚନ୍ଦ୍ର ସହିତ ସମସ୍ତ ଗ୍ରହକକ୍ଷାର କେନ୍ଦ୍ର ପୃଥିବୀ କେନ୍ଦ୍ର ବୋଲି ମାନିଲେ ମଧ୍ୟ ଅସ୍ପଷ୍ଟ ଭାବରେ ବୁଧ ଓ ଶୁକ୍ର କକ୍ଷାର କେନ୍ଦ୍ର ସୂର୍ଯ୍ୟ କେନ୍ଦ୍ର ବୋଲି ସ୍ୱୀକାର କରନ୍ତି । କାରଣ ବୁଧ ଓ ଶୁକ୍ର ସୂର୍ଯ୍ୟ କେନ୍ଦ୍ରିକ କକ୍ଷାରେ ନ ବୁଲିଲେ, ସେମାନଙ୍କର ପୂର୍ବ ଓ ପଶ୍ଚିମ ଉଭୟ ଦିଗରେ ଉଦୟାସ୍ତ ଦେଖି ହେଉନାହିଁ । ଏହି ସବୁକୁ ଦୃଷ୍ଟି ଆଗରେ ରଖି ସାମନ୍ତେ ଚନ୍ଦ୍ର ଭିନ୍ନ ସବୁ ଗ୍ରହକକ୍ଷାର କେନ୍ଦ୍ର ସୂର୍ଯ୍ୟ କେନ୍ଦ୍ର ବୋଲି ମାନିନେଇ, ସୂର୍ଯ୍ୟ ଏ ସମସ୍ତଙ୍କୁ ଧରି ପୃଥିବୀକୁ ପରିଭ୍ରମଣ କରୁଥିବା ସେ ଲେଖିଛନ୍ତି, ଫଳରେ ତାଙ୍କର ଗ୍ରହାବସ୍ଥା ନ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ମତର ଏକ ସମାଧାନ ପରି ମନେହୁଏ । (The planetary

system of Siddhanta Darpana is a compromise between the Heliocentric and Geocentric methods.) ଏହା ପୂର୍ବରୁ ପ୍ରାଚ୍ୟ ବା ପାଶ୍ଚାତ୍ୟ କୌଣସି ଜ୍ୟୋତିର୍ବିଦ୍ ଏ ଯାଏଁ ଜାଣି ନ ଥିଲେ । ସେମାନେ Copernicusଙ୍କ ପର୍ଯ୍ୟନ୍ତ ପୃଥିବୀ ସ୍ଥିରଥିବା ମାନି ପରେ ପୃଥିବୀ ବୁଲିବା ସ୍ୱୀକାର କଲେ । ପ୍ରାଚ୍ୟମାନେ ୧ମ ଆର୍ଯ୍ୟଭଟ୍ଟଙ୍କ ସମୟରେ ଏ ଦେଶରେ ପୃଥିବୀ ଚଳନ ନେଇ ଟିକିଏ ଭାବାନ୍ତର ଉଦ୍ରେକ କରିଥିଲେ ମଧ୍ୟ ପରବର୍ତ୍ତୀ ଆଚାର୍ଯ୍ୟମାନେ ଆର୍ଯ୍ୟଭଟ୍ଟଙ୍କ ଯୁକ୍ତିକୁ କାଟିଦେଇ ପୃଥିବୀ ସ୍ଥିରଥିବା ପ୍ରତିପାଦନ କଲେ । ଏଥିନିମନ୍ତେ ଆର୍ଯ୍ୟଭଟ୍ଟ (ବୃଦ୍ଧ) ଖାଣ୍ଟି ହିନ୍ଦୁଥିଲେ ମଧ୍ୟ ତାଙ୍କୁ ବୌଦ୍ଧ ବୋଲି କହି ଗାଳି ଦିଆ ଯାଉଛି । ପଠାଣି ସାମନ୍ତେ ଭୂଭ୍ରମାଭ୍ରମ ବାଦର ଗୋଟିଏ ଶ୍ରେଷ୍ଠ ଇତିହାସ ମଧ୍ୟ ତାଙ୍କ ସପ୍ତଦଶ ପ୍ରକାଶର ୧୫୯ ଶ୍ଲୋକରେ ଦେଇ ଅଛନ୍ତି । ଯଥା :—

ଭୂଗୋଲଭ୍ରାନ୍ତିବାଦୋ ଗତଚରସମଯେ ନ ଶ୍ରୁତୋଽସ୍ତୁ ଦ୍ୱ ଯୁଗାଂଘ୍ରେଃ
ସ୍ୱାଗ୍ନ୍ୟନ୍ଦ୍ୱାଂଶେ (୧୦୪) ବ୍ୟତୀତେ ସୁବିରଳ ଉଦିତଃ ସୌଗତାସ୍ୟାବନ୍ଦ୍-ଯଃ
ତସ୍ୟ ପ୍ରତ୍ୟୁକ୍ତିମାର୍ଯ୍ୟଃ ପ୍ରତନୁ ବଦଧିରେ ଯୁକ୍ତିଭଙ୍ଗ୍ୟୈକବାଦ୍ୟାଃ
ସମ୍ପ୍ରତ୍ୟସ୍ୟାତନୁତ୍ୱାତ୍ ପ୍ରଚର ମକରବଂ ବାଙ୍ମଯ୍ୟ ଚରତ୍ପ୍ରଶାନ୍ତ୍ୟୈ ।

ଭଲ ଭାବରେ କହିବାକୁ ଗଲେ ଭୂଭ୍ରମ ଓ ଅଭ୍ରମବାଦ ସୁଦୂର ବୈଦିକ କାଳରୁହିଁ ଆରମ୍ଭ ହୋଇଅଛି । ଋକ୍ ବେଦର—

ଆକୃଷ୍ଣେନ ରଜସା ବର୍ତ୍ତମାନୋ ନିବେଶୟନ୍ନମୃତଂମର୍ତ୍ତ୍ୟଂଚ
ହିରଣ୍ୟୟେନ ସବିତାରଥେନା ଦେବୋଯାତି ଭୁବନାନି ପଶ୍ୟନ୍

ଏହି ମନ୍ତ୍ରରୁ ସ୍ପଷ୍ଟ ହୁଏ ଯେ ସୂର୍ଯ୍ୟ ପୃଥିବୀକୁ ପ୍ରଦକ୍ଷିଣ କରୁଅଛି । ପୁଣି ଅଥର୍ବ ବେଦର ମ ୧୨ । ୧ । ୫୨ ରେ ଅଛି :—

ଯସ୍ୟାଂ କୃଷ୍ଣମରୁଣଂଚ ସହିତେ ଅହୋରାତ୍ରେ ଭୂମ୍ୟାମଧି ବର୍ତ୍ତେଣ
ଭୂମିଃ ପୃଥିବୀ ବୃତ୍ତା ବୃତ ସାନୋ ଦଧାତୁ ଭଦ୍ରୟା ପ୍ରିୟେ ଧାମନି ଧାମନି ॥

ଏହାର ଅର୍ଥ ଭୂମି ପୃଥିବୀର ନାମାନ୍ତର । ଏହା ଆକାରରେ ବର୍ତ୍ତୁଳ (Globe) ଏବଂ ଭ୍ରମଣ କରେ । ତା'ର ଏହି ଭ୍ରମଣ ହେତୁ ଯେଉଁ ପାଖରେ ସୂର୍ଯ୍ୟ କିରଣ ପଡ଼େ ସେଠି ଦିନ ଏବଂ ତା'ର ବିପରୀତ ପାଖରେ ରାତି ହୁଏ । ଏଥିରେ ଥିବା ବୃତ୍ତ ଓ ଆବୃତ ଉଭୟ ଶବ୍ଦ ତାତ୍ପର୍ଯ୍ୟ ପୂର୍ଣ୍ଣ । ଏହି ପୃଥିବୀ ତାହାର ପ୍ରିୟ ରାସ୍ତାରେ ଏପରି ଭ୍ରମଣ କରୁଥାଉ ଏବଂ ଆମକୁ ଧାରଣ କରୁଥାଉ ।

ଏ ଉଭୟ ମତବାଦ ବେଦରେ ଅଛି ଏବଂ ଯୁକ୍ତି, ଆବଶ୍ୟକତା ଓ ଗ୍ରହ ଗଣିତାଦି ଦୃଷ୍ଟିରୁ ଉଭୟେ ଯେ ଦୃଢ଼ ଏବଂ କାହାକୁ କାଟିଦେଇ ହେଉନାହିଁ ଏଥିରେ ସନ୍ଦେହ କରିବାର ନାହିଁ, ମୋଟ ଉପରେ ଯେ କୌଣସି ଗୋଟିଏକୁ ଗ୍ରହଣ ନ କଲେ ମଧ୍ୟ ସବୁ ଅଚଳ ହୋଇ

ପଡ଼ିବ । ଅତ୍ୟନ୍ତ ସହଜ ହେତୁ ଭାରତର ଜ୍ୟୋତଷୀମାନେ ବରାବର ଭୂସ୍ଥିରତ ବାଦକୁ ମାନିନେଇ ତଦନୁସାରେ ଏ ପର୍ଯ୍ୟନ୍ତ ଗ୍ରହ ଗଣିତ କରି ଆସୁଅଛନ୍ତି । ଭାରତର ସମସ୍ତ ପଞ୍ଜିକାର ଗଣିତ ଭୂସ୍ଥିରତା ବାଦ ଉପରେହିଁ ପ୍ରତିଷ୍ଠିତ । ଏହି ଗଣିତ ବଳରେ ଗ୍ରହ ଉଦୟାସ୍ତାଦି ବକ୍ରତା ଓ ଗ୍ରହଣାଦିରେ କୌଣସି ସମୟ ବିଭ୍ରାଟ ହେବା ଦେଖାଯାଇନାହିଁ । ଭୂଭ୍ରମ ମତକୁ କେବଳ ଆର୍ଯ୍ୟଭଟ୍ଟ ଗ୍ରହଣ କରିଥିଲେ ମଧ୍ୟ ଏବଂ ତା'ର ଯୁକ୍ତି ଦେଇଥିଲେ ମଧ୍ୟ ଗ୍ରହ ଗଣିତ କଲାବେଳକୁ ସେ ନିଜେ ମଧ୍ୟ ଭୂସ୍ଥିରତାବାଦ ଉପରେ ପ୍ରତିଷ୍ଠିତ ଗଣିତର ଆଶ୍ରୟ ନେଇଅଛନ୍ତି । ଅନନ୍ତର ଆଚାର୍ଯ୍ୟମାନେ ଏହି ହେତୁରୁ ତାଙ୍କ ମତକୁ ଦୃଢ଼ ହସ୍ତରେ କାଟି ପୁଣି ଭୂସ୍ଥିରତାବାଦ ପ୍ରତିଷ୍ଠିତ କରିବାରେ ଯୁକ୍ତି ଓ ପ୍ରତ୍ୟକ୍ଷ ଗଣିତର ଆଶ୍ରୟ ନେଇ ଅଛନ୍ତି । ସାମନ୍ତଚନ୍ଦ୍ରଶେଖର ଅତି ଦୃଢ଼ ଭାବରେ ବର୍ତ୍ତମାନ ସ୍କୁଲ କଲେଜରେ ପଢ଼ାଯାଉଥିବା ଭୂ-ଭ୍ରମବାଦ ପୋଷକ ଯୁକ୍ତିମାନଙ୍କର ଖଣ୍ଡନ କରିଅଛନ୍ତି । ଏଥିପାଇଁ ସେ ଯେଉଁ ସବୁ ଯୁକ୍ତି ଦେଇ ଅଛନ୍ତି, ତାହା ପାଠକେ ଏହି ଗ୍ରନ୍ଥର ୧୭ଶ ପ୍ରକାଶ ଅଧ୍ୟୟନ କଲେ ବୁଝିପାରିବେ । ଏହି ପ୍ରକାଶରେ ୧୨୦ଟି ବଡ଼ ବଡ଼ ଶ୍ଳୋକ ଅଛି ଏବଂ ଏ ସବୁ ପ୍ରାୟ ଯୁକ୍ତିପୂର୍ଣ୍ଣ । ସେ ଏହି ସବୁ ଯୁକ୍ତି ଛଡ଼ା ଗ୍ରହ ଗଣିତ ଦ୍ୱାରା ମଧ୍ୟ ଭୂସ୍ଥିରତାବାଦକୁ ପୁନଃ ପ୍ରତିଷ୍ଠିତ କରିଗଲେ । ତାଙ୍କ ରୀତିରେ ଏ ପର୍ଯ୍ୟନ୍ତ ଓଡ଼ିଶାର ଯେଉଁ ପଞ୍ଜିକା ଗଣନା କରାଯାଉଛି, ସେଥିରେ କୌଣସି ତ୍ରୁଟି ଏ ପର୍ଯ୍ୟନ୍ତ ଦେଖା ଦେଇନାହିଁ । * ଭାରତ ସରକାର ସେ ଦେଶର ତ୍ରିହ ଚଳନାଦିକୁ ସମୟ ବ୍ୟବଧାନ ବଳରେ ଭାରତୀୟ କରି ଏବେ ସମଗ୍ର ଭାରତକୁ ସୂହାଇଲା ପରି ଗୋଟାଏ ରାଷ୍ଟ୍ରୀୟ ପଞ୍ଜିକାର—ଏବେ କେତେବର୍ଷ ହେଲା ପ୍ରଚାର କରି ଆସୁଅଛନ୍ତି । ସମଗ୍ର ଭାରତବର୍ଷର ସ୍ଥିତିକୁ ଦେଖିଲେ ପୂର୍ବ ପଶ୍ଚିମ ଉପକୂଳ ସମୟର ବ୍ୟବଧାନ ଏକ ଘଣ୍ଟାରୁ ବେଶି । ଏଣୁ ସବୁ ପ୍ରାନ୍ତ ପାଇଁ ଗୋଟିଏ ପଞ୍ଜିକା ଯେ କାର୍ଯ୍ୟକାରୀ ହୋଇ ପାରିବ ନାହିଁ, ଏହା ରାଷ୍ଟ୍ରନାୟକମାନେ ଭଲ ଭାବରେ ବୁଝିବା ଉଚିତ । ଅତ୍ୟନ୍ତ ଦୁଃଖର କଥା ଯେ ଏ ଦେଶର ପ୍ରାଚୀନ ମାନମନ୍ଦିର ଗୁଡ଼ିକ ନଷ୍ଟ ହୋଇ ପଡ଼ିଛି ଏବଂ ଭାରତ ସରକାରଙ୍କ ତରଫରୁ ଏ ପର୍ଯ୍ୟନ୍ତ କୌଣସି ମାନମନ୍ଦିର ହୋଇ ନାହିଁ । ଫଳରେ ଗଣିତ ଓ ତାର ପ୍ରତ୍ୟକ୍ଷ କରିବା ନିମନ୍ତେ ଏ ଦେଶରେ ଏପର୍ଯ୍ୟନ୍ତ କୌଣସି ଉପାୟ ନାହିଁ । ତେଣୁ ସାମନ୍ତ ଯେ ନିଜେ ଅଶେଷ ବେଗର କୀଡ଼ା ପୁତ୍ତଳିକା ହୋଇ ମଧ୍ୟ ପ୍ରାୟ ୨୩ ବର୍ଷ କାଳ ଗ୍ରହଗଣିତପର୍ଯ୍ୟବେକ୍ଷଣ କରି ଅମୂଲ୍ୟ ଏହି ସିଦ୍ଧାନ୍ତ ଦର୍ପଣ ରଚନା କରି ଦେଇଗଲେ, ତାର ସଦୁପଯୋଗ ଭାରତ ସରକାର ମଧ୍ୟ କରି ପାରିଲେ ନାହିଁ ।

ସାମନ୍ତଙ୍କର ଆଉ ଏକ ବିଶିଷ୍ଟ ଗୁଣ ହେଉଛି ଯେ ପ୍ରତ୍ୟକ୍ଷ ନ କରି କୌଣସି ଗଣିତ ଓ ଯୁକ୍ତିକୁ ସ୍ୱୀକାର କରି ନାହାନ୍ତି । ଏଥି ନିମନ୍ତେ ସେ ଖଣ୍ଡପଡ଼ା ପରି ଗୋଟିଏ ନିର୍ଜନ ନିଘଂଚ ସ୍ଥାନରେ ରହି ମଧ୍ୟ ପ୍ରାୟ ସମସ୍ତ ପ୍ରାଚୀନ ସିଦ୍ଧାନ୍ତ ଗ୍ରନ୍ଥ ପଢ଼ିଛନ୍ତି ।

---

*Many results in Astronomy—particularly those with which the ordinary man is concerned e.f. lunar & solar eclipse—can be obtained correctly even if the Sun & planets are assumed to be revolving round a fixed Earth.

ସୂର୍ଯ୍ୟ ସିଦ୍ଧାନ୍ତ ଠାରୁ ଆରମ୍ଭ କରି ସିଦ୍ଧାନ୍ତ ଶିରୋମଣି ପର୍ଯ୍ୟନ୍ତ ସମସ୍ତ ଗ୍ରନ୍ଥର ସାର କଥାକୁ ସେ ପ୍ରତ୍ୟକ୍ଷ ସମୀକ୍ଷା କରି ଗ୍ରହଣ କରିଛନ୍ତି ଏବଂ ଅସାର କଥାକୁ ଛାଡ଼ି ଦେଇଛନ୍ତି । ଏଥିପାଇଁ ସେ ଲେଖିଛନ୍ତି—

'ପ୍ରତ୍ୟକ୍ଷାନୁଭବଂ ନ ଲୁଂପନ୍ତି ବଚୋଯୁକ୍ତ୍ୟଃ', ଏହାର ଅର୍ଥ ବାକ୍ ପଟୁତା ବଳରେ କେବେହେଲେ ପ୍ରତ୍ୟକ୍ଷ ଓ ସ୍ୱାନୁଭବକୁ ଦଳିଦେଇ ହେବ ନାହିଁ । କାମାଭଟ୍ଟ, ଲୁଚନାଗୃର୍ଯ୍ୟ, ବ୍ରହ୍ମଗୁପ୍ତ, ଭାସ୍କର, ଆର୍ଯ୍ୟଭଟ୍ଟ, ଗଣେଶ, ବରାହମିହିର, ଶତାନନ୍ଦ ଆଦି ସବୁ ସିଦ୍ଧାନ୍ତୀଙ୍କ ଗ୍ରନ୍ଥ ଖାଲି ସେ ପଢ଼ିନାହାନ୍ତି ; ସେମାନଙ୍କ ଗଣିତ ପରୀକ୍ଷା ମଧ୍ୟ କରିଛନ୍ତି । କାଳିଦାସ ଶ୍ରୀହର୍ଷ ଆଦିଙ୍କ ଜ୍ୟୋତିଷୀୟ କଥାର ଚର୍ଚ୍ଚା ମଧ୍ୟ ସେ ଯଥା ସ୍ଥାନରେ କରିଛନ୍ତି । ସେ ଅଥର୍ବ ବେଦର ସୂର୍ଯ୍ୟବ୍ୟାସର ଯୋଜନ ପରିମାଣ ୭୨୦୦୦ ଗ୍ରହଣ କରିଛନ୍ତି । ଚନ୍ଦ୍ର ବିମ୍ବ ବ୍ୟାସ ୪୮୫ ଯୋଜନ ଥିବାର ସ୍ୱୀକାର କରିଛନ୍ତି । ଅୟନାଂଶର ସଂସ୍କାର କରି ଏହାର ସ୍ୱରଚିତ ଭଗଣ ସଂଖ୍ୟା ଗ୍ରହଣ କରିଥିଲେ ମଧ୍ୟ 'ଅୟନାଂଶର ଗତି ଯେ ପୂର୍ବ ପଶ୍ଚିମ ଉଭୟ ଦିଗରେ' ଏହି ସୂର୍ଯ୍ୟ ସିଦ୍ଧାନ୍ତ ମତକୁ ଗ୍ରହଣ କରି ଭାସ୍କରଙ୍କର କଟୁ ସମାଲୋଚନା କରିଛନ୍ତି । ଗ୍ରହ ଭଗଣ ପରିମାଣ କେବଳ ସୂର୍ଯ୍ୟଙ୍କୁ ଛାଡ଼ି ଦେଲେ, ବାକି ସମସ୍ତଙ୍କ ପାଇଁ ତାଙ୍କ ମତରେ ସ୍ୱତନ୍ତ୍ର ମଳ ଓ କ୍ଷୟ ମାସ ସମ୍ପର୍କରେ ତାଙ୍କର ବିଚାର ଅତ୍ୟନ୍ତ ଯୁକ୍ତିଯୁକ୍ତ ଏବଂ ମର୍ମସ୍ପର୍ଶୀ । ଚନ୍ଦ୍ରର ସ୍ପଷ୍ଟତା ନେଇ ଯେଉଁ ବିଶେଷ ସଂସ୍କାରର ପ୍ରୟୋଗ ସେ କରି ଅଛନ୍ତି—ତାକୁ ପାଶ୍ଚାତ୍ୟ ଦେଶର ଜ୍ୟୋତିଷୀମାନେ ମଧ୍ୟ ପ୍ରଶଂସା କରନ୍ତି । ମଧ୍ୟାହ୍ନଲମ୍ବ ଭାବରେ ଲଙ୍କାର୍ଦ୍ଧ ରାତ୍ରିକ ବ୍ୟବସ୍ଥାକୁ ସେ ମାନି ନେବାବେଳେ ଲଙ୍କା ସୂର୍ଯ୍ୟୋଦୟ କାଳିକ ବ୍ୟବସ୍ଥାକୁ ସମର୍ଥନ କରୁଥିବା ଭାସ୍କରାଚାର୍ଯ୍ୟ ଆଦିଙ୍କ ଗଣିତର ଅସାରତା ଦର୍ଶାଇ ଖଣ୍ଡ ଖଣ୍ଡ କରି କାଟି ଦେଇଛନ୍ତି । ବଡ଼ ରହସ୍ୟ ଏବଂ ବିପ୍ଳବର କଥା ଯେ, ସେ ପ୍ରାଚୀନ ଆଚାର୍ଯ୍ୟମାନଙ୍କର ସମ୍ମତ ଭାରତର ପ୍ରଧାନ ମାଧ୍ୟନ୍ଦିନରେଖାର ସ୍ଥାନକୁ ସ୍ୱୀକାର ନ କରି ଅତି ସ୍ୱତନ୍ତ୍ର ଭାବରେ ଭାରତର ଭିନ୍ନ ମାଧ୍ୟନ୍ଦିନରେଖା ଦେଖାଇ ସେ ଅନୁସାରେ ନିଜ ଗ୍ରହଣ ଗଣିତାଦିର ଅତି ସୂକ୍ଷ୍ମତା ପ୍ରମାଣିତ କରି ଦେଇଛନ୍ତି । ୨୦ଶ ପ୍ରକାଶସ୍ଥ ୯୦ ଓ ୯୫ ଆଦି ଶ୍ଳୋକ ଏ ସମ୍ପର୍କରେ ତାଙ୍କର ଭାରତୀୟ ତଥା ପାଶ୍ଚାତ୍ୟ ଜ୍ୟୋତିଷୀ ସମ୍ପ୍ରଦାୟକୁ ଏକ ପ୍ରଚଣ୍ଡ ଆହ୍ୱାନ। ଅଧିମାସ ଓ କ୍ଷୟମାସ ସାଧିବା ବେଳେ ସେ ଭଗ୍ନାଂଶର ଯେଉଁ ସ୍ଥୂଳ ମୂଲ୍ୟ (approximate value) ବାହାର କରିଛନ୍ତି ତାହା ଅଧୁନାତନ ଗାଣିତିକ ମାନଙ୍କଦ୍ୱାରା ପ୍ରଶଂସିତ । ଏହାରି ଯୋଗେ ସେ ତାଙ୍କ ପର୍ଯ୍ୟନ୍ତ ସମସ୍ତ ଜ୍ୟୋତିଷୀ ଦୃଢ଼ କଣ୍ଠରେ ଘୋଷଣା କରିଥିବା 'ଫାଲ୍‌ଗୁନ ଅଧିମାସ ନ ହେବା' ବ୍ୟବସ୍ଥାକୁ ଭାଙ୍ଗି ଦେଇଛନ୍ତି ଏବଂ ତା ସ୍ଥାନରେ ମାଘକୁ ନେଇଛନ୍ତି । ଦୃଢ଼ ପର୍ଯ୍ୟବେକ୍ଷଣ ବଳରେ ସେ ଅୟନାଂଶର ବଳ କେଉଁଠି ନାହିଁ ତାହା ମଧ୍ୟ ପ୍ରତ୍ୟକ୍ଷ କରି ଲେଖିଛନ୍ତି—

ସପ୍ତକ୍ଷୀଣ ମା ଗସ୍ତସ୍ୟ ତଥା ସଂଯମମୀପତେଃ
ତତ୍‌ତେ ପାର୍ଶ୍ୱସ୍ଥତାରଣାଂ ଶାନ୍ତପାତୋ ନଚାଳକଃ ।

ଏଥିରୁ ସ୍ପଷ୍ଟ ହୁଏ ଯେ ଆକାଶସ୍ଥ ଧ୍ରୁବ ତାରା ପୃଥିବୀ ଧ୍ରୁବର (ମେରୁ) ଠିକ୍ ମଥା ଉପରେ ଏବେ ମଧ୍ୟ ରହିଛି । ୨୦ଶ ପ୍ରକାଶରେ ସେ ଦର୍ଶାଇଥିବା ଯନ୍ତ୍ରଗୁଡ଼ିକ ଏବେ ମଧ୍ୟ ଶ୍ଳୋକରେ ରହିଛି । ତାଙ୍କ ଟୀକ ଏପର୍ଯ୍ୟନ୍ତ କେହି ଦେଇପାରି ନାହାନ୍ତି କି ସେ ଦିଗରେ ଆମର କୌଣସି ଚେଷ୍ଟା ଏପର୍ଯ୍ୟନ୍ତ ହୋଇନାହିଁ । ଖଣ୍ଡପଡ଼ାର ଘନଶ୍ୟାମ ମହାପାତ୍ରେ ପଠାଣି ସାମନ୍ତଙ୍କ ଗୁରୁ ମଧୁସୂଦନ ମହାପାତ୍ରଙ୍କ ବଂଶଧର । ସେ ଏପର୍ଯ୍ୟନ୍ତ ନିର୍ମାଣ ଦିଗରେ ଚେଷ୍ଟା ଚଳାଇ ସାମନ୍ତଙ୍କ କିଛି କଷ ଯନ୍ତ୍ର ତିଆରି କରି ଦେଖାଇଥିଲେ । ଉତ୍ସାହ ଅଭାବରୁ ଏ ପ୍ରତିଭା ମଧ୍ୟ ଏବେ ଶ୍ମଶାନଅଭିମୁଖରେ ଗତିକରୁଛି ।

ଶ୍ରୀ ଜଗନ୍ନାଥଙ୍କ ଭକ୍ତ ହିସାବରେ ସେ ଜଣାଶୁଣା । ଗ୍ରନ୍ଥାରମ୍ଭରେ ସେ ଶ୍ରୀ ଜଗନ୍ନାଥଙ୍କୁ ଶିବ, ବ୍ରହ୍ମାଦି ଦେବ ସ୍ତୁତ୍ୟ ଏବଂ ଓଡ଼ିଶୀ ବୈଷ୍ଣବ ରୀତିରେ ରାଧା କୃଷ୍ଣଙ୍କ ମିଳିତ ବିଗ୍ରହ ଭାବରେ ବର୍ଣ୍ଣନା କରିଥିଲେ ମଧ୍ୟ ପରବର୍ତ୍ତୀ ପ୍ରକାଶମାନଙ୍କରେ ତାଙ୍କୁ ମୁଖ୍ୟତଃ ପତିତପାବନ ଭାବରେ ଗ୍ରହଣ କରିଥିବା ଜଣାପଡ଼େ ।

ଶ୍ରୀ ଜଗନ୍ନାଥଙ୍କୁ ପତିତପାବନ ହିସାବରେ ସର୍ବପ୍ରଥମେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଗ୍ରହଣ କରିଥିବା ତାଙ୍କ ଲେଖାରୁ ଜଣାପଡ଼େ । ସେ ଲେଖାଟି ହେଉଛି :—

"ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯା'ର – ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।" ପରବର୍ତ୍ତୀ କାଳରେ ଗଜପତି ଗୋପୀନାଥ ଦେବଙ୍କ ପୁତ୍ର ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ସମୟରେ ସିଂହଦ୍ୱାରରେ ଥିବା ଶ୍ରୀ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ପତିତପାବନ ୧୭୩୦-୩୬ ଖ୍ରୀଷ୍ଟାବ୍ଦରେ ସୃଷ୍ଟି କରାଯାଇଥିବା ମାଦଳା ପାଞ୍ଜିରେ ଅଛି । ପଠାଣୀ ସାମନ୍ତେ ଥରେ ଦର୍ପଣ ଅଙ୍କ କଷି କଷି ବିରକ୍ତ ହୋଇ ତାଙ୍କର ଜ୍ୟେଷ୍ଠ ପୁତ୍ର କବି ଓ ସଙ୍ଗୀତଜ୍ଞ ଗଦାଧର ସାମନ୍ତଙ୍କୁ ଲାବଣ୍ୟବତୀରୁ ଗୋଟିଏ ଛାନ୍ଦ ଗାଇ ବାଖ୍ୟା କରିବାକୁ କହିଥିଲେ ଗଦାଧର 'ଚେତ ଚତୁରୀ' ଛାନ୍ଦ ଏ ଅବସରରେ ସୁସ୍ୱରରେ ଗାଇ ଅର୍ଥ କଲାବେଳେ ଅଗଣିତ ନରନାରୀ ସେଠାରେ ରୁଣ୍ଡହୋଇ ଯାଇଥିଲେ । ସେମାନଙ୍କ ମଧ୍ୟରେ ଖୋଦ୍ ପଠାଣୀ ସାମନ୍ତଙ୍କର ଝିଅ, ବୋହୂ ଓ ଅନ୍ୟ ବାଳକ ବାଳିକା ଏବଂ ପ୍ରାପ୍ତ ବୟସ୍କା କୁମାରୀମାନେ ମଧ୍ୟ ଥିଲେ । ଏହା ଦେଖି ପଠାଣୀ ସାମନ୍ତେ ଉଦ୍‌ବିଗ୍ନ ହେଲେ ଏବଂ ଭାବିଲେ ଏପରି କାବ୍ୟ ଶୃଙ୍ଗାର ଚର୍ଚ୍ଚା ଅସ୍ଥଳରେ କରାଯାଇଥିବାରୁ ଦୋଷ ହୋଇଛି । ଏଣୁ ସେ ଏହାର ପ୍ରାୟଶ୍ଚିତ୍ତ ସ୍ୱରୂପ ଲକ୍ଷେ ଗାୟତ୍ରୀ ଜପ ଏବଂ ୧୦୮ ବ୍ରାହ୍ମଣ ଭୋଜନାଦି କରାଇଥିଲେ । ଏଥିରେ ମଧ୍ୟ ସେ ନିଜର ପାପ ପୂରା ଛୁଟିଗଲା ବୋଲି ମନେ ନ କରି ପତିତପାବନ ଶ୍ରୀ ଜଗନ୍ନାଥଙ୍କ ପ୍ରତି ବେଶି ଆକୃଷ୍ଟ ହେଲେ ଏବଂ ଲେଖିଲେ—

ଯଦସ୍ୟେଚ୍ଛା ମେ ନିଜଭଜନତୋ ଦୂର ମୁତ୍ସାର୍ଯ୍ୟ ବୁଦ୍ଧିଂ
ଦୈବାଧୀନାଂ ଗଣିତବିପଣୌ ପାତୟତ୍ୟାତତାୟାମ୍

ସଂଖ୍ୟାଖ୍ୟାତାନୁଗତ ପତିତୋଦ୍ଧାର କାରୁଣ୍ୟସିନ୍ଧୁଃ
ସ ସ୍ୟାତ୍ ଚେତଃ ଶରଣ ଚରଣଃ ସିନ୍ଧୁଜା ପ୍ରାଣବନ୍ଧୁଃ ।

ଯେବେ ତାଙ୍କର ଦୃଷ୍ଟିରେ ଶ୍ରୀ ଜଗନ୍ନାଥେ ଏପରି ପତିତପାବନ ରୂପରେ ଦେଖାଗଲେ ଯେ ସେ ଏହି ଗ୍ରନ୍ଥର ପ୍ରାୟ ପ୍ରତି ପ୍ରକାଶରେ ତାଙ୍କୁ ପତିତପାବନ ଭାବରେ ସ୍ତୁତିକରି ଚାଲିଲେ । ଦର୍ଶନାର୍ଥୀ ଯାତ୍ରୀ ଶ୍ରୀ ଜିଉଙ୍କ ଦର୍ଶନ ପରେ ଆନନ୍ଦ ବଜାରରୁ ଅଭଡ଼ା, ଡାଲି, ତିଅଣ ଖାଇ ସୁଗନ୍ଧି ହାତ ମୁହଁରେ ଫେରୁଥିବା ଦେଖି ସେମାନଙ୍କୁ ଛୁଇଁ ଆସୁଥିବା ପବନରେ ତାଙ୍କ ନିଜର ପାପ ବହିଯାଉଛି ବୋଲି ମନେକରି ସେ ଲେଖିଛନ୍ତି--

କୃତ ପ୍ରତି ନିବୃତ୍ତଯୋ ମନୁଜଯାତ୍ରଯୋ ଯନ୍ମହା
ପ୍ରସାଦ ପରିପୂରିତୋଦରକରାନନାଃ ପାବନାଃ
ପୁନନ୍ତୁ ପତିତାନ୍ ପଥି ସ୍ୱତନୁ ମାରୁତୈର୍ମାଦୃଶା
ଦୃଶୋବହନ୍ତୁ ମେଽନ୍ଦୁହଂ ମହମଦୋ ମହାଶଂ ମହଃ ।

ଶ୍ରୀକ୍ଷେତ୍ର ପୁରୀ, ମହୋଦଧି, ବେଢ଼ା, ପାହାଚ, କଳ୍ପଦ୍ରୁମ, ରତ୍ନସିଂହାସନ ଗଂଭୀରା, ମୂଳ ଦେଉଳ, ଅଂଳା ବେଢ଼ା ଏବଂ ଚକ୍ର ଆଦିର ଅତି ସୁନ୍ଦର ବର୍ଣ୍ଣନା କରିଥିବାରୁ ସେ ଏ ଦେଶର ଜାତୀୟ କବି ଭାବରେ ମଧ୍ୟ ସମ୍ମାନିତ ହୋଇଛନ୍ତି । ଲେଖାରେ ଅନୁପ୍ରାସ ଓ ଯମକ ବହୁଳତା ତାଙ୍କର ବହୁତ ବେଶି । ଏହିଭଳି ଶ୍ଳୋକ-ଗୁଡ଼ିକୁ ପାଠକେ ଏହି ଦର୍ପଣର ପ୍ରତି ପ୍ରକାଶ ଆରମ୍ଭ ଓ ଶେଷରେ ଦେଖିବାକୁ ପାଇବେ । ଦଶାବତାର ବର୍ଣ୍ଣନା ତାଙ୍କ ସିଦ୍ଧ ଲେଖନୀର ଏକ ପ୍ରତୀକ । ଭାସ୍କରାଚାର୍ଯ୍ୟଙ୍କ ପରି ତାଙ୍କର ରଚନା ସାବଲୀଳ ଏବଂ ଗମ୍ଭୀରତା ଦ୍ୟୋତକ । ତାଙ୍କ ରଚନା ପଢ଼ିଲେ ମନେହୁଏ ସେ ଜଣେ ନିର୍ଭୀକ ବୀର ଲେଖକ ଥିଲେ । ସାହିତ୍ୟ ଦର୍ପଣକାର ବିଶ୍ୱନାଥ ମହାପାତ୍ରଙ୍କ ଅନୁକରଣରେ ଏ ଗ୍ରନ୍ଥର ନାମ ସେ ସିଦ୍ଧାନ୍ତ ଦର୍ପଣ ରଖିଥିଲେ ମଧ୍ୟ ତାଙ୍କ ଠାରୁ ନିଜ ବୁଦ୍ଧିର ପ୍ରଖରତା ଦେଖାଇବା ନିମନ୍ତେ ପରିଚ୍ଛେଦ ବା ଅଧ୍ୟାୟ ଗୁଡ଼ିକର ନାମ ସେ ପ୍ରକାଶ ରଖି ଅଛନ୍ତି । ସତେଯେପରି ଦର୍ପଣ ଭିତରୁ ପ୍ରକାଶ ବା ତେଜର ଉତ୍ପତ୍ତି ଝରି ଆସୁଛି ।

ଏପରି ଏକ ମହାଗ୍ରନ୍ଥ ଦୁର୍ବୋଧ ଓ ଦୁଷ୍ପ୍ରାପ୍ୟ ହୋଇ ପଡ଼ିବାର ଦେଖି ସର୍ବପ୍ରଥମେ ସାମନ୍ତ ଚନ୍ଦ୍ରଶେଖର କଲେଜର ତେତେବେଳର ଅଧ୍ୟକ୍ଷ ପ୍ରଫେସର ବାମାଚରଣ ଦାସ ଏହାର ଟୀକା କରିବାକୁ ମନ ବଳାଇଲେ । ଭାଷା ଅତି ଦୁର୍ବୋଧ ହେବା ଦେଖି ଏବଂ ତାଙ୍କ କଲେଜର ଅନ୍ୟ କେତେକ କାମ ତାଙ୍କୁ ବାଧା ଦେବାରୁ ସେ ଏଥିନିମନ୍ତେ ମୋର ସାହାଯ୍ୟ ଲୋଡ଼ିଥିଲେ । ମୁଁ ୧୯୪୦ ମସିହାରେ ଏହି ଅଭାବ ଉପଲବ୍ଧି କରି ସିଦ୍ଧାନ୍ତ ଦର୍ପଣର ଓଡ଼ିଆ ଅନୁବାଦ ସଂସ୍କୃତ ଟୀକା ଓ ଉପପତ୍ତି ଏବଂ ତା ସହିତ ଇଂରେଜୀ ଅନୁବାଦ ଦେବା

ମନସ୍ଥ କରି ମୂଳରୁ କେତେକ ଶ୍ଳୋକର ନମୁନା ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥଙ୍କ ନିକଟକୁ ମତାମତ ନିମନ୍ତେ ପଠାଇଥିଲି, ସେ ମୋତେ ଏଥିନିମନ୍ତେ ଉତ୍ସାହ ଦେଇ ପତ୍ର ମଧ୍ୟ ଲେଖିଥିଲେ । ମାତ୍ର ମୋର କେତେକ ଅସୁବିଧାରୁ ବାଙ୍କୀ ରାଇରଙ୍ଗପୁର ଆଦିରେ ନୌକରି କରିବାରେ ସମୟର ଅଭାବ ହେଲା ଏବଂ ଏ କାମ ପଡ଼ି ରହିଲା । ବାମାଚରଣ ବାବୁ ମୋତେ ଅନୁରୋଧ କଲାବେଳକୁ ମୁଁ ଜାଣିଥିଲି ଯେ ମୋର ଜ୍ୟୋତିଷଗୁରୁ ପଣ୍ଡିତ ମୁକୁନ୍ଦ ମହାପାତ୍ର ଏହି ଗ୍ରନ୍ଥର ପୂର୍ବାର୍ଦ୍ଧର ସଂସ୍କୃତ ଟୀକା କରି ସାରି ଅଛନ୍ତି । ଏଣୁ ତାଙ୍କୁ ଡାକି ଆଣି ପୁରୀରେ ରଖାଇ ଏ କାମ କରାଗଲେ ଭଲ ହେବ ଏବଂ ମୁଁ ଯଥାଶକ୍ତି ଏଥିରେ ମୋର ଗୁରୁଙ୍କୁ ସାହାଯ୍ୟ ଦେବି ବୋଲି ଜଣାଇବାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏହି କଥା ଉଠାଇଲେ । ସେତେବେଳର କୁଳପତି ସମ୍ବଲପୁରବାସୀ ଡକ୍ଟର ପରଶୁରାମ ମିଶ୍ର ଏଥିରେ ଆଗ୍ରହାନ୍ୱିତ ହୋଇ ବିଶ୍ୱବିଦ୍ୟାଳୟ ତରଫରୁ ସିଦ୍ଧାନ୍ତ ଦର୍ପଣ କମିଟି ଗଢ଼ିଲେ । ସେଥିରେ ବାମାଚରଣ ବାବୁ ସଭାପତି, ପଣ୍ଡିତ ମୁକୁନ୍ଦ ମହାପାତ୍ରେ ସମ୍ପାଦକ ଶ୍ରୀ ଇନ୍ଦୁଭୂଷଣ ଦାସଗୁପ୍ତ, ଶ୍ରୀ ରାମଚନ୍ଦ୍ର ମହାପାତ୍ର ଓ ମୁଁ ସଦସ୍ୟ ରହିଲୁ । ପଣ୍ଡିତ ମହାଶୟଙ୍କୁ ପୁରୀ ଅଣାଯାଇ ମାଥର୍ ପୁରୀ ହଷ୍ଟେଲରେ ରଖାଗଲା । ପରେ ସେ ଆମ ସଂସ୍କୃତ କଲେଜ ହଷ୍ଟେଲକୁ ମଧ୍ୟ ଆସିଲେ । ପ୍ରାୟ ୫ ମାସ ମଧ୍ୟରେ ଗ୍ରନ୍ଥର ଉତ୍ତରାର୍ଦ୍ଧର ସଂସ୍କୃତ ବ୍ୟାଖ୍ୟା ସେ ଶେଷ କଲେ । ମୁଁ ବରାବର ତାଙ୍କ ପାଖକୁ ଯାଆ ଆସ କରୁଥିଲି ଏବଂ ତାଙ୍କ କାମରେ ସହାୟତା ବି କରିଛି । ପଣ୍ଡିତ ମହାଶୟଙ୍କ ପୁରୀରେ ରହିବା ନିମନ୍ତେ ମାସିକ ଶହେ ଟଙ୍କା କରି ପାରିଶ୍ରମିକ ବିଶ୍ୱବିଦ୍ୟାଳୟ ଦେଲେ ଏବଂ ତାଙ୍କ ବିଦାୟ ବେଳେ ବାକି ପ୍ରାୟ ୫୦୦ ଟଙ୍କା (ମୋଟ ଏକ ହଜାର) ପାଥେୟ ଦିଆଯାଇଥିବା ମୋତେ ଜଣା, ଏହା ପରେ କମିଟି ଠିକ୍ କଲେ ଯେ ଏଥିରେ ପ୍ରତି ଶ୍ଳୋକର ଇଂରେଜୀ ଅନୁବାଦ ରହିବ ଏବଂ ସ୍ଥଳ ବିଶେଷରେ Mathematical interpretation ମଧ୍ୟ ରହିବ । ଏ କାମ Honorary ଭାବରେ କରିବାକୁ ମୋତେ ଓ ଇନ୍ଦୁବାବୁଙ୍କୁ ଦିଆଗଲା । ଆମେ ଦୁହେଁ ଆମର ଅବସର ବେଳେ ଏ କାମ ଆଗେଇ ନେଲୁ ବେଳକୁ ଅଧ୍ୟକ୍ଷ G. B. Banerjee ଙ୍କ ମୃତ୍ୟୁ ହେବାରୁ ବାମାବାବୁଙ୍କର ରେଭେନ୍ସା କଲେଜ କଟକକୁ ବଦଳି ହେଲା ଏବଂ ଏହାର ଅଳ୍ପ ଦିନ ପରେ ବଳଭଦ୍ର ପ୍ରସାଦ ବିହାର ଫେରି ଯିବାରୁ ବାମାଚରଣ ବାବୁ ଓଡ଼ିଶାର ଶିକ୍ଷା ନିର୍ଦ୍ଦେଶକ ହେଲେ । ସେ ତାଙ୍କର ଅତ୍ୟନ୍ତ ଅନୁଗତ ଇନ୍ଦୁବାବୁଙ୍କୁ B. J. B. Collegeର ଅଧ୍ୟକ୍ଷ ଭାବରେ ଭୁବନେଶ୍ୱରକୁ ବଦଳି କରାଇ ନେଇ କିଛି ଦିନ ପରେ ନିଜ ଅଫିସରେ ସହକାରୀ ନିର୍ଦ୍ଦେଶକ ରୂପରେ ରଖିନେଲେ । ମୁଁ ଏକା ହୋଇ ପୁରୀରେ ରହିଲି ଏବଂ ଦର୍ପଣ କାମ ପ୍ରାୟ ଦଶ ବାର ବର୍ଷ ପର୍ଯ୍ୟନ୍ତ ସେମିତି ପଡ଼ି ରହିଲା । ବାମାଚରଣ ବାବୁ ନିର୍ଦ୍ଦେଶକ ପଦରୁ ଅବସର ନେବା ପରେ ପୁଣି ଏ ଆଡ଼କୁ ଦୃଷ୍ଟି ଫେରାଇଲେ । ଦର୍ପଣ କମିଟିର ଅଧିବେଶନ ଡାକିଲେ । ଠିକ୍ ହେଲା ଯେ ମୋତେ Deputationରେ ବିଶ୍ୱବିଦ୍ୟାଳୟକୁ ଏହି କାମ ନିମନ୍ତେ ଯିବାକୁ ହେବ ଏବଂ ସେ ନିଜେ ଏହି କାମରେ ମୁଖ୍ୟ ହେବେ । ଅଫିସ ନାଲିଫିତାର କରାମତରେ ଏହି ଘଟଣାର ପ୍ରାୟ ୨ ବର୍ଷ ପରେ ମୋତେ Deputationରେ

୨୪-୭-୧୯୭୪ରେ ବିଶ୍ୱବିଦ୍ୟାଳୟକୁ ଯିବାକୁ ପଡ଼ିଲା । ଏତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟ କଟକରୁ ବାଣୀବିହାରକୁ ସ୍ଥାନାନ୍ତରିତ ହୋଇ ସାରିଥାଏ । ମୁଁ ଯିବାବେଳକୁ ବାମାଚରଣ ବାବୁ Orissa Public Service Commissioner Member ହୋଇ ସାରିଥିଲେ ମଧ୍ୟ ବିନା ପାରିଶ୍ରମିକରେ ଏ କାମର ଲେଖା କେତେ ଦେଖିଥିଲେ ।

ଡକ୍ଟର ପରିଜା ସାହେବ ଏତେବେଳେ ବିଶ୍ୱବିଦ୍ୟାଳୟର କୁଳପତି । ମୁଁ ସେଠାକୁ ଯିବାରୁ ସେ ଆହ୍ଲାଦିତ ହୋଇ ମୋର ସମସ୍ତ ସୁବିଧା କରି ଦେଇଥିଲେ । ବାମାଚରଣ ବାବୁ O.P.S.C. ର Member ଥିବାରୁ Orissa Governor ତାଙ୍କୁ ବିଶ୍ୱବିଦ୍ୟାଳୟର ଦର୍ପଣ କାମରେ ଯୋଗ ଦେବାକୁ ଅନୁମତି ଦେଲେ ନାହିଁ । ଏଣୁ ଏ କାମ ନିମନ୍ତେ ପରିଜା ସାହେବଙ୍କୁ ଅନ୍ୟ ସହାୟକ ଖୋଜିବାକୁ ପଡ଼ିଲା । ପ୍ରଥମେ ରେଭେନ୍ସା କଲେଜର ମୁଖ୍ୟ ଗଣିତାଧ୍ୟାପକ ଡକ୍ଟର ରମାନାଥ ମହାନ୍ତିଙ୍କୁ ଏଥିପାଇଁ ଡକାଗଲା । ସେ ଆସି ମୋ ଅଫିସରେ ଦର୍ପଣ କାମ ଦେଖି ସଫା ମନା କରିଦେଲେ ଯେ ତାଙ୍କର ସଂସ୍କୃତ ଜ୍ଞାନ ନ ଥିବାରୁ ସେ ଏ କାମ କରି ପାରିବେ ନାହିଁ । ଏହାପରେ Sri M. N. Nanda, Sri Sankare Prasad Misra, Sri Gha asyam Samal ଓ Sri Brajabandhu Mishraଙ୍କୁ ଏହି ଭାର ନେବା ନିମନ୍ତେ ପରିଜା ସାହେବ ଲେଖିଲେ । ପ୍ରଥମ ତିନିଜଣ ଭିନ୍ନ ଭିନ୍ନ ଅସୁବିଧା ଦେଖାଇ ଏବଂ କେତେକ ସ୍ୱତନ୍ତ୍ର ସୁବିଧା ଚାହିଁବାରୁ କଟିଗଲେ ଏବଂ କେବଳ ବ୍ରଜବନ୍ଧୁ ମିଶ୍ର ଏ କାମ କରିବା ନିମନ୍ତେ ସମ୍ମତ ହେଲେ । ଏ ଘଟଣାର ପ୍ରାୟ ୩/୪ ବର୍ଷ ପୂର୍ବରୁ ଶ୍ରୀ ବ୍ରଜବନ୍ଧୁ ମିଶ୍ରେ ରେଭେନ୍ସା କଲେଜର ଗଣିତାଧ୍ୟାପକ ଥିଲା ବେଳେ ମୋତେ ଥରେ କଟକ ଡାକି ନେଇ ତାଙ୍କ ଘରେ ଗୋଟାଏ ଖରାବେଳଟି ତମାମ୍ ରଖିଥିଲେ ଏବଂ ମୋ ସହିତ ସିଦ୍ଧାନ୍ତ ଦର୍ପଣର ଆଲୋଚନା କରିଥିଲେ । ବୋଧହୁଏ ଆଗରୁ ଏହି ପରିଚୟ ଥିବାରୁ ସେ ଏ କାମ ନିମନ୍ତେ ରାଜି ହେଲେ । କିନ୍ତୁ ଦୂର ସମ୍ବଲପୁର କଲେଜର ସେ ଅଧ୍ୟକ୍ଷ ଥିବାରୁ ବାଣୀ ବିହାରକୁ ଯାଆସ କରିବାରେ ତାଙ୍କର ଅସୁବିଧା ହେଲା ଏଣୁ ସେ ଥରେଅଧେ ମାତ୍ର ମୋ ଅଫିସ୍‌କୁ ଆସିଛନ୍ତି ଏବଂ ମୋତେହିଁ ସବୁ କାମ କରିଯିବାକୁ ସମ୍ପ୍ରୋତ୍ସାହିତ କରିଛନ୍ତି । ଜଣିକି ସହାୟକଙ୍କ ଏହି ଅସ୍ଥିରତା ଦେଖି ମୁଁ କାହାରିକୁ ଅପେକ୍ଷା ନ କରି ମୋ କାମ କରି ଚାଲିଥାଏ । ମୂଳ ଗ୍ରନ୍ଥ ଓ ପଣ୍ଡିତ ମହାଶୟଙ୍କର ସଂସ୍କୃତ ଟୀକାରେ ଯେଉଁଠାରେ ଅବୋଧ୍ୟତା ଥିଲା, ତାର ନିରାକରଣ ନିମନ୍ତେ, ମୁଁ ମୋର ଭଉଣୀ ଭାଗୀରଥି ପଣ୍ଡା ବ୍ୟାକରଣାଚାର୍ଯ୍ୟଙ୍କ ନାମରେ ସଂସ୍କୃତରେ ଭାଗୀରଥି ଟିପ୍ପଣୀ କରିଛି । ଗ୍ରନ୍ଥର ଅନ୍ୟାନ୍ୟ ଦୁର୍ବୋଧ ବିଷୟର ସୁବିଧା କରି ଅନେକ ଲେଖା ସଂସ୍କୃତରେ ଲେଖିଛି । ସମଗ୍ର ଗ୍ରନ୍ଥରେ ଓଡ଼ିଆ ଅନୁବାଦ କରିଛି । ଇନ୍ଦୁବାବୁଙ୍କ ସହିତ ଇଂରେଜୀ ଅନୁବାଦ କରିବା ପରେ ଗ୍ରନ୍ଥର ଯେଉଁ ବାକି ଅଂଶ (ଗ୍ରନ୍ଥର ପ୍ରାୟ [illegible] ଅଂଶ) ଥିଲା ତାହାର ଇଂରାଜୀ ଅନୁବାଦ ମଧ୍ୟ କରିଦେଇଛି । ମୋର ବିଶ୍ୱାସ ଥିଲା ଗ୍ରନ୍ଥର ମୂଳ ଶ୍ଳୋକ ସହିତ, ସଂସ୍କୃତ ଟୀକାଟିପ୍ପଣୀ, ଓଡ଼ିଆ ଅନୁବାଦ English translation ଓ ଇଂରାଜୀରେ Mathematical interpretation ରହି ଏହା ଏକ ଅତି ସୁନ୍ଦର ଓ ଚମତ୍କାର ଗ୍ରନ୍ଥ ରୂପରେ ପ୍ରକାଶ ପାଇବ ।

ଥିବଜା ସାହେବ ବିଶ୍ୱବିଦ୍ୟାଳୟରୁ ବିଦାୟ ନେଲେ ଏବଂ ତାଙ୍କ ସ୍ଥାନରେ ଡକ୍ଟର ସଦାଶିବ ମିଶ୍ର କୁଳପତି ହୋଇ ଆସିଲେ । ତାଙ୍କର ସଭାପତିତ୍ୱରେ ଦର୍ପଣ କମିଟିର ଗୋଟିଏ ବୈଠକ (ଶେଷ) ବସିଲା । ସେଥିରେ ପଣ୍ଡିତ ମୁକୁନ୍ଦ ମହାପାତ୍ରଙ୍କୁ ତାଙ୍କ ପାରିଶ୍ରମିକ ବାବଦକୁ ଆଉ ହଜାରେ ଟଙ୍କା କୁଳପତି ନିଜେ ଦେଇ ଆସିବାପାଇଁ ମୁଁ ପ୍ରସ୍ତାବ ଦେଲି । ତାହା ପାଶ୍ ହେଲା । ଡକ୍ଟର ମିଶ୍ର ପଣ୍ଡିତ ମହାଶୟଙ୍କ ଗ୍ରାମ ଢେଙ୍କାନାଳର ନନ୍ଦପୁର ଶାସନକୁ ଯାଇ ଅସମର୍ଥ ପଣ୍ଡିତ ମହାଶୟଙ୍କୁ ନିଜେ ହଜାରେ ଟଙ୍କା ହାତରେ ଦେଇ ବି ଆସିଲେ । ଏହା ତାଙ୍କର ବଡ଼ ବଦାନ୍ୟତା । ଏହି ସଭାରେ କିନ୍ତୁ ସେ ଜିଦ ଧରି ବସିଲେ ଯେ ସିଦ୍ଧାନ୍ତ ଦର୍ପଣ ଆମର ପୂର୍ବକଳ୍ପିତ ଗୋଟିଏ (volume) ରେ ସବୁ ଥାଇ ପ୍ରକାଶ ନ ହୋଇ ତାକୁ ୩ଟା volume ରେ ପ୍ରକାଶ କରିବାକୁ ହେବ । ଗୋଟିକରେ ମୂଳ ସଂସ୍କୃତ ଗ୍ରନ୍ଥ ଟୀକା ଓ ଟିପ୍ପଣୀ ଦ୍ୱିତୀୟଟିରେ ମୂଳ ସଂସ୍କୃତ ଓଡ଼ିଆ ଅନୁବାଦ ଏବଂ ୩ୟ ଟିରେ ମୂଳ ସଂସ୍କୃତ ଇଂରାଜୀ ଅନୁବାଦ ଓ mathemetical enterpretation ରହିବ । ମୁଁ ଏହାର ପ୍ରତିବାଦ କରି ବୁଝାଇବାର ଚେଷ୍ଟା କଲି ଯେ ମୂଳକୁ ୩ଥର ଛାପିବା ଗୋଟିଏ binding ଜାଗାରେ ୩ binding କରିବାରେ ଅଯଥା ବେଶୀ ଖର୍ଚ୍ଚ ପଡ଼ିବ । ଗୋଟାଏ volume ହେଲେ ଆମର ଓଡ଼ିଆ ଭାଷାର ନାମ ମଧ୍ୟ ଦେଶ ବିଦେଶରେ ରହିବ । ଏହା କିନ୍ତୁ ସେ ଗ୍ରହଣ କଲେ ନାହିଁ, କ କମିଟିର ଅନ୍ୟ ସଦସ୍ୟମାନେ ମଧ୍ୟ ଏହା ବୁଝିଲେ ନାହିଁ । ଶ୍ରେଷ୍ଠ ନାଲମାନେ ନଈରେ ମିଶିଗଲେ । ଫଳରେ ୩ volume ହେବା ଠିକ୍ ହୋଇଗଲା । ମୋତେ ଡକ୍ଟର ମିଶ୍ର ଓଡ଼ିଆ volume ପ୍ରସ୍ତୁତ କରିବାକୁ କହିଲେ । ଶ୍ରୀଯୁକ୍ତ ଗିରେନ୍ଦ୍ର କୁମାର ଶାସ୍ତ୍ରୀ ଏବଂ ଶ୍ରୀ ପ୍ରସନ୍ନ କୁମାର ମହାନ୍ତିଙ୍କ ସହଯୋଗରେ ମୁଁ ଓଡ଼ିଆ volume ର press copy ପ୍ରସ୍ତୁତ କରି ତାଙ୍କୁ ଦେଲି । ସେ ମୋତେ ଏହାର ମୁଖବନ୍ଧ ଲେଖିବାକୁ କହିଲେ । ମୁଖବନ୍ଧରେ ମୁଁ ସାମନ୍ତଙ୍କ ଭୂସ୍ଥିରତା ବାଦର ଟିକିଏ ଆଲୋଚନା କଲି । ଏହାକୁ ସେ ଉଠାଇ ଦେବାକୁ କହିଲେ । ମୁଁ ସେ ପ୍ରସଙ୍ଗ ଉଠାଇ ଦେବାକୁ ରାଜି ହେଲିନାହିଁ । ଅନ୍ୟ କେହି ତାଙ୍କ ଅଭିଳଷିତ ମୁଖବନ୍ଧ ଲେଖନ୍ତୁ ବୋଲି ବି କହିଲି । କିନ୍ତୁ ସେ ମୁଖବନ୍ଧଟି ନେଲେ । ବହୁଦିନ ନୀରବ ରହିଲେ ଏବଂ ଭୂସ୍ଥିରତାବାଦ ସମ୍ପୃକ୍ତ ଲେଖା ରଖିବାକୁ ମୁଁ ଜିଦ୍ ଧରିବାରୁ ସେ ମୋତେ ସେ ଲେଖା ଫେରାଇ ଦେଲେ । ମୋତେ ଏ କାର୍ଯ୍ୟରୁ ଅବ୍ୟାହତି ନେବାକୁ ହେଲା । ମୁଁ ମୋର ନିଜ ଗୃହକୁ ପୁଣି ଚାଲିଆସିଲି । ଏ ଭିତରେ ପ୍ରାୟ ଦଶବର୍ଷ ବିତିଗଲା । ଏବଂ ଏପର୍ଯ୍ୟନ୍ତ ଏ କାମ ସେମିତି ପଡ଼ି ରହିଲା । ଆଜି ଏତେ ବର୍ଷ ପରେ ପୁଣି ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଏବଂ ଏହାର ପ୍ରଶାସକ ଶ୍ରୀ ଜ୍ଞାନଗ୍ରନ୍ଥ ଓ ଶ୍ରୀ ମାଥୁର୍ ମୋତେ ମୋର ଅଭିମତ ମୁଖବନ୍ଧ ପୁଣି ଲେଖି ଶୀଘ୍ର ପଠାଇବାକୁ ଅନୁରୋଧ କରି ଚିଠି ପଠାଇ ଅଛନ୍ତି ।

ମୁଁ ଅତ୍ୟନ୍ତ ଆଶ୍ୱସ୍ତ ଯେ ବହୁ ଡେରିରେ ହେଲେ ମଧ୍ୟ ବିଶ୍ୱବିଦ୍ୟାଳୟ ତରଫରୁ ଖାଲି ଓଡ଼ିଆ କାହିଁକି, ସିଦ୍ଧାନ୍ତ ଦର୍ପଣର ୩ଟି ଯାକ volume ପ୍ରକାଶ ପାଇବ । ବର୍ତ୍ତମାନ ଯେଉଁ ଓଡ଼ିଆ volume ନିମନ୍ତେ ଏହି ମୁଖବନ୍ଧ ମୁଁ ଲେଖୁଛି ସେ volume ର proof ମୁଁ ଏ ପର୍ଯ୍ୟନ୍ତ ଦେଖିପାରି ନାହିଁ । ତେଣୁ ସେଥିରେ କିଛି ଭୁଲ୍ ଭଟକା ଥିଲେ ସେଥି ନିମନ୍ତେ ମୁଁ ଦାୟୀ ହୋଇ ପାରିବି ନାହିଁ । ବିଜ୍ଞ ପାଠକ ବର୍ଗ ତାର ଯଥାଯଥ ସଂଶୋଧନ କରିନେବେ ।

ଏ ପୁସ୍ତକ ସାରା ଗ୍ରନ୍ଥରେ କେବଳ ଓଡ଼ିଆ ଅନୁବାଦ ମାତ୍ର । ଏଣୁ ଏଥିରେ ଗାଣିତିକ ଯୁକ୍ତି (proof ଆଦି) ନାହିଁ । ଯୁକ୍ତି, ଉପପତ୍ତି, କ୍ଷେତ୍ରାଦି (Figures) ସବୁ ସଂସ୍କୃତ ଟୀକା ଟିପ୍ପଣୀରେ ରହିଛି । ଇଂରେଜୀରେ ମଧ୍ୟ କେତେକ ଅତି ବିଶେଷ କଥା ରହିଛି, ମୁଁ କହିଲି ପରି ସବୁକୁ ନେଇ ଏକ volume କରାଯାଇଥିଲେ ପାଠକମାନଙ୍କୁ ଆଉ ଅସୁବିଧା ହୋଇ ନ ଥାନ୍ତା । ଏବେ ଏ ସବୁ ନ ଛପାଇଲେ କାମ ଖଣ୍ଡିଆ ପରି ନିଶ୍ଚୟ ମନେ ହେବ । ଏଣୁ ଅତିଶୀଘ୍ର ଏ ଦିଗରେ ସମସ୍ତେ ଦୃଷ୍ଟି ଦେବା ଉଚିତ । ତା' ହେଲେ ସାମନ୍ତଙ୍କ ଅସଲ କୃତିତ୍ୱ ପ୍ରକାଶ ପାଇ ପାରିବ, ଏଥିପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଅଶେଷ ଧନ୍ୟବାଦ ।

ଶ୍ରୀ ବୀରହନୁମାନ ଶାସ୍ତ୍ରୀ
ବିଜୟା ଦଶମୀ ୧୯୭୬ ପୁଷ୍ପ

— —୫✳୫— —

ଶ୍ରୀକୃଷ୍ଣାୟ ନମଃ

ଅବିଘ୍ନମସ୍ତୁ

# ସିଦ୍ଧାନ୍ତ ଦର୍ପଣଃ

## ମଧ୍ୟମାଧିକାରଃ

## ପ୍ରଥମଃ ପ୍ରକାଶଃ

### କାଳ ବର୍ଣ୍ଣନମ୍

ଶ୍ରୀଭୂମାଧବଚଣ୍ଡଚକ୍ରବନଭୂଭଦ୍ରାଭିରଭ୍ୟୁଜ୍ଜ୍ୱଳଂ
ଶ୍ରୀକଣ୍ଠପ୍ରମୁଖାଖିଳାମରଶିଖାଜୁଷ୍ଟାଂଘ୍ରି ପୀଠୋପଳମ୍ ।
ଶ୍ରୀନୀଳାଚଳମୌଳିମଣ୍ଡନମହାନୀଳାୟମାନଂ ମହଃ
ଶ୍ରୀଭୂମାଧରତସ୍କରଂ ଭବତୁ ନଃ ପ୍ରତ୍ୟୂହହତ୍ୟୁଦ୍ୟତମ୍ ।୧।

ଶ୍ରୀନୀଳାଚଳର ଶିରୋଭୂଷଣ ହେତୁ ଅତିମାତ୍ରାରେ ନୀଳ * ଦେଖାଯାଉଥିବା ତେଜ ଆମର ସମସ୍ତ ବିଘ୍ନ ବିନାଶ କରିବା ନିମନ୍ତେ ଜାଗ୍ରତ ରହନ୍ତୁ । ଲକ୍ଷ୍ମୀ, ଭୂଦେବୀ (ବିଶ୍ୱଧାତ୍ରୀ), ମାଧବ, ଚଣ୍ଡ (ସୁଦର୍ଶନ), କୃଷ୍ଣ (ଜଗନ୍ନାଥ), ବଳଭଦ୍ର ଓ ସୁଭଦ୍ରା † ଙ୍କ ସହଯୋଗରେ ଏହି ତେଜ ଉଜ୍ଜ୍ୱଳତର ହୋଇଅଛି । ପୁଣି ମହାଦେବଙ୍କ ଗହଣରେ ଦେବତାମାନେ ଆସି ରତ୍ନସିଂହାସନର ପ୍ରସ୍ତରରେ ମଥା ଲଗାଇ ଏହି ତେଜକୁ ପ୍ରଣାମ କରୁଅଛନ୍ତି । ଏହି ତେଜ ସୌନ୍ଦର୍ଯ୍ୟାତିଶଯ୍ୟ କନ୍ଦର୍ପକୁ ପରାଜିତ କରୁଅଛି ।

---

* ନୀଳ ଏଠାରେ କଳା ଅର୍ଥରେ ବ୍ୟବହୃତ—"କୃଷ୍ଣେନୀଳା"...

† ନିଦ୍ରାଭଙ୍ଗାତ୍ ମହାବାହୋ ସପ୍ତଧା ମୂର୍ତ୍ତିସଙ୍କ୍ଷଭବ (ନୀଳାଦ୍ରି ମହୋଦୟ) । ରତ୍ନସିଂହାସନରେ ସାତଗୋଟି ମୂର୍ତ୍ତି ଅବସ୍ଥାପିତ ଥା'ନ୍ତି ।

ଗାଙ୍ଗେୟଦ୍ୟୁତିଭଙ୍ଗଦାଙ୍ଗଲତୟା ଶ୍ରୀରାଧୟାଲିଙ୍ଗିତଂ
ବିଦ୍ୟୁତ୍ସଙ୍ଗିଘନାଘନାପଘନରୁକ୍ ପ୍ରେମାମୃତୈକାଶ୍ରୟମ୍ ।
ସତ୍ସଂବିତ୍ସୁଖମକ୍ଷରାକ୍ଷରପରଂ ପୂର୍ଣ୍ଣାତ୍ପୂର୍ଣ୍ଣୋତ୍ତମଂ
ଶ୍ରୀକୃଷ୍ଣାଖ୍ୟମୁପାସ୍ମହେ ସୁରୁଚିରଂ ବେଦାନ୍ତବେଦ୍ୟଂ ମହଃ ।୨।

ଶ୍ରୀକୃଷ୍ଣଙ୍କର ମନୋହର କାନ୍ତିକୁ ଆମ୍ଭେମାନେ ଉପାସନା କରୁଅଛୁ । ଏହି କାନ୍ତି ଅତ୍ୟନ୍ତ କମନୀୟ ଓ ସୁନ୍ଦର । ବେଦାନ୍ତଶାସ୍ତ୍ରଦ୍ୱାରା ହିଁ ଏହି କାନ୍ତିର ମହତ୍ତ୍ୱ ଉପଲବ୍ଧି କରାଯାଇପାରେ । ଏହି କାନ୍ତି ସ୍ୱୟଂସମ୍ପୂର୍ଣ୍ଣ—ଏହାର ଆଉ ପରିପୂରକ ନାହିଁ । ଏଣୁ ଏହା ଅତୁଳନୀୟ । ଏହା ଜୀବଗତ ନୁହେଁ କି ପଞ୍ଚଭୂତଗତ ମଧ୍ୟ ନୁହେଁ—ଦୁର୍ଲଭ । ଏହା ସଚ୍ଚିତ୍ ଓ ଆନନ୍ଦ ରୂପ ନେଇଅଛି । ପ୍ରେମରୂପକ ଅମୃତ ଏହି କାନ୍ତିକୁ ହିଁ ଆଶ୍ରୟ କରି ରହିଅଛି । ସୁନାର ତେଜକୁ ନିନ୍ଦା କରୁଥିବା ଶ୍ରୀରାଧାଙ୍କର ଅଙ୍ଗଲତା ଏହି ତେଜକୁ (କୃଷ୍ଣଙ୍କୁ) ଆଲିଙ୍ଗନ କରି ରହିଥିବାରୁ ଏହା ବିଜୁଳିମାରୁଥିବା କଳାହାଣ୍ଡିଆ ବର୍ଷୁକ ମେଘର କାନ୍ତିକୁ ଧାରଣ କରିଅଛି ।

ଜୟତି ଜଗତୀଭର୍ତ୍ତୁର୍ଧାମାଦ୍ଭୁତଂ ପରମାଣୁତାଂ
ଯଯୁରପି ଜଗତ୍କୋଷା ଯଲ୍ଲୋମଜାଲ ବିଲାବଲୌ ।
ଯଦନିଲଜଲଜ୍ୟୋତିଃ—କ୍ଷୌଣୀପରାଣୁଗୃହୋଦର—
ସ୍ଫୁରଦପି ସୁରଗଣୈଃ କ୍ରୀଡନ୍ତି ଜୈରବତାରକୈଃ ।୩।

ଜଗତର ପାଳକ ପରମେଶ୍ୱରଙ୍କର ଆଶ୍ଚର୍ଯ୍ୟଜନକ (ତେଜ) କାନ୍ତି ସର୍ବଶ୍ରେଷ୍ଠ ହୋଇ ରହିଅଛି । ବିରାଟରୂପୀ ତାଙ୍କର ଲୋମକୂପରେ ବ୍ରହ୍ମାଣ୍ଡ ଅନ୍ତର୍ଗତ ସଚରାଚର ପୃଥିବୀ (ମୃତ୍ତିକା) ପ୍ରଭୃତି ପଞ୍ଚଭୂତ ଅତି [illegible] ( ପରମାଣୁ ) ରୂପରେ ଲୁଚି ରହିଥିଲେ ମଧ୍ୟ ସେ ନିଜେ ସେହି ଆକାଶ ଆଦି ପଞ୍ଚଭୂତ ମଧ୍ୟରେ ଦେହ ଧାରଣ କରି କ୍ରୀଡ଼ା କରନ୍ତି । ପରମେଶ୍ୱରଙ୍କର ଏହି ଦେହ ଧାରଣ ହିଁ ଅବତାର । ଅବତାର ଅସଂଖ୍ୟ । ଦେବତାମାନେ ମଧ୍ୟ ତାହାର ହିସାବ ରଖି ନାହାନ୍ତି ।

ଶ୍ରୀଭାସ୍କରପ୍ରଭୃତି ଖେଚର ଚକ୍ରବାଳଂ
ନତ୍ୱା ଗୁରୁଂ ସ୍ୱପିତରୌ ତଦନୁଗ୍ରହାଢ୍ୟଃ ।
ମୂଢୋଽପ୍ୟଗାଢଗଣକପ୍ରତିପତ୍ତୟେଽହଂ
ସିଦ୍ଧାନ୍ତଦର୍ପଣ ଇତି ପ୍ରଥୟାମି ଶାସ୍ତ୍ରମ୍ ।୪।

ମୁଁ ଅଳ୍ପଜ୍ଞ ହେଲେ ମଧ୍ୟ ସୂର୍ଯ୍ୟ ପ୍ରଭୃତି ଗ୍ରହମାନଙ୍କୁ ଏବଂ ନିଜର ଗୁରୁ ଓ ପିତାମାତାଙ୍କୁ ପ୍ରଣାମ ପୂର୍ବକ ସେମାନଙ୍କ ଆଶୀର୍ବାଦ ଲାଭ କରି ଜ୍ୟୋତିଷଶାସ୍ତ୍ର ପଢ଼ିବାକୁ ଆସୁଥିବା ଅତି ଅଳ୍ପଜ୍ଞ ଜ୍ୟୋତିର୍ବିଦମାନଙ୍କର ସୁବୋଧ ନିମନ୍ତେ ଏହି ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ରଚନା କରୁଅଛି ।

**ଗ୍ରନ୍ଥେଽସ୍ମିନ୍ନଧିକାରପଞ୍ଚକମହଂ ବକ୍ଷ୍ୟାମି ମଧ୍ୟସ୍ଫୁଟ—**
**ତ୍ରିପ୍ରଶ୍ନାଡଡଗୋଳକାଳସହିତଂ ସାଙ୍ଗଂ ସ୍ୱବକ୍ତ୍ରୋଦ୍‌ଗତୈଃ ।**
**ବାକ୍ୟୈଃ କ୍ୱାପି ଦବାକରାଂଶ—ଗଦତୈର୍ଗ୍ରନ୍ଥାନ୍ତରୋଦ୍ଧୃତୈ—**
**ରୈକାର୍ଥ୍ୟାତ୍ କ୍ୱଚଦନ୍ୟତେ ସୁବତତେ ବୋଧାୟ ବାଳାବଳେଃ ।୫।**

ଏହି ଗ୍ରନ୍ଥରେ ମଧ୍ୟ, ସ୍ଫୁଟ, ବିଶେଷ କଥା ସହିତ ତ୍ରିପ୍ରଶ୍ନ, ଗୋଲ ଓ କାଳ ଏପରି ପାଞ୍ଚଟି ଅଧିକାର (ପ୍ରଧାନ ଅଧ୍ୟାୟ) କହିବି ଏବଂ ଏଗୁଡ଼ିକ ସାଙ୍ଗୋପାଙ୍ଗ ହେବ । ଏଥିରେ ନିଜର ରଚନା, ସୂର୍ଯ୍ୟ ସିଦ୍ଧାନ୍ତର ଶ୍ଲୋକ ଓ ଅନ୍ୟ ଆବଶ୍ୟକ ଗ୍ରନ୍ଥର ମଧ୍ୟ ଶ୍ଲୋକ ରହିବ । ଏଣୁ ଏହି ଗ୍ରନ୍ଥ ବିସ୍ତୃତ ମଧ୍ୟ ହୋଇପଡ଼ିବ । ଗୋଟିଏ କଥାକୁ ନେଇ ଏଥିରେ ବେଳେ ବେଳେ ସମାନାର୍ଥକ ଅନ୍ୟ ଗ୍ରନ୍ଥ—ଶ୍ଳୋକ ରହିବ । ଉଦ୍ଦେଶ୍ୟ—ଜ୍ୟୋତିଷ (ଗଣିତ) ନ ଜାଣିଥିବା ଲୋକେ ଯେପରି ସୁବିଧାରେ ଏହା ବୁଝିପାରିବେ ।

**ନାସ୍ତେଃକାଳାବୟବ-କଳନା ଯଦ୍‌ଦୃକ୍-ଶାସ୍ତ୍ରସିଦ୍ଧା**
**ଶ୍ରୌତ-ସ୍ମାର୍ତ୍ତବ୍ୟବହୃତିରପି ଛିଦ୍ୟତେ ତଦ୍ଧର୍ମ୍ମ୍ୟା ।**
**ତସ୍ମାଦ୍ଦେଷା କୃତିରନୃତବାଗସ୍ତୁ ବା ପ୍ରସ୍ତୁତାର୍ଥା**
**ଗ୍ରାହ୍ୟା ଦକ୍ଷୈର୍ଗ୍ରହଣଭଗଣାଦ୍ୟେବ ସଂଲକ୍ଷ୍ୟ ସାକ୍ଷାତ୍ ।୬।**

ସମୟର ଆଦି ଅନ୍ତ ନାହିଁ । କଳା, ଦଣ୍ଡ, ଦିନ, ମାସ, ବର୍ଷ ପ୍ରଭୃତି, ଏହି ସମୟର ଅବୟବ, ଅର୍ଥାତ୍ ଅଂଶ । ଏଗୁଡ଼ିକ ଗଣିତରେ ଆଣିଲା ପରେ ଯଦି ପ୍ରତ୍ୟକ୍ଷରେ ଦେଖା-ନ ଯାଏ (କୌଣସି ଦେଶରେ), ତାହାହେଲେ ସେହି ଦେଶର ବୈଦିକ ଓ ସ୍ମାର୍ତ୍ତକର୍ମ ଧର୍ମପ୍ରାପ୍ତି ଉଦ୍ଦେଶ୍ୟରେ ପ୍ରଯୁକ୍ତ ହେଲେ ମଧ୍ୟ ଫଳପ୍ରଦ ହୁଏନାହିଁ । ଏଣୁ ଏହି ସଦୁଦ୍ଦେଶ୍ୟରେ ରଚିତ ମୋର ଏହି ଗ୍ରନ୍ଥ (ସିଦ୍ଧାନ୍ତ ଦର୍ପଣ) ଯଥାର୍ଥ କି ଅଯଥାର୍ଥ, ଏଥିରେ ପ୍ରଦତ୍ତ ଗ୍ରହଣ ଓ ଭଗଣ ଆଦିର ପର୍ଯ୍ୟବେକ୍ଷଣ ପୂର୍ବକ ସମୀକ୍ଷା କରି ପ୍ରାଜ୍ଞ ଲୋକେ ଗ୍ରହଣ କରିବା ଦେବେ ।

**ପ୍ରାକ୍‌ସିଦ୍ଧାନ୍ତପ୍ରସିଦ୍ଧା ରବିଶଶିଭଗଣା ଘସ୍ରମାସାବ୍ଦସଂଖ୍ୟା**
**ଭୂଗୋଳ-ବ୍ୟାସ-ଜୀବୋପକରଣ-ସହିତାଃ ସର୍ବଦାସନ୍ନସତ୍ୟାଃ ।**
**କିନ୍ତନ୍ୟେଷାଂ ଗ୍ରହାଣାମିହ ଭଚଣଗଣସ୍ୟୋଚ୍ଚପାତେଷୁକକ୍ଷା—**
**ବିମ୍ବାଦୀନାଂ ବିସଂବାଦତ ଇତରଜନୈଃ କଳ୍ପ୍ୟତେ ଗ୍ରନ୍ଥଜାତମ୍ ।୭।**

ରବି ଓ ଚନ୍ଦ୍ରର ଭଗଣ, ଦିନ, ମାସ ଓ ବର୍ଷର ସଂଖ୍ୟା (ଏକ କଳ୍ପରେ) ପୃଥିବୀ ଓ ତାର ବ୍ୟାସ, ଜ୍ୟା ଓ କୋଟିଜ୍ୟା ଆଦି ପଦାର୍ଥ ସବୁବେଳେ ପ୍ରାୟ ସମାନ ଥାଏ । ଏଣୁ

---

* । ଆଡତ—ବିସ୍ତୃତ (ଆ+ତନୁ+କ୍ତ)

ଏଗୁଡ଼ିକ ପ୍ରାଚୀନ ସିଦ୍ଧାନ୍ତରେ ଯାହା, ମୋ ଗ୍ରନ୍ଥରେ ମଧ୍ୟ ପ୍ରାପ୍ତ ତାହାହିଁ ଅଛି । ମାତ୍ର ଅନ୍ୟ ଗ୍ରହମାନଙ୍କର ଭଗଣ ସଂଖ୍ୟା, ଉଚ୍ଚ, ପାତ, ଶର, କକ୍ଷା ଓ ବିମ୍ବ ଆଦିର ପରିମାଣ ପ୍ରଭୃତି ଭିନ୍ନହୋଇ ପଡ଼ୁଥିବାରୁ ସମସ୍ତ ଭେଦରେ ଅନ୍ୟ ଲୋକେ ମଧ୍ୟ ନୂଆ ନୂଆ ଗ୍ରନ୍ଥ ରଚନା କରି ବସନ୍ତି ।

**ତତ୍ତଦ୍‌ଗ୍ରନ୍ଥେଷୁ ଯସ୍ମିନ୍ନଭବତ ସୁମହତ୍ତାରତମ୍ୟଂ ଗ୍ରହାଦେ—**
**ର୍ଦୃକ୍‌ସଂବାଦାତ୍ ସ ତଥ୍ୟୋ ବହୁତରତମତଃ କଥ୍ୟତେଽସାବତଥ୍ୟଃ ।**
**ପୂର୍ବାଗ୍ରଚୈର୍ଯ୍ୟେ—ସ୍ତଦସ୍ମଦ୍‌ଗ୍ରଥନମପିଶରସ୍ଥାୟି ଦୃକ୍‌ସିଦ୍ଧଭାବା—**
**ଦବ୍ୟର୍ଥଂ ଭବ୍ୟସେବ୍ୟଂ ଭବତୁ ହି ଭବନେ ଭାବଭୂତାନଭିଜ୍ଞାଃ ।୮।**

ଏହି ନୂଆ ନୂଆ ଗ୍ରନ୍ଥରେ ସାଧିତ 'ଗ୍ରହଣ' ଆଦିକୁ ଦେଖିବାବେଳେ ଅତି ବେଶୀ ପ୍ରଭେଦ ନ ହେଲେ ଏଗୁଡ଼ିକୁ ଉପଯୁକ୍ତ ଗ୍ରନ୍ଥ ବୋଲି ଧରାଯାଇଥାଏ । କିନ୍ତୁ ବେଶୀ ପ୍ରଭେଦ ପରିଲକ୍ଷିତ ହେଲେ ଏଗୁଡ଼ିକୁ ଅସାର ବୋଲି କୁହାଯାଏ । ଏହି କଥା ପୂର୍ବାଚାର୍ଯ୍ୟମାନେ କହିଯାଇଛନ୍ତି । ଏଥିରୁ ମୁଁ ଧରିନେଉଛି ଯେ ମୋର ଏ ରଚନା ବହୁକାଳ ପାଇଁ ଉପଯୋଗୀ ହେବ । କାରଣ ଏଥିରେ ସାଧିତ ସବୁ ବିଷୟ (ଦୃକ୍‌ସିଦ୍ଧ) ପ୍ରତ୍ୟକ୍ଷରେ ଦେଖା ପଡ଼ୁଛି । ଏଣୁ ଏହାକୁ ଶିଷ୍ଟ ଲୋକେ ପ୍ରୟୋଗ କରିବେ ଏବଂ ଏହା ଯଥାର୍ଥ ହୋଇ ରହିବ । ସଂସାରର ଲୋକେ ଅତୀତ ଓ ଭବିଷ୍ୟତ କଥା ଯଥାର୍ଥ ଅନୁଭବକୁ ଆଣିପାରୁ ନ ଥିବାରୁ ବର୍ତ୍ତମାନକୁ ହିଁ ବେଶୀ ପରୀକ୍ଷାରେ ଲଗାନ୍ତି । ମୋର ଏ ଚେଷ୍ଟା ଠିକ୍ କି ନୁହେଁ ସେମାନେ ବର୍ତ୍ତମାନ ହିଁ ପରୀକ୍ଷା କରି ଠିକ୍ ଥିବା ଦେଖି ଆନନ୍ଦରେ ଗ୍ରହଣ କରନ୍ତୁ ।

**ଯଦୈବଦୃଗ୍-ଗୋଚରତାଂ ଯଦେତ ତଦା ତଦେବା-ଦ୍ରିୟତେହି ଶାସ୍ତ୍ରମ୍**
**ଯଦ୍‌ବାସନା-ବାର୍ତ୍ତିକଏବମାହ 'ପଶ୍ୟନ୍ ଜନାନଲ୍ପମତୀନ୍ ନୃସିଂହଃ ।୯।**

'ନୃସିଂହ' ସିଦ୍ଧାନ୍ତ-ଶିରୋମଣିର ବାସନା-ବାର୍ତ୍ତିକ ନାମରେ ଗୋଟିଏ ଟୀକା କରି, ସେଥିରେ ଲେଖିଛନ୍ତି—"ଲୋକଙ୍କର ବୁଦ୍ଧି ଅଳ୍ପ" । ଏଣୁ ଯେତେବେଳେ ଯେଉଁ ଶାସ୍ତ୍ର (ଗ୍ରନ୍ଥ) ପ୍ରତ୍ୟକ୍ଷ ହେଉଥାଏ, ତେତେବେଳେ ତାହାର ଆଦର କରାଯାଇଥାଏ ।

**ଶାସ୍ତ୍ରେ କୃତେ ଯଦ ଜଗଦ୍‌ବ୍ୟବହାରହେତୌ**
**ଗମ୍ଭୀରତା ଭବତତନ୍ନିଖିଳ-ପ୍ରବୃତ୍ତଃ**
**ନ ସ୍ୟାଦତୋଽଏ ଗଣିତେ ସୁଗମାଭିଧେୟେ**
**ଶବ୍ଦସ୍ୟ ପାଟବମନାଦରଣୀୟମେବ ।୧୦।**

---

୧ । ୧୫୮୬ ଖ୍ରୀଷ୍ଟାବ୍ଦରେ ନୃସିଂହଙ୍କ ଜନ୍ମ—ଗଣକ ତରଙ୍ଗିଣୀ ଦ୍ରଷ୍ଟବ୍ୟ ।

ଜଗତର ଲୋକଙ୍କ ବ୍ୟବହାର ନିମନ୍ତେ ଶାସ୍ତ୍ର କରାଯାଉଥିବାବେଳେ ସେଥିରେ (ଶବ୍ଦ ଓ ଅର୍ଥଗତ) ଗୂଢ଼ତା ରହିବା ଉଚିତ ନୁହେଁ । କାରଣ ତାହାହେଲେ ସେହି ଶାସ୍ତ୍ରରେ ସବୁ ଲୋକଙ୍କର ପ୍ରବୃତ୍ତି ହେବନାହିଁ । ଗଣିତ ଶାସ୍ତ୍ର ସୁବିଧାରେ ବୁଝିବା ଭଳି ଲେଖାଯିବା ଦରକାର । ଏଥିରେ ଶବ୍ଦ ପ୍ରୟୋଗ ପଟୁ ତା ଛାଡ଼ିବା ଉଚିତ ।

(ଗଣିତ ବିଷୟ ସ୍ୱତଃ କଠିନ । ଏଥିରେ ଶବ୍ଦ ଓ ଅର୍ଥଗତ ଗୂଢ଼ତା ରହିବାଅନୁଚିତ ।)

**ସ୍କନ୍ଧତ୍ରୟସ୍ୟମଧ୍ୟେ ଗଣିତସ୍କନ୍ଧୋ ବିଚିନ୍ତ୍ୟ ଏବାଦୌ ।**
**ହୋରାଜାତକବେଦୀ ଯନ୍ମୂଢତେ କୃତେ୍ୟଷୁ ସଂଶେତେ ।୧୧।**

ଗଣିତ, ଫଳିତ ଓ ମୁହୂର୍ତ୍ତ ଭେଦରେ ଜ୍ୟୋତିଷ ଶାସ୍ତ୍ର ତିନି ସ୍କନ୍ଧରେ ବିଭକ୍ତ । ଏ ତିନି ମଧ୍ୟରୁ ପ୍ରଥମେ ଗଣିତ କଥା ହିଁ ଚିନ୍ତା କରାଯାଏ । କାରଣ ଏହା ଜଣା ନ ଥିଲେ ଫଳିତ ଓ ମୁହୂର୍ତ୍ତରେ କାମ କଲାବେଳେ ସନ୍ଦେହରେ ପଡ଼ିବାକୁ ହୋଇଥାଏ ।

**ଶ୍ରୀଭାସ୍କରୋକ୍ତପାଟୀ ବିମଳାସ୍ତେ ତନ୍ନୟାପି ସା ନୋକ୍ତା**
**ଗ୍ରହଗଣିତାରମ୍ଭୋଽୟଂ ଭୂୟାଦ୍ଭବ୍ୟାୟ ଭୂତାନାମ୍ ।୧୨।**

ଶ୍ରୀ ଭାସ୍କରାଚାର୍ଯ୍ୟଙ୍କର ପାଟୀଗଣିତ (ଲୀଳାବତୀ) ଅତି ବିଶୁଦ୍ଧଭାବରେ ଲେଖା ଯାଇଅଛି । ଏଣୁ ସେହି ପାଟୀଗଣିତ କଥା ଆଉ ମୁଁ କହୁନାହିଁ, ମୁଁ ବର୍ତ୍ତମାନ ଗ୍ରହ ଗଣିତ ଆରମ୍ଭ କରୁଅଛି । ଏହା ପ୍ରାଣୀମାନଙ୍କର ମଙ୍ଗଳଜନକ ହେଉ ।

(ନୋଟ୍—ସିଦ୍ଧାନ୍ତ ଗ୍ରନ୍ଥ ମାନଙ୍କରେ କେବଳ ଗଣିତର ଚର୍ଚ୍ଚା ମଧ୍ୟ ସ୍ୱତନ୍ତ୍ର ଭାବରେ ହେଉଥିଲା । ଭାସ୍କର ଏଥି ପାଇଁ ସ୍ୱତନ୍ତ୍ର ଗ୍ରନ୍ଥ କଲେ । ସାମନ୍ତେ ସେ ଚର୍ଚ୍ଚା କରି ନାହାନ୍ତି)

**ସିଦ୍ଧାନ୍ତଦର୍ପଣେଽସ୍ମିନ୍ ସଲୋଚନାନାଂ ପ୍ରତ୍ୟର୍ପଣେ ନିପୁଣାଃ**
**କ୍ୱାପି କ୍ୱାପି ବିଶେଷଂ ପଶ୍ୟତ ଗଣିତାଗମ-ଗ୍ରାମାତ୍ ।୧୩।**

ଦକ୍ଷ ପଣ୍ଡିତମାନଙ୍କୁ ମୋର ନିବେଦନ ଏହିକି, ସେମାନେ ଏ ଗ୍ରନ୍ଥର ସ୍ଥଳ ବିଶେଷରେ ଥିବା ( ଅନ୍ୟଗଣିତ ସିଦ୍ଧାନ୍ତ ଗ୍ରନ୍ଥରେ ନଥିବା ) ବିଶେଷ ବିଶେଷ କଥା ଦୟା କରି ଦେଖି ନେବେ । କାରଣ, ଏହି ଗ୍ରନ୍ଥ ଚକ୍ଷୁଷ୍ମାନ୍ ଲୋକମାନଙ୍କର ତୃପ୍ତି ନିମନ୍ତେ ଲେଖାଯାଇଅଛି ।

**ଶ୍ରୁତ୍ୟର୍ଥଙ୍କ କର୍ମ୍ମ ପ୍ରବୃତ୍ତୈବ ଯଜ୍ଞ—**
**କ୍ରିୟାଃ କାଳ ମାସାଦ୍ୟ ବୈଶଦ୍ୟମାପୁଃ ।**
**ଇତଃ ଶାସ୍ତ୍ରତଃ କାଳବୋଧୋ ଯତୋଽଙ୍ଗଂ**
**ଶ୍ରୁତେର୍ଜ୍ୟୋତିଷଂ ପ୍ରୋକ୍ତମସ୍ମାନ୍ ମୁନୀନ୍ଦ୍ରୈଃ ।୧୪।**

ବେଦ ଲୋକଙ୍କୁ ଯଜ୍ଞ କର୍ମରେ ପ୍ରବୃତ୍ତ କରାଏ । ଯଜ୍ଞ କର୍ମ ସବୁ ସମୟ (ମୁହୂର୍ତ୍ତ)କୁ ନେଇ ହିଁ ଫଳଦାୟକ ହୋଇଥାଏ । ଏହି ମୁହୂର୍ତ୍ତଜ୍ଞାନ ପୁଣି ଯେହେତୁ ଏହି ଜ୍ୟୋତିଷ ଶାସ୍ତ୍ର

ଦ୍ୱାରା ହିଁ ହୋଇଥାଏ, ତେଣୁ ଏହାକୁ ବେଦର ଅଙ୍ଗ ବୋଲି କୁହାଯାଏ । ଏହା ମୁନିମାନେ ଆଗରୁ କହି ଅଛନ୍ତି—ବେଦର ଯେ ଉପଯୋଗୀ—ସେ ବେଦର ଅଙ୍ଗ ।

**ଆମ୍ନାୟାଖ୍ୟସ୍ୟପୁଂସଃ ସମଜନି ନୟନଂ ଜ୍ୟୋତଷଂ ଶବ୍ଦଶାସ୍ତ୍ରଂ**
**ବକ୍ତ୍ରଂ ଶ୍ରୋତ୍ରଂ ନିରୁକ୍ତଂ ଙ୍କମତ ଇହ ଭୁଜା—ନାସିକେ କଳ୍ପଶିକ୍ଷେ ।**
**ଛନ୍ଦଃ ପଦ୍ଦ୍ୱନ୍ଦ୍ୱମସ୍ମାଦ୍ଗୁରୁତର ମଖିଳାଦଙ୍ଗତୋ ବେଦଚକ୍ଷୁ—**
**ର୍ଜ୍ୟୋତଃଶାସ୍ତ୍ରଂ ସମସ୍ତାଙ୍ଗଭୃଦପି ନ ଯତଃ କର୍ମ୍ମଠୋନଷ୍ଟଦୃଷ୍ଟିଃ ।୧୪।**

ବେଦ ଗୋଟିଏ ପୁରୁଷ ହେଲେ ଜ୍ୟୋତିଷ ତାର ଚକ୍ଷୁ, ବ୍ୟାକରଣ ତାର ମୁଖ, ନିରୁକ୍ତ ତାର କର୍ଣ୍ଣ, କଳ୍ପ ଶାସ୍ତ୍ର ତାର ବାହୁ, ଶିକ୍ଷା ଶାସ୍ତ୍ର ତାର ନାସିକା ଏବଂ ଛନ୍ଦଶାସ୍ତ୍ର ତାର ଦୁଇପାଦ । ଏହିପରି ଛ'ଟି ଶାସ୍ତ୍ର ବେଦର ଛ'ଅଙ୍ଗ ରୂପରେ ପରିଗଣିତ । ସମସ୍ତ ଅଙ୍ଗ ଥାଇ ମଧ୍ୟ ଆଖି ନ ଥିବା ଲୋକ ଯଥାର୍ଥ ଭାବରେ କାମ କରିପାରେ ନାହିଁ । ଏଣୁ ଏହି ଛ' ଅଙ୍ଗ ମଧ୍ୟରେ ବେଦର ଚକ୍ଷୁ ରୂପକ ଅଙ୍ଗ ଜ୍ୟୋତିଷ ସର୍ବଶ୍ରେଷ୍ଠ ଅଙ୍ଗ ରୂପେ ଗୃହୀତ ହୋଇଅଛି ।

**ଜ୍ୟୋତଃସନ୍ଦର୍ଭ-ସଙ୍ଘ କଷବଶଦମତ ର୍ଜାତକ ପ୍ରଶ୍ନଯାତ୍ରା--**
**ତତ୍ତ୍ୱଜ୍ଞଃ ପ୍ରାଜ୍ଞଗୋଷ୍ଠୀ ପ୍ରକଟଗୁଣଘଟୋଽପ ସ୍ଫୁ ଲେକସ୍ତୁତାଜ୍ଞଃ ।**
**ଅଦ୍ଧାସିଦ୍ଧାନ୍ତ-ବୋଦ୍ଧା ନ ଯଦ ସ ପୁରୁଷଃ ଶୋଭତେ ନୋଭତେଜଃ-**
**ପୁଞ୍ଜବ୍ୟାପ୍ତ ପି ଲୁପ୍ତାମୃତ-କିରଣରୁଚର୍ଦ୍ଦର୍ଶଜାତେବ ରାତ୍ରିଃ ।। ୧୭ ।।**

ଜଣେ ଲୋକ ସମସ୍ତ ଜ୍ୟୋତିଷ ଗ୍ରନ୍ଥ ଅଧ୍ୟୟନ କରିପାରେ ଏବଂ ସେଥିରେ ନିଷ୍ଣାତ ହୋଇପାରେ; ଜାତକ, ପ୍ରଶ୍ନ, ଯାତ୍ରା ଆଦି ତତ୍ତ୍ୱ ମଧ୍ୟ ଖୁବ୍ ଭଲ ଭାବରେ ଜାଣିପାରେ; ସେଥିରେ ପ୍ରବୀଣ ହୋଇଥିବା ପଣ୍ଡିତମଣ୍ଡଳୀରେ ସେ ତାର ନିଜ ଗୁଣଗଣର ପରିଚୟ ବି ଦେଇପାରେ ଏବଂ ତାହାର ଆଦେଶକୁ ମଧ୍ୟ ସମସ୍ତେ ଶିରୋଧାର୍ଯ୍ୟ କରିପାରନ୍ତି; କିନ୍ତୁ ସେ ଯଦି (ଗଣିତର) ସିଦ୍ଧାନ୍ତରେ ସୁପଣ୍ଡିତ ନୁହେଁ, ତାହା ହେଲେ ଚନ୍ଦ୍ରହୀନ ଅଥଚ ନକ୍ଷତ୍ରପୁଞ୍ଜ ବେଷ୍ଟିତ ଅମାରାତ୍ରି ପରି ସେ ଅଶୋଭନୀୟ ହୋଇ ରହେ—ଏଥିରେ ଆଦୌ ସନ୍ଦେହ ନାହିଁ ।

**ଯତ୍ରତ୍ରୁଟ୍ୟାଦକାଳଃ ପ୍ରଳୟଚରମକଃ ଖେଚରାଣାଂ ପ୍ରଚାରଃ**
**ପ୍ରଶ୍ନାଶ୍ଚୈବୋତ୍ତରାଣି ଦ୍ୱିବଧ-ଗଣିତମପ୍ୟୁଦ୍ଭବୋ ଭୂତରାଶେଃ ।**
**ସ୍ଥାନଂଭୂ-ଭଗ୍ରହାଦେର୍ଗ୍ରହଣ-ଖଗଯୁତ-ଜ୍ୟା-ଧନୁଷ୍କର୍ମଯନ୍ତ୍ର—**
**କ୍ଷେତ୍ରାଦ୍ୟଂ ଗଦ୍ୟତେ ସଦ୍ଗଣକଗଣବରୈରେଷ ସିଦ୍ଧାନ୍ତଉକ୍ତଃ ।୧୭**

୧୭ । **ଅଦ୍ଧା—ନିଶ୍ଚୟାତ୍ମକ ଅବ୍ୟୟ ।**

ଯେଉଁ ଗ୍ରନ୍ଥରେ ତ୍ରୁଟିଠାରୁ ଆରମ୍ଭ କରି ପ୍ରଳୟ ପର୍ଯ୍ୟନ୍ତ ସମୟର ଚର୍ଚ୍ଚା ଅଛି; ଯେଉଁ ଗ୍ରନ୍ଥରେ ଗ୍ରହଗତି, ପ୍ରଶ୍ନ ଓ ସେଗୁଡ଼ିକର ଉତ୍ତର ଅଛି; ଯେଉଁଥିରେ ପାଟୀ ଓ ବୀଜଗଣିତ ଆଲୋଚିତ ହୋଇଅଛି; ଯେଉଁ ଗ୍ରନ୍ଥ ସୃଷ୍ଟି ଚର୍ଚ୍ଚା କରିଛି, ଯେଉଁଥିରେ ପୃଥିବୀ, ଗ୍ରହ ଓ ନକ୍ଷତ୍ର ଆଦିର କକ୍ଷା କଥା, ଗ୍ରହଣ ଓ ଗ୍ରହ ଯୋଗର ଆଲୋଚନା ଅଛି ଏବଂ ଯେଉଁଥିରେ ଜ୍ୟା, ଚାପ, ନାନା ରକମର ଯନ୍ତ୍ର ଓ କ୍ଷେତ୍ରର ତତ୍ତ୍ୱ ବିଚାର କରାଯାଇଅଛି; ସଜ୍ଜନ ଗଣକ ବୃନ୍ଦ ତାହାକୁ ସିଦ୍ଧାନ୍ତ ଗ୍ରନ୍ଥ କହନ୍ତି ।

**ଶ୍ରେଷ୍ଠଂ ସର୍ବଶ୍ରୁତୀନାଂ ଶ୍ରୁତମିତକୃତିଭିର୍ଜ୍ୟୋତିଷଂ ତତ୍ର ସାରଃ**
**ସିଦ୍ଧାନ୍ତସ୍ତତ୍ରଗୋଳସ୍ତଦବଗତକୃତୀବର୍ତ୍ତତେ ଯତ୍ର ମର୍ତ୍ତ୍ୟଃ ।**
**ବିଦ୍ୱତ୍ପୂଜ୍ୟଃ ସ ଦେଶଃ ସକଳକଲୁଷହୃଦ୍ଧର୍ମ୍ମ-ଶର୍ମ୍ମାଶ୍ରୟଃସ୍ୟାତ୍ -**
**ଯତ୍ରାସ୍ତେ ନୈଷ ତସ୍ମିନ୍ ପଶୁଚରିତପରେ ପାପଜାପତ୍ପ୍ରତାପଃ ।୮।**

ଶାସ୍ତ୍ରଜ୍ଞ ମାର୍ମିକ ଲୋକେ କହନ୍ତି—ସବୁ ଶାସ୍ତ୍ର ମଧ୍ୟରେ ଜ୍ୟୋତିଷ ଶାସ୍ତ୍ର ଶ୍ରେଷ୍ଠ । ଜ୍ୟୋତିଷରେ ପୁଣି ସିଦ୍ଧାନ୍ତ ଶ୍ରେଷ୍ଠ; ସିଦ୍ଧାନ୍ତରେ ଗୋଳ ପୁଣି ସାର ଅଟେ । ଗୋଳଜ୍ଞ ବିଦ୍ୱାନ୍ ଯେଉଁ ଦେଶରେ ଥାନ୍ତି ସେହି ଦେଶକୁ ବିଦ୍ୱାନ୍‌ମାନେ ପୂଜା କରନ୍ତି । ସେ ଦେଶରେ ପାପ ରହେ ନାହିଁ । ଧର୍ମ ଓ ସୁଖ ସେହି ଦେଶକୁ ଆଶ୍ରୟ କରି ରହନ୍ତି । ଯେଉଁ ଦେଶରେ ଗୋଳଜ୍ଞ ବିଦ୍ୱାନ୍ ଲୋକଙ୍କର ଅଭାବ, ସେଥିରେ କେବଳ ପଶୁ ପ୍ରବୃତ୍ତି (ଆହାର, ନିଦ୍ରା, ଭୟ ଓ ମୈଥୁନ) ବଢିଯାଏ । ଫଳରେ ପାପଜନିତ ଦୁଃ ପ୍ରଭାବ ସେ ଦେଶକୁ ନଷ୍ଟକରେ ।

**ଯଶଶ୍ଚତୁର୍ବର୍ଗଫଳପ୍ରଦଂ ଶ୍ରୁତଂ ପବିତ୍ରମେତତ୍ପଠନୀୟମେବତତ୍**
**ଅହର୍ପତିଃ ପ୍ରାହ ରହସ୍ୟମିତ୍ୟତଃ ପ୍ରଦେୟମେତତ୍ପ୍ରବଣାୟ ସାଧବେ ।୯।**

ଏହି ଶାସ୍ତ୍ର ଯଶ ଓ ଚତୁର୍ବର୍ଗ ଫଳ (ଧର୍ମ ଅର୍ଥ, କାମ ଓ ମୋକ୍ଷ) ଦେଇଥାଏ । ତେଣୁ ଏହା ପବିତ୍ର ଓ ପଠନୀୟ । ସୂର୍ଯ୍ୟ ସିଦ୍ଧାନ୍ତ କର୍ତ୍ତା ( ସୂର୍ଯ୍ୟାଂଶ ପୁରୁଷ ) ଏଥିପାଇଁ ଏହି ଶାସ୍ତ୍ରକୁ ସର୍ବଦା ଗୋପନୀୟ ରଖିବ ବୋଲି କହିଅଛନ୍ତି । ଫଳରେ ଏହାକୁ ସଜ୍ଜନ ଓ ବିନୟୀ ଲୋକଙ୍କୁ ହିଁ ଦେବା ଉଚିତ ହେବ ।

**ପୂର୍ବାର୍ଦ୍ଧେ କାଳମାହର୍ଗଣ-ଭଗଣଖଗଜ୍ୟାଦିବିସ୍ପଷ୍ଟତେଷୁ—**
**ତ୍ରିପ୍ରଶ୍ନପ୍ରଗ୍ରହୋଡ଼ୁ-ଗ୍ରହସମିଦୁଦୟାସ୍ତେନ୍ଦୁଶୃଙ୍ଗାତପାତାନ୍ ।**
**ଅନ୍ତ୍ୟେଽଭ୍ରଗେଽନୁଯୋଗୋତ୍ତର ବିବିଧମତବ୍ୟକ୍ତିସୃଷ୍ଟ୍ୟନ୍ତଗୋଳ—**
**କ୍ଷ୍ମାକକ୍ଷାଯନ୍ତ୍ରବର୍ଷାଚ୍ୟୁତନୁତକୁଭୁକାନ୍ୟତ୍ର ପଶ୍ୟନ୍ତୁ ସନ୍ତଃ ।୧୦।**

---

୧୦ । କାଲମା—କାଲରମାନ—କାଲ ପରମାଣ ।

ପ୍ରଥମେ ଏହି ଗ୍ରନ୍ଥକୁ ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ ଦୁଇଭାଗରେ ବିଭକ୍ତ କରାଯାଇଛି । ପୂର୍ବାର୍ଦ୍ଧରେ କାଳ ପରିମାଣ, ଅହର୍ଗଣ, ଭଗଣ, ଗ୍ରହ, ଗ୍ରହଯୁକ୍ତି ଓ ନକ୍ଷତ୍ରଯୁକ୍ତି, ଉଦୟ ଓ ଅସ୍ତ, ଚନ୍ଦ୍ରଶୃଙ୍ଗୋନ୍ନତି, ଅତିପାତ ଏବଂ ପ୍ରଶ୍ନ, ଉତ୍ତର, ନାନାମତର ଚର୍ଚ୍ଚା, ସୃଷ୍ଟି ଓ ତାର ଲୟ, ଗୋଲ, ପୃଥିବୀ, କକ୍ଷା, ଯନ୍ତ୍ର, ଦେଶବିଦେଶ, ଜଗନ୍ନାଥ ସ୍ତୁତି ଓ କୌତୁକ ପଞ୍ଜିକାର ଆଲୋଚନା କରାଯାଇଅଛି । ସଜ୍ଜନମାନେ ଦୟା କରି ଏ ସବୁ ଦେଖିବା ହେବେ ।

**ଯତ୍ତେଜଃ କ୍ଷୁବ୍‌ଧମାୟାଜନିତମହଦହଙ୍କାରତନ୍ମାତ୍ରଭୂତୋଦ୍**
**ଭୂତାଣ୍ଡାଧୀଶନାଭ୍ୟୁଦ୍‌ଭବ ଭୁବନମୟାମ୍ଭୋଜଗର୍ଭାତ୍ ସ୍ୱୟମ୍ଭୂଃ ।**
**ଭୂତ୍ୱାଭୂତେ ର୍ବିତାନ ତ୍ରିଭୁବନଭବନାନ୍ୟାରଚଯ୍ୟ ସ୍ୱଧାମ୍ନି**
**ଧ୍ୟାୟଂ ଧ୍ୟାୟଂଯମାସ୍ତେ ସ ଜୟତି ପରମବ୍ରହ୍ମଧାମାଦିଦେବଃ ।୨୧।**

ଯାହାଙ୍କର ତେଜ ଯୋଗେ ପ୍ରକୃତି (ମାୟା) ମହତ୍ତତ୍ତ୍ୱକୁ ଜାତ କରେ; ମହତ୍ତତ୍ତ୍ୱରୁ ଅହଂକାର, ସେଥିରୁ ପଞ୍ଚତନ୍ମାତ୍ର ଓ ସେ କ୍ରମରେ ଆକାଶ ଆଦି ପଞ୍ଚ ମହାଭୂତ ତଥା ଏକାଦଶ ଇନ୍ଦ୍ରିୟ ଉତ୍ପନ୍ନ ହୁଅନ୍ତି ଏବଂ ସର୍ବଶେଷରେ ଦୃଶ୍ୟମାନ ବ୍ରହ୍ମାଣ୍ଡ ସୃଷ୍ଟି ହୋଇପଡ଼େ— ଏହି ସମସ୍ତଙ୍କର ଯେ ଅଧୀଶ୍ୱର ତାଙ୍କର ନାଭିରୁ ପୁଣି ଉତ୍ପନ୍ନ (ଚତୁର୍ଦ୍ଦଶ) ଭୁବନମୟ ପଦ୍ମରୁ ଜାତ ହୋଇ ସ୍ୱୟଂଭୂ ବ୍ରହ୍ମା ପଞ୍ଚଭୂତ ସଂଯୋଗରେ (ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ନାମକ) ତିନି ଭୁବନ ନିର୍ମାଣ କରି ନିଜର ପୀଠରେ ବିରାଜିତ ଅଛନ୍ତି ଏବଂ ସର୍ବଦା ତାଙ୍କର ଧ୍ୟାନରେ ନିମଗ୍ନ ଅଛନ୍ତି, ସେହି ସର୍ବପ୍ରଥମ ଦେବତା ପରମବ୍ରହ୍ମ ସମସ୍ତଙ୍କ ଉର୍ଦ୍ଧ୍ୱରେ ରହି ପ୍ରକାଶିତ ହେଉ ଅଛନ୍ତି ।

**ସ୍ରଷ୍ଟାସୃଷ୍ଟ୍ୱା ଭଚକ୍ରଂ ଧ୍ରୁବଯୁଗଳଯୁତଂ ସଗ୍ରହଂ ସନ୍ନିଯୁକ୍ତଂ**
**ନିତ୍ୟଭ୍ରାନ୍ତାବନନ୍ତୋଭବ ଭବକବକର୍ମ୍ମାଦ୍ୟଭିବ୍ୟକ୍ତିହେତୋଃ ।**
**ଭ୍ରାନ୍ତେ ଭାନାଂ ଗଣେ ତତ୍ପ୍ରଭୃତି ଚଳତରେ ପଶ୍ଚିମାଶାଭିମୁଖ୍ୟଂ**
**ପ୍ରାଚୀଂନୀତ୍ୱେଚ-ବୃନ୍ଦୈର୍ବ୍ରଜତି ଖଗତତଃ ସ୍ୱଳ୍ପଗତ୍ୟୈବ ତସ୍ମାତ୍ । ୨୨।**

ବ୍ରହ୍ମା ଏ ସବୁ କରିସାରିବା ପରେ ଗ୍ରହନକ୍ଷତ୍ରଚକ୍ର (ଆକାଶ ଗୋଲ) ନିର୍ମାଣ କରି ତାକୁ ଦୁଇ ଧ୍ରୁବ ସହିତ ସଂଯୋଗ ପୂର୍ବକ ପୂର୍ବରୁ ପଶ୍ଚିମକୁ ଭ୍ରମଣ କରିବା ଅବସ୍ଥାରେ ଥରେ ଘୂରାଇ ଦେଲେ । ଏହି ଭ୍ରାମ୍ୟମାଣ ଚକ୍ର ହିଁ ପ୍ରାଣୀମାନଙ୍କର ପ୍ରାକ୍ତନ ('କୁ' ଓ 'ସୁ') କର୍ମର ସୂଚକ ହେଲା ଏବଂ ଅନନ୍ତ ଆକାଶରେ ଏହି ଭୂଗୋଲ ଚଳନଶୀଳ ହୋଇ ରହିଲା । ଏହି ବୃତ୍ତ ପୂର୍ବରୁ ପଶ୍ଚିମକୁ ଦିନକୁ ଥରେ ବୁଲିବା ବେଳେ ଗ୍ରହମାନେ ନିଜ ନିଜର ଅଳ୍ପଗତିରେ

---

୨୧ । ପୁରୁଷ ଓ ପ୍ରକୃତି—୨, ମହତ୍ତତ୍ତ୍ୱ ବା ବୁଦ୍ଧିତତ୍ତ୍ୱ—୧, ଅହଂକାର—୧, ପଞ୍ଚତନ୍ମାତ୍ର—୫, ପଞ୍ଚ ମହାଭୂତ—୫, ପଞ୍ଚବୁଦ୍ଧିନ୍ଦ୍ରିୟ ପଞ୍ଚ କର୍ମେନ୍ଦ୍ରିୟ ଓ ମନ—୧୧ ଏପରି ୨୫ ତତ୍ତ୍ୱ ।

୨୨ । ଭବକ—ମଙ୍ଗଳ ।

ପଶ୍ଚିମରୁ ପୂର୍ବକୁ (ବିପରୀତ କ୍ରମରେ) ଗତି କରିବାରେ ଲାଗିଅଛନ୍ତି । ଗ୍ରହମାନଙ୍କର ଏହି ଗତି କଲ୍ପ ସାପେକ୍ଷ ବୃତ୍ତରେ ହିଁ ହୋଇଥାଏ ।

**କାଳାଖ୍ୟସ୍ୟ ବିଭୋରିଦଂ ଭଗବତୋ ନିତ୍ୟସ୍ୟ ରୂପାନ୍ତରଂ**
**ଜ୍ୟୋତିଶ୍ଚକ୍ରମିତି ବ୍ରୁବନ୍ତ୍ୟବୟବା—ସ୍ତୁଟ୍ୟାଦୟୋଽସ୍ୟେତ୍ୟପି ।**
**ବିଦ୍ୱାଂସୋଽସ୍ୟ ମୟା ତଦାଦ୍ୟବିବୃତସ୍ତେ ନାତ୍ର ସମ୍ପାଦ୍ୟତେ**
**ପଦ୍ୟୈର୍ହୃଦ୍ୟତରୈରବଦ୍ୟ-ରହିତୈଃ ସଦ୍ୟୋଽଭିବେଦ୍ୟାର୍ଥକୈଃ ।୨୩।**

ଭଗବାନ୍ ନିତ୍ୟ, ବିଭୁ ଓ କାଳରୂପୀ । ପୂର୍ବ ଶ୍ଳୋକରେ ବର୍ଣ୍ଣିତ ଜ୍ୟୋତିଶ୍ଚକ୍ର ଏହାଙ୍କର ରୂପାନ୍ତର । ତ୍ରୁଟି ଆଦି ସମୟର ଅବୟବ ମାତ୍ର । ଏହା ବିଦ୍ୱାନ୍‌ମାନଙ୍କର ମତ, ତେଣୁ ମୁଁ ଏହି କାଳର ଚର୍ଚ୍ଚା ପ୍ରଥମେ କରୁଅଛି । ଏଥିପାଇଁ ଯେଉଁ ଶ୍ଳୋକଗୁଡ଼ିକ ମୁଁ ରଚନା କରୁଅଛି ସେଗୁଡ଼ିକ ହୃଦ୍ୟ ଅନିନ୍ଦ୍ୟ ଓ ହଠାତ୍ ଅର୍ଥବୋଧକ ହେବେ, ନିଶ୍ଚୟ ।

**ଯୋଭୂତ ସଂହାରକ ଏଷକାଳଃ କାଲୋଽପରଃ ସ୍ୟାତ୍କଳନାତ୍ମକଶ୍ଚ**
**ସ ସ୍ଥୂଳଭାବାଦଥ ସୂକ୍ଷ୍ମଭାବାନ୍ମୂର୍ତ୍ତୋଽପ୍ୟମୂର୍ତ୍ତୋ ଦ୍ୱିବିଧଃ ପ୍ରଦିଷ୍ଟଃ ।୨୪।**

କାଳର ଦୁଇ ଅର୍ଥ ଅଛି । ପଞ୍ଚମହାଭୂତର ସଂହାରରୂପୀ ଏକ କାଳ ଓ ଅନ୍ୟ କାଳଟି କଳନାକାରକ ଅଟେ । ଏହି କଳନାତ୍ମକ କାଳ ପୁଣି ସ୍ଥୂଳ ଓ ସୂକ୍ଷ୍ମ ଭେଦରେ ଦୁଇଭାଗରେ ବିଭକ୍ତ । ସ୍ଥୂଳକାଳ ମୂର୍ତ୍ତ (ରୂପ ପରିଗ୍ରହ କରିଥାଏ) ଓ ସୂକ୍ଷ୍ମକାଳ ଅମୂର୍ତ୍ତ (ତାହାର ରୂପ ନାହିଁ—ତାହା ଅତି ସୂକ୍ଷ୍ମ) ।

**ପ୍ରାଣାଦିକୋଽସୌ ବ୍ୟବହାରଯୋଗ୍ୟୋ**
**ମୂର୍ତ୍ତୋଽନତଦ୍-ଯୋଗ୍ୟତୟା ସ୍ଥିତୋଯଃ**
**ତ୍ରୁଟ୍ୟାଦିକୋଽମୂର୍ତ୍ତ ଇତୀରିତୋଽୟଂ**
**ଶୀଘ୍ରେଣତାତ୍ୟନ୍ତଶିତାଗ୍ରସୂଚ୍ୟା । ୨୫ ।**

**ସ୍ୟାଦ୍ୟାବତୋଦ୍ୟନ୍ନଳିନୀ ଦଳସ୍ୟ**
**ଭେଦସ୍ତ୍ରୁଟିଃ ସୈବଶତେନ ତାସାମ୍**
**ଏକୋ ଲବସ୍ତତ୍ପୂରନାମକୋଽସୌ**
**ତ୍ରିଂଶଲ୍ଲବୈରେକନିମେଷ ଉକ୍ତଃ ।୨୬।**

ତୈର୍ଭୁଚ୍ୟତେଽଷ୍ଟାଦଶଭିଶ୍ଚ କାଷ୍ଠା
ସାର୍ଦ୍ଧାବ୍ଧିତା ସ୍ୟାଦ୍‌ଗୁରୁବର୍ଣ୍ଣକାଳଃ ।
ତୈଃ ଷୋଡ଼ଶଭିଃ ପ୍ରାଣଃ ଉଦୀରିତସ୍ତଦ୍—
ଯୁଗ୍ମଂ କଳା ତତ୍ତ୍ରିତୟଂ ବିନାଡ଼ୀ ।୨୭।

ପଳଞ୍ଚ ସା ଦଶ୍‌ଗୁଣିତା କ୍ଷଣଃ ସ୍ୟାତ୍
ତୈଃ ଷଡ଼୍‌ଭିରେକା ଘଟିକା ଚ ନାଡ଼ୀ ।
ଦଣ୍ଡଶ୍ଚ ସା ତଦ୍‌ଦ୍ୱିତୟଂ ମୁହୂର୍ତ୍ତୋ—
ଽହୋରାତ୍ର ଆର୍କ୍ଷଃ ଖଗୁଣୈ ର୍ମୁହୂର୍ତ୍ତୈଃ ।୨୮।

ଅହ୍ନଶ୍ଚ ରାତ୍ରେଶ୍ଚ ଶରେନ୍ଦୁଭାଗଃ
ସୂକ୍ଷ୍ମୋମୁହୂର୍ତ୍ତଃ ସଦସତ୍ ଫଳାର୍ହଃ ।
ସ୍ଥୂଳସ୍ତହୋରାତ୍ର ଖରାମ ଭାଗ
ଋକ୍ଷଭ୍ରମୋତ୍‌ଥଂ ଦ୍ୱନମାର୍କ୍ଷମାହୁଃ ।୨୯।

ତୈରାର୍କ୍ଷମାସଃ ଖଗୁଣୈଃ ଖରାଂଶୁ—
ପଶ୍ଚାଦ୍‌ଭ୍ରମୈଃ ସାବନମାସ ଉକ୍ତଃ ।
ତଦ୍‌ବତ୍ ଖରାମୈସ୍ତିଥିଭିସ୍ତୁ ଚାନ୍ଦ୍ରଃ
ସୌରୋ ରବେଃ ସଂକ୍ରମଣପ୍ରମେୟଃ ।୩୦।

କାଳର ପ୍ରାଣ ଆଦି ବିଭାଗ ମୂର୍ତ୍ତ । ଏଣୁ ଏଗୁଡ଼ିକ ବ୍ୟବହାରରେ ଲାଗେ । ବ୍ୟବହାରରେ ଯେଉଁ କାଳକୁ (ସମୟକୁ) ଲଗାଇ ହୁଏ ନାହିଁ ତାହା ଅମୂର୍ତ୍ତକାଳ—ତ୍ରୁଟି ଆଦି ଅମୂର୍ତ୍ତ । ଗୋଟିଏ ଛନଛନିଆ ନୂଆ ପଦ୍ମ ପତ୍ରକୁ ଖୁବ ଶୀଘ୍ର ଅତି ଧାରୁଆ ଛୁଞ୍ଚ ଅଗରେ ଫୋଡ଼ିଦେବାକୁ ଯେତିକ ସମୟ ଲାଗେ ତାହାକୁ ତ୍ରୁଟି କହନ୍ତି ।

୧୦୦ ତ୍ରୁଟି = ୧ ଲବ ବା ତତ୍ପର

୩୦ ଲବ = ୧ ନିମେଷ

୧୮ ନିମେଷ—୧ କାଷ୍ଠା

୧୨ କାଷ୍ଠା = (୨୭ ନିମେଷ)—୧ ଗୁରୁବର୍ଣ୍ଣର ଉଚ୍ଚାରଣ ସମୟ ।

୧୦ ଗୁରୁବର୍ଣ୍ଣ ଉଚ୍ଚାରଣ-କାଳରେ—୧ ପ୍ରାଣ

୬ ପ୍ରାଣ—୧ କଳା

୩ କଳା—୧ ବିଘଟିକା ବା ୧ ପଳ

୧୦ ବିଘଟୀ—୧ କ୍ଷଣ

୬ କ୍ଷଣ—୧ ଘଟୀ ବା ଦଣ୍ଡ

୨ ଦଣ୍ଡ—୧ ମୁହୂର୍ତ୍ତ

୩୦ ମୁହୂର୍ତ୍ତ—୧ ନାକ୍ଷତ୍ରଦିନ ।

ଦିନ ଓ ରାତ୍ରର (ଅଲଗା ଅଲଗା) ୧୫ ଅଂଶକୁ ($\frac{1}{15}$) ସୂକ୍ଷ୍ମ ମୁହୂର୍ତ୍ତ କୁହାଯାଏ । ଏଥିରୁ ହିଁ ଭଲ ଓ ମନ୍ଦ ଫଳର ଚିନ୍ତା କରାଯାଇଥାଏ । ପୁଣି ଅହୋରାତ୍ରର (ମୋଟାମୋଟି) $\frac{1}{30}$କୁ ସ୍ଥୂଳ ମୁହୂର୍ତ୍ତ କୁହାଯାଏ । ଗୋଟିଏ ନକ୍ଷତ୍ର ଯେଉଁଠାରୁ ଯେଉଁ ସମୟରେ ପଶ୍ଚିମକୁ ଯିବାର ଦେଖାଯାଏ ସେହି ନକ୍ଷତ୍ର ପୁଣି ସେହି ସ୍ଥାନକୁ ଆସିବାକୁ ଯେତେ ସମୟ ନିଏ ସେହି ସମୟକୁ ହିଁ ନାକ୍ଷତ୍ର ଦିନ କୁହାଯାଏ ।

୩୦ ନାକ୍ଷତ୍ର ଦିନ—୧ ନାକ୍ଷତ୍ର ମାସ ।

ସୂର୍ଯ୍ୟୋଦୟରୁ ପୁଣି ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ସମୟକୁ ସାବନ ଦିନ କହନ୍ତି ।

୩୦ ସାବନ ଦିନ=୧ ସାବନ ମାସ ।

୩୦ ତିଥି =୧ ଚାନ୍ଦ୍ରମାସ ।

ଗୋଟିଏ ସଂକ୍ରାନ୍ତିରୁ ତାର ଠିକ୍ ପରବର୍ତ୍ତୀ ସଂକ୍ରାନ୍ତି ପର୍ଯ୍ୟନ୍ତ ସମୟକୁ ଗୋଟିଏ ସୌର ମାସ କହନ୍ତି ।

> ତଦ୍‌ଦ୍ୱାଦଶଂଶଃପୂର୍ବୋତ୍ତରଭାଗ ଏବ
> ବାତେଚ୍ୟାଽର୍କ ସଂକ୍ରାନ୍ତିଭିସ୍ତପନସ୍ୟ ମାସୈଃ ।
> ସ୍ୟାତସୌରସଂବତ୍ସର ଏଷ ଦିବ୍ୟଂ
> ଦିନଂ ତଥା ଦାନୁକ୍ରମିତ୍ୟବେତଃ । ୩୧ ।

ଏହି ନାକ୍ଷତ୍ର, ସାବନ, ତିଥି ଓ ସୌର ପ୍ରଭୃତି ମାସର ବିସ୍ତୃତ ବିବରଣୀ ଏହି ଗ୍ରନ୍ଥର ଉତ୍ତରାର୍ଦ୍ଧରେ ଦିଆଯିବ ।

୧୨ ସୌର ମାସ=୧ ସୌର ବର୍ଷ । ସୌରବର୍ଷକୁ ଦିବ୍ୟ ବା ଆସୁର ଦିନ ମଧ୍ୟ କହିଥାନ୍ତି ।

ଦେବାସୁରାଣାଂ ଦନରାତ୍ରିଭେଦୋ
ବ୍ୟପର୍ଯ୍ୟୟେଣାର୍କଗତପ୍ରଭେଦାତ୍ ।
ତେଷାନ୍ତୁ ଷଷ୍ଟ୍ୟୁତ୍ତରୟା ତ୍ରିଶତ୍ୟା
ଦବ୍ୟଂଭବେଦାସୁରମେବ ବର୍ଷମ୍ ।୩୨।

ସୂର୍ଯ୍ୟର ଉତ୍ତର ଓ ଦକ୍ଷିଣ ଗତିକୁ ନେଇ ଦେବତା ଓ ଅସୁରମାନଙ୍କର ଅହୋରାତ୍ର ହୋଇଥାଏ—ଅର୍ଥାତ୍ ଦେବତାମାନଙ୍କର ଦନବେଳେ ଅସୁରମାନଙ୍କର ରାତ୍ରି ଓ ଅସୁର-ମାନଙ୍କର ଦନବେଳେ ଦେବତାମାନଙ୍କର ରାତ୍ରି ହୋଇଥାଏ । ୩୬୦ ଦବ୍ୟ ବା ଆସୁର ଦନରେ ୧ ଦବ୍ୟ ବା ଆସୁର ବର୍ଷ ହୁଏ ।

ଏତୈର୍ଯୁଗଂ ଦ୍ୱାଦଶଭିଃ ସହସ୍ରୈ
ଶ୍ଚତୁର୍ଯୁଗଞ୍ଚେତ୍ୟପି ତନ୍ନିରୁକ୍ତମ୍ ।
ତଦେବ ଖଭ୍ରାଭ୍ରଖଦନ୍ତବେଦୈ—
ର୍ଦବାକରାବ୍ଦୈର୍ଯୁଗମସ୍ୟ ପାଦାଃ । ୩୩ ।

କୃତାଦୟୋ ଧର୍ମ୍ମପଦକ୍ରମେଣ
ଚତ୍ୱାର ଏତେ ଯୁଗ ସଂଜ୍ଞକାଶ୍ଚ ।
ମହାଯୁଗାଦ୍ଭେଦ୍ଦ—ଲବଶ୍ଚତୁ-ସ୍ତ୍ରି
ଦ୍ୱେ୍ୟ-କୈର୍ହତଃ ସତ୍ୟମୁଖାଘ୍ରିମାନମ୍ । ୩୪ ।

ଆଦ୍ୟନ୍ତସନ୍ଧ୍ୟାସହିତଂ କ୍ଷଲୋକ୍ତଂ
ସନ୍ଧ୍ୟା ଯୁଗାନାଂ ସ୍ୱରସାଂଶ ଏବ ।
ତଦର୍ଦ୍ଧମାଦୌ ଦଳମନ୍ତଗେ
ମଧ୍ୟେ ତୁ ଶୁଦ୍ଧୋ ଯୁଗଭୁକ୍ତକାଳଃ । ୩୫ ।

୧୨୦୦୦ ଦବ୍ୟ ବର୍ଷ=୧ ମହାଯୁଗ ବା ଚତୁର୍ଯୁଗ ବା ୪୩୨୦୦୦୦ ସୌରବର୍ଷ=୧ ମହାଯୁଗ ବା ଚତୁର୍ଯୁଗ । ଏହି ଦବ୍ୟ ବର୍ଷର ୧/୧୦କୁ ୪, ୩, ୨ ଓ ୧ ରେ ଯଥାକ୍ରମେ ଗୁଣି ଦେଲେ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଯୁଗର ସୌରବର୍ଷ ପ୍ରମାଣ ଆସିଯାଏ । ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଯୁଗରେ ଯଥାକ୍ରମେ ୪, ୩, ୨ ଓ ୧ ପାଦ ଧର୍ମ ଥାଏ ବୋଲି ଏ ହିସାବ କରାଯାଇଅଛି । ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଯୁଗର ଏ ଯେଉଁ ପରିମାଣ ଦଆଗଲା, ସେଥିରେ ସେଗୁଡ଼ିକର ସନ୍ଧ୍ୟାଂଶ ମଧ୍ୟ ମିଶିଅଛି ବୋଲି ଜାଣିବାକୁ ହେବ । ପ୍ରତି ଯୁଗର ୧/୬ ଅଂଶ ତାହାର ଉଭୟ ସନ୍ଧ୍ୟାର ପରିମାଣ ହୋଇଥାଏ । ମହାଯୁଗର

ଆରମ୍ଭରେ ଏକ ସନ୍ଧ୍ୟା ଏବଂ ଶେଷରେ ଆଉ ଏକ ସନ୍ଧ୍ୟା ହୁଏ । ଆରମ୍ଭ ଓ ଶେଷ ସନ୍ଧ୍ୟା ମଧ୍ୟରେ ଶୁଦ୍ଧ ଯୁଗ ପ୍ରମାଣ ହୋଇଥାଏ ।

**ମନ୍ୱନ୍ତରଂ ଚନ୍ଦ୍ରମହୀଧ୍ର-ସଂଖ୍ୟୈ—**
**ର୍ମହାଯୁଗୈଃ ସତ୍ୟଯୁଗପ୍ରମାଣଃ ।**
**ସନ୍ଧିସ୍ତଦନ୍ତେ ଜଳସଂପ୍ଲବାଖ୍ୟଃ**
**ସଦାଦମଃ ସ୍ୟାତ୍ ଝକ୍ଷ୍ଣ ସନ୍ଧିରେକଃ । ୩୬ ।**

**ଶରେନ୍ଦୁଭିଃ ସନ୍ଧିଭିରନ୍ୱିତୈସ୍ତୈ**
**ର୍ମନ୍ୱନ୍ତରୈଃସ୍ୟାଦ୍ଦଶଭିଶ୍ଚତୁର୍ଭିଃ ।**
**ଦିନଂ ବିଧେଃ କଳ୍ପ ଇତ ଶ୍ରୁତଂ ତଦ୍**
**ଯୁଗୈଃସହସ୍ରେଣ ମିତଂ କଣାପି ।୩୭।**

**ତାବତ୍ପ୍ରମା କଳ୍ପଯୁଗଂଦ୍ୱ୍ୟ ରାତ୍ରିମିତ୍ଥଂ ସମାନାଂ ଶତମାୟୁରସ୍ୟ ।**
**ପରା ମହାକଳ୍ପ ଇତୀରିତଂ ତତ୍ପରାର୍ଦ୍ଧମାଦ୍ୟଂ କିଳ ନାମ ପାଦ୍ମ୍ୟମ୍ ।୩୮।**

**ବାରାହ-ମର୍ଦ୍ଧନ୍ତ-ପରମ୍ପରାୟା**
**ବଦନ୍ତ୍ୟଦଃ କଳ୍ପଯୁଗଞ୍ଚ ବିଜ୍ଞାଃ**
**ଅନାଦମତ୍ୱାସ୍ମମୟସ୍ୟ ନାହଂ**
**ଜାନେ ବ୍ୟତୀତାଃ କତ ଲୋକନାଥାଃ । ୩୯ ।**

୭୧ ମହାଯୁଗ=୧ ମନ୍ୱନ୍ତର । ଗୋଟିଏ ମନ୍ୱନ୍ତର ଶେଷରେ ସତ୍ୟଯୁଗ ପରିମାଣର ଗୋଟିଏ ସନ୍ଧି ରହେ । ପ୍ରତି ମନ୍ୱନ୍ତର ଶେଷରେ ଏହିପରି ଗୋଟିଏ ଗୋଟିଏ ସନ୍ଧି ରହିଅଛି । ମନ୍ୱନ୍ତରର ପ୍ରାରମ୍ଭରେ ମଧ୍ୟ ଗୋଟିଏ ସନ୍ଧି ଥିଲା । ଏହାର ପରିମାଣ ମଧ୍ୟ ଏକ ସତ୍ୟଯୁଗ । ଏହାର ନାମ (ଅବଶ୍ୟ) ଜଳସଂପ୍ଲବ ସନ୍ଧି । ବୁଝିବାକୁ ଗଲେ ଏହିପରି ୧୪ଟି ମନ୍ୱନ୍ତର ଓ ତଦନ୍ତର୍ଗତ ୧୫ଟି ସତ୍ୟଯୁଗ ପ୍ରମାଣ ସନ୍ଧିରେ ଗୋଟିଏ ବ୍ରହ୍ମଦିନ ହୁଏ । ଏହାକୁ କଳ୍ପ ମଧ୍ୟ କହିଥାନ୍ତି । ଏହା ପୁଣି ୧୦୦୦ ମହାଯୁଗରେ ହୋଇଥାଏ । ବ୍ରହ୍ମାଙ୍କର ରାତ୍ରି ପରିମାଣ ମଧ୍ୟ ୧୦୦୦ ମହାଯୁଗ । ଏଣୁ ଏପରି ଦୁଇ କଳ୍ପରେ ବ୍ରହ୍ମାଙ୍କର ଅହୋରାତ୍ର ହୁଏ । ଏହି ଅହୋରାତ୍ରକୁ ନେଇ ଯେଉଁ ବର୍ଷ ହେବ (୩୬୦ କଳ୍ପ); ସେଥିରୁ ୧୦୦ ବର୍ଷ ହେଲା ବ୍ରହ୍ମାଙ୍କର ପରମାୟୁ କାଳ । ଏହି କାଳକୁ ମହାକଳ୍ପ କୁହାଯାଇଥାଏ । ଏହାର ନାମାନ୍ତର ମଧ୍ୟ-'ପର' । ପରର ଅର୍ଦ୍ଧ ପରାର୍ଦ୍ଧ । ପୂର୍ବ ପରାର୍ଦ୍ଧର ନାମ ପାଦ୍ମ୍ୟ ଓ ଶେଷ ପରାର୍ଦ୍ଧର ନାମ ବାରାହ ଅଟେ । କାଳ ଅନାଦି, ଏଣୁ ଏହି କାଳ ମଧ୍ୟରେ କେତେ ବ୍ରହ୍ମା (ଲୋକନାଥ) ଗଲେଣି ତାହା ମୁଁ ଜାଣେ ନାହିଁ ।

ପ୍ରବର୍ତ୍ତିମାନସ୍ୟ ବଧେରଦାନୀଂ
ବ୍ୟତୀତମର୍ଦ୍ଧଂ ପରମାୟୁଷୋଽସ୍ୟ ।
ଅବାଦମେ ଶେଷଦଳସ୍ୟ ଘସ୍ରେ
ସସନ୍ଧୟଃ ଷଣ୍ମନବୋଽପ୍ୟତୀତାଃ । ୪୦ ।

ମାଣ୍ଡ ବର୍ତ୍ତମାନ ଯେଉଁ ବ୍ରହ୍ମା ଅଛନ୍ତି ତାଙ୍କର ପରମାୟୁର ଅଧା ବର୍ତ୍ତମାନ ଶେଷ ହୋଇଗଲାଣି । ଶେଷାର୍ଦ୍ଧର ପ୍ରଥମ ଦିନରେ (କଳ୍ପରେ) ସନ୍ଧି ସହିତ ୬ ମନୁ (୭ ସନ୍ଧି ଓ ୬ ମନୁ) ଅତୀତ ହୋଇଗଲେଣି । (ଏହି ଗ୍ରନ୍ଥ ଲେଖା ହେବାବେଳକୁ) ।

ସ୍ୱାୟମ୍ଭୁବଃ ପ୍ରାଙ୍ମନୁରାବଭାସୀତ୍
ସ୍ୱାରୋଚଷଶ୍ଚୋତ୍ତମତାମସୌ ଚ
ସ-ରୈବତାଖ୍ୟଃ ଖଳୁ ଚାକ୍ଷୁଷୋଽନୁ
ବୈବସ୍ୱତଃ ସପ୍ତମ ଏଷ ଆସ୍ତେ । ୪୧ ।

ଅସ୍ୟାନ୍ତରେ ଯାତବତୀ ଯୁଗାନାଂ ।
ସପ୍ତାଧିକା ବିଂଶତ-ରନ୍ୟତଶ୍ଚ ।
ଯୁଗାଦ୍‌ଗତାଃ ସତ୍ୟମୁଖତ୍ରିପାଦାଃ
କଳେଃ ଖସପ୍ତାଙ୍କ ମହାର୍ଣ୍ଣବାବ୍ଦାଃ । ୪୨ ।

ଖା ଦ୍ର୍ୟଙ୍କନାଗାବ୍ଧିନବାକ୍ଷିସପ୍ତ—
ନନ୍ଦେନ୍ଦବୋ ବ୍ରହ୍ମଦିନାଦତୋଽମୀ ।
ଯାତାସ୍ତ୍ୟବେତଦ୍‌ଗଣିତୋକ୍ତକାଳେ ।
ଙ୍ଖାଭ୍ରଖାଭ୍ରାଭ୍ରକୃତାବ୍ଧି-ଚନ୍ଦ୍ରୈଃ । ୪୩ ।

ଯଥାକ୍ରମେ ୭ ମନୁ ହେଲେ—ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ ଓ ଚାକ୍ଷୁଷ । ସପ୍ତମ ମନୁଙ୍କର ନାମ ବୈବସ୍ୱତ । ସପ୍ତମ ମନୁରୁ ପ୍ରଥମ ୨୭ ମହାଯୁଗ ଅତୀତ ହୋଇଗଲାଣି । ୨୮ଶ ମହାଯୁଗରୁ ସତ୍ୟ, ତ୍ରେତା ଓ ଦ୍ୱାପର ମଧ୍ୟ ଅତୀତ ହେଲେଣି । ବର୍ତ୍ତମାନ କଳି ଯୁଗରୁ ୪୯୭୦ ସୌରବର୍ଷ ବିତିଗଲାଣି । ଏ ସବୁକୁ ମୋଟ କଲେ ୧୯୭୨୯୪୯୦୭୦ ସୌର ବର୍ଷ ବ୍ରହ୍ମାଙ୍କର ଦିନରୁ କଟିଗଲାଣି ।

କଳ୍ପାବ୍ଦସଂଘା ବହୁତା ଭବନ୍ତ
ଦଣ୍ଡାଦଦ୍ୟୋଽଣ୍ଡାଧିପଘସ୍ରଭୁକ୍ତାଃ ।
କଳ୍ପାବ୍ଦକାର୍ଯ୍ୟଂ ତ୍ୱୟୁଦେବ ନୈଭ୍ୟଃ
ପ୍ରୟୋଜନଂ ଖେଚର—ବାସରାଦେଃ । ୪୪ ।

ଉତ୍ପାଦ୍ୟ ବସ୍ତ୍ରୂନ୍ ସୃଜତୋ ଦିନାଦୌ
ଗ୍ରହର୍କ୍ଷଗୋଲାଦିକମବଜ୍ଯୋନେଃ
ବ୍ୟଗୁ୍ୟଂଯୁଗାନାଂ ଚରଣତ୍ରୟଞ୍ଚ
ସାର୍ଦ୍ଧଂ ଯତଃ କଳ୍ପମୁଖାଦତ୍ୟାସୀତ୍ । ୪୫ ।

ତତ୍ଖାଭ୍ରଖାବ୍ଧ୍ୟଙ୍ଗଖସପ୍ତଚନ୍ଦ୍ରୈ—
ରବ୍ଦୈ ରବେଃ କଳ୍ପ-ସମା ବିହୀନାଃ ।
ସୃଷ୍ଟ୍ୟବଦ୍କାଃ ଖାଦ୍ରି ନବାବ୍ଧିନାଗ—
ନାଗାର୍ଥବାଣାଙ୍କଭୁବସ୍ତ୍ୱିଦାନୀମ୍ । ୪୬ ।

ଗୋଟିଏ କଳ୍ପର ସୌରବର୍ଷ ସଂଖ୍ୟାକୁ ୧୪୦୦୦୦୦୦୦ ହରଦେଲେ ବ୍ରହ୍ମାଙ୍କ ବର୍ତ୍ତମାନ ଦିନର ଦଣ୍ଡ ଆଦି ଜଣାଯିବ । ତାହାହେବ—ଦି୧୩।୪୨।୩।୪୩।୨୬ । କଳ୍ପ ବର୍ଷ ଆଦିର ଏତିକ ହିଁ ପ୍ରୟୋଜନ । ଗ୍ରହଦିନ ଆଦିର ଆଲୋଚନା ନିମନ୍ତେ ଏହା ଉଦ୍ଦିଷ୍ଟ ନୁହେଁ । ନାରାୟଣଙ୍କଠାରୁ ଉତ୍ପନ୍ନ ହୋଇ ବ୍ରହ୍ମା ତାଙ୍କ ଦିନର ପ୍ରାରମ୍ଭରୁ ଗ୍ରହ, ନକ୍ଷତ୍ର, ଗୋଳ, ଭୂଗୋଳ, ଦେବ ଓ ଦୈତ୍ୟ ଆଦି ରଚନାରେ ଲାଗିଗଲେ । ଏଥିରେ ତାଙ୍କର ଛଅ ମହାଯୁଗ, ସତ୍ୟ, ତ୍ରେତା, ଦ୍ୱାପର ଓ କଳିର ଅଧା ଶେଷ ହୋଇଗଲା । ଏ ସବୁର ପରିମାଣ ହେଲା ୧୭୦୬୪୦୦୦ ସୃଷ୍ଟି ସୌରବର୍ଷ ପ୍ରମାଣ । ଏଣୁ ଏହି ସଂଖ୍ୟାକୁ କଳ୍ପବର୍ଷରୁ ବାଦ ଦେଲେ (୧୯୭୨୯୪୮୯୭୦—୧୭୦୬୪୦୦୦=୧୯୫୫୮୮୪୯୭୦) ସୃଷ୍ଟି ଗତାବ୍ଦ ହେବ ।

କଳେଃ କିଳ ପ୍ରାନ୍ତଦଳପ୍ରବେଶେ ଲଙ୍କାର୍ଦ୍ଧ ରାତ୍ରେ ବଧିରର୍କବାରାତ୍ ।
ପ୍ରବର୍ତ୍ତୟାମାସ ଖଗଭ୍ରମାଦିପ୍ରମାଣିତଂ ଚୈତ୍ରସିତାଦିକାଳମ୍ । ୪୭ ।

ତଦାଦିତଃ ଖେଚରଚକ୍ରପର୍ଯ୍ୟୟାଃ
ସମଂ ସମାପ୍ତା ନିଶି ତାବତ କ୍ଷଣେ ।
ପୁନଃପରେଦ୍ୟୁର୍ଗତ-ସମ୍ଭବ କ୍ଷଣେ
ତଥା ପ୍ରବୃତ୍ତାସ୍ତତ ଏବମନ୍ୱହମ୍ । ୪୮ ।

ଇତ ଦ୍ୱିଶୋ ବ୍ରହ୍ମଦିନେ ଗ୍ରହଭ୍ରମଃ
ପ୍ରପୂର୍ଯ୍ୟତେ ତନ୍ନିଧନେନ ତତ୍କ୍ଷୟଃ ।
ଇଦଂ ମତଂ ମେ ଯଦୁଦୀରିତଂ ବୁଧୈ
ର୍ଗ୍ରହକ୍ଷୟଃ ପ୍ରତ୍ୟହମେବ କୈଶ୍ଚନ । ୪୯ ।

୪୭ । ଆଦିଶବ୍ଦେନ ବାନ୍ତ୍ୟାଦୟୋ ଗୃହ୍ୟନ୍ତେ ।

ସ୍ୱୟମ୍ଭୁବା ସାର୍ଦ୍ଧମଦର୍ଶନଂ ଭୁବୋ
ଭବେଦ୍‌ଦତୀଦଂ ନ ବଶ୍ୱରଗୁରୁ ମେ ।
ଭୁବା ସମଂ ପ୍ରାକୃତକେ ଲୟେ କ୍ଷୟୋ
ମୟୋଚ୍ୟତେ ଭଗ୍ରହଲୋକରକ୍ଷିଣାମ୍ । ୫୦ ।

ଇଦଂମହାୟ୍ୟାସବସୃଷ୍ଟମନ୍ୟଥା
କଥଂଦନାନ୍ତେ ବନହନ୍ତୁମୁଦ୍ୟତଃ ।
ବଧ୍ରିର୍ଗ୍ରହର୍ଷାଦ୍ୟ-ମଣୋର୍ଭୁବଃ ସ୍ଥିତୌ
କମସ୍ତି ମାନଂ ହ ବୃହଭସଂହୃତୌ । ୫୧ ।

ଯଥା ତଥା ବା ଭବତୁ ପ୍ରୟୋଜନଂ
ନ ତଦ୍‌ବବୋଧାଦ୍‌ଗଦତଂ ପ୍ରସଙ୍ଗତଃ ।
ଅମୁଷ୍ୟ କଲ୍ପସ୍ୟ ଶନୈର୍ଗ୍ରହାଦକଂ
ମହାମ୍ଭିଃ ସାଧୟିତୁଂ ହି ଯୁଜ୍ୟତେ । ୫୬ ।

କଳିଯୁଗର ଶେଷାର୍ଦ୍ଧ ଆରମ୍ଭ ହେବାବେଳେ ଲଙ୍କାର ଅର୍ଦ୍ଧରାତ୍ରିରେ ବ୍ରହ୍ମା ଗ୍ରହ-ମାନଙ୍କୁ ଓ ପ୍ରବହ ଆଦ ପବନଦ୍ୱାରା ପ୍ରବର୍ତ୍ତିତ ଭ୍ରାନ୍ତ ବୃତ୍ତକୁ ବୁଲାଇ ଦେଲେ । ସେହିଦନ ରବବାର ଓ ଚୈତ୍ର ଶୁକ୍ଳ ପ୍ରତପଦ୍ ନାମିତ ହେଲା । ଗ୍ରହ ନକ୍ଷତ୍ର ଆଦ ଏପରି ବୁଲି ବୁଲି ବ୍ରହ୍ମାଙ୍କର ପୁଣି ରାତ୍ର ଅଧକୁ (ସେହି ସମୟରେ) ଠିକ୍ ସମାନ ସ୍ଥାନକୁ ଆସିଗଲେ । ଏପରି ପ୍ରତଦନ ଚାଲିଲା । ରାତ୍ର୍ୟର୍ଦ୍ଧରେ ଯଥାସ୍ଥାନକୁ ଆସିଯାଇ ପୁଣି ଗତ କରିବାରେ ଲାଗିଯାନ୍ତି । ଏପରି ଭାବରେ ବ୍ରହ୍ମାଙ୍କର ଅହୋରାତ୍ରରେ ଦୁଇଥର ଗ୍ରହ ଭଗଣ ପୂର୍ଣ୍ଣ ହୋଇଯାଏ । ବ୍ରହ୍ମାଙ୍କ ବନାଶରେ ଗ୍ରହ ନକ୍ଷତ୍ର ଆଦ ସମସ୍ତ ଜ୍ୟୋତଶ୍ଚକ୍ରର ମଧ ନାଶ ହୁଏ, ଏହାହିଁ ମୋର ମତ ।

କେହି କେହି ପଣ୍ଡିତ କହନ୍ତି ଯେ ବ୍ରହ୍ମାଙ୍କର ପ୍ରତଦନର ଆରମ୍ଭରେ ଗ୍ରହାରମ୍ଭ ଓ ଦନାନ୍ତରେ ଗ୍ରହନାଶ ହୋଇଯାଏ । ମାତ୍ର ବ୍ରହ୍ମାଙ୍କ ନାଶ ବେଳେହିଁ ପୃଥିବୀର ନାଶ ହୁଏ (ପ୍ରତ୍ୟହ ଗ୍ରହାଦ ନଷ୍ଟ ହେଲେ ମଧ ପୃଥିବୀ ପ୍ରତ୍ୟହ ନଷ୍ଟ ହୁଏ ନାହିଁ) । ଏହିକଥା ମୋତେ ଭଲ ଜଣାଯାଉ ନାହିଁ ।

ପ୍ରାକୃତକ ଲୟରେ ପୃଥିବୀ ସହିତ ସବୁ ଗ୍ରହ ଓ ନକ୍ଷତ୍ର ନଷ୍ଟ ହୁଅନ୍ତି—ଏହା ମୋର ମତ । କାରଣ ଦନାବସାନରେ ଶ୍ରେଷ୍ଠ ପୃଥିବୀକୁ ବାଦ ଦେଇ ବଡ଼ ବଡ଼ ଗ୍ରହ ନକ୍ଷତ୍ର ଆଦକୁ ନଷ୍ଟ କରିଦେବାରେ ସେପରି କିଛି ଭଲ କାରଣ ନାହିଁ—କୌଣସି ଯୁକ୍ତି ମଧ ନାହିଁ । ଏଥିର ପ୍ରତ୍ୟୋଜନୀୟତା ସମ୍ବନ୍ଧରେ ମୋର କିଛି କହିବାର ନାହିଁ । ତେବେ ପ୍ରସଙ୍ଗତଃ ଏହି

କଥାର ଉଲ୍ଲେଖମାତ୍ର କଲେ । କାରଣ ମହାତ୍ମାମାନେ ଏହି କଳ୍ପର ଗତ ଦିନକୁ ଧରିହିଁ ଗ୍ରହ ଆଦି ସାଧନ କରନ୍ତି । (ଏଠାରେ ସାମନ୍ତେ ଭାସ୍କରଙ୍କ ମତକୁ ସମାଲୋଚନା କରିଛନ୍ତି । ଭାସ୍କର ଲଙ୍କା ସମ୍ପର୍କରେ କନ୍ତୁ କହି ଏପରି କହିଅଛନ୍ତି । ସିଦ୍ଧାନ୍ତଶିରୋମଣିର ଗୋଲାଧ୍ୟାୟ ଦ୍ରଷ୍ଟବ୍ୟ)

**ପ୍ରକୃତମନୁସରାମଃ ସାମରସ୍ୟାଚ୍ଛ୍ରୁତସ୍ୟ**
**ଭ୍ରମତ ସତତମଶ୍ୱିନ୍ୟାଦ-ପୌଷ୍ଣାନ୍ତବର୍ଗେ ।**
**ଯ ଇହ ଖଚରବେଗଃ ପୂର୍ଣ୍ଣ ଆଲେକ୍ୟ-ତେଽସୌ**
**ଭଗଣ ଇତ ନିରୁକ୍ତଃ ପର୍ଯ୍ୟୟଶ୍ଚକ୍ରସଂଜ୍ଞଃ । ୫୩ ।**

ଶାସ୍ତ୍ର ସବୁବେଳେ ଆପଣା ଉଦ୍ଦେଶ୍ୟର ବର୍ଣ୍ଣନା କରିଥାଏ । ଏଣୁ ପ୍ରସଙ୍ଗାଗତ ବିଷୟକୁ ବାଦଦେଇ ବର୍ତ୍ତମାନ ପ୍ରକୃତ କଥାର ଆଲୋଚନା କରାଯାଇଅଛି ।

କୌଣସି ଗ୍ରହ କ୍ରାନ୍ତିବୃତ୍ତର ଅଶ୍ୱିନୀରୁ ଆରମ୍ଭ କରି ରେବତୀ ଶେଷ ପର୍ଯ୍ୟନ୍ତ ଗତି କଲେ (ଥରେ) ଗୋଟିଏ ବୃତ୍ତଗତି ପୂର୍ଣ୍ଣ ହୋଇଯାଏ । ଏହି ଗୋଟିଏ ପୂର୍ଣ୍ଣ ବୃତ୍ତ ଗତିକୁ ଭଗଣ କୁହାଯାଏ । ପର୍ଯ୍ୟୟ ଓ ଚକ୍ର ଏହି ଭଗଣର ନାମାନ୍ତର ମାତ୍ର ।

**ଅର୍କାଂଶୋ ଭଗଣସ୍ୟ ରାଶିଗୃହଭକ୍ଷେତ୍ରର୍କ୍ଷନାମାସ୍ୟ ତୁ**
**ତ୍ରିଂଶାଂଶୋଽପି ଲବାଂଶଭାଗ ଉଦିତସ୍ତତ୍ ଷଷ୍ଟିଭାଗଃ କଳା ।**
**ଲିପ୍ତା ତତ୍‌ଖରସାଂଶ-କସ୍ତୁ ବିକଳା ତତ୍ତଦ୍‌ଖଷଡ୍‌ଭାଗକୈ—**
**ର୍ଗତ୍ୟର୍ଥଂ କଥିତାଃ ପରାଦ୍ୟବୟବାଃ ପ୍ରାକ୍ ସୂରିଭିର୍ଭୂରିଶଃ । ୫୪ ।**

ଭଗଣ (ବୃତ୍ତର) ୧/୧୨ କୁ ରାଶି କୁହାଯାଏ । ରାଶି, ଗୃହ, ଭ, କ୍ଷେତ୍ର, ଋକ୍ଷ ପ୍ରଭୃତି ଏହି ରାଶିର ନାମାନ୍ତର । ରାଶିର ୧/୩୦ କୁ ଅଂଶ କୁହାଯାଏ । ଲବ ଓ ଭାଗ ଏହି ଅଂଶର ନାମାନ୍ତର । ଅଂଶର ୧/୬୦ କୁ କଳା କହନ୍ତି । ଲିପ୍ତା କଳାର ଅନ୍ୟ ନାମ । କଳାର ୧/୬୦ କୁ ବିକଳା କହନ୍ତି । ବିକଳାର ୧/୬୦ କୁ ଓ ତାହାର ୧/୬୦ କୁ ପରା, ବିପରା ଆଦି କହନ୍ତି । ଏହା ସବୁ ଗ୍ରହର ଗତି ନିମନ୍ତେ କୁହାଯାଇଥାଏ । ଏହି ସଂଜ୍ଞା ସବୁ ମୋର ନୁହେଁ । ପୂର୍ବାଚାର୍ଯ୍ୟମାନେ ଏହା ବହୁତ ଆଗରୁ କହି ସାରିଅଛନ୍ତି ।

**ଯଃ ପୂର୍ବଂ ପରାର୍ଦ୍ଧକେ ସ୍ମ ବସତ ଶ୍ରୀମାଧବାଖ୍ୟଂ ଦଧଦ୍—**
**ଗୁପ୍ତଃ କ୍ଷ୍ମାପ୍ରମହେନ୍ଦ୍ରନୀଳତନୁ ରୁତ୍ତୁଂଗନୀଳାଚଳାଗ୍ରସ୍ଥଳେ ।**
**ଦ୍ୱୈତୀୟୀକପରାର୍ଦ୍ଧକେଽଧମଜନାନୁଦ୍ଧର୍ତ୍ତୁକାମଃ ସ୍ଫୁଟଂ**
**ଧତ୍ତେ ଦାରବଧାମ ମାମବତୁ ମାକାନ୍ତଃ ସ ସନ୍ତାପତଃ । ୫୫ ।**

ପ୍ରଥମ (ପାଦ୍ମ୍ୟ ନାମକ) ପର୍ବରେ ମହାଇନ୍ଦ୍ରନୀଳମଣିର କାନ୍ତି ଧାରଣ କରିଥିବା ନୀଳଗିରିର ଅଗ୍ରଭାଗରେ ଶ୍ରୀ ନୀଳମାଧବ ନାମ ଗ୍ରହଣ କରି ଯେ ଗୁପ୍ତ ଭାବରେ ବାସ କରୁଥିଲେ ଏବଂ ପରେ ୨ୟ ପର୍ବ (ବ୍ରାହ୍ମ)ରେ ଯେ ପଣ୍ଡିତମାନଙ୍କର ଉଦ୍ଧାର ନିମନ୍ତେ ଦାରୁବ୍ରହ୍ମରୂପ ଧାରଣ କରି ପରିସ୍ଫୁଟ ହୋଇ ସେହିଠାରେ ରହିଅଛନ୍ତି, ସେହି ଲକ୍ଷ୍ମୀକାନ୍ତ ଶ୍ରୀ ଜଗନ୍ନାଥ ମୋତେ ଦୁଃଖରୁ ପରିତ୍ରାଣ କରନ୍ତୁ ।

ଇତ୍ୟୁତ୍କଳୋଜ୍ଜ୍ୱଳ ନୃପାଳକୁଳପ୍ରସୂତ—
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ଶୁଦ୍ଧୋଽଗମତ୍ ସମୟଭୁକ୍ ପ୍ରଥମଃ ପ୍ରକାଶଃ । ୫୭ ।

ଇତି ଶ୍ରୀ ଚନ୍ଦ୍ରଶେଖର ସିଂହ କୃତୌ ସିଦ୍ଧାନ୍ତଦର୍ପଣେ
ମଧ୍ୟମାଧିକାରେ କାଳବର୍ଣ୍ଣନେ ନାମ ପ୍ରଥମଃ ପ୍ରକାଶଃ ॥

ଓଡ଼ିଶାର ଉତ୍କଳ ରାଜକୁଳରେ ଜନ୍ମଲାଭ କରିଥିବା ଶ୍ରୀ ଚନ୍ଦ୍ରଶେଖରଙ୍କ ଦୃକ୍‌ସିଦ୍ଧ ଗଣିତଗ୍ରନ୍ଥ ସିଦ୍ଧାନ୍ତଦର୍ପଣ ସରଳ ହେତୁ ବାଳବୋଧଗମ୍ୟ (ପିଲାମାନେ ମଧ୍ୟ ବୁଝି ପାରିବେ) । ବର୍ତ୍ତମାନ ଏହାର ପ୍ରଥମ ପ୍ରକାଶ ଏଠାରେ ଶେଷ ହେଲା । ଏଥିରେ କେବଳ ସମୟ ବା କାଳବିଭାଗର ବିଶୁଦ୍ଧ ଆଲୋଚନା କରାଯାଇଅଛି ।

# ଦ୍ୱିତୀୟଃ ପ୍ରକାଶଃ

## ଭଗଣାଦି ବର୍ଣ୍ଣନମ୍

---

ସୂର୍ଯ୍ୟଜ୍ଞାସ୍ଫୁଜିତାଂ ପୁରେରଗଡମତାଂ କୋଟିଘ୍ନଦନ୍ତାବ୍ଧୟଃ
କଲ୍ପେ ସ୍ୟୁର୍ଭଗଣାଃ ଶନୀଜ୍ୟକୁଭୁବାଂ ତେ ଚୈବ ଶୀଘ୍ରୋଚ୍ଚଜାଃ ।
ଖାଭ୍ରାଭ୍ରାଙ୍ଗସୁରାଗ୍ନିମାର୍ଗଣଗିର ଗ୍ରାବେଷବଃ ଶୀତଗୋ—
ସ୍ୱଦତ୍ୟଷ୍ଟିଭୂନଗାଷ୍ଟରସଗୋ—ଦୃଗ୍‌ବାହବୋ ଭୂଭୁବଃ । ୧ ।

ଜ୍ଞାଦ୍ର୍ୟଙ୍ଗନବାଙ୍ଗସ୍ୱମନବବା—ଜ୍ୟବ୍ଜାଙ୍କଶୀଘ୍ରୋଚ୍ଚଜା
ବାଣାଭ୍ରେକ୍ଷଣବାଣବାଣଧରଣୀ—ବେଦର୍ତ୍ତୁସ୍ୱମା ଗୁରୋଃ ।
ଷଷ୍ଟ୍ୟଷ୍ଟାଦ୍ରିଶରାକ୍ଷିଦୃଗ୍ଭୁଜନଭଃ ଶୈଳା ଭୃଗୋଃ ଶୀଘ୍ରଜା
ଭୂପାଦ୍ର୍ୟଙ୍କକୃତାଙ୍ଗଷଟ୍‌କମନବଃ ସୌରେର୍ମ୍ମିତାଃ ପର୍ଯ୍ୟୟାଃ ।୨।

ସୂର୍ଯ୍ୟାତ୍ ପୂର୍ବଗମନ୍ଦତୁଙ୍ଗଭଗଣାଃ ପାତଆଧିସ୍ୱମାଗ୍ନୟଃ
ଶୂନ୍ୟାମ୍ଭୋଧିନବାଦ୍ରିରୁଦ୍ରଭୁଜଗସ୍ତମ୍ଭେରମାମ୍ଭୋଧୟଃ ।
ପୂର୍ଣ୍ଣେନ୍ଦୁଜ୍ୱଲନାଃ ଖଚନ୍ଦ୍ରନଗମା ବାଣାଭ୍ରନାଗାଃ କୁଜୁଦ୍
ପଞ୍ଚେଷୁ ପ୍ରମିତାଃ ଖସପ୍ତୟ ଇତ ଜ୍ଞେୟାଃ ପଦଚ୍ଛେଦତଃ । ୩ ।

ଚନ୍ଦ୍ରାପୂର୍ଣ୍ଣିମଗାମିପାତଭଗଣା ସ୍ୱମାଗ୍ନି ଶୂନ୍ୟାଷ୍ଟଗୋ—
ଚକ୍ଷୁଃପକ୍ଷଗୁଣେକ୍ଷଣାଃ ଫଣଭୃନ୍ନନ୍ଦେକ୍ଷଣାଃ କ୍ରମାତ୍ ।
ପକ୍ଷାକ୍ଷାକ୍ଷମିତାଃ ଖଚନ୍ଦ୍ରବସୁଧା ବାଣାବ୍ଧିନନ୍ଦାଂଶସ୍ୱ
କୃପାରେଷବ [illegible]ତା ନ ଭୂ ରବେଃ ପାତଃ କଦାଚଦ୍ଭବେତ୍ । ୪ ।

ଗ୍ରହ ତାର କକ୍ଷବୃତ୍ତରେ ପୂର୍ବାଭିମୁଖରେ ଥରେ ବୁଲି ଆସିଲେ ଗୋଟିଏ ଭଗଣ ହୁଏ । ଗ୍ରହ ଓ ସେମାନଙ୍କର କଳ୍ପରେ ଭଗଣ (ପଶ୍ଚିମରୁ ପୂର୍ବକୁ) ସଂଖ୍ୟା—

| | | |
|---|---|---|
| ରବି, ବୁଧ ଓ ଶୁକ୍ର—କଳ୍ପରେ ଭଗଣ ସଂଖ୍ୟା :— | | ୪,୩୨୦,୦୦୦,୦୦୦ |
| ଚନ୍ଦ୍ର | ,, | ୫୭୭୫୩୩୩୬୦୦୦ |
| ମଙ୍ଗଳ | ,, | ୨୨୯୬୮୭୧୧୧୨ |
| ବୃହସ୍ପତି | ,, | ୩୬୪୧୫୫୨୦୫ |
| ଶନି | ,, | ୧୪୬୬୪୯୭୧୬ |
| ବୁଧ ଶୀଘ୍ରୋଚ୍ଚ ଭଗଣ ସଂଖ୍ୟା— | | ୧୭୯୩୬୯୬୭୧୪୧ |
| ଶୁକ୍ର (ଅସ୍ତୁକ୍ତ) | ଭଗଣ ସଂଖ୍ୟା— | ୭୦୨୨୨୫୭୮୬୦ |
| ମଙ୍ଗଳ, ବୃହସ୍ପତି ଓ ଶନିର | ,, | ୪୩୨୦୦୦୦୦୦୦ |

କଳ୍ପରେ ମନ୍ଦୋଚ୍ଚ ଭଗଣ (ପଶ୍ଚିମରୁ ପୂର୍ବକୁ) ସଂଖ୍ୟା—

| | | | |
|---|---|---|---|
| ରବି | ,, | ,, | ୩୩୪ |
| ଚନ୍ଦ୍ର | ,, | ,, | ୪୮୮୧୧୭୯୪୦ |
| ମଙ୍ଗଳ | ,, | ,, | ୩୧୦ |
| ବୁଧ | ,, | ,, | ୪୧୦ |
| ବୃହସ୍ପତି | ,, | ,, | ୮୦୫ |
| ଶୁକ୍ର | ,, | ,, | ୫୫୭ |
| ଶନି | ,, | ,, | ୭୦ |

କଳ୍ପରେ ଗ୍ରହର କକ୍ଷାପାତ ଭଗଣ (ପୂର୍ବରୁ ପଶ୍ଚିମକୁ) ସଂଖ୍ୟା—

| | | | | |
|---|---|---|---|---|
| ଚନ୍ଦ୍ର | ,, | ,, | ,, | ୨୩୨୨୯୮୦୩୩ |
| ମଙ୍ଗଳ | ,, | ,, | ,, | ୨୯୮ |
| ବୁଧ | ,, | ,, | ,, | ୫୫୨ |
| ବୃହସ୍ପତି | ,, | ,, | ,, | ୯୪୫ |
| ଶୁକ୍ର | ,, | ,, | ,, | ୧୧୦ |
| ଶନି | ,, | ,, | ,, | ୫୪୫ |

ସୂର୍ଯ୍ୟ କ୍ରାନ୍ତି ବୃତ୍ତରେ ଥିବାରୁ ତାହାର କକ୍ଷାପାତ ଭଗଣ ନାହିଁ ।

ଭଚକ୍ରପଶ୍ଚାଦ୍‌ଭ୍ରମ ସମ୍ମିତାର୍ଦ୍ଧ
ଘସ୍ରା ବଧାତୁର୍ଦ୍ଦିବସେ ଭବନ୍ତି ।
ଖଶୂନ୍ୟଶୂନ୍ୟାଷ୍ଟଭୁଜାଷ୍ଟଶୈଳ-
ରାମାକ୍ଷିପକ୍ଷାଷ୍ଟଶରେନ୍ଦୁ ସଂଖ୍ୟାଃ ।୫।

ଗୋଟିଏ କଳ୍ପରେ ନାକ୍ଷତ୍ର ଦିନ ସଂଖ୍ୟା—୧୫୮୨୨୩୭୮୨୮୦୦୦ । ଗୋଟିଏ ନକ୍ଷତ୍ରର ପ୍ରଥମ ଉଦୟଠାରୁ ତା'ର ଠିକ୍ ପରବର୍ତ୍ତୀ ଉଦୟ ପର୍ଯ୍ୟନ୍ତ ଯେତେ ସମୟ ହୁଏ, ତାହାକୁ ଗୋଟିଏ ନାକ୍ଷତ୍ର ଦିନ ବୋଲାଯାଏ ।

**ବବର୍ଜ୍ଜିତା ଯଦ୍ଭଗଣୈର୍ଭବେୟୁସ୍ତେ ତଦ୍ଗ୍ରହକ୍ଷୌଣିଦିନାନି ତାନି**
**ଦିବାକରୀୟୈର୍ଭଗଣୈର୍ବିହୀନାଶ୍ଚାନ୍ଦ୍ରା ଭବନ୍ତ୍ୟୈଷଧିନାଥମାସାଃ ।୬।**

ଗ୍ରହ ପ୍ରଥମ ଉଦୟରୁ ଦ୍ୱିତୀୟ ଉଦୟ ସମସ୍ତେ ଯେତେ ସମୟ ନିଏ ତାହାକୁ ଗୋଟିଏ ଗ୍ରହ ସାବନ ଦିନ କହନ୍ତି । ନକ୍ଷତ୍ର ସାବନ ଦିନ ସଂଖ୍ୟାରୁ ଗ୍ରହ ଭଗଣ ସଂଖ୍ୟା ବାଦ୍‌ଦେଲେ ଗ୍ରହ ସାବନ ଦିନ ସଂଖ୍ୟା ଆସେ । ଚନ୍ଦ୍ରର ଭଗଣ ସଂଖ୍ୟାରୁ (କଳ୍ପର) ସୂର୍ଯ୍ୟର ଭଗଣ ସଂଖ୍ୟା ବାଦ୍‌ଦେଲେ ଚାନ୍ଦ୍ରମାସ ସଂଖ୍ୟା ହୁଏ ।

**ସୂର୍ଯ୍ୟସ୍ୟ ମାସୈଃ ପରିବର୍ଜ୍ଜିତାସ୍ତେ କଳ୍ପେଽଧିମାସାଃ ସ୍ୟୁରଥେନ୍ଦୁମାସାଃ**
**ଖରାମ ନିଘ୍ନା ବସୁବାସରାସ୍ତେ ତିଥିକ୍ଷୟାଃ ସାବନବାସରୋନାଃ ।୭।**

କଳ୍ପର ଚାନ୍ଦ୍ରମାସ ସଂଖ୍ୟାରୁ କଳ୍ପ ସୂର୍ଯ୍ୟ ମାସ ସଂଖ୍ୟା ବାଦ୍‌ଦେଲେ କଳ୍ପରେ ଅଧିମାସ ସଂଖ୍ୟା ଆସିଯାଏ । କଳ୍ପର ଚାନ୍ଦ୍ରମାସ ସଂଖ୍ୟାକୁ ୩୦ରେ ଗୁଣି ସେଥିରୁ ସାବନ ଦିନ ସଂଖ୍ୟା ବାଦ୍‌ଦେଲେ କଳ୍ପର ତିଥି କ୍ଷୟ ହୁଏ ।

ମାସା ରବେଃ କୋଟିହତାଃ କୃତାଷ୍ଟ—
ଚନ୍ଦ୍ରେଷବଃ କୈରବ—ବାନ୍ଧବସ୍ୟ
ଖଖାଭ୍ରଷଡ଼୍—ବହ୍ନିଗୁଣାଗ୍ନି ରାମ—
ପାଥୋ-ଧିରାମେନ୍ଦ୍ରିୟ ସମ୍ମିତାଃ ସ୍ୟୁଃ ।୮।

ପୂର୍ଣ୍ଣପୂର୍ଣ୍ଣଗଗନାଙ୍ଗ ନର୍ତ୍ତୁର
ତ୍ର୍ୟଙ୍କବାଣ ବଧବୋଽଧିମାସକାଃ ।
ଖାଭ୍ରଖାଭ୍ର ଖ ଖ ଖାଭ୍ର ଦୃକ୍‌ଶରା—
ର୍ଥେନ୍ଦ୍ରିୟୈନ୍ଦବ ଇହାର୍କ ବାସରାଃ ।୯।

---

୨ । ଦିନାନି—ସାବନ ଦିନାନି ଇତ୍ୟର୍ଥଃ ।
ଚାନ୍ଦ୍ରାଃ—ଚନ୍ଦ୍ରଭଗଣାଃ ।

ଦନ୍ତ୍ୟନନ୍ତ ଖ ଖ ଖାଗ୍ନି ଖାଷ୍ଟୟୋ
ବାସରାଃ ଶଶଭୃତୋଽୟୁତା ହତାଃ
ଶୂନ୍ୟଶୂନ୍ୟଗଗନାଷ୍ଟଦୃଗ୍ଦ୍ୱିପା—
ଦ୍ରୀନ୍ଦୁଗୋନଗନଗାଶୁଗୋନ୍ଦବଃ ।୧୦।

ଭାନୁପକ୍ଷିମପରଭ୍ରମୋନ୍ମିତାଃ
ସାବନାଃ କୁଦବସା ଅମୀ ମତାଃ
ଅମ୍ବରାମ୍ବରଖଦୃକ୍ଶରାକୃତ—
ବ୍ୟାଳଖେନ୍ଦ୍ରିୟୟମାସ୍ତିଥିକ୍ଷୟାଃ ।୧୧।

| | | |
|---|---|---|
| ଗୋଟିଏ କଳ୍ପରେ | ସୌରମାସ ସଂଖ୍ୟା— | ୫୧୮୪୦୦୦୦୦୦୦ |
| ” | ଚାନ୍ଦ୍ରମାସ ସଂଖ୍ୟା— | ୫୩୪୩୩୩୩୬୦୦୦ |
| ” | ଅଧିମାସ ସଂଖ୍ୟା— | ୧୫୯୩୩୩୬୦୦୦ |
| ” | ସୌର ଦିନସଂଖ୍ୟା— | ୧୫୫୫୨୦୦୦୦୦୦୦୦ |
| ” | ଚାନ୍ଦ୍ର ଦିନ ସଂଖ୍ୟା— | ୧୬୦୩୦୦୦୦୮୦୦୦୦ |
| ” | ରବି ସାବନ ଦିନ ସଂଖ୍ୟା— | ୧୫୭୭୯୧୭୮୨୮୦୦୦ |
| ” | କ୍ଷୟତିଥି ସଂଖ୍ୟା— | ୨୫୦୮୨୨୫୨୦୦୦ |

ତୁଙ୍ଗଖେଟଭଗଣାନ୍ତରୈର୍ମିତା ମନ୍ଦକେନ୍ଦ୍ରଚଳକେନ୍ଦ୍ରପର୍ଯ୍ୟୟାଃ ·
ପୂର୍ତ୍ତିମେତ ନ ଯୁଗେ ଯତୋଽଖିଳାଃ ପର୍ଯ୍ୟୟାସ୍ତଦିହ କଳ୍ପ ଈରିତାଃ ।୧୨।

ଗ୍ରହ ଓ ତା'ର ଉଚ୍ଚ ମଧ୍ୟରେ ଥିବା କୋଣୀୟ ବ୍ୟବଧାନକୁ କେନ୍ଦ୍ର କହନ୍ତି । ଶୀଘ୍ର ଉଚ୍ଚ ହେଲେ ଶୀଘ୍ର କେନ୍ଦ୍ର ଓ ମନ୍ଦ ଉଚ୍ଚ ହେଲେ ମନ୍ଦ କେନ୍ଦ୍ର କୁହାଯାଇଥାଏ । ଫଳରେ ଉଚ୍ଚ ଭଗଣ ଓ ଗ୍ରହ ଭଗଣର ଅନ୍ତରରେ କେନ୍ଦ୍ର ଭଗଣ ହୋଇଥାଏ । ଗ୍ରହ, ଉଚ୍ଚ, ପାତ ଆଦିର ଭଗଣ ଯୁଗରେ ପୂର୍ଣ୍ଣ ହୋଇପାରେ ନାହିଁ । ତେଣୁ ସେଠାରେ ଏଗୁଡ଼ିକ ପୂର୍ଣ୍ଣ ହୁଏ ବୋଲି ସେଗୁଡ଼ିକୁ କଳ୍ପ ଭଗଣ ଆଦି କୁହାଯାଇଥାଏ ।

ଦ୍ରାକ୍‌ଚଳା-ଶୁଚପଳାଦିନାମଭିଃ ଶୀଘ୍ରତୁଙ୍ଗ ଉଦିତୋ ମହାତ୍ମଭିଃ
ଉଚ୍ଚ ମନ୍ଦ ମୃଦୁନାମଭିସ୍ତଥା ବର୍ତ୍ତିତେଽବ ମୃଦୁତୁଙ୍ଗକପ୍ରଥା ।୧୩।

ଦ୍ରାକ୍, ଚଳ, ଆଶୁ ଓ ଚପଳ ଆଦି ଶୀଘ୍ରୋଚ୍ଚର ପର୍ଯ୍ୟାୟ ଏବଂ ମୃଦୁ, ଉଚ୍ଚ, ମନ୍ଦ ଆଦି ମନ୍ଦୋଚ୍ଚର ପର୍ଯ୍ୟାୟ ଅଟେ ।

ପୂର୍ଣ୍ଣ ପୂର୍ଣ୍ଣ ରସଚନ୍ଦ୍ରବାହବ—
ସ୍ତର୍କବାଜିନବଚନ୍ଦ୍ରବାହବଃ ।
ଶୂନ୍ୟବାହୁଗୁଣଚନ୍ଦ୍ରବାହବୋ।
ରନ୍ଧ୍ରପଞ୍ଚରସଚନ୍ଦ୍ରବାହବଃ ।୧୪।

ଭର୍କଚନ୍ଦ୍ରକୁଦିନାସବଃ କ୍ରମାଦେତ ଏବ ହି ଭବନ୍ତି ମଧ୍ୟମାଃ
କିନ୍ତୁ ଷଷ୍ଟିଘଟିକାତ୍ମସାବନୈ ର୍ବାସରୈ ର୍ବ୍ୟବହରନ୍ତି ଜନ୍ତବଃ ।୧୫।

| | | | |
|---|---|---|---|
| ୨୧୬୦୦ | ଅସୁ (ଆର୍ଷ) | =୧ ମଧ୍ୟମ | ନାକ୍ଷତ୍ର ଦିନ |
| ୨୧୯୬୭ | ,, | =୧ ,, | ସୌରଦିନ |
| ୨୧୩୨୦ | ,, | =୧ ,, | ଚାନ୍ଦ୍ରଦିନ |
| ୨୧୬୫୯ | ,, | =୧ ,, | ସାବନଦିନ |

ନାକ୍ଷତ୍ର, ସୌର, ଚାନ୍ଦ୍ର ଓ ସାବନ ମଧ୍ୟରୁ କେବଳ ସାବନକୁ ହିଁ ସାଧାରଣତଃ ଲୋକେ ବ୍ୟବହାର କରନ୍ତି । ଏହି ସାବନ ଦିନର $\frac{1}{60}$ ଅଂଶକୁ ଘଡ଼ୀ ବା ଦଣ୍ଡ କୁହାଯାଇଥାଏ ।

ସ୍ୱ ସ୍ୱ ପର୍ଯ୍ୟୟକଳାଃ କୁବାସରୈର୍ଭଜିତାଃ ଦ୍ୟୁଗତୟଃ କଳାଦୟଃ
ଏବାମାତ୍ମଭଗଣାପ୍ତିଘସ୍ରତଃ ସ୍ୱ ସ୍ୱ ପର୍ଯ୍ୟୟଦିନାଦୟଃ ସଂଳମ୍ ।୧୬।

ଗ୍ରହର କଳ୍ପଭଗଣ କଳାକୁ କଳ୍ପସାବନ ଦିନରେ ଭାଗକଲେ ଗ୍ରହର ଦୈନିକ କଳାଦି ଗତି ହୋଇଥାଏ । କଳ୍ପସାବନଦିନ ସଂଖ୍ୟାକୁ କଳ୍ପ ଭଗଣ ସଂଖ୍ୟାରେ ଭାଗ ଦେଲେ ଫଳ ସେହି ଗ୍ରହର ଗୋଟିଏ ଭଗଣ ପୂର୍ତ୍ତିକାଳ ଆସିଥାଏ ।

ସ୍ୱ ସ୍ୱ ଷଷ୍ଟିଲବକୈଃ ସମନ୍ୱିତାଃ ସୂର୍ଭିର୍ଦିନଘଟୀ ପଳାଦୟଃ
କଳ୍ପିତାଃ ସମୟ ସୂକ୍ଷ୍ମତାପ୍ତୟେ ରାଶିଭାଗକଳିକାଦିବଦ୍ ବୁଧୈଃ ।୧୭।

ସୂର୍ଯ୍ୟପର୍ଯ୍ୟୟଦିନାଦୟଃ କ୍ରମା—
ଲ୍ଲାର୍ଣାଙ୍ଗଦହନାଃ ଶରେନ୍ଦବଃ ।
ଭୂଗୁଣାଃ କ୍ଷିତଗୁଣା ୩୧ ଶ୍ରୁତୁଭୁର୍ଜାଃ
ସଂକ୍ରମାର୍ଥ—ମନୁବର୍ଷ ମୀରିତାଃ ।୧୮।

ବୃତ୍ତର ଯେପରି ରାଶି, ଅଂଶ ଓ କଳା ପ୍ରଭୃତି ବିଭାଗ ଅଛି, ବିଦ୍ୱାନ୍‌ମାନେ ସେପରି ଗୋଟିଏ ଦିନର ମଧ୍ୟ ୬୦, ୬୦ ବିଭାଗ କରି ଦଣ୍ଡ, ପଳ ଆଦି ସୂକ୍ଷ୍ମସମୟବିଭାଗ କରିଅଛନ୍ତି । ସୂର୍ଯ୍ୟ ଗୋଟିଏ ପୂର୍ଣ୍ଣ ଭଗଣ ଭୋଗକରିବାକୁ ଦି ୩୬୫।୧୫।୩୧।୩୧ ଦରକାରକରେ ।

ଗଣି ଭୁକ୍ତଦବସାଦୟୋ ଗୁଣେ—
ର୍ମଧ୍ୟମସ୍ୟ କୁରସାଗ୍ନୟଃ ଶରାଃ
ଭନ ଭନ ଗୁଣଭୂମି ସମ୍ମିତା
ର୍ଜୈବବସ୍ତ୍ରରକତେ ମୟୋଦତାଃ ।୧୯।

ମଧ୍ୟମମାନରେ ବୃହତ୍ପଣ୍ଡ ଗୋଟିଏ ଗଣି ଭୋଗ କରିବା ନିମନ୍ତେ ଦା୩୬।୪।୨୭।୨୭।୧୩ ଦରକାର କରେ ।

ଲଖ୍ୟନ୍ତେକ୍ଷିତସାବନୈକ ଦବସେ ତଭୁକ୍ତୟୋ ମଧ୍ୟମା
ଲପ୍ତାଦ୍ୟା ଦଶଧା ଯଦାହୃତଦନୈ ଗ୍ରୟାନ୍ତ ମଧ୍ୟଗ୍ରହାଃ ।
ଭନୋରଙ୍କଶରା ଗଜା ଦଶ ଦଶଃ ସିଦ୍ଧାଃ ସହସ୍ରାଂଶବ
ସ୍ତ୍ରିଂଶଦ୍ ବାରଧୟୋବୟଦ୍ ବଧୁମିତା ରତ୍ନାକରାଃ କୀର୍ତ୍ତିତାଃ ।୨୦।

ଚନ୍ଦ୍ରସ୍ୟାଭ୍ରନବାଦ୍ରୟଃ କୃତଗୁଣା ଦ୍ୱ୍ୟର୍ଥା ସ୍ୱୟୋଙ୍କାବ୍ଧୟୋ
ନାଗାଦ୍ରୌ ରସଭୂମୟଶ୍ଚ ହରତ ଶ୍ଚନ୍ଦ୍ରେନ୍ଦୁ ସଂଖ୍ୟାଃ କ୍ରମାତ୍ ।
ଭୌମସ୍ୟେନ୍ଦୁ ଗୁଣା ରସେକ୍ଷଣମିତା ସ୍ତ୍ରିଂଶଦ୍ଷଡ଼ଦ୍ରୟବ୍ଧୟଃ
ଶ୍ରୁତ୍ୟମ୍ଭୋନଧୟୋ ରଦା ନବକୃତା ରାମାଃ ସମୁଦ୍ରାମତାଃ ।୨୧।

ଜ୍ଞସ୍ୟାର୍ଥାବ୍ଧିଭୁଜା ରଦା ଙ୍ସଭୁବୋଽଶ୍ୱାଃସପ୍ତଚନ୍ଦ୍ରା ଘନା
ଗୋଽର୍ଥା ବହ୍ନିକୃତା ଦୃଗମ୍ବୁ ନଧୟୋବେଦାବ୍ଧୟୋ ଦ୍ରାଗ୍‌ଗତଃ ।
ବେଦାନନ୍ଦଶରାଃ ଶରାଃ ସ୍ୱରଗୁଣାଃଖଂଷଡ୍‌ଗୁଣାଃ କ୍ୱବ୍ଧୟଃ
କ୍ଷ୍ମାଭୃତ୍କ୍ଷ୍ମା ବସୁଧା ସୁଧାଂଶୁ ବଶିଖା ବାଚସ୍ପତ—ପ୍ରାଗ୍ଗତଃ ।୨୨।

ଶୌକ୍ରୀ ଷଣ୍ଣବତ—ର୍ହୟାଃ ସ୍ୱରଗୁଣାଃ ସପ୍ତାବ୍ଧୟୋଽଶ୍ୱେଷବଃ
ଖାର୍ଥା ନନ୍ଦଗୁଣା ରଦା ବଧୁଗୁଣା ବାଣାଗ୍ନୟୋ ଦ୍ରାଗ୍‌ଗତଃ ।
ମନ୍ଦସ୍ୟ ଦ୍ୱୟ ମଭ୍ର ମଙ୍ଗନୟନା—ନ୍ୟର୍ଥେଷବ—ଶ୍ଚକ୍ଷୁଷୀ
ରାମାର୍ଥାଃ କ୍ଷିତ ବାହବଶ୍ଚ ନୟନେ ବେଦାଃ ସମୁଦ୍ରେଷବଃ ।୨୩।

ଚନ୍ଦ୍ରୋଚ୍ଚସ୍ୟ ରସାଃ ଖବାଦ୍ୱ୍ୟୟ ଉଦଧ୍ୟର୍ଥାଃ କୁରାମା ନଭୋ
ବେଦାମ୍ଭୋନଧୟଃ ଶରା ଭୁଜଶରାଃ ପଞ୍ଚାବ୍ଧୟୋଽଙ୍କାଗ୍ନୟଃ ।
ତପ୍ତାତସ୍ୟ ଗୁଣା ଦଶଃ ସ୍ୱରକୃତାଃ ପୂର୍ଣ୍ଣାବ୍ଧୟୋଽଭ୍ରାବ୍ଧୟଃ
ଷଟ୍‌ପକ୍ଷା ଗିରଶାଶ୍ଚ ମାର୍ଗଣଦୃଶୋ ବଶ୍ୱେ ଖରାମା ଇତ ।୨୪।

ବର୍ତ୍ତମାନ ଏକ ସାବନ ଦିନରେ ଗ୍ରହମାନଙ୍କର ଗତି (ଦୈନିକ) ଲିପ୍ତାଦି ଦଶ ଭାଗରେ ଲେଖା ଯାଉଅଛି । ଗ୍ରହମାନଙ୍କର ଏହି ଦୈନିକ ଗତିକୁ ଇଷ୍ଟ ଦିନ ସଂଖ୍ୟାରେ ଗୁଣିଦେଲେ ଇଷ୍ଟ ଦିନ ସମ୍ବନ୍ଧୀ ମଧ୍ୟମ ଗ୍ରହ ଆସିଯିବ ।

| | | | |
|---|---|---|---|
| ସୂର୍ଯ୍ୟର | ଦୈନିକ ମଧ୍ୟମ ଗତି (କଳାଦି) | | ୫୯।୮।୧୦।୧୦।୨୪।୧୨।୩୦।୪୧୦।୪ |
| ଚନ୍ଦ୍ରର | ,, | ,, | ୭୯୦।୩୪।୫୨।୩।୪୯।୮।୨।୧୬।୧୦।୧୧ |
| ମଙ୍ଗଳ | ,, | ,, | ୩୧।୨୬।୩୦।୬।୪୭।୪୪।୩୨।୪୯।୩।୪ |
| ବୁଧ ଶୀଘ୍ରୋଚ୍ଚ,, | | ,, | ୨୪୫।୩୨।୧୬।୭।୧୭।୧୭।୫୯।୪୩।୪୨।୪୪ |
| ବୃହସ୍ପତିର | ,, | ,, | ୪।୫୯।୫।୩୭।୦।୩୬।୪୧।୧୭।୧।୫୧ |
| ଶୁକ୍ର ଶୀଘ୍ରୋଚ୍ଚ,, | | ,, | ୯୬।୭।୩୭।୪୭।୫୭।୫୦।୩୯।୩୨।୬୧।୩୫ |
| ଶନିର | ,, | ,, | ୨।୦।୨୬।୫୫।୨।୫୩।୨୧।୨।୪।୫୪ |
| ଚନ୍ଦ୍ରୋଚ୍ଚର | ,, | ,, | ୬।୪୦।୫୪।୩୧।୦।୪୪।୫।୫୨।୪୫।୩୯ |
| ଚନ୍ଦ୍ରପାତର | ,, | ,, | ୩।୧୦।୪୭।୪୦।୪୦।୨୬।୧୧।୨୫।୧୩।୩୦ |

**ଭ୍ରାମ୍ୟଦ୍‌ଭାତି ଯଦୀୟ୍‌ଭାସ୍ୱର—ବପୁ ର୍ବିଭ୍ର—ଦୁଚକ୍ର ପ୍ରଭ୍ରଂ**
**ଭିନ୍ଦଦ୍ଭୀମତମଃ ସୁଦର୍ଶନମିତି ଖ୍ୟାତଂ କ୍ଷୟାନ୍ତଂ କ୍ଷିତୌ**
**ଭକ୍ତାନାଂ ଭବଭୀତି—ସମ୍ଭବ ଭିଦେ ଭୂଭାର ଭୂତଚ୍ଛିଦେ**
**ଧାମ୍ନେ ଶ୍ୟାମଧରାଧରାଧିପତୟେ କସ୍ମୈଚିଦସ୍ମୈ ନମଃ ।୨୫।**

ମୁଁ ଶ୍ରୀ ଜଗନ୍ନାଥଙ୍କୁ ଭକ୍ତି ଭାବରେ ପ୍ରଣାମ କରୁଅଛି । ସେ ନୀଳାଚଳରେ ବାସ କରୁଅଛନ୍ତି ଏବଂ ସର୍ବଦା ସୁଦର୍ଶନ ଚକ୍ର ଧାରଣ କରିଅଛନ୍ତି । ସେ ଏହାର ଦ୍ୱାରା ଭକ୍ତ-ମାନଙ୍କର ଭୟ ଦୂର କରିଥାନ୍ତି । ସୁଦର୍ଶନ ଚକ୍ର ଆକାଶସ୍ଥ ଭଚକ୍ର (କ୍ରାନ୍ତି ବୃତ୍ତ) ର ତେଜ ଧାରଣ କରିଅଛି, ଏବଂ ବିଶ୍ୱର ଅନ୍ଧକାରକୁ ଦୂର କରିଅଛି । ଏହି ଚକ୍ରଦ୍ୱାରା ସେ ପୃଥିବୀର ଭାରଭୂତ ପ୍ରାଣୀମାନଙ୍କର ସଂହାର କରିଥାନ୍ତି । ଏହି ଚକ୍ରର କାର୍ଯ୍ୟକାରିତା ପ୍ରଳୟ ପର୍ଯ୍ୟନ୍ତ ରହିଥାଏ ।

ଇତ୍ଥ୍ୟୁତ୍କଳୋତ୍କଳନୃପାଳକୁଳପ୍ରସୂତ—
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତ ଦର୍ପଣ ଉପାହ୍ୱତବାଳବୋଧେ
ଯାତୋ ଦ୍ୱିତୀୟ ଇହ ସଦ୍ଭଗଣଃ ପ୍ରକାଶଃ ।୨୭।

ଇତି ଶ୍ରୀ ଚନ୍ଦ୍ରଶେଖର କୃତୌ ସିଦ୍ଧାନ୍ତ ଦର୍ପଣେ
ମଧ୍ୟମାଧିକାରେ ଭଗଣାଦ ବର୍ଣ୍ଣନୋ
ନାମ ଦ୍ୱିତୀୟଃ ପ୍ରକାଶଃ

ଗ୍ରହମାନଙ୍କର ଭଗଣ କଥା ନେଇ ସିଦ୍ଧାନ୍ତ ଦର୍ପଣର ୨ୟ ପ୍ରକାଶ ବର୍ତ୍ତମାନ ଶେଷ ହେଲା । (ଏହି ଶ୍ଳୋକର ଅନ୍ୟ ତିନି ପାଦ ପୂର୍ବ ପ୍ରକାଶରେ ଅନୁଦିତ ହୋଇଥିବାରୁ ଆଉ ଲେଖା ଯାଉନାହିଁ କି ଏଣିକି ମଧ୍ୟ ଲେଖାଯିବ ନାହିଁ ।)

## ତୃତୀୟଃ ପ୍ରକାଶଃ

### ଗ୍ରହାନୟନ ବର୍ଣ୍ଣନମ୍

**ଅଥାଭି—ବାଞ୍ଛିତେ ବର୍ଷେ ମାସେ ପକ୍ଷେ ତଥା-ବପି**
**ତାପନୈନ୍ଦବମାନୋତ୍ଥସାବନାହର୍ଗଣକ୍ରମାତ୍ ।୧।**

କୌଣସି ବର୍ଷର ନିର୍ଦ୍ଦିଷ୍ଟ ମାସ, ପକ୍ଷ ଓ ତିଥିରେ ଗ୍ରହ (ଗ୍ରହଗଣ୍ୟାଦି) ଆଣିବାକୁ ଚାହିଁଲେ ପ୍ରଥମେ କଳ୍ପଠାରୁ ଆରମ୍ଭ କରି ନିର୍ଦ୍ଦିଷ୍ଟ ଦିନ ପର୍ଯ୍ୟନ୍ତ ଅହର୍ଗଣ (ଦିନସମୂହ) ସାଧନ କରିବାକୁ ହେବ । ଏଥିରେ ସୌର ଓ ଚାନ୍ଦ୍ର ମାସ ଉଭୟ ଦରକାର ହେଉଥିବାରୁ ସେମାନଙ୍କୁ ଗ୍ରହଣ କରିବ ।

**ମଧ୍ୟଗ୍ରହାଦ୍ୟମାନେତୁଂ ସ୍ଥାପୟେତ୍କଳ୍ପବର୍ତ୍ତ୍ତଃ**
**ଅତୀତାନାଂ ଷଣ୍ମନୂନାଂ ସନ୍ଧିସପ୍ତକ ସଂଯୁତାନ୍ ।୨।**

**ଅବ୍ଦାନ୍ ବୈବସ୍ୱତମନୋଃ ଶୈଳବାହୁ ମିତୈର୍ଯୁଗୈଃ**
**କୃତାଦ୍ୟଙ୍ଘ୍ରିଂ ବୟୁଯୁତୈଃ କଲ୍ୟତୀତାବ୍ଦକୈଃ ସମମ୍ ।୩।**

**ସର୍ବମେକତ୍ର ସଂଯୋଜ୍ୟ ସୃଷ୍ଟିକାଳଂ ତ୍ୟଜେତ୍ତତଃ**
**ଖାଭ୍ର ଖାମ୍ବୁ ଧିଷଟ୍ ପୂର୍ଣ୍ଣଶୈଳେନ୍ଦୁ ପ୍ରମିତାବ୍ଦକମ୍ ।୪।**

**ତତଃ ଶେଷାନ୍ ଗତାର୍କାବ୍ଦାନ୍ ହତ୍ୱା ଦ୍ୱାଦଶଭିଃ ପୁନଃ**
**ଚୈତ୍ର ଶୁକ୍ଳାଦଭି-ର୍ଯାତେର୍ମାସୈଃ ସଂଯୋଜ୍ୟ ତାନ୍ ପୃଥକ୍ ।୫।**

**କଦ୍ରେଶ୍ୟ ଗୁଣୟିତ୍ୱାଧଃ ପଙ୍କ୍ତ୍ୟ କଳ୍ପାଧିମାସକୈଃ**
**ବିଭଜ୍ୟ କଳ୍ପ ସପ୍ତାଶ୍ୱ ମାସୈର୍ଲବ୍ଧାଧିମାସକାନ୍ ।୬।**

**ଉର୍ଦ୍ଧ୍ୱେ ସଂଯୋଜୟେଦେବଂ ଚାନ୍ଦ୍ରମାସା ଭବନ୍ତି ତେ**
**ତ୍ରିଂଶଦ୍ଧ୍ନା ଗତତିଥ୍ୟାଢ୍ୟା ଦ୍ୱିଷ୍ଠାଃ କଳ୍ପତିଥି କ୍ଷୟୈଃ ।୭।**

ହୃତାଃ କଲ୍ପେନ୍ଦୁ ଘସ୍ରାପ୍ତା ଲବ୍‌ଧାବମବବର୍ଜ୍ଜିତାଃ
ଭବନ୍ତ ରବବାର୍ଯ୍ୟଦରବମଧମସାବନାଃ । ୮ ।
ବାସରାଃ କୁଦନାଖ୍ୟାସ୍ତେ ଗତା ଲଙ୍କାର୍ଦ୍ଧରାବତଃ

ଅହର୍ଗଣ ଏହିପରି ଭାବରେ ଆଣିବାକୁ ହୋଇଥାଏ ।

୧ । ୬ ମନୁ, ୭ଟି ମନୁସନ୍ଧି (ମନୁସନ୍ଧି = ସତ୍ୟଯୁଗ) ୨୭ ମହାଯୁଗ (୭ମ ମନୁ "ବୈବସ୍ୱତ") ୩ ପାଦଯୁଗ (ସତ୍ୟ, ତ୍ରେତା, ଦ୍ୱାପର) ଓ କଳିଯୁଗର ଗତ ସୌର ବର୍ଷକୁ ଯୋଗ କରିଦିଅ ।

୨ । ସେଥିରୁ ସୃଷ୍ଟି ବର୍ଷ ୧୭୦୬୪୦୦୦ ବାଦ ଦିଅ ।

୩ । ଶେଷକୁ ୧୨ରେ ଗୁଣି ମାସକର ଓ ସେଥିରେ ଚୈତ୍ରଠାରୁ ଗତ ମାସ ସଂଖ୍ୟା ଯୋଗକର ।

୪ । ଏହି ଫଳକୁ ଦୁଇ ଜାଗାରେ ରଖ ।

୫ । ଗୋଟିଏ ଜାଗାରେ ଏହି ଫଳକୁ କଳ୍ପ ଅଧିମାସରେ ଗୁଣି, ଗୁଣଫଳକୁ କଳ୍ପ ସୌର ମାସରେ ହରିଲେ ଯେଉଁ ଫଳ ହେବ ତାହା, ଗତ ସୌର ବର୍ଷ ସମ୍ବନ୍ଧୀ ଅଧିମାସ ହେବ ।

୬ । ଏହି ଫଳକୁ ୩ରେ ଆସିଥିବା ଫଳରେ ଯୋଗକଲେ ତାହା କଳ୍ପଠାରୁ ଗତ ଚାନ୍ଦ୍ର ମାସ ସଂଖ୍ୟା ହୋଇଯିବ ।

୭ । ଏହି ଚାନ୍ଦ୍ର ମାସକୁ ୩୦ରେ ଗୁଣି ଗତ ଶୁକ୍ଳ ପ୍ରତିପଦଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ତିଥିକୁ ସେଥିରେ ମିଶାଅ । ଏହା ଗତ ତିଥି (କଳ୍ପଠାରୁ ବର୍ତ୍ତମାନ ଦିନ ପର୍ଯ୍ୟନ୍ତ) ହେବ ।

୮ । ଏହାକୁ ପୁଣି ଦୁଇ ଜାଗାରେ ରଖ ।

୯ । ଗୋଟିଏ ଜାଗାରେ ଏହି ତିଥିକୁ କଳ୍ପତିଥି କ୍ଷୟରେ ଗୁଣି ଗୁଣଫଳକୁ କଳ୍ପତିଥି ସଂଖ୍ୟାରେ ହର । ଫଳ (ଲବ୍‌ଧି)କୁ ଅନ୍ୟ ଜାଗାରେ ଥିବା କଳ୍ପାଦିରୁ ବର୍ତ୍ତମାନ ପର୍ଯ୍ୟନ୍ତ ତିଥିରୁ ଫେଡ଼ । ଅନ୍ତର ଫଳ ସାବନ ଦିନ ସଂଖ୍ୟା ହୋଇଯିବ । ଏହାକୁ ୭ରେ ହରିଲେ, ତହିଁର ଶେଷରୁ ରବିବାରାଦି ଗଣନା କରି ଗତ ଦିନର ବାର ମଧ୍ୟ ଆସିବ ।

ଏହିବାର (ରବିବାର) ସୃଷ୍ଟି ଆରମ୍ଭରେ ଲଙ୍କାର ଅର୍ଦ୍ଧରାତ୍ରିରେ ହୋଇଥିଲା । ସେଥିପାଇଁ ସେହିଠାରୁ ବାର ଆସିବ । [ଭାରତୀୟ ଭୂମଧ୍ୟ ରେଖା (ମାଧ୍ୟାହ୍ନ ରେଖା) ବିଷୁବକୁ ଯେଉଁଠାରେ କାଟିଛି ସେହି ବିନ୍ଦୁକୁ ଲଙ୍କା ବୋଲି ଭାରତୀୟ ଜ୍ୟୋତିଷ ସିଦ୍ଧାନ୍ତ ଗ୍ରନ୍ଥମାନଙ୍କରେ କୁହାଯାଇଛି । ]

ଅବାଧିମାସାଂବମୟୋ ଶେଷଦ୍ୟୁଘଟିକାଦକମ୍ । ୯ ।

ନଗୃହ୍ୟତେଽଧିମାସସ୍ତୁ ଶୁଦ୍ଧେଃ ପୂର୍ବଂ ଗତୋ ଯଦ
ତଦାଶେଷାଂକ-ଭୂୟସ୍ତ୍ୱାଦେକଂ ଲବ୍ଧେଷୁ ଯୋଜୟେତ୍ ।୧୦।

ଶୁଦ୍ଧୌ ସତ୍ୟାଂ ଯଦା ଗାମୀ ଶେଷାଲ୍ପତ୍ୱାତ୍ତତସ୍ତ୍ୟଜେତ୍
ତଥାହ୍ନାଂ ବାର ବୈଷମ୍ୟେ ସୈକବ୍ୟେକତ୍ୱମିଷ୍ୟତେ । ୧୧ ।

ରବୀନ୍ଦୁ ସ୍ପଷ୍ଟମାନେନ ଗ୍ରାହ୍ୟୟୋସ୍ତିଥିମାସୟୋଃ
ଯ୍ୟାଶ୍ରିଦ୍ଧୌ ମଧ୍ୟମାନେନ କ୍ୱଚଦେକାଧି-କୋନତା । ୧୨ ।

ଅଥାନୀତୈ ର୍ଦିନୈଃ ସାଧ୍ୟା ଦନମାସାବ୍ଦ ପାଳକାଃ
ନିର୍ଗତୋଽହର୍ଗଣାଃ ସୈକଃ ସପ୍ତଭକ୍ତୋଽବଶେଷକଃ । ୧୩ ।

ଏଠାରେ ଗତ ଅଧିମାସ ଆଣିବାବେଳେ କେବଳ ଲବ୍ଧି ନିଆଯାଇ ଶେଷ ଛାଡ଼ି ଦେଇଥିବାରୁ ଏବଂ କଳ୍ପଗତ ସୌର ମାସ ଓ ଅଧି ମାସକୁ ମଧ୍ୟମମାନରେ ଗ୍ରହଣ କରାଯାଇ- ଥିବାରୁ ସ୍ପଷ୍ଟମାନରେ କେତେକ ବ୍ୟବଧାନ ଆସିଯିବାର କଥା, ତେଣୁ ଶେଷ, ଭାଜକର ଅତି ନିକଟବର୍ତ୍ତୀ ହୋଇଥିଲେ ଅଥବା ଗୋଟିଏ ଅଧିମାସ ନିକଟରେ ଗତ ହୋଇଥିବା ପାଞ୍ଜିରୁ ଦେଖାଗଲେ ଉକ୍ତ ଲବ୍ଧିରେ ୧ ମିଶାଇ ଗତ ଅଧିମାସ ସଂଖ୍ୟା ଗ୍ରହଣ କରିବାକୁ ହେବ । ଯଦି ଭାଗଶେଷ ଅତ୍ୟନ୍ତ କମ୍ ଅଥବା ନିକଟରେ ଆଗକୁ ଗୋଟିଏ ଅଧିମାସ ପଡ଼ିବା ଦେଖାଯିବ ( ପଞ୍ଜିକାରୁ ) ତାହାହେଲେ ଲବ୍ଧିରୁ ୧ ବାଦ ଦେଇ ଅଧିମାସ ସଂଖ୍ୟା ଗ୍ରହଣ କରିବ ।

ଅହର୍ଗଣରୁ ବାର ଆଣିବା ବେଳେ ମଧ୍ୟ ଏହିପରି ଗୋଟିଏ ବାର (ଦିନର) ବ୍ୟବଧାନ ଆସିଯାଇପାରେ । ସେଥିନିମନ୍ତେ ଅହର୍ଗଣରେ ୧ ଯୋଗ ବା ବିୟୋଗ କରି ଅହର୍ଗଣ ଗ୍ରହଣ କରିବ ।

ଏହି ପରି ଭାବରେ ଅହର୍ଗଣ ଆଣି ସାରିବା ପରେ ସେଥିରେ ପୁଣି ୧ ମିଶାଇ (ବର୍ତ୍ତମାନ ଦିନ ନିମନ୍ତେ) ତାକୁ ୭ରେ ହରି ଶେଷରୁ ରବି ଆଦି ବାର ଗଣି ବସିଲେ ବର୍ତ୍ତମାନ ଦିନର ବାର ଆସିଯିବ, ଏଥିରେ ସନ୍ଦେହ ନାହିଁ । ୭ରେ ହରିଲା ବେଳେ କିଛି ଅବଶେଷ ନ ରହିଲେ ଶନିବାର ହେବ ।

ବାସରାଧିପତଃ ସୂର୍ଯ୍ୟାନ୍ନିଃଶେଷତ୍ୱେ ତୁ ସପ୍ତମଃ
ଖାଗ୍ନ୍ୟାପ୍ତୋ ଦ୍ୟୁଗଣୋଲବ୍ଧଂ ଦ୍ୱିନିଘ୍ନଂ ରୂପ ସଂଯୁତମ୍ ।୧୪।

ଅହର୍ଗଣକୁ ୩୦ରେ ହର ଲବ୍ଧ ଯାହା ହେବ ତାହାକୁ ୨ରେ ଗୁଣି ସେଥିରେ ୧ ମିଶାଇ ଏହି ଫଳକୁ ୭ରେ ହର । ଭାଗଶେଷରୁ ରବି ଆଦି ବାର ଗଣନା କର । ଏହି ବାରର ଅଧିପତି ହିଁ ମାସର ଅଧିପତି ହେବ ।

**ସପ୍ତଭିଃ କ୍ଷୟିତଂ ଶେଷୋ ମାସେଶୋଽବର୍ତ୍ତିମାନକଃ**
**ଖରାମଶେଷାସ୍ତଭକ୍ତଘସ୍ରାଭୋଗ୍ୟା-ସ୍ତତୋଽପରେ । ୧୫ ।**

ଅହର୍ଗଣକୁ ୩୦ରେ ହରିଲାବେଳେ ଯେଉଁ ଭାଗଶେଷ ରହେ, ତାହା ଚଳିତ ମାସର ଗତ ଦିନ । ଏଣୁ ଏହି ସଂଖ୍ୟାକୁ ୩୦ରୁ ବାଦ ଦେଲେ ଚଳିତ ମାସର ଭୋଗ୍ୟ ଦିନ ସଂଖ୍ୟା ଆସିବ ।

**ଦିନୌଘଃ ଖରସାଗ୍ନ୍ୟାପ୍ତ-ସ୍ତ୍ରିଘ୍ନଶ୍ଚନ୍ଦ୍ର—ଯୁତୋ ନଗୈଃ**
**ହୃତଶେଷଃ ସ୍ୱବର୍ଷେଶୋ ଗତୈଷ୍ୟାହାନି ପୂର୍ବବତ୍ । ୧୬ ।**

ଅହର୍ଗଣକୁ ୩୬୦ରେ ହରି ଲବ୍ଧିକୁ ୩ରେ ଗୁଣି ସେଥିରେ ୧ ମିଶାଇ ଶେଷଫଳକୁ ୭ରେ ହର । ଭାଗଶେଷରୁ ରବି ଆଦି ବାର ଗଣିବାକୁ ହେବ । ଏହାହିଁ ସେ ବର୍ଷର ଅଧିପତି । ଅହର୍ଗଣକୁ ୩୬୦ରେ ହରିଲା ବେଳେ ଯେଉଁ ଭାଗଶେଷ ରହିବ ତାହା ଚଳିତ ବର୍ଷର ଭୁକ୍ତ ଦିବସ ଏବଂ ଏତିକ ଦିନ (ଅହର୍ଗଣ ପୂର୍ବରୁ) ଏ ବର୍ଷର ଶେଷ ହୋଇଛି ।

**ପ୍ରତ୍ୟବ୍ଦଂ ପ୍ରଥମାସଞ୍ଚ ସ୍ୱବାରେ ତତ୍ପ୍ରବର୍ତ୍ତନଂ**

ମାସର ପ୍ରଥମ ଦିନର ଅଧିପତି ସେହି ମାସର ଅଧିପତି ଏବଂ ବର୍ଷର ପ୍ରଥମ ଦିନର ଅଧିପତି ସେହି ବର୍ଷର ଅଧିପତି ବୋଲି ଜାଣିବାକୁ ହେବ ।

**ଶତାନନ୍ଦାଦଭିଃ ପ୍ରୋକ୍ତୋ ଭିନ୍ନୋ ଯଃ ପାଳକାଧିପଃ । ୧୭ ।**

**ସ ସୌରାବ୍ଦାଧିପୋ ଜ୍ଞେୟୋ ମେଷସଂକ୍ରାନ୍ତବାରପାତ୍**
**ବାରପ୍ରବୃତ୍ତିସମୟାଦେଷ୍ୟାତ୍ ସଂକ୍ରାନ୍ତ ନାଡ଼ିକାଃ । ୧୮ ।**

**ପ୍ରୋକ୍ଷ୍ୟ ଶେଷଃ କୃତଗୁଣ ସ୍ତ୍ରିଧା ଧୋଽଧୋଽଧରକ୍ରମାତ୍**
**ସପ୍ତାଗ୍ନ୍ୟାପ୍ତ ଯୁତୋଽଷ୍ଟାପ୍ତସଂଯୁକ୍ତସ୍ତଦିନାଦିକମ୍ । ୧୯ ।**

**ସପାଳୟୁତ ମେଷାଦେସ୍ତତସ୍ତତ୍ପରଖେଚରଃ**
**ସ୍ୱାର୍ଥାଂଶୋନେନ୍ଦୁଶୈଳାକ୍ଷି ଦିନାନି ପ୍ରତିପାଳକଃ । ୨୦ ।**

ଶତାନନ୍ଦ ଓ ତାଙ୍କର ଅନୁଯାୟୀମାନେ ଏ ବିଷୟରେ ଭିନ୍ନ ମତ ପୋଷଣ କରନ୍ତି । ଶତାନନ୍ଦ କହନ୍ତି—ମେଷ ସଂକ୍ରାନ୍ତି ଯେଉଁ ବାରରେ ପଡ଼େ, ସେହି ବାରର ଅଧିପତି ହିଁ

ସେହି ବର୍ଷର ଅଧିପତି । ସେହି ବର୍ଷରୁ ଦିନ ସଂଖ୍ୟା ନିର୍ଣ୍ଣୟ କରିବା ନିମନ୍ତେ ସେ ଏହି ନିୟମ ଦେଇ ଅଛନ୍ତି—ରବି ମେଷ ସଂକ୍ରାନ୍ତିରେ ପ୍ରବେଶ କରିବା ସମୟଠାରୁ ଆଗାମୀ ବାର ପ୍ରବେଶ ଯେତେ ସମୟ ପରେ ହୁଏ, ତାହାକୁ ଦଣ୍ଡାଦିରେ ବାହାର କରି ୯ରେ ଗୁଣି ତିନି ସ୍ଥାନରେ ରଖ । ଶେଷ ସ୍ଥାନର ଦଣ୍ଡାଦିକୁ ୩୨ରେ ହର । ଫଳକୁ ନେଇ ୨ୟ ସ୍ଥାନର ଦଣ୍ଡାଦିରେ ମିଶାଅ । ଏହି ଯୋଗଫଳକୁ ୮ରେ ହରି ଭାଗଫଳକୁ ପ୍ରଥମ ସ୍ଥାନସ୍ଥିତ ଦଣ୍ଡାଦିରେ ଯୋଗ କର । ଯୋଗଫଳ ଦିନ ସଂଖ୍ୟା ହେବ—ଯାହାକୁ ଏହି ବର୍ଷପତି ଶାସନ କରନ୍ତି । ଏହି ଯୋଗଫଳକୁ ବର୍ଷ ଦିନ ସଂଖ୍ୟାରୁ ବାଦ୍‌ଦେଲେ ଯେତେ ଦିନ ରହିବ ସେଗୁଡ଼ିକୁ ସଂକ୍ରାନ୍ତି ପର ଦିନର ଗ୍ରହ ଶାସନ କରିବେ । ଏହି ମତାନୁସାରୀ କୌଣସି ଗ୍ରହ ୨୭୧ ଦିନରୁ ଅଧିକ ଦିନ ଶାସନ କରିପାରିବ ନାହିଁ । ଏ ସଂଖ୍ୟା କମି କମି ୨୭୦।୨୮ ମଧ୍ୟ ହୋଇପାରେ ।

**ଅତୀତୋଽହର୍ଗଣଃ ସ୍ୱ ସ୍ୱ ଭଗଣୈର୍ଗୁଣିତୋ ହୃତଃ**
**କଲ୍ପଭୂଦିବସୈର୍ମଧ୍ୟୋ ଭଗଣାଦି ର୍ଗ୍ରହୋ ଭବେତ୍ । ୨୧ ।**

**ଶେଷାସୂର୍ଯ୍ୟୈଃ ଖରାମୈଶ୍ଚ ଷଷ୍ଟ୍ୟାଷଷ୍ଟ୍ୟା ପୁନଃ ପୁନଃ**
**ଗୁଣିତାଃ କୁଦିନାପ୍ତାଃ ସ୍ୟୁର୍ଭାଂଶ ଲିପ୍ତାବିଲିପ୍ତିକାଃ । ୨୨ ।**

ନିର୍ଦ୍ଦିଷ୍ଟ ଦିନରେ ଗ୍ରହ ଆଦି ଆଣିବାର ରୀତି ଏଥିରେ ବର୍ଣ୍ଣିତ ହୋଇଅଛି—

ଅହର୍ଗଣକୁ କଲ୍ପଗ୍ରହ ଭଗଣରେ ଗୁଣି ତାହାକୁ କଲ୍ପ ସାବନ ଦିନରେ ହର । ଭାଗ-ଫଳ ଗତ ଭଗଣ ସଂଖ୍ୟା ହେବ । ହୃତାବଶେଷକୁ ୧୨ରେ ଗୁଣି ପୁଣି ସେହିପରି କଲ୍ପ ସାବନ ଦିନରେ ହର । ପୁଣି ଅବଶେଷକୁ ୩୦, ୬୦ ଏବଂ ୬୦ରେ ଗୁଣି ଯଥା କ୍ରମେ ସେହି କଲ୍ପ ସାବନ ଦିନରେ ହର । ଫଳ ଯଥାକ୍ରମେ ରାଶି, ଅଂଶ, କଳା ଓ ବିକଳା ଆସିଯିବ । ଏହାହିଁ ନିର୍ଦ୍ଦିଷ୍ଟ ଦିନରେ ଗ୍ରହର ରାଶି, ଅଂଶ ଆଦି ବୋଲି ଜାଣିବ ।

ସୂର୍ଯ୍ୟସିଦ୍ଧାନ୍ତେ ;—

**ଏବଂସ୍ୱ ଶୀଘ୍ର ମନ୍ଦୋଚ୍ଚା ଯେପ୍ରୋକ୍ତାଃ ପୂର୍ବଯାୟିନଃ**
**ବିଲୋମ ଗତୟଃ ପାତାସ୍ତଦ୍ ଚକ୍ରାଦ୍ ବିଶୋଧିତାଃ । ଇତି ।୨୩।**

ଏହି ରୀତିରେ ନିର୍ଦ୍ଦିଷ୍ଟ ଦିନରେ ଶୀଘ୍ରୋଚ୍ଚ ମନ୍ଦୋଚ୍ଚ ଓ ପାତ ମଧ୍ୟ ଅଣାଯିବ । ମାତ୍ର ପାତର ରାଶ୍ୟାଦି ଅଣାଯିବା ପରେ ତାକୁ ଗୋଟିଏ ଚକ୍ର (୧୨ ରାଶିରୁ) ବାଦ୍ ଦେବାକୁ ହେବ । କାରଣ ପାତର ଗତି ଗ୍ରହ ଉଚ୍ଚାଦି ଗତିର ବିପରୀତ ।

**ବୁଟେରାସ୍ତୁ ଭଗଣା ଯାତାସ୍ତ୍ରିଯୁତା ଦ୍ୱାଦଶାହତାଃ**
**ଗତରାଶିଯୁତାସ୍ତଦ୍ୱ, ରାଶିଦ୍ୱୟଯୁତାଃ ପୁନଃ । ୨୪ ।**

**ଷଷ୍ଟ୍ୟା ହୃତାଶ୍ଚ ଶେଷାବ୍ଦା ଗତାଃ ସ୍ୟୁଃ ପ୍ରଭବାଦୟଃ**
**ସୈକାଶ୍ଚେଦ୍ ବର୍ତ୍ତମାନାବ୍‌ଦୋ ଗତୈଷ୍ୟାଂଶାଦୟସ୍ତତଃ ।୨୫।**

(୨୪ଶ ଓ ୨୫ଶ ଶ୍ଳୋକରେ ଗ୍ରନ୍ଥକର୍ତ୍ତା ଗୁରୁ ବର୍ଷ ଆଣିବାର ନିୟମ ପ୍ରଣୟନ କରି ଅଛନ୍ତି । ତାଙ୍କର ଏହି ରୀତି ସ୍ୱତନ୍ତ୍ର । ସେ କାହିଁକି ଏ ସ୍ୱତନ୍ତ୍ର ନିୟମ ପ୍ରଣୟନ କଲେ ତାର କାରଣ ସେ ଏହି ଗ୍ରନ୍ଥର ବାସନା ଶେଷ ରହସ୍ୟରେ ଉଲ୍ଲେଖ କରି ଅଛନ୍ତି ।) ରୀତିଟି ହେଲା ଏହି—

ପୂର୍ବ ରୀତିରେ ଗୁରୁଙ୍କର ଭଗଣ ଆଣି ସେଥିରେ ୩ ଯୋଗ କର । ଯୋଗଫଳକୁ ୧୨ରେ ଗୁଣି ସେଥିରେ ଗତ ରାଶି ଯୋଗକର ଏବଂ ଏଥିରେ ପୁଣି ୨ ମିଶାଅ । ଏହି ଶେଷ ଫଳକୁ ୬୦ରେ ହର । ହୃତାବଶେଷରେ ୧ ମିଶାଇ ପ୍ରଭବ ଆଦି ଗଣିଲେ ଗୁରୁ ବର୍ଷ ଆସିବ ।

**ଅର୍କ ଘ୍ନାଃପାତ୍ର ଦେବାଂଶା ଭୁକ୍ତଭୋଗ୍ୟ ଦିନାଦୟଃ**
**ଏବଂ ସୃଷ୍ଟ୍ୟାଦିତଃ ସିଦ୍ଧା ସର୍ବେ ଲଙ୍କାର୍ଦ୍ଧରାତ୍ରିକାଃ । ୨୬ ।**

ଗୁରୁ ବର୍ଷ ଏହିପରି ଆଣି ସାରିବା ପରେ ଚଳିତ ଗୁରୁ ବର୍ଷର ଅତୀତ ଦିନ ଅଣାଯିବାର କଥା । ଏଥି ନିମନ୍ତେ ୨୧ଶ ଓ ୨୨ଶରେ ଗୁରୁ ଆଣିବାବେଳେ ଯେଉଁ ଅଂଶ ଆସିଛି ତାକୁ ୧୨ରେ ଗୁଣି ସେଥିରେ ତାହାର $\frac{କଳା}{୩୦}$ ଭାଗ ମିଶାଅ । ଏହାହିଁ ଗୁରୁ ବର୍ଷର ଅତୀତ ଦିନାଦି ହେବ । ଗୁରୁ ବର୍ଷର ଭୋଗ୍ୟ ଦିନ ବାହାର କରିବା ନିମନ୍ତେ ମଧ୍ୟ ଏହିପରି ରୀତି ଧରିବାକୁ ହେବ । ମନେ ରଖିବାକୁ ହେବ ଯେ ଲଙ୍କାର ଅର୍ଦ୍ଧରାତ୍ର ରୁ ସବୁ ଦିନର ଆରମ୍ଭ ।

**ଚୈତ୍ରଶୁକ୍ଳାଦିଚାନ୍ଦ୍ରାବ୍‌ଦୋ ମଧ୍ୟମସ୍ୟ ବୃହସ୍ପତେଃ**
**ସଂକ୍ରାନ୍ତ୍ୟା ବର୍ଜ୍ଜିତଃ ପ୍ରୋକ୍ତଃ ସ୍ଫୁଟଜ୍ଞୈରଧିବତ୍ସରଃ । ୨୭ ।**

ମଧ୍ୟମ ମାନରେ (ମଧ୍ୟମ ଗତିରେ) ଯଦି ବୃହସ୍ପତି ଗୋଟିଏ ଚାନ୍ଦ୍ର ବର୍ଷ ମଧ୍ୟରେ (ଚୈତ୍ର ଶୁକ୍ଳ ପ୍ରତିପଦ ଠାରୁ ପୁଣି ଉକ୍ତ ଚୈତ୍ର ଶୁକ୍ଳ ପ୍ରତିପଦ୍ ପର୍ଯ୍ୟନ୍ତ) ରାଶ୍ୟାନ୍ତର ନହୁଏ (ଆଦୌ ନହୁଏ) ତାହା ହେଲେ ସେହି ଚାନ୍ଦ୍ର ବର୍ଷକୁ ସ୍ଫୁଟ ପଣ୍ଡିତମାନେ ଅଧିବତ୍ସର କହନ୍ତି ।

**ସ୍ଫୁଟାର୍କଭଗଣସ୍ୟାନ୍ତଃ ସଂକ୍ରମୌ ତସ୍ୟ ଚେଦ୍‌ଗୁରୋଃ**
**ଲୁପ୍ତସଂବତ୍ସରଃ ସୋଽୟଂଚ୍ୟବଦ୍ ସ୍ଫୁଟ୍ ଗର୍ହିତଃ ସ୍ଫୁଟଃ । ୨୮ ।**

ସ୍ଫୁଟ ଗତିରେ ଗୋଟିଏ ସୌର ବର୍ଷ ମଧ୍ୟରେ (ମେଷ ସଂକ୍ରାନ୍ତିରୁ ପୁଣି ମେଷ ସଂକ୍ରାନ୍ତି ମଧ୍ୟରେ) ଯଦି ବୃହସ୍ପତି ଦୁଇଟି ରାଶିକୁ ଯିବାର ଦେଖାଯିବ) ତେବେ ସେହିସୌର ବର୍ଷକୁ

ଲୁପ୍ତ ସମ୍ୱତ୍ସର କୁହାଯିବ । ବୃହସ୍ପତି ସାଧାରଣତଃ ଗୋଟିଏ ସୌର ବର୍ଷ ମଧ୍ୟରେ ଦୁଇଟି ରାଶିର ସମ୍ପର୍କ ରଖିବା କଥା । ସେ ତିନୋଟି ରାଶି ସହିତ ସମ୍ପର୍କ ରଖିବା ଫଳରେ ଏହି ବର୍ଷକୁ ଅମଙ୍ଗଳକର କୁହାଯାଏ ।

**ସ୍ଫୁଟୋଽତଚାରବାନ୍ ଜୀବୋ ନୈଷ୍ୟତ ପ୍ରାଗ୍‌ଗୃହଂଯଦା**
**ମହାତଚାରସ୍ତତ୍କାଲୋ ଲୁପ୍ତସଂବତ୍ସରୋ-ପମଃ । ୨୯ ।**

**ଯୁଗାନି ଦ୍ୱାଦଶାବ୍ଦ ସ୍ୟୁଃ ଷଷ୍ଟ୍ୟବ୍ଦୈଃ ପଞ୍ଚଭାଜିତୈଃ**
**ଲବ୍ଧୈଃ ସୈକୈରଚ୍ୟୁତାଦେର୍ମତାନି ହୃତଶେଷକାଃ ।୩୦।**

**ବତ୍ସରା ସମ୍ପରୀଦାନ୍ୱତ୍ପୂର୍ବା ଆଙ୍ଗୀରସାଃ ଶ୍ରୁତାଃ**
**ବହ୍ନ୍ୟର୍କଚନ୍ଦ୍ରଲୋକେଶବ୍ୟୋମକେଶାଧିଦୈବତାଃ ।୩୧।**

କୌଣସି ଗୋଟିଏ ସୌର ବର୍ଷରେ ଯଦି ବୃହସ୍ପତି ସ୍ଫୁଟ ଗତିରେ ଅନ୍ୟ ରାଶିକୁ ଚାଲିଯାଇ ପୁଣି ସେହି ରାଶିକୁ ନଫେରେ ସେହି ସୌରବର୍ଷକୁ ମହାତିଚାର କାଳ କୁହାଯାଏ । ଏହି ବର୍ଷଟି ଲୁପ୍ତ ସମ୍ୱତ୍ସର ପରି ନିନ୍ଦ୍ୟ ଓ ଅମଙ୍ଗଳ ଜନକ । ୬୦ଟି ବାର୍ହସ୍ପତ୍ୟ ବର୍ଷକୁ ୧୨ଟି ବାର୍ହସ୍ପତ୍ୟ ଯୁଗ କହନ୍ତି । ଫଳରେ ପାଞ୍ଚଟି ବାର୍ହସ୍ପତ୍ୟ ବର୍ଷରେ ଗୋଟିଏ ବାର୍ହସ୍ପତ୍ୟ ଯୁଗ ହୋଇଥାଏ ।

ଚଳିତ ବାର୍ହସ୍ପତ୍ୟ ବର୍ଷର ସଂଖ୍ୟାକୁ ୫ରେ ହରି ଲବ୍ଧିରେ ୧ ମିଶାଇଲେ, ଅଚ୍ୟୁତ ଆଦି ନାମକ ଗୁରୁଯୁଗ ହେବ । ହୃତାବଶେଷରୁ ଯଥା କ୍ରମେ ସମ୍, ପରି, ଇଦା, ଅନୁ ଓ ଇଦ୍ ବାର୍ହସ୍ପତ୍ୟ ବର୍ଷ ହେବ । ଏହି ପାଞ୍ଚଟି ବାର୍ହସ୍ପତ୍ୟ ବର୍ଷର ଅଧିପତି ଯଥାକ୍ରମେ—ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବ୍ରହ୍ମା ଓ ଶିବ ଅଟନ୍ତି ।

**ଲଖ୍ୟନ୍ତେଽଥ ଗୁରୋର୍ମଧ୍ୟରାଶିଭୋଗେନ ଲକ୍ଷିତାଃ**
**ନାମାନୁରୂପଫଳଦାଃ ପୂର୍ବାଚାର୍ଯ୍ୟୋକ୍ତବତ୍ସରାଃ । ୩୨ ।**

ମଧ୍ୟମ ମାନରେ ୬୦ ବାର୍ହସ୍ପତ୍ୟ ବର୍ଷର ନାମ ତଳେ ଦିଆ ଯାଉଛି । ଏ ବର୍ଷ ଗୁଡ଼ିକର ଫଳ ସେମାନଙ୍କ ନାମ ଅନୁସାରେ ବୋଲି ଜାଣିବ ।

**ପ୍ରଭବୋ ବିଭବଃ ଶୁକ୍ଲଃ ପ୍ରମଦୋଽଥପ୍ରଜାପତିଃ**
**ଆଦ୍ୟେ ବିଷ୍ଣୁ ଯୁଗେ ପଞ୍ଚ ସର୍ବେ ଶୁଭଫଳପ୍ରଦାଃ । ୩୩ ।**

**ଅଙ୍ଗିରାଃ ଶ୍ରୀମୁଖୋ ଭାନୁ ର୍ଯୁବା ଧାତା ଦ୍ୱିତୀୟକେ**
**ଯୁଗେ ବୃହସ୍ପତେର୍ମଧ୍ୟୋ ନ ଶୁଭୋଽପ୍ୟପରେ ଶୁଭାଃ । ୩୪ ।**

ଈଶ୍ୱରୋ ବହୁଧାନ୍ୟଶ୍ଚ ପ୍ରମୋଦୋ ବିକ୍ରମୋ ବୃଷଃ
ଶାକ୍ରେ ଯୁଗେ ତୃତୀୟେଚ ବିଚତ୍ରଭାନୁ-ନ ଶୋଭନୌ । ୩୫ ।

ଚିତ୍ରଭାନୁଃ ସୁଭାନୁଶ୍ଚ ତାରଣଃ ପାର୍ଥିବୋ ବ୍ୟୟଃ
ଚତୁର୍ଥେ ପାବକୀୟେ ଚ ଯୁଗେ ସର୍ବେ ନ ଶୋଭନାଃ । ୩୬ ।

ସର୍ବଜିତ୍, ସର୍ବଧାରୀଚ ବିରୋଧୀ ବିକୃତଃ ଖରଃ
ପଞ୍ଚମେଽପି ଯୁଗେ ତ୍ୱାଷ୍ଟ୍ରେ ପ୍ରଥମୌ ଦ୍ୱୌ ସୁଶୋଭନୌ । ୩୭ ।

ନନ୍ଦନୋବିଜୟ-ଶ୍ଚୈବଜୟୋ ମନ୍ମଥ ଦୁର୍ମ୍ମୁଖୌ
ଅହିର୍ବୁଧ୍ନ୍ୟଯୁଗେ ଷଷ୍ଠେ ଗୃହ୍ୟନ୍ତ ମୌ ଦ୍ୱୌ ନ ଶୋଭନୌ । ୩୮ ।

ହେମଲମ୍ବୀ, ବିଲମ୍ବୀ ଚ ବିକାରୀ ଶାର୍ବରୀ ପ୍ଲବଃ
ଆଦମୌ ଦ୍ୱୌ ଶୁଭୌ ସ୍ୟାତାଂ ସପ୍ତମେ ପୈତୃକେ ଯୁଗେ । ୩୯ ।

ଶୋଭକୃତ୍ ଶୁଭକୃତ୍ କ୍ରୋଧୀ ବିଶ୍ୱାବସୁ-ପରାବସୂ
ଅଷ୍ଟମେ ତୁ ଯୁଗେ ବୈଶ୍ୱେ ପ୍ରଥମୌ ଦ୍ୱୌ ଶୁଭପ୍ରଦୌ । ୪୦ ।

ପ୍ଲବଙ୍ଗଃ କୀଲକଃ ସୌମ୍ୟଃ ସାଧାରଣୋ ବିରୋଧକୃତ୍
ଗୃହ୍ୟେ ଯୁଗେ ଚ ନବମେ ବିଚତ୍ରଭାନୁ ଶୁଭପ୍ରଦୌ । ୪୧ ।

ପରିଧାବୀ ପ୍ରମାଥୀ ଚ ଆନନ୍ଦୋ ରାକ୍ଷସୋଽନଳଃ
ଐନ୍ଦ୍ରାନଳଯୁଗେଽନ୍ତ୍ୟୌ ଚ ଦଶମେ ଦୁଃଖଦାୟକୌ । ୪୨ ।

ପିଙ୍ଗଳଃକାଳସିଦ୍ଧାର୍ଥୌ ତତୋରୌଦ୍ରୋଽଥଦୁର୍ମ୍ମତିଃ
ଏକାଦଶାଶ୍ୱିନ-ଯୁଗେ ମଧ୍ୟ ଏବ ଶୁଭପ୍ରଦଃ । ୪୩ ।

ଦୁନ୍ଦୁଭୀରୁଧିରୋଦ୍‌ଗାରୀ ରକ୍ତାକ୍ଷଃକ୍ରୋଧନଃ କ୍ଷୟଃ
କଷ୍ଟାତ୍କଷ୍ଟ ପ୍ରଦାଃ ସର୍ବେ ଭାଗ୍ୟେ ଦ୍ୱାଦଶକେ ଯୁଗେ । ୪୪ ।

ବିଷ୍ଣୁ ବୃହସ୍ପତଃ ଶକ୍ରୋ ବହ୍ନିସ୍ତ୍ୱଷ୍ଟା ତତଃପରମ୍
ଅହିର୍ବୁଧ୍ନ୍ୟ-ଶ୍ଚ ପିତରୋ ବିଶ୍ୱେଦେବା ନଶାପତଃ ।୪୫।

**ଇନ୍ଦ୍ରାଗ୍ନୀ ତ୍ୱଶ୍ୱିନୀପୂର୍ବେ ଭଗଶ୍ଚେତ୍ୟଯୁଗାଧିପାଃ**
**ସ୍ୱକାଳାଗତରସିଦ୍ଧେଜ୍ୟ—ବହ୍ନ୍ୟର୍କଲକ୍ଷିତା ଅନୁ । ୪୭।**

### ଗୁରୁ ଯୁଗ ଓ ଗୁରୁ ବର୍ଷର ନାମ

| ଗୁଡ଼ଫଙ୍କା<br>ସେମାନଙ୍କ<br>ଅଧୀଶ୍ୱର | | ସଂବତ୍ସର<br>ବହ୍ନି | ପରିବତ୍ସର<br>ଅର୍କ | ଇଦାବତ୍ସର<br>ଚନ୍ଦ୍ର | ଅନୁବତ୍ସର<br>ବ୍ରହ୍ମା | ଇଦ୍‌ବତ୍ସର<br>ଶିବ |
|---|---|---|---|---|---|---|
| ୧ । ବିଷ୍ଣୁ | ଯୁଗ | ପ୍ରଭବ | ବିଭବ | ଶୁକ୍ଲ | ପ୍ରମୋଦ | ପ୍ରଜାପତି |
| ୨ । ଗୁରୁ | ,, | ଅଙ୍ଗିରା | ଶ୍ରୀମୁଖ | ଭାବ | ଯୁବା | ଧାତା |
| ୩ । ଇନ୍ଦ୍ର | ,, | ଈଶ୍ୱର | ବହୁଧାନ୍ୟ | ପ୍ରମାଦ | ବିକ୍ରମ | ବୃଷ |
| ୪ । ପାବକ | ,, | ଚିତ୍ରଭାନୁ | ସୁଭାନୁ | ତାରଣ | ପାର୍ଥିବ | ଅବ୍ୟୟ |
| ୫ । ତ୍ୱାଷ୍ଟ୍ର | ,, | ସର୍ବଜିତ୍ | ସର୍ବଧାରୀ | ବିରୋଧୀ | ବିକୃତି | ଖର |
| ୬ । ଅହିର୍ବୁଧ୍ନ୍ୟ | ,, | ନନ୍ଦନ | ବିଜୟ | ଜୟ | ମନ୍ମଥ | ଦୁର୍ମୁଖ |
| ୭ । ପିତୃ | ,, | ହେମଲମ୍ବୀ | ବିଲମ୍ବୀ | ବିକାରୀ | ଶାର୍ବରୀ | ପ୍ଲବ |
| ୮ । ବୈଶ୍ୱ | ,, | ଶୋଭକୃତ୍ | ଶୁଭକୃତ୍ | କ୍ରୋଧୀ | ବିଶ୍ୱାବସୁ | ପରାବସୁ |
| ୯ । ଚନ୍ଦ୍ର | ,, | ପ୍ଲବଙ୍ଗ | କୀଳକ | ସୌମ୍ୟ | ସାଧାରଣ | ବିରୋଧକୃତ୍ |
| ୧୦ । ଐନ୍ଦ୍ରାନଳ | ,, | ପରିଧାବୀ | ପ୍ରମାଥୀ | ଆନନ୍ଦ | ରାକ୍ଷସ | ଅନଳ |
| ୧୧ । ଆଶ୍ୱିନ | ,, | ପିଙ୍ଗଳ | କାଳ | ସିଦ୍ଧାର୍ଥ | ରୌଦ୍ର | ଦୁର୍ମତି |
| ୧୨ । ଭାଗ୍ୟ | ,, | ଦୁନ୍ଦୁଭି | ରୁଧିରୋଦ୍ଗାରୀ | ରକ୍ତାକ୍ଷ | କ୍ରୋଧନ | କ୍ଷୟ |

ବାରଟି ଯୁଗ ଅଧୀଶ୍ୱରମାନଙ୍କର ନାମ :—(୧) ବିଷ୍ଣୁ (୨) ବୃହସ୍ପତି (୩) ଶକ୍ର (୪) ବହ୍ନି (୫) ତ୍ୱଷ୍ଟା (୬) ଅହିର୍ବୁଧ୍ନ୍ୟ (୭) ପିତର (୮) ବିଶ୍ୱେଦେବା (୯) ଚନ୍ଦ୍ର (୧୦) ଇନ୍ଦ୍ରାଗ୍ନୀ (୧୧) ଅଶ୍ୱିନୀପୁତ୍ର (୧୨) ଭଗ ।

**ଯୁଗେଯୁଗାଂଘ୍ରୌ ପୂର୍ଣ୍ଣତ୍ୱା-ଦର୍କେନ୍ଦ୍ୱ ଭଗଣାବଳେଃ**
**ଯୁଗତସ୍ପାଦ-ଦବଶେ ସ୍ୱସ୍ପାଧନ ମପୀଷ୍ୟତେ । ୪୭।**

ମହାଯୁଗରେ ଓ ପାଦଯୁଗରେ (ସତ୍ୟ, ତ୍ରେତା, ଦ୍ୱାପର ଓ କଳି) ସୂର୍ଯ୍ୟ ଓ ଚନ୍ଦ୍ର କେତେକ ଭଗଣ ପୂର୍ଣ୍ଣ ଭାବରେ ପୂର୍ଣ୍ଣ କରୁଥିବାରୁ ମହାଯୁଗାରମ୍ଭ ବା ପାଦଯୁଗ ଆରମ୍ଭରୁ ମଧ୍ୟ ଏ ଦୁଇ ଗ୍ରହର ମଧ୍ୟମମାନ ଅଣାଯାଇପାରେ ଅର୍ଥାତ୍ ଯୁଗ ଅହର୍ଗଣ ଓ ପାଦଯୁଗ ଅହର୍ଗଣରୁ ରବି ଓ ଚନ୍ଦ୍ର (ମଧ୍ୟମ) ସାଧନ କରାଯାଇପାରେ ।

**ଭଙ୍ଗ୍ୟନ୍ତରେଣ ପୁନରାନୟନଂ ଦିନାନାଂ**
**କୁର୍ବେ ଯଥାବଗତ—ରଶ୍ରମମସ୍ୟନୁଃସ୍ୟାତ୍**
**ଗୃହ୍ଣନ୍ତୁ ନାତ୍ର ସୁଧିୟଃ ପୁନରୁକ୍ତ-ଦୋଷଂ**
**ଶ୍ରୀହର୍ଷମୁଖ୍ୟ-କବିଦର୍ଶିତ ଏଷ ପନ୍ଥାଃ ।୪୮।**

ବହୁ ଗଣନାରୁ ରକ୍ଷା ପାଇବା ନିମନ୍ତେ ଏଠାରେ ଅନ୍ୟ ଏକ ଭାବରେ ଅହର୍ଗଣ ଅଣାଯାଉଅଛି ଏବଂ ଏଥିରୁ ମଧ୍ୟ ମଧ୍ୟମ ଗ୍ରହ ସୁବିଧାରେ ଆଣିହେବ । ଏହା ପୁନରୁକ୍ତ ହେଲେ ମଧ୍ୟ ଦୋଷାବହ ନୁହେଁ । କାରଣ ଶ୍ରୀହର୍ଷ ପ୍ରଭୃତ ବଶିଷ୍ଟ କବିମାନେ ଏହି ପନ୍ଥାକୁ ଆଶ୍ରୟ କରି ସେମାନଙ୍କର କବିତା ରଚନା କରିଯାଇଛନ୍ତି ।

**ସୃଷ୍ଟ୍ୟବ୍ଦା ରବି-ତାଡ଼ିତା ମଧୁସିତା-ଦ୍ୟାତୀତ ମାସାନ୍ୱିତା**
**ଦ୍ୱିଷ୍ଠାଃ କୋଟିହତାଃ କୃତାଭ୍ରକୁଶରେଷ୍ୱଗ୍ନିଷୁ ଦନ୍ତୋଦ୍ଧୃତାଃ**
**ଲବ୍ଧାଢ଼୍ୟାଜଗୁଣା ହୁସ୍ତାସ୍ତିଥିଯୁତା ଦ୍ୱେଧାବ୍ଜ ନନ୍ଦାହୃତାଃ**
**ନାଗେଷ୍ୱ-ଭ୍ରଣରାଗ୍ନି ପର୍ବତନବା ଭାଙ୍କାଗ୍ନି ଷଡ଼୍ଭିଃ ଫଳୈଃ ।୪୯।**

ସୃଷ୍ଟି କାଳରୁ ଗତ ବର୍ଷ ସମୂହକୁ ୧୨ରେ ଗୁଣ । ସେଥିରେ ଗତ ଚୈତ୍ରଶୁକ୍ଳ ପ୍ରତିପଦାଦି ମାସ ମିଶାଅ । ଏହି ଫଳକୁ ୨ ଜାଗାରେ ରଖ । ଗୋଟିଏ ସ୍ଥାନରେ ଉକ୍ତ ଫଳକୁ ୧୦୦୦୦୦୦୦ରେ ଗୁଣି ଗୁଣନଫଳକୁ ୩୨୫୩୫୫୧୦୪ରେ ହର । ଏହାର ଲବ୍ଧିକୁ ଅନ୍ୟସ୍ଥାନରେ ଥିବା ଉକ୍ତ ଫଳରେ ଯୋଗ କର । ଏହି ଫଳକୁ ପୁଣି ୩୦ରେ ଗୁଣି ଗତ ଅମାବାସ୍ୟା ପରଠାରୁ ଗତ ହୋଇଥିବା ତିଥି ଯୋଗକର । ଏହାକୁ ପୁଣି ଦୁଇ ଜାଗାରେ ରଖ । ଗୋଟିଏ ଜାଗାରେ ୧୦୦୦୦୦୦୦୦୦୦ରେ ଗୁଣି ୬୩୯୦୯୬୩୫୦୫୮ରେ ହର । ଲବ୍ଧିକୁ ଅନ୍ୟ ସ୍ଥାନରୁ ଫେଡ଼ । ଫଳ ସୃଷ୍ଟ୍ୟାରମ୍ଭରୁ ଅହର୍ଗଣ ହେବ । ଏହାର ଗଣନା ଲଂକାର ଅର୍ଦ୍ଧରାତ୍ରରୁ କରାଯାଏ ।

**ଊନା ମଧ୍ୟମସାବନା ଦିନଗଣା ଲଙ୍କାର୍ଦ୍ଧରାତ୍ରାଦ୍‌ଗତା**
**ବାହ୍ୱଦ୍‌ବାରମୁଖାଃ ସ୍ୟୁରସ୍ୟ ଯଦି ବା ସାଧ୍ୟା କଲେର୍ବକ୍ତ୍ରତଃ**
**କାର୍ଯ୍ୟୌ ତଦ୍ ଖଚତୁଷ୍କ ହୀନ—ଗୁଣକୌ ହାରୌ କୃତାଶାଶରୈ-**
**ରୂନୌ ଦକ୍ଷିଣତୋଽଷ୍ଟ ବାଣଖଶରୈ—ର୍ବାରଶ୍ଚ ଶୁକ୍ରାଦିତଃ ।୫୦।**

କଳିଯୁଗ ଆରମ୍ଭରୁ ଅହର୍ଗଣ ଆଣିବାକୁ ହେଲେ ଏହି ଶ୍ଳୋକରେ କାର୍ଯ୍ୟ କରାଯିବ—୪୯ଶ ଶ୍ଳୋକ ପର ସବୁ କାର୍ଯ୍ୟ କରାଯିବ; ମାତ୍ର ସେଥିରେ ଥିବା ଦୁଇଟି ଗୁଣକରୁ ଗୁଣିକରି ଶୂନ କାଟିଦିଆଯିବ ଏବଂ ଦୁଇଟି ହରରୁ ଯଥାକ୍ରମେ ୫୧୦୬, ୫୦୫୮ କାଢ଼ି ହର ଠିକ୍ କରାଯିବ । ଏହି ଅହର୍ଗଣ କଳି ଆରମ୍ଭରୁ ହେବ । ଏହାର ବାର ଗଣନା ଶୁକ୍ରବାରରୁ ହେବ । କଳିଯୁଗର ପ୍ରାରମ୍ଭ ଶୁକ୍ରବାରରୁ ହୋଇଥିବାରୁ ଏପରି କରାଯାଉଛି ।

ସ୍ୱୀୟ ସ୍ୱୀୟକରୁକ୍ତକଳ୍ପଭଗଣା ରୁଦ୍ରାଷ୍ଟ—ଚନ୍ଦ୍ରାହତାଃ
ଖାଭ୍ରା ଭ୍ରାବ୍ଧିହୃତଃଫଳଂ ଭଗଣତଃ ସ୍ୟୁର୍ଦ୍ୱାପରାନ୍ତା ଧ୍ରୁବାଃ
ତଦ୍ଯୁକ୍ତାଃ କଳିଯାତସାବନ—ଦିନୈ—ର୍ନୀତମଧ୍ୟଗ୍ରହାଃ
ପୂର୍ବୋକ୍ତକ୍ରମତୋ ଭବନ୍ତ୍ୟଭିମତେ କାଳେ ଗ୍ରହାଂଶାଦୟଃ ।୫୧।

ଏହି ଶ୍ଳୋକରେ ଦ୍ୱାପର ଯୁଗ ଶେଷ ଦିନର ଗ୍ରହ ଓ ଉଚ୍ଚପାତାଦିର ରାଶ୍ୟାଦି ଧ୍ରୁବ ଦିଆଯାଉଛି । କଳିଯୁଗର ଯେକୌଣସି ଦିନ କପରି ଗ୍ରହ ଆଦି ଅଣାଯାଇ ପାରିବ, ତାହାର ପ୍ରଣାଳୀ ମଧ୍ୟ ଏଥିରେ ରହିଛି ।

ଗ୍ରହର କଳ୍ପ ଭଗଣକୁ ୧୮୧୧ରେ ଗୁଣି ୪୦୦୦ରେ ହରିଲେ ଦ୍ୱାପର ଯୁଗର ଶେଷ ଦିନରେ ଗ୍ରହାଦିର ଭଗଣାଦି ଧ୍ରୁବ ହେବ । କଳି ପ୍ରଥମ ଦିନରୁ ପୁଣି ଅଭୀଷ୍ଟ ଦିନ ପର୍ଯ୍ୟନ୍ତ ମଧ୍ୟମ ଗ୍ରହ ଆଣି ସେଥିରେ (ଦ୍ୱାପରାନ୍ତ ଧ୍ରୁବରେ) ଯୋଗ କଲେ ସୃଷ୍ଟ୍ୟାଦିଠାରୁ ଅଭୀଷ୍ଟ ଦିନ ପର୍ଯ୍ୟନ୍ତ ମଧ୍ୟମ ଗ୍ରହ ହେବ ।

କୁଜାଦି ଖଗପଞ୍ଚକାର୍କ ମୁଖମନ୍ଦ ଚନ୍ଦ୍ରାଦିପା
ତକଧ୍ରୁବବଲପ୍ତିକାଃ କଲିମୁଖାର୍ଦ୍ଧ ସର୍ବେ ଯଥା
ଗଜାଙ୍ଗଗତଥିବେଦଦୃକ୍ ଶଶଧରାଃ କୃତାକ୍ଷିସ୍ୱର
ଦ୍ୱିଚନ୍ଦ୍ର-ଶଶିନଃ ଖଦୃଗ୍ ରସଭୁଜାଭୁଜଙ୍ଗାଃ କ୍ରମାତ୍ ।୫୨।

ଖବେଦଖମରୁଭୁବୋଽବ୍ଧି ଭୁଜଦନ୍ତନବେଶାସ୍ତ ଷଡ୍
ଘନାଗ୍ନି ଗଜବାହବଃଖନୃପବେଦରାମାବ୍ଧୟଃ
ଖବେଦ ବସୁଷଟ୍‌ଶରାମ୍ବୁଧୟଃ ଖବେଦେକ୍ଷଣ
ଦ୍ୱିଚନ୍ଦ୍ର ଭୁଜଗାଃ ଖଦୃଗ୍ ଗଗନଚନ୍ଦ୍ର ଶୂନ୍ୟର୍ତ୍ତବଃ ।୫୩।

ଗଜାବ୍ଧି ଶରତର୍କ୍ୟୁଭେ ଖବସୁବାର୍ଦ୍ଧ୍ୟଗାଂକଦ୍ୱିପା
ଦ୍ୱିପାହ୍ୟଗକୃତାକ୍ଷ୍ୟଗା ବସୁରଦାବ୍ଧି-ପୂର୍ଣ୍ଣେନ୍ଦବଃ
ଦ୍ୱିଭାଙ୍ଗଖବସୁନ୍ଦ୍ରବଃ ଖରସଗୋଽର୍ଥତତ୍ତ୍ୱାନ୍ୟଥୋ
ନଖା ଭ୍ରୁରସଗୋଭୁବୋ ନଖରସେଷୁ ଦନ୍ତା ଇତ ।୫୪।

**କଂବୈବଂକରଣାବ୍ଦକାଃ ଖନଗଗୋ ବେଦୋନବଲ୍ୟବ୍ଦତୋ**
**ଘସ୍ରାଃ ସୂ୍ୟ-ବିଧୂବାରତୋ ରବମିତୈଃ ଖୈବା ତଦଙ୍କାଯୁତାଃ**
**ଷ୍ଟାର୍ଥେଦ୍ଧି,ଷ୍ଟ୍ରିଭ ସପ୍ତ ସପ୍ତ ଗୁଣଭୈର୍ଭକ୍ତାଃ ଫଳଂ ବାସରା**
**ମେଷାର୍କକ୍ରମଣଦ୍ୱିତୀୟଦିନତସ୍ତତ୍ସଂକ୍ରମାନ୍ତାଃଗତାଃ ।୫୪।**

ଠିକ୍ ଦ୍ୱାପର ଯୁଗ ଶେଷ ହେଲାବେଳେ ଅର୍ଥାତ୍ କଳିଯୁଗ ପ୍ରାରମ୍ଭରେ (ମଧ୍ୟରାତ୍ରିରେ) ଗ୍ରହ, ଉଚ୍ଚ ଓ ପାତ ଆଦିର ଭଗଣ୍ୟା ସଂଖ୍ୟା ତଳେ ଦିଆଯାଉଛି । ପ୍ରକ୍ରିୟା ୫୧ ଶ୍ଲୋକରେ ଅଛି ।

| | | | |
|---|---|---|---|
| ମଙ୍ଗଳ | ୧୨୪୧୫୬୮ | ଚନ୍ଦ୍ର ମନ୍ଦୋଚ୍ଚ | ୪୩୪୧୬୦ |
| ବୁଧ ଶୀଘ୍ରୋଚ୍ଚ | ୧୧୩୭୨୪ | ମଙ୍ଗଳ ,, | ୪୫୬୮୪୦ |
| ବୃହସ୍ପତି | ୮୨୬୨୦ | ବୁଧ ,, | ୮୧୩୨୪୦ |
| ଶୁକ୍ର ଶୀଘ୍ରୋଚ୍ଚ ... | ୧୪୯୦୪୦ | ଗୁରୁ ,, | ୬୦୧୦୨୦ |
| ଶନି | ୧୧୯୧୦୨୪ | ଶୁକ୍ର ,, | ୨୩୫୫୪୮ |
| ସୂର୍ଯ୍ୟ ମନ୍ଦୋଚ୍ଚ | ୨୮୩୧୭୬ | ଶନି ,, | ୮୯୭୪୮୦ |

—✳—

| | | | |
|---|---|---|---|
| ଚନ୍ଦ୍ର ପାତ | ୭୨୪୭୮୮ | ଗୁରୁ ପାତ | ୨୫୫୯୬୦ |
| ମଙ୍ଗଳ ,, | ୧୦୪୩୨୮ | ଶୁକ୍ର ,, | ୧୯୬୦୨୦ |
| ବୁଧ ,, | ୧୦୬୨୭୨ | ଶନି ,, | ୩୨୫୬୨୦ |

କରଣାବ୍ଦ ପ୍ରାରମ୍ଭରୁ ଗ୍ରହାଦି ଆଣିବାକୁ ହେଲେ କରଣାବ୍ଦ ପ୍ରାରମ୍ଭରୁ ଅହର୍ଗଣ ମଧ୍ୟ ଆଣିବାକୁ ହେବ । (କରଣାବ୍ଦର ଅର୍ଥ ସିଦ୍ଧାନ୍ତ ଦର୍ପଣ ଗଣନାର ପ୍ରାରମ୍ଭ ଅବ୍ଦ—ଯେତେବେଳେ କି ସାମନ୍ତ ଚନ୍ଦ୍ରଶେଖର ଗ୍ରହ ଆଦି ଆଣି ପର୍ଯ୍ୟବେକ୍ଷଣ କରିବାକୁ ମନସ୍ଥ କଲେ ଏବଂ ଓଡ଼ିଆ ପାଞ୍ଜି ତୋଳିଲେ) । ସେଥିନିମନ୍ତେ କଳିଯୁଗ ବର୍ଷ ସଂଖ୍ୟାରୁ ୪୯୭୦ ବାଦଦେଲେ ଗତ କରଣାବ୍ଦ ସଂଖ୍ୟା ହେବ । ଏହି ସଂଖ୍ୟାର ଡାହାଣରେ ୧୨ଟି ଶୂନ୍ୟ ଦିଅ ଏବଂ ତାହାକୁ ୨୭୩୭୮୫୧୫୧ରେ ଭାଗକର । ଫଳରୁ ସୋମ (ସଂକ୍ରାନ୍ତି ୨ୟ ଦିନ ସୋମବାର ହୋଇଥିବାରୁ) ବାର ଆଦି ଗତ ଦିନ ସଂଖ୍ୟା ହେବ । ସ୍ଫୁଟ ମେଷ ସଂକ୍ରାନ୍ତି ଦ୍ୱିତୀୟ ଦିନରୁ ପୁଣି ସେହି ମେଷ ସଂକ୍ରାନ୍ତି ଦିବସ ଶେଷ ପର୍ଯ୍ୟନ୍ତ ଏ ଅହର୍ଗଣ ଗ୍ରହଣ କରାଯିବ ।

**ସଂକ୍ରାନ୍ତେଃ ସବିତା ତୃତୀୟଦିବସେ ମଧ୍ୟୋଽଧୁନୈତି କ୍ରିୟଂ**
**ପ୍ରାୟେଣୈତଦହସ୍ତତଃ କୃତମତଂ ପଂକ୍ତ୍ୟଙ୍ଗ ପଂକ୍ତୀମୁଖମ୍**
**ତତ୍ ପୂର୍ବାହ୍ନ ଯାତ ବାସରଗଣୈ—ର୍ଣନୀୟ ମଧ୍ୟଗ୍ରହା**
**ନେକବ୍ଦ୍ୟାଦିଷୁ ପଂକ୍ତିକାଦିନଗଣେଷ୍ୱାଢ଼୍ୟାଃ—ସ୍ୱଭୁକ୍ତୀଃ କ୍ରିୟାତ୍ ।୫୭।**

ସାଧାରଣତଃ ସ୍ଫୁଟ ସୂର୍ଯ୍ୟ ମେଷ ପ୍ରବେଶ କରିବାର ତୃତୀୟ ଦିବସରେ ମଧ୍ୟମ ସୂର୍ଯ୍ୟ ମେଷରେ ପ୍ରବେଶ କରେ । ସେଥିନିମନ୍ତେ ଏହି ଦିନଟି (ସ୍ଫୁଟ ମେଷ ସଂକ୍ରମଣର ତୃତୀୟ ଦିନଟି=ଅହର୍ଗଣ ୧) ପଞ୍ଜାଙ୍ଗ ମୁଖ ଦିବସରୂପେ ଗୃହୀତ ହୋଇଛି । ତେଣୁ ମଧ୍ୟମ ସୂର୍ଯ୍ୟ ମେଷ ପ୍ରକାଶ କରିବାର ପୂର୍ବଦିନ ଅର୍ଥାତ୍ ସ୍ଫୁଟ ସୂର୍ଯ୍ୟ ମେଷ ପ୍ରବେଶ କରିବାର ଦ୍ୱିତୀୟ ଦିନ ପ୍ରଥମେ ମଧ୍ୟମ ଗ୍ରହଗୁଡ଼ିକ ଆଣିବାକୁ ହେବ । ତାପରେ ପ୍ରତିଦିନର ଗ୍ରହଗତି (ଚଳାଙ୍କ) ଆଣି ସେଥିରେ ଯୋଗକଲେ (ବକ୍ର ହୋଇଥିଲେ ବିୟୋଗ କଲେ) । ଅଭୀଷ୍ଟ ଦିନରେ ମଧ୍ୟମ ଗ୍ରହ ଆସିଯାଇ ପାରିବ ।

**କେଚିତ୍ ପ୍ରସ୍ଫୁଟମେଷସଂକ୍ରମଦିନଂ ଚୈତ୍ରାଦି-ମନ୍ୟେ ତଥା**
**ମନ୍ୟନ୍ତେଽବ୍ଦମୁଖଂ ଚ ଦେଶ-ବଶତୋ ଭେଦୋଽପି ବର୍ଷେଽବହି**
**ର୍ମୌବାରେ ପ୍ରତିପଦ୍-ପ୍ରଗେ ଗତନିଶାଶେଷେ ତୁ ମେଷେଽବିଶତ୍**
**ସ୍ୱଷ୍ଟୋଽର୍କ-ସ୍ତ ଦିହ ଧ୍ରୁବାଽରଚ ଦିନେ ମଧ୍ୟାର୍କ ବର୍ଷାନ୍ତକେ ।୫୭।**

ବର୍ଷର ପ୍ରଥମ ଦିବସ ନିର୍ଣ୍ଣୟ କରିବାରେ ନାନାସ୍ଥାନରେ ନାନା ମତ ପ୍ରଚଳିତ ଅଛି । ସ୍ଫୁଟ ସୂର୍ଯ୍ୟ ମେଷ ପ୍ରବେଶ କରିବା ଦିନ କୌଣସି କୌଣସି ଦେଶର ପଞ୍ଜାଙ୍ଗ ମୁଖ ଦିବସ ଭାବରେ ଗୃହୀତ ହୋଇଥାଏ । କେତେକ ଦେଶରେ ଚୈତ୍ର ଶୁକ୍ଳ ପ୍ରତିପଦା ତିଥିହିଁ ପଞ୍ଜାଙ୍ଗର ଆଦ୍ୟଦିନ ଭାବରେ ଗୃହୀତ ହୋଇଥାଏ । (ଏସବୁ ସ୍ୱୀକାର କଲାବେଳେ ପଣ୍ଡିତମାନେ ଚାନ୍ଦ୍ର ଓ ସୌର ବା ସାବନମାନର ତଫାତ୍‌କୁ ମଧ୍ୟ ମାନିବାକୁ ପ୍ରସ୍ତୁତ ନୁହଁନ୍ତି) ।

ମଧ୍ୟମମାନରେ ସୌର ବର୍ଷ ପରିସମାପ୍ତ ହେବାବେଳେ କରଣାବ୍ଦର ଆରମ୍ଭ । ଏତିକବେଳେ ହିଁ ଗ୍ରନ୍ଥକର୍ତ୍ତା ଗ୍ରହମାନଙ୍କର ମଧ୍ୟମ ଧ୍ରୁବାଦି ଦେଇଅଛନ୍ତି । ଏଥିରେ ଉଚ୍ଚ ଓ ପାତ ମଧ୍ୟ ଦିଆଯାଇଛି । ସେଦିନ ସୋମବାର ଓ ଚୈତ୍ର ଶୁକ୍ଳ ପ୍ରତିପଦା ଥିଲା ଏବଂ ସ୍ଫୁଟ ସୂର୍ଯ୍ୟ ପୂର୍ବରୁ ଅର୍ଥାତ୍ ପୂର୍ବରାତ୍ରିର ଶେଷଆଡ଼କୁ ମେଷରେ ପ୍ରବେଶ କରି ସାରିଥିଲେ ।

**କଥ୍ୟନ୍ତେ କରଣାବ୍ଦ ପୂର୍ବଦିବସେ ବାରେ ବିଧୋଃ ସାଧିତା**
**ଲଂକାର୍କୋଦୟକାଳିକା ଦିବିଷଦାଂ କ୍ଷେତ୍ରାଂଶକାଦ୍ୟଧ୍ରୁବାଃ**
**ଭୂୟୋଽପି ପ୍ରତିପତ୍ତୟେ ତନୁଧିୟାଂ ପ୍ରତ୍ୟବ୍ଦଶୁଦ୍ଧିସ୍ତଥା**
**ସୂର୍ଯ୍ୟାଦ୍ୱିଦକମନ୍ଦତୁଙ୍ଗନିଚୟସ୍ୟାଭ୍ରିଦପାତାଦିଜଳୈଃ ।୫୮।**

ବର୍ତ୍ତମାନ ଗ୍ରହ ମନ୍ଦୋଚ୍ଚ, ଶୀଘ୍ରୋଚ୍ଚ ଓ ପାତ ଆଦିର ମଧ୍ୟ ଧ୍ରୁବକ କରଣାବ୍ଦ ପୂର୍ବଦିନ ସୋମବାର ଲଂକା ସୂର୍ଯ୍ୟୋଦୟବେଳେ ଦିଆଯାଉଅଛି । ସାଧାରଣ ଲୋକଙ୍କ ସୁବିଧା ପାଇଁ ଏସବୁର ବର୍ଷଶୁଦ୍ଧି ମଧ୍ୟ କହି ଦିଆଯାଉଛି । (ଯେଉଁତକ ବ୍ୟବହାର କରି ସ୍ପଷ୍ଟ ଗ୍ରହ ସାଧନ କରାଯାଇ ପାରିବ) ।

ରବେଃଶିବା ଦନ୍ତଭୁଜାଃ ଶରେନ୍ଦବୋ
ନଭୋଭୁଜାସ୍ତର୍କସମୁଦ୍ରସମ୍ମିତାଃ
ବଧୋରନନ୍ତଂ ଜ୍ୱଲନାଃ ଖବାହବୋ
ନବାକ୍ଷି ସଂଖ୍ୟା ହୁତଭୁକ୍ଶରା ମତାଃ ।୫୯।

କୁଜସ୍ୟବାଣାଃ ବଧୁରବ୍ଧି ବାହବୋ
ଗିରୀନ୍ଦବଃ ସାୟକଲୋଚନାଗ୍ନି ଚ
ଜ୍ଞଶୀଘ୍ରତୁଙ୍ଗସ୍ୟ ଦଶୋ ଗଜେନ୍ଦବଃ
କୃତେନ୍ଦବୋ ନନ୍ଦଭୁବଃ କୁବାହବଃ ।୬୦।

ବୃହସ୍ପତେର୍ବିଷ୍ଣୁପଦଞ୍ଚ ବହ୍ନୟଃ
ଶରାବ୍ଧୟଃ ଶୀତକରଃ କୁବାହବଃ
ସିତାଂଶୁତୁଙ୍ଗସ୍ୟ ଭବା ଗୁଣେନ୍ଦବଃ
କୁସାଗରା ବାହୁକୃତା ଭୁଜେନ୍ଦବଃ। ।୬୧।

ଶନେସ୍ତୁରଙ୍ଗା ଧୃତୟଃ ପ୍ରଭାକରାଃ
ନଗେନ୍ଦବୋ ବେଦ ବଲୋଚନାଗ୍ନି ଚ
ଗ୍ରହେ ଗୃହାଦେର୍ବିକଳାନ୍ତମାଗତେ
ପରାଦଭେଦୋପି ବୁଧୈର୍ନ ଗଣ୍ୟତେ ।୬୨।

ରବେର୍ମୃଦୁଚ୍ଚସ୍ୟ ଭୁଜୌ ଗଜେନ୍ଦବୋ
ନଗାବ୍ଧୟୋ ବେଦଶରା ନଭୋଧ୍ରୁବଃ
ସିତାଂଶୁମନ୍ଦସ୍ୟ ଦଶୋ ଦ୍ୱିବାହବଃ
କୃତାଗ୍ନୟୋ ନନ୍ଦଶରାଃ ପୟୋଧୟଃ ।୬୩।

ମହୀଜ ମନ୍ଦସ୍ୟ କୃତା ହ୍ୟଗ୍ନା ଭ୍ବଧ୍ୱ
ଭୂର୍ଜାବ୍ଧୟଃ ପାବକଶୀତ-ଭାନବଃ
ମୃଦୋର୍ବିଦଃ ସୂର୍ଯ୍ୟଗିରଯ୍ୟୋଙ୍ଗ-ଭୂମୟଃ
ପୟୋଧୟଃ ପୂର୍ଣ୍ଣବଧୂ ରସେନ୍ଦବଃ ।୭୪।

ସୁରେଜ୍ୟ ମନ୍ଦସ୍ୟଶରା ନଗେନ୍ଦବୋ
ନଗେନ୍ଦବୋ ବସ୍ତ୍ରୁପଦଂ ଶରେନ୍ଦବଃ
ଭୃଗୋର୍ମୃଦୂଚ୍ଚସ୍ୟ ଭୁଜୌ ଶିଳୀମୁଖା
ନବାଗ୍ନୟଃ ସର୍ପଗୁଣାଶ୍ଚ ଗୋଭୁଜାଃ ।୭୫।

ଶନେର୍ମୃଦୂଚ୍ଚସ୍ୟ ମତା ମତଙ୍ଗଜା
ନବାଙ୍କଚନ୍ଦ୍ରା ଶ୍ଚତୁରବ୍ଧୟୋ ଦଶଃ
ସୁଧାକରସ୍ୟୋଦେରଥ ପାତଜଧ୍ରୁବା
ଭଚକ୍ରଶୁଦ୍ଧାଃ କରଣାବ୍ଦ ବର୍ଜ୍ଜାଃ ।୭୬।

ହିମାଂଶୁପାତସ୍ୟ ଗୁଣା ମହୀଭୁଜାଃ
ନବେନ୍ଦବୋ ନାଗଭୁବୋଽଷ୍ଟ-ବାହବଃ
କୁଜନ୍ମପାତସ୍ୟ ଖ ମଷ୍ଟ ବାହବୋ
ସିତାଂଶୁବାଣା ସ୍ତ୍ରିଭୁଜାଃ କୁସିନ୍ଧବଃ ।୭୭।

ବୁଧସ୍ୟ ପାତସ୍ୟ ଖମଙ୍କବାହବୋ
ନଗେନ୍ଦବୋ ନାଗଭୁଜା ଗଜେଷବଃ
ବୃହସ୍ପତେସ୍ତଦ୍ଧ୍ରୁବ ଈକ୍ଷଣେ ଶିବା
ଗୁଣାଃ ପୃଷତ୍କେନ୍ଦୁମିତା ନବେଷବଃ ।୭୮।

ସିତସ୍ୟ ପାତସ୍ୟଧସ୍ର-ବ୍ଧି ବାହବୋ
ଗୁଣା ନିଶାନାଥ—ଗୁଣାଶ୍ଚ ପୁଷ୍କରମ୍
ଶନେର୍ଗୁଣାଃ ଖଂ ଦ୍ୱିଭୁବୋଽଦ୍ରିବାହବଃ
କୃତେକ୍ଷଣାକ ଧ୍ରୁବ ଏଷ ପାତଜଃ ।୭୯।

କରଣାବ୍ଦ ଧ୍ରୁବ ତଳେ ଦିଆଯାଉଛି—

| | | |
|---|---|---|
| ରବି | ଘ | ୧୧ । ୨୮ । ୧୪ । ୨୦ । ୫୬ |
| ଚନ୍ଦ୍ର | ଘ | ୦ । ୩ । ୨୦ । ୨୯ । ୪୩ |
| ମଙ୍ଗଳ | ଘ | ୪ । ୧ । ୨୫ । ୧୭ । ୨୪ |
| ବୁଧ ଶୀଘ୍ରୋଚ୍ଚ | ଘ | ୧୦ । ୧୮ । ୧୫ । ୧୯ । ୨୧ |
| ବୃହସ୍ପତି | ଘ | ୦ । ୩ । ୫୪ । ୧ । ୨୧ |
| ଶୁକ୍ର ଶୀଘ୍ରୋଚ୍ଚ | ଘ | ୧୧ । ୧୩ । ୫୧ । ୫୨ । ୧୨ |
| ଶନି | ଘ | ୭ । ୧୮ । ୧୨ । ୧୭ । ୨୫ |
| ରବି ମନ୍ଦୋଚ୍ଚ | ଘ | ୨ । ୧୮ । ୫୬ । ୪୫ । ୦ |
| ଚନ୍ଦ୍ର „ | ଘ | ୧୦ । ୨୨ । ୩୫ । ୪୯ । ୫ |
| ମଙ୍ଗଳ „ | ଘ | ୫ । ୭ । ୧ । ୫୨ । ୧୩ |
| ବୁଧ „ | ଘ | ୭ । ୧୬ । ୫ । ୧୦ । ୧୬ |
| ବୃହସ୍ପତି „ | ଘ | ୪ । ୧୭ । ୧୭ । ୦ । ୧୪ |
| ଶୁକ୍ର „ | ଘ | ୨ । ୪ । ୫୪ । ୩୮ । ୨୯ |
| ଶନି „ | ଘ | ୮ । ୯ । ୧୯ । ୫୫ । ୧୦ |

ଚକ୍ରଶୁଦ୍ଧ ଚନ୍ଦ୍ରାଦିର ପାତଧ୍ରୁବ

| | | |
|---|---|---|
| ଚନ୍ଦ୍ର ପାତ | ଘ | ୩ । ୨୧ । ୧୯ । ୧୮ । ୨୮ |
| ମଙ୍ଗଳ „ | ଘ | ୦ । ୨୮ । ୪୧ । ୨୩ । ୫୧ |
| ବୁଧ „ | ଘ | ୦ । ୨୯ । ୧୭ । ୨୮ । ୪୮ |
| ବୃହସ୍ପତି „ | ଘ | ୨ । ୧୧ । ୩ । ୧୪ । ୪୯ |
| ଶୁକ୍ର „ | ଘ | ୧ । ୨୫ । ୩ । ୩୧ । ୦ |
| ଶନି „ | ଘ | ୩ । ୦ । ୧୩ । ୨୭ । ୨୫ |
| କେତୁ „ | ଘ | ୯ । ୨୧ । ୧୯ । ୧୮ । ୨୮ |

ଇତୀରିତାଃ ଖେଟତଦୁଚ୍ଚ ପାତଜ
ଧ୍ରୁବାଃ କୃତେତିତଦ୍ ଭଗଣାନୁପାତଜାଃ
ସୁଧାଂଶୁପାତଃ ସ୍ଫୁଟଗ୍ରହ ରୁଚ୍ୟତେ
ତଦୀୟ ଭାର୍ଦ୍ଧାଂକଳ କେତୁଗ୍ରହଭିଃ ।୭୦।

ଭଗଣରୁ ଅନୁପାତ ବଳରେ ଏହି ଧ୍ରୁବଗୁଡ଼ିକ କୁହାଗଲା । ଚନ୍ଦ୍ରପାତକୁ ରାହୁ କୁହାଯାଏ । ରାହୁଠାରୁ ୧୮୦ ଡିଗ୍ରୀରେ କେତୁପାତର ସ୍ଥିତି । ଏହା ପୂର୍ବରୁ ଜ୍ୟୋତିଷୀମାନେ କହି ସାରିଛନ୍ତି ।

ମନ୍ଦୋଚ୍ଚପାତାନୟନଂ ଘନେଭ୍ୟଃ ପୁର୍ବୋଦିତଂ ତଦ୍ବଦଦଂ ସମାଭ୍ୟଃ
ଅବ୍ଦାସ୍ତୁତତ୍ତଦ୍ ଭଗଣୈର୍ବିନିଘ୍ନା ଲକ୍ଷଦ୍ୱୟାପ୍ତାଃ ଫଳମତ୍ର ଲପ୍ତଃ ।୭୧।

ଅର୍ଥାତ ଦିନ ସମ୍ବନ୍ଧୀୟ ମନ୍ଦୋଚ୍ଚ ଓ ପାତର ଗତି ପରିମାଣ ଆଣିବା ନିମନ୍ତେ ଉପାୟ ପୂର୍ବରୁ ବର୍ଣ୍ଣିତ ହୋଇସାରିଛି । ବର୍ଷ ସମ୍ବନ୍ଧୀ ମନ୍ଦୋଚ୍ଚ ଓ ପାତ ଏହି ନିୟମରେ ଅଣାଯାଇ ପାରିବ—

ଅଭୀଷ୍ଟ ବର୍ଷ ସଂଖ୍ୟାକୁ କଳ୍ପ ଭଗଣରେ ଗୁଣି ୨୦୦୦୦୦ରେ ହରିଲେ ଲବ୍ଧ ଫଳ ସେମାନଙ୍କ ଗତି ପରିମାଣ ହେବ ।

ଧ୍ରୁବେଷୁଯୁକ୍ତା ବିଯୁତାଃ କ୍ରମେଣସ୍ଫୁଟା ଗୃହାଂଶାଦୟ ଏବ ତେ ସ୍ୟୁଃ
କଲ୍ପା ସୁଖାର୍ଥଂ ହରଣୈଃ ସ୍ୱକୀୟୈ ର୍ଗନେତୁ ମର୍ହାମୃଦୁତୁଙ୍ଗ ପାତାଃ ।୭୨।

ଏହି ଫଳକୁ କରଣାବ୍ଦ ଧ୍ରୁବରେ ଯୋଗ କଲେ (ପାତର ଗତି ପରିମାଣ ବିୟୋଗ) ଅଭୀଷ୍ଟ ଗ୍ରହ ଉଚ୍ଚ ଓ ପାତାଦିର ରାଶ୍ୟାଦି ଆସିଯିବ । ତାହା ନ କରି ଅଳ୍ପ ନିୟମରେ ନିଜ ନିଜ ହରଦ୍ୱାରା ମଧ୍ୟ ଏହା (ଗତି ପରିମାଣ) ଅଣାଯାଇ ପାରିବ ।

ମୃଦୂଚ୍ଚପାତପର୍ଯ୍ୟୟୈଃ ଝଖାଭ୍ର ଖାଭ୍ର ପକ୍ଷକାଃ
ହୃତାଃ ଫଳାନି ହାରକାଃ ହ୍ୱକାଓ ସ୍ୱକାଃ ସମାମୃକାଃ ।୭୩।

ତଦୁଦ୍ଭୃତାବ୍ଦ ବୃନ୍ଦତଃ କଳାଦିଭିଃ ଫଳୈର୍ଧ୍ରୁବାଃ
ଯୁତୋନିତାଃ ସ୍ଫୁଟାଃ କ୍ରମାନ୍ମୃଦୂଚ୍ଚପାତ—ଭାଦୟଃ ।୭୪।

୨୦୦୦୦୦କୁ କଳ୍ପଭଗଣ ସଂଖ୍ୟାରେ ହରିଲେ ହର ଆସେ । ଗତ ବର୍ଷ ସଂଖ୍ୟାକୁ ଏହି ହରରେ ହରିଦେଲେ ଗତବର୍ଷ ସମ୍ବନ୍ଧୀ କଳାଦି ଗତି ପରିମାଣ ଆସିଯିବ । ଏହି ଫଳକୁ ପୂର୍ବ ପରି ଧ୍ରୁବରେ ଯୋଗ (ପାତ ପାଇଁ ବିୟୋଗ) କଲେ ଉଚ୍ଚ, ଗ୍ରହ ଓ ପାତାଦି ଆସିଯିବେ ।

**ସୂର୍ଯାଦୁ୍ୟଚ୍ଚହାର୍ଯ୍ୟ ନବନବ-କଶର୍ଯ୍ୟ ବାଣବେଦର୍ତ୍ତବୋଽଷ୍ଟା—**
**ଷ୍ଟାମ୍ନାୟ୍ୟା ନାଗସିଦ୍ଧା ନବଶରଶିଖିନଃ ସପ୍ତପଞ୍ଚାଷ୍ଟ ପକ୍ଷାଃ**
**ଆର୍ଯ୍ୟଦେଃ ପାତହାର୍ଯ୍ୟଃ କ୍ଷିତନଗରତବଃ ପକ୍ଷଷଡ୍-ବୀତହୋବା**
**ଧୃତ୍ୟଷ୍ଟକ୍ଷ୍ମାଶ୍ଚ ପକ୍ଷକ୍ଷିତ ନୟନମିତାଃ ସପ୍ତଷଡ୍‌ବହ୍ନୟଃ ସୂର୍ୟଃ ।୬୫।**

ବର୍ତ୍ତମାନ ଏହ୍ନପର ଅଣାଯାଇଥିବା ପାତହାରକୁ ଏଠାରେ ଦିଆଯାଉଛି :—

| | | | | |
|---|---|---|---|---|
| ରବି ମନ୍ଦୋଚ୍ଚ ହାର | | ୫୯୯ | × | × |
| ମଙ୍ଗଳ | ,, | ୬୪୫ | ମଙ୍ଗଳ ପାତହାର | ୬୭୧ |
| ବୁଧ | ,, | ୪୮୮ | ବୁଧ ,, | ୩୬୨ |
| ବୃହସ୍ପତି | ,, | ୨୪୮ | ବୃହସ୍ପତି ,, | ୧୮୧୮ |
| ଶୁକ୍ର | ,, | ୩୫୯ | ଶୁକ୍ର ,, | ୨୧୨ |
| ଶନି | ,, | ୨୮୫୭ | ଶନି ,, | ୩୬୭ |

**ପ୍ରାଚୀ ପ୍ରତୀଚ୍ୟୋଃ କୁଜସୌମ୍ୟ ମନ୍ଦମନ୍ଦୋଚ୍ଚ ସଞ୍ଚାର ଇହେକ୍ଷତେ ଯତ**
**ତଥାଜ୍ଞଶୀଘ୍ରୋଚ୍ଚଗତଶ୍ଚ କାର୍ଯ୍ୟା ତତ୍ସଂସ୍କୃତଃ ସ୍ପଷ୍ଟଖଗାଧିକାରେ ।୬୬।**

ମନ୍ଦୋଚ୍ଚ ଓ ଶୀଘ୍ରୋଚ୍ଚର ଗତି ସାଧାରଣତଃ ପଶ୍ଚିମରୁ ପୂର୍ବକୁ ହେଉଥିବା କଥା ପ୍ରାୟ ସମସ୍ତ ଭାରତୀୟ ଜ୍ୟୋତିଷୀ ମାନନ୍ତି । ଗ୍ରନ୍ଥକର୍ତ୍ତା କିନ୍ତୁ ଏହା ପୂର୍ଣ୍ଣଭାବରେ ସ୍ୱୀକାର ନ କରି ଲେଖିଛନ୍ତି—ମଙ୍ଗଳ, ବୁଧ ଓ ଶନିର ମନ୍ଦୋଚ୍ଚ ତଥା ବୁଧ ଶୀଘ୍ରୋଚ୍ଚର ଗତି ପଶ୍ଚିମରୁ ପୂର୍ବକୁ ଓ ପୂର୍ବରୁ ପଶ୍ଚିମକୁ ଉଭୟଥା ହେବାର ମୁଁ ଦେଖୁଅଛି । ଗ୍ରହସ୍ଫୁଟ କଲାବେଳେ ଏହାର ବ୍ୟବହାର ଓ ପ୍ରୟୋଗ କିପରି କରାଯିବ ତାହା ଆଲୋଚିତ ହେବ । ଏଣୁ ଏଠାରେ ସେଗୁଡ଼ିକ ଆଉ ଆଲୋଚନା କରାଯାଉନାହିଁ ।

**ପ୍ରାଚ୍ୟାଂ କାଞ୍ଚନଭୂଧର୍ଯ୍ୟ ସୁରପୁରୀ ସଂପୃକ୍ତ ସୂର୍ଯାଚ୍ଚଭୂ—**
**ର୍ଦନ୍ତକ୍ଷ୍ମାମିତ ଯୋଜନାନ୍ତମିଳତେ ବ୍ୟାକ୍ଷୋତ୍ତର-ସ୍ୟାମପି ।**
**ଅବ୍ଧେ ର୍ଯ୍ୟୋଧସି ସେନ୍ଦୁ ସିନ୍ଧୁର ଭୂଜେ ର୍ଯୋ ଯୋଜନୈ ର୍ଯ୍ୟଜତେ**
**ନତ୍ୟଂ ଶିତ୍ୟବନୀ ଧରେନ୍ଦ୍ରଶିଖରେ ତସ୍ମୈ ପରସ୍ମୈ ନମଃ ।୬୭।**

ଯେଉଁ ପରମାତ୍ମା (ଶ୍ରୀ ଜଗନ୍ନାଥ) ନୀଳାଚଳର ଶିଖର ଦେଶରେ ନିତ୍ୟ ବିରାଜମାନ, ତାଙ୍କୁ ମୋର ପ୍ରଣାମ । ନୀଳାଚଳ ଭାରତୀୟ ମାଧ୍ୟନ୍ଦିନ ରେଖାର ୧୮୨ ଯୋଜନ ପୂର୍ବରେ ଏବଂ ବିଷୁବରେଖାର ୨୮୪ ଯୋଜନ ଉତ୍ତରରେ ସମୁଦ୍ରକୂଳରେ ଅବସ୍ଥିତ । ପୁଣି ବଡ଼ ଦେଉଳ ନୀଳାଚଳ ଉପରେ ରହିଛି । ଭାରତୀୟ ମାଧ୍ୟନ୍ଦିନରେଖା ଅସୁରପୁରୀ ଲଙ୍କା ଉତ୍ତରମେରୁ ଓ ଦକ୍ଷିଣମେରୁକୁ ଦେଇ ଯାଇଅଛି । ଉତ୍ତରମେରୁରେ ସୁରା ଓ ଦକ୍ଷିଣମେରୁରେ ଅସୁରମାନେ ବାସ କରନ୍ତି । *

ଇତ୍ୟୁତ୍କଳୋଜ୍ଜ୍ୱଳ ନୃପାଳକୁଳ ପ୍ରସୂତ
ଶ୍ରୀ ଚନ୍ଦ୍ରଶେଖର କୃତୌ ଗଣିତେଽକ୍ଷିସିଦ୍ଧେ
ସିଦ୍ଧାନ୍ତ ଦର୍ପଣ ଉପାହ୍ୱତ ବାଳବୋଧେ
ଯାତସ୍ତୃତୀୟ ଇହମଧ୍ୟ-ଖଗଃ ପ୍ରକାଶଃ ।୭୮।

ଏହିପରି ଭାବରେ ସିଦ୍ଧାନ୍ତ ଦର୍ପଣର ତୃତୀୟ ପ୍ରକାଶ ଶେଷ ହେଲା । ଏଥିରେ ମଧ୍ୟ-ଗ୍ରହ ଆଣିବା ରୀତି ଦେଖାଇଦିଆଯାଇଛି ।

ଇତି ଶ୍ରୀ ଚନ୍ଦ୍ରଶେଖର ସିଂହ କୃତୌ ସିଦ୍ଧାନ୍ତ ଦର୍ପଣେ
ମଧ୍ୟମାଧିକାରେ ଗ୍ରହାନୟନ ବର୍ଣ୍ଣନୋ
ନାମ ତୃତୀୟଃ ପ୍ରକାଶଃ ।

---

* ପ୍ରାଚ୍ୟାମିତ୍ୟାଦି ପଦ୍ୟସ୍ୟ ଭଙ୍ଗ୍ୟନ୍ତରଂ ଯଥା—
ପ୍ରାଚ୍ୟାଂ କାଞ୍ଚନ ଭୂଧରା ସୁରପୁରୀ ସଂପୃକ୍ତ ସ୍ୱବାଚଭୂ—
ର୍ଦିକ୍‌ଲକ୍ଷ୍ମା-ମିତଯୋଜନାନ୍ତ ବସତେ ର୍ବିଷୋତ୍ତରସ୍ୟାଂ ଦ୍ୟତାତ୍
ବେଦାହ୍ୱୀକ୍ଷଣ ଯୋଜନାନ୍ତ ଜୟତୋ ଦେଶସ୍ୟ ଜିଷ୍ଣୋର୍ଦ୍ଦିଶି
ଭ୍ରାଜିଷ୍ଣୁ ର୍ବିଭୁରୁଷ୍ଣ ଧୃଷ୍ଣିଜନୁଷୋ ଭୀଷ୍ମଦ୍ରୁମସ୍ତଦ୍‌ଗତମ୍ ।

ଭାରତୀୟ ମାଧ୍ୟନ୍ଦିନ ରେଖାର ୧୮୨ ଯୋଜନ ପୂର୍ବରେ ଏବଂ ବିଷୁବରେଖାର ୨୮୪ ଯୋଜନ ଉତ୍ତରରେ ଯେଉଁ ଜୟଶୀଳ (ଉତ୍କଳ) ଦେଶ ରହିଛି ସେଥିରେ ଯେଉଁ ବିଶାଳ ଦେବତା (ଶ୍ରୀ ଜଗନ୍ନାଥ ବିଗ୍ରହ) ଅଛନ୍ତି ସେ ଆମ (ହୃଦୟ) ଭିତରେ ଥିବା ଭୟଙ୍କର ଯମ ଭୟକୁ ଖଣ୍ଡନ କରନ୍ତୁ । ଯମ ଉଷ୍ଣକରଣମାଳୀ ସୂର୍ଯ୍ୟଙ୍କର ସନ୍ତାନ ହୋଇଥିବାରୁ ଅତି ଭୟଙ୍କର ଅଟନ୍ତି ।

## ଚତୁର୍ଥଃ ପ୍ରକାଶଃ

### ନାନାବିଧ ସଂସ୍କାର ବର୍ଣ୍ଣନମ୍

---

**ଅଥୋଚ୍ୟତେ ସ୍ୱଦେଶାଦ-ସଂସ୍କାରାର୍ଥଂ ସମାସତଃ**
**ଭୂମାନ-ମୁତ୍ତରେ ଭଗେ ବସ୍ତୁଗ୍ରବ୍ ବକ୍ଷ୍ୟତେ ପୁନଃ ।୧।**

[ତୃତୀୟ ପ୍ରକାଶରେ ଲଙ୍କାର ମଧ୍ୟମ ଗ୍ରହାଦି ଆନୟନ କରାଯାଇଛି । ଏହି ପ୍ରକାଶରେ ପୃଥିବୀର ଯେକୌଣସି ସ୍ଥାନରେ ମଧ୍ୟ ଆଦି ଗ୍ରହ ଆଣିବାର ରୀତି ପ୍ରଦର୍ଶିତ ହେଉଛି ।]

ମୁଁ ବର୍ତ୍ତମାନ ସଂକ୍ଷେପରେ ସଂସ୍କାର ଉପଯୋଗୀ ପୃଥିବୀ ପରିମାଣ (ଦୈର୍ଘ୍ୟ, ବିସ୍ତାର, କ୍ଷେତ୍ର, ପୃଷ୍ଠ ଓ ଘନାଦି ଫଳ) କହିବି । ଏହି ଗ୍ରନ୍ଥର ଉତ୍ତରାର୍ଦ୍ଧରେ ପୁଣି ପୃଥିବୀର ଏହି ସବୁମାନ ବିସ୍ତୃତଭାବେ ବର୍ଣ୍ଣନା କରିବି ।

**ମଧ୍ୟବ୍ୟାସୋ ଭୁବଃ ଖାଭ୍ରଭୂପ ଯୋଜନ ସମ୍ମିତଃ**
**ଭଚକ୍ର-କଳକାର୍ଦ୍ଧ-ଘ୍ନସ୍ତ୍ରିଜ୍ୟା-ପ୍ତଃ ପରିଧିର୍ଭବେତ୍ ।୨।**

ପୃଥିବୀର ମଧ୍ୟମ ବ୍ୟାସ ୧୬୦୦ ଯୋଜନ । ଏହି ସଂଖ୍ୟାକୁ ୧୦୮୦୦ରେ ଗୁଣି ୩୪୩୮ରେ ହରିଲେ ଫଳ ୫୦୨୬।୧୦ ଯୋଜନ ପୃଥିବୀର ପରିଧିମାନ ହେବ ।

**ଷଷ୍ଟାଂଶାଭ୍ୟଧିକାଙ୍ଗାକ୍ଷି ଗଗନାଶୁଗ ଯୋଜନମ୍**
**ଭୂମଧ୍ୟ ବେଷ୍ଟନଂ ସ୍ୱୀୟ ଲମ୍ବଜ୍ୟାଘ୍ନଂ ତ୍ରିଜୀବୟା ।୩।**

**ହୃତଂ ସ୍ୱଦେଶ ବସୁଧାପରିଧିଃ ସ୍ଫୁଟ ଉଚ୍ୟତେ**
**କାଂବାର୍କ-ଘ୍ନଃ ସ ପରିଧି ର୍ବିଷୁବତ୍କର୍ଣ୍ଣ ଭାଜିତଃ ।୪।**

( ଏପରିଷ୍ଟ ଜ୍ୟୋତିର୍ଷୀମାନେ ୯୦ ଡିଗ୍ରୀର ଜ୍ୟା ୩୪୩୮ କଳା ବୋଲି ଗ୍ରହଣ କରିଅଛନ୍ତି । )

ମଧ୍ୟମ ଭୂ ପରିଧିକୁ ସ୍ୱଦେଶର ଲମ୍ବ ଜ୍ୟାରେ ଗୁଣି ତ୍ରିଜ୍ୟା (୩୪୩୮)ରେ ଭାଗ ଦେଲେ ସ୍ପଷ୍ଟ ଭୂପରିଧି ହୁଏ । ଅଥବା ଏହି ମଧ୍ୟମ ଭୂପରିଧିକୁ ୧୨ରେ ଗୁଣି ବିଷୁବକର୍ଣ୍ଣରେ ଭାଗଦେଲେ ଏହି ସ୍ପଷ୍ଟ ଭୂପରିଧି ହୋଇଥାଏ ।

ଲଂକାରୋହିତ କାବନ୍ତୀ କୁରୁକ୍ଷେତ୍ରାଦିନୀ ବୃତଃ
ସ୍ପୃଷ୍ଟ୍ୱା ମେରୁଗତଂ ସୂତ୍ରଂ ମଧ୍ୟରେଖୋଚ୍ୟତେ ଭୁବଃ ।୫।

ବିଷୁବ ଦିନର (ଯେଉଁ ଦିନ ସମଦିବସ) ମଧ୍ୟାହ୍ନ ସମୟରେ ୧୨ ଆଙ୍ଗୁଳର ଗୋଟିଏ ଶଙ୍କୁ ରଖି ତାହାର ଛାୟା ନେବାକୁ ହୁଏ । ଏହାର ନାମ ପଳଭା । ୧୨² + ପଳଭା² = ପଳକର୍ଣ୍ଣ । ଶଙ୍କୁର ଅଗ୍ରରୁ ଶଂକୁ ଛାୟାର ଅଗ୍ର ପର୍ଯ୍ୟନ୍ତ ଯେଉଁ ଦୈର୍ଘ୍ୟ ତାହାହିଁ ପଳକର୍ଣ୍ଣ । ଲଙ୍କା, ରୋହିତକ, ଅବନ୍ତୀ, କୁରୁକ୍ଷେତ୍ର ଆଦି ଦେଇଯାଇଥିବା ଉଭୟ ମେରୁଗତ ବୃତ୍ତ ହିଁ ପ୍ରଧାନ ମାଧ୍ୟାହ୍ନ ରେଖା । (ଭାରତର ପ୍ରତିଷ୍ଠା ଥିବା କାଳରୁ ଏହି ମାଧ୍ୟାହ୍ନ ରେଖାକୁ ପୃଥିବୀର ମାଧ୍ୟାହ୍ନ ରେଖା ଭାବରେ ପାଶ୍ଚାତ୍ୟମାନେ ପରିଚିତ କରାଇବାରେ ଲାଗିପଡ଼ିଛନ୍ତି ।)

ସ୍ୱୀୟଦେଶ ସମାନାକ୍ଷରେଖାୟାଂ ବସୋର୍ୟୋଃ ସ୍ଥିୟଃ
ତନ୍ନିଜସ୍ଥାନୟୋର୍ମଧ୍ୟମାନଂ ଦେଶାନ୍ତରଂ ମତମ୍ ।୬।
ତଦ୍ୟୋଜନୈଃ ଷଷ୍ଟି ହୃତୈଃସ୍ଫୁଟ ଭୂବେଷ୍ଟନୋଦ୍ଧୃତୈଃ
ଅଥବା ବିଷୁବକର୍ଣ୍ଣ ଲପ୍ତିକାଭିଶ୍ଚ ତାଡ଼ିତୈଃ ।୭।

ମନୁରାମାଭ୍ରଷଡ୍ ଭକ୍ତୈଃ ସୂର୍ଯ୍ୟୈର୍ଦେଶାନ୍ତର ନାଡ଼ିକାଃ
ରେଖାୟାଃ ପୂର୍ବଦେଶେଷୁ ନିଶାର୍ଦ୍ଧୋପର ଯୋଜିତାଃ ।୮।
ପଶ୍ଚିମେଷୂନିତା ବାରମାସାଦ୍ୟେଶ ପ୍ରବୃତ୍ତୟଃ
ଲଙ୍କାର୍ଦ୍ଧରାତ୍ରତୋ ଯତ୍ତଦ୍ପ୍ରବୃତ୍ତିଃ ସର୍ବଦେଶକେ ।୯।

ସ୍ଫୁଟ ଭୂପରିଧିରେ ସମାନ ଅକ୍ଷାଂଶ ହୋଇଥିବା ଦୁଇଟି ସ୍ଥାନର ବ୍ୟବଧାନ (ଯୋଜନ ଆଦିରେ) କୁ ପୂର୍ବାପର ଦେଶାନ୍ତର କୁହାଯାଏ । ଏହି ଦେଶାନ୍ତର ଯୋଜନାକୁ ୬୦ରେ ଗୁଣି ସ୍ଫୁଟ ଭୂପରିଧିରେ (ଯୋଜନ) ହରିଲେ ଅଥବା ଦେଶାନ୍ତର ଯୋଜନକୁ ପଳକର୍ଣ୍ଣ (ବିଷୁବକର୍ଣ୍ଣ) ଲତାନରେ ଗୁଣି ୬୦୩୧୪ରେ ହରିଲେ ଦଣ୍ଡାଦି ଦେଶାନ୍ତର ସମୟ ଆସିଯାଏ ।

ଦିନ, ମାସ ଓ ବର୍ଷ ଆଦିର ପ୍ରାରମ୍ଭ ଲଙ୍କାର ଅର୍ଦ୍ଧରାତ୍ରରେ ହୋଇଥିବାରୁ ରେଖା ଦେଶର ଅର୍ଦ୍ଧରାତ୍ରରେ ଏ ସବୁର ଆରମ୍ଭ ମାନିବାକୁ ହୋଇଥାଏ । ଫଳରେ ନିଜ ଦେଶର ଦିନ, ମାସାଦିର ପ୍ରାରମ୍ଭ କାଳ ନିମନ୍ତେ ଏହି ଦେଶାନ୍ତର ସମୟକୁ ନିଜଦେଶର ଅର୍ଦ୍ଧରାତ୍ରରେ ଯୋଗ ବିଯୋଗ କଲେ (ନିଜ ଦେଶ ରେଖା ଦେଶର ପୂର୍ବକୁ ବା ପଶ୍ଚିମକୁ ଥିଲେ) ତାହା ଲଙ୍କାର୍ଦ୍ଧରାତ୍ରିକ ହୁଏ ଏବଂ ଏହି ସମୟ ହିଁ ଉକ୍ତ ଦେଶର ମଧ୍ୟ ଦିନ, ମାସ ଓ ବର୍ଷ ଆଦିର ପ୍ରାରମ୍ଭକାଳ । (ଯେ ଯେଉଁଠି ଥାନ୍ତୁ, ଲଙ୍କାର ଅର୍ଦ୍ଧରାତ୍ରି ହିଁ ସବୁ ଦେଶର ଦିନ, ମାସ, ବର୍ଷର ପ୍ରାରମ୍ଭ ସମୟ ବୋଲି ଧରାଯାଏ ।

**ବଦନ୍ତି କେଚଦାଚାର୍ଯ୍ୟା ଲଙ୍କାର୍କୋଦୟକାଳତଃ**
**ବାର ପ୍ରବୃତ୍ତିମତ୍ରୈୟଂ ବ୍ୟବସ୍ଥା କ୍ରିୟତେ ମୟା ।୧୦।**

**ଵାରେ ଯସ୍ମିନ୍ ଭବେତ୍ୟର୍କଃ ସ୍ୱଦେଶେ ସମୟାନ୍ତତଃ**
**ତଦୀଶେରୁ ରହୋରାତ୍ରେ ବଳାଧିକ୍ୟଂ ପ୍ରବର୍ତ୍ତତେ ।୧୧।**

ଲଙ୍କାର ସୂର୍ଯ୍ୟୋଦୟ ସମୟରୁ ବାର (ଦିନାଦି) ଆଦିର ପ୍ରାରମ୍ଭ ବୋଲି କେହି କେହି ଆଚାର୍ଯ୍ୟ ମନେକରନ୍ତି । ଏହି ଭୁଲ ମତକୁ ଧରି ମୁଁ ଏହି ବ୍ୟବସ୍ଥା ଦେଉଅଛି—ଯେଉଁଠି ଯେତେବେଳେ ସୂର୍ଯ୍ୟୋଦୟ ହୁଏ ସେଠାରୁ ଆରମ୍ଭ କରି ୬୦ ଦଣ୍ଡ (ଅହୋରାତ୍ର ମଧ୍ୟରେ) ସେହି ବାରାଧିପତିର ବେଶି ବଳ ଥାଏ ।

**ଦିବାରାତ୍ରୌ ଯଥାଭାଗଂ ଯାମ ଯାମାର୍ଦ୍ଧଜଂ ବଳମ୍**
**ଗୃହ୍ୟତେ କ୍ୱାପି ଦେଶେଷୁ ନତତ୍ସିଦ୍ଧାନ୍ତସମ୍ମତମ୍ ।୧୨।**

ଅହୋରାତ୍ରର ବିଭାଗରେ ଯେଉଁ ଯାମ ଓ ଯାମାର୍ଦ୍ଧର ବଳର ଆଲୋଚନା ଅଛି, ତାହା ଫଳିତର କଥା । ସେଥିରେ ସିଦ୍ଧାନ୍ତ ଗ୍ରନ୍ଥର କୌଣସି ସମ୍ପର୍କ ନ ଥିବାରୁ ତାର ଆଲୋଚନା ଏଠାରେ କରାଯାଉ ନାହିଁ । ଯେଉଁ ଦେଶରେ ତାହା ଯେପରି ଅଛି, ତାହା ସେପରି ଥିବାରେ ଆମର ଆପତ୍ତି ନାହିଁ ।

**ଯଦାହ ଭାସ୍କରଃ ସର୍ବାରମ୍ଭୋ ଲଙ୍କୋଦୟାଦତ**
**ତଦୁକ୍ତାହର୍ଗଣାନାଂ ହି ସଂଖ୍ୟା ସିଦ୍ଧାନ୍ତତଃ ପୃଥକ୍ ।୧୩।**

**ଭିନ୍ନତ୍ୱେଽପି ଯଦୀଦାନୀଂ ତଦାନୀତାର୍ଯମାଦୟଃ**
**ଦୃକ୍‌ସମା ଅଭବଷ୍ୟଂସ୍ତଦଗ୍ରହିଷ୍ୟତ ତନ୍ମତମ୍ ।୧୪।**

ଭାସ୍କରାଚାର୍ଯ୍ୟ ଗ୍ରହଗଣିତ ଆଦିର ଆରମ୍ଭ ଲଙ୍କାର ସୂର୍ଯ୍ୟୋଦୟଠାରୁ ମାନିଥିବାରୁ ତାଙ୍କ ମତରେ ଯେଉଁ ଅହର୍ଗଣ ଆସେ, ତାହା ଅନ୍ୟ ସିଦ୍ଧାନ୍ତମାନଙ୍କ ଅହର୍ଗଣରୁ ଭିନ୍ନ ହୋଇଥାଏ । ଏହି ଭିନ୍ନ ଅହର୍ଗଣକୁ ମଧ୍ୟ ମାନି ନିଆଯାଇ ପାରନ୍ତା ଯଦି ତାଙ୍କ ପ୍ରଣାଳୀରେ ଆଣିତ ଗ୍ରହ ପ୍ରତ୍ୟକ୍ଷରେ ଉପଲବ୍ଧ ହୋଇଥାନ୍ତେ । (ପଠାଣି ସାମନ୍ତେ ଭାସ୍କରଙ୍କ ରୀତିରେ ଗ୍ରହ ସାଧି ସେଗୁଡ଼ିକୁ ପ୍ରତ୍ୟକ୍ଷରେ ପର୍ଯ୍ୟବେକ୍ଷଣ କରିପାରି ନ ଥିଲେ । ତେଣୁ ସେ ସିଦ୍ଧାନ୍ତ ଦର୍ପଣ ରଚନା କଲେ ।)

**ଗ୍ରହଣାଂ ସ୍ୱସ୍ୱଗତଯୋ ଦେଶାନ୍ତରଘଟୀହତାଃ**
**ଷଷ୍ଟ୍ୟାପ୍ତା-ସ୍ତତ୍‌ଫଳଂପ୍ରାଚ୍ୟାମୃଣଂ ପଶ୍ଚାଦ୍ଧନଂଗ୍ରହେ ।୧୫।**

ଲଙ୍କା ମଧ୍ୟରାତ୍ର କାଳିକ ଗ୍ରହକୁ ନିଜ ସ୍ଥାନରେ ମଧ୍ୟରାତ୍ର କାଳିକ ଗ୍ରହ କରିବାକୁ ହେଲେ ଗ୍ରହ ଆଦିର ଦୈନିକ ଗତିକୁ ଦେଶାନ୍ତର ଘଟିକାରେ ଗୁଣି ୬୦ରେ ହରିଲେ ଯେଉଁ ଫଳ ହେବ, ତାକୁ ଯୋଗ, ବିୟୋଗ (ସ୍ୱଦେଶ ରେଖା ଦେଶର ପଶ୍ଚିମକୁ ଥିଲେ ଯୋଗ, ପୂର୍ବକୁ ଥିଲେ ବିୟୋଗ) ଲଙ୍କାର୍ଦ୍ଧରାତ୍ରିକ ଗ୍ରହରେ କଲେ ସ୍ୱଦେଶୀୟ ଅର୍ଦ୍ଧରାତ୍ରିକାଳିକ ଗ୍ରହ ହେବ ।

**କିଂବା ତଦ୍‌ଗତୟଃ କ୍ଷୁଣ୍ଣାଃ ସ୍ୱଦେଶାନ୍ତରଯୋଜନୈଃ**
**ସ୍ଫୁଟଭୂମିପରଧ୍ୟାପ୍ତାଃ ସଂସ୍କାର୍ଯ୍ୟା ମଧ୍ୟମେଷୁ ତାଃ ।୧୬।**

ଗ୍ରହ ଆଦିର ଗତିକୁ ଦେଶାନ୍ତର ଯୋଜନରେ ଗୁଣି ସ୍ଫୁଟ ଭୂପରିଧି ଯୋଜନରେ ଭାଗ ଦେଲେ ମଧ୍ୟ ଗ୍ରହର ଦେଶାନ୍ତର ଗତି ହେବ । ଏହାକୁ ମଧ୍ୟମ ଗ୍ରହରେ ପୂର୍ବକ୍ତରେ ଯୋଗ ବିୟୋଗ କଲେ ସ୍ଥାନୀୟ ମଧ୍ୟ ରାତ୍ରିକାଳୀନ ଗ୍ରହ ହୋଇଯିବ ।

**ସମୟେ ସମ୍ଭବେଦ୍‌ଯତ୍ର ସର୍ବଗ୍ରସ୍ତବିଧୁଗ୍ରହଃ**
**ତଦା ସଂସାଧିତେ ତସ୍ମିନ୍ମଧ୍ୟରେଖାମଧିଷ୍ଠିତେ ।୧୭।**

**ସ୍ୱସମାନାକ୍ଷକେ ଦେଶେ ତଦୁନ୍ମୀଳନ-କାଳତଃ**
**ଏଷ୍ୟଦ୍‌ଗତଂ ସମାଲୋକ୍ୟ ସ୍ୱଦେଶୋ-ନ୍ମୀଳନଂ କ୍ରମାତ୍ ।୧୮।**

**ପ୍ରାକ୍‌ପଶ୍ଚିମଗତଂ ବୁଦ୍ଧ୍ୱା ସ୍ୱସ୍ଥାନଂ ମଧ୍ୟସୂତ୍ରତଃ**
**ତୟୋରନ୍ତରନାଡ଼ୀଭି-ର୍ହନ୍ୟାଦ୍ଭୂପରିଧିଂ ସ୍ଫୁଟମ୍ ।୧୯।**

**ଷଷ୍ଟ୍ୟା ବିଭଜ୍ୟ ଲବ୍‌ଧାନି ଯୋଜନାନ୍ୟବଗଚ୍ଛତୁ**
**କିମ୍ବା ନିମୀଳନାଦ୍ୟାର୍ଦ୍ଧଂ ମାନଂ ଦେଶାନ୍ତରସ୍ୟ ଚ ।୨୦।**

ସୂର୍ଯ୍ୟ ସିଦ୍ଧାନ୍ତେ—

**ଇଷ୍ଟନାଡ଼ୀହତାଦ୍‌ଭୁକ୍ତିଃ ଷଷ୍ଟ୍ୟା ଭକ୍ତା ଫଳାଦିକମ୍**
**ଗତେଷ୍ଟଶୋଧ୍ୟଂ ଯୁତଂ ଗମ୍ୟେ କୃତ୍ୱା ତାତ୍କାଳିକୋ ଭବେତ୍ ଇତି । ୧।**

ପ୍ରାଚୀନ ଆର୍ଯ୍ୟର୍ଷିମାନେ ନିମ୍ନୋକ୍ତ ରୀତିରେ ଦେଶାନ୍ତର ଆଣୁଥିଲେ :—ରେଖା ଦେଶରେ ହେଉଥିବା ଗୋଟିଏ ପୂର୍ଣ୍ଣଗ୍ରସ୍ତ ଚନ୍ଦ୍ରଗ୍ରହଣ ସାଧନ କର । ନିଜ ଦେଶରେ ତାହା ରେଖାଦେଶ ସମୟୁ ଆଗରୁ ହେଉଥିଲେ ବୁଝିବାକୁ ହେବ ଯେ ନିଜ ଦେଶ ରେଖା ଦେଶର ପଶ୍ଚିମକୁ ଅଛି । ଅନ୍ୟଥା ପୂର୍ବକୁ ଅଛି । ଗ୍ରହଣର ସ୍ପର୍ଶ, ପୂର୍ଣ୍ଣଗ୍ରାସ, ଉନ୍ମୀଳନ ଓ ନିମୀଳନକୁ ଧରି ମଧ୍ୟ ଏହି ଅନ୍ତର ନିରୂପଣ କରାଯାଇ ପାରେ । ଏହାକୁ ଅନ୍ତରକାଳ ହିଁ ଦେଶାନ୍ତର କାଳ । ଏହାକୁ ସ୍ଫୁଟ ଭୂପରିଧିରେ ଗୁଣି ୬୦ରେ ଭାଗଦେଲେ ଦେଶାନ୍ତର ଯୋଜନ ଆସେ ।

କୌଣସି ସମୟର ଗ୍ରହ ଆଣିବା ପରେ ପୂର୍ବାପର ଅଭୀଷ୍ଟ ସମୟରେ ଉକ୍ତ ଗ୍ରହ ଆଦିର ରାଶ୍ୟାଦି ଆଣିବାକୁ ଚାହିଁଲେ ଦୈନିକ ଗ୍ରହ ଗତିକୁ ଅଭୀଷ୍ଟ ଦଣ୍ଡାଦି କାଳରେ ଗୁଣି ୬୦ରେ ହରିଲେ ଇଷ୍ଟ ଗ୍ରହ ସମ୍ବନ୍ଧୀ ଗ୍ରହଗତି ଆସିବ । ସାଧିତ ଗ୍ରହରେ ଏହାକୁ ଯୋଗ ବିୟୋଗ (ପରେ ହେଲେ ଯୋଗ, ପୂର୍ବରୁ ହେଲେ ବିୟୋଗ) କଲେ ସାଧ୍ୟ ଗ୍ରହ ହେବ ।

**ଦିନାନାଂ ଗଣାନା ଯସ୍ମାତ୍ ସୂର୍ଯ୍ୟୋଦୟତ ଇଷ୍ୟତେ**
**ତତସ୍ତାତ୍କାଳିକେଷ୍ୱେଷୁ ବିଧେୟା ଚର ସଂସ୍କୃତିଃ ।୬୨।**

**ସ୍ଫୁଟାର୍କାପକ୍ରମାନୀତା ଦେଶକାଲୋତ୍-ଥିତାଃସ୍ୱକାଃ**
**ଚରନାଡ୍ୟଃ ସ୍ୱଭୁକ୍ତିଘ୍ନ୍ୟଃ ଷଷ୍ଟିଭକ୍ତାଃ ଫଳଂଗ୍ରହେ ।୬୩।**

**ଧନର୍ଣ୍ଣଂ କ୍ରମଶୋଭାନୌ ଦକ୍ଷିଣୋତ୍ତର-ଗୋଲଗେ**
**ଅସ୍ତକାଳିକଖେଟେଷୁ ବୈପରୀତ୍ୟେନ ସଂସ୍କୃତିଃ ।୬୪।**

ଚର ସଂସ୍କାର—ପୂର୍ବାପର (ଦେଶାନ୍ତର) ସଂସ୍କାର କଲେ ଲଙ୍କା ସୂର୍ଯ୍ୟୋଦୟ କାଳିକ ଗ୍ରହ ସ୍ୱନିରକ୍ଷୋଦୟ କାଳିକ ଗ୍ରହ ହେବ । କିନ୍ତୁ ଲଙ୍କା ଓ ନିଜ ଦେଶ ମଧ୍ୟରେ ଅକ୍ଷାଂଶାନ୍ତର ରହୁଥିବାରୁ (ଦକ୍ଷିଣୋତ୍ତର ଦେଶାନ୍ତର) ସେହି ସମ୍ବନ୍ଧୀ ଚର ସଂସ୍କାର ପୁଣି କରିବା ଦରକାର । କାରଣ ଦିନର ଗଣନା ସୂର୍ଯ୍ୟୋଦୟଠାରୁ ହିଁ ଆରମ୍ଭ ହୋଇଥାଏ । ଉଦୟ କାଳିକ ସ୍ଫୁଟ ରବିର କ୍ରାନ୍ତିରୁ ଚର ଘଟି ଆଣି ତାକୁ ଗ୍ରହଗତି (ଦୈନିକ)ରେ ଗୁଣି ୬୦ରେ ଭାଗ ଦେଲେ ଯାହା ଲବ୍ଧି ହେବ ତାହା ସାୟନରବି ତୁଳା ଆଦି ଓ ମେଷ ଆଦି ଛରାଶିରେ ଥିବା ବେଳେ ଗ୍ରହରେ ଯଥାକ୍ରମେ ଯୁକ୍ତ ଓ ବିଯୁକ୍ତ କରିବାକୁ ହେବ । କିନ୍ତୁ ଅସ୍ତ କାଳିକ ଗ୍ରହରୁ ଅସ୍ତକାଳିକ ଗ୍ରହ କରିବାକୁ ହେଲେ (ଲଙ୍କା ଅସ୍ତ କାଳିକ ଗ୍ରହରୁ, ସ୍ୱଦେଶର ଅସ୍ତ-କାଳୀନ ଗ୍ରହ କରିବାକୁ ହେଲେ) ଏହି ଆନୀତ ଚରକଳା ଫଳକୁ ବୈପରୀତ୍ୟରେ ଯୋଗ ବିୟୋଗ କରିବା ଦରକାର । (ଦକ୍ଷିଣ ଗୋଲରେ ଥିବାବେଳେ (ସୂର୍ଯ୍ୟ) ବିୟୋଗ ଏବଂ ଉତ୍ତର ଗୋଲରେ ଥିବାବେଳେ ଯୋଗ କରିବାକୁ ହେବ ।)

**ଗତାବ୍ଦସ୍ଫୁଟ ସୂର୍ଯ୍ୟସ୍ୟ ଯଦାଂଶେ ଯଦଭୂଚ୍ଚରମ୍**
**ତତ୍ତଦ୍ ବର୍ତ୍ତମାନାବ୍ଦେ ଗ୍ରାହ୍ୟଂମଧ୍ୟାର୍ଯ୍ୟମାଦଷ୍ଟ ।୬୫।**

ସ୍ଫୁଟ ସୂର୍ଯ୍ୟ ଗତ ବର୍ଷ ଯେତେ (ଗୋଟିଏ ନିର୍ଦ୍ଦିଷ୍ଟ ଅଂଶରେ ଥାଇ) ଅଂଶରେ ଥିବାରୁ ଯେତେ ଚର ଘଟିକା ହୋଇଥିଲା ଏହି ବର୍ଷ ମଧ୍ୟମ ସୂର୍ଯ୍ୟ ସେତିକି ଅଂଶରେ ଥିବାବେଳେ ସେତିକରେ ଚର ଘଟିକା ହେବ । ଏଣୁ ଏ ଅନୁସାରେ ଚରଘଟିକା ଆଦି ଗ୍ରହଣ କରି ହେବ ।

ରବିମାନ୍ଦ୍ୟଫଳବ୍ୟକ୍ଷ ଲଗ୍ନମାନାୟନାଂଶକୈଃ
ବକ୍ଷ୍ୟମାଣୈଃ କ୍ରିୟାମନ୍ୟାଂ ବଚ୍ମି ମଧ୍ୟଗ୍ରହୋଚିତାମ୍ ।୨୬।

ଅର୍ଦ୍ଧରାତ୍ରାନ୍ମଧ୍ୟରବେଃ ସ୍ଫୁଟାର୍କସ୍ୟ ନିଶାଦଳମ୍
ଭିନ୍ନଂ ଯଦ୍ଯୁଜ୍ୟତେ ତସ୍ମାତ୍-ଭୁଜାନ୍ତର ସଂସ୍କୃତିଃ ।୨୭।

ଚଳାଂଶସଂସ୍କୃତା-ଦାଦିତ୍ୟକାନ୍ତି-ରାଶ୍ୟୁଦୟା-ସୁଭିଃ-
ନିରକ୍ଷ ଦେଶଜୈର୍ଘ୍ନା ରବିଦୋଃ-ଫଳଲିପ୍ତିକାଃ ।୨୮।

ଅଷ୍ଟାଦଶ ଶତୈ ରାପ୍ତାଃ ସ୍ୱ ସ୍ୱ ଭୁକ୍ତି ବିରାହତାଃ
ମାଧ୍ୟାର୍କ ସାବନଦିନପ୍ରାଣୈ-ରାପ୍ତାଃ କଳାଦୟଃ ।୨୯।

ସ୍ୱମ୍ନଣଂ ସୂର୍ଯ୍ୟଫଳବତ୍ କାର୍ଯାଃ ସୂର୍ଯ୍ୟାଦିଖେଚରେ
ଶୀଘ୍ରେନ୍ଦୂଚ୍ଚେଷୁ ରାହୌ ତୁ ବ୍ୟସ୍ତାଃ ସଂସ୍କୃତୟୋଽଖିଳାଃ ।୩୦।

ରବିର ମନ୍ଦ ଫଳ, ନିରକ୍ଷଲଗ୍ନମାନ ଓ ଅୟନାଂଶ ଆଦିଦ୍ୱାରା ଆଉ ଗୋଟିଏ ମଧ୍ୟ ଗ୍ରହ ସଂସ୍କାର କଥା ବର୍ତ୍ତମାନ କହୁଅଛୁ । ମଧ୍ୟମ ରବିକୁ ନେଇ ନିଶାର୍ଦ୍ଧ, ତାହା ସ୍ଫୁଟ ରବିକୁ ନେଇ ହେଉଥିବା ନିଶାର୍ଦ୍ଧରୁ ଭିନ୍ନ । ତେଣୁ ମଧ୍ୟାର୍କ ଜନିତ ନିଶାର୍ଦ୍ଧ କାଳିକ ମଧ୍ୟମ ଗ୍ରହକୁ ସ୍ଫୁଟ ରବି ଜନିତ ରାତ୍ର୍ୟର୍ଦ୍ଧ କାଳିକ କରିବାକୁ ହେଲେ ମଧ୍ୟମ ଓ ସ୍ଫୁଟ ରବି ମଧ୍ୟରେ ଥିବା ଭୁଜଫଳ ସଂସ୍କାର କରିବାକୁ ହେବ ।

ଅୟନ ସଂସ୍କୃତ ରବିର ମନ୍ଦଭୁଜ ଫଳକୁ ଏହି ରବି ଥିବା ରାଶିର ଉଦୟ 'ଅସୁ'ରେ ଗୁଣି (ନିରକ୍ଷ ଉଦୟ ଅସୁ) ୧୮୦୦ରେ ହରିଲେ ଯାହା ଫଳ ହେବ; ତାହାକୁ ପୁଣି ଦୈନିକ ଗତିରେ ଗୁଣି ମଧ୍ୟ ରବି ସାବନ ଦିନ ଅସୁରେ ହରିଲେ ଯେଉଁ କଳାଦି ଫଳ ହେବ ତାହାକୁ ମନ୍ଦ ଫଳ ପରି ସୂର୍ଯ୍ୟ ଆଦି ଗ୍ରହରେ ଯୋଗ ବିଯୋଗ କଲେ ତାହା ଭୁଜଫଳ ସଂସ୍କୃତ ଗ୍ରହ ହେବ । (ଗୋଟିଏ ରବି ମଧ୍ୟ ସାବନ ଦିନର ଅସୁସଂଖ୍ୟା = ୨୧୬୫୯ । ଶୀଘ୍ର ଫଳକୁ ନେଇ ଏହି ଭୁଜାନ୍ତର କଲାବେଳେ, ଚନ୍ଦ୍ର ମନ୍ଦୋଚ୍ଚ ବେଳେ ଏବଂ ରାହୁର ଭୁଜାନ୍ତର ସଂସ୍କାର କଲାବେଳେ ପୂର୍ବବ୍ୟବସ୍ଥାର ବିପରୀତ କରି କାର୍ଯ୍ୟ କରିବ—ଅର୍ଥାତ୍ ମନ୍ଦଭୁଜଫଳ-ବେଳେ ଯୋଗ କରାଯାଉଥିଲେ ଏଥିରେ ବିଯୋଗ ଏବଂ ମନ୍ଦଭୁଜଫଳବେଳେ ବିଯୋଗ କରାଯାଇଥିଲେ ଏଠାରେ ଯୋଗ କରିବାକୁ ହେବ ।

ଅଲ୍ପାନ୍ତରତ୍ୱା-ଦଥବା ରବିବାହୁ ଫଳାହତା
ଭୁକ୍ତିର୍ଭଚକ୍ର କଳିକା-ଭକ୍ତାଲପ୍ତାଦି ତତ୍ ଫଳମ୍ ।୩୧।

**କର୍ମ୍ମାଭକ୍ତାଶ୍ଚକ୍ରଲପ୍ତା ଗତ୍ୟାଚ୍ଛେଦସ୍ତୁ ତତ୍ ଫଳମ୍**
**ତେନାର୍କଦୋଃ ଫଳଂ ଭକ୍ତଂ ପ୍ରାଗ୍ ବଲ୍ଲିପ୍ତାଦ ସଂସ୍କୃତଃ ।୩୨।**

ଭୂଜାନ୍ତର ସଂସ୍କାର ନିମନ୍ତେ ଅନ୍ୟପ୍ରକାର ମଧ୍ୟ ଅଛି । ରବିର ମନ୍ଦଭୁଜଫଳକୁ ନିଜ ନିଜ ଦୈନିକ ଗତିରେ ଗୁଣି ୨୧୬୦୦ରେ ହରିଲେ ଭୂଜାନ୍ତର ଫଳ ହେବ । ଅଥବା ଦୈନିକ ଗ୍ରହଗତିଦ୍ୱାରା ୨୧୬୦୦କୁ ହରି ଫଳରେ ରବି ଭୁଜଫଳକୁ ହରିଲେ କଳାଦି ଭୂଜାନ୍ତର ସଂସ୍କାର ଫଳ ହେବ । ଏହାକୁ ପୂର୍ବ ପରି ଯୋଗ ବିୟୋଗ କରିବାକୁ ହେବ ।

**ଭୂଜାନ୍ତରାଖ୍ୟ କର୍ମ୍ମୋକ୍ତ-ମୁଦୟାନ୍ତର ମୁଚ୍ୟତେ**
**କ୍ରାନ୍ତଜ୍ୟାର୍କକ୍ଷ-ହାଲ୍ପତ୍ୱ ଭୂମୋତ୍ଥଫଳକାରଣମ୍ ।୩୩।**

ଭୂଜାନ୍ତର ସଂସ୍କାର କହି ସାରିବା ପରେ ଉଦୟାନ୍ତର କର୍ମ କୁହାଯାଉଛି । କ୍ରାନ୍ତି ବୃତ୍ତୀୟ ସୂର୍ଯ୍ୟ ଓ (କଳ୍ପିତ) ନାଡ଼ୀବୃତ୍ତୀୟ ସୂର୍ଯ୍ୟ (ଉଭୟେ ମଧ୍ୟମ) ମଧ୍ୟରେ ବ୍ୟବଧାନକୁ ନେଇ ଉଦୟାନ୍ତର ସଂସ୍କାର ହୋଇଥାଏ ।

**ସଂସ୍କୃତସ୍ୟାୟନାଂଶାଦ୍ୟୈର୍ମଧ୍ୟମସ୍ୟ ବିବସ୍ୱତଃ**
**ଲଗ୍ନଭୁକ୍ତାସବୋଽତୀତ ମେଷାଦ ପ୍ରାଣ ସଂଯୁତାଃ ।୩୪।**

**ନିରକ୍ଷଦେଶଜା ଯେ ସ୍ୟୁର୍ଯ୍ୟାଶ୍ଚ ମଧ୍ୟମଭାସ୍ୱତଃ**
**ଚଳାଂଶ ସଂସ୍କୃତ ସ୍ୟୈବ ଲପ୍ତାସ୍ତଦ୍ ବିବରୀହୃତାଃ ।୩୫।**

**ସୂର୍ଯ୍ୟାଦମଧ୍ୟ ଚନ୍ଦ୍ରୋଚ୍ଚ ପାତଶୁକ୍ରଜ୍ଞଶୀଘ୍ରଜାଃ**
**ଗତଲପ୍ତା ହୃତା, ଗୋର୍ଥି ଭୂପଦୃକ୍ଭିଃ କଳାତ୍ମକମ୍ ।୩୬।**

**ଫଳଂତତ୍ସୂର୍ଯ୍ୟ ଯୁଗ୍ମୌଜ-ପଦୟୋଃ ସ୍ୱମୃଣଂ କ୍ରମାତ୍**
**କାର୍ଯ୍ୟଂ ମଧ୍ୟଗ୍ରହାଦ୍ୟେଷୁ ଲମ୍ବା ପ୍ରୋକ୍ତଂ ଚରାଦକମ୍ ।୩୭।**

ଏଥିନିମନ୍ତେ ମଧ୍ୟମ ରବିକୁ ସାୟନ କରିବାକୁ ହେବ । ଏହି ସାୟନ ରବିର ନିରକ୍ଷ ଦେଶୀୟ ଲଗ୍ନ ଭୁକ୍ତାସୁରେ ଅତୀତ ମେଷାଦି ଅସୁ ଯୋଗ କରିବ । ତା’ପରେ ସାୟନ ରବିର ମେଷାଦିଭୁକ୍ତ କଳା ଆଣିବ । ଏହି ଦୁଇଟିର ଅନ୍ତରଫଳକୁ ଗତିକଳାପ୍ରାନ୍ତରେ ଗୁଣି ୨୧୬୫୯ରେ ହରିରେ ଯେଉଁ ଫଳ ଆସିବ ତାହାହିଁ ଉଦୟାନ୍ତର ଫଳ । ସାୟନମଧ୍ୟମ ରବି ସମ ଓ ବିଷମ ପଦରେ ଥିଲାବେଳେ ଗ୍ରହରେ ଏହି ଫଳକୁ ଯୋଗ, ବିୟୋଗ କରିବାକୁ ହେବ । ଉଚ୍ଚ ଓ

---

**ଅଥବା ତସ୍ମୁର୍ଯ୍ୟ ପଦୋନାଦ୍ୟନାଂଶ ସଂସ୍କୃତସୂର୍ଯ୍ୟୋ ବ୍ୟାଖ୍ୟାତେ ।୩୭।**

ପାତରେ ସବୁ ସଂସ୍କାର ବିପରୀତ ହୋଇଥିବାରୁ ଏଠାରେ ମଧ୍ୟ ତାହା ଅର୍ଥାତ୍ ସାୟନ ରବି ସମ ଓ ବିଷମ ପଦରେ ଥିଲାବେଳେ ଯଥାକ୍ରମେ ଏହି ଫଳକୁ ଉକ୍ତ ଓ ପାତରେ ବିୟୋଗ ଓ ଯୋଗ କରିବ ।

**ସଂସ୍କାରବିତୟଂ ସ୍ପଷ୍ଟକ୍ରିୟାକଷ୍ଟତ୍ୟନନ୍ତରମ୍**
**କର୍ତ୍ତବ୍ୟଂ କୁଭିଃ ସ୍ୱସ୍ୱ ସ୍ଫୁଟଭୁକ୍ତିଭିରେବ ତତ୍ । ୩୮ ।**

**ତଦା ମଧ୍ୟେଷୁ ଶୀଘ୍ରେଷୁ ମନ୍ଦୋଚ୍ଚେଽପି ନ ତତ୍ କ୍ରିୟା**
**କାର୍ଯ୍ୟ ସ୍ଫୁଟଗ୍ରହେଷ୍ୱେବ ଯତ୍ତେଽତୈଃ ପ୍ରାକ୍ ପରିଷ୍କୃତାଃ । ୩୯ ।**

ଚର, ଭୁଜାନ୍ତର ଓ ଉଦୟାନ୍ତର ଏହି ତିନି ସଂସ୍କାର ମଧ୍ୟମ ଗ୍ରହରେ ନ କରି ସ୍ଫୁଟ ଗ୍ରହରେ ମଧ୍ୟ କରାଯାଇପାରେ । ସେତେବେଳେ ଆଉ ମଧ୍ୟମ ଗତି ନ ନେଇ ସ୍ଫୁଟ ଗତି ନେବାକୁ ହେବ । ମନେ ରଖିବ ଯେ ସ୍ଫୁଟ ଗ୍ରହରେ ଏ ସବୁ ସଂସ୍କାର କଲାବେଳେ ମଧ୍ୟ ମନ୍ଦୋଚ୍ଚ, ଶୀଘ୍ରୋଚ୍ଚ ଓ ଚନ୍ଦ୍ରୋଚ୍ଚରେ ଯେପରି କେହି ପୁଣି ଏ ସବୁ ସଂସ୍କାର କରି ନ ବସନ୍ତି । କାରଣ ଏଗୁଡ଼ିକ ସ୍ପଷ୍ଟ ହେଲାବେଳେ ନିଶ୍ଚୟ ଏ ସଂସ୍କାର ଦେଇ ହିଁ ଆସିବାର କଥା । ତେଣୁ ଆଉ ଆବଶ୍ୟକ ନାହିଁ ।

**ଯଦ୍ୟର୍କଦୋଃ ଫଳଂ ଲଗ୍ନସଂସ୍କୃତଂ ତର୍ହି ମଧ୍ୟମାତ୍**
**ଚଳାଂଶ ସଂସ୍କୃତାତ୍ ସୂର୍ଯ୍ୟାତ୍ ସାଧ୍ୟଂ ତଦୁଦୟାନ୍ତରମ୍ ।୪୦।**

**ଅନ୍ୟଥା ସ୍ଫୁଟମାର୍ତ୍ତଣ୍ଡା-ଦୟନାଂଶ-ପରିଷ୍କୃତାତ୍**
**ଅଭୁଜାନ୍ତରସଂସ୍କାରାଦ୍ ଯତ୍ତଦ୍‌ଫଳଯୁଗଂ ପୃଥକ୍ ।୪୧।**

ଭୁଜାନ୍ତର କଲାବେଳେ ଯଦି ରବିର ମନ୍ଦଫଳ ଉତ୍ପନ୍ନ ଅସୁ ନିଆଯାଇଥାଏ, ତାହାହେଲେ ସାୟନ ମଧ୍ୟମ ରବିରୁ ଉଦୟାନ୍ତର କାର୍ଯ୍ୟ କରାଯିବ । ଯଦି ରବିର ମନ୍ଦଫଳ କଳା ତୁଲ୍ୟ ଅସୁ ନିଆଯାଏ, ତାହାହେଲେ ସାୟନ ଓ ଭୁଜାନ୍ତର ସଂସ୍କାର ରହିତ ମନ୍ଦସ୍ଫୁଟ ରବିରୁ ଉଦୟାନ୍ତର ଓ ଭୁଜାନ୍ତର ଉଭୟ ଫଳ ମାଧ୍ୟମ ପୃଥକ୍ ପୃଥକ୍ ଭାବରେ କରିବାକୁ ହେବ ।

**ଭୂଗୋଳ ମଧ୍ୟ ପରିଧିଃ ସ୍ୱଦେଶାକ୍ଷକଳାହତଃ**
**ଭଚକ୍ର-ଲପ୍ତିକା-ପ୍ତଃ ସ୍ୟାଦ୍ ବ୍ୟକ୍ଷାଦ୍ ଯାମ୍ୟୋତ୍ତରାନ୍ତରମ୍ ।୪୨।**

ଭୂପରିଧିକୁ ନିଜ ଦେଶର ଅକ୍ଷକଳାରେ ଗୁଣି ୨୧୬୦୦ କଳାରେ ହରଣକଲେ ନିରକ୍ଷ ଦେଶ (ବିଷୁବ) ଠାରୁ ନିଜ ଦେଶ ଉତ୍ତର ବା ଦକ୍ଷିଣକୁ କେତେ ଦୂରରେ ଅଛି ଜଣାଯାଇ ପାରିବ । ଏହି ଅନ୍ତର ନିଜ ଦେଶର ଯାମ୍ୟୋତ୍ତର ବୃତ୍ତରେ ହେବ ।

ପ୍ରାକ୍ୟଶ୍ରମେଣ ଯତ୍କାର୍ଯ୍ୟା ପର୍ଯ୍ୟୟତ୍ୟାଦ ମାର୍ଜନା
କୁଚନାଗ୍ରର୍ଯ୍ୟ-ବକ୍ରୁର୍ଯ୍ୟାଂ ସୂର୍ଯ୍ୟାଦ୍ୟ ପଦକାଦ୍ୟତଃ ।୪୩।

ତତ୍ରାଦୌ ମଧ୍ୟମାର୍କସ୍ୟ ମେଷସଂକ୍ରମଣାଦନୁ
ଏକାଦବର୍ଷ ସଂଖ୍ୟାତ୍ଥ-ସାବନାହର୍ଗଣଃ କ୍ରମାତ୍ ।୪୪।

ପଙ୍କ୍ତିଭିଲେଖନୀୟୋଽସ୍ୟ ସଞ୍ଚୟୋ ବାରଶୋଧନାତ୍
ବଷମଶ୍ଚେନ୍ନିରେକୋ ବା ସୈକୋ ବା କ୍ରିୟତାମସୌ ।୪୫।

ଗ୍ରହ ଆଣିବା ନିମନ୍ତେ ବହୁ ପରିଶ୍ରମ ଦରକାର ହେଉଥିବାରୁ କୁଚନଗ୍ରର୍ଯ୍ୟ କଳ୍ପରି ମୁଁ ଏଠାରେ ପଦକ ଦେଇଦେବାକୁ ଇଚ୍ଛା କରୁଅଛି ।

ମଧ୍ୟମ ସୂର୍ଯ୍ୟ ମେଷ ସଂକ୍ରମଣଠାରୁ ଏକ, ଦୁଇ ଆଦି ବର୍ଷର କ୍ରମରେ ଅହର୍ଗଣ ଦିଆଯାଉଛି । ଏଥିରେ ବାରଶୁଦ୍ଧି ମଧ୍ୟ କରି ଯାଇଅଛି । ଏଥିରୁ ଅହର୍ଗଣ ଆଣିବାବେଳେ ଦରକାର ପଡ଼ିଲେ ଦୁଇ, ତିନି ସ୍ଥାନର ଅହର୍ଗଣ ମିଶାଇ ୭ରେ ହରି, ବାର ଆଣିବ । ଏହା କଲାବେଳେ ବାର ନ ଆସିଲେ ସେଥିରେ ୧ ମିଶାଇବ ବା ଫେଡ଼ିବ, ଯେପରି ଅଭିମତ ବାର ମିଳିଯିବ ।

ଏବମାନୀୟଦବସଂ ପଂକ୍ତିକା ମୁଖ ସମ୍ମତମ୍
ତତ୍ପ୍ରାଗ୍-ଦନେ ସ୍ୱପଦକୈଃ କାର୍ଯ୍ୟୋ ଗ୍ରଣ୍ୟାଦ ସଂଚୟଃ ।୪୬।

ଅତ୍ରାଧୋଽଧଃ-ସ୍ଥଗ୍ରଣ୍ୟାଦ ପଞ୍ଚକାଢ଼୍ୟାଃ କୁବାସରାଃ
ଏକାଦ୍ୟବ୍ଦ-ପର୍ଯ୍ୟନ୍ତାଃ ସ୍ଥାପ୍ୟାସ୍ତପୂଦ କାନ୍ତତଃ ।୪୭।

କଲ୍ୟାଦକରଣାବ୍-ଦାଦଧ୍ରୁବାଃ ଖେଟୋଚପାତଜାଃ
ଦ୍ୱେଧାଲେଖ୍ୟା ଗତଚ୍ଛେଦହାରଦେଶଜ ଲପ୍ତିକାଃ ।୪୮।

ପଦକେଷୁ ବିସପ୍ତତ୍ୟା ମୂର୍ଦ୍ଧ୍ନି ସ୍ଥୈକାଦ-ସଂଖ୍ୟୟା
ଦନାନାଂ ସ୍ୱ ସ୍ୱ ଗ୍ରଣ୍ୟାଦ୍ୟା ମିଶ୍ରିତାଶ୍ଚକ୍ର ଶେଷିତାଃ ।୪୯।

ସ୍ୱଧ୍ରୁବାଢ଼୍ୟା ମଧ୍ୟଶୀଘ୍ରାଶ୍ଚନ୍ଦ୍ରୋଚସହିତା ଗ୍ରହାଃ
ଲଙ୍କାର୍ଦ୍ଧରାତ୍ରେ କଲ୍ୟାଦେଃ କରଣାଦ୍ୱା ଦନୋଦୟେ ।୫୦।

ଭବନ୍ତ ଚନ୍ଦ୍ରପାତସ୍ୟ ଧ୍ରୁବସ୍ତଦ୍ୟୁକ୍ତ ବର୍ଜ୍ଜିତଃ
ଯୋଜୟେଦ୍ ତଦ୍ଧ୍ରୁବେ ଚକ୍ରମଧ୍ୟକେ ଫଳସଞ୍ଚୟେ ।୫୧।

ଏହିପରି ସ୍ଥଳରେ ପଞ୍ଜିକା ପ୍ରାରମ୍ଭ ଦିନରେ ଗୃହୀତ ଅହର୍ଗଣ ଆଣି ତାହାର ପୂର୍ବ ଦିନରେ ନିଜ ନିଜର ପଦକ (ସାରଣୀ) ଦ୍ୱାରା (ପଦକ ସବୁ ପରିଶିଷ୍ଟ ପ୍ରକରଣରେ ଦିଆଯାଇଛି) ଏକ, ଦୁଇ, ତିନି ଦିନର ସଂଗ୍ରହ କରିବାକୁ ହେବ । ଏସବୁକୁ ପୁଣି ଯୋଗ କଲେ ନିର୍ଦ୍ଦିଷ୍ଟ ଦିନର ଗ୍ରହ ହୋଇଯିବ । ଯୋଗ କଲାବେଳେ ରାଶିଠାରୁ ଆରମ୍ଭ କରି ୫ମ ସ୍ଥାନ (ପରା) ପର୍ଯ୍ୟନ୍ତ ଗତିର ଯେପରି ଯୋଗ ହୁଏ ତାହାକୁ ଦେଖିବାକୁ ହେବ । ଏହିପରି ଭାବରେ ୧ରୁ ଅବଦ ପର୍ଯ୍ୟନ୍ତ ଗତି ହୋଇଯିବ । ଏକରୁ ଦଶ, ଦଶରୁ ତାହାର ଗୁଣ ବୃଦ୍ଧିରେ ଅର୍ବୁଦ ସଂଖ୍ୟା ପର୍ଯ୍ୟନ୍ତ ଅହର୍ଗଣ ଲେଖାଯିବ ।

ଗ୍ରହ ଉଚ୍ଚାଦି ପଦକ ଲେଖା ଶେଷ ହେଲେ ଗ୍ରହ, ଉଚ୍ଚ, ପାତର କଳି ଯୁଗାଦିରେ ତଥା କରଣାବ୍ଦ ପ୍ରାରମ୍ଭରେ ଧ୍ରୁବ ଦୁଇ ପ୍ରକାର ଲେଖିବାକୁ ହେବ । ଗ୍ରହ, ଉଚ୍ଚ ଓ ପାତର ଦୈନିକ ମଧ୍ୟମ ଗତି ମଧ୍ୟ ଲେଖାଯିବ । ଭୁଜାନ୍ତର ଛେଦ, ମନ୍ଦୋଚ୍ଚହାର, ପାତହାର ଓ ଦେଶାନ୍ତର କଳାଦି ସବୁ ଲେଖାଯିବ । ୭୩ଟି ପଦକରେ ଉପରୁ ଏକାଦି କ୍ରମରେ ତଳଆଡ଼କୁ ଲେଖା ଯାଇଥିବା ଗ୍ରହର ରାଶି ଅଂଶାଦି ଯୋଡ଼ିଲେ ଏବଂ ୧୨ ରାଶିରୁ ଅଧିକ ହେଲେ ସେଥିରୁ ୧୨ ବାଦଦେଲେ ଏବଂ ସେଥିରେ କଳାଦି ବା କରଣାବ୍ଦାଦି ଧ୍ରୁବ ଯୋଗକଲେ ( ପୁଣି ୧୨ ରାଶି ରୁଅଧିକ ହେଲେ ୧୨ ରେ ହରିଲେ ) କଳିଯୁଗ ପ୍ରାରମ୍ଭରୁ ଲଙ୍କାର୍ଦ୍ଧ ରାତ୍ରି ନିକଟରେ ଏବଂ କରଣାବ୍ଦ ପ୍ରାରମ୍ଭ ପକ୍ଷେ କରଣାବ୍ଦ ଆରମ୍ଭ ଦିନର ସୂର୍ଯ୍ୟୋଦୟାସନ୍ନ କାଳରେ ଚନ୍ଦ୍ରୋଚ୍ଚ ସହିତ ମଧ୍ୟମ ଶୀଘ୍ରୋଚ୍ଚ ଆଦି ରବ୍ୟାଦି ଗ୍ରହ ହୋଇଯିବ । ଚନ୍ଦ୍ରପାତ ରାହୁର ମଧ୍ୟମମାନ ଆଣିବାବେଳେ ସେହି ରାଶ୍ୟାଦିର ବିୟୋଗ କରିବାକୁ ହେବ । ଏହିସବୁ ଯୋଗ କଲାବେଳେ ପାତ ଆଣିବାକୁ ଥିଲେ ତାହା ଯଦି ୧୨ ରାଶିରୁ ଅଧିକ ହୁଏ ସେଥିରେ ୧୨ ରାଶି ମିଶାଇ ଦେବାକୁ ହେବ । ତାହାହେଲେ ଗ୍ରହ ଓ ପାତ ହେବ ।

**କୁତଶ୍ଚିତ୍ପଦକେ ନଷ୍ଟେ ସନ୍ଦିଗ୍ଧାଙ୍କେ ନଭଃ ସଦାମ୍**
**ତତ୍ସଂଖ୍ୟାହର୍ଗଣୋ ଭୁକ୍ତି ଗୁଣିତସ୍ତତ୍ପଦଂ ଭବେତ୍ ।୫୨।**

ଯେଉଁ ପଦକ ସବୁ ଦିଆଯାଇଛି ସେଥିରୁ କୌଣସିଟି ନଷ୍ଟ ହୋଇଗଲେ ଅଥବା ଭୁଲ ଥିବା ମନେକଲେ ଗ୍ରହର ( ଭୁଲ ବା ସନ୍ଦେହ କରାଯାଉଥିବା ) ଦୈନିକ ମଧ୍ୟମ ଗତିକୁ ଅହର୍ଗଣରେ ଗୁଣିଦେଲେ ତାହା ଠିକ୍ ଅଛି କି ନାହିଁ ପରିଷ୍କାର ଭାବରେ ଧରା ପଡ଼ିଯିବ । (ପଦକରେ ଅହର୍ଗଣ ସଂଖ୍ୟା ଓ ସେହି ଅହର୍ଗଣ ସମ୍ବନ୍ଧୀ ରାଶି ଅଂଶାଦି ଦିଆଯାଇଅଛି )

**ଏବମାନୀୟ ରବ୍ୟାଦୀଂସ୍ତତୋ ଦେଶାଦିସଂସ୍କୃତମ୍**
**କୃତ୍ୱାଖଣ୍ଡଫଳୈଃ ପଶ୍ଚାତ୍ ସ୍ଫୁଟୀକରଣମାଚରେତ୍ ।୫୩।**

**ଲେଖ୍ୟେ ସ୍ୱ ସ୍ୱ ପ୍ରକାଶେଷ୍ୱ ନିବେଶ୍ୟଂ ପଦକାଦିକମ୍**
**ଗ୍ରନ୍ଥେ ଯନ୍ତ୍ରାଳୟୋଦ୍‌ଭୂତେ ଥ ବୁ ସର୍ବାଙ୍କେ ନୈବ ଯଥାକ୍ରମମ୍ ।୫୪।**

**ସିଦ୍ଧାନ୍ତକ୍ରମସଂସିଦ୍ଧ ସ୍ଫୁଟୀକରଣ ଲେଖନାତ୍ ।**
**ଅନନ୍ତରଂ ଫଳାନ୍ୟେଷାଂ ଲିଖିଷ୍ୟନ୍ତେ ଯଥାକ୍ରମମ୍ ।୫୫।**

ଏହିପରି ରବି ଆଦି ଗ୍ରହଗୁଡ଼ିକ ଆଣିସାରିବାପରେ ଦେଶାନ୍ତର ଆଦି **ସଂସ୍କାର** କରିବାକୁ ହେବ । ଅନନ୍ତର ଯେଉଁ ଖଣ୍ଡଫଳ ସବୁ ଦିଆଯାଇଛି ସେଗୁଡ଼ିକ ସାହାଯ୍ୟରେ ଗ୍ରହସ୍ଫୁଟ କରାଯିବ । ଲେଖିବାକୁ ଥିବା ବହିରେ ନିଜନିଜ ବିଭାଗର ପଦକ ଆଦି ଲେଖି ନେବ । ମାତ୍ର ମୁଦ୍ରିତ ବହିରେ ସେପରି କରାଯାଇ ନପାରି ଶେଷରେ ଏହି ସବୁ ପଦକ ଆଦିର ବିବରଣ ଦିଆଯାଉଛି । ସିଦ୍ଧାନ୍ତ ଗ୍ରନ୍ଥରେ ସାଧାରଣତଃ ପଦକାଦି ଲେଖାଯିବାପରେ ହିଁ ଖଣ୍ଡଫଳ ଆଦି ଲେଖାଯାଏ, ଏହାହିଁ ତାହାର କ୍ରମ ।

**ଇତଃଖଗଭଗଣେଭ୍ୟଃ ପ୍ରାକ୍ ଫଳୈଃ ସଂବଦଦ୍ଭ୍ୟୋ**
**ଧ୍ରୁବଗତପଦଲେଖା ଲେଖି ସୌଖ୍ୟାର୍ଥମେଷା ।**
**ଖଚରବିଷମଭାବେ ଦୃଶ୍ୟମାଣେ ତୁ ଭୁକ୍ତି-**
**ଧ୍ରୁବପଦକ କୃତସ୍ତାଦ୍ ବକ୍ଷ୍ୟମାଣୋତ୍ତରାର୍ଦ୍ଧେ ।୫୬।**

ଏଠାରେ ଭାବରେ ସୁବିଧାରେ ଗ୍ରହସ୍ଫୁଟ କରାଯିବା ନିମନ୍ତେ ମୁଁ **ଫଳ, ଧ୍ରୁବ,** ଓ ଗତି ଆଦି ସେ ଗୁଡ଼ିକର ସାରଣୀ ସହିତ ୧, ୨, ୩ ଦିନ ଆଦି **କ୍ରମରେ ଲେଖି** ଦେଇ ଅଛି । ଏହି ପଦକ ଆଦି ଅନୁସାରେ ଗ୍ରହସ୍ଫୁଟ କରିସାରିବା ପରେ ପ୍ରତ୍ୟକ୍ଷରେ ଗ୍ରହ ଗୁଡ଼ିକ ସେହି ସେହିପରି ଦେଖା ନ ଗଲେ (ସାଧିତ ଗ୍ରହରଶ୍ମ୍ୟାଦି ପ୍ରକୃତରେ ଦେଖା ନ ଗଲେ— ଅର୍ଥାତ୍ ଉଭୟ ମଧ୍ୟରେ ସମତା ନ ରହିଲେ), ଏହି ବହିର ଉତ୍ତର ଭାଗରେ ଥିବା ଦୈନିକ ଗତି, ଧ୍ରୁବପଦକ କୃତ ଆଦିକୁ ପୁଣି ଦେଖି ଠିକ୍ କରିବାକୁ ହେବ ।

**ଯତ୍ରୈଶାନ୍ତଚରନ୍ତନାଃ ସଭକଳାଂ ବେଦାଙ୍ଗଳା ମକ୍ଷଭାଂ**
**ପ୍ରାଗ୍ଦେଶାନ୍ତରସାଧିତାନ ବିପଳାନ୍ୟବ୍ଧି ହିବେଦଦ୍ୱିପାନ୍ ।**
**ତାଂ ତାନ୍ୟଷ୍ଟ-କଳୋନତାଂ ଫଣିଗୁଣ-ଖ୍ମାଂକା-ନ୍ନବାସ୍ତଦ୍ଗିରୌ**
**ରାଜନ୍ ରାଜତୁ ରାଜରାଜ-ସୁହୃଦା ଗେହ୍ୟୋ ଗିରୀଶଃ ସମେ ।୫୭।**

ପ୍ରାଚୀନ ମାନଙ୍କ ମତରେ ଯେଉଁ ମାଳାଚଳେର ଅକ୍ଷପ୍ରଭା ଆ ୮ । ୨୭ ଓ ଦେଶାନ୍ତର ବିକଳା ୮°୩୮ ଏବଂ ନବ୍ୟମାନଙ୍କ ମତରେ ତାହା ପୁଣି ଯଥାକ୍ରମେ ଅ ୪ । ୧୯ ଓ ୯୧°୩୮ ସେଥିରେ **କୁବେରଙ୍କ ମିତ୍ର ଶିବଙ୍କ** ଦ୍ୱାରା ପୂଜିତ ହୋଇ ଶ୍ରୀ ଜଗନ୍ନାଥ ଦେବ ବିରାଜମାନ ହୋଇଅଛନ୍ତି । ସେହି ମାଳାଚଳେର ମୋର ହୃଦୟରେ ମଧ୍ୟ ବିରାଜମାନ ହୁଅନ୍ତୁ ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳ କୂଳପ୍ରସୂତ
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽଖିସିଦ୍ଧେ
ସିଦ୍ଧାନ୍ତଦର୍ପଣ ଉପାହୃତ ବାଳବୋଧେ
ତୁର୍ଯ୍ୟୋ ଯଯୌ ସପଦସଂସ୍କୃତମାନ୍ ପ୍ରକାଶଃ ।୪୮।

ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ
ମଧ୍ୟମାଧିକାରେ ନାନାବିଧସଂସ୍କାରପଦକ ବର୍ଣ୍ଣନୋ
ନାମ ଚତୁର୍ଥଃ ପ୍ରକାଶଃ ।

ଏଠାରେ ସିଦ୍ଧାନ୍ତ ଦର୍ପଣର ୪ର୍ଥ ପ୍ରକାଶ ଶେଷ ହେଲା । ଏହି ପ୍ରକାଶରେ ପଦକ ଗୁଡ଼ିଏ ଦିଆଯାଇଛି ଏବଂ ସଂସ୍କାର ଗୁଡ଼ିକର କଥା ମଧ୍ୟ ଯଥାଯଥ ଭାବେ ଲେଖାଯାଇଅଛି ।

## ସ୍ଫୁଟାଧିକାରଃ

## ପଞ୍ଚମଃ ପ୍ରକାଶଃ

### ଗ୍ରହସ୍ଫୁଟୀକରଣମ୍

---

**ଅଥୋଚ୍ୟତେ ମହୀନସ୍ଥଦୃଷ୍ଟିତୁଲ୍ୟା ସ୍ଫୁଟୀ-କୃତଃ**
**ଗ୍ରହାଣାଂ ଫଳଦାତୃତ୍ୱଂ ନ ଘଟେତ ଯୟାବିନା ।୧।**

ପୃଥିବୀରୁ (ପୃଥିବୀ କେନ୍ଦ୍ର ବା ପୃଷ୍ଠର କୌଣସି ଦେଶ) ଦେଖିଲେ ଯେତିକ ରାଶ୍ୟାଦିରେ ଗ୍ରହ ଦେଖାଯିବ, ଗଣନାରେ ସେତିକ ରାଶ୍ୟାଦି ଆଣି ପାରିଲେ ଗ୍ରହସ୍ଫୁଟ ହୋଇଯାଏ । ଏପରି ଗ୍ରହସ୍ଫୁଟ କରି ନ ପାରିଲେ ଗ୍ରହର ପ୍ରଭାବ ବା ଫଳ କହିହୁଏ ନାହିଁ । ଏଣୁ ଗ୍ରହ କପରି ସ୍ଫୁଟ କରାଯିବ ତାହା ବର୍ତ୍ତମାନ କୁହାଯାଉଛି ।

**ପ୍ରବହାଖ୍ୟୋ ମରୁଦ୍‌ଭୂମିଂ ପରିକ୍ରାମତି ସର୍ବଦା**
**ପଶ୍ଚିମାଭିମୁଖସ୍ତେନାକୃଷ୍ଟୋ କେ୍ୟାତର୍ଗଣୋଽନ୍ୱହମ୍ ।୨।**

**ଯାତି ତତ୍ପଶ୍ଚିମାମାଶାମୁଦିତା ସାହ୍ନିକୀ ଗତିଃ**
**ତାଂ ଭିତ୍ତ୍ୱା ଯଦ୍‌ଗ୍ରହଗଣଃ ସ୍ୱ ସ୍ୱ ଶକ୍ତ୍ୟନୁସାରତଃ ।୩।**

**ସ୍ତୋକେନ ଯାତି ପୂର୍ବାଶାଂ ସୋକ୍ତା ସ୍ୱାଭାବିକୀ ଗତିଃ**
**ଶୀଘ୍ରମନ୍ଦବଶାଦ୍‌ଭିନ୍ନା ଦୃଶ୍ୟନ୍ତେ ସ୍ଫୁଟ-ଖେଚରାଃ ।୪।**

ସୂର୍ଯ୍ୟସିଦ୍ଧାନ୍ତେ—

**ଅଦୃଶ୍ୟରୂପାଃ କାଳସ୍ୟ ମୂର୍ତ୍ତୟୋ ଭଗଣାଶ୍ରିତାଃ**
**ଶୀଘ୍ରମନ୍ଦୋଚ୍ଚପାତାଖ୍ୟା ଗ୍ରହାଣାଂ ଗତିହେତବଃ ।ଇତି ।୫।**

ପ୍ରବହ ନାମକ ଗୋଟିଏ ପବନ ପୂର୍ବରୁ ପଶ୍ଚିମ ଆଡ଼କୁ ସାରା ପୃଥିବୀ ପରିକ୍ରମା କରିବାରେ ଲାଗିଛି ଏବଂ ଏହି ପ୍ରବହର ଗତି ଜୋରରେ ସମସ୍ତ ଜ୍ୟୋତିର୍ମଣ୍ଡଳ (ଗ୍ରହ ନକ୍ଷତ୍ର ଆଦି) ଦିନକୁ ଥରେ ଏହି ପୃଥିବୀକୁ ସେହିପରି ପୂର୍ବରୁ ପଶ୍ଚିମକୁ ପରିକ୍ରମା କରୁଅଛନ୍ତି । ଏହି ଲୀଳା ପ୍ରତ୍ୟହ ଲାଗିରହିଛି । ଗ୍ରହମାନଙ୍କର ଏହି ଗତିକୁ ଆହ୍ନିକଗତି (ଦୈନିକ ଗତି) କୁହାଯାଏ । ମାତ୍ର ଗ୍ରହଗୁଡ଼ିକ ପ୍ରବହ ଜୋରରେ ଦିନକୁ ଥରେ ପୃଥିବୀକୁ ପରିକ୍ରମଣ କରୁଥିଲେ ମଧ୍ୟ ନିଜ ନିଜ ଶକ୍ତିରେ ପଶ୍ଚିମରୁ ପୂର୍ବ ଆଡ଼କୁ ପୁଣି ଗତି କରିଥାନ୍ତି । ଏହାକୁ ହିଁ ଗ୍ରହାଦିର ସ୍ୱାଭାବିକ ଗତି କୁହାଯାଇଥାଏ । ଏହା ଅବଶ୍ୟ ପୂର୍ବ ଗତିପରି ବିରାଟ ନୁହେଁ, ଅଳ୍ପ । ମାତ୍ର ଏହି ଗତି ଯେ ପୂର୍ବ ଗତିକୁ ଦବାଇ ଦେଇ ହୋଇଥାଏ, ଏଥିରେ ସନ୍ଦେହ ନାହିଁ ।

ଶୀଘ୍ରୋଚ୍ଚ ଓ ମନ୍ଦୋଚ୍ଚବଶତଃ ସ୍ଫୁଟଗ୍ରହମାନେ ଭିନ୍ନ ଭିନ୍ନ ଦେଖାଯାନ୍ତି । କାରଣ ପ୍ରତ୍ୟେକର ଶୀଘ୍ରୋଚ୍ଚ ଓ ମନ୍ଦୋଚ୍ଚ କେବେହେଲେ ସମାନ ନୁହେଁ । ସୂର୍ଯ୍ୟ ସିଦ୍ଧାନ୍ତକହନ୍ତି— ଶୀଘ୍ରୋଚ୍ଚ, ମନ୍ଦୋଚ୍ଚ ଓ ପାତ ବୃତ୍ତ ବା ଭଗଣକୁ ହିଁ ଆଶ୍ରୟ କରି ରହି ଅଛନ୍ତି । ଏମାନେ ଗ୍ରହଗତିର କାରଣ । ଏମାନଙ୍କର ଗ୍ରହ ବା ନକ୍ଷତ୍ର ମାନଙ୍କପରି କୌଣସି ରୂପ ନାହିଁ, ତଥାପି ଏମାନେ ଯେ ସମୟର ଅନ୍ୟ ଗୋଟିଏ ରକମର ରୂପ, ଏହା ମାନିବାକୁ ହେବ ।

ତତ୍ରମଧ୍ୟମ-ମାର୍ତ୍ତଣ୍ଡଃ ପରିତୋମଣ୍ଡଳଂ ଭୁବଃ
ଭ୍ରମନ୍ ତାରାଖେଚରାଣାଂ କକ୍ଷାମଧ୍ୟସ୍ଥ ଉଚ୍ୟତେ ।୭।

ତଂ ଭ୍ରମନ୍ତୋ ମହୀଜାଦ୍ୟାସ୍ତ୍ରୟସ୍ତେନ ଭୁବଂ ପୁନଃ
ପରିକ୍ରାମନ୍ତି ଯତସ୍ମାଦ୍ ସ ପ୍ରୋକ୍ତଃ ସର୍ବକର୍ଷକଃ ।୭।

ମଧ୍ୟମ ସୂର୍ଯ୍ୟ ପୃଥିବୀ ପରିଭ୍ରମଣ କରନ୍ତି । ଏହି ମଧ୍ୟମ ସୂର୍ଯ୍ୟ ନକ୍ଷତ୍ର ଓ ଗ୍ରହ ମାନଙ୍କର କକ୍ଷା କେନ୍ଦ୍ରରେ ବରାବର ରହି ଅଛନ୍ତି । ପୁଣି ମଙ୍ଗଳ ଆଦି ଗ୍ରହମାନେ ଏହି ମଧ୍ୟମ ସୂର୍ଯ୍ୟଙ୍କ ସହିତ ପୃଥିବୀ ପରିକ୍ରମା କରନ୍ତି । ଏଥି ଯୋଗୁଁ ମଧ୍ୟମ ସୂର୍ଯ୍ୟଙ୍କୁ ସମସ୍ତଙ୍କ ଆକର୍ଷକ କୁହାଯାଇଥାଏ ।

ତଥାପି କୁଜଜୀବାର୍କି-ଭୁକ୍ତିଭ୍ୟୋ ମହତୀଯତଃ
ତଦ୍‌ଗତଃ ସତତସ୍ତେଷାଂ ଶୀଘ୍ରତୁଙ୍ଗୋ ନିଗଦ୍ୟତେ ।୮।

ବୁଧ ଶୁକ୍ର ସ୍ୱଭୁକ୍ତିଭ୍ୟାମଲ୍ପତ୍ୱାଦ୍ ଭାସ୍ୱତୋ ଗତେଃ
ତୟୋର୍ମଧ୍ୟ-ଗ୍ରହୋ ଭାନୁଃ ସ୍ୱୟଂ ତୌ ଶୀଘ୍ର ସଂଜ୍ଞକୌ ।୯।

ମଙ୍ଗଳ, ବୃହସ୍ପତି ଓ ଶନିର ଦୈନିକଗତି ଠାରୁ ସୂର୍ଯ୍ୟର ଦୈନିକ ଗତି ବେଶି ହୋଇଥିବାରୁ ମଧ୍ୟମ ରବି ମଙ୍ଗଳ, ଗୁରୁ ଓ ଶନିର ଶୀଘ୍ରୋଚ୍ଚ ଭାବରେ କଥିତ ହୋଇ ଅଛନ୍ତି ।

ବୁଧ ଓ ଶୁକ୍ରର ଗତିଠାରୁ ସୂର୍ଯ୍ୟର ଗତି ଅଳ୍ପ ହେତୁ ଏବ୍ବ ଦୁହିଙ୍କର ମଧ୍ୟ ଗ୍ରହ ସୂର୍ଯ୍ୟ ଅଟନ୍ତି । ବୁଧ, ଶୁକ୍ରର ଶୀଘ୍ରୋଚ୍ଚ ହିଁ ବାସ୍ତବ ବୁଧ ଶୁକ୍ର ବୋଲି କଳ୍ପିତ ।

**ବୁଧଶୁକ୍ରାବନୀପୁତ୍ରବୃହସ୍ପତି ଶନୈଶ୍ଚରାଃ**
**ସୂର୍ଯାତ୍ କ୍ରମେଣ ଦୂରସ୍ଥାଃ ସ୍ୱସ୍ୱକକ୍ଷାସୁ ଯାନ୍ତି ଯତ୍ ।୧୦।**

**ବଧ୍ନା ତତ୍ କ୍ରମେଣୈବ ଯଚାଲ୍ପଗତୟଃ କୃତାଃ**
**ସୁତରାମେବ ଦୃଶ୍ୟନ୍ତେ ତଥା ଭୂଗୋଳବାସିଭିଃ ।୧୧।**

ସୂର୍ଯ୍ୟଠାରୁ କ୍ରମରେ ଦୂରଠୁ ଦୂରରେ ବୁଧ, ଶୁକ୍ର, ମଙ୍ଗଳ, ଗୁରୁ ଓ ଶନି ଅଛନ୍ତି । ଏମାନେ ସୂର୍ଯ୍ୟକେନ୍ଦ୍ରିକ କକ୍ଷାରେ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରିବାରେ ଲାଗିଅଛନ୍ତି । ଏଣୁ କ୍ରମରେ ଏମାନଙ୍କ ଗତି ମଧ୍ୟ କମ୍ କମ୍ ହୋଇ ପଡୁଛି । ଅର୍ଥାତ୍ ଯଥାକ୍ରମେ ଏମାନେ ଦୂରକୁ ଦୂରକୁ ରହିଥିବାରୁ କ୍ରମରେ କମ୍ କମ୍ ଗତି କଲା ପରି ଦେଖା ମଧ୍ୟ ଯାଉଅଛନ୍ତି ।

**ଚନ୍ଦ୍ରସ୍ୟ ତ୍ୱର୍କବଦ୍ଭ୍ରାନ୍ତ-ଭୂର୍ମେର୍ନିକଟବର୍ତ୍ତିନଃ**
**ଯୋଜନାତ୍ମଗତନ୍ୟୂନା ମହତୀ ଲପ୍ତିକାତ୍ମିକା ।୧୨।**

ଚନ୍ଦ୍ର, ସୂର୍ଯ୍ୟ ପରି ପୃଥିବୀକୁ ତାର ଅତି ନିକଟରେ ରହି ପ୍ରଦକ୍ଷିଣ କରୁଅଛି । ଫଳରେ ଚନ୍ଦ୍ରର ଯୋଜନାତ୍ମକ ଗତି ସମସ୍ତଙ୍କଠାରୁ ନ୍ୟୂନ ହେଲେ ମଧ୍ୟ ତାର କଳାତ୍ମକ ଗତି ସର୍ବାଧିକ ଅଟେ ।

**ଭୂଗୋଳାପେକ୍ଷୟା ଭାନୋର୍ଜ୍ଞଶୁକ୍ରୌ ନିକଟୌ ଯତଃ**
**ତସ୍ମାଚ୍ଚକ୍ରାନ୍ତବଦ୍ଦୃଶ୍ୟୌ ଚକ୍ରାର୍ଦ୍ଧେଽପି ସହାମୁନା ।୧୩।**

ବୁଧ ଓ ଶୁକ୍ର ପୃଥିବୀ ଅପେକ୍ଷା ସୂର୍ଯ୍ୟର ଅତି ନିକଟବର୍ତ୍ତୀ । ତେଣୁ ଏ ଦୁହେଁ ଦ୍ୱାଦଶରାଶି ଶେଷରେ ସୂର୍ଯ୍ୟ ସହିତ ଯେପରି ଦେଖାଯାନ୍ତି, ଛ ରାଶି ଅନ୍ତରରେ ମଧ୍ୟ ଠିକ୍ ସେହିପରି ଦେଖାଯାନ୍ତି । (ଅର୍ଥାତ୍ ଏ ସଂଯୋଗ ରବି ସଂଯୋଗ ପରି ପ୍ରଣାମୂମାନ ହୋଇଥାଏ । ବାସ୍ତବରେ ବୁଧ ଓ ଶୁକ୍ରର କକ୍ଷ, ପୃଥିବୀ ଓ ସୂର୍ଯ୍ୟ ମଧ୍ୟରେ ଥିବାରୁ ଏ ଦୁହିଁଙ୍କର ଏ ପରିସ୍ଥିତି ହୋଇଥାଏ । ଏ ଦୁହେଁ ପୂର୍ବରେ ତଥା ପଶ୍ଚିମରେ ଉଦିତ ଓ ଅସ୍ତ ହୋଇଥାନ୍ତି ) ।

**କୁଜେଜ୍ୟଶନୟୋ ର୍ୟସ୍ମାଦ୍ଦୂରଗାସ୍ତଦପେକ୍ଷୟା**
**ଚକ୍ରେ ସସୂର୍ଯ୍ୟା ଦୃଶ୍ୟନ୍ତେ ଚକ୍ରାର୍ଦ୍ଧେ ଭିନ୍ନଦର୍ଶ୍ୟତଃ ।୧୪।**

ମଙ୍ଗଳ, ବୃହସ୍ପତି ଓ ଶନି ସୂର୍ଯ୍ୟଠାରୁ ପୃଥିବୀ ଯେତେ ଦୂରରେ ଅଛି, ତାଠାରୁ ବେଶି ଦୂରରେ ଥିବାରୁ ସୂର୍ଯ୍ୟ ସହିତ ଯୋଗବେଳେ ସେଥିରେ (ସୂର୍ଯ୍ୟରେ) ମିଶିଗଲା ପରି ଦେଖାଯାନ୍ତି । ଏତେବେଳେ ସୂର୍ଯ୍ୟ ସହିତ ଏମାନଙ୍କର ଅନ୍ତର ୧୨ ରାଶି । ପୁଣି ଏମାନେ ସୂର୍ଯ୍ୟଠାରୁ ଛଅ ରାଶି (୬) ଉପାନ୍ତରେ ଥିବାବେଳେ ସୂର୍ଯ୍ୟର ଠିକ୍ ବିପରୀତ ଦିଗରେ ଦେଖାଯାନ୍ତି । ଏହାହିଁ ଉଭୟଙ୍କ ମଧ୍ୟରେ (ବୃତ୍ତାର୍ଦ୍ଧ) ଉପାନ୍ତ ।

**ସୂର୍ଯ୍ୟାଭିନ୍ନଦଶେଃ ସ୍ଥାନଂ ଭୂତାରାଗ୍ରହୟୋର୍ଯଦା**
**ରୁକ୍ତୀଗତସ୍ତଦା ତାରାଗ୍ରହସ୍ୟ ପ୍ରେକ୍ଷ୍ୟତେ ଭୁବ ।୧୫।**

**ଯଦୈକଦଗବସ୍ଥାନଂ ତୟୋର୍ଭବତ ସୂର୍ଯ୍ୟତଃ**
**ବକ୍ରାଗତସ୍ତଦା ତସ୍ୟ ମଧ୍ୟାଶୁଗତଭେଦଜା ।୧୬।**

ସୂର୍ଯ୍ୟର ଗୋଟିଏ ଦିଗରେ ପୃଥିବୀ ଓ ତାର ଠିକ୍ ବିପରୀତ ଦିଗରେ ତାରା ଗ୍ରହ ମଧ୍ୟରୁ (ମଙ୍ଗଳ, ବୁଧ, ଶୁକ୍ର, ବୃହସ୍ପତି ଓ ଶନି) ଯଦି କେହି ଥାନ୍ତି ତାହାହେଲେ ସେହି ତାରା ଗ୍ରହର ସରଳ ଗତି (ମାର୍ଗୀ ଗତି) ଦେଖା ପଡ଼େ । ମାତ୍ର ଯଦି ପୃଥିବୀ ଓ ତାରାଗ୍ରହ (କେହି) ସୂର୍ଯ୍ୟଠାରୁ ଗୋଟିଏ ଦିଗରେ ରହନ୍ତି, ତାହାହେଲେ ଉକ୍ତ ତାରା ଗ୍ରହର ବକ୍ର ଗତି ହୁଏ । (ପୃଥିବୀ ପୃଷ୍ଠରୁ ଏପରି ଗତି ହେବା ଦେଖା ପଡ଼େ । ବାସ୍ତବରେ ସେମାନେ ବିପରୀତ ଦିଗକୁ ଗତି କରନ୍ତି ନାହିଁ, ଏପରି ଦେଖାପଡ଼ନ୍ତି ମାତ୍ର । )

ବକ୍ରଗତି ଶୀଘ୍ର ଓ ମଧ୍ୟମ ଗତିର ଅନ୍ତରରୁ ଉତ୍ପନ୍ନ ହୋଇଥାଏ ।

**ମନ୍ଦାପକର୍ଷଣଂ ହତ୍ୱା ସଦାର୍କାଦ୍ ସମଦୂରଗାଃ**
**ଯାନ୍ତି ତାରାଗ୍ରହାଃ ପ୍ରାଚୀଂ ଭଚକ୍ରମନୁଲକ୍ଷତେ ।୧୭।**

ତାରା ଗ୍ରହମାନଙ୍କର ମନ୍ଦୋଚ୍ଚ ଓ ଶୀଘ୍ରୋଚ୍ଚ ଏପରି ଦୁଇ ଆକର୍ଷକ ଅଛନ୍ତି । ସୂର୍ଯ୍ୟ ସେମାନଙ୍କର ଶୀଘ୍ରୋଚ୍ଚ, ଏବଂ ପ୍ରତ୍ୟେକ ତାରାଗ୍ରହର କକ୍ଷା କେନ୍ଦ୍ରରେ ବରାବର ରହିଅଛି । ଫଳରେ ଗ୍ରହ ସବୁବେଳେ ସୂର୍ଯ୍ୟଠାରୁ ସମଦୂରରେ ରହିବାକୁ ବାଧ୍ୟ । ଏହି ପାଞ୍ଚ ତାରାଗ୍ରହ ମନ୍ଦୋଚ୍ଚ ଆକର୍ଷଣ ସତ୍ତ୍ୱେ ଶୀଘ୍ରୋଚ୍ଚ ସୂର୍ଯ୍ୟଦ୍ୱାରା ଆକୃଷ୍ଟ ହୋଇ ଶେଷୋକ୍ତ କ୍ରମରେ ପୂର୍ବ କକ୍ଷା-ବୃତ୍ତରେ ଗତି କରୁଅଛନ୍ତି, କିନ୍ତୁ ସେମାନେ ଭଚକ୍ରରେ ହିଁ ଗତି କଲାପରି ଦେଖାଯାନ୍ତି ।

**ଭଚକ୍ରମଧ୍ୟଗା ଭୂମିଃ ଭୌମାଦେର୍ମଧ୍ୟଗୋ ରବିଃ**
**ଭାର୍କସଙ୍ଗତସୂତ୍ରଂ ତଦ୍ ସମଂ ଚକ୍ରାର୍ଦ୍ଧଚକ୍ରୟୋଃ ।୧୮।**

**ରାଶିଦ୍ୱୟାନ୍ତେ ଭୂସୂତ୍ରାଭାର୍କଗଂ ବକ୍ରିତଂ ଯତଃ**
**ତଦ୍ଭେଦଃ ଶୀଘ୍ରପରଧେରୋଜଯୁଗ୍ମପଦାନ୍ତୟୋଃ ।୧୯।**

ଭଚକ୍ରର ମଧ୍ୟଦେଶରେ (କେନ୍ଦ୍ରରେ) ପୃଥିବୀ ଏବଂ ମଙ୍ଗଳ ଆଦି ଗ୍ରହକକ୍ଷାର ମଧ୍ୟ ବା କେନ୍ଦ୍ରରେ ରବି ରହିଅଛନ୍ତି । ଫଳରେ ଭଚକ୍ରର ଶେଷ ଓ ମଧ୍ୟ ସ୍ଥଳରେ ଥିବା ନକ୍ଷତ୍ର ଓ ସୂର୍ଯ୍ୟଗତ ସୂତ୍ର ଅଭିନ୍ନ ହୋଇଥାଏ ।

୬ଷ୍ଠ ଓ ୧୨ଶ ରାଶି ଶେଷରେ ୩ ରାଶି ପରେ ଅର୍ଥାତ୍ ବିଷମ ପଦାନ୍ତରେ ପୃଥିବୀ ଓ ଭଚକ୍ରର ବିଷମ ପଦାନ୍ତଗତ ସୂତ୍ରଠାରୁ ସୂର୍ଯ୍ୟ ଓ ସେହି ବିଷମ ପଦାନ୍ତଗତ ସୂତ୍ର ଭିନ୍ନ ହେଉଥିବାରୁ (ଏହି ଉଭୟ ରେଖା କୋଣ ଉତ୍ପାଦନ କରୁଥିବାରୁ) ଯୁଗ୍ମ ଓ ଓଜ ପଦାନ୍ତରେ ଶୀଘ୍ର ପରିଧିର ପାର୍ଥକ୍ୟ ଆସିଯାଏ । ଏଣୁ ଓଜ ଓ ଯୁଗ୍ମ ପଦାନ୍ତରେ ଭିନ୍ନ ଭିନ୍ନ ଶୀଘ୍ର ପରିଧି ହୁଏ ।

**କ୍ଷ୍ମାର୍କାନ୍ତରବ୍ୟୟନ୍ନାନାତ୍ ଖରସାଗ୍ନି ଗୁଣାଧିକଃ**
**ଭାନାଂ ପନ୍ଥା ହି ଦୂରସ୍ଥସ୍ତସ୍ମିନ୍ନର୍କପଥା ହୃତେ ।୨୦।**

**ଫଳଂ ହରଣମେତେନ ଭଗଣାଂଶା ବିଭାଜିତାଃ**
**ଲବ୍ଧୋଂଽଶଃ ଶୀଘ୍ର ପରଧେରୋଜଯୁଗ୍ମାନ୍ତରଂ ମତଃ ।୨୧।**

ପୃଥିବୀ ଓ ସୂର୍ଯ୍ୟର ଅନ୍ତର ଯୋଜନାଦି ଯାହା ପୃଥିବୀ ଓ ଭ କକ୍ଷାର ଅନ୍ତର ଯୋଜନାଦି ତାହାର ୩୬୦° ଗୁଣ । ଭ କକ୍ଷାକୁ ସୂର୍ଯ୍ୟ କକ୍ଷାରେ ହରିଲେ ହାର ହୁଏ । ଏହି ହାରରେ ୩୬୦°କୁ ହରିଲେ ଯେଉଁ ଏକ ଅଂଶ ଫଳ ହେବ ତାହାହିଁ ଓଜ ଓ ଯୁଗ୍ମାନ୍ତରେ ଶୀଘ୍ର ମାଗ୍ରେଚ୍ଚ ପରିଧିର ପ୍ରଭେଦରୂପେ କଥିତ ହୋଇଅଛି ।

**କକ୍ଷାକଥନ କାଲେଽହଂ ବକ୍ଷ୍ୟେ ପରିଧିସମ୍ଭବମ୍**
**ସାକ୍ଷାଦନୁଭବାଦବାପେକ୍ଷା ଶାସ୍ତ୍ରେ ନ ବର୍ତ୍ତତେ ।୨୨।**

କକ୍ଷା କହିବାବେଳେ ମାଗ୍ରେଚ୍ଚ ପରିଧି ବିଷୟରେ କହିବି । ଏହାକୁ ପ୍ରତ୍ୟକ୍ଷରେ ଦେଖିହେବ । ଏହି ଶାସ୍ତ୍ରରେ ପ୍ରତ୍ୟକ୍ଷ ଓ ଉପଲବ୍ଧି ତୁଳନାରେ ଅନ୍ୟ (ଅନୁମାନ ଆଦି) ପ୍ରମାଣର ଆବଶ୍ୟକତା ଅତି କମ୍ ।

**ରବ୍ୟାଦେର୍ମନ୍ଦତୁଙ୍ଗାଖ୍ୟା ଦେବା ଯେ ସନ୍ତି ଦୂରଗାଃ**
**ତଦ୍‌ବାତରଶ୍ମିଭିର୍ବଦ୍ଧା ଗ୍ରହାସ୍ତୈରପକର୍ଷିତାଃ ।୨୩।**

ସୂର୍ଯ୍ୟ ଓ ଅନ୍ୟ ଗ୍ରହମାନଙ୍କର ମନ୍ଦୋଚ୍ଚରୂପକ ଦେବତା ବହୁ ଦୂରରେ ରହି ପବନ-ରୂପକ ରଜ୍ଜୁରେ ଗ୍ରହମାନଙ୍କୁ ଟାଣୁଥିବାରୁ ଗ୍ରହମାନେ ସେହି ସେହି (ତାଙ୍କର) ଉଚ୍ଚ ଆଡ଼କୁ ବରାବର ଟାଣି ହେଉଅଛନ୍ତି । ଗ୍ରହମାନେ ମନ୍ଦୋଚ୍ଚର ପାଖରେ ବା ଦୂରରେ ଥାନ୍ତୁ, ସେଥିରେ କିଛି ଯାଏଆସେ ନାହିଁ । ମନ୍ଦୋଚ୍ଚ ସେମାନଙ୍କୁ ବାରମ୍ବାର ଟାଣୁଛନ୍ତି, ଏଥିରେ ସନ୍ଦେହ ନାହିଁ ।

**ସ୍ୱଦଙ୍କ୍ମୁଖଂ ତଥାସନ୍ନାଃ କୃଷ୍ୟନ୍ତେ ବହୁଦୂରଗାଃ**
**ସ୍ୱଳ୍ପଂ ତାନ୍ ପ୍ରବହଃ ସ୍ୱାଂଶୈଃ ପାଶରୂପୈଃ ପ୍ରଭଞ୍ଜନୈଃ ।୨୪।**

ନିଜ ନିଜର ତୁଙ୍ଗାଭିମୁଖୀ ଗ୍ରହମାନଙ୍କୁ ମଧ୍ୟ ପ୍ରବହବାୟୁ ନିଜର ଅଂଶରୂପକ ପାଶରୂପୀ ପ୍ରଭଞ୍ଜନ (ବାୟୁ) ଦ୍ୱାରା ସବୁବେଳେ ଆକାଶରେ ବୁଲାଉଅଛି । (ପ୍ରବହ ବାୟୁଦ୍ୱାରା ଗ୍ରହମାନେ ପୂର୍ବରୁ ପଶ୍ଚିମକୁ ବରାବର ବୁଲିବାରେ ଲାଗିଅଛନ୍ତି) ସେମାନଙ୍କର ସ୍ୱାଭାବିକ ଗତି ଅବଶ୍ୟ ପଶ୍ଚିମରୁ ପୂର୍ବକୁ ।

ସୂର୍ଯ୍ୟସିଦ୍ଧାନ୍ତେ—

**ସ୍ୱତୁଙ୍ଗାଭିମୁଖାନେବ ପ୍ରେରୟତ୍ୟନିଶଂ ଦିବ**
**ପୂର୍ବାପରାପକୃଷ୍ଟାସ୍ତେ ଗତଂ ଯାନ୍ତି ପୃଥଗ୍‌ବିଧାମ୍ ।୨୫।**

**ଗ୍ରହାତ୍ ପ୍ରାଗ୍‌ଭଗଣାର୍ଦ୍ଧସ୍ଥଃ ପ୍ରାଙ୍କ୍ମୁଖଂ କର୍ଷତି ଗ୍ରହମ୍**
**ଉଚ୍ଚସଂଜ୍ଞୋଽପରାର୍ଦ୍ଧସ୍ଥସ୍ତଦ୍‌ବତ୍ପଶ୍ଚାନ୍ମୁଖଂ ଗ୍ରହମ୍ ।୨୬।**

**ଦୃଷ୍ଟୋଚ୍ଚାପକୃଷ୍ଟା ଭଗଣୈଃ ପ୍ରାଙ୍କ୍ମୁଖ ଯାନ୍ତି ଯଦ୍‌ଗ୍ରହାଃ**
**ତଦେଷୁ ଧନମିତ୍ୟୁକ୍ତ-ମୃଣଂ ପଶ୍ଚାନ୍ମୁଖେଷୁ ଚ ।ଇତି ।୨୭।**

ଉଚ୍ଚଦ୍ୱାରା ପୂର୍ବ ଓ ପଶ୍ଚିମରୁ ଟଣାହୋଇ ଗ୍ରହମାନେ ଭିନ୍ନ ଭିନ୍ନ ଗତିର ଉତ୍ପାଦକ ହୋଇପଡ଼ନ୍ତି । ଗ୍ରହଠାରୁ ପୂର୍ବ ବୃତ୍ତାର୍ଦ୍ଧ (୧୮୦°) ରେ ଉଚ୍ଚ ଥିଲେ ଉଚ୍ଚ ଗ୍ରହକୁ ପୂର୍ବ ଆଡ଼କୁ ଟାଣେ । ଉଚ୍ଚ ଗ୍ରହଠାରୁ ତାର ବୃତ୍ତାର୍ଦ୍ଧ ଭିତରେ ଥିଲେ ଗ୍ରହକୁ ପଶ୍ଚିମ ଆଡ଼କୁ ଟାଣିଥାଏ । (ଗ୍ରହଠାରୁ ୧୮୦° କ୍ଷେତ୍ର ବନ୍ଦୁହିଁ ପରମାନ୍ତର । ଏହିଠାରୁ କମ୍‌ହୋଇ ଉଚ୍ଚ ଗ୍ରହର ଯେଉଁ ଆଡ଼କୁ ଥାଏ, ସେ ଆଡ଼କୁ ତାକୁ ଟାଣିଥାଏ । ) ଏଥିରୁ ଏହା ବୁଝାଯାଏ ଯେ ଗ୍ରହ ଉଚ୍ଚଦ୍ୱାରା ଆକୃଷ୍ଟ ହୋଇ ଯେତେବେଳେ ପୂର୍ବକୁ ଯାଏ (ଅର୍ଥାତ୍ ନିଜ ମଧ୍ୟମ ଗତିରୁ ବଢ଼ିଯାଏ) ତେତେବେଳେ ଉଚ୍ଚାକର୍ଷଣଫଳ ଗ୍ରହରେ ମିଶାଇବାକୁ ହୁଏ । ପୁଣି ଯେତେବେଳେ ସେ (ଗ୍ରହ) ପଛ ଆଡ଼କୁ ଭିଡ଼ା ହୁଏ (ଅର୍ଥାତ୍ ମଧ୍ୟମ ଗତିରୁ କମିଯାଏ) ତେତେବେଳେ ଉଚ୍ଚାକର୍ଷଣ ଫଳ ଗ୍ରହରୁ ବାଦ ଦେବାକୁ ହୁଏ ।

**ମନ୍ଦସ୍ଫୁଟ-ଗ୍ରହାନ୍ ପାତାଶ୍ଚନ୍ଦ୍ରାଦୀନ୍ ଯାମ୍ୟସୌମ୍ୟୟୋଃ**
**ବିକ୍ଷିପନ୍ତ୍ୟେଷ ବିକ୍ଷେପଃ ସ୍ୱକ୍ରାନ୍ତ୍ୟନ୍ତାକ୍ଳାତ୍ମକଃ ।୨୮।**

କ୍ରାନ୍ତିବୃତ୍ତ ଓ ସ୍ୱ ସ୍ୱ ଗ୍ରହ କକ୍ଷାର ଦୁଇଟି ମିଳନ ବିନ୍ଦୁକୁ ପାତ କୁହାଯାଏ । ଏଣୁ ଏହି ପାତ ପ୍ରତିଗ୍ରହର ଭିନ୍ନ । ଏହି ପାତହିଁ ଶରର କାରଣ । ଶରର, ନାମାନ୍ତର ବିକ୍ଷେପ । ଗ୍ରହ ବିମ୍ବ କ୍ରାନ୍ତି ବୃତ୍ତରେ ନ ଥାଏ । ଏଣୁ ଏହି ବିମ୍ବ କେନ୍ଦ୍ରରୁ କ୍ରାନ୍ତି ବୃତ୍ତ ଉପରେ ହେବା ଲମ୍ବ ମୂଳବିନ୍ଦୁ ହିଁ ଗ୍ରହର ସ୍ଥାନ । ଏହି ବିନ୍ଦୁ, ବିମ୍ବ ଅନୁସାରେ ଚଳନଶୀଳ । ଏଣୁ ଗ୍ରହର ଗ୍ରହଣାଦି ସ୍ପଷ୍ଟତା ଏହି ସ୍ଥାନର ଗତି ଉପରେ ହିଁ ନିର୍ଭର କରେ । ଏହି ଶରର ପରମତା ଅଛି । ପାତ ନିକଟରେ ଏହାର ଅଭାବ ମଧ୍ୟ ହୁଏ । କ୍ରାନ୍ତି ବୃତ୍ତଠାରୁ ଗ୍ରହ କକ୍ଷା ଦକ୍ଷିଣ ଓ ଉତ୍ତର ଉଭୟ ପଟେ ରହିଥିବାରୁ ଶର ମଧ୍ୟ ଦକ୍ଷିଣ ଓ ଉତ୍ତର ଉଭୟ ହୋଇଥାଏ । ଏଣୁ ପାତ ଦକ୍ଷିଣ ଓ ଉତ୍ତର ଶରର ସ୍ରଷ୍ଟା ବୋଲି କଥିତ । ପାତକୁ କଳାରେ ମପା ଯାଇଥାଏ—ଏବଂ ଏହା ପାତବିନ୍ଦୁରୁ ଉତ୍ପନ୍ନ ହୋଇଥାଏ । ଏଥି ନିମନ୍ତେ କୁହାଯାଇଛି ଯେ ପାତଗୁଡ଼ିକ ଚନ୍ଦ୍ରାଦି ମନ୍ଦସ୍ଫୁଟ ଗ୍ରହମାନଙ୍କୁ ଉତ୍ତର ବା ଦକ୍ଷିଣକୁ ଭିଡ଼ି ନେବାରେ କାରଣ ହୋଇଥାନ୍ତି ।

ସୂର୍ଯ୍ୟସିଦ୍ଧାନ୍ତେ—

**ଉତ୍ତରାଭିମୁଖଂପାତୋ ବିକ୍ଷିପତ୍ୟପରାର୍ଦ୍ଧଗଃ**
**ଗ୍ରହଂପ୍ରାର୍ଭଗଣାର୍ଦ୍ଧସ୍ଥୋ ଯାମ୍ୟାୟାମପକର୍ଷତ ।ଇତ ।୨୯।**

ଗ୍ରହଠାରୁ ପୂର୍ବକୁ ୧୮୦° ମଧ୍ୟରେ ପାତ ଥିଲେ ଗ୍ରହକୁ କ୍ରାନ୍ତି ବୃତ୍ତଠାରୁ ଦକ୍ଷିଣକୁ ଭିଡ଼େ; କିନ୍ତୁ ଗ୍ରହଠାରୁ ପଶ୍ଚିମକୁ ୧୮୦° ମଧ୍ୟରେ ରହିଥିଲେ ତାକୁ ପାତ ଉତ୍ତର ଆଡ଼କୁ ଭିଡ଼େ । ପ୍ରଥମ ସ୍ଥିତିରେ ଦକ୍ଷିଣ ଶର ଓ ୨ୟ ସ୍ଥିତିରେ ଉତ୍ତର ଶର ଉତ୍ପନ୍ନ ହୁଏ ।

**ପୂର୍ବାପର-ଗତଃପାତୋ ବୁଧ ଭାର୍ଗବ ଶୀଘ୍ରୟୋଃ**
**ପୂର୍ବବଦ୍‌ବିକ୍ଷିପତ୍ୟେତୌ ନାସ୍ତେ ତଚ୍ଛକ୍ରରୁଷ୍ଟତୌ ।୩୦।**

ବୁଧ ଓ ଶୁକ୍ର ପକ୍ଷରେ ଭିନ୍ନ ସ୍ଥିତି ହୋଇଥାଏ । ବୁଧ ଓ ଶୁକ୍ରର ଭଗଣ ସୂର୍ଯ୍ୟ ଭଗଣ ସହ ସମାନ ହେତୁ ବୁଧ ଓ ଶୁକ୍ରର ଶୀଘ୍ରୋଚ୍ଚ ହିଁ ବାସ୍ତବ ବୁଧ ଶୁକ୍ର । ଏଣୁ ଶର ନେଲାବେଳେ ବୁଧ ଓ ଶୁକ୍ରର ଶୀଘ୍ରୋଚ୍ଚକୁ ନେଇ ହିଁ କାର୍ଯ୍ୟ କରାଯାଇଥାଏ । ଏ ଉଭୟଙ୍କର ପାତ ଉଭୟଙ୍କର ଶୀଘ୍ରୋଚ୍ଚଠାରୁ ପୂର୍ବକୁ ୧୮୦° ମଧ୍ୟରେ ଥିଲେ ଦକ୍ଷିଣ ଶର ଓ ଅନ୍ୟଥା ଉତ୍ତର ଶର ହୋଇଥାଏ । ସୂର୍ଯ୍ୟଙ୍କୁ ଟାଣିବା ନିମନ୍ତେ ପାତ ନାହିଁ । ସୂର୍ଯ୍ୟ ସ୍ୱୟଂ କ୍ରାନ୍ତିବୃତ୍ତରେ ହିଁ ଗତିଶୀଳ । ଏଣୁ ତାହାର ବିମ୍ବ ଓ ସ୍ଥାନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ।

**ସ୍ୱପାତସମଖେଟସ୍ୟ ପାତଚକ୍ରାର୍ଦ୍ଧଗସ୍ୟ ଚ**
**ବିକ୍ଷେପୋ ନୈଜପାଦାନ୍ତେ ପରମୋଽସୌଶରାଭିଧଃ ।୩୧।**

ଗ୍ରହ ଓ ପାତ ଏକତ୍ର ରହିଲେ ବା ଉଭୟଙ୍କର ଅନ୍ତର ଠିକ୍ ୧୮୦° ହେଲେ ଶର ହୋଇପାରେ ନାହିଁ । ଯୁଗ୍ମ ପାଦାନ୍ତରେ ଏହି ଅବସ୍ଥା । ପୁଣି ଓଜ ପାଦାନ୍ତରେ (ପାତଠାରୁ ୯୦° ଅଂଶଠାରେ) ଶର ପରମ ହୋଇଥାଏ । ଶରର ଅନ୍ୟନାମ ବିକ୍ଷେପ ମଧ୍ୟ । କାରଣ ଶର ଯୋଗୁଁ ହିଁ ଗ୍ରହ ଦକ୍ଷିଣ ଓ ଉତ୍ତର ଦିଗକୁ ବିକ୍ଷିପ୍ତ ହୋଇଥାଏ ।

**ମଧ୍ୟେଷୁଲିପ୍ତା ପରମା ବିଧୋର୍ନବ-ଖବହ୍ନୟଃ**
**କୁଜସ୍ୟ କୁହରାଙ୍କସ୍ୟ ନୃତଭୂପା ବୃହସ୍ପତେଃ ।୩୨।**

**ଗଜାଦ୍ରୟୋଽଥ ଶୁକ୍ରସ୍ୟ ବସୁବେଦକଶାକରାଃ**
**ଶନେର୍ଗୋମନବସ୍ତାସାଂ ପଶ୍ଚାଦ୍‌ବିକ୍ଷେ୍ୟ ସ୍ଫୁଟୀକୃତମ୍ ।୩୩।**

ଗ୍ରହମାନଙ୍କର ମଧ୍ୟମ ପରମ ଶରମାନ ଲିପ୍ତା ଆକାରରେ ତଳେ ଦିଆଯାଉଅଛି—

| | |
|---|---|
| ଚନ୍ଦ୍ର—୩୦୯ | ମଙ୍ଗଳ—୧୧୧ |
| ବୁଧ—୧୬୪ | ବୃହସ୍ପତି—୭୮ |
| ଶୁକ୍ର—୧୪୮ | ଶନି —୧୪୯ |

ସ୍ପଷ୍ଟ ଶର ଆଣିବାର ରୀତି ଆଗକୁ କୁହାଯାଉଅଛି ।

**ଭୂଲୋକଲୋଚନଗ୍ରାହ୍ୟା ଭୁକ୍ତିଃ ସ୍ଫୁଟଗତର୍ମତା**
**ସା ତ୍ରିଧା ପ୍ରାଗ୍‌ଗତଃ ପଶ୍ଚାଦ୍‌ଗତଃ ଶୂନ୍ୟେତଭେଦତଃ ।୩୪।**

**ପ୍ରାଗ୍‌ଗତଃ ପଞ୍ଚଧା ପଶ୍ଚାଦ୍‌ଗତର୍ଦ୍ୱେଧମାଗତା**
**ତୃତୀୟୈକବିଧେତ୍ୟେବ ଭୌମାଦଗତରଷ୍ଟଧା ।୩୫।**

ପୃଥିବୀ-ପୃଷ୍ଠବାସୀ ଲୋକଙ୍କୁ ଗ୍ରହର ଯେଉଁ ଗତି ଦେଖାପଡ଼େ ତାହାହିଁ ସ୍ଫୁଟ ଗତି । ଏହି ସ୍ଫୁଟ ଗତି ୩ ପ୍ରକାର—ସାମନାକୁ ଯାଉଥିବା ଗତି, ପଛକୁ ଯାଉଥିବା ଗତି ଓ ଶୂନ୍ୟ ଗତି ଅର୍ଥାତ୍ ଗତିର ଅଭାବ (ଯେତେବେଳେ ଗ୍ରହ ସ୍ଥିର ହୋଇପାଏ) । ସାମନା ଗତି ପୁଣି ପାଞ୍ଚ ପ୍ରକାର, ପଛ ଗତି ଦୁଇ ପ୍ରକାର ଓ ଶୂନ୍ୟ ଗତି ଗୋଟିଏ ରକମର ହିଁ ହୋଇଥାଏ । ଏ ସବୁକୁ ଏକାଠି ଯୋଡ଼ିଲେ ଗ୍ରହଗତି ଆଠ ପ୍ରକାରର ବୋଲି ଜଣାପଡ଼େ ।

ସୂର୍ଯ୍ୟ ସିଦ୍ଧାନ୍ତେ :—

**ବକ୍ରାନୁବକ୍ରା ବିକଳା ମନ୍ଦା ମନ୍ଦତରା ସମା**
**ତଥା ଶୀଘ୍ରତରା ଶୀଘ୍ରା କଥିତେୈଷା ସ୍ୱନାମଭିଃ । ଇତ ।୩୭।**

ସୂର୍ଯ୍ୟ ସିଦ୍ଧାନ୍ତରେ ଏହି ଆଠ ପ୍ରକାର ଗତିର ନାମ ଦିଆଯାଇଛି ଏବଂ ସେଗୁଡ଼ିକ ଏହିପରି—ବକ୍ର, ଅନୁବକ୍ର, ବିକଳ, ମନ୍ଦ, ମନ୍ଦତର, ସମ, ଶୀଘ୍ର ଓ ଅତି ଶୀଘ୍ର ।

**ପଶ୍ଚାଦ୍‌ଗତଃ କ୍ଷୀୟମାଣା ବକ୍ରେତଗଦତା ବୁଧୈଃ**
**ବର୍ଦ୍ଧମାନାନୁବକ୍ରା ସା ତଦନ୍ତାଦେର୍ଯାଃ କ୍ରମେଣ ଯା ।୩୭।**

**ସ୍ତମ୍ଭିତା ସୈବ ବିକଳା କଳାଶୂନ୍ୟତ୍ୱହେତୁତଃ**
**ବକ୍ରତ୍ୱାପ୍ତିବିଯୋଗାଭ୍ୟାଂ ପ୍ରାକ୍ ପଶ୍ଚାଦନ୍ୱହଂ ଗତଃ ।୩୮।**

**କ୍ଷୀୟମାଣା ବର୍ଦ୍ଧମାନା ସ୍ୱଲ୍ପାମଧ୍ୟଗତେଃ କ୍ରମାତ୍**
**ଉକ୍ତା ମନ୍ଦତରା ମନ୍ଦା ମଧ୍ୟତୁଲ୍ୟା ଗତଃ ସମା ।୩୯।**

**ମଧ୍ୟାଧିକା ବର୍ଦ୍ଧମାନା କ୍ଷୀୟମାଣା ପୁରୋଗତଃ**
**ଭବେଚ୍ଛୀଘ୍ରତରା ଶୀଘ୍ରା କ୍ରମତଶ୍ଚକ୍ରସନ୍ଧିଧୌ ।୪୦।**

ଗତି ପଛକୁ ହୋଇ ଅତି କମ୍ ହେଉଥିଲେ ତାହାକୁ ବକ୍ର କୁହାଯାଏ । ଗତି ପଛକୁ ହୋଇ ବେଶୀ ହେଉଥିଲେ ତାହାକୁ ଅନୁବକ୍ର କହନ୍ତି । ଗତି ବକ୍ର ହେବା ପୂର୍ବରୁ ଏବଂ ବକ୍ର ହେବା ପରେ—ଋଜୁ ଆରମ୍ଭ ପୂର୍ବରୁ (ଠିକ୍ ପୂର୍ବରୁ) ଶୂନ୍ୟ ହୋଇଥାଏ । ବକ୍ର ଗତିର ଆରମ୍ଭ ଓ ଅବସାନ ବେଳେ ଯଥାକ୍ରମେ ବକ୍ରଗତି (ପଛ ଗତି) ଓ ଅଗ୍ରଗତି (ଋଜୁଗତି) ହୁଏ । ଗତି ସାମନାକୁ ହେଉଥିବା ବେଳେ ଯଦି ଗତି ମଧ୍ୟଗତିରୁ କମ୍ ଜଣାଯିବ ଏବଂ ତାହା ପୁଣି ଦିନକୁ ଦିନ କମିଯାଉଥିବ, ତାହାହେଲେ ତାକୁ ମନ୍ଦତର ଗତି କୁହାଯିବ । ମାତ୍ର ଗତି ଯଦି ଦିନକୁ ଦିନ ବଢ଼ୁଥିବ ଅଥଚ ମଧ୍ୟମ ଗତିରୁ କମ୍ ହେଉଥିବ, ତାହାହେଲେ ତାକୁ ମନ୍ଦ ଗତି କୁହାଯିବ । ଯେତେବେଳେ ଗତି ମଧ୍ୟଗତି ସମାନ ହିଁ ହେବ ସେତେବେଳେ ତାକୁ ସମଗତି ବୋଲି କହିବାକୁ ହେବ ।

ଗତି ମଧ୍ୟମ ଗତିରୁ ବେଶିଥାଇ ଦିନକୁ ଦିନ ବଢ଼ୁଥିଲେ ତାହାକୁ ଶୀଘ୍ରତର ଗତି କହିବାକୁ ହେବ । ମାତ୍ର ମଧ୍ୟ ଗତିରୁ ବେଶି ଥାଇ ଦିନକୁ ଦିନ କମୁଥିଲେ ତାକୁ ଶୀଘ୍ର ଗତି କୁହାଯାଇଥାଏ । ଶୀଘ୍ର ଓ ଶୀଘ୍ରତର ଗତି ଦ୍ୱାଦଶ ରାଶି ନିକଟରେ ହୋଇଥାଏ ।

**ରବୀନ୍ଦୋର୍ମନ୍ଦଭୁଙ୍ଗୋତ୍‌ଥା ମନ୍ଦା ମନ୍ଦତରା ସମା**
**ଶୀଘ୍ରା ଶୀଘ୍ରତରା ଭୁକ୍ତିଃ ପୂର୍ବବପୃଷ୍ଠଧେନ୍ତ ସା ।୪୧।**

ରବି ଓ ଚନ୍ଦ୍ରର ମନ୍ଦୋଚ୍ଚଜନିତ ମନ୍ଦ, ମନ୍ଦତର, ସମ, ଶୀଘ୍ର ଓ ଶୀଘ୍ରତର ଗତି ହୁଏ । ଏହି ୫ ପ୍ରକାର ଗତି କଥା ଆଗରୁ କୁହାଯାଇଅଛି ।

ମନ୍ଦୋଚ୍ଚ ଆକର୍ଷଣରୁ ପ୍ରଥମ ୫ଟି ଗତି ହୋଇଥାଏ । ଶୀଘ୍ରୋଚ୍ଚ ଆକର୍ଷଣରୁ ୩ଟି ଗତି ହୋଇଥାଏ । ରବି ଓ ଚନ୍ଦ୍ରର ମନ୍ଦୋଚ୍ଚ ମାତ୍ର ଅଛି । ଏ ଦୁହିଁଙ୍କର ଶୀଘ୍ରୋଚ୍ଚ ନ ଥିବାରୁ ବକ୍ରଗତି ହୁଏ ନାହିଁ ଏବଂ ସେହି ହେତୁରୁ ଅତିରିକ୍ତ ୩ ପ୍ରକାର ଗତି ଏମାନଙ୍କର ନାହିଁ ।

ସୂର୍ଯ୍ୟସିଦ୍ଧାନ୍ତେ—

**ତତ୍ତଦ୍‌ଗତିବଶାନ୍ନିତ୍ୟଂ ଯଥାଦୃକ୍ ତୁଲ୍ୟତାଂଗ୍ରହାଃ**
**ପ୍ରୟାନ୍ତି ତତ୍‌ପ୍ରବକ୍ଷ୍ୟାମି ସ୍ଫୁଟୀକରଣମାଦରାତ୍ । ଇତି ।୪୨।**

ମୁଁ ବର୍ତ୍ତମାନ ମଧ୍ୟଗ୍ରହ ଉପରେ ଗଣିତକ୍ରିୟା ଯୋଗେ ସ୍ପଷ୍ଟ ହୋଇପାରେ ତାହା କହୁଅଛି । ଏହି ସ୍ପଷ୍ଟ ଗ୍ରହ ସେହିପରି ଗତି ଯୋଗୁଁ ସ୍ଫୁଟ ହେବା ପରେ ଆଖି ଆଗରେ ପରିଷ୍କାର ରୂପେ ଦେଖା ପଡ଼ିବେ ।

**ଆଗ୍ରୂର୍ଯ୍ୟତ୍ୱଂ ଯୟା ଯାତି ଜଗତି ଜ୍ଞାତୟାଜନଃ**
**ସତାଂହିତାୟ ତାଂ ବଚ୍ମି ଜ୍ୟାଧନୁଷ୍କର୍ମପଦ୍ଧତିମ୍ ।୪୩।**

ଜ୍ୟା ଓ ଗୃପ ଗଣନା କରିବାର ରୀତି ବର୍ତ୍ତମାନ କୁହାଯାଉଛି । ଏହି ପ୍ରଣାଳୀ ଜାଣିବା ଯୋଗେ ଲୋକେ ଆଗୃର୍ଯ୍ୟ ପଦବୀ ପ୍ରାପ୍ତ ହୁଅନ୍ତି । ଆଉ ମଧ୍ୟ ଏହି ଜ୍ୟା ଓ ଗୃପ ଗଣନା ଯୋଗେ ସଜ୍ଜନ ମାନଙ୍କର ଅନେକ ହିତ ସାଧିତ ହୋଇଥାଏ ।

**ଓତପ୍ରୋତୈର୍ଯଥା ବସ୍ତ୍ରଂ ତନ୍ତୁଭିଃ ସନ୍ତତଂ ତଥା**
**ଗୋଳଃ କ୍ରମୋତ୍କ୍ରମଜ୍ୟାଭିଃ ସନ୍ଦୃବ୍‌ଧୋଽୟଂ ସମନ୍ତତଃ ।୪୪।**

**ଜ୍ୟାର୍ଦ୍ଧାଗ୍ରେ ଖେଚରା ମଧ୍ୟସୂତ୍ରାତ୍ତିର୍ଯ୍ୟକ୍ ସ୍ଥିତା ଯତଃ**
**ଜ୍ୟାର୍ଦ୍ଧୈଃ ସକଳକର୍ମ୍ମେଷାଂ ଜ୍ୟାର୍ଦ୍ଧଂ ଜ୍ୟୈତ୍ୟେବ ସମ୍ମତମ୍ ।୪୫।**

ଲୁଗା ଯେପରି ସୂତାରେ ଓତପ୍ରୋତ ଭାବରେ ଜଡ଼ିତ ହୋଇଥାଏ, ସେହିପରି ଗୋଲ ମଧ୍ୟ କ୍ରମଜ୍ୟା ଓ ଉତ୍କ୍ରମଜ୍ୟା ଯୋଗେ ବନ୍ଧା ବନ୍ଧ ହୋଇଅଛି । ଗୋଲ (ପୃଥିବୀ ଗୋଲ ) ର

କେନ୍ଦ୍ରରୁ ଯାଇଥିବା ସୂତ୍ରର ( କର୍ଣ୍ଣର ) ଅଗ୍ରରେ ଅଥଚ ସେଠାରୁ ଯେଉଁ ଅର୍ଦ୍ଧଜ୍ୟା ଲମ୍ବିତ ହୁଏ ତାର ଅଗ୍ରରେ ଗ୍ରହ ରହୁ ଥିବାରୁ ଅର୍ଦ୍ଧଜ୍ୟା ଦ୍ୱାରା ଏହି ଗ୍ରହମାନଙ୍କର ସମସ୍ତ କର୍ମ ହୁଏ । ଏଣୁ ଅର୍ଦ୍ଧଜ୍ୟାକୁହିଁ ଜ୍ୟା ବୋଲ କୁହାଯାଇଥାଏ ।

**ଭଚକ୍ର ଚକ୍ରବାଳାର୍ଦ୍ଧଦ୍ୱୟଂ ଗୃପକଭଂ ଯତଃ**
**ତଦ୍‌ବ୍ୟାସ-ରେଖ ମଧ୍ୟସ୍ଥା ଜୀବାରୂପା ତଦୁଚ୍ୟତେ ।୪୬।**

ଭଚକ୍ରରୂପକ ଚକ୍ରବାଳର ଦୁଇଅଧା ଦୁଇଟିଗୃପପର ଦେଖାଯାନ୍ତି । ଏ ଦୁଇ ବୃତ୍ତାର୍ଦ୍ଧକାଙ୍କ କେନ୍ଦ୍ରଗତ ରେଖାହିଁ ବୃତ୍ତର ବ୍ୟାସ ରେଖା । ତାହା ପୁଣି ଏଠାରେ ଉଭୟ ବୃତ୍ତାର୍ଦ୍ଧର ପୂର୍ଣ୍ଣଜ୍ୟା ରୂପରେ ରହିଅଛି । (ଧନୁର ଜ୍ୟାପରି ଉଭୟ ବୃତ୍ତାର୍ଦ୍ଧଗତ ରେଖା ଦେଖା ଯାଇଥାଏ । )

**ବୟସ୍ତ୍ରୟୋ ଗୃହା ଗ୍ରାହ୍ୟା ଭୁଜକୋଟିତୟା ଯତଃ**
**ତତୋବ୍ୟାସଦଳଂ ତ୍ରିଜ୍ୟା ପରମା ବୃତ୍ତମଧ୍ୟତଃ ।୪୭।**

ତିନ ରାଶିର (୯୦°) ପରିମାଣ ପରମଭୁଜ ଓ ପରମକୋଟିର ହୋଇଥାଏ । ଏହି ତିନ ରାଶିର ଜ୍ୟା ବ୍ୟାସାର୍ଦ୍ଧ ସହିତ ସମାନ ଏବଂ ଏହି ଜ୍ୟା (ପୂର୍ଣ୍ଣଜ୍ୟା) କେନ୍ଦ୍ର ଦେଇ ଯାଇଥାଏ । ଏଣୁ ଜ୍ୟା ବା କୋଟି ଜ୍ୟା ବଢ଼ି ବଢ଼ି ବ୍ୟାସାର୍ଦ୍ଧ ସଙ୍ଗେ ସମାନ ହୋଇଯାନ୍ତି ।

**ପରଧେଃ ଷଣ୍ଣବତ୍ୟଂଶଃ ସମୋଯସ୍ମାତ୍ତତସ୍ତତଃ**
**ରାଶିଲପ୍ତା-ଷ୍ଟମୋଭାଗଃ ପ୍ରଥମଂ ଜ୍ୟାର୍ଦ୍ଧମୁଚ୍ୟତେ ।୪୮।**

ଯେ କୌଣସି ଗୋଟିଏ ବୃତ୍ତ ପରିଧିର ୯୬ ଅଂଶ ସରଳରେଖା ପରି ଦେଖାଯାଏ— ତାହା ଆଦୌ ବକ୍ର ଥିବାପରି ଦେଖାଯାଏ ନାହିଁ । ବୃତ୍ତର ୯୬ ଅଂଶ ଗୋଟିଏ ରାଶିର (୩୦°) ୮ ଅଂଶ ସଙ୍ଗେ ସମାନ । ଅର୍ଥାତ୍ $\frac{୩୦}{୮}$ = ୩° । ୪୫' । ଏହାକୁ କଳା କଲେ ହେବ ୨୨୫' । ଏହି କଳାର ବକ୍ରତ୍ୱ ଦେଖା ପଡ଼ୁନ ଥିବାରୁ ୨୨୫' ର ଗୃପ ଓ ଜ୍ୟା ସମାନ ଅର୍ଥାତ୍ ସେହି ୨୨୫' ଧରା ଯାଇଅଛି । ବୃତ୍ତଟି ଯେତେ ବଡ଼ ହେବ ଏହି ୨୨୫'ର ଋଜୁତା ସେତେ ବେଶୀ ଦେଖାଯିବ । ଏଣୁ ୨୨୫'ର ଜ୍ୟା ଓ ଗୃପକୁ ଅଭିନ୍ନ ଧରଯାଇଅଛି । ଫଳରେ ୨୨୫' ଜ୍ୟା ମଧ୍ୟ ୨୨୫' । ୯୦° ବା ବୃତ୍ତର ଗୋଟିଏ ପାଦରେ ୨୨୫'ର ୨୪ ଗୋଟି ଖଣ୍ଡ ରହୁଥିବାରୁ ପ୍ରଥମ ୨୨୫'କୁ ପ୍ରଥମ ଜ୍ୟାର୍ଦ୍ଧ କୁହାଯାଏ ।

**ଆଦ୍ୟଖଣ୍ଡାନ୍ତରଞ୍ଜୈ-ତଦ୍‌ଭକ୍ତୋ ଜ୍ୟାପିଣ୍ଡ ଆଦ୍ୟମଃ**
**ଲବ୍ଧୋନମାଦ୍ୟଂଦ୍ୱୈତୀୟଖଣ୍ଡାନ୍ତରମିଦଂ ଭବେତ୍ ।୪୯।**

ତଦ୍‌ଯୁକ୍ତଂ ପ୍ରଥମଜ୍ୟାର୍ଦ୍ଧଂ ଦ୍ୱିତୀୟଜ୍ୟାର୍ଦ୍ଧମୁଚ୍ୟତେ
ପୁନସ୍ତେନ ତଦ୍‌ଭକ୍ତଂ ଶେଷଃ ସ୍ୱାର୍ଦ୍ଧାଧିକୋ ଯଦ ।୫୦।

ତଲ୍ଲୋପାଦେକଯୁଗ୍‌ଲବ୍ଧଂ କାର୍ଯ୍ୟମର୍ଦ୍ଧେନ ଏବ ଲୁକ୍
ଦ୍ୱିତୀୟଖଣ୍ଡବବରଂ ତଲ୍ଲବ୍‌ଧୋନଂ ତୃତୀୟକମ୍ ।୫୧।

ତଦ୍‌ଯୁକ୍ ଦ୍ୱିତୀୟଜୀବାର୍ଦ୍ଧଂ ତୃତୀୟଜ୍ୟାର୍ଦ୍ଧ ପିଣ୍ଡକଃ
ଆଦେ୍ୟନୈବଂ କ୍ରମାତ୍ପିଣ୍ଡାନ୍ ଭକ୍ତ୍ୱାଲବ୍‌ଧୋନ-ତୈର୍ଯୁତୈଃ ।୫୨।

ଚତୁର୍ବିଂଶତ ଖଣ୍ଡୈଃ ସ୍ୟୁଃ କ୍ରମଜ୍ୟା ପିଣ୍ଡଲପ୍ତକା
କ୍ରାନ୍ତଜ୍ୟା-ପିଣ୍ଡତଃ ଷଷ୍ଠାତ୍ ସପ୍ତମାଦ୍ ଦ୍ୱାଦଶାଦପି ।୫୩।

ଏକବିଂଶାତ୍ ପଞ୍ଚଦଶାଦ୍ ବିଂଶାତ୍ସପ୍ତଦଶାତ୍ତଥା
ହାରଶେଷାଙ୍କ ଲୁକ୍‌ପ୍ରୋକ୍ତୋ ନାରଦାୟ ସ୍ୱୟମ୍ଭୁବା ।୫୪।

୪୯ ଠାରୁ ୫୪ ଶ୍ଳୋକ ଭିତରେ ୨୨୫'ର ଏକାଦି ଗୁଣ କ୍ରମେ ୨୪ ଗୁଣ ପର୍ଯ୍ୟନ୍ତ (ଅର୍ଥାତ୍ ୯୦°) ଚାପର ଜ୍ୟାସାଧନ ପ୍ରଣାଳୀ ଦିଆଯାଇଅଛି । ଏଣୁ ଏହାର ସଂଖ୍ୟା ୨୪ଟି ମାତ୍ର । ବୃତ୍ତର ୪ଟି ୯୦° ଆ ପାଦ ଅଛି । ପ୍ରତିପାଦରେ ୨୪ଟି ଲେଖାଏ ଜ୍ୟା ଏହିପରି ସାଧିତ ହୋଇ ରହିଛି । ଏଗୁଡ଼ିକ ସାହାଯ୍ୟରେ ବୃତ୍ତସ୍ଥ ଯେ କୌଣସି ଅଂଶର ବା କଳାର ଜ୍ୟା ସାଧିତ ହୋଇପାରିବ ।

୦' ର ଜ୍ୟା ୦ ଏବଂ ୨୨୫' ର ଜ୍ୟା ୨୨୫' । ଏଣୁ ପ୍ରଥମ ଜ୍ୟା ୨୨୫' ଓ ପ୍ରଥମ ଅନ୍ତର (୨୨୫'—୦=୨୨୫') ମଧ୍ୟ ୨୨୫' । ୨୨୫'×୨ ର ଜ୍ୟା ଏବଂ ୨୨୫" ର ଜ୍ୟାର ଅନ୍ତରକୁ ୨ୟ ଅନ୍ତର କୁହାଯାଏ । ଏହିପରି ୨୨୫'×୩ର ଜ୍ୟାରୁ ୨୨୫×୨ର ଜ୍ୟା ବାଦ ଦେଲେ ୩ୟ ଅନ୍ତର ହୁଏ ।

ପ୍ରଥମ ଜ୍ୟାକୁ ପ୍ରଥମ ଜ୍ୟାରେ ହର । ଫଳକୁ ପ୍ରଥମ ଅନ୍ତରରୁ ଫେଡ଼ । ଫଳ ହେବ ୨ୟ ଅନ୍ତର । ଏହାକୁ ପ୍ରଥମ ଜ୍ୟାରେ ମିଶାଇଲେ ଦ୍ୱିତୀୟ ଜ୍ୟା ହେବ । ୨ୟ ଜ୍ୟା ଆସିବା ପରେ ତାକୁ ୧ମ ଜ୍ୟାରେ ହର । ଫଳକୁ ୨ୟ ଅନ୍ତରରୁ ଫେଡ଼ । ଫଳ ହେବ ୩ୟ ଅନ୍ତର । ଏହି ୩ୟ ଅନ୍ତରକୁ ୨ୟ ଜ୍ୟାରେ ମିଶାଇଲେ ୩ୟ ଜ୍ୟା ହେବ । ୩ୟ ଜ୍ୟାକୁ ପୁଣି ୧ମ ଜ୍ୟାରେ ହର ଫଳକୁ ୩ୟ ଅନ୍ତରରୁ ଫେଡ଼ ଅବଶେଷକୁ ୪ର୍ଥ ଅନ୍ତର ମନେକର ତାକୁ ୩ୟ ଜ୍ୟାରେ ମିଶାଇଲେ ୪ର୍ଥ ଜ୍ୟା ହେବ । ଏହିପରି କରିବା ଦ୍ୱାରା ୨୨୫' ର ୨୫ ଗୁଣ ଚାପର ଅର୍ଥାତ୍ ୨୪ ଗୋଟି ଚାପର ଜ୍ୟା ଆସିଯିବ । ୨୨୫' ଓ ତାର ପ୍ରତି ୧, ୨, ୩ ଆଦି ଗୁଣ ଗୋଟିଏ ଗୋଟିଏ କୋଣର ପରିମାଣ ମାତ୍ର ।

ଏଠାରେ ଯେଉଁ ଥର ହରିବା କଥା କୁହାଯାଇଛି ପ୍ରତି ସମୟରେ ମନେ ରଖିବାକୁ ହେବ ଯେ ଅର୍ଦ୍ଧାଧିକେ ରୂପଂ ଗ୍ରାହ୍ୟଂ ଅର୍ଥାତ୍ ଶେଷ ହରର ଅଧା ବା ତହିଁରୁ ଅଧିକ ହେଲେ ଲବ୍ଧିରେ ୧ ମିଶାଇ ଗ୍ରହଣ କରିବା ଉଚିତ, ଅନ୍ୟଥା ଅର୍ଥାତ୍ ଶେଷ, ହରର ଅଧାରୁ କମିଗଲେ ତାକୁ ଛାଡ଼ି ଦେବାକୁ ହେବ । ଏହିପରି ଭାବରେ ୨୪ ଗୋଟି ଜ୍ୟା ସାଧିତ ହୋଇପାରିବ । ଏହିପରି ଜ୍ୟା ସାଧନ କଲାବେଳେ ଜଣା ପଡ଼ୁଛି ଯେ ୬ଷ୍ଠ ୭ମ, ୮ମ, ୧୨ଶ, ୧୫ଶ, ୧୭ଶ, ୨୦ଶ ଓ ୨୧ଶ ଜ୍ୟା ପରିମାଣ ଆଣିବା ବେଳେ ଯେଉଁ ସବୁ ହରଣ କରାଯାଇଛି, ସେଗୁଡ଼ିକରେ ଶେଷ ଦୃଷ୍ଟିରୁ ଲବ୍ଧିରେ ୧, ୧ ମିଶିବା ଉଚିତ ଥିଲା; (ଏକାଧିକଲବ୍ଧି) ମାତ୍ର ତାହା କରନ ଯାଇ ଏକାବେଳକେ ସେପରି ଛାଡ଼ି ଦିଆଯାଇଛି । ଏହାର କାରଣ ସ୍ୱରୂପ କୁହାଯାଇଛି ଯେ ବ୍ରହ୍ମା ନାରଦଙ୍କୁ ଏହି ସବୁ ଯାଗାରେ ନିୟମର ବ୍ୟତିକ୍ରମ କରିବାକୁ ଆଦେଶ ଦେଇ ଅଛନ୍ତି ।

ସୂର୍ଯ୍ୟସିଦ୍ଧାନ୍ତେ :—

ତତ୍ତ୍ୱାଶ୍ୱିନୋଽଙ୍କାବ୍ଧିକୃତା ରୂପ-ଭୂମିଧରର୍ତ୍ତବଃ ।
ଖାଙ୍କାଷ୍ଟୌ ପଞ୍ଚଶୂନ୍ୟେଶା ବାଣରୂପଗୁଣେନ୍ଦବଃ ।୫୫।

ଶୂନ୍ୟଲୋଚନ-ପଞ୍ଚୈକା ଚ୍ଛିଦ୍ରରୂପମୁନୀନ୍ଦବଃ ।
ବିୟଚ୍ଚନ୍ଦ୍ରାତଧୃତୟୋ ଗୁଣରନ୍ଧ୍ରାମ୍ବରାଶ୍ୱିନଃ ।୫୬।

ମୁନିଷଡ୍-ଯମନେତ୍ରାଣି ଚନ୍ଦ୍ରାଗ୍ନିକୃତଦସ୍ରକାଃ ।
ପଞ୍ଚାଷ୍ଟବିଷୟାକ୍ଷୀଣି କୁଞ୍ଜରାଶ୍ୱିନଗାଶ୍ୱିନଃ ।୫୭।

ରନ୍ଧ୍ରପଞ୍ଚାଷ୍ଟକ-ଯମା ବସ୍ୱଦ୍ର୍ୟଙ୍କ ଯମାସ୍ତଥା ।
କୃତାଷ୍ଟଶୂନ୍ୟ-ଜ୍ୱଳନା ନଗାଦ୍ରିଶଶିବହ୍ନୟଃ ।୫୮।

ଷଟ୍‌ପଞ୍ଚଲୋଚନଗୁଣାଶ୍ଚନ୍ଦ୍ରନେତ୍ରାଗ୍ନି-ବହ୍ନୟଃ ।
ଯମାଦ୍ରି-ବହ୍ନି ଜ୍ୱଳନା ରନ୍ଧ୍ରଶୂନ୍ୟାର୍ଣ୍ଣବାଗ୍ନୟଃ ।୫୯।

ପ୍ରଥମ ବିଭାଗରୁ ଆଦି ୨୪ଟି ଜ୍ୟାର ପରିମାଣ ଓ ସେମାନଙ୍କ ଅନ୍ତରର ପରିମାଣ ପରେ ଦିଆଯାଉଛି ।

ରୂପାଗ୍ନିସାଗରଗୁଣା ବସ୍ୱଗ୍ନିକୃତ ବହ୍ନୟଃ । ଇତି ।
ଉତ୍କ୍ରମଜ୍ୟା ଅଥ ଆଚ୍ୟଚନ୍ତ ବ୍ୟୋକ୍ରାଂଶତଖଣ୍ଡଜାଃ ।୬୦।

ତତ୍ପ୍ରାଙ୍‌ଖ୍ୟାତ୍-କ୍ରମେଣ ବ୍ୟାସାର୍ଦ୍ଧାଦେକଦ୍ୱିତ୍ର୍ୟାଦଖଣ୍ଡକଃ ।
ଜାୟନ୍ତେ ଗୃପଶିଞ୍ଜିନ୍ୟୋରନ୍ତଃ ଶରବଦୂର୍ଦ୍ଧ୍ୱତଃ ।୭୧।

ବର୍ତ୍ତମାନ ୨୩ଟି ଉତ୍କ୍ରମ ଜ୍ୟାର ପରିମାଣ କୁହାଯାଉଅଛି । ପ୍ରଥମ, ଦ୍ୱିତୀୟ ଆଦି ଜ୍ୟାକୁ ବ୍ୟାସାର୍ଦ୍ଧରୁ ଅନ୍ତର କଲେ ସେହି ଆଦ୍ୟ ଉତ୍କ୍ରମ ଜ୍ୟା ହେବ । ଅର୍ଥାତ୍ ବ୍ୟାସାର୍ଦ୍ଧରୁ ୧ମ ଜ୍ୟା ଅନ୍ତର କଲେ ୨୩ଶ ଉତ୍କ୍ରମ ଜ୍ୟା ହେବ । ବ୍ୟାସାର୍ଦ୍ଧରୁ ୨ୟ ଜ୍ୟା ଅନ୍ତର କଲେ ୨୨ଶ ଉତ୍କ୍ରମ ଜ୍ୟା ହେବ—ଇତ୍ୟାଦି । ଧନୁରେ ଶର ପରି ଉତ୍କ୍ରମ ଜ୍ୟା ଗୁଡ଼ିକ ଜ୍ୟା ଓ ଗୃପ ମଧ୍ୟରେ ଊର୍ଦ୍ଧ୍ୱମୁଖୀ ହୋଇ ରହିଥାନ୍ତି ।

ସୂର୍ଯ୍ୟସିଦ୍ଧାନ୍ତେ :—

ମୁନୟୋରନ୍ଧ୍ର ଯମଳା ରସତର୍କା ମୁନୀଶ୍ୱରାଃ ।
ଦ୍ୱ୍ୟଷ୍ଟୈକା ରୂପଷଡ୍‌ଦସ୍ରାଃ ସାଗରାର୍ଥହୁତାଶନାଃ ।୭୨।

ଖର୍ତ୍ତୁବେଦାନବାଦ୍ର୍ୟର୍ଥା ଦନ୍ତ୍ରନଗାସ୍ତ୍ର୍ୟର୍ଥକୁଞ୍ଜରାଃ ।
ନଗାମ୍ବରବିୟଚ୍ଚନ୍ଦ୍ରା ରୂପଭୂଧରଶଙ୍କରାଃ ।୭୩।

ଶରାର୍ଣ୍ଣବହୁତାଶୈକା ଭୁଜଙ୍ଗାକ୍ଷିଶରେନ୍ଦବଃ ।
ନବରୂପମହୀଧ୍ରୈକା ଗଜୈକାଙ୍କ-ନିଶାକରାଃ ।୭୪।

ଗୁଣାଶ୍ୱିରୂପନେତ୍ରାଣି ପାବକାଗ୍ନିଗୁଣାଶ୍ୱିନଃ ।
ବସ୍ୱର୍ଣ୍ଣବାର୍ଥଯମଳାସ୍ତୁରଙ୍ଗର୍ତ୍ତୁନଗାଶ୍ୱିନଃ ।୭୫।

ନବାଷ୍ଟନବନେତ୍ରାଣି ପାବକୈକଯମାଗ୍ନୟଃ ।
ଅଷ୍ଟାଗ୍ନି ସାଗରଗୁଣା ଉତ୍କ୍ରମାଜ୍ୟାର୍ଦ୍ଧ-ପିଣ୍ଡକାଃ ।୭୬

| ଖଣ୍ଡସଂଖ୍ୟା | କ୍ରମ ଜ୍ୟା | ଅନ୍ତର | ଉତ୍କ୍ରମ ଜ୍ୟା | ଅନ୍ତର |
|---|---|---|---|---|
| ୦ | ୦ | ୨୨୫ | ୦ | ୭ |
| ୧ | ୨୨୫ | ୨୨୪ | ୭ | ୨୨ |
| ୨ | ୪୪୯ | ୨୨୨ | ୨୯ | ୩୭ |
| ୩ | ୬୭୧ | ୨୧୯ | ୬୬ | ୫୧ |
| ୪ | ୮୯୦ | ୨୧୫ | ୧୧୭ | ୬୫ |
| ୫ | ୧୧୦୫ | ୨୧୦ | ୧୮୨ | ୭୯ |

| ଖଣ୍ଡସଂଖ୍ୟା | କ୍ରମ ଜ୍ୟା | ଅନ୍ତର | ଉତ୍କ୍ରମଜ୍ୟା | ଅନ୍ତର |
|---|---|---|---|---|
| ୬ | ୧୩୧୫ | ୨୦୫ | ୨୬୧ | ୯୩ |
| ୭ | ୧୫୨୦ | ୧୯୯ | ୩୫୪ | ୧୦୬ |
| ୮ | ୧୭୧୯ | ୧୯୧ | ୪୬୦ | ୧୧୯ |
| ୯ | ୧୯୧୦ | ୧୮୩ | ୫୭୯ | ୧୩୧ |
| ୧୦ | ୨୦୯୩ | ୧୭୪ | ୭୧୦ | ୧୪୩ |
| ୧୧ | ୨୨୬୭ | ୧୬୪ | ୮୫୩ | ୧୫୪ |
| ୧୨ | ୨୪୩୧ | ୧୫୪ | ୧୦୦୭ | ୧୬୪ |
| ୧୩ | ୨୫୮୫ | ୧୪୩ | ୧୧୭୧ | ୧୭୪ |
| ୧୪ | ୨୭୨୮ | ୧୩୧ | ୧୩୪୫ | ୧୮୩ |
| ୧୫ | ୨୮୫୯ | ୧୧୯ | ୧୫୨୮ | ୧୯୧ |
| ୧୬ | ୨୯୭୮ | ୧୦୬ | ୧୭୧୯ | ୧୯୯ |
| ୧୭ | ୩୦୮୪ | ୯୩ | ୧୯୧୮ | ୨୦୫ |
| ୧୮ | ୩୧୭୭ | ୭୯ | ୨୧୨୩ | ୨୧୦ |
| ୧୯ | ୩୨୫୬ | ୬୫ | ୨୩୩୩ | ୨୧୫ |
| ୨୦ | ୩୩୨୧ | ୫୧ | ୨୫୪୮ | ୨୧୯ |
| ୨୧ | ୩୩୭୨ | ୩୭ | ୨୭୬୭ | ୨୨୨ |
| ୨୨ | ୩୪୦୯ | ୨୨ | ୨୯୮୯ | ୨୨୪ |
| ୨୩ | ୩୪୩୧ | ୭ | ୩୨୧୩ | ୨୨୫ |
| ୨୪ | ୩୪୩୮ | ୦ | ୩୪୩୮ | ୦ |

**ଗ୍ରହଂ ସଂଶୋଧ୍ୟ ମନ୍ଦୋଚ୍ଚାତ୍ତଥା ଶୀଘ୍ରାଦ୍ବିଶୋଧ୍ୟ ଚ ।**
**ଶେଷଂ କେନ୍ଦ୍ରଂ ପଦଂତସ୍ମାଦ୍ଭୁଜଜ୍ୟା କୋଟିରେବ ଚ ।୭୭।**

**ଗତାଦ୍ଭୁଜଜ୍ୟା ବିଷମେ ଗମ୍ୟାତ୍କୋଟିଃ ପଦେଭବେତ୍**
**ଯୁଗ୍ମେ ତୁ ଗମ୍ୟାଦ୍ ବାହୁଜ୍ୟା କୋଟିଜ୍ୟା ତୁ ଗତାଦ୍ଭବେତ୍ ।ଇତି।୭୮।**

ମଧ୍ୟ ଗ୍ରହର ରାଶ୍ୟାଦିକୁ ମନ୍ଦୋଚ୍ଚରୁ ବାଦ ଦେଲେ ମନ୍ଦ କେନ୍ଦ୍ର ଓ ଶୀଘ୍ରୋଚ୍ଚରୁ ବାଦ ଦେଲେ ଶୀଘ୍ର-କେନ୍ଦ୍ର ହୁଏ । ଏଥିରୁ ଭୁଜ ଜ୍ୟା ଓ କୋଟି ଜ୍ୟା ସାଧନ କରିବାକୁ ହେବ । ବିଷମ ପଦରେ ଗତ ଖଣ୍ଡରୁ ଭୁଜ ଜ୍ୟା ଓ ଗମ୍ୟ ଖଣ୍ଡରୁ କୋଟି ଜ୍ୟା ହୁଏ । ଯୁଗ୍ମ ପଦରେ ଏହାର ବିପରୀତ ଅର୍ଥାତ୍ ଗମ୍ୟ ଖଣ୍ଡରୁ ଭୁଜଜ୍ୟା ଓ ଗତ ଖଣ୍ଡରୁ କୋଟି ଜ୍ୟା ହୋଇଥାଏ ।

ତସ୍ମାଦ୍ରାଶି-ନବ୍ୟାଦର୍ଦ୍ଧାଗ୍‌ଭାଦ୍ୟଂ ବାହୁର୍ଯଥାସ୍ଥିତମ୍ ।
ତ୍ରଭେଭ୍ୟୋର୍ଦ୍ଧ୍ୱଂ ଶୋଧିତଂ ଷଡ଼ଭ୍ୟଃ ଷଡ଼ୂର୍ଦ୍ଧ୍ୱଂ ଷଡ୍‌ଭିରୁଜ୍ଝିତମ୍ ।୭୯।

ନବୋର୍ଦ୍ଧ୍ୱଂ ଚକ୍ରଶୁଦ୍ଧଂ ଦୋସ୍ତ୍ରିଭେଭ୍ୟଃ କୋଟିରୁଜ୍ଝିତଃ ।
ଶୋଧକାଚ୍ଛୋଧ୍ୟମଲ୍ପଞ୍ଚେଦ୍‌ଭାଦ୍ୟଂ ଭଗଣଯୁକ୍ତଦା ।୮୦।

ସୂର୍ଯ୍ୟସିଦ୍ଧାନ୍ତେ :—

ଲପ୍ତାସ୍ତତ୍ତ୍ୱଯମୈର୍ଭକ୍ତା ଲବ୍ଧଂ ଖଣ୍ଡଜ୍ୟକାଗତା ।
ଗତଗମ୍ୟାନ୍ତରାଭ୍ୟସ୍ତଃ ଶେଷସ୍ତତ୍ତ୍ୱାଶ୍ୱିଭିର୍ହୃତଃ ।୮୧।

ତଦବାପ୍ତ-ଫଳଂଯୋଜ୍ୟଂ ଜ୍ୟାପିଣ୍ଡେ ଗତସଙ୍ଜ୍ଞକେ ।
କ୍ରମଜ୍ୟାନାଂ ବଧିରଯ୍ୟମୁତ୍କ୍ରମଜ୍ୟାସ୍ୱପିସ୍ମୃତଃ ।ଇତି ।୮୨।

ଏଥିରୁ ବୁଝିବାକୁ ହେବ ଯେ କେନ୍ଦ୍ରର ରାଶ୍ୟାଦି ତିନ ରାଶି (୯୦°)ରୁ କମ୍ ହେଲେ ତାହାର ଭୁଜ ରୂପ ସେତିକ ଏବଂ ସେଥିରୁ ଯେ ଜ୍ୟା ହେବ ତାହାହିଁ କେନ୍ଦ୍ର ଭୁଜ ଜ୍ୟା । କେନ୍ଦ୍ର ତିନ ରାଶିରୁ ଅଧିକ ହେଲେ ତାକୁ ଛଅ ରାଶିରୁ କମ୍ କରଦେଇ, ଯାହା ରହିଲା ତାହାର ଭୁଜ ଜ୍ୟା କରିବାକୁ ହେବ । କେନ୍ଦ୍ର ଛଅ ରାଶିରୁ ଅଧିକ ହୋଇଥିଲେ, ସେଥିରୁ ଛଅ ରାଶି ବାଦ ଦେଇ ତାହାର ଭୁଜ ଜ୍ୟା କରିବାପାଇଁ ହେବ । କେନ୍ଦ୍ର ନଅ ରାଶିରୁ ବେଶି ହେଲେ ତାକୁ ୧୨ ରାଶିରୁ ଫେଡ଼ି ଅବଶିଷ୍ଟର ଜ୍ୟା ସାଧନ କରିବାକୁ ହେବ ।

ଭୁଜର ରାଶି ଓ ଅଂଶାଦିକୁ ତିନ ରାଶିରୁ (୯୦°) ବାଦ ଦେଲେ ବିୟୋଗ ଫଳ ତାହାର କୋଟି ହୋଇଥାଏ । ଯେଉଁ ଅଂଶାଦିକୁ ଫେଡ଼ା ଯିବ ତାହା ବିଯୋଜ୍ୟଠାରୁ ବେଶି ହୋଇଥିଲେ ସେଥିରେ ୧୨ ରାଶି ମିଶାଇ କାମ୍ କରଯିବ ।

ଯେଉଁ ରୂପର ଜ୍ୟା ଆଣିବାକୁ ହେବ ତାକୁ ପ୍ରଥମେ ୨୨୫ରେ ହରିଲେ ଲବ୍ଧି ସଂଖ୍ୟା ପ୍ରମାଣ ଜ୍ୟା ପିଣ୍ଡ (୨୪ ଜ୍ୟା ପିଣ୍ଡରୁ) ଆସିବା ଭାଗ ଶେଷକୁ ଗତ ଓ ଗମ୍ୟ ଦୁଇଟି ଜ୍ୟା ପିଣ୍ଡର ଅନ୍ତରରେ ଗୁଣି ୨୨୫ରେ ହରିଲେ ଯାହା ଫଳ ହେବ, ତାକୁ ଗତ ଜ୍ୟା ପିଣ୍ଡରେ ମିଶାଇଲେ ଅଭୀଷ୍ଟ ରୂପର ଜ୍ୟା ହେବ ।

ଉତ୍କ୍ରମ ଜ୍ୟା ସାଧନରେ ମଧ୍ୟ ଏହି ପ୍ରକ୍ରିୟା କରାଯିବ । (ଜ୍ୟା ଅନ୍ତର ଦିଆଯିବାର ଉପକାରିତା ଏଥିରୁ ବୁଝି ହେଉଥିବ ।)

ଜ୍ୟାପିଣ୍ଡତଃ ସ୍ୱାଭିମତାତ୍‌ପ୍ରୋକ୍ତେଜ୍ୟାନାଂ ଖଣ୍ଡମୌର୍ବିକାନ୍ ।
ଶେଷଂତତ୍ତ୍ୱାଶ୍ୱିଗୁଣିତଂ ହୃତ୍ୱା ତଦ୍‌ବିବରେଣ ଚ ।୮୩।

**ଫଳଂତତ୍ତ୍ୱାଶ୍ୱିଗୁଣୟ୍ୟା ଗତଜ୍ୟାଖଣ୍ଡ-ସଂଖ୍ୟୟା ।**
**ସଂଯୋଜୟେଦ୍ଧନୁରଦଂ ଭୁଜକୋଟ୍ୟୋଃ କଳାତ୍ମକମ୍ ।୨୪।**

ଅଭୀଷ୍ଟ ଜ୍ୟାରୁ ଚାପ ଆଣିବାକୁ ହେଲେ ସେଥିରୁ ଯେତେ ବଡ଼ ଜ୍ୟା ଅନ୍ତର ହୋଇପାରେ ଅନ୍ତର କର । ଶେଷ ଜ୍ୟା ଖଣ୍ଡକୁ ୨୨୫ରେ ଗୁଣି ପୂର୍ବ ଓ ପର ଦୁଇ ଜ୍ୟା ଖଣ୍ଡର ଅନ୍ତରରେ ହର । ଫଳ ଚାପକୁ ଯେତେ ବେଶି ଜ୍ୟା ଖଣ୍ଡ ଅନ୍ତର କରାଯାଇଛି ତାହାର ଚାପରେ (୨୨୫ × କ) ମିଶାଇଲେ ଫଳ ଅଭୀଷ୍ଟ ଜ୍ୟା ର ଚାପ ହେବ । ଏହି ଚାପ ଭୁଜ ଓ କୋଟିର ହୋଇପାରେ ଏବଂ ଏହା ସର୍ବଦା କଳାତ୍ମକ ଅଟେ ।

**ତ୍ରିଜ୍ୟାବର୍ଗାଦ୍ଭୁଜଜ୍ୟାୟା ବର୍ଗଂପ୍ରୋଜ୍‌ଝ୍ୟାବଶେଷତଃ ।**
**ପଦଂକୋଟିଜ୍ୟକା କୋଟେରେବଂ ଦୋର୍ଜ୍ୟାପି ସାଧ୍ୟତାମ୍ ।୨୫।**

ତ୍ରିଜ୍ୟାର ବର୍ଗରୁ ଭୁଜ ଜ୍ୟାର ବର୍ଗ ବାଦ ଦେଇ ତାର ମୂଳ ଆଣ । ତାହାହିଁ ଭୁଜ ଚାପର କୋଟି ଜ୍ୟା । ଏହିପରି କୋଟି ଜ୍ୟା ବର୍ଗକୁ ତ୍ରିଜ୍ୟା ବର୍ଗରୁ ବାଦ ଦେଇ ଅବଶିଷ୍ଟ ଫଳ ର ମୂଳ ନେଲେ ଭୁଜଜ୍ୟା ହେବ ।

**କୁଜଜ୍ଞଶନିମନ୍ଦାନାଂ ପ୍ରାକ୍-ପଶ୍ଚାଚ୍ଚଳନେକ୍ଷଣାତ୍ ।**
**ଜ୍ଞଶୀଘ୍ରସ୍ୟାପି କ୍ଲୃପ୍ତୋଽନ୍ୟଃ ପରୋଚ୍ଚାଖ୍ୟଃ ସୁଚେରମୟା ।୨୬।**

**ସଷଡ୍‌ଭଃ ସୂର୍ଯ୍ୟମଧ୍ୟଃ ସ୍ୟାଦ୍ଭୂମିପୁତ୍ରପରୋଚ୍ଚକଃ ।**
**ଜ୍ଞପରୋଚ୍ଚୋ ମୃଦୋଃ ଶୀଘ୍ରଃ ଶୀଘ୍ରସ୍ୟାପି ମୃଦୂଚ୍ଚକଃ ।୨୭।**

**ଧୃତ୍ୟଂ-ଶୋନଃ ଶନେର୍ମଧ୍ୟଃ ସ୍ୱମନ୍ଦସ୍ୟ ପରୋଚ୍ଚକଃ ।**
**ମନ୍ଦୋଚ୍ଚାଦବଦେତେଽପି ନ ଦୃଶ୍ୟାଃ କାଳମୂର୍ତ୍ତୟଃ ।୨୮।**

ମଙ୍ଗଳ, ବୁଧ ଓ ଶନିର ମନ୍ଦୋଚ୍ଚ ଏବଂ ବୁଧଶୀଘ୍ରୋଚ୍ଚ ଆଗକୁ ଓ ପଛକୁ ଉଭୟତ୍ର ଗତି କରୁଥିବାର ପର୍ଯ୍ୟବେକ୍ଷଣଦ୍ୱାରା ଜାଣିପାରି ମୁଁ ପରୋଚ୍ଚ ନାମକ ଆଉ ଅନ୍ୟ ଏକ ଦେବତାର କଳ୍ପନା କରୁଅଛି, ଯେ କି ଏ ସମସ୍ତଙ୍କୁ ପ୍ରଭାବିତ କରିପାରୁଅଛନ୍ତି । ପରୋଚ୍ଚମାନଙ୍କ ସ୍ଥାନାଦି ଏଠାରେ କୁହାଯାଉଛି ।

୧ । ମଧ୍ୟମ ରବିର ୬ ରାଶି ଅନ୍ତରରେ (୧୮୦°) ମଙ୍ଗଳ ମନ୍ଦୋଚ୍ଚ ରହେ ।

୨ । ବୁଧ ମନ୍ଦୋଚ୍ଚର ପରୋଚ୍ଚ ବୁଧର ଶୀଘ୍ରୋଚ୍ଚ ଅଟେ ଏବଂ ବୁଧ ଶୀଘ୍ରୋଚ୍ଚର ପରୋଚ୍ଚ ବୁଧର ମନ୍ଦୋଚ୍ଚ ଅଟେ ।

୩। ମଧ୍ୟମ ଶନିରୁ ୧୮° ବାଦ ଦେଲେ ଯାହା ହେବ ତାହା ହିଁ ଶନି ମନ୍ଦୋଚ୍ଚର ପରୋଚ୍ଚ ଅଟେ।

ପରୋଚ୍ଚମାନେ ମନ୍ଦୋଚ୍ଚପର କାଳମୂର୍ତ୍ତି ଏବଂ ଏମାନେ ଦୃଶ୍ୟ ହୁଅନ୍ତି ନାହିଁ।

**ଏବମନେ୍ୟ ସୂକ୍ଷ୍ମରୂପାଃ ସନ୍ତ୍ୟସଂଖ୍ୟା ନଭଶ୍ଚରାଃ।**
**ତଥୈବୋପଗ୍ରହାଃ ସନ୍ତି ଗ୍ରହବେଷ୍ଟନକାରଣାଃ ।୭୯।**

**ତେ ସୂକ୍ଷ୍ମ ଯନ୍ତ୍ରଲକ୍ଷତ୍ୱାଦ୍ ପୂର୍ବଂଗତ୍ୟା ଗ୍ରହା ଇତି।**
**ଉନ୍ନୀତା ଅପି ଧୀବାଦ୍ୟୈରନୁକ୍ତତ୍ୱାଦହୋଜ୍‌ଝିତାଃ ।୮୦।**

ଏହିପରି ଅସଂଖ୍ୟ ସୂକ୍ଷ୍ମରୂପୀ ଗ୍ରହ ଆକାଶରେ ଅଛନ୍ତି । ଉପଗ୍ରହମାନେ ମଧ୍ୟ ଗ୍ରହର ଚାରିପାଖ (ବୃତ୍ତାକାର)ରେ ବୁଲି ବୁଲି ରହିଅଛନ୍ତି । ଏମାନେ ଅବଶ୍ୟ ସୂକ୍ଷ୍ମଯନ୍ତ୍ର ବେଧରେ ଦୃଷ୍ଟି ପଥକୁ ଆସିଥାନ୍ତି । ଯନ୍ତ୍ର ଯୋଗେ ଏମାନଙ୍କର ପୂର୍ବଂଗତ (ଆଗକୁ ଗତି) ଥିବା ମଧ୍ୟ ଦେଖା ଯାଇଥାଏ। ମାତ୍ର ଏମାନେ ବ୍ରହ୍ମ ଓ ସୂର୍ଯ୍ୟ ସିଦ୍ଧାନ୍ତ ଆଦିରେ ବର୍ଣ୍ଣିତ ହୋଇ ନ ଥିବାରୁ ମୁଁ ମଧ୍ୟ ଏଗୁଡ଼ିକର ବିଶେଷ ପରିଚୟ ଆଉ ଦେଉ ନାହିଁ।

**ଜ୍ଞଶୀଘ୍ରାଚ୍ଚୃତଭଗୋନ ମଧ୍ୟାର୍କଃ ସ୍ୱମୃଦୂଚ୍ଚକୌ।**
**ପ୍ରୋଜ୍‌ଝ୍ୟଶେଷାତ୍ କେନ୍ଦ୍ରବୋର୍ଜ୍ୟାଂ ହତ୍ୱା ଖାଷ୍ଟର୍ଣ୍ଣ ଭିର୍ବଦଃ ।୮୧।**

**ଶନେସ୍ତ୍ରିଶତ୍ୟାଥ ଭଜେତ୍ତ୍ରିଜ୍ୟୟାଜଭୁଜାଦଗେ।**
**ତତ୍କେନ୍ଦ୍ରେ ଫଳଲବ୍ଧାଦ ସ୍ୱମୃଣଂ ମନ୍ଦବୁଙ୍ଗୟୋଃ ।୮୨।**

ଶନି ଓ ବୁଧ ମନ୍ଦୋଚ୍ଚର ସ୍ଫୁଟତା ତଥା ବୁଧଚଳୋଚ୍ଚର ସ୍ଫୁଟତା କଥା ଏଠାରେ କୁହାଯାଉଛି :—ବୁଧ ଓ ଶନିର ମନ୍ଦୋଚ୍ଚ ଓ ପରୋଚ୍ଚର ରାଶ୍ୟାଦି ଅନ୍ତର କର। ପୁଣି ବୁଧ ଶୀଘ୍ରୋଚ୍ଚ ଓ ପରୋଚ୍ଚର ରାଶ୍ୟାଦି ଅନ୍ତର ବାହାର କର । ଏ ଉଭୟଙ୍କର ଜ୍ୟା ଆଣି ତାକୁ ୨୮°ରେ ଗୁଣ। (ବୁଧପାଇଁ) । ଶନିପାଇଁ ହେଲେ ତାକୁ ୩°°ରେ ଗୁଣ। ଉଭୟ ଗୁଣନ ଫଳକୁ ୩ ୩୮ରେ ହରିଲେ ଫଳ ସଂସ୍କାର କଳାଦି ହେବା କେନ୍ଦ୍ର, ମେଷାଦି ୧ ତୁଳାଦିର ହୋଇଥିଲେ ଉଭୟଙ୍କ ମନ୍ଦୋଚ୍ଚରେ ତାହାକୁ ଯୋଗ ଓ ବିଯୋଗ କରିବ । ଏହି ଫଳକୁ ଲେଖାର ବିପରୀତ ଭାବରେ ସଂସ୍କାର କଲେ ବୁଧ ଶୀଘ୍ରୋଚ୍ଚ ସ୍ଫୁଟ ହୋଇଯିବ।

**ଜ୍ଞ ଶୀଘ୍ରେ ତତ୍‌ଫଳଂ ବାମଂ କୁର୍ଯ୍ୟାତ୍ତେ ସ୍ୟୁଃସ୍ତ୍ରୟଃ ସ୍ଫୁଟାଃ।**
**ଭୌମସ୍ୟ ପ୍ରଥମେ ଶୀଘ୍ରକେନ୍ଦ୍ରେ ନନ୍ଦାଦଷଟ୍‌କଟେ ।୮୩।**

**ନୈତତ୍କର୍ମ୍ମାଥକର୍କ୍ୟାଦୌ ତତ୍ର ସ୍ୟାଦଦ୍ଭକଂ ମୃଦୁମ୍ ।**
**ତତ୍ପୂର୍ବେଚାଦ୍‌ବଶୋଧ୍ୟାନ୍ତେ ତଦ୍‌ବଜ୍ଜ୍ୟାଂ ଖ-ଶରାବ୍ଧିଭିଃ ।୮୪।**

**ହୃନ୍ୟାତ୍ତ୍ରିଜ୍ୟାପ୍ତମସ୍ୟାଦକେନ୍ଦ୍ରେ କୋଟିକଳାହୃତମ୍ ।**
**ବିଭଲପ୍ତାପ୍ତମେତେନ ସଂସ୍କୃତଃ ସ୍ୟାନ୍ମୃଦୁଃ ସ୍ଫୁଟଃ ।୮୫।**

ମଙ୍ଗଳ ମନ୍ଦୋଚ୍ଚର ସ୍ଫୁଟତା କଥା ଏଠାରେ କୁହାଯାଉଅଛି :—ମଙ୍ଗଳର ଶୀଘ୍ରକେନ୍ଦ୍ର ମକର ଆଦି ଛ' ରାଶିରେ ଥିଲେ ଏହି ସ୍ଫୁଟତାର ପ୍ରଶ୍ନ ଆସିବ ନାହିଁ । ଯଦି ଏହି ଶୀଘ୍ର କେନ୍ଦ୍ର କର୍କଟ ଆଦି ଛ' ରାଶିରେ ଥାଏ ତାହାହେଲେ ଏହି ସଂସ୍କାର ଏହିପରି ଭାବରେ କରିବାକୁ ହେବ । ଗତବର୍ଷଜନିତ ମଙ୍ଗଳ ମନ୍ଦୋଚ୍ଚକୁ ପରୋଚ୍ଚରୁ ଫେଡ଼ି କେନ୍ଦ୍ର ବାହାର କରିବ । ତାହାର ଭୁଜବୃତ୍ତରୁ ତାର ଭୁଜ ଜ୍ୟା ଆଣି ତାକୁ ୪୫°ରେ ଗୁଣି ତ୍ରିଜ୍ୟାରେ ଭାଗ ଦେବ । ଫଳକୁ ପ୍ରଥମ ଶୀଘ୍ରକେନ୍ଦ୍ରର କୋଟିକଳାରେ ଗୁଣି ୫୪୦୦ରେ (ତିନ ରାଶିର କଳା) ଭାଗ ଦେବ । ଫଳକୁ ପୂର୍ବୋକ୍ତ କେନ୍ଦ୍ର ସ୍ଥିତି ଅନୁଯାୟୀ ମନ୍ଦୋଚ୍ଚରେ ସଂସ୍କାର କରିବ । ତାହାହେଲେ ମନ୍ଦୋଚ୍ଚ ସ୍ଫୁଟ ହେବ ।

**ତତ୍କୋଟିଫଳମାରସ୍ୟ ପ୍ରାଗ୍‌-ବଦ୍ରାକ୍ କୋଟି ସଂସ୍କୃତମ୍ ।**
**ମଧ୍ୟାର୍କ ଗତ୍ୟାଗୁଣିତଂ ଶନେଃ କୋଟିଫଳଂ ତତଃ ।୮୬।**

**ସ୍ୱମଧ୍ୟଗତ୍ୟାଥ ଷଦଃ ଶୀଘ୍ରଗତ୍ୟା ତଦାହୃତମ୍ ।**
**ତ୍ରିଜ୍ୟାପ୍ତାଜ କଳା ଲବ୍ଧାସ୍ତନ୍ମୃଦାନାଂ ଦ୍ୟୁଭୁକ୍ତୟଃ ।୮୭।**

**ନକ୍ର କର୍କ୍ୟାଦ ତକେନ୍ଦ୍ରେ ରବେର୍ଜ୍ୟା ବକ୍ରା ଭବନ୍ତି ତାଃ ।**
**ବକ୍ରର୍ଜ୍ୟୁକ୍ତୌ ଛଭୁକ୍ତ୍ୟାଢ଼୍ୟହୀନା ତଦ୍ଦ୍ରାଗ୍‌ଗତଃ ସ୍ଫୁଟା ।୮୮।**

ପରୋଚ୍ଚ ଜନିତ ସଂସ୍କାର ପରେ ମନ୍ଦୋଚ୍ଚର ଦୈନିକ ଗତି ସ୍ଫୁଟ କଥା ଏଠାରେ କୁହାଯାଉଛି :-ମଙ୍ଗଳ ର ମନ୍ଦୋଚ୍ଚ ତଥା ପରୋଚ୍ଚର ଅନ୍ତର କରି ପରୋଚ୍ଚର (ମଙ୍ଗଳ ମନ୍ଦୋଚ୍ଚ) କେନ୍ଦ୍ର କୋଟି ଜ୍ୟାକୁ ୪୫°ରେ ଗୁଣି ତ୍ରିଜ୍ୟା (୩୪୩୮)ରେ ହରି ଫଳ ହେବ ମଙ୍ଗଳର କୋଟି ଫଳ । ପରକେନ୍ଦ୍ର ୦°ରୁ ୧୮୦° ମଧ୍ୟରେ ଓ ୧୮୦°ରୁ ୩୬୦° ମଧ୍ୟରେ ଥିଲେ ଏହି କୋଟିଫଳକୁ ତାହାର ଶୀଘ୍ର କେନ୍ଦ୍ର କୋଟିଜ୍ୟାରେ ଯଥାକ୍ରମେ ଯୋଗ ବା ବିୟୋଗ କରିବ । ଫଳକୁ ରବିର ଦୈନିକ ମଧ୍ୟମ ଗତିରେ ଗୁଣି ୩୪୩୮ରେ ହରି । ଫଳ ହେବ ମଙ୍ଗଳ ମନ୍ଦୋଚ୍ଚର ପରୋଚ୍ଚ ସଂସ୍କୃତ ଦୈନିକ ଗତି ।

ଶନିର ସେହିପରି ପରୋଚ୍ଚ ଓ ମନ୍ଦୋଚ୍ଚର ଅନ୍ତର ଆଣି ତାହାର କୋଟିଜ୍ୟାକୁ ୩୦°ରେ ଗୁଣି ୩୪୩୮ରେ ହରି । ଏହାହିଁ ଶନିର କୋଟିଫଳ ହେବ । ଏହି କୋଟିଫଳକୁ

ଶନିର ଦୈନିକ ମଧ୍ୟମ ଗତିରେ ଗୁଣି ୩୪୩୭ରେ ହରିଲେ ପରୋକ୍ଷ ସଂସ୍କୃତ ଶନି ମନ୍ଦୋଚ୍ଚର ଦୈନିକ ଗତି ହେବ ।

ବୁଧର ପରକେନ୍ଦ୍ର କୋଟିଜ୍ୟାକୁ ୬୮°ରେ ଗୁଣି ୩୪୩୮ରେ ହରିଲେ ଯାହା ଫଳ ହେବ ତାହାକୁ ପୁଣି ବୁଧ ଶୀଘ୍ରୋଚ୍ଚର ଦୈନିକ ମଧ୍ୟମ ଗତିରେ ଗୁଣି ୩୪୩୮ରେ ହରିଲେ ଫଳ ସ୍ପଷ୍ଟ ବୁଧଶୀଘ୍ରୋଚ୍ଚର ଦୈନିକ ମଧ୍ୟମ ଗତି ହେବ ।

ସଂସ୍କୃତ ମନ୍ଦୋଚ୍ଚର ଦୈନିକ ଗତି ପରୋକ୍ଷର କେନ୍ଦ୍ରାବସ୍ଥିତି ଉପରେ ନିର୍ଭର କରେ । ପରୋକ୍ଷ କେନ୍ଦ୍ର ୧ମ ଓ ୪ର୍ଥ ପାଦରେ ଥିଲେ ଏହି ଗତି ଆଗକୁ ଏବଂ ପରୋକ୍ଷ କେନ୍ଦ୍ର ୨ୟ ଓ ୩ୟ ପାଦରେ ଥିଲେ ଏହି ଗତି ପଛଆଡ଼କୁ ହୋଇଥାଏ ।

ବୁଧ ଶୀଘ୍ରୋଚ୍ଚର ଦୈନିକ ମଧ୍ୟମ ଗତିରେ ବୁଧ ମନ୍ଦୋଚ୍ଚର (ସଂସ୍କୃତ) ଦୈନିକ ଗତିକୁ ଯୋଗ ବା ବିୟୋଗ କରିବାକୁ ହୋଇଥାଏ । (ବୁଧ ମନ୍ଦୋଚ୍ଚ ଗତି ପଛକୁ ଥିଲେ ଯୋଗ ଓ ଆଗକୁ ଥିଲେ ବିୟୋଗ) ।

**ମନ୍ଦୋଚ୍ଚାକର୍ଷଣଫଳଂ ଯସ୍ୟ ଯସ୍ୟ ହି ଦୃଶ୍ୟତେ ।**
**ପରମଂ ଯତ୍ତଦଭ୍ୟସ୍ତାଶ୍ଚ କଲସ୍ତାଃ ସମୁଦ୍ଧୃତାଃ ।୮୯।**

**ବିଜ୍ୟୟା ତତ୍ ଫଳଂ ତତ୍ତତ୍ ସ୍ୱମନ୍ଦପରିଧିର୍ଭବେତ୍ ।**
**କ୍ୱାପ୍ୟୂନାଧିକତା ଯସ୍ମାତ୍ ଫଳସ୍ୟ ପରମେଧ୍ୱସ୍ତତଃ ।୯୦।**

**ଯୁଗ୍ମ—ପାଦାନ୍ତଜାଚ୍ଛୀଘ୍ର ପରିଧେର୍ବିଷମାନ୍ତଜଃ ।**
**ନ୍ୟୂନଃ ଶନିକୁଜେଜ୍ୟାନାମଧିକଃ ସ୍ୟାତ୍ସିତଜ୍ଞୟୋଃ ।୯୧।**

ଯେଉଁ ଗ୍ରହର ଯେତେ ପରମ ମନ୍ଦୋଚ୍ଚାକର୍ଷଣ ଫଳ ତାହାକୁ ୨୧୬°°ରେ ଗୁଣି ୩୪୩୮ରେ ହରିଲେ ସେହି ଗ୍ରହର ମନ୍ଦ ପରିଧି ହୁଏ । ପରମ ମନ୍ଦଫଳର ନ୍ୟୂନତା ବା ଆଧିକ୍ୟକୁ ନେଇ ମନ୍ଦପରିଧି ମଧ୍ୟ କମ୍ ବେଶୀ ହେବାର କଥା ।

ମଙ୍ଗଳ, ବୃହସ୍ପତି ଓ ଶନିର ଶୀଘ୍ର ପରିଧି ୨ୟ ଓ ୪ର୍ଥ ପାଦାନ୍ତ ଆଡ଼କୁ ଖୁବ୍ ବଢ଼ିଯାଏ, ମାତ୍ର ୧ମ ଓ ୩ୟ ପାଦାନ୍ତ ବେଳକୁ ଏହାର ପରିସର ଅତିମାତ୍ରାରେ କମିଯାଇଥାଏ । ବୁଧ ଓ ଶୁକ୍ରର ଶୀଘ୍ରପରିଧିର ଆଧିକ୍ୟ ଓ ନ୍ୟୂନତା ଏହାର ଠିକ୍ ବିପରୀତ ଅବସ୍ଥାରେ ଅର୍ଥାତ୍ ୨ୟ ଓ ୪ର୍ଥ ପାଦାନ୍ତରେ ଏକବାରେ କମିଯାଏ । ଅଥଚ ୧ମ ଓ ୩ୟ ପାଦରେ ସର୍ବାଧିକ ହୋଇ ଯାଇଥାଏ ।

ସୂର୍ଯ୍ୟସିଦ୍ଧାନ୍ତେ—

ରବିମନ୍ଦପରିଧ୍ୟଂଶା—
ମନବଃ ଶୀତଗୋ ରଦାଃ ।
ଯୁଗ୍ମାନ୍ତେ ବିଷମାନ୍ତେ ତୁ—
ନଖ ଲିପ୍ତୋନିତାସ୍ତୟୋଃ । ଇତି ।୯୨।

ବ୍ୟଂଶୋନେନ୍ଦ୍ରଲବା ଭନୋର୍ଜିନ—ଲିପ୍ତୋନିତା ରଦାଃ ।
ଚନ୍ଦ୍ରସ୍ୟ ସର୍ବଦେବୁ୍ୟକ୍ତାଃ ସତ୍ସିଦ୍ଧାନ୍ତଶିରୋମଣୌ ।୯୩।

ସୂର୍ଯ୍ୟ ସିଦ୍ଧାନ୍ତ ମତରେ ସୂର୍ଯ୍ୟର ମନ୍ଦପରିଧି ଯୁଗ୍ମ ପାଦାନ୍ତରେ ୧୪° ଏବଂ ଓଜ ପାଦାନ୍ତରେ ୧୩° । ୪୦' । ଚନ୍ଦ୍ରର ସେହିପରି ଯୁଗ୍ମ ପାଦାନ୍ତୀୟ ମନ୍ଦ ପରିଧି ୩୨ ଏବଂ ଓଜ ପାଦାନ୍ତୀୟ ମନ୍ଦପରିଧି ୩୧° । ୨୦ ମାନ ।

ଭାସ୍କରଙ୍କ ସିଦ୍ଧାନ୍ତ ଶିରୋମଣି ଅନୁସାରେ ଯୁଗ୍ମ ଓ ଓଜ ଉଭୟ ପାଦାନ୍ତରେ ସୂର୍ଯ୍ୟ ଓ ଚନ୍ଦ୍ରର ମନ୍ଦପରିଧି ଯଥାକ୍ରମେ ୧୩° । ୪୦ ଓ ୩୧° । ୩୬ ।

ମୟା ତୁ ଭେଦଯୁତ୍ୟର୍କଚନ୍ଦ୍ରାନ୍ତର—ବିବେକତଃ ।
କଥ୍ୟତେ ଦୃକ୍‌ସମୌ ମନ୍ଦପରିଧୀ ରବିଚନ୍ଦ୍ରୟୋଃ ।୯୪।

ମନ୍ଦ କେନ୍ଦ୍ରୌଜ-ପାଦାନ୍ତେ ଭନୋଃ ଷଟ୍‌କଲିକାନ୍ୱିତାଃ ।
ତଦଂଶା ଭନବଶ୍ଚନ୍ଦ୍ରସ୍ୟାର୍ଦ୍ଧୋନା ଦଶନା ଇହ ।୯୫।

ରଟବଶ୍ଚକ୍ରେ ସ୍ୱକେନ୍ଦ୍ରସ୍ୟ ରବିଲିପ୍ତୋନିତାଃ ସ୍ଫୁଟାଃ ।
ଚକ୍ରାର୍ଦ୍ଧେ ସିଦ୍ଧଲିପ୍ତାଢ୍ୟାଃ ସ୍ଫୁଟତାନ୍ୟନ କଥ୍ୟତେ ।୯୬।

ଅଶ୍ୱିନୀ ଆଦି ନକ୍ଷତ୍ର ସହିତ ଚନ୍ଦ୍ରର ଯୋଗ ତଥା ଚନ୍ଦ୍ର ଓ ରବିର (କୌଣିକ) ଦୂରତା ପର୍ଯ୍ୟବେକ୍ଷଣ କରି ଗ୍ରନ୍ଥକର୍ତ୍ତା ନିଜେ ସୂର୍ଯ୍ୟ ଓ ଚନ୍ଦ୍ରର ମନ୍ଦ ପରିଧି ବକ୍ଷ୍ୟମାଣ କ୍ରମେ ଦେଇଅଛନ୍ତି :—

ରବିର ମନ୍ଦକେନ୍ଦ୍ର ଓଜ ପାଦାନ୍ତରେ ଥିବାବେଳେ ତାହାର ମନ୍ଦ ପରିଧି ୧୨°।୬' ଏବଂ ମନ୍ଦ କେନ୍ଦ୍ର ୪ର୍ଥ ପାଦାନ୍ତରେ ଥିବାବେଳେ ତାହା ୧୧°।୫୪' (୧୨°।୬' — ୦।୧୨'=୧୧°।୫୪' ) ଏବଂ ୨ୟ ପାଦାନ୍ତରେ ୧୨°।୩୦' (୧୨°।୬' + ୦।୨୪'=୧୨°।୩୦' ) । ଓଜ ପାଦାନ୍ତରେ ଚନ୍ଦ୍ରର ମନ୍ଦ ପରିଧି ୩୧°।୩୦' ମାତ୍ର । ଅନ୍ୟ ସ୍ଥାନରେ ରବି ଓ ଚନ୍ଦ୍ରର ମନ୍ଦପରିଧି ଅଣାଯିବାର ଉପାୟ ପରେ ପରେ କୁହାଯାଉଛି ।

**ରସଘ୍ନୀ କେନ୍ଦ୍ରକୋଟିଜ୍ୟା ତ୍ରିଜ୍ୟାପ୍ତା କଳକାଫଳୈଃ ।**
**କ୍ରମାନ୍ନକ୍ରକର୍କ୍ୟାଦୌ ହୀନାଢ୍ୟା ଧୃତ ଲିପ୍ତିକାଃ ।୯୭।**

**କେନ୍ଦ୍ରକୋଟିଜ୍ୟୟାଭ୍ୟସ୍ତାସ୍ତ୍ରିଜ୍ୟାପ୍ତା-ସ୍ତତ୍ଫଳୈଃ ପୁନଃ**
**ଯୁତୋନାଃ କର୍କ ନକ୍ରାଦାବୋଜାନ୍ତ ପରଧିଃ ସ୍ଫୁଟଃ ।୯୮।**

ଅନ୍ୟ ସ୍ଥାନରେ ରବିର ମନ୍ଦ ପରିଧି ଆଣିବାକୁ ହେଲେ ରବିର ମନ୍ଦ କେନ୍ଦ୍ର କୋଟିଜ୍ୟାକୁ ୬ରେ ଗୁଣି ୩୪୩୮ରେ ହର । ଫଳ କଳାଦି ହେବ । ମନ୍ଦ କେନ୍ଦ୍ର ୧ମ ଓ ୪ର୍ଥ ପାଦରେ ଥିବାବେଳେ ଏହି କଳାଦି ଫଳକୁ ୧୮' ରୁ ବାଦ ଦେବାକୁ ହେବ । ମନ୍ଦ କେନ୍ଦ୍ର ୨ୟ ଓ ୩ୟ ପାଦରେ ଥିଲେ ଏହି କଳାଦି ମନ୍ଦଫଳକୁ ୧୮' ରେ ଯୋଗ କରିବାକୁ ହେବ । ଏହି ଉଭୟ ପ୍ରକାର ଫଳକୁ ମନ୍ଦକେନ୍ଦ୍ର କୋଟିଜ୍ୟାରେ ଗୁଣି ୩୪୩୮ରେ ହର । ଏହି ଶେଷଫଳ କଳାକୁ ମନ୍ଦକେନ୍ଦ୍ର ୨ୟ ଓ ୩ୟ ପାଦାନ୍ତରେ ଥିବାବେଳେ ୧୨°।୬' ରେ ଯୋଗକର ଏବଂ ମନ୍ଦକେନ୍ଦ୍ର ୧ମ ଓ ୪ର୍ଥ ପାଦାନ୍ତରେ ଥିବାବେଳେ ୧୨°।୬' ଅନ୍ତର କର । ଏହାହିଁ ସେହିସ୍ଥାନର ମନ୍ଦପରିଧି ହେବ ।

**ଏଷ ସୂକ୍ଷ୍ମ ବଧୌକାର୍ଯ୍ୟଃ ସ୍ଥୂଳେତୁ ସ୍ୱାଙ୍କଭଗ୍ୟୁକ୍ ।**
**ପ୍ରାଗ୍ଭିରଷ୍ଟେ ପର୍ବସନ୍ଧିମାବଦ୍ଦୃକ୍-ସାମ୍ୟଲଭତଃ ।୯୯।**

ସୂକ୍ଷ୍ମ ଗଣନା ନିମନ୍ତେ ଏହିପରି ମନ୍ଦପରିଧି ଆଣିବାକୁ ହେବ । ମାତ୍ର ସ୍ଥୂଳଗଣନା ନିମନ୍ତେ ଏତେ ଭିତରକୁ ନ ଯାଇ ପୂର୍ବ ଖଣ୍ଡରେ ମନ୍ଦପରିଧି ଆଣି ସେଥିରେ ତାର ନବମାଂଶ ଯୋଗ କଲେ ସ୍ଫୁଟ ରବି ମନ୍ଦ ପରିଧି ହୋଇଯାଇ ପାରିବ । ଅମାନ୍ତ ବା ପୂର୍ଣ୍ଣାନ୍ତରେ ହିଁ ରବି ମନ୍ଦ ପରିଧିର ଦୃକ୍ ସମତା ଲବ୍ଧ ହେଉଥିବାରୁ ଅନ୍ୟ ସମୟରେ ଏହି ସ୍ଥୂଳସାଧନ ଖଣ୍ଡରେ କାର୍ଯ୍ୟ କରାଯାଇପାରେ ।

**ଵଧୋରୁକ୍ତଃ ସକୋଟିଜ୍ୟାଗୁଣିତୈସ୍ତ୍ରିଗୁଣୋଦ୍ଧୃତୈଃ ।**
**ଖଗୁଣୈଃ କର୍କ ନକ୍ରାଦୌ କଳାଭିର୍ଯୁଗ୍ବିୟୁକ୍ ସ୍ଫୁଟଃ ।୧୦୦।**

**କୁଜାଦୀନାଂ କ୍ରମାଦଂଶା ଗୋଽଙ୍ଗାନଗିରବାହ୍ୱବଃ ।**
**ସାର୍ଦ୍ଧାବ୍ଧିରାମାସ୍ତପନାଗୋଽଗ୍ନ୍ୟଃ ପରଧିର୍ମୃଦୋଃ ।୧୦୧।**

ଚନ୍ଦ୍ରର ମନ୍ଦକେନ୍ଦ୍ର କୋଟିଜ୍ୟାକୁ ୩୦ ରେ ଗୁଣି ୩୪୩୮ରେ ହର । କଳାଦି ଫଳକୁ ଚନ୍ଦ୍ର ମନ୍ଦକେନ୍ଦ୍ର କର୍କଠ ଆଦି ଛ' ରାଶିରେ ଥିବାବେଳେ ପ୍ରଥମ ପଦାନ୍ତୀୟ ମନ୍ଦ ପରିଧିରେ ଯୋଗ କର । ଚନ୍ଦ୍ର ମନ୍ଦକେନ୍ଦ୍ର ମକର ଆଦି ଛ' ରାଶିରେ ଥିବାବେଳେ ଏହି କଳାଦି ଫଳକୁ ସେହି ପ୍ରଥମ ପଦାନ୍ତୀୟ ମନ୍ଦ ପରିଧିରୁ ଅନ୍ତର କର । ଏପରି କଲେ ଚନ୍ଦ୍ରର ମନ୍ଦ ପରିଧି ଯଥାସ୍ଥାନରେ ସ୍ଫୁଟ ହୋଇଯିବ ।

| | | | |
|---|---|---|---|
| ମଙ୍ଗଳର ମନ୍ଦ ପରିଧି-ଅଂଶାଦି | | | —୭୯° |
| ବୁଧର | ,, | ,, | —୨୭ |
| ବୃହସ୍ପତିର | ,, | ,, | ୩୪।୩୦ |
| ଶୁକ୍ରର | ,, | ,, | ୧୨ |
| ଶନିର | ,, | ,, | ୩୯ |

ଶୈଘ୍ରାଃ ପରିଧୟୋଭୌମାଦ୍ ଯୁଗ୍ମାନ୍ତେଽଷ୍ଟାଗ୍ନିବାହବଃ ।
ନବବେଦାଶ୍ଚ ଖଗିରୟୋ ଭୂଷଟ୍ପକ୍ଷା ନବାଗ୍ନୟଃ ।୧୦୨।

ଓଜାନ୍ତେଽଦ୍ର୍ୟଗ୍ନିନେତ୍ରାଣି ନଭଃ-ଶକ୍ରା ନବର୍ତ୍ତବଃ ।
ଦ୍ୱ୍ୟଙ୍ଗପକ୍ଷା । ଗଜଗୁଣାସ୍ତେଷାନ୍ତୁ ସ୍ଫୁଟତୋଚ୍ୟତେ ।୧୦୩।

ଓଜଯୁଗ୍ମପଦାନ୍ତୋତ୍ଥ ପରିଧ୍ୟୋ ର୍ବିବରାହତା ।
ଭୁଜଜ୍ୟା ତ୍ରିଜ୍ୟୟା ଭକ୍ତାତତ୍ଫଳଂ କଳକାଦିକମ୍ । ୦୪।

ଯୁଗ୍ମପାଦାନ୍ତପରିଧୌ ମହତ୍ତ ପ୍ରୋକ୍ଝିତଂ ତତଃ ।
ଅଲ୍ପମାନେ ଧନଂ ତସ୍ମିନ୍ନେବଂ ପରିଧୟଃ ସ୍ଫୁଟାଃ ।୧୦୫।

ଦୃକ୍‌ସିଦ୍ଧ୍ୟୈ ପୁନରାରାଶ୍ଚ କେନ୍ଦ୍ରଦୋଃ—କଳକାହୃତା ।
ଖରାମୈଃ ଫଳଯୁକ୍‌କାର୍ଯ୍ୟଃ କୌଜୋଦ୍ରାକ୍ ପରିଧିଃ ସ୍ଫୁଟଃ ।୧୦୬।

ମଙ୍ଗଳ ଆଦି ଗ୍ରହର ଶୀଘ୍ର ପରିଧିଭାଗ ଏହିପରି—

| | | | | |
|---|---|---|---|---|
| ମଙ୍ଗଳର | ଯୁଗ୍ମପାଦାନ୍ତରେ | —୨୩୮° | ଓଜପାଦାନ୍ତରେ | —୨୩୭° |
| ବୁଧର | ,, | —୧୩୯ | ,, | —୧୪୦ |
| ବୃହସ୍ପତିର | ,, | — ୭୦ | ,, | — ୭୯ |
| ଶୁକ୍ରର | ,, | —୨୬୧ | ,, | —୨୬୨ |
| ଶନିର | ,, | — ୩୯ | ,, | —୩୮ |

ଓଜ ଓ ଯୁଗ୍ମ ପାଦାନ୍ତରେ ଦିଆଯାଇଥିବା ଶୀଘ୍ର ପରିଧି ଦୁଇଟିର ଅନ୍ତରକୁ ଶୀଘ୍ର-କେନ୍ଦ୍ର ଭୁଜଜ୍ୟାରେ ଗୁଣି ୩[illegible]ରେ ହରିଲେ ଯେଉଁ ଫଳ ହେବ ତାକୁ ଶୀଘ୍ର ପରିଧି ବଢ଼ୁଥିବା ଅବସ୍ଥାରେ ପାଦାନ୍ତୀୟ ପରିଧିରେ ମିଶାଇବ ଏବଂ ଶୀଘ୍ର ପରିଧି କମୁଥିବା ଅବସ୍ଥାରେ ସେଥିରୁ ଫେଡ଼ିବ । ଏପରି କଲେ ଗ୍ରହମାନଙ୍କର ଅଭୀଷ୍ଟ ସ୍ଥାନୀୟ ଶୀଘ୍ରପରିଧି ହେବ ।

ଏହିପରି ଖଣ୍ଡରେ ଅଣାଯାଇଥିବା ମଙ୍ଗଳସ୍ଫୁଟ ଶୀଘ୍ରପରଧିରେ ତାହାର ଶୀଘ୍ର କେନ୍ଦ୍ର ଭୁଜକଳାର ୩° ଭାଗ ଯୋଗ କଲେ ମଙ୍ଗଳର ଅନ୍ତ ସ୍ଫୁଟ ଶୀଘ୍ର ପରଧି ଆସିଯାଇ ପାରିବ ।

**ତନ୍ମନ୍ଦକେନ୍ଦ୍ରଚରଣଯାତୈଷ୍ୟାଲ୍ପକଳାଗୁଣଃ ।**
**କର୍କ୍ୟାଦୌ ବସୁଭିର୍ଭାଗୈର୍ନକ୍ରାଦୌ ଗୁଣିତୋଽବ୍ଧିଭିଃ ।୧୦୭।**

**ସାର୍ଦ୍ଧରାଶିଜ୍ୟୟା ଭକ୍ତଃ ଫଳୈରଂଶାଦଭିସ୍ତତଃ ।**
**ସମନ୍ୱିତଃ ସ୍ଫୁଟୋ ମନ୍ଦପରିଧିର୍ଭୌମସାଂଶକଃ ।୧୦୮।**

ମଙ୍ଗଳର ମନ୍ଦ ପରିଧିଭାଗ ୭୯° । ଏହା ପୁଣି ପାଦାନ୍ତରେ ହୋଇଥାଏ । ଏଣୁ ପାଦ ମଧ୍ୟରେ ତାହା ସାଧନ କରିବାକୁ ହେଲେ ଏହିପରି କରିବାକୁ ହେବ—ମଙ୍ଗଳର ମନ୍ଦକେନ୍ଦ୍ର ସାଧନ କରି ତାର ଗତ ଓ ଏଷ୍ୟ କଳା ମଧ୍ୟରୁ ଯାହାର (ପାଦାଦ୍ୟ ଓ ପାଦାନ୍ତ ମଧ୍ୟରେ) କମ୍ କଳା ତାହାର କ୍ରମଜ୍ୟା ବାହାର କର । ମନ୍ଦକେନ୍ଦ୍ର କର୍କଟ ଆଦ୍ୟରେ ହୋଇଥିଲେ ୮ ଅଂଶରେ ଏବଂ ମକର ଆଦ୍ୟରେ ହୋଇଥିଲେ ୪ ଅଂଶରେ ଗୁଣି ୪୫° ର ଜ୍ୟା ଅର୍ଥାତ୍ ୨୪୩୧ରେ ଉଭୟକୁ ହରିଲେ ଯାହା ଫଳ ହେବ ସେହି ଅଂଶାଦ୍ୟ ଫଳକୁ ୭୯° ରେ ଯୋଗ କଲେ ଅଭୀଷ୍ଟ ସ୍ଥାନର ସ୍ଫୁଟ ମନ୍ଦପରିଧି ହେବ ।

**ଅଥୈତତ୍ଫଳବୈଷମ୍ୟପରିହାରାୟ କେନ୍ଦ୍ରକେ ।**
**ନାଗାଙ୍ଗାଷ୍ଟବ୍ଧିଲପ୍ତାତଃ ଖାଙ୍କାର୍ଥେନ୍ଦୁ କଳାମ୍ବିକେ ।୧୦୯।**

**ଭୁଜେନ୍ଦ୍ରତଥିଲପ୍ତାତଃ ଖଗୋଽର୍ଥେନ୍ଦୁ କଳାମ୍ବିକେ ।**
**ପରିଧ୍ୟନାଦରଃ କାର୍ଯ୍ୟ ଫଳଙ୍ଗ୍ରାହ୍ୟଂ ବିରାଶିକମ୍ ।୧୧୦।**

ମଙ୍ଗଳର ମନ୍ଦକେନ୍ଦ୍ର ୪୮୬' ରୁ ୪୮୭'+୧୫୯୦' ମଧ୍ୟରେ ବା ୧୫୧୪୨' ରୁ ୧୫୧୪୨'+୧୫୯୦' ମଧ୍ୟରେ ଥିଲେ ତାର ମନ୍ଦପରିଧି ସଂସ୍କାର ଆଦୌ ଆବଶ୍ୟକ ନାହିଁ । ଏତକବେଳେ ମନ୍ଦଫଳ ମୋଟାମୋଟି ୧୧° ୨' ୪୭" ଧରି ନେବାକୁ ହେବ । ଏହି ମନ୍ଦଫଳ ୧୧° ୨' ୪୭" ତାର ୯୦° ମନ୍ଦକେନ୍ଦ୍ର ହେବାବେଳେ ହିଁ ହୋଇଥାଏ ।

**ବୁଧସ୍ୟ ମନ୍ଦକେନ୍ଦ୍ରାଙ୍ଘ୍ରିଗତୈଷ୍ୟାଲ୍ପକଳାଜ୍ୟକା ।**
**ନବାପ୍ତା ଲବ୍ଧଲପ୍ତୋନଃ ସ୍ୟାନ୍ମନ୍ଦପରିଧିଃ ସ୍ଫୁଟଃ ।୧୧୧।**

ବୁଧର ମନ୍ଦକେନ୍ଦ୍ର ଯେଉଁ ପାଦରେ ଥିବ ସେହି ପାଦରେ ସେହି ବୁଧ ମନ୍ଦକେନ୍ଦ୍ରର ଗତ ଓ ଏଷ୍ୟ କଳା ମଧ୍ୟରୁ ଯେଉଁଟା ଅଳ୍ପ ହେବ, ତାହାର ଜ୍ୟା ସାଧନ କର । ତାକୁ ୯ରେ ହରି ଲବ୍ଧ କଳାକୁ ମନ୍ଦପରିଧିରୁ ବାଦ ଦେଲେ ବୁଧର ସ୍ଫୁଟ ମନ୍ଦପରିଧି ହେବ ।

ଶୁକ୍ରସ୍ୟ ମନ୍ଦପରଧିଃ କେନ୍ଦ୍ରଦୋର୍ଜ୍ୟାକ୍ଷିଘାତତଃ ।
ତ୍ରିଜ୍ୟା ଭକ୍ତାତ୍ ଫଳାଂଶାଦ୍ୟରହିତଃ ସ୍ଫୁଟ ଉଚ୍ୟତେ ।୧୧୨।

ଶୁକ୍ରର ମନ୍ଦକେନ୍ଦ୍ର ଭୁଜଜ୍ୟାକୁ ୨ରେ ଗୁଣି ତ୍ରିଜ୍ୟାରେ ହରଲେ ଯାହା ଲବ୍ଧ ହେବ ସେହି ଅଂଶାଦିକୁ ମନ୍ଦପରିଧିରୁ ବିଯୁକ୍ତ କଲେ ଶୁକ୍ରର ମନ୍ଦପରିସ୍ଫୁଟ ହେବ ।

(ବୁଧର ମନ୍ଦପରିଧି ୨୭° ଓ ଶୁକ୍ରର ମନ୍ଦପରିଧି ୧୨ ମାତ୍ର)

ସୂର୍ଯ୍ୟ ସିଦ୍ଧାନ୍ତେ—

ତଦ୍‌ଗୁଣେ ଭୂଜକୋଟିଜ୍ୟେ ଭଗଣାଂଶ-ବିଭାଜିତେ
ତଦ୍‌ଭୁଜଜ୍ୟାଫଲଧନୁର୍ମାନ୍ଦ୍ୟଂ ଲିପ୍ତାଦିକଂ ଫଳମ୍ ଇତ ।୧୧୩।

ସଂସ୍କୃତ ମନ୍ଦପରିଧିକୁ ମନ୍ଦକେନ୍ଦ୍ର ଭୁଜଜ୍ୟାରେ ଓ ମନ୍ଦକେନ୍ଦ୍ର କୋଟିଜ୍ୟାରେ ଗୁଣି ୩୬୦° ରେ ଭାଗ ଦେଲେ ମନ୍ଦଭୁଜଫଳ ଓ ମନ୍ଦକୋଟି ଫଳ ଯଥାକ୍ରମେ ହୁଏ ।

ତତ୍ତ୍ୱନେତ୍ରୋନଲପ୍ତାନାଂ ସମତ୍ୱବାଦ୍ଧନୁଷ୍କ୍ରିୟା ।
ନେଷ୍ୟତେ ବହୁତାୟାନ୍ତୁ ତତସ୍ତତ୍କର୍ମ ଯୁଜ୍ୟତେ ।୧୧୪।

୨୨୫' ଚାପର ଜ୍ୟା-ଚାପ ଭେଦ ନ ଥିବାରୁ ଏଥିରୁ କମ୍ ଚାପର ମଧ୍ୟ ଜ୍ୟା ଚାପ ପ୍ରଭେଦ ନାହିଁ । ଏଣୁ ତେତେବେଳେ ଚାପରୁ ଜ୍ୟା ବା ଜ୍ୟାରୁ ଚାପ ଆଣିବା ଅନାବଶ୍ୟକ । ଏଥିରୁ ଅଧିକ ଚାପର ଜ୍ୟା ଓ ଧନୁ ପୃଥକ୍ ଆଣି କାର୍ଯ୍ୟ କରିବ ।

ସୂର୍ଯ୍ୟ ସିଦ୍ଧାନ୍ତେ—

ଶୈଘ୍ର୍ୟଂ କୋଟିଫଳଂ କେନ୍ଦ୍ରେ
ମକରାଦୌ ଧନଂ ସ୍ମୃତମ୍ ।
ସଂଶୋଧ୍ୟନ୍ତୁ ତ୍ରିଜୀବାୟାଂ
କର୍କ୍ୟାଦୌ କୋଟିଜଂ ଫଳମ୍ । ଇତ ।୧୧୫।

ସୈବୋକ୍ତା ସଂସ୍କୃତ ତ୍ରିଜ୍ୟା ଜ୍ୟାରୂପଂ ଭୁଜକୋଟିଜମ୍
ଫଳମବୈବ ଗୃହ୍ୟେତ ଧନର୍ଣ୍ଣ କୃତ କର୍ମଣି ।୧୧୬।

ସୂର୍ଯ୍ୟ ସିଦ୍ଧାନ୍ତେ—

ତଦ୍‌ବାହୁ ଫଳବର୍ଗୈକ୍ୟାନ୍ମୂଳଂ କର୍ଣ୍ଣଶ୍ଚଳାଭିଧଃ ।
ତ୍ରିଜ୍ୟାଭ୍ୟସ୍ତଂ ଭୁଜଫଳଂ ଚଳକର୍ଣ୍ଣବିଭାଜିତମ୍ ।୧୧୭।

ଲବ୍ଧସ୍ୟ ଗୃପଲପ୍ତାଦଫଲଂ ଶୈଘ୍ର୍ୟମିଦଂ ସ୍ମୃତମ୍ ।
ଏତଦାଦୌ କୁଜାଦୀନାଂ ଚତୁର୍ଥେ ଚୈବ କର୍ମ୍ମଣି ।୧୫୮।

୧୧୩ଶ ଶ୍ଳୋକ ଅନୁସାରେ ଶୀଘ୍ର କୋଟିଫଳ ବାହାର କର ଶୀଘ୍ରକେନ୍ଦ୍ର ମକରାଦି ୬ ରାଶିରେ ଥିଲେ ତାକୁ ତ୍ରିଜ୍ୟାରେ ଯୋଗ କରବ । ଶୀଘ୍ର କେନ୍ଦ୍ର କର୍କଟ ଆଦି ୬ ରାଶିରେ ଥିଲେ ତ୍ରିଜ୍ୟାରୁ ଏହି ଶୀଘ୍ର କୋଟିଫଳ ବାଦ ଦେବାକୁ ହେବ । ତାହେଲେ ତାହା ଆଉ ଏକ କୋଟି ଫଳ ହେବ । ଏହାର ଅନ୍ୟନାମ କୋଟି ।

ଭୁଜଫଳ, କୋଟିଫଳ ଓ ବର୍ତ୍ତମାନ ଅଣାଯାଇଥିବା ସ୍ପଷ୍ଟ ତ୍ରିଜ୍ୟା, ଏ ପ୍ରତ୍ୟେକେ ଜ୍ୟାରୂପୀ ଅର୍ଥାତ୍ ଏମାନଙ୍କ ମଧ୍ୟରୁ କେହିହେଲେ ଚାପରୂପୀ ନୁହନ୍ତି । ଏଣୁ ତ୍ରିଜ୍ୟାରେ ଯୋଗ ଓ ତ୍ରିଜ୍ୟାରୁ ବିୟୋଗ କାର୍ଯ୍ୟରେ ଏଗୁଡ଼ିକୁ ଜ୍ୟାରୂପରେହିଁ ଦେଖିବାକୁ ହେବ ।

ଏହି ଯେଉଁ ଭୁଜଫଳ ଓ କୋଟିଫଳ (ଜ୍ୟା ରୂପ, ଭୁଜ ଓ କୋଟି) ଏ ଦୁହିଁଙ୍କ ବର୍ଗକୁ ମିଶାଇ ତାର ବର୍ଗମୂଳ ନେଲେ ଶୀଘ୍ର କର୍ଣ୍ଣ ଆସିବ ।

ଭୁଜଫଳକୁ ତ୍ରିଜ୍ୟାରେ (୩୪୩୮ରେ) ଗୁଣି ଶୀଘ୍ର କର୍ଣ୍ଣରେ ହର । ଲବ୍ଧର ଚାପ ଫଳକୁ ଶୀଘ୍ରଫଳ କୁହାଯାଏ । ମଙ୍ଗଳ ପ୍ରଭୃତି ୫ଟି ତାରାଗ୍ରହର ୧ମ ଓ ୪ର୍ଥ ସଂସ୍କାରବେଳେ ଆଗରେ କୁହାଯାଉଥିବା ପ୍ରକ୍ରିୟାରେ ସଂସ୍କାର କରିବାକୁ ହେବ ।

ମାନ୍ଦ୍ୟଂ କର୍ମ୍ମୈକମର୍କେନ୍ଦ୍ୱୋ ର୍ଭୌମାଦୀନା ମଂଥୋଚ୍ୟତେ ।
ଶୈଘ୍ର୍ୟଂ ମାନ୍ଦ୍ୟଂ ପୁନର୍ମାନ୍ଦ୍ୟଂ ଶୈଘ୍ର୍ୟଂ ଚତ୍ୱାର୍ଯ୍ୟନୁକ୍ରମାତ୍ ।୧୫୯।

ରବି ଓ ଚନ୍ଦ୍ରର ସ୍ଫୁଟତା ନିମନ୍ତେ କେବଳ ମନ୍ଦଫଳ ସଂସ୍କାର ଦରକାର ହୁଏ । ମଙ୍ଗଳ ଆଦି ଆଉ ୫ଟି ତାରା ଗ୍ରହର ପ୍ରଥମେ ଶୀଘ୍ର, ତାପରେ ମନ୍ଦ, ତାପରେ ମନ୍ଦ ଓ ପୁଣି ସର୍ବଶେଷରେ ଶୀଘ୍ର, ଏହିପରି ୪ଟି ସଂସ୍କାର ଆବଶ୍ୟକ ହୋଇଥାଏ ।

ଅଜାଦି କେନ୍ଦ୍ରେ ସର୍ବେଷାଂ ମାନ୍ଦେ୍ୟ ଶୈଘ୍ର୍ୟେ ଚ କର୍ମ୍ମଣି ।
ଧନଂ ଗ୍ରହାଣାଂ ଲପ୍ତାଦତୁଲାଦାବୃଣମେବ ତତ୍ । ଇତି ।୧୬୦।

ମଧ୍ୟଃ ଶୈଘ୍ର୍ୟଫଳାର୍ଦ୍ଧେନ ସଂସ୍କୃତଃ ପ୍ରଥମୋ ଗ୍ରହଃ ।
ତଦୁତ୍ପନ୍ନମୃଦୁଫଳାର୍ଦ୍ଧେନ ଫଳାର୍ଦ୍ଧେନ ସ ସଂସ୍କୃତଃ ।୧୬୧।

ଦ୍ୱିତୀୟସ୍ତେନ ସଂଶୁଦ୍ଧାନ୍ମନ୍ଦାତ୍ ଯତ୍ ସକଳଂ ଫଳମ୍ ।
ତତ୍ସଂସ୍କୃତୋ ମଧ୍ୟଖଗୋ ମନ୍ଦସ୍ପଷ୍ଟସ୍ତୃତୀୟକଃ ।୧୬୨।

ତଦନ୍ତରାଚ୍ଛୀଘ୍ରଭୁଜାଦ୍ ସକଳେନ ଫଳେନ ସଃ ।
ସଂସ୍କୃତଃ ସ୍ଫୁଟତାମେତି ତୁର୍ଯ୍ୟଃ ସୂର୍ଯ୍ୟାଦଣାସନାତ୍ ।୧୬୩।

ଶୀଘ୍ର କେନ୍ଦ୍ର ଓ ମନ୍ଦକେନ୍ଦ୍ର ମେଷାଦ ୬ ରାଶିରେ ଥିଲେ ଶୀଘ୍ରଫଳ ଓ ମନ୍ଦଫଳ ଯୋଗ କରିବାକୁ ହୋଇଥାଏ । ମାତ୍ର ଏହି କେନ୍ଦ୍ରଦ୍ୱୟ ତୁଳାଦ ୬ ରାଶିରେ ଥିଲେ ଉଭୟ ଫଳକୁ ଅନ୍ତର କରିବାକୁ ହୋଇଥାଏ । ଏହା ସବୁ ଗ୍ରହଙ୍କପାଇଁ ସମାନ ଭାବରେ ପ୍ରଯୁଜ୍ୟ । ଏହି ଫଳକୁ ମଧ୍ୟମ ଗ୍ରହରେ ହିଁ ଯୋଗ ବିୟୋଗ କରିବାକୁ ହୋଇଥାଏ ।

ମଧ୍ୟଗ୍ରହରେ ଶୀଘ୍ର ଫଳର ଅର୍ଦ୍ଧ ସଂସ୍କାର କଲେ ପ୍ରଥମ ଗ୍ରହ ହୁଏ । ଏହି ପ୍ରଥମ ଗ୍ରହକୁ ମନ୍ଦୋଚ୍ଚରୁ ବାଦଦେଇ ଯେଉଁ କେନ୍ଦ୍ରାଦ ହେବ, ସେଥିରୁ आନୀତ ପୁଣି ମନ୍ଦ ଫଳାର୍ଦ୍ଧରେ ପ୍ରଥମ ଗ୍ରହକୁ ସଂସ୍କାର କଲେ ଦ୍ୱିତୀୟ ଗ୍ରହ ହେବ । ଏହି ୨ୟ ଗ୍ରହକୁ ପୁଣି ମନ୍ଦୋଚ୍ଚରୁ ଅନ୍ତର କରି ମନ୍ଦକେନ୍ଦ୍ର ବାହାର କର ଏବଂ ପୁଣି ପୂର୍ବ ରୀତିରେ ମନ୍ଦ ଫଳ ଆଣି ସେ ସମସ୍ତକୁ ପୁଣି ମଧ୍ୟମ ଗ୍ରହରେ ସଂସ୍କାର କଲେ ତାହା (ତୃତୀୟ) ମନ୍ଦସ୍ଫୁଟ ଗ୍ରହ ହେବ । ଏହି ୩ୟ ମନ୍ଦସ୍ଫୁଟ ଗ୍ରହକୁ ଶୀଘ୍ରୋଚ୍ଚରୁ ଫେଡ଼ି ଶୀଘ୍ରକେନ୍ଦ୍ର ଓ ସେଥିରୁ ଶୀଘ୍ରଫଳ ବାହାର କର । ଏହି ଶୀଘ୍ର ଫଳ ସମୁଦାୟକୁ ତୃତୀୟ ମନ୍ଦସ୍ଫୁଟ ଗ୍ରହରେ ସଂସ୍କାର କଲେ ୪ର୍ଥ ଗ୍ରହ ହେବ । ଏହି ୪ର୍ଥ ଗ୍ରହହିଁ ବାସ୍ତବରେ ସ୍ଫୁଟ ଗ୍ରହ ।

ତ୍ରିଚତୁଃଫଳୟୋର୍ଘାତାତ୍ ଭୁଜସ୍ୟ ତୁ କଳାତ୍ମକୋଃ ।
ଦଶ-ଘ୍ନାନ୍ତ୍ୟ କର୍ଣ୍ଣବହ୍ରୁତାତ୍ ଫଳଲପ୍ତା ଯୁତୋଜ୍ଝତଃ ।୧୬୪।

ମନ୍ଦକେନ୍ଦ୍ରେଽଜତୌଳ୍ୟାଦୌ ସ ଭବେତ୍ ପଞ୍ଚମଃସ୍ଫୁଟଃ ।
ପୁନସ୍ତୃତୀୟ କେନ୍ଦ୍ରେଽସ୍ୟ କର୍କ୍ୟାଦସ୍ଥେ ତୁରୀୟକମ୍ ।୧୬୫।

ଫଳଂପଞ୍ଚେଷୁ-ଭକ୍ତାପ୍ତଂ ମନ୍ଦକୋଟିଜ୍ୟୟା ହତମ୍ ।
ତୁର୍ଯ୍ୟକର୍ଣ୍ଣହୃତଂ ଲବ୍ଧଂ ତୁରୀୟଫଳବଦ୍ଭୁଜେ ।୧୬୬।

ପଞ୍ଚମେ ସଂସ୍କୃତଂଚେତ୍ସ୍ୟାତ୍ ଷଷ୍ଠଃ ସ୍ପଷ୍ଟତମସ୍ତଦା ।
ଭବେତ୍ ସ ମନ୍ଦକେନ୍ଦ୍ରେ ତୁ ନକ୍ରାଦାବେବ ପଞ୍ଚମଃ ।୧୬୭।

ପୂର୍ବ ଶ୍ଳୋକରେ ଦିଆଯାଇଥିବା ରୀତିରେ ମଙ୍ଗଳର ୩ୟ ଓ ୪ର୍ଥ ଫଳକୁ ଗୁଣ (ଉଭୟକୁ କଳାଦ କରି ଗୁଣିବାକୁ ହେବ) । ଏହାକୁ ୧୦ରେ ଗୁଣି ଅନ୍ତ୍ୟ ( ଶେଷ ) କର୍ଣ୍ଣରେ ହରି ଲିପ୍ତାଦ ଫଳକୁ ମନ୍ଦକେନ୍ଦ୍ର ମେଷାଦ ୬ ରାଶିରେ ଥିଲା ବେଳେ ଗ୍ରହରେ (୪ର୍ଥ ସ୍ଫୁଟ ଗ୍ରହରେ) ଯୋଗ କରିବ ଏବଂ ମନ୍ଦକେନ୍ଦ୍ର ତୁଳାଦ ୬ ରାଶିରେ ଥିବାବେଳେ ବିୟୋଗ କରିବ । ତାହାହେଲେ ୪ର୍ଥ ଗ୍ରହ ୫ମ ଗ୍ରହ ହୋଇ ପାରିବ ।

ମଙ୍ଗଳର ୩ୟ ମନ୍ଦକେନ୍ଦ୍ର କର୍କ୍ୟାଦିରେ ଥିବାବେଳେ ୪ର୍ଥ ଫଳକୁ ୫୫ରେ ହର ଫଳକୁ ମନ୍ଦକୋଟି—ଜ୍ୟାରେ ଗୁଣି (୩ୟ ଥରର ମନ୍ଦକୋଟି ଜ୍ୟା) ୪ର୍ଥ କର୍ଣ୍ଣରେ ହର ଦେଲେ ଯେଉଁ କଳାଦି ଫଳ ହେବ ତାକୁ ୫ମ ଗ୍ରହରେ ସଂସ୍କାର (ଯୋଗ ବିୟୋଗ) କଲେ ୬ଷ୍ଠ ସ୍ଫୁଟ ଗ୍ରହ ହେବ । ମାତ୍ର ମନ୍ଦକେନ୍ଦ୍ର (୩ୟ ଥରର) ମକରାଦି ୬ ରାଶିରେ ଥିବାବେଳେ ଏହି ସଂସ୍କାର ଅନାବଶ୍ୟକ । ୫ମ ଗ୍ରହ ହିଁ ସ୍ପଷ୍ଟ ଗ୍ରହ ଆପେ ଆପେ ହୋଇଯିବ ।

ପଚେଚ୍ଚ ସଂସ୍କୃତାଜ୍ଜ୍ଞସ୍ୟ ଶୀଘ୍ରାନ୍ତ୍ୟଧସ୍ୟ ଶୋଧନାତ୍ ।
ପ୍ରାକ୍‌ଫଳାର୍ଦ୍ଧଂ ପୃଥଙ୍‌ନ୍ୟସ୍ୟ ଫଳେ ମାନ୍ଦ୍ୟାର୍ଦ୍ଧମାନ୍ଦ୍ୟକେ ।୧୨୮।

କୃତ୍ୱା ତୃତୀୟଂ ଦ୍ୱିଃସ୍ଥାପ୍ୟ-ମଧଃଶୈଘ୍ର୍ୟାର୍ଦ୍ଧ-ସଙ୍ଗୁଣାତ୍ ।
ଅନ୍ତ୍ୟ-ଶୈଘ୍ର୍ୟାର୍ଦ୍ଧ-ଭକ୍ତାପ୍ତଫଳଂ ତ୍ର୍ୟଂଶୋଜ୍ଝିତଂ ସ୍ଫୁଟମ୍ ।୧୨୯।

ମଧ୍ୟାତ୍ତତ୍ସଂସ୍କୃତାତ୍ ତୁର୍ଯ୍ୟଂ ଫଳମାନୀୟତଦ୍ଦ୍ୱିଧା ।
ଅଧସ୍ତୃତୀୟ କୋଟ୍ୟୁତ୍ଥଫଳଘ୍ନାତ୍ ତ୍ରିଜ୍ୟୟାହୃତାତ୍ ।୧୩୦।

ଲବ୍ଧମୂର୍ଦ୍ଧ୍ୱେ ଧନମୃଣଂ କ୍ରମାତ୍କର୍କିମୃଗାଦଗେ ।
ମନ୍ଦକେନ୍ଦ୍ରେ ସ୍ଫୁଟଂ ତସ୍ମାଦଥ ଭୁକ୍ତିର୍ବିବଚ୍ୟତେ ।୧୩୧।

ପଚେଚ୍ଚ ସଂସ୍କୃତ ବୁଧର ଶୀଘ୍ରୋଚ୍ଚରୁ ମଧ୍ୟମ ବୁଧକୁ ବାଦ ଦେଲେ ଯେଉଁ ଶୀଘ୍ରକେନ୍ଦ୍ର ହୁଏ ସେଥିରୁ ଆମାନ୍ତ ପ୍ରଥମ ଶୀଘ୍ର ଫଳାର୍ଦ୍ଧକୁ ପୃଥକ୍ ରଖି ସେହି ଫଳାର୍ଦ୍ଧ ସଂସ୍କୃତ ମଧ୍ୟମ ବୁଧରୁ ମନ୍ଦଫଳ ଆଣି ପୁଣି ଦୁଇ ଯାଗାରେ ରଖ (ତଳ ଉପର କର) । ତଳ ମନ୍ଦଫଳକୁ ଶୀଘ୍ର ଫଳର ଅଧାରେ ଗୁଣିବ । ପୁଣି ଏହି ଫଳକୁ ପୃଥକ୍ ସ୍ଥାପିତ ପ୍ରଥମ ଶୀଘ୍ର ଫଳାର୍ଦ୍ଧରେ ଗୁଣି ୪ର୍ଥ ପ୍ରକାରରେ ଅଣାଯାଇଥିବା ଶୀଘ୍ରଫଳାର୍ଦ୍ଧରେ ହରଲେ ଯେଉଁ ଫଳ ହେବ ତାର ⅓ ଯେତେ ହେବ ତାକୁ ପୁଣି ଧାଡ଼ିର ଉପରେ ଥିବା ମନ୍ଦ ଫଳରୁ ଫେଡ଼ିଲେ ମନ୍ଦଫଳ ସ୍ଫୁଟ ହେବ । ଏହି ସ୍ଫୁଟ ମନ୍ଦଫଳରେ ମଧ୍ୟମ ବୁଧକୁ ସଂସ୍କାର କରି ସେଥିରୁ ପୁଣି ୪ର୍ଥ ପ୍ରକାର ଶୀଘ୍ର ଫଳ ଆଣି ତାକୁ ଦୁଇ ଯାଗାରେ ରଖ । ତଳେ ଥିବା ଫଳକୁ ୩ୟ ପ୍ରକାରେ ଅଣା-ଯାଇଥିବା କୋଟି ଫଳରେ ଗୁଣି (ମନ୍ଦକୋଟି ଫଳରେ ଗୁଣି) ତ୍ରିଜ୍ୟାରେ ହର । ଏହି ଲବ୍ଧ ଫଳକୁ ୩ୟ ମନ୍ଦକେନ୍ଦ୍ର କର୍କ୍ୟାଦିରେ ଥିଲେ ଉର୍ଦ୍ଧ୍ୱ ସ୍ଥାପିତ ଫଳରେ ଯୋଗକର । ୩ୟ ମନ୍ଦକେନ୍ଦ୍ର ମକରାଦିରେ ଥିଲେ ଉର୍ଦ୍ଧ୍ୱ ସ୍ଥାପିତ ଫଳରୁ ଫେଡ଼ । ତାହାହେଲେ ବୁଧର ଶୀଘ୍ର ଫଳ ସ୍ଫୁଟ ହେବ । ଏହି ସ୍ଫୁଟ ଶୀଘ୍ର ଫଳରେ ସଂସ୍କୃତ ୩ୟ ମନ୍ଦସ୍ଫୁଟ ବୁଧ ଅତି ସ୍ଫୁଟ ହୁଏ । (ସୂର୍ଯ୍ୟ ସିଦ୍ଧାନ୍ତ ଆଦି ଗ୍ରନ୍ଥରେ ବୁଧ ଏତେ ସ୍ଫୁଟ ହୋଇପାରେ ନାହିଁ । ଏହାହିଁ ଏହାର ତାତ୍ପର୍ଯ୍ୟ )

ପୂର୍ବାପରଦନସ୍ପଷ୍ଟଗ୍ରହାନ୍ତରକଳାଗତଃ ।
ସ୍ଫୁଟେତ ସମ୍ମତା କାଞ୍ଚିଭେଦଗାପି ପ୍ରତକ୍ଷଣମ୍ ।୧୩୨।

ବର୍ତ୍ତମାନ ଗ୍ରହମାନଙ୍କର ଗତି ବର୍ଣ୍ଣନ କରାଯାଉଛି । ଗ୍ରହ ଗତି ପ୍ରତିକ୍ଷଣରେ ବିଲକ୍ଷଣ ହୋଇ ଭିନ୍ନ ଭିନ୍ନ ହେଉଥିଲେ ମଧ୍ୟ ପୂର୍ବ ପର ଦିନର ଦୁଇଟି ସ୍ଫୁଟ ଗ୍ରହର ଅନ୍ତରହିଁ ସେହି ଦିନର ସ୍ଫୁଟଗତି ।

ମନ୍ଦୋଚ୍ଚଭୁକ୍ତିରହିତା ମଧ୍ୟଭୁକ୍ତିର୍ଗ୍ରହସ୍ୟ ଯା ।
ମନ୍ଦକେନ୍ଦ୍ର-ଗତିଃ ସେୟଂ ମନ୍ଦକୋଟିଫଳଜ୍ୟୟା ।୧୩୩।

ଗୁଣିତା ତ୍ରିଜ୍ୟୟା ଭକ୍ତା ମନ୍ଦଭୁକ୍ତିଫଳଂଭବେତ୍ ।
କର୍କ୍ୟାଦ କେନ୍ଦ୍ରେ ତେନାଢ୍ୟା ମକରାଦୌ ଚ ବର୍ଜିତା ।୧୩୪।

ଗ୍ରହସ୍ୟ ମଧ୍ୟମାଭୁକ୍ତିର୍ମନ୍ଦସ୍ଫୁଟ-ଗତିର୍ଭବେତ୍ ।
ପ୍ରାତଃ ଯା ସକୃଦାନୀତା ତଦହୋରାତ୍ର ଇଷ୍ୟତେ ।୧୩୫।

ମନ୍ଦୋଚ୍ଚର ଦୈନିକ ଗତିକୁ ଗ୍ରହର ମଧ୍ୟମ ଗତିରୁ ବାଦ ଦେଲେ ମନ୍ଦକେନ୍ଦ୍ରର ଦୈନିକ ଗତି ହୋଇଥାଏ । ମନ୍ଦକେନ୍ଦ୍ରର ଦୈନିକଗତିକୁ (ଏହି) ମନ୍ଦ କୋଟିଫଳଜ୍ୟାରେ ଗୁଣି ତ୍ରିଜ୍ୟାରେ (୩୪୩୮) ଭାଗକଲେ ଦୈନିକ ମନ୍ଦଗତି ଫଳ ହୋଇଥାଏ । ମନ୍ଦ କେନ୍ଦ୍ର କର୍କଠାରୁ ୬ ରାଶିରେ ଥିବା ବେଳେ ଏହି ଫଳକୁ ଗ୍ରହର ମଧ୍ୟମ ଗତିରେ ଯୋଗକଲେ ଏବଂ ମନ୍ଦକେନ୍ଦ୍ର ମକରାଦ ୬ ରାଶିରେ ଥିବା ବେଳେ ଏହି ଫଳକୁ ଗ୍ରହର ମଧ୍ୟମ ଗତିରୁ ବିୟୋଗ କଲେ ଗ୍ରହର ମନ୍ଦସ୍ଫୁଟ ଗତି ହୁଏ । ସୂର୍ଯ୍ୟ ଉଦୟଠାରୁ ପୁଣି ଉଦୟ ପର୍ଯ୍ୟନ୍ତ ଏହାହିଁ ସେହି ଗ୍ରହର ମନ୍ଦସ୍ଫୁଟ ଗତି ବୋଲି ବୁଝିବାକୁ ହେବ ।

ପ୍ରାତରର୍କୋନଶୁଭ୍ରାଂଶୋସ୍ତିଥ୍ୟନ୍ତୋ ଯଃ ପ୍ରସାଧ୍ୟତେ ।
ପୁନସ୍ତତ୍କାଳଚନ୍ଦ୍ରସ୍ୟ ଗତ୍ୟା ତତ୍କାଳଜା ତୟା ।୧୩୬।

ସଂସ୍କାର୍ଯ୍ୟାସ୍ତତ୍ର ଶୁଦ୍ଧ୍ୟର୍ଥଂ ଗତଗମ୍ୟ ପଳାଦୟଃ ।
ଶ୍ରାଦ୍ଧାଦ ସମୟବ୍ୟାପ୍ତି ସନ୍ଦେହେ ଗ୍ରହଣେ ତଥା ।୧୩୭।

କର୍ମ୍ମେଦମିଷ୍ୟତେଽନ୍ୟତ୍ର ବ୍ୟବହାରେଷୁ ନୈବ ତତ୍ ।
ତେଷୁଗ୍ରାହ୍ୟଂ ସ୍ଫୁଟାର୍କେନ୍ଦ୍ୱୋଃ ପୂର୍ବାପରଦନାନ୍ତରମ୍ ।୧୩୮।

ସକାଳେ ସୂର୍ଯ୍ୟୋଦୟ ବେଳେ ତାତ୍କାଳିକ ରବିଚନ୍ଦ୍ରର ଅନ୍ତର କରି ତିଥି ଓ ତାର ଯେଉଁ ଶେଷକାଳ (ଅବଶିଷ୍ଟ), ସାଧିତ ହୁଏ । (ଉଦୟ କାଳୀନ ସ୍ପଷ୍ଟ ରବିଚନ୍ଦ୍ରରୁ ହିଁ ଏହା ହୋଇଯାଏ ) ତିଥ୍ୟନ୍ତ କାଳରେ ଚନ୍ଦ୍ରର ସ୍ଫୁଟ ଗତି ଆଣି ସେହି ତିଥ୍ୟନ୍ତକୁ ପୁଣି ସଂସ୍କାର କରିବାକୁ ହୋଇଥାଏ । ଏତେବେଳେ ତିଥିର ଆଦି ଓ ଅନ୍ତକୁ ମଧ୍ୟ ସଂସ୍କାର କରିବାର କଥା । ମାତ୍ର ଶ୍ରାଦ୍ଧ ସମୟ ଓ ଗ୍ରହଣରେ କିଛି ସନ୍ଦେହ ହେଲେ ଏପରି କରିବାକୁ ହେବ । ଅନ୍ୟାନ୍ୟ ସାମାନ୍ୟ ବ୍ୟାବାହାରିକ କର୍ମରେ ଏତେ ସ୍ପଷ୍ଟ କରିବା ଆବଶ୍ୟକ ହୁଏ ନାହିଁ । ଏତେବେଳେ ସ୍ଫୁଟ ରବିଚନ୍ଦ୍ରର ଦୈନିକ ଗତି ଦ୍ୱାରାହିଁ ସମସ୍ତ କର୍ମ କରାଯିବ । ଏହି ଦୈନିକ ଗତି ପୁଣି ଔଦୟିକ ।

ଶୀଘ୍ରୋଚ୍ଚଭୁକ୍ତିର୍ମନ୍ଦୋନା ଶୀଘ୍ରକେନ୍ଦ୍ରଗତିର୍ମତା ।
ଫଳାଂଶାନ୍ ଖାଙ୍କଭଗେଭ୍ୟଃ ଶୈଘ୍ର୍ୟାନ୍ ସଂଶୋଧ୍ୟ ଶେଷତଃ ।୧୩୯।

କ୍ରମଜ୍ୟା ପିଣ୍ଡମାନୀୟ ତେନ ଦ୍ରାକ୍‌କେନ୍ଦ୍ରଜାଂ ଗତମ୍ ।
ଗୁଣିତାଂ ଚଳକର୍ଣ୍ଣାପ୍ତାଂ ଶୀଘ୍ରଭୁକ୍ତେର୍ବିଶୋଧୟେତ୍ ।୧୪୦।

ଶୀଘ୍ରସ୍ଫୁଟଗତିଃ ଶେଷୋ ଯଦଶୁଦ୍ଧିର୍ବିଲୋମତଃ ।
ସମ୍ଭବେଦବଶିଷ୍ଟା ତଦ୍‌ଗତି-ବକ୍ରେତି କଥ୍ୟତେ ।୧୪୧।

ଏବଂ ମନ୍ଦସ୍ଫୁଟା ଶୀଘ୍ର ସ୍ଫୁଟା ଭୁକ୍ତିର୍ଦ୍ୱିଧୋଦିତା ।
ସ୍ଫୁଟଭୁକ୍ତି-ରଥୋ ତାରାଖେଚରାଣାଂ ବିବିଚ୍ୟତେ ।୧୪୨।

ଶୀଘ୍ରୋଚ୍ଚ ଗତିରୁ ଗ୍ରହର ଗତି ଫେଡ଼ । ଏହା ଶୀଘ୍ର କେନ୍ଦ୍ରର ଗତି ହେବ । ଶୀଘ୍ର ଫଳକୁ ୯୦°ରୁ ବିଯୋଗ କରି ଶୀଘ୍ର ଫଳ କୋଟିଜ୍ୟା ଆଣ । ଏହି ଫଳ କୋଟିଜ୍ୟାକୁ ଶୀଘ୍ର କେନ୍ଦ୍ରର ଦୈନିକ ଗତିରେ ଗୁଣି ଶୀଘ୍ର କର୍ଣ୍ଣରେ ତାକୁ ହରି ଫଳକୁ ଶୀଘ୍ରୋଚ୍ଚ ଗତିରୁ ପୁଣି ଫେଡ଼ । ଫଳ ହେବ ଶୀଘ୍ର ସ୍ଫୁଟ ଗତି । ଯଦି ଉକ୍ତ ଫଳ ବେଶି ହେବା ଫଳରେ ଶୀଘ୍ରୋଚ୍ଚଗତି ସେଥିରୁ ଫେଡ଼ ହୋଇ ଯାଇପାରେ, ତାହାହେଲେ ଉଭୟଙ୍କ ଅନ୍ତର ଫଳରେ ଯାହା ଅବଶେଷ ରହିବ ତାକୁ ବକ୍ର ଗତି କୁହାଯିବ ।

ଏହିପରି ଭାବରେ ରବି ଓ ଚନ୍ଦ୍ରକୁ ଛାଡ଼ି ଅନ୍ୟ ୫ ଗୋଟି ତାରାଗ୍ରହମାନଙ୍କର ମନ୍ଦସ୍ଫୁଟ ଓ ଶୀଘ୍ରସ୍ଫୁଟ ହିସାବରେ ଦୁଇ ପ୍ରସିଦ୍ଧ ଗତି ଅଛି । ରବି ଓ ଚନ୍ଦ୍ରର ଗୋଟିଏ ମାତ୍ର ମନ୍ଦସ୍ଫୁଟ ଗତି । ଏଣିକି ତାରାଗ୍ରହ ମଙ୍ଗଳ ଆଦିଙ୍କର ସ୍ଫୁଟ ଗତି ବିଚାର କରାଯାଉ ଅଛି ।

ଶୀଘ୍ରସ୍ଫୁଟଗତେ-ର୍ମଧ୍ୟାଧିକା ଚେନ୍ମଧ୍ୟଶୋଧିତା ।
ମଧ୍ୟୋନାଚେଶୋଧିତା ମଧ୍ୟ-ଭୁକ୍ତେର୍ଯସ୍ୟାତ୍ତଦନ୍ତରମ୍ ।୧୪୩।

ବକ୍ରାମଧ୍ୟାନ୍ୱିତା ତ୍ୱପି ଶୈଘ୍ର୍ୟମଧ୍ୟାନ୍ତରାଭିଧମ୍ ।
ତସ୍ୟାଦାଦ୍ୟଂ ଗତଫଳଂ ତଦର୍ଦ୍ଧେନୈବମଧ୍ୟମା ।୧୪୪।

ଶୀଘ୍ରସ୍ଫୁଟଗତେର୍ମଧ୍ୟାଧିକୋନତ୍ୱେ ଯୁତୋନିତା ।
ବକ୍ରତ୍ୱେଽପ୍ୟୂନତା ତେନ ଭୁକ୍ତି ସ୍ୟାତ୍ପ୍ରଥମା ଗତଃ ।୧୪୫।

ସମ୍ଭବେଦ୍‌ବ୍ୟସ୍ତଶୁଦ୍ଧିଶ୍ଚେଦ୍‌ବକ୍ରା ସା ଶେଷସମ୍ମିତା ।
ମନ୍ଦକୋଟିଫଳଘ୍ନୀ ସା ବିଜ୍ୟାପ୍ତା ତତ୍ଫଳାର୍ଦ୍ଧତଃ ।୧୪୬।

(୧) ଶୀଘ୍ର ସ୍ଫୁଟଗତି ଗ୍ରହର ଦୈନିକ ମଧ୍ୟଗତିରୁ ଅଧିକ ହେଲେ ଶୀଘ୍ର ସ୍ଫୁଟଗତିରୁ ଦୈନିକ ମଧ୍ୟମ ଗତି ଫେଡ଼ । (୨) ଶୀଘ୍ରସ୍ଫୁଟ ଗତି ଦୈନିକ ମଧ୍ୟମ ଗତିରୁ କମ୍ ହେଲେ ମଧ୍ୟମ ଗତିରୁ ଶୀଘ୍ରସ୍ଫୁଟ ଗତି ଫେଡ଼ । (୩) ଶୀଘ୍ର ସ୍ଫୁଟଗତି ବକ୍ର ଥିଲେ ତାକୁ ଦୈନିକ ମଧ୍ୟମ ଗ୍ରହ ଗତିରେ ମିଶାଅ । ଏ ତିନୋଟି ଯାକର ନାମ ଆଦ୍ୟ ଗତି ଫଳ । ଏହି ଆଦ୍ୟ ଗତି ଫଳର ଅଧା ନିଅ । (୧) ଅବସ୍ଥାରେ ଏହାକୁ ମଧ୍ୟମ ଗତିରେ ମିଶାଅ । (୨) ଓ (୩) ଅବସ୍ଥାରେ ଏହାକୁ ଦୈନିକ ମଧ୍ୟମ ଗତିରୁ ଫେଡ଼ । ଫଳ ପ୍ରଥମ ଗତି ଏବଂ ଏହା ପ୍ରାୟ ମାର୍ଗୀ ଗତିହିଁ ହେବ । (୩) ଅବସ୍ଥାରେ କେବେ କେବେ ଏହା ବକ୍ର ମଧ୍ୟ ହୋଇଥାଏ ।

ଯୁତୋନା କର୍କିନକ୍ରାଦକେନ୍ଦ୍ରୟୋଃ ସ୍ୟାଦ୍ ଦ୍ୱିତୀୟକା ।
କୋଟୀଫଳଘ୍ନୀ ବିଜ୍ୟାପ୍ତା ସା ତତ୍ପୂର୍ଣ୍ଣଫଳେନ ଚ ।୧୪୭।

ସଂସ୍କୃତା ମଧ୍ୟମା ପ୍ରାଗ୍‌ବତ୍ତୃତୀୟା ସ୍ୟାତ୍ତଦୁକ୍ତିତା ।
ଶୀଘ୍ରାନ୍ତ୍ୟକେନ୍ଦ୍ରଭୁକ୍ତିଃ ସା ଫଳଖାଙ୍କାନ୍ତରଜ୍ୟୟା ।୧୪୮।

କ୍ଷୁଣ୍ଣା କର୍ଣ୍ଣାପ୍ତହୀନାଶୁଭୁକ୍ତିଃ ସ୍ଫୁଟଗତିର୍ଭବେତ୍ ।
ବାମଶୁଦ୍ଧୌ ତଥା ବକ୍ରା ସ୍ଫୁଟଭୁକ୍ତି ତୃତୀୟୟୋଃ ।୧୪୯।

ଅନ୍ତରଂ ସ୍ୟାଦ୍ ଗତଫଳଂ ତୁରୀୟଂ ପ୍ରଥମକ୍ରମାତ୍ ।
କଦାଚକ୍ରତସ୍ୟୈବ ହୌଜଦ୍ୱିସୌକ୍ଷେକ୍ତଂ ଭୁକ୍ତିସାଧନମ୍ ।୧୫୦।

ଏହି ପ୍ରଥମ ଗତ୍ତକୁ ମନ୍ଦ କୋଟି ଫଳରେ ଗୁଣି ତ୍ରିଜ୍ୟାରେ ହରଲେ ଯାହା ଫଳ ହେବ, ତାହାର ଅଧା ନିଅ । ମନ୍ଦ କେନ୍ଦ୍ର କର୍କଟାଦି ବା ମକରାଦିରେ ଥିଲେ ଏହି ଅଧାକୁ ପ୍ରଥମ ଗତ୍ତରେ ଯଥାକ୍ରମେ ଯୋଗ ଓ ବିୟୋଗ କଲେ ଫଳ ଦ୍ୱିତୀୟ ଗତ୍ତ ହେବ ।

ଏହି ଦ୍ୱିତୀୟ ଗତ୍ତକୁ ମନ୍ଦକୋଟି ଫଳରେ ଗୁଣି ୩୪୩୮ରେ ହର । ପୂର୍ବ ଫଳକୁ ଗ୍ରହର ମଧ୍ୟମ ଗତ୍ତରେ ପୂର୍ବପରି ସଂସ୍କାର କର । ତାହାହେଲେ ତାହା ହେବ ୩ୟ ଗତ୍ତ ।

ଏହି ୩ୟ ଗତ୍ତକୁ ଶୀଘ୍ରୋଚ୍ଚ ଗତ୍ତରୁ ବାଦ ଦିଅ । ଫଳ ହେବ ଶେଷ ଶୀଘ୍ର କେନ୍ଦ୍ର ଗତ୍ତ । ଏହାକୁ ଫଳ କୋଟିଜ୍ୟାରେ ଗୁଣି (ଶୀଘ୍ର ଫଳ କୋଟିଜ୍ୟା) ଶୀଘ୍ର କର୍ଣ୍ଣରେ ଭାଗ ଦେଲେ ଯାହା ଫଳ ହେବ ତାହାକୁ ଶୀଘ୍ରୋଚ୍ଚ ଗତ୍ତରୁ ବାଦ ଦେଲେ ଫଳ ହେବ ସ୍ଫୁଟ-ଗତ୍ତ । ଏଠାରେ ବିପରୀତ ଶୁଦ୍ଧି ହେଲେ ବକ୍ରଗତ୍ତ ହେବ । ସ୍ଫୁଟଗତ୍ତ ଓ ୩ୟ ଗତ୍ତର ଅନ୍ତରରେ ୪ର୍ଥ ଗତ୍ତ ଫଳ ହୁଏ । ସୂର୍ଯ୍ୟ ସିଦ୍ଧାନ୍ତରେ ଦିଆ ଯାଇଥିବା ଗତ୍ତ ସାଧନ ପ୍ରଣାଳୀ ପ୍ରାୟ ଠିକ୍ ହେଉ ନ ଥିବାରୁ ଗ୍ରନ୍ଥକର୍ତ୍ତା ସେ ଗତ୍ତ ଗ୍ରହଣ କରିନାହାନ୍ତି ।

**କୁଜଜ୍ଞଶନିମନ୍ଦୋଚ୍ଚଗତୟସ୍ତୁ ଜୂବକ୍ରିତାଃ**
**ପ୍ରଥମାୟାଂ ଦ୍ୱିତୀୟାୟାଂ ଶୋଧ୍ୟା ଯୋଜ୍ୟାଃ କ୍ରମେଣ ଚ ।୧୫୧।**

**ତତୋ ଦ୍ୱିତୀୟଗତୀସାଧ୍ୟେ ପ୍ରାଗ୍‌ବନ୍ମନ୍ଦକୋଟିଫଳାହତେଃ**
**ଜ୍ଞସ୍ୟ ତୁ ସ୍ପଷ୍ଟ-ଶୀଘ୍ରୋଚ୍ଚଭୁକ୍ତେର୍ମଧ୍ୟ ତୃତୀୟକେ ।୧୫୨।**

**ପ୍ରୋକ୍ତ୍ୟାଦତୁର୍ଯ୍ୟେ କର୍ତ୍ତବ୍ୟେ ତତ୍ର ତୁର୍ଯ୍ୟ ଗତେଃ ଫଳମ୍**
**ପୃଥକ୍ ସଂସ୍ଥାପ୍ୟ ତଦଧୋ ମନ୍ଦକୋଟିଫଳାହତମ୍ ।୧୫୩।**

**ତ୍ରିଜ୍ୟାପ୍ତଂ ମନ୍ଦକେନ୍ଦ୍ରସ୍ୟ କର୍କ୍ୟାଦୌ ମକରାଦିକେ**
**ଧନର୍ଣ୍ଣମୂର୍ଦ୍ଧ୍ୱେ କ୍ରମଶଃ କୃତ୍ୱା ତଦ୍ ବିସ୍ଫୁଟଂ ଭବେତ୍ ।୧୫୪।**

ମଙ୍ଗଳ, ବୁଧ ଓ ଶନିର ମନ୍ଦୋଚ୍ଚ ଗତ୍ତ ମାର୍ଗୀ ଥିଲେ ପ୍ରଥମ ଓ ଦ୍ୱିତୀୟ ଗତ୍ତରେ ଏହା ବିଯୋଗ କରିବ । ଯଦି ତାହା ବକ୍ରୀ (ମନ୍ଦୋଚ୍ଚ ଗତ୍ତ) ହୋଇଥାଏ, ତାହାହେଲେ ତାହା ପ୍ରଥମ ଓ ଦ୍ୱିତୀୟ ଗତ୍ତରେ ଯୋଗ କରିବାକୁ ହେବ । ଏହି ସଂସ୍କୃତ ପ୍ରଥମ ଓ ଦ୍ୱିତୀୟକୁ ନେଇ ପୂର୍ବରୀତିରେ ମନ୍ଦକୋଟି ଫଳ ଗୁଣନରୁ ୨ୟ ୩ୟ ଗତ୍ତ ସାଧନ କରିବାକୁ ହେବ ।

ବୁଧର ନୂତନ ଦ୍ୱିତୀୟ ଓ ତୃତୀୟ ଗତ୍ତକୁ ସ୍ଫୁଟ ଶୀଘ୍ରୋଚ୍ଚ ଗତ୍ତରୁ ବାଦ ଦିଅ । ଏଥିରୁ ଆଦ୍ୟ ଓ ଚତୁର୍ଥ ଗତ୍ତ ସାଧନ କରାଯିବ ।

ବୁଧର ୪ର୍ଥ ଗଣ୍ଡଫଳ ଦୁଇ ଯାଗାରେ ରଖ । ଗୋଟିଏ ଯାଗାରେ ତାକୁ ମନ୍ଦ କୋଟି ଫଳରେ ଗୁଣି ତ୍ରିଜ୍ୟାରେ ହର । ଫଳକୁ ୪ର୍ଥ ଗଣ୍ଡଫଳରେ ଯୋଗ ବା ବିଯୋଗ କରାଯିବ । ମନ୍ଦ କେନ୍ଦ୍ର କର୍କ୍ୟାଦି ୬ ରାଶିରେ ଥିଲେ ଯୋଗ, ଅନ୍ୟଥା ବିଯୋଗ । ଏପରି କରିବାରେ ଗଣ୍ଡଫଳ ବିଶେଷ ଭାବରେ ସ୍ଫୁଟ ହେବ ।

**ଶୀଘ୍ରାର୍ଦ୍ଧଭୁକ୍ତୌ ବକ୍ରାୟାଂ ଯଦ ମାନ୍ଦ୍ୟାର୍ଦ୍ଧଜଂ ଫଳମ୍ ।**
**ଋଣଂ ତଦା ତୟୋର୍ଯୋଗୋ ଧନଂ ଚେଦ୍‌ବିଯୁତେର୍ଦ୍ୱୟୋଃ ।୯୫୫।**

**ଶେଷୋ ଦ୍ୱିତୀୟଭୁକ୍ତିଃ ସ୍ୟାଦ୍ ବକ୍ରୈବାସ୍ୟାସ୍ତୁ ସଂସ୍କୃତେଃ**
**ଯଥ୍ୟାନ୍ମନ୍ଦଫଳଂ କର୍କିନକ୍ରାଦେର୍ୟାଃ ସ୍ୱର୍ଣ୍ଣମେବ ତତ୍ ।୯୫୬।**

**ସ୍ଫୁରନ୍ତ ଗତ୍ୟାନୟନେ ବହୁଧା କଳ୍ପନା ଅପି**
**କ୍ଲିଷ୍ଟଭାବାଦହ ତ୍ୟକ୍ତା ଗ୍ରହସଞ୍ଚାରଯୁଦ୍ଧୟୋଃ ।୯୫୭।**

ଶୀଘ୍ରାର୍ଦ୍ଧ ଗଣ୍ଡ ବକ୍ର ହେବା ବେଳେ ଯଦି ମନ୍ଦାର୍ଦ୍ଧଗଣ୍ଡ ଫଳ ଋଣ ହୁଏ, ତାହା ହେଲେ ଉଭୟଙ୍କୁ ଯୋଗ କର । ମନ୍ଦାର୍ଦ୍ଧ ଗଣ୍ଡଫଳ ଧନ ହେଲେ, କିନ୍ତୁ; ଉଭୟଙ୍କର ଅନ୍ତର କର । ଫଳ ବକ୍ର ଗଣ୍ଡ ହେବ ଏବଂ ଏହା ହିଁ ସ୍ପଷ୍ଟ ଗଣ୍ଡ ।

ଏହାପରେ ଯେଉଁ ମନ୍ଦଗଣ୍ଡ ଫଳ ଆସେ କର୍କ୍ୟାଦି ୬ ରାଶିରେ ଏବଂ ମକରାଦି ୬ ରାଶିରେ (ଗ୍ରହଥିଲେ) ତାହାକୁ (ଉକ୍ତ ଗ୍ରହ ଗଣ୍ଡରୁ) ଯୋଗ ବା ବିୟୋଗ କରିବା କଥା ।

ମଧ୍ୟଗଣ୍ଡକୁ ସ୍ପଷ୍ଟ କରିବା ଦିଗରେ ଅନେକ ଗୁଡ଼ିଏ ଉପାୟ ଆମ୍ଭମାନରେ ଆପେ ଆପେ ପ୍ରତିଭାତ ହେଉଅଛନ୍ତି । ମାତ୍ର ସେଗୁଡ଼ିକୁ ଅତ୍ୟନ୍ତ କ୍ଲିଷ୍ଟ ଥିବା ଜାଣି ସେଗୁଡ଼ିକୁ ଆଉ ଏଠାରେ ଦେଉନାହୁଁ ।

**ବର୍ତ୍ତମାନୈଷ୍ୟ ଦିନଜାସ୍ଫୁଟଗ୍ରହକଳାନ୍ତରମ୍ ।**
**ଗୃହ୍ୟତାଂ ଭୁକ୍ତିରତ୍ୟର୍କଚନ୍ଦ୍ରୟୋସ୍ତୁ ବିଶେଷତଃ ।୯୫୮।**

ଗ୍ରହ ଗୋଟିଏ ରାଶିରୁ ଅନ୍ୟ ରାଶିକୁ ଗଲାବେଳେ ଓ ଗ୍ରହଯୁଦ୍ଧ ହେବାବେଳେ ଗ୍ରହର ଦୈନିକ ସ୍ପଷ୍ଟ ଗଣ୍ଡ ନେଇ (ଆଦ୍ୟଦିନ ଓ ତାହାପର ଦିନ ଗ୍ରହର ଅନ୍ତର) କାର୍ଯ୍ୟ କରିବାକୁ ହେବ । ମାତ୍ର ରବି ଓ ଚନ୍ଦ୍ରଙ୍କ ସମ୍ବନ୍ଧେ ଅନ୍ୟ ପ୍ରଣାଳୀ ଅବଲମ୍ବନ କରାଯିବ ।

**ଗୁଣର୍ତ୍ତୁଚନ୍ଦ୍ରୈସ୍ତର୍କୈର୍ନ୍ଦୈରସପୃଷ୍ଠୈର୍ୟର୍ନଗାଷ୍ଟିଭିଃ ।**
**ଶରରୁଦ୍ରୈଃ ଶୁରୁର୍ଥାଂଶୁକେନ୍ଦ୍ରାଂଶୈର୍ଭୁକ୍ତାଦୟଃ ।୯୫୯।**

ସୂର୍ଯ୍ୟସିଦ୍ଧାନ୍ତେ—

ଭବନ୍ତି ବକ୍ରିଣସ୍ତେ ତୈଃ ସ୍ୱୈଃ ସ୍ୱୈଃ ସ୍ୱୈଶ୍ଚକ୍ରାଦ୍ ବଶୋଧିତୈଃ ।
ଅବଶିଷ୍ଟାଂଶତୁଲ୍ୟାନ୍ତ୍ୟକେନ୍ଦ୍ରୈରୁଜ୍‌ଝନ୍ତି ବକ୍ରିତାମ୍ ।ଇତା ୧୭୦।

ବ୍ୟବହାରେ ଚ ଦୃକ୍‌ସିଦ୍ଧାବୁଦୟାସ୍ତମୟୌ ଦ୍ୱିଧା ।
ଖେଚରାଣାଂ ସ୍ଥୂଳସୂକ୍ଷ୍ମୌ କଥ୍ୟେତେ ପ୍ରଥମାଦ୍ବହ ।୧୭୧।

ପ୍ରତୀଚ୍ୟାମନ୍ତ୍ୟ-କେନ୍ଦ୍ରାଶୈରସ୍ତଂ ଯାନ୍ତି କୁଜାଦୟଃ ।
ଦୃକ୍ ସୁଚରୈର୍ଗୋ୍ଽର୍ଥଶଶିଭିରସର୍ବେଦାଗ୍ନିଭିଃ କ୍ରମାତ୍ ।୧୭୨।

କୁଜ୍ଞୁଦ୍‌ଘନୈସ୍ତ୍ୟବ୍‌ଧି ଗୁଣୈଃ ପ୍ରାଚ୍ୟାମୁଦ୍ୟନ୍ତି ତେ ପୁନଃ ।
ଦ୍ୱିଘ୍ନେନ୍ଦ୍ରୈଃ କୁନଖୈଃ ଶକ୍ରୈର୍ବାଣାଷ୍ଟ-ବଧୁଭିର୍ଘନୈଃ ।୧୭୩।

ପ୍ରାଚ୍ୟ ମସ୍ତଂ ଜ୍ଞଶୁକ୍ରୌ ତୁ ଦଗ୍‌ଗୁଣୈରସକର୍ଣ୍ଣଚୈଃ ।
ପ୍ରତୀଚ୍ୟାମୁଦୟଂ ଯାତଃ ଖଶରୈଃ କୃତବାହୁଭିଃ ।୧୭୪।

ନିମ୍ନଲିଖିତ ମତେ ଗ୍ରହମାନେ ବକ୍ରୀ ହୁଅନ୍ତି ।

| | | | | |
|---|---|---|---|---|
| ମଙ୍ଗଳ | — | ୧୬୩° | ୪ର୍ଥ ଶୀଘ୍ର | କେନ୍ଦ୍ରାଂଶରେ |
| ବୁଧ | — | ୧୪୬° | ,, | ,, |
| ବୃହସ୍ପତି | — | ୧୨୬° | ,, | ,, |
| ଶୁକ୍ର | — | ୧୬୭° | ,, | ,, |
| ଶନି | — | ୧୧୫° | ,, | ,, |

୩୬୦°ରୁ ଏହି ଚତୁର୍ଥ ଶୀଘ୍ର କେନ୍ଦ୍ରାଂଶ ବାଦ ଦେଲେ ଯେତେ ହେବ ସେତିକ ସେତିକ ଅଂଶରେ ଉକ୍ତ ଗ୍ରହମାନେ ମାର୍ଗୀ ହେବେ ।

ଗ୍ରହମାନଙ୍କର ଉଦୟ ଓ ଅସ୍ତାଂଶ ଦୁଇ ପ୍ରକାର । ଗୋଟିଏ ବ୍ୟାବହାରିକ ଓ ଅନ୍ୟଟି ଦୃକ୍‌ସିଦ୍ଧ । ବ୍ୟାବହାରିକକୁ ସ୍ଥୂଳ ଓ ଦୃକ୍‌ସିଦ୍ଧକୁ ସୂକ୍ଷ୍ମ କୁହାଯାଇଥାଏ । ମଙ୍ଗଳ, ବୃହସ୍ପତି, ବୁଧ, ଶୁକ୍ର ଓ ଶନି ସେମାନଙ୍କ ନିମନ୍ତେ—ନିର୍ଦ୍ଦିଷ୍ଟ କେନ୍ଦ୍ରାଂଶରେ ପଶ୍ଚିମରେ ଅସ୍ତ ହୁଅନ୍ତି ଏବଂ ପୂର୍ବରେ ଉଦୟ ହୁଅନ୍ତି । ଏଗୁଡ଼ିକ ଯଥାକ୍ରମେ ତଳେ ଦିଆଯାଉଅଛି ।

| | | | |
|---|---|---|---|
| ମଙ୍ଗଳ | — | ୩୩୨° | ଅନ୍ୟ ଶୀଘ୍ର କେନ୍ଦ୍ରାଂଶରେ ପଶ୍ଚିମାସ୍ତ ହୁଏ । |
| ବୁଧ | — | ୧୫୯° | " " " |
| ବୃହସ୍ପତି | — | ୩୪୭° | " " " |
| ଶୁକ୍ର | — | ୧୨୭° | " " " |
| ଶନି | — | ୩୪୩° | " " " |
| ମଙ୍ଗଳ | — | ୨୮° | ଅନ୍ୟ ଶୀଘ୍ର କେନ୍ଦ୍ରାଂଶରେ ପୂର୍ବରେ ଉଦିତ ହୁଏ । |
| ବୁଧ | — | ୨୦୧° | " " " " |
| ବୃହସ୍ପତି | — | ୧୪° | " " " " |
| ଶୁକ୍ର | — | ୧୮୩° | " " " " |
| ଶନି | — | ୧୭° | " " " " |
| ବୁଧ | — | ୩୧୦° | ଅନ୍ୟ ଶୀଘ୍ର କେନ୍ଦ୍ରାଂଶରେ ପୂର୍ବାସ୍ତ ହୁଏ । |
| ଶୁକ୍ର | — | ୩୩୭° | " " " " |
| ବୁଧ | — | ୫୦° | ଅନ୍ୟ ଶୀଘ୍ର କେନ୍ଦ୍ରାଂଶରେ ପଶ୍ଚିମରେ ଉଦିତ ହୁଏ । |
| ଶୁକ୍ର | — | ୨୪° | " " " " |

**ରୁଦ୍ରୈ ରୁନୋଽଧିକଶ୍ଚନ୍ଦ୍ରଃ ସୂର୍ଯ୍ୟାଦସ୍ତମୁଦ୍‌ଗମ୍ ।**
**ଅଥ ସ୍ପଷ୍ଟମନ୍ଦଶୀଘ୍ରାଭ୍ୟାଂ ପୂର୍ବୋକ୍ତକ୍ରମତଶ୍ଚ୍ୟୁତଃ ।୧୭୪।**

ଚନ୍ଦ୍ର ସୂର୍ଯ୍ୟଠାରୁ ୧୧° ଅଂଶ ପଛରେ ରହିଲେ ଆଉ ଦେଖାଯାଏ ନାହିଁ—ଅସ୍ତ ହୁଏ । ପୁଣି ସୂର୍ଯ୍ୟଠାରୁ ୧୧° ଅଂଶ ଆଗକୁ ରହିଲେ ଉଦୟ ହେବାକୁ ଲାଗେ । ଏଠାରେ ଯେଉଁ ଉଦୟ ଅସ୍ତ କଥା କୁହାଯାଇଛି ତାହା ସୂର୍ଯ୍ୟଙ୍କୁ ନେଇ ହେଉଥିବାରୁ ସାଧାରଣ ଉଦୟ ଓ ଅସ୍ତର ଏଥିରେ କିଛି ସମ୍ବନ୍ଧ ନାହିଁ ।

**ସ୍ଫୁଟଗ୍ରହୋ ମନ୍ଦଚଳୈଃ ଫଳୈର୍ୟଦ୍ୱ୍ୟସ୍ତ-ଧନର୍ଣ୍ଣକୈଃ ।**
**ମୁହୁଃ ସୁସଂସ୍କୃତଃ ସ୍ଥୈର୍ଯ୍ୟଂ ପ୍ରାପ୍ତୋମଧ୍ୟଗହୋ ଭବେତ୍ ।୧୭୭।**

ସ୍ଫୁଟ ଗ୍ରହରୁ ମଧ୍ୟମ ଗ୍ରହ ଆଣିବାକୁ ହେଲେ ସେଥିରେ ମନ୍ଦ ଓ ଶୀଘ୍ର ଫଳକୁ ବିପରୀତ କ୍ରମରେ ସଂସ୍କାର କରିବାକୁ ହେବ । ଥରେ ମଧ୍ୟ ଗ୍ରହ ଏପରି ଆଣିବା ପରେ ପୁଣି ପୂର୍ବ କ୍ରମରେ ସାଧନ କରିବାକୁ ହେବ । ଏପରି ଭାବରେ ଯେତେବେଳେ ଦୁଇଟି ମଧ୍ୟଗ୍ରହ ସମାନ ହେବ, କିଛି ଅନ୍ତର ନ ରହିବ, ସେତେବେଳେ ଉକ୍ତ ମଧ୍ୟ ଗ୍ରହ ହିଁ ମଧ୍ୟ ହୋଇ ରହିବ ।

ଗ୍ରହସ୍ଫୁଟୀକରଣପରଶ୍ରମଵସ—
ନ୍ମନୁଷ୍ୟହୃଦ୍ ପ୍ରମଦପଦଂ ବଦନ୍ତ ଯତ୍।
ବଲଖ୍ୟତେ ମୃଦୁଚଲଖଣ୍ଡଜଂ ଫଲଂ
ମୟାମଲଂ ଚପଲବବୋଧଦଂ ହ ତତ୍ ।୧୭୭।

ଶୂନ୍ୟାଦସିଦ୍ଧା-ବଧି ଖଣ୍ଡସଂଖ୍ୟାଧୋଽଧୋଲଖେନ୍ମାନ୍ଦ୍ୟଫଲଂଲବାଦ୍ୟମ୍ ।
ତଦନ୍ତରଂ ସର୍ବଖଗସ୍ୟ କୋଟେଃ ଫଲଂକୁଜାଦେଶ୍ଚଗତେ ରବୀନ୍ଦ୍ୱୋଃ।୧୭୮।

ଖାଦ୍ୟଷ୍ଟବେଦାବଧି ଖଣ୍ଡସଂଖ୍ୟା ତଳେ ତଥା ଶୈଘ୍ର୍ୟଫଲଂ-ଲବାଦ୍ୟମ୍
ଖଣ୍ଡାନ୍ତଜଂ ଖଣ୍ଡଭଲାନ୍ତରୋତ୍ଥଲପ୍ତାଦୟସ୍ତଚ୍ଚଲକର୍ଣ୍ଣଲପ୍ତାଃ ।୧୭୯।

ପଶ୍ଚାତ୍ ଫଲାଦ୍ୟସ୍ୟ ବଲେଖନୀୟା
ବକ୍ରପ୍ରବେଶାପଗମସ୍ୱଭାଗାଃ
ଦ୍ରାକ୍‌କେନ୍ଦ୍ରଜାଶ୍ଚାସ୍ତମୟୋଦୟାଂଶାଃ
କୁଜଜ୍ଞଦେବେଜ୍ୟସିତାସିତାନାମ୍ ।୧୮୦।

ଗ୍ରହସ୍ଫୁଟ କରବା ଏତେ ଗୋଳମାଳଆ ଓ ସେଥିରେ ଭୁଲ ହୋଇଯିବାର ଏତେ ଆଶଙ୍କା ଯେ ସେଥି ନମନ୍ତେ ଗ୍ରନ୍ଥକର୍ତ୍ତା ବହୁତ ସୁବଧା କରଦେବାକୁ ଚୃହାନ୍ତ । ସେଥି ନମନ୍ତେ ୦ ରୁ ଆରମ୍ଭ କର ୨୪ ଖଣ୍ଡ ପର୍ଯ୍ୟନ୍ତ ମନ୍ଦ ଓ ଶୀଘ୍ର ଫଳର ତାଲକା ପରଶିଷ୍ଟରେ ଦେଇଅଛନ୍ତ । ସମସ୍ତ ଗ୍ରହର କୋଟିଫଳ, ମଙ୍ଗଳ ଆଦ ଗ୍ରହର ଗଣ୍ଡଫଳ, ରବ ଚନ୍ଦ୍ରର ଗଣ୍ଡଫଳ, ୪୮ ଖଣ୍ଡର ଶୀଘ୍ରଫଳ, ଖଣ୍ଡ ଫଳାନ୍ତର ଶୀଘ୍ର କର୍ଣ୍ଣ ଲପ୍ତା, ବକ୍ର ପ୍ରବେଶର ଓ ହାନ୍ତର ଅଂଶାଦ, ଉଦୟ ଅସ୍ତ କାଳର ଶୀଘ୍ରକେନ୍ଦ୍ରାଂଶ ଆଦ ମଧ୍ୟ ଏହ ପରଶିଷ୍ଟରେ ଦଆଯାଇଛି ।

ଗ୍ରହୋନମନ୍ଦୋଚ୍ଚଭୁଜାଲୟାଂଶ *
ଲ୍ପ୍ତା ବଲପ୍ତାଃ ପୃଥଗଷ୍ଟନଘ୍ନାଃ ।
ଅନ୍ତାଦ୍ଧୃତାଃଖର୍ତ୍ତୁଭିରଭ୍ରଷଡ୍‌ଭିଃ
ବୟୁଦ୍‌ଗୁଣୈସ୍ତତ୍‌ଫଲସଂଯୁତାଶ୍ଚ ।୧୮୧।

ତଦ୍ରାଶିସଂଖ୍ୟୋତ୍ଥଫଲଂ ଗତାଖ୍ୟଂ
ଭାଗାଦୟଃ ଖଣ୍ଡଫଲାନ୍ତରଘ୍ନାଃ ।
ଅଲ୍ପ୍ୟାଦ୍‌ଖଷଡ୍ ଭକ୍ତଫଲାଢ୍ୟମୂଳ-
ଭାଗାଃ ଖଗମୈର୍ବ୍ୱହୃତାଃ ଫଲଂତତ୍ ।୧୮୨।

---

* ଭୁଜାଲୟଃ ଗଶ୍ୟାଦୟଃ ଇତ୍ୟର୍ଥଃ

ଶିଷ୍ଟାଦ୍ଵିକଘ୍ନାଃ ଫଳଯୁଗ୍‌ଗତାଖ୍ୟଂ
ମାନ୍ଦ୍ୟଫଳଂ ପ୍ରାଗ୍-ବଦଦଂ ଧନର୍ଣ୍ଣମ୍ ।
ଖଣ୍ଡାନ୍ତରଘ୍ନୀ ମୃଦୁକେନ୍ଦ୍ରଭୁକ୍ତ—
ସ୍ତତ୍ତ୍ଵାଶ୍ଵିଭକ୍ତା ଫଳମିଷ୍ଟଭୁକ୍ତେଃ ।୧୭୩।

ଯସ୍ମାଦ୍ ଖଣ୍ଡମଧ୍ୟେଽଥ ପୁରଃ ପରୋଚ୍ଚଖଣ୍ଡୋଽତ୍ଥଲପ୍ତା ଫଳମନ୍ତରଞ୍ଚ ।
ଲେଖ୍ୟଂ ଗତଶ୍ଚ ସ୍ଫୁଟମେବମେତତ୍ ସ୍ୱର୍ଣ୍ଣଂ କୁଜଜ୍ଞାର୍କିମୃଦୌ
ଜ୍ଞଶୀଘ୍ରେ । ୧୭୪ ।

ମନ୍ଦକେନ୍ଦ୍ର ଭୁଜାଂଶ କଳା—ବିକଳାଦିକୁ ପୃଥକ୍ ପୃଥକ୍ ଭାବରେ ୮ରେ ଗୁଣି ଉକ୍ତ ବିକଳାଦିକୁ ୬°, ୬°ରେ ହର ଫଳକୁ ଉପରେ ଉପରେ ମିଶାଇବ । ଏପରି ଅଂଶ ପର୍ଯ୍ୟନ୍ତ ଆସିଗଲା ପରେ ଅଂଶକୁ ୩°ରେ ହରି ରାଶି କରିବ । ରାଶିତୁଲ୍ୟ ଫଳ ଗତଫଳ ହେବ । ବାକି ଯେଉଁ ଅଂଶ କଳା ଓ ବିକଳା ଆଦି ରହିବ ତାକୁ ଖଣ୍ଡ ଫଳାନ୍ତରରେ ଗୁଣି ପୁଣି ତାକୁ ୬°ରେ ହରିବ । ଫଳକୁ ପୁଣି ପ୍ରଥମରେ ଥିବା ଅଂଶାଦିରେ ଯୋଗକରି ପୁଣି ତାକୁ ୩°ରେ ହରିବ । ଅବଶେଷ ଯାହା ରହିବ ତାକୁ ୨ରେ ଗୁଣି ଫଳ ଯାହା ହେବ ତାକୁ ଗତ ମନ୍ଦଫଳ ଖଣ୍ଡରେ ଯୋଗକରିବ । ଏହି ଫଳ ପୂର୍ବ ପ୍ରଥା ଅନୁସାରେ ଯୁକ୍ତ ଓ ବିଯୁକ୍ତ ହେବ । ଏଥିରେ ଗ୍ରହର ଅଭୀଷ୍ଟ ମନ୍ଦଫଳ ଆସିଯାଇ ପାରିବ । ପରିଶିଷ୍ଟରେ ଦିଆଯାଇଥିବା ଖଣ୍ଡଫଳରୁ ଏହି ଭାବରେ ମନ୍ଦଫଳ ଅଣାଯାଇ ପାରିବ ।

ମନ୍ଦକେନ୍ଦ୍ର ଗତିକୁ ଖଣ୍ଡ ଫଳାନ୍ତରରେ ଗୁଣି ୨୨୫ ରେ ଭାଗ ଦେଲେ ମନ୍ଦ ଗତି ଫଳ ହୁଏ । ଏହା କରୁ ଦୁଇଟି ଖଣ୍ଡ ମଧ୍ୟ ଗତ ଗତିଫଳ ହୁଏ । ଏହା ଇଷ୍ଟ ଗତିଫଳ । ଏହାଦ୍ୱାରା ପୂର୍ବପରି ମନ୍ଦସ୍ଫୁଟଗତି ଜଣାଯାଇପାରିବ ।

ପରିଶିଷ୍ଟରେ ୨୪ ଖଣ୍ଡରେ ପ୍ରଥମେ ମଙ୍ଗଳ, ବୁଧ ଓ ଶନିର ପରୋଚ୍ଚ ଖଣ୍ଡ ଫଳ ଲେଖା ଯାଇଅଛି । ଖଣ୍ଡ ଫଳାନ୍ତର ଓ ଖଣ୍ଡାନ୍ତ ଉତ୍ପନ୍ନ ଉଚ୍ଚ ଗତି ମଧ୍ୟ ଲେଖାଯାଇଅଛି । ଏହି ଖଣ୍ଡ ଫଳରୁ ପୂର୍ବଭାବରେ ପରୋଚ୍ଚ ଫଳ ଆଣି ତାକୁ ମଙ୍ଗଳ, ବୁଧ ଓ ଶନିର ମନ୍ଦ କେନ୍ଦ୍ରରେ ଏବଂ ବୁଧ ଶୀଘ୍ରୋଚ୍ଚରେ ପୂର୍ବ ଭାବରେ ଯୋଗ ବିୟୋଗ କଲେ ପରୋଚ୍ଚ ସଂସ୍କୃତ ସ୍ଫୁଟଗତି ହେବ ।

ଶୀଘ୍ରାଦ୍ ଗ୍ରହୋନାଦ୍ ଗୃହଷଟ୍‌କମାଦ୍ୟଂ
କେନ୍ଦ୍ରଂ ଗତଂ ଗମ୍ୟମଥାନ୍ତ୍ୟଷଟ୍‌କମ୍ ।
ତଦ୍ଭାଗିଭାଗାଦକମଷ୍ଟକଘ୍ନଂ
ପ୍ରାଗ୍‌ବଦ୍ଧୃତଂ ରାଶିମତାସ୍ତୁ ଖଣ୍ଡାଃ । ୧୭୫ ।

ଯାତାସ୍ତଦୂତ୍ଥଂ ଫଳମଂଶକାଦେଃ
ଖଣ୍ଡାନ୍ତରଘ୍ନାଦ୍ ଖଗୁଣାପ୍ତ ଯୁକ୍ତମ୍ ।
ବର୍ଦ୍ଧିଷ୍ୟମାଣେ ଫଳ ଏବ କାର୍ଯ୍ୟଂ
ତଦ୍କ୍ଷୀୟମାଣେ ପତତଂ ଗତାଙ୍କ୍ୟାତ୍ । ୧୭୬ ।

ସ୍ଫୁଟଂଫଳଂ ଶୈଘ୍ର୍ୟମିଦଂ ଧନର୍ଣ୍ଣ
କେନ୍ଦ୍ରସ୍ୟ ପୂର୍ବାର୍ଦ୍ଧପରାର୍ଦ୍ଧୟୋଃ ସ୍ୟାତ୍ ।
ଶୈଘ୍ର୍ୟାର୍ଦ୍ଧ ମାନ୍ଦ୍ୟାର୍ଦ୍ଧ ସମଗ୍ରମାନ୍ଦ୍ୟ—
ଶୈଘ୍ରୈ୍ୟଃ ଫଳୈଃ ପ୍ରାଗ୍‌ବଦହ୍ନ କ୍ରିୟାଃ ସ୍ଫୁଃ ।୧୭୭।

ବର୍ତ୍ତମାନ ପରିଶିଷ୍ଟରେ ଦିଆଯାଇଥିବା ସାରଣୀରୁ କପରି ଶୀଘ୍ରଫଳ ଅଣାଯାଇପାରିବ ତାହାର ପ୍ରଣାଳୀ ଦିଆଯାଉଅଛି । ଏଠାରେ ମଧ୍ୟ ୧୮୦°କୁ ୪୮ଟି ଖଣ୍ଡରେ ବାଣ୍ଟି ଦିଆ-ଯାଇଅଛି । ଏଣୁ ପ୍ରତ୍ୟେକ ଖଣ୍ଡ ପୂର୍ବପର ୩°. ୪୫' ।

ଶୀଘ୍ରୋଚ୍ଚରୁ ଗ୍ରହକୁ (ମନ୍ଦସ୍ଫୁଟ) ବାଦ ଦେଲେ ଶୀଘ୍ର କେନ୍ଦ୍ର ହୁଏ । ଶୀଘ୍ରକେନ୍ଦ୍ର ମେଷାଦି ୬ ରାଶିରେ ଥିଲେ ଗତ ଓ ତୁଳାଦି ୬ ରାଶିରେ ଥିଲେ ଗମ୍ୟ ବୋଲି ବୁଝିବାକୁ ହେବ । ଶୀଘ୍ର କେନ୍ଦ୍ର ୬ ରାଶିରୁ ଅଧିକ ହେଲେ ୧୨ ରାଶିରୁ ତାକୁ ବାଦ ଦେଇ ଗମ୍ୟ ବୋଲି ବୁଝିବ । କେନ୍ଦ୍ରର ରାଶି ଭାଗାଦିକୁ ୮ ରେ ଗୁଣି ପୂର୍ବପର ୬°ରେ ହରଣ ଆଦି କରି କେତେ ଖଣ୍ଡ ସଂଖ୍ୟା ତାହା ସ୍ଥିର କରିନେବ । ସେଥିରୁ ଖଣ୍ଡଫଳ ମଧ୍ୟ ଗଣି ନେବ । ଫଳ ବଢ଼ୁଥିବା ଅବସ୍ଥାରେ ଅବଶିଷ୍ଟକୁ ଗତ ଗମ୍ୟ ଖଣ୍ଡର ଅନ୍ତର ଗୁଣି ପୁଣି ୩°ରେ ଭାଗ ଦେଇ ଯୋଗ କରିବ । ଫଳ ଛୁଡ଼ୁଥିବା ଅବସ୍ଥାରେ ଏହି ଆଗତ ଫଳକୁ ଗତ ଫଳରୁ ବାଦ ଦେବାକୁ ପଡ଼ିବ । ଏହାହିଁ ବାସ୍ତବରେ ଯୋଗ ବା ବିଯୋଗ ଶୀଘ୍ରଫଳ । ପ୍ରଥମ ୬ ରାଶିରେ ଶୀଘ୍ର କେନ୍ଦ୍ର ଥିଲେ ଏହି ଫଳକୁ ଯୋଗ, କିନ୍ତୁ ଦ୍ୱିତୀୟ ୬ ରାଶିରେ ଥିଲେ ଏହି ଫଳକୁ ବିଯୋଗ କରିବ । ପୂର୍ବପର ଶୀଘ୍ରାର୍ଦ୍ଧ, ମନ୍ଦାର୍ଦ୍ଧ; ସମଗ୍ର ମନ୍ଦ ଓ ସମଗ୍ର ଶୀଘ୍ରଫଳ ଦ୍ୱାରା ସଂସ୍କୃତ ହେବାପରେ ମଧ୍ୟମ ଗ୍ରହ ସ୍ଫୁଟ ହୋଇଥାଏ ।

ସୂର୍ଯ୍ୟେନ୍ଦୁ ଭୌମପରଧିକ୍ଷୟ ବୃଦ୍ଧି ଭେଦା—
ନ୍ମାନ୍ଦ୍ୟଂ ଫଳଂ ଚଳଫଳପ୍ରତମଂ ବିଲେଖ୍ୟମ୍ ।
ଖଣ୍ଡୈର୍ଗଜାବ୍ଧିଭିରଦଂ ନିଜବର୍ଦ୍ଧମାନ—
କ୍ଷୀଣତ୍ୱତଃ ସ୍ଫୁଟମପୀହ ନ ବଞ୍ଚିତା ସ୍ୟାତ୍ । ୧୭୮ ।

**ଭୌମସ୍ୟ ଯନ୍ମୃଦୁଫଳଂ ପରଧିକ୍ରମୋତ୍ଥଂ—**
**ଦ୍ୱାବିଂଶତସ୍ତଦନ୍ତ ସପ୍ତସୁ ଖଣ୍ଡକେଷୁ ।**
**ସାଧଂନ କନ୍ତୁଭବନଦ୍ୱୟଜଂ ବଲେଖ୍ୟଂ**
**ତନ୍ନ କ୍ଷୟର୍ଦ୍ଧି ବିଷମତ୍ୱ ନିବୃତ୍ତିହେତୋଃ । ୧୭୯ ।**

ସୂର୍ଯ୍ୟ, ଚନ୍ଦ୍ର ଓ ମଙ୍ଗଳର ମନ୍ଦପରିଧି ବୃତ୍ତପାଦରେ ଭିନ୍ନ ଭିନ୍ନ ହେଉଥିବାରୁ ଶୀଘ୍ରଫଳ ପରି ମନ୍ଦଫଳକୁ ୪୮ ଖଣ୍ଡରେ ଲେଖାଯାଇଅଛି । ଉଭୟ ଗତ ଏଷ୍ୟ ଖଣ୍ଡ ମଧ୍ୟରେ ଫଳ ଆଣିବାକୁ ହେଲେ ପୂର୍ବପରି କାର୍ଯ୍ୟ କରିବ ଏବଂ ଏଷ୍ୟ ଖଣ୍ଡ ବଡ଼ ଥିଲେ ଗତ ଖଣ୍ଡଫଳରେ ତାହା ଯୋଗ କରିବ ଏବଂ ତାହା ଛୋଟ ଥିଲେ ଗତ ଖଣ୍ଡ ଫଳରେ ତାହାକୁ ବିୟୋଗ କରିବ । ମାତ୍ର ମନେ ରଖିବାକୁ ହେବ ଯେ ମନ୍ଦଫଳ ବେଳେ ବିପରୀତର ପ୍ରଶ୍ନ ନାହିଁ ।

ମଙ୍ଗଳର ମନ୍ଦଫଳ ଆଣିଲାବେଳେ ୨୨ଶ ଓ ୨୮ଶ ଖଣ୍ଡ ମଧ୍ୟରେ ଆଉ ହିସାବ କରିବା ଦରକାର ନାହିଁ । ଏ ମଧ୍ୟରେ ୨୪ଶ ଖଣ୍ଡଫଳ ୧୧° । ୨' । ୪୭" ଧରିନେଇ କାର୍ଯ୍ୟ କରିଯିବାକୁ ହେବ । କାରଣ ଏ ମଧ୍ୟରେ ଖଣ୍ଡଫଳରେ କୌଣସି ପରିବର୍ତ୍ତନ ନାହିଁ ।

**ଦ୍ରାକ୍-କେନ୍ଦ୍ରଜାଖଣ୍ଡଫଳାନ୍ତରଘ୍ନୀ**
**ଭୁକ୍ତିର୍ହୃତା ତତ୍ତ୍ୱଯମୈଃ ଫଳସ୍ୟ ।**
**ଅର୍ଦ୍ଧେନଯୁକ୍ତୋନିତମଧ୍ୟଭୁକ୍ତିର୍ଭବେତ୍ କିଲାଦ୍ୟା**
**ଫଳବୃଦ୍ଧିହାନ୍ୟୋଃ । ୧୮୦ ।**

**ଦ୍ୱିତୀୟ ମନ୍ଦୋତ୍ଥଫଳାନ୍ତରଘ୍ନୀ**
**ତତ୍ତ୍ୱାଶ୍ୱିହୃଲ୍ଲବ୍ଧ ଦଳୋନଯୁକ୍ତା ।**
**ସା ନକ୍ର-କର୍କ୍ୟାଦକ-ମନ୍ଦକେନ୍ଦ୍ରେ**
**ଦ୍ୱିତୀୟଭୁକ୍ତିଃ ପୁନରେବମେଷା ।୧୮୧।**

**ଫଳାନ୍ତରଘ୍ନୀଷୁ ଭୁଜାକ୍ଷି ଭକ୍ତା**
**ତଲ୍ଲବ୍ଧହୀନାନ୍ୱିତମଧ୍ୟ ଭୁକ୍ତିଃ ।**
**ଭବେତ୍ତୃତୀୟା ଚ ତଦୁକ୍ତଖିତାଶୁ**
**ଭୁକ୍ତିର୍ଭବେଦିନ୍ଦୁଗତସ୍ଫୁରୀୟା । ୧୮୨ ।**

ସା ଭୁର୍ଯ୍ୟ ଖଣ୍ଡାନ୍ତରସଙ୍ଗୁଣେଷୁ
ପଞ୍ଚାଗ୍ନିହୃଲ୍ଲବ୍ଧ ଯୁତୋନତା ଚେତ୍।
ସ୍ଫୁଟା ଫଲଦ୍ୱିଂଶୟୁୟୋଃ ସ୍ୱଖଣ୍ଡ
ମଧ୍ୟେଷ୍ୱିୟଂ ସ୍ୟାଦନୃଜ୍ୟୁ ପୁରେବ ।୧୮୩।

ବର୍ତ୍ତମାନ ଗ୍ରହର ଦୈନିକ ମଧ୍ୟମ ଗତିକୁ ଦୈନିକ ସ୍ପଷ୍ଟ ଗତିରେ ପରିଣତ କରିବାର ଉପାୟ ଦର୍ଶାଇ ଦିଆଯାଉଅଛି । ଶୀଘ୍ରକେନ୍ଦ୍ର ଗତିକୁ ଖଣ୍ଡଫଳର ଅନ୍ତରରେ ଗୁଣି ୨୨୫ରେ ହର । ଶୀଘ୍ରଫଳ ବଢ଼ୁଥିବା ଓ ଛୁଡ଼ୁଥିବା ଅବସ୍ଥାରେ ଏହି ଫଳରୁ ଅଧାକୁ ଯଥାକ୍ରମେ ମଧ୍ୟ ଗତିରେ ଯୋଗ ଓ ବିୟୋଗ କଲେ ପ୍ରଥମ ଗତି ହେବ ।

ଏହି ପ୍ରଥମ ଗତିକୁ ମନ୍ଦଖଣ୍ଡ ଫଳାନ୍ତରରେ ଗୁଣି (ପ୍ରଥମ ଗ୍ରହ ସମ୍ବନ୍ଧୀ) ପୁଣି ୨୨୫ରେ ହର । ଫଳର ଅଧା ନିଅ ଏବଂ ଏହାକୁ ମନ୍ଦକେନ୍ଦ୍ର ମକରାଦି ୬ ରାଶିରେ ଓ କର୍କଟାଦି ୬ ରାଶିରେ ଥିବାବେଳେ ପ୍ରଥମ ଗତିରେ ଯଥାକ୍ରମେ ଫେଡ଼ ଓ ମିଶାଅ । ଫଳ ହେବ ଦ୍ୱିତୀୟ ଗତି ।

ଏହି ଦ୍ୱିତୀୟ ଗତିକୁ ପୁଣି ୨ୟ ଗ୍ରହର ମନ୍ଦଖଣ୍ଡଫଳାନ୍ତରରେ ଗୁଣି ୨୨୫ରେ ଭାଗ ଦିଅ । ଫଳକୁ ମନ୍ଦକେନ୍ଦ୍ର ମକରାଦି ୬ ରାଶି ଓ କର୍କଟାଦି ୬ ରାଶିରେ ଥିବାବେଳେ ମଧ୍ୟଗତିରେ ଯଥାକ୍ରମେ ଯୋଗ ଓ ବିୟୋଗ କର । ଫଳ, ଗ୍ରହର ତୃତୀୟ ଗତି ହେବ । ଏହି ତୃତୀୟ ଗତିକୁ ଶୀଘ୍ରୋଚ୍ଚ ଗତିରୁ ବାଦ ଦେଲେ ଚତୁର୍ଥ ଶୀଘ୍ରକେନ୍ଦ୍ର ଗତି ହେବ । ଏହି ଶୀଘ୍ରକେନ୍ଦ୍ର (୪ର୍ଥ)କୁ ଶୀଘ୍ରଖଣ୍ଡ ଫଳାନ୍ତରରେ ଗୁଣି (୩ୟ ଗ୍ରହର) ୨୨୫ରେ ଭାଗ ଦିଅ । ଫଳକୁ ଖଣ୍ଡଫଳ ବଢ଼ୁଥିବା ଅବସ୍ଥାରେ ୩ୟ ଗତିରେ ଯୋଗ ଓ ଛୁଡ଼ୁଥିବା ଅବସ୍ଥାରେ ୩ୟ ଗତିରେ ବିୟୋଗ କଲେ ଗ୍ରହର ଦୈନିକ ଗତି ହେବ (ସ୍ପଷ୍ଟ ଗ୍ରହ ଗତି )। ଯୋଗ ବିୟୋଗବେଳେ ଫଳ ବିଯୁକ୍ତ(—) ହେଲେ ଏହି ଗତିକୁ ବକ୍ରୀ କୁହାଯିବ ।

କୁଜଜ୍ଞସୌରପ୍ରଥମଦ୍ୱିତୀୟ
ଗତ୍ୟୋର୍ଧନର୍ଣ୍ଣଂ କ୍ରମଶୋ ବିଧାୟ ।
ବକ୍ରର୍କ୍ଷୁ-ମନ୍ଦୋଚ୍ଚଗତିଂ ଦ୍ୱିତୀୟ
ତୃତୀୟ ଭୁକ୍ତୀତତ ଏବ ସାଧ୍ୟେ ।୧୮୪।

ମନ୍ଦର୍କ୍ଷୁ ଭୁକ୍ତେଃ ପ୍ରଥମାଲ୍ପକା ଚେତ୍
ବିଲୋମ ଶୁଦ୍ଧେରବଶେଷତଃ ସ୍ୟାତ୍।
ଦ୍ୱିତୀୟଭୁକ୍ତେଶ୍ଚ ତଥା ତୃତୀୟ
ଭୁକ୍ତେଃ ଫଳଂ କନ୍ତୁ ଧନର୍ଣ୍ଣବାମମ୍ ।୮୫।

ଏବଂବଧେ ସମ୍ପୃବତସ୍ତ୍ରୟାଣାଂ
ଦ୍ୱିତୀୟତାର୍ତ୍ତୀୟକଗତୀ ପରୋଚାତ୍।
ବକ୍ରାଦମା ମନ୍ଦବଦୋସ୍ତକୋଣ୍ଡେର୍
ବକ୍ରୋଚଭୁକ୍ତେଃ ପତତାବଶେଷାତ୍।୧୮୭।

ସାଧ୍ୟାଦ୍ୱିତୀୟାଥ ତତୋଽଧିକା ଚେତ୍
ତୟୋରୁକ୍ତିତା ମାଦ୍ୟମତୋବଲୋମମ୍
ବକ୍ରାଦଭୁକ୍ତାବୃକ୍ନମନ୍ଦଭୁକ୍ତ
ର୍ଯୋଜ୍ୟା ତତୋ ମାଦ୍ୟଫଳଞ୍ଚ ବାମ୍ୟାତ୍।୧୮୭।

ମଙ୍ଗଳ, ବୁଧ ଓ ଶନିର ପ୍ରଥମ ଓ ଦ୍ୱିତୀୟ ପ୍ରକାରର ଗଣ୍ଡରେ ବକ୍ର ମନ୍ଦୋଚ୍ଚ ଗଣ୍ଡକୁ ଯୋଗ ଓ ମାର୍ଗୀ ମନ୍ଦୋଚ୍ଚ ଗଣ୍ଡକୁ ବିଯୋଗ କରି କେନ୍ଦ୍ରଗଣ୍ଡ ସାଧନ କରିବାକୁ ହେବ । ଏଥିରୁ ପୁଣି ମନ୍ଦଗଣ୍ଡ ଫଳ ଆଣି ୨ୟ ଓ ୩ୟ ଗଣ୍ଡ ସାଧନ କରିବ । (ପ୍ରଥମ କେନ୍ଦ୍ରଗଣ୍ଡରୁ ୨ୟ କେନ୍ଦ୍ରଗଣ୍ଡ ଓ ୨ୟ କେନ୍ଦ୍ରଗଣ୍ଡରୁ ୩ୟ ଗଣ୍ଡ ସାଧନ କରାଯିବ) । ମାର୍ଗୀ ମନ୍ଦୋଚ୍ଚ ଗଣ୍ଡଠାରୁ ପ୍ରଥମ ଗଣ୍ଡ ଅଳ୍ପ ଥିଲେ, ମାର୍ଗୀ ମନ୍ଦୋଚ୍ଚଗଣ୍ଡରୁ ପ୍ରଥମ ଗଣ୍ଡକୁ ବାଦଦେବ । ଶେଷରୁ ୨ୟ ଗଣ୍ଡଫଳ ସାଧନ କରିବ । ଠିକ୍ ଏହିପରି ୩ୟ ଗଣ୍ଡଫଳ ବି ଅଣାଯାଇ ପାରିବ । ଗଣ୍ଡଫଳର ସଂସ୍କାର ବିପରୀତ ଭାବରେ କରିବାକୁ ହେବ । ଅର୍ଥାତ୍ ମକରାଦି କେନ୍ଦ୍ରରେ ଗଣ୍ଡଫଳ ଯୋଗ ଓ କର୍କଟାଦି କେନ୍ଦ୍ରରେ ଗଣ୍ଡଫଳ ବିୟୋଗ ହେବ । ମଙ୍ଗଳ, ବୁଧ ଓ ଶନି ଏହି ତିନି ଗ୍ରହଙ୍କର ଏହିପ୍ରକାରେ ୨ୟ ଓ ୩ୟ ଗଣ୍ଡ ହୋଇଥାଏ ।

ବୁଧ ଓ ଶନିର ପ୍ରଥମ ବକ୍ରଗଣ୍ଡ ବକ୍ର ମନ୍ଦୋଚ୍ଚଗଣ୍ଡରୁ ଅଳ୍ପ ହେଲେ ଏହି ଆଦ୍ୟ ଗଣ୍ଡକୁ ବକ୍ର ମନ୍ଦୋଚ୍ଚ ଗଣ୍ଡରୁ ବାଦ ଦେଇ ୨ୟ ଗଣ୍ଡ କରିବାର କଥା । ମାତ୍ର ଏହି ବକ୍ର ପ୍ରଥମ ଗଣ୍ଡ ବକ୍ର ମନ୍ଦୋଚ୍ଚ ଗଣ୍ଡରୁ ଅଧିକ ହେଲେ ଆଦ୍ୟ ଗଣ୍ଡରୁ ବକ୍ର ମନ୍ଦୋଚ୍ଚଗଣ୍ଡକୁ ବାଦ ଦେବାକୁ ହେବ । ଅବଶେଷରୁ ଯେଉଁ ବକ୍ର ମନ୍ଦ ଗଣ୍ଡଫଳ ଆସିବ ତାକୁ ପୂର୍ବ ଗଣ୍ଡରେ (ବିପରୀତ କ୍ରମରେ) ଯୋଗ ବିଯୋଗ କରିବ । ଅର୍ଥାତ୍ ବକ୍ର ପ୍ରଥମ ଗଣ୍ଡରେ ମାର୍ଗୀ ମନ୍ଦୋଚ୍ଚ ଗଣ୍ଡ ଯୋଗ କରିବ । ଏଥିରୁ ଯୋଗ ବିୟୋଗ ବିପରୀତ କ୍ରମରେ ମନ୍ଦ ଗଣ୍ଡଫଳ ସାଧନ କରିବ ।

କ୍ୱଚତ୍ପୃଂଳଂ ନଷ୍ଟମବସ୍ଫୁଟଂ ଚେତ୍
ତଦ୍ଖଣ୍ଡସଂଖ୍ୟାର୍ଥ-ଭୁଜାକ୍ଷି-କଘ୍ନୀ
କଳାତ୍ମକଂ କେନ୍ଦ୍ରମତଃଫଳାଦ୍ୟଂ
ଦୋର୍ଜ୍ୟାଦନାନୀୟ ବିଲେଖନୀୟମ୍।୧୮୮।

ପରଶିଷ୍ଟରେ ଦିଆଯାଇଥିବା ଖଣ୍ଡଫଳ କୌଣସିଠାରେ ଦେଖା ନ ପଡ଼ିଲେ ଅଥବା ନଷ୍ଟହୋଇ ଯାଇଥିଲେ, ସେହି ଖଣ୍ଡସଂଖ୍ୟାକୁ ୨୨୫ରେ ଗୁଣି କଳାତ୍ମକ କେନ୍ଦ୍ର ବାହାର କରିନେବ । ଏହି କେନ୍ଦ୍ରରୁ ଭୁଜ ଓ ସେଥିରୁ ଭୁଜଜ୍ୟା ଆଣି ସେହି ସ୍ଥାନରେ ଲେଖିଦେବ ।

**ସ୍ଫୁଟାର୍ଯ୍ୟମସ୍ୱାନ୍ତରଭଗକେଷୁ**
**ଶୁକ୍ରେଜ୍ୟଚନ୍ଦ୍ରଜ୍ଞଯମାରକାଣାମ୍ ।**
**ଅସ୍ତଂ ନବାଶା ଶିବ ସୂର୍ଯ୍ୟ ଶୁକ୍ର**
**ଭୂପେଷୁ, ବକ୍ରସ୍ୟ ଭୃଗୋର୍ନଗେଷୁ ।୮୯।**

ବର୍ତ୍ତମାନ ସୂର୍ଯ୍ୟ ସାନ୍ନିଧ୍ୟ ବଶତଃ ଅନ୍ୟ ୬ଟି ଗ୍ରହର ଉଦୟ ଓ ଅସ୍ତାଂଶ ଏଠାରେ ଦିଆଯାଉଅଛି । ଶୁକ୍ରର ୯° । ବୃହସ୍ପତିର ୧୦° । ଚନ୍ଦ୍ରର ୧୧° । ବୁଧର ୧୨° । ଶନିର ୧୪° ଓ ମଙ୍ଗଳର ୧୭° । ବକ୍ରୀ ଶୁକ୍ରର ୭° ।

**ଏତେଽଂଶକାଃ ଖାଭ୍ରଗଜେନ୍ଦୁ ନିଘ୍ନାଃ**
**ପ୍ରାକ୍ ସାୟନାର୍କୋଦୟମାନ ଭକ୍ତାଃ**
**ପଶ୍ଚାତ୍ତ୍ରଷଡ୍‌ଭାୟନ ସଂସ୍କୃତାର୍କ**
**ଲଗ୍ନ ପ୍ରମାଣାସୁହୃତାଃ ସ୍ଫୁଟାଃସ୍ୟୁଃ ।୯୦।**

**ଏତୈରବେଃ ପ୍ରାଗୁଦୟଂପରାସ୍ତଂ**
**ନ୍ୟୂନାଧିକା ଯାନ୍ତି କୁଜେଜ୍ୟମନ୍ଦାଃ ।**
**ବକ୍ରୀଜ୍ଞଶୁକ୍ରାବଥ ତାବବକ୍ରୀ**
**ପୂର୍ବାସ୍ତପଶ୍ଚାଦୁଦୟୌ ବଧୂଶ୍ଚ ।୯୧।**

ଏହି ପ୍ରତ୍ୟେକ ଅଂଶକୁ ୧୮୦୦ରେ ଗୁଣି ସାୟନ ଅର୍କୋଦୟ ରାଶି ଉଦୟ ପରିମାଣରେ ହରିବ । ତାହାହେଲେ କ୍ଷେତ୍ରାଂଶ ହେବ । ପଶ୍ଚିମରେ ଏହି କ୍ଷେତ୍ରାଂଶ ଜାଣିବାକୁ ହେଲେ ସେଥିରେ ୬ ରାଶି ମିଶାଇବା ପରେ (ସାୟନ ରବିରେ ୬ ରାଶି ମିଶାଇବା ପରେ) ତାହାର ଉଦୟମାନରେ ହରିଲେ କ୍ଷେତ୍ରାଂଶ ଆସିଯାଇପାରିବ ।

ମଙ୍ଗଳ, ବୃହସ୍ପତି ଓ ଶନି ପଠିତ କାଳାଂଶାନ୍ତରରେ ରବିଠାରୁ ଥିଲେ ସୂର୍ଯ୍ୟୋଦୟ ପୂର୍ବରୁ ପୂର୍ବ ଦିଗରେ ଉଦୟ ହୁଅନ୍ତି । (ରାତ୍ରି ଶେଷରେ ଉଦିତ ହୁଅନ୍ତି) । ରବିଠାରୁ ଏହି କାଳାଂଶ ଅଧିକ ହେଲେ ଏମାନେ ପଶ୍ଚିମରେ ଅସ୍ତ ହୁଅନ୍ତି । ବକ୍ରୀ ବୁଧ ଓ ଶୁକ୍ର ରବିଠାରୁ ଏହି କାଳାଂଶ କମ୍ ଥିବାବେଳେ ପୂର୍ବରେ ଉଦୟ ଓ ରବିଠାରୁ

ଅଧିକ ଥିବାବେଳେ ପଶ୍ଚିମରେ ଅସ୍ତ ହୁଅନ୍ତି । ମାର୍ଗୀ ବୁଧ ଓ ଶୁକ୍ର ରବିଠାରୁ ଏହି କାଳାଂଶ ନ୍ୟୂନ ଥିବାବେଳେ ପୂର୍ବରେ ଅସ୍ତ ଓ ରବିଠାରୁ ଏହି କାଳାଂଶ ଅଧିକ ଥିବାବେଳେ ପଶ୍ଚିମରେ ଉଦୟ ହୁଅନ୍ତି । ଠିକ୍ ଏହିପରି ଚନ୍ଦ୍ର ନିଜର କାଳାଂଶ କମ୍ ଥିବାବେଳେ (ରବିଠାରୁ କମ୍ ଥିବାବେଳେ) ପୂର୍ବରେ ଅସ୍ତ ଏବଂ ରବିଠାରୁ କାଳାଂଶ ଅଧିକ ଥିବାବେଳେ (ସେହି ଚନ୍ଦ୍ର) ପଶ୍ଚିମରେ ଉଦୟ ହୁଏ ।

ପୂର୍ବୋକ୍ତକେନ୍ଦ୍ରାଂଶଦନେ ଗ୍ରହାର୍କା-
ନ୍ତରୈସ୍ତଦଂଶାନ୍ତରଲପ୍ତିକାଦ୍ୟାଃ
ଗତ୍ୟନ୍ତରାପ୍ତାଶ୍ଚ ଫଳଂ ଦନାଦ
ସ୍ୱର୍ଣ୍ଣଂଭବେଦ୍ ବକ୍ରିଣିଭୁକ୍ତି-ଯୁତ୍ୟାଃ ।୧୯୬।

ଗ୍ରହାର୍କଗତ୍ୟୋସ୍ତନୁଭୂରଭାବଂ
ଜ୍ଞାତ୍ୱା ତତୋଭାବଗତୌ ଚ କାଳୌ
ବକ୍ତବ୍ୟତଃ ଖେଟଯୁତପ୍ରକାଶା
ଦୁକ୍ତାଂ-ଶତୁଲ୍ୟତ୍ୱମ୍ ବୈତୁମିଷ୍ଟମ୍ ।୧୯୭।

ପୂର୍ବୋକ୍ତ କାଳାଂଶ ମଧ୍ୟରେ କୌଣସି ଦିନରେ ଉକ୍ତ ଗ୍ରହ କେତେ ଦିନଠାରୁ ଅସ୍ତ ବା ଉଦୟ ହେଲାଣି ଏବଂ କେତେ ଦିନ ପରେ ଉଦୟ ବା ଅସ୍ତ ହେବ ଏହା ଜାଣିବାକୁ ହେଲେ ଗ୍ରହ ଓ ରବିର ଅନ୍ତରାଂଶକୁ ସେହି ଦୁହିଁଙ୍କର ଗତି ଅନ୍ତରରେ ହରିଲେ ଅନ୍ତର ଦିନ ଆସିଯାଏ । ଗ୍ରହ ବକ୍ରୀ ଥିଲେ ଉଭୟଙ୍କ ଗତିଯୋଗରେ ହରିବାକୁ ହେବ । ଏହି ଲବ୍ଧ ଦିନାଦିକୁ ଇଷ୍ଟରେ ଯୋଗ ବା ବିୟୋଗ କଲେ କେବିଠାରୁ ଉଦୟ ବା ଅସ୍ତ ହେଲାଣି ବା ହେବ ସ୍ପଷ୍ଟ ଜଣା ପଡ଼ିଯିବ । ଏହି ଯୋଗ ବିୟୋଗ କଥା ବିଚାରରୁ ସ୍ଥିର କରି ନେଇ ହେବ । ଗ୍ରହ ଓ ରବିଗତିର କମ୍ ବେଶି ଦେଖି ଆଗାମୀ ଓ ଗତ କାଳ କଥା ଜାଣିହେବ । ଏହି କଥା ଗ୍ରହଯୋଗାଧ୍ୟାୟରୁ ଜାଣିନେବା ସୁବିଧାଜନକ । କାଳାଂଶ ଓ ଦୃକ୍‌କର୍ମ ଜନିତ ଅଂଶାଦିର ତୁଲ୍ୟତା କଥା ମଧ୍ୟ ସେଠାରୁ ଜାଣିନେବ ।

ଇତୀରତୈରସ୍ତମୟୋଦୟାଂଶୈଃ
ସିଦ୍ଧାଃ ସ୍ୱକାଳାଃ ଖଳୁ ଲେଖନୀୟାଃ
ଦୃକ୍‌କର୍ମସିଦ୍ଧାସ୍ତମୟୋଦୟାନାଂ
ସୁଦୁଷ୍କରତ୍ୱାଦ୍ ବ୍ୟବହାରପଞ୍ଜ୍ୟାମ୍ ।୧୯୮।

ବ୍ୟାବହାରିକ ପଞ୍ଜିକାରେ ଏହି ଉଦୟାଂଶ ଓ ଅସ୍ତାଂଶ ସିଦ୍ଧ ସମୟ ଲେଖି ଦେବାକୁ ହେବ । କାରଣ ଦୃକ୍‌କର୍ମ ଆଦି କରି ଏହି ସମୟ ଲେଖିବା ବଡ଼ ଦୁଷ୍କର ।

ଯଥାଽତ୍ର ଲିଖିତାନି ଖଣ୍ଡଜଫଳାନ୍ତରାଣି କ୍ରମା—
ତ୍ତଥା ଗତଫଳାନ୍ତରଂ ଶ୍ରୁତକଳାନ୍ତରଂ ସାଧ୍ୟତାମ୍ ।
ଚଳଶ୍ରୁତଗତସ୍ଫୁଟୀକରଣମାମୃଖଣ୍ଡାନ୍ତରୈଃ
ପୁରୋଦିତଫଳୋଚ୍ଚୟାନୟନବଦ୍‌ବିଧେୟଂ ବୁଧୈଃ ।୧୯୫।

ଯେପରି ଖଣ୍ଡଫଳ, ଖଣ୍ଡଫଳାନ୍ତର ଆଦି ପରିଶିଷ୍ଟରେ ଲେଖାଯାଇଅଛି ଠିକ୍ ସେହିପରି ଗତିଫଳର ଅନ୍ତର ଓ କର୍ଣ୍ଣକଳାର ଅନ୍ତର ମଧ୍ୟ ଆଣି ଲେଖିଦେବାକୁ ହେବ । ଶୀଘ୍ରକର୍ଣ୍ଣ, ଗତି, ସ୍ଫୁଟୀକରଣ ଆଦି ଅଭୀଷ୍ଟ ସ୍ଥାନରେ ଆଗରୁ ଦିଆଯାଇଥିବା ଫଳ ସମୂହରୁ ଆଣିହେବ । ଏହି କଥା ପଣ୍ଡିତମାନେ ନିଶ୍ଚିତ କରିଦେଇ ପାରିବେ । ଏଥିରେ କିଛି ଅସୁବିଧା ନାହିଁ ।

କାର୍ଯ୍ୟଃ ସୂର୍ଯ୍ୟନିଶେଶଯୋଃ ପ୍ରତିଦିନଂ ବିସ୍ପଷ୍ଟଭାବଃ ପୁନଃ
ପକ୍ଷେ ପକ୍ଷଦଳେ ବୁଧସ୍ୟ ବିହିତୋଽନ୍ୟେଷାନ୍ତୁ ପକ୍ଷାନ୍ତତଃ ।
ମଧ୍ୟେ ମଧ୍ୟ ଇହ ବ୍ରଜେଦ୍ୟଦି ଖଗଃ ସନ୍ଧ୍ୟର୍କ୍ଷବକ୍ରାର୍ଜବା—
ନ୍ୟସ୍ତଞ୍ଚାପ୍ୟୁଦୟଂ ତଦେଷ୍ଟଦିନଜଃ କାର୍ଯ୍ୟୋଽସ କୁଭ କ୍ରିଭିଃ ।୧୯୬ ।

ସୂର୍ଯ୍ୟ ଓ ଚନ୍ଦ୍ରର ସ୍ଫୁଟତା ପ୍ରତିଦିନ ସୂର୍ଯ୍ୟୋଦୟ ବେଳେ କରିଦେବାକୁ ହେବ । ପକ୍ଷାନ୍ତରେ (ଅର୍ଥାତ୍ ଅମା ଓ ପୂର୍ଣ୍ଣାନ୍ତରେ) ସମସ୍ତଙ୍କର ସ୍ଫୁଟତା କରିବାକୁ ହିଁ ହେବ । ବୁଧର ପକ୍ଷାନ୍ତରରେ ସ୍ଫୁଟତା ତ କରିବ । ମାତ୍ର ପକ୍ଷାର୍ଦ୍ଧରେ ମଧ୍ୟ ବୁଧକୁ ସ୍ଫୁଟ କରିବା ଉଚିତ । ଗ୍ରହ ବକ୍ର, ବକ୍ରରୁ ମାର୍ଗୀ ହେଲେ ଅଥବା, ରାଶ୍ୟନ୍ତର ନକ୍ଷତ୍ରାନ୍ତର ଅଥବା ବକ୍ର ଓ ସରଳ ଗତି ପାଉଥିବାବେଳେ ଅଥବା ଉଦୟ ବା ଅସ୍ତ ହେଉଥିବାବେଳେ ତାକୁ ଅସକୃତ୍ ଭାବରେ ସ୍ଫୁଟ କରିବାକୁ ହେଉଥିବ ।

ସଞ୍ଚାରଧ୍ରୁବଲିପ୍ତିକା ଭପଦଜାଭାନାଂ ଗୃହାଣାଞ୍ଚଯା--
ସ୍ତତ୍‌ଖେଟାନ୍ତରଲିପ୍ତିକା ଗତିକଳାଭକ୍ତାଦିନାଦ୍ୟଂ ଫଳମ୍
ଖେଟେତଦ୍‌ଧ୍ରୁବତଃ ପୁରଃ ପରଗତେ କାଳାଦୃଣଂ ସ୍ୱଂ କ୍ରିୟାତ୍
କାଳେ ବକ୍ରଗତୌ ଧନର୍ଣ୍ଣମିତିତତ୍ସଞ୍ଚାରକାଳୋ ଭବେତ୍ ।୧୯୭।

ଗୋଟିଏ ନକ୍ଷତ୍ର, ନକ୍ଷତ୍ର ପାଦ ଓ ରାଶିର ପରିମାଣ ଯଥାକ୍ରମେ ୮୦୦, ୨୦୦ ଓ ୧୮୦୦ କଳା । ଗ୍ରହ, ନକ୍ଷତ୍ର, ନକ୍ଷତ୍ରପାଦ ଓ ରାଶିକୁ କେବେ ଯିବ ବା କେତେଦିନ ହେଲା ଯାଇଛି ବା କେତେଦିନ ଆଉ ରହିବ ଏହା ଜାଣିବାକୁ ହେଲେ ଉକ୍ତ ନକ୍ଷତ୍ର, ନକ୍ଷତ୍ରପାଦ ଓ ରାଶି ତଥା ଗ୍ରହର ଅନ୍ତର ଆଣି ତାକୁ ଗ୍ରହର ସ୍ପଷ୍ଟ ଗତି କଳାରେ ହରିଦେଲେ ଦିନାଦି ଫଳ ଆସିବ । ଏହି ଦିନାଦିକୁ ଏହି ନକ୍ଷତ୍ର, ନକ୍ଷତ୍ରପାଦ ଓ ରାଶି ଆରମ୍ଭଠାରୁ ଗ୍ରହ ଆଗକୁ ପଛକୁ ଥିଲେ କେତେଦିନ ପୂର୍ବରୁ ଗ୍ରହ ସେ ସ୍ଥାନକୁ ଆସିଛି ବା ଆସିବ ବୋଲି ଜାଣିପାରିବ । ଗ୍ରହ ବକ୍ର ଥିବାବେଳେ ଏହି ଦିନାଦିକୁ ଯୋଗ ବିୟୋଗ କରିବାର କ୍ରିୟା ଓଲଟା ହେବ ।

**ପଶ୍ଚାନ୍ତଦ୍ୱୟଦ୍ୟୁଖେଚରାନ୍ତରକଳାସ୍ତଦ୍ଘସ୍ରସଂଖ୍ୟାହୃତାଃ**
**ତତ୍ତଦ୍ଭୁକ୍ତିକଳାଃ ଫଳଂ ଗତଯୁଗସ୍ୱଲ୍ପାନ୍ତରତ୍ୱେ ପୁନଃ ।**
**ଭୂୟସ୍ୟନ୍ତରକେ କ୍ଷୟଦ୍ଧିବଶତୋ ଭୁକ୍ତ୍ୟାନୁପାତୋଽଥବା**
**ଖେଟର୍ଯଦ୍ଧ୍ରୁବକାନ୍ତରୋଦ୍ଧୃତବଶାଦ୍ୟାତୈଷ୍ୟକାଳୋଽସକୃତ୍ ।୧୯୮।**

ଦୁଇଟି ଲଗାଲଗ ପଶ୍ଚାନ୍ତ ସ୍ଫୁଟ ଗ୍ରହର ଅନ୍ତରକୁ ଉଭୟ ପଶ୍ଚାନ୍ତ ଗତଦିନ ସମୂହରେ ହରଲେ ଗ୍ରହର ଦୈନିକ ସ୍ପଷ୍ଟ ଗତି ଆସେ । ଦୁଇଟି ଲଗାଲଗି ଦିନର ସ୍ପଷ୍ଟ ଗ୍ରହାନ୍ତରକୁ ଗ୍ରହର ବ୍ୟବହାର ଉପଯୋଗୀ ଦୈନିକ ଗତି କୁହାଯାଏ । ଏହି ଦୈନିକ ଗତି ଓ ପଶ୍ଚାନ୍ତକୁ ଧରି ଆସିଥିବା ଦୈନିକ ଗତି ମଧ୍ୟରେ ଅତି ଅଳ୍ପ ତଫାତ୍ ଥିଲେ କିଛି ଯାଏ ଆସେ ନାହିଁ । କିନ୍ତୁ ବେଶି ଅନ୍ତର ଆସିଲେ ବାରମ୍ବାର ପରୀକ୍ଷା, ପୂର୍ବ ଶ୍ଳୋକରେ ଦିଆଯାଇଥିବା ରୀତିରେ କରି ଗତ ଓ ଗମ୍ୟ କାଳ ଠିକ୍ ଠିକ୍ ବାହାର କରିନେବାକୁ ହେବ । ଗ୍ରହର ଦୁଇଟି ସ୍ପଷ୍ଟ ରାଶ୍ୟାଦିକୁ ଅନ୍ତର କରି ଗ୍ରହର ଦୈନିକ ସ୍ପଷ୍ଟ ଗତିରେ ହରଲେ ଫଳ ଦିନାଦି ଆସିଥାଏ ।

**ପକ୍ଷଦ୍ୱନ୍ଦ୍ୱଜତୁର୍ଯ୍ୟକେନ୍ଦ୍ରବିବରାତ୍ତଦ୍ଭୁକ୍ତିଲପ୍ତାଦିନୈ—**
**ରାନୀୟାଭିରବକ୍ରବକ୍ରବଲୟୋଦ୍ୟାନାନ୍ତ୍ୟ କେନ୍ଦ୍ରଧ୍ରୁବାତ୍ ।**
**ପଶ୍ଚାନ୍ତଗ୍ରହତୁର୍ଯ୍ୟକେନ୍ଦ୍ରବିଯୁତାଦ୍ୟାଃ ସ୍ୟୁସ୍ତଦନ୍ତର୍ଗତା**
**ଲପ୍ତାସ୍ତା ବିହୃତାଃ ଫଳୈର୍ଦିନ ମୁଖୈର୍ଖେଟର୍ଲେଖ୍ୟାସ୍ତୁ ବକ୍ରାଦୟଃ ।୧୯୯।**

ପ୍ରତି ପଶ୍ଚାନ୍ତରେ ଚତୁର୍ଥ ଶୀଘ୍ରକେନ୍ଦ୍ର ଗଣିତ କରାଯାଇଥାଏ । ଗ୍ରହର ମାର୍ଗୀ, ବକ୍ର ଓ ଉଦୟ ତଥା ଅସ୍ତକେନ୍ଦ୍ରାଂଶ ପରିଶିଷ୍ଟରେ ଦିଆଯାଇଥିବା କଥା ଆଗରୁ କୁହାଯାଇଅଛି । ପକ୍ଷ ମଧ୍ୟରେ କେତେ ସମୟରେ ଶୀଘ୍ରକେନ୍ଦ୍ର କେଉଁ ଅବସ୍ଥାକୁ ଗଲା ତାହା ଜାଣିବା ନିମନ୍ତେ ଉଭୟ ଶୀଘ୍ରକେନ୍ଦ୍ର ଅନ୍ତରକୁ ଉଭୟ ପକ୍ଷର ଅନ୍ତର ଦିନରେ ହରଲେ ଶୀଘ୍ରକେନ୍ଦ୍ରର ଦୈନିକ ଗତି ଆସିଯାଇ ପାରିବ ଏବଂ ଏହି ଗତିରେ ପଶ୍ଚାନ୍ତ ଶୀଘ୍ରକେନ୍ଦ୍ରର ଓ ଆପେକ୍ଷିକ ଶୀଘ୍ରକେନ୍ଦ୍ରର ଅବସ୍ଥାର ଅନ୍ତରକୁ ହରିଦେଲେ ତାର ଦିନାଦି ଆସିଯାଇ ପାରିବ ।

**ଭକ୍ତାଂଶ୍ଚକ୍ରକଳାଃ ଖବହ୍ନିଭିରଥୋ ସପ୍ତାକ୍ଷିଭିର୍ଭାନୁଭି—**
**ର୍ଭୂତୁବାହୁଭିରମ୍ବରର୍ତ୍ତୁଭିରତୋ ଲବ୍ଧାଃ ସ୍ୱରାଶିଗାଃ କ୍ରମାତ୍ ।**
**ତଥ୍ୟକ୍ଷୈନ୍ଦବରାଶିଯୋଗକରଣାନାଂ ସ୍ୟୁଃ ଖପକ୍ଷାଦ୍ରୟଃ**
**ଖଭ୍ରାଷ୍ଟ୍ରୀଖଖକୁଞ୍ଜରକ୍ଷିତମିତାଃ ଖଭ୍ରାଷ୍ଟ ଖାଙ୍ଗାଗ୍ନୟଃ ।୨୦୦।**

୨୧୬୦୦ କଳାକୁ ଯଥାକ୍ରମେ ୩୦, ୧୨, ୨୭ ଓ ୬୦ରେ ହରଲେ ୭୨୦, ୮୦୦, ୧୮୦୦, ୮୦୦ ଓ ୩୬୦ ଯଥାକ୍ରମେ ତିଥିଭୋଗ ନକ୍ଷତ୍ରଭୋଗ, ରାଶିଭୋଗ, ଯୋଗଭୋଗ ଓ କରଣ ଭୋଗର ପରିମାଣ ହେବ ।

ସ୍ପଷ୍ଟାର୍କୋନିତବିସ୍ଫୁଟେନ୍ଦୁକଳିକାଭୋଗେନ ଭକ୍ତାସ୍ତିଥେ—
ର୍ଲବ୍ଧାସ୍ତ୍ୟସ୍ତିଥୟୋ ଗତାଃ ପ୍ରତିପଦୋ ଦର୍ଶାନ୍ତମାସାଦିତଃ ।
ଲବ୍ଧାଃପଞ୍ଚଦଶ ଧିକା ଯଦି ତଦା ପଞ୍ଚେନ୍ଦୁଶେଷାସ୍ତୁ ତାଃ
ପକ୍ଷେ ଶ୍ୟାମଳକେ ସୁ୍ୟରେକସହିତାଶ୍ଚେଦ୍ ବର୍ତ୍ତମାନାସ୍ତଦା ।୬୦।

ସ୍ପଷ୍ଟ ଚନ୍ଦ୍ର ରାଶ୍ୟାଦିରୁ ସ୍ପଷ୍ଟ ସୂର୍ଯ୍ୟର ରାଶ୍ୟାଦିକୁ ଫେଡ଼ି ତାକୁ ୭୨୦ରେ ହରଲେ ଗତତିଥିର ସଂଖ୍ୟା ଆସେ । ଲବ୍ଧ ସଂଖ୍ୟା ୧୫ରୁ ବେଶୀ ହେଲେ ସେଥିରୁ ୧୫ ବାଦ ଦେବ । ବାକୀ ସଂଖ୍ୟା କୃଷ୍ଣପକ୍ଷର ତିଥିସଂଖ୍ୟା ହେବ । ଲବ୍ଧିରେ ୧ ମିଶାଇଲେ ବର୍ତ୍ତମାନ ତିଥିସଂଖ୍ୟା ହେବ ।

ତଚ୍ଛେଷା ଗତଗମ୍ୟକା ବିକଳତାଶ୍ଚନ୍ଦ୍ରାର୍କ ଗତ୍ୟନ୍ତରେ—
ଣାପ୍ତାଃ ସ୍ୟୁଃ କ୍ରମଶୋ ଗତୈଷ୍ୟଘଟିକାଃ ସାକଂସ୍ୱଷଷ୍ଟ୍ୟଂଶକୈଃ ।
ତଥ୍ୟାନ୍ତାନ୍ତକକାଳଗ୍ରହଳିତବିଧୋସ୍ତତ୍କାଳଭୁକ୍ତ୍ୟା ପୁନଃ
ସାଧ୍ୟାଃ ସଂଶୟିତେଷ୍ଟକର୍ମ୍ମସମୟେଽନ୍ୟଏ ବ୍ୟୁହେନ୍ଦ୍ୱନ୍ତରା ।୬୧।

ବର୍ତ୍ତମାନ ତିଥିର କେତେ ଗତ୍ୟଣି ଏବଂ କେତେ ଦଣ୍ଡାଦି ଅବଶେଷ ଅଛି ତାହା ଜାଣିବାପାଇଁ ବର୍ତ୍ତମାନ ଦିନର ଓ ଆଗାମୀ ଦିନର ଗତି ଅନ୍ତରରୁ ସ୍ପଷ୍ଟ ରବି ଓ ଚନ୍ଦ୍ରର ଗତି ଆଣି ଚନ୍ଦ୍ରଗତି (ଦୈନିକ)ରୁ ରବିଗତିକୁ ବାଦଦିଅ ଏବଂ ଏହି ଅବଶେଷ (୭୨୦ରେ ହୃତ ଶେଷ)କୁ ୬୦ରେ ଗୁଣି ଏହି ଅନ୍ତରରେ ହରଲେ ବର୍ତ୍ତମାନ ତିଥିର ଗତ ଦଣ୍ଡାଦି ଆସିବ । ୧୨ରୁ ଉକ୍ତ ଶେଷକୁ ବାଦଦେଇ ଅବଶିଷ୍ଟକୁ ୬୦ରେ ଗୁଣି ସେହି ଦୈନିକ ଗତି ଅନ୍ତରରେ ପୁଣି ହରଲେ ବର୍ତ୍ତମାନ ତିଥିର ଭୋଗ୍ୟ ଦଣ୍ଡ ଆଦି ଆସିବ । ଏହି ତିଥ୍ୟାଙ୍କ ସାଧାରଣତଃ ପଞ୍ଜିକା ଆଦିରେ ବ୍ୟବହୃତ ହୋଇଥାଏ ଏବଂ ଏହା ଏକବାରେ ଠିକ୍ ନ ହେଲେ ମଧ୍ୟ ପ୍ରାୟ ଠିକ୍ । ଅତି ଠିକ୍ ତିଥି ଆଦି ଆଣିବାକୁ ହେଲେ ପ୍ରତି ତିଥ୍ୟନ୍ତରେ ପୁଣି ରବିଚନ୍ଦ୍ରକୁ ସ୍ଫୁଟକରି ପୂର୍ବସ୍ୱୀକୃତରେ ତିଥି ଆଦି ପୁଣି ସାଧନ କରିବାକୁ ହେବ । ଅନ୍ୟଥା ଅତି ସ୍ପଷ୍ଟ ତିଥି ଆସିବ ନାହିଁ । କେତେକ ଧର୍ମକୃତ୍ୟରେ ଅତି ସ୍ପଷ୍ଟ ତିଥି ଦରକାର ହୋଇଥାଏ । ତିଥି ସନ୍ଦେହ ହେଲେ ମଧ୍ୟ ଏହା କରାଯାଇଥାଏ ।

**ସ୍ପଷ୍ଟେନ୍ଦୋଃ କଳକା ଭଭୋଗ ବହୃତା ଲବ୍ଧାଶ୍ଚ ଦସ୍ରାଦୟ—**
**ସ୍ତାରାଃ ସୁ୍ୟର୍ବ୍ବଗତା ଗତୈଷ୍ୟକଳକାଃ ଷଷ୍ଟ୍ୟାହୃତା ଭଜିତାଃ ।**
**ଗତ୍ୟା ଚନ୍ଦ୍ରମସଃ ଫଳାନ ଘଟିକାସ୍ତଦ୍ବଦ୍ବଧୋର୍ଲିପ୍ତିକା—**
**ସ୍ତଦ୍ଭୋଗାପ୍ତ ଗତ ତିଥ୍ୟାଦନଲୟାନାଡ୍ୟୋଽବ୍ଜଭୁକ୍ତ୍ୟା ତଥା ।୨୦୩।**

ସ୍ଫୁଟ ଚନ୍ଦ୍ରର କଳାଦକୁ ନକ୍ଷତ୍ରଭୋଗକଳା ୮୦୦ରେ ହରଲେ ଲବ୍ଧି ଅଶ୍ୱିନୀ ଆଦ୍ଦ ନକ୍ଷତ୍ର ସଂଖ୍ୟା ଆସେ । ଏହା ପୁଣି ଗତ ନକ୍ଷତ୍ର ସଂଖ୍ୟା । ଲବ୍ଧିରେ ୧ ଯୋଡ଼ଲେ ବର୍ତ୍ତମାନ ନକ୍ଷତ୍ର ସଂଖ୍ୟା ହୋଇଥାଏ । ଅବଶେଷ ବର୍ତ୍ତମାନ ନକ୍ଷତ୍ରର ଗତ ଅଂଶ । ଏହି ଅବଶେଷକୁ ଭାଜକରୁ ବାଦ ଦେଲେ ବର୍ତ୍ତମାନ ନକ୍ଷତ୍ରର ଗମ୍ୟ ଅଂଶ ହେବ । ଏହି ଗତଗମ୍ୟ କଳାଦକୁ ୬୦ରେ ଗୁଣି ଚନ୍ଦ୍ର ଦୈନିକ ଗତିରେ ଭାଗ କଲେ ଫଳ ଯଥାକ୍ରମେ ବର୍ତ୍ତମାନ ତିଥିର ଗତ ଓ ଗମ୍ୟ ଘଟିକାଦ୍ଦ ଆସିଯିବ ।

ସ୍ଫୁଟଚନ୍ଦ୍ରର କଳାଦକୁ ଗୋଟିଏ ରାଶିର ଭୋଗକଳା ୧୮୦୦ରେ ହରଲେ ଫଳ ମେଷ ଆଦ୍ଦର ରାଶିସଂଖ୍ୟା ହେବ । ସେଥିରେ ୧ ଯୋଗକଲେ ବର୍ତ୍ତମାନ ରାଶିସଂଖ୍ୟା ହୁଏ । ଶେଷ ବର୍ତ୍ତମାନ ରାଶିର ଗତ ଓ ଏହାକୁ ଭାଜକ (୧୮୦୦)ରୁ ବାଦ ଦେଲେ ହେବ ବର୍ତ୍ତମାନ ରାଶିର ଭୋଗ୍ୟ ଅଂଶ । ଏହି ଭୁକ୍ତ ଓ ଭୋଗ୍ୟ ଅଂଶକୁ ପୁଣି ୬୦ରେ ଗୁଣି ସ୍ଫୁଟ ଚନ୍ଦ୍ରର ଦୈନିକ ଗତିରେ ଭାଗ ଦେଲେ ଚନ୍ଦ୍ର ବର୍ତ୍ତମାନ ରାଶିକୁ କେବେ ଆସିଲା ଏବଂ ପୁଣି ସେ ରାଶିକୁ କେବେ ଅତିକ୍ରମ କରିବ ଜଣାଯିବ ।

**ସ୍ପଷ୍ଟେନ୍ଦ୍ୱର୍କଯୁତସ୍ତୁ ଚକ୍ରବିଯୁତା ଚକ୍ରାଧିକାଚେଦ୍ଧୃତା**
**ଭୁକ୍ତ୍ୟାଯୋଗଜୟା ଫଳାନ ତ ଇତାଃ ଶେଷା ଗତୈଷ୍ୟାଃ କଳାଃ ।**
**ଷଷ୍ଟିଘ୍ନା ରବିଚନ୍ଦ୍ରଭୁକ୍ତିଯୁତହୃଲ୍ଲବ୍ଧାଶ୍ଚ ନାଡ଼୍ୟାଦୟଃ**
**ଶୂନ୍ୟାଙ୍ଗାଗ୍ନି କଳାଯୁତାର୍କବିଯୁତାଃ ସ୍ପଷ୍ଟେନ୍ଦୁଲପ୍ତା-ହୃତାଃ ।୨୦୪।**

**ଭୁକ୍ତ୍ୟୈବଂ କରଣସ୍ୟତାନ ତଥିବତ୍ତିନ୍ୟାତ୍ତକାଦ୍ୟା ମତାଃ**
**ସପ୍ତାନାଂ ବବତଃ ସିତପ୍ରତପଦଃ ପ୍ରାନ୍ତାର୍ଦ୍ଧତଃ ସଂସ୍ଥିତେଃ ।**
**ତଥ୍ୟର୍ଦ୍ଧେଷ୍ୱପି କୃଷ୍ଣଭୂତଦଳତଃ ପ୍ରାନ୍ତାଶ୍ରିତାଦେର୍ଦ୍ଦଳଂ**
**ଯାବତ୍ଶାକୁନକଂ ଚତୁଷ୍ପଦମଥୋ ନାଗଞ୍ଚ କିଂସ୍ତୁଘ୍ନକମ୍ ।୨୦୫।**

ସ୍ଫୁଟ ଚନ୍ଦ୍ର ଓ ସ୍ଫୁଟ ରବିକୁ ମିଶାଇ ୧୨ ରାଶିରୁ ଅଧିକା ହେଲେ ସେଥିରୁ ୧୨ ଫେଡ଼ି ଅବଶେଷ କଳାଦକୁ ଉଭୟଙ୍କ ଗତି ଯୋଗରେ ହରଲେ ଲବ୍ଧି ବିଷ୍କୁମ୍ଭ ଆଦ୍ଦ ଗତ ଯୋଗ ସଂଖ୍ୟା ହେବ । ସେଥିରେ ୧ ମିଶାଇଲେ ବର୍ତ୍ତମାନ ଯୋଗ ସଂଖ୍ୟା ହେବ । ଯାହା ଅବଶେଷ ରହିଲା ତାହା ଗତକଳା । ଏହାକୁ ପୁଣି ଭାଜକରୁ ବାଦଦେଲେ ଗମ୍ୟକଳା ରହିବ ।

ଏହି ଗତଗମ୍ୟ କଳାକୁ ୬୦ରେ ଗୁଣି ରବି ଚନ୍ଦ୍ରର ଗତି ଯୋଗରେ ହରିଲେ ବର୍ତ୍ତମାନ ଯୋଗର ଗତ ଓ ଗମ୍ୟ ଦଣ୍ଡାଦି ଆସିବ ।

ରବିରେ ୩୬୦ କଳା ମିଶାଇ ତାକୁ ସ୍ଫୁଟ ଚନ୍ଦ୍ରରୁ ଫେଡ଼ । ତାହାର ଲିପ୍ତା ଆଦିକୁ କରଣର ଭୋଗ କଳା ୩୬୦ରେ ହରି ଯାହା ଫଳ ଆସିବ ତାକୁ ୭ରେ ହର । ଏହି ଲବ୍ଧ ଶେଷ ହିଁ ଗତବବାଦି କରଣର ସଂଖ୍ୟା ହେବ । ୧ ମିଶାଇଲେ ପୁଣି ବର୍ତ୍ତମାନ କରଣର ସଂଖ୍ୟା ହେବ । ଏହାର ମଧ୍ୟଗତ ଓ ଗମ୍ୟ ଦଣ୍ଡାଦି ପୂର୍ବସ୍ଥିତରେ ବାହାର କରାଯାଇପାରିବ । ବବ ଆଦି ୭ଟି କରଣ । ଶୁକ୍ଳ ପ୍ରତିପଦାର ଶେଷାର୍ଦ୍ଧରୁ ବବାଦି ଆରମ୍ଭ ହୋଇ କୃଷ୍ଣ ଚତୁର୍ଦ୍ଦଶୀର ପ୍ରଥମାର୍ଦ୍ଧରେ ୮ ଥରରେ ପୂର୍ଣ୍ଣ ହୁଅନ୍ତି । କୃଷ୍ଣ ଚତୁର୍ଦ୍ଦଶୀର ଶେଷାର୍ଦ୍ଧରୁ ଶୁକ୍ଳ ପ୍ରତିପଦାର ପୂର୍ବାର୍ଦ୍ଧ ପର୍ଯ୍ୟନ୍ତ ୪ଟି ସ୍ଥିରକରଣ ରହନ୍ତି । ଏମାନଙ୍କର ନାମ ଶକୁନି, ନାଗ, ଚତୁଷ୍ପଦ ଓ କିଂସ୍ତୁଘ୍ନ । (ତିଥିର ଅର୍ଦ୍ଧକୁ କରଣ କହନ୍ତି । ଗୋଟିଏ ଚାନ୍ଦ୍ରମାସରେ ୩୦ଟି ତିଥି । ଏଣୁ ଏକ ଚାନ୍ଦ୍ରମାସର ତିଥ୍ୟର୍ଦ୍ଧ ସଂଖ୍ୟା ୬୦ । ଫଳରେ ଚଳକରଣ ୭ଟି ୮ ଥର ବୁଲିବାରେ ୫୬ ତିଥ୍ୟର୍ଦ୍ଧ ଯାଏ ବାକି ୪ଟି ତିଥ୍ୟର୍ଦ୍ଧପାଇଁ ଚାରି ସ୍ଥିରକରଣ ରଖାଯାଇ ଅଛନ୍ତି)

**ନାଡ଼ୀହରିଦ୍ୟନଧିକାଗତଗମ୍ୟଲିପ୍ତା—**
**ସ୍ତଦ୍‌ବୃଦ୍ଧିମୃଚ୍ଛତ ତିଥିପ୍ରମୁଖାଙ୍ଗ-ଜାତମ୍ ।**
**ଭୋଗା ନିଜା ବିକଳତାଃ ସ୍ୱଘଟୀହୃତାପ୍ତା—**
**ସ୍ତତତ୍ ପ୍ରମାଣଘଟିକାଦିଫଳଂ କ୍ଷୟାଦୌ ।୬୦।**

ସୂର୍ଯ୍ୟୋଦୟବେଳେ ବର୍ତ୍ତମାନ ତିଥିର ଯେଉଁ ଗତ ଓ ଗମ୍ୟ କଳାଦି ଆସେ ତାହା ଯଦି ତତ୍କାଳୀନ ରବି ଚନ୍ଦ୍ରର ଦୈନିକ ଗତ୍ୟନ୍ତରରୁ ଅଧିକ ହୁଏ, ତାହାହେଲେ ତିଥି ବୃଦ୍ଧି ହୁଏ । ଫଳରେ ଗୋଟିଏ ତିଥିର ସମୟ ମଧ୍ୟରେ ଗୋଟିଏ ସୌର ଦିନ ରହିଯାଇଥାଏ । ତିଥିର ପ୍ରକୃତ ଭୋଗ ବିକଳାକୁ ନିଜର ଘଟ୍ୟାଦି ଆଣିବା ନିମନ୍ତେ ଥିବା ହରରେ ହରି (ଗତ୍ୟନ୍ତର କଳାରେ) ତିଥିର ଘଟିକାଦି ଫଳ, ତିଥି ବୃଦ୍ଧି ଓ କ୍ଷୟରେ ସ୍ଥିର କରାଯାଇ ପାରିବ । ସବୁରକମ ତିଥିର ସମୟକୁ ଆଣିବାର ରୀତି ଆଗରୁ ଦିଆଯାଇସାରିଛି ।

**ମାସୋଽସଂକ୍ରମ ଐନ୍ଦବସ୍ତୁ ମଳନଃ ସୋଽନ୍ତର୍ଭବେଦୁତ୍ତରେ**
**ସଂକ୍ରାନ୍ତିଦ୍ୱୟଯୁକ୍ କ୍ଷୟୋ ଯଦି କଦା ତତ୍ ପାର୍ଶ୍ୱୟୋର୍ଦ୍ୱୌ ମଳୌ**
**ସ୍ୟାତାଂ ମାସଚତୁଷ୍ଟୟାନ୍ତରନୟୋଃ ସଂସର୍ପଣାମାଦମଃ ।**
**କ୍ଷୀଣୋଽହଂସ୍ପତିରନ୍ତମୋ ମଳ ଇମେ ତ୍ୟାଜ୍ୟା ବିବାହାଦିଷୁ ।୬୦।**

ଗୋଟିଏ ଅମାନ୍ତରୁ ତାର ପରବର୍ତ୍ତୀ ଅମାନ୍ତ ପର୍ଯ୍ୟନ୍ତ ସମୟକୁ ଚାନ୍ଦ୍ରମାସ କହନ୍ତି । ଏହି ସମୟ ମଧ୍ୟରେ ରବି ସଂକ୍ରାନ୍ତି ଥିଲେ ତାକୁ ଶୁଦ୍ଧ ଚାନ୍ଦ୍ରମାସ କହନ୍ତି । ରବି ସଂକ୍ରାନ୍ତି ନ ଥିଲେ ତାହାକୁ ମଳମାସ କୁହାଯାଏ । ମଳମାସ ଆଗାମୀ ଅମାନ୍ତ ଚାନ୍ଦ୍ରମାସର ଅନ୍ତର୍ଗତ ବୋଲି ବୁଝିବାକୁ ହେବ । ଏହି ଚାନ୍ଦ୍ରମାସ ମଧ୍ୟରେ କଦାଚିତ୍ ଦୁଇଟି ରବିସଂକ୍ରାନ୍ତି ରହିଲେ ତାହାକୁ କ୍ଷୟମାସ କହନ୍ତି । କ୍ଷୟମାସର ପୂର୍ବ ଚାନ୍ଦ୍ରମାସ ମଧ୍ୟରେ ଏକ ମଳମାସ ଓ ପର ଚାନ୍ଦ୍ରମାସ ମଧ୍ୟରେ ଏକ ମଳମାସ, ଏହିପରି ଦୁଇଟି ମଳମାସ ସେ ବର୍ଷ ହୋଇଥାଏ । ପୂର୍ବ ମଳମାସଟି ସଂସର୍ପ କ୍ଷୟ ମାସଟି ଅଂହସ୍ପତି ଓ ପର ମଳମାସଟି ମଳ ନାମରେ ନାମିତ ହୋଇଥାଏ । ଉଭୟ ମଳ ଓ କ୍ଷୟ ସମସ୍ତେ ବିବାହାଦି ଶୁଭ କାମରେ ବର୍ଜ୍ୟ ଅଟନ୍ତି । ଏ ମାସ ମାନଙ୍କରେ ବିବାହାଦି ଶୁଭକର୍ମ ହୋଇ ନପାରେ ।

> ଶ୍ରୌତସ୍ମାର୍ତ୍ତିକମାସିକାବ୍ଦିକବିଧୌ ସଂସର୍ପକାଂହସ୍ପତୀ
> ଶୁଦ୍ଧୌ ନାନ୍ୟ ମଳମ୍ଳୁଚଃ ସ ଚ ମଳାତୀତାବ୍ଦକେ ଗୃହ୍ୟତେ ।
> କର୍ମ୍ମାରମ୍ଭ ସମାପ୍ତି ମଧ୍ୟ ଉପରାଗାଦୌ ତଥା ଦୁର୍ଲ୍ଲଭେ
> ଯୋଗେ ଗଚ୍ଛତକେ ବ୍ରତେ ଜନୁରମାଶ୍ରାଦ୍ଧେନ୍ଦୁ ପୂଜାଦଷୁ ।୨୦୮।

ସଂସର୍ପ ଓ ଅଂହସ୍ପତି ଦୁଇମାସରେ ବେଦ ଓ ସ୍ମୃତି ବିହିତ ଯଜ୍ଞାଦି କର୍ମ କରାଯାଇ-ପାରେ । ମାସିକ ଓ ବାର୍ଷିକ ଶ୍ରାଦ୍ଧାଦି ଏ ଦୁଇଟିରେ ହେବ । ମାତ୍ର ଶେଷ ମଳମାସରେ ଏ ସବୁ କିଛି ହେବନାହିଁ ।

ମଳମାସରେ—ଅଜ୍ଞାତଙ୍କର (ମୃତଙ୍କର) ବାର୍ଷିକ ଶ୍ରାଦ୍ଧାଦି ନିମନ୍ତେ ମଳମାସ ଗୃହୀତ ହୋଇଥାଏ । କର୍ମାରମ୍ଭ ଓ ସମାପ୍ତି ମଧ୍ୟରେ ମଳ ଆସିଗଲେ ତାହା ଗଣନାରେ ଗୃହୀତ ହୋଇଥାଏ । ସେଥିରେ କୌଣସି କର୍ମାରମ୍ଭ ହୁଏ ନାହିଁ କି କର୍ମ ସମାପ୍ତି ମଧ୍ୟ ହୁଏନାହିଁ । ପୂର୍ବାରବ୍ଧ କର୍ମ ସେଥିରେ କରିବାକୁ ହୋଇଥାଏ । ସେଥିରେ ଗ୍ରହଣାଦି ହେଲେ ସ୍ନାନ, ଦାନାଦି କରିବାକୁ ହେବ । ଦୁର୍ଲ୍ଲଭ ଯୋଗ ମହାବାରୁଣୀ ଆଦି ଏ ମଳମାସରେ ପଡ଼ିଲେ ପାଳିବାକୁ ହେବ । ଅଗତିକ ବ୍ରତ, କାମ୍ୟ, କର୍ମ, ଅଭିଷେକ ଆଦି ଶାନ୍ତି ଓ ପୁଷ୍ଟି କର୍ମ, ଜାତକର୍ମ, ଅମାଶ୍ରାଦ୍ଧ ଓ ଇନ୍ଦୁପୂଜା ଆଦିପାଇଁ ଏହି ମଳମାସ ଗ୍ରହଣ କରିବାକୁ ହୋଇଥାଏ । ଏତଦ୍ଭିନ୍ନ ଶୁଭକର୍ମାଦି ଏଥିରେ ବର୍ଜ୍ୟ ଅଟେ ।

> ପ୍ରାଯ୍ଶଃସ୍ୟାତ୍ କ୍ଷୟମାସତଃ ପୁନରସୌ ବର୍ଷୈଃ କୁଟବେଦେନ୍ଦୁଭିଃ
> କିଂବା ଦ୍ୱିଦ୍ୱିକୁଭିଃ କ୍ୱଚନ୍ନବକୁଭିର୍ବର୍ଷେ ତୃତୀୟେ ମଳଃ ।
> ଯୁଗ୍ମସ୍ତ୍ରେଃର୍କ ମୃଦୌ ହି ସମ୍ପ୍ରତ ତପସ୍ୟାଦ୍ୟା ନବସ୍ୟୁର୍ମଳାଃ ।
> କ୍ଷୀଣା ଊର୍ଜ୍ଜମୁଖାସ୍ତ୍ରୟୋ ନ ତୁ ତପା ବୃଦ୍ଧିକ୍ଷୟାତ୍ୱୃଚ୍ଛତ ।୨୦୯।

ଗୋଟିଏ କ୍ଷୟମାସ ହେବାପରେ ୧୯, ୧୪୧ ବା ୧୨୨ ବର୍ଷରେ ପୁଣି କ୍ଷୟମାସ ପଡ଼ିଥାଏ । ମଳ ବା ଅଧିମାସ ସାଧାରଣତଃ ପ୍ରତି ତୃତୀୟ ବର୍ଷରେ ପଡ଼ିଥାଏ । ବର୍ତ୍ତମାନ ସୂର୍ଯ୍ୟର ମନ୍ଦୋଚ୍ଚ ମିଥୁନରେ ଥିବାରୁ ଫାଲ୍‌ଗୁନକୁ ଆରମ୍ଭ କରି ୯ ମାସ ମଧ୍ୟରେ ମଳମାସ ହୋଇପାରେ । କାର୍ତ୍ତିକକୁ ଆରମ୍ଭ କରି ୩ ମାସ କ୍ଷୟ ହୋଇ ପାରିବେ । ମାଘମାସ କିନ୍ତୁ କ୍ଷୟମାସ ବା ଅଧିମାସ ହୋଇ ନଥାଏ ।

**ଇତ୍ଥଂ ତଥ୍ୟାଦିତଥ୍ୟାବୟବ ପରିଗତା ପଞ୍ଜିକାସ୍ଥୂଳ ସଂଜ୍ଞା**
**ଗ୍ରାହ୍ୟାବହ୍ୱାଗମଜ୍ଞୈଃ ପ୍ରତିଶରଦୁଦୟନ୍ ନିତ୍ୟନୈମିତ୍ତିକେଷୁ ।**
**ଏକାଦଶ୍ୟାଦିପର୍ବ-ବ୍ରତସୁରଯଜନଶ୍ରାଦ୍ଧଦେବୋତ୍ସବାଦୌ**
**ଶସ୍ତା ବିସ୍ତାର୍ଯ୍ୟ ସୂକ୍ତା ଭବତୁ ଭୁବିହିତା ବୃଂହିତା ସଂହିତାର୍ଥୈଃ ।୨୧୦।**

ଏହିପରି ଭାବରେ ତିଥି ନକ୍ଷତ୍ର ଆଦି ଯଥାର୍ଥ ଅବୟବକୁ ନେଇ ସ୍ଥୂଳପଞ୍ଜିକା ପରିସମାପ୍ତ ହେଲା । ବହୁ ଶାସ୍ତ୍ର ଜାଣିଥିବା ପଣ୍ଡିତମାନେ ଏହି ସ୍ଥୂଳପଞ୍ଜିକାକୁ ଗ୍ରହଣ କରିବେ ଏବଂ ପ୍ରତିବର୍ଷର ନୈମିତ୍ତିକ ଓ ନିତ୍ୟକର୍ମ, ଏକାଦଶୀ ଆଦି ପର୍ବ, ବ୍ରତ, ହୋମ, ଶ୍ରାଦ୍ଧ ଓ ଦେବ ଉତ୍ସବାଦି ଏହି ଅନୁସାରେ କରିନେବେ । ଏହିସ୍ଥୂଳପଞ୍ଜିକା ପ୍ରଶସ୍ତ ଓ ଅତି ଭଲ ଆଲୋଚନାପରେ କରାଯାଇଅଛି; ଏହା ବିସ୍ତୃତ ମଧ୍ୟ । ଜ୍ୟୋତିଷ ସଂହିତାରେ ଥିବା ଗ୍ରହଗୃହାଦିର ଫଳ କଥା ଏଥିରେ ବିଶେଷ ଭାବରେ ଦିଆଯାଇଅଛି । ଏଣୁ ଏହା ସଂସାରର ମଙ୍ଗଳକାରକ ହେଉ ।

**ନିତ୍ୟନୈମିତ୍ତିକାଦ୍ୟୁତ୍ସବାର୍ଥୋତ୍ସୁକଃ**
**ପଞ୍ଜିକାଂ ବ୍ୟଞ୍ଜୟନ୍ନର୍ଯ୍ୟମାଦ୍ୟର୍ଜିତାମ୍ ।**
**ଅଞ୍ଜନାଦ୍ରିଚଳେ ଭ୍ରାଜତେ ଯଃ ସଦା**
**କଞ୍ଜନାଭଂ ଭଜେ ତଂ ଭବୋଭଞ୍ଜନମ୍ ।୨୧୧।**

ନିତ୍ୟ ନୈମିତ୍ତିକ ଯେତେ ମଙ୍ଗଳଜନକ କାର୍ଯ୍ୟ ଅଛି ସେ ବିଷୟରେ ବାସ୍ତବରେ ମୁଁ ବଡ଼ ଉତ୍କଣ୍ଠିତ । ତେଣୁ ସେ ବିଷୟରେ ସାହାଯ୍ୟ କରିବା ନିମିତ୍ତ ସୂର୍ଯ୍ୟାଦି ଗ୍ରହ ସମ୍ବଳିତ ଏହି ପଞ୍ଜିକା ତିଆରି କରିଅଛି ।

ଅଞ୍ଜନର ଆଦ୍ରିପରି ଆଭା (କାନ୍ତି) ଯାହାର ସେହି ନୀଳାଚଳରେ ଯେଉଁ ଦାରୁବ୍ରହ୍ମ ଶ୍ରୀ ଜଗନ୍ନାଥ ସର୍ବଦା ବିରାଜମାନ ହେଉଅଛନ୍ତି ଏବଂ ଯେ ସଂସାରର ମୁକ୍ତିଦାତା ଓ ପଦ୍ମନାଭ ସେହି ପ୍ରଭୁଙ୍କୁ ମୁଁ ଭଜନ କରୁଅଛି ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳପ୍ରସୂତ-
ଶ୍ରୀଚନ୍ଦ୍ରଶେଖର କୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତ ବାଳବୋଧେଽ—
ଯାତ୍‌ପଞ୍ଚମଃ ସ୍ଫୁଟଖଗଃ ସଫଳଃ ପ୍ରକାଶଃ ।୨୯୬।

**ଇତ ଶ୍ରୀ ଚନ୍ଦ୍ରଶେଖର ସିଂହକୃତୌ ସିଦ୍ଧାନ୍ତଦର୍ପଣେ ସ୍ଫୁଟାଧିକାରେ
ସଖଣ୍ଡଫଳ-ଗ୍ରହସ୍ଫୁଟୀକରଣ-ସ୍ଥୂଳପଞ୍ଚାଙ୍ଗ ବର୍ଣ୍ଣନୋ
ନାମ ପଞ୍ଚମଃ ପ୍ରକାଶଃ ।**

ଏଠାରେ ପଞ୍ଚମ ପ୍ରକାଶ ଶେଷ ହେଲା । ଏଥିରେ ଫଳ (ଖଣ୍ଡଫଳାଦ) ସନ୍ୱିତ ଗ୍ରହସ୍ଫୁଟ କରିବାର ମାର୍ଗ ପ୍ରଦର୍ଶିତ ହୋଇଅଛି ।

## ଷଷ୍ଠଃ ପ୍ରକାଶଃ

( ସୂକ୍ଷ୍ମ ପଂକ୍ତିକା ଖାଦ୍ୟାଦି ବର୍ଣ୍ଣନମ୍ )

ଉଦ୍ ବାହୋପନୟପ୍ରୟାଣଜଳୟଜ୍ଞତ୍ୱାଦକ୍ଷୁ ଦ୍ରାଙ୍ଗ୍ମହା—
ରମ୍ଭେଷ୍ୱିଷ୍ଟଫଳାପ୍ତୟେ କିଳ ମୟା ସୂକ୍ଷ୍ମୋଚ୍ୟତେ ପଂକ୍ତିକା
ଦୃକ୍ ସିଦ୍ଧାପମ ମାର୍ଗଣଗ୍ରହଣଯୁଗ୍ ଯୋଗୋଦୟାସ୍ତଂ ମହା—
ପାତାଦ୍ୟଂ ତଥିଭାଦି କାର୍ଯ୍ୟମନୟା ସୂକ୍ଷ୍ମାର୍କ-ଚନ୍ଦ୍ରୋଦ୍ଭବମ୍ ।୧।

ବିବାହ, ଉପନୟନ, ଯୁଦ୍ଧଯାତ୍ରା, ଗୃହାରମ୍ଭ, ଯଜ୍ଞ ଓ ଜାତକ କର୍ମ ଆଦି ବଡ଼ ବଡ଼ କାର୍ଯ୍ୟରେ ଅତିଶୀଘ୍ର ଫଳପ୍ରାପ୍ତି ନିମନ୍ତେ ମୁଁ ବର୍ତ୍ତମାନ ସୂକ୍ଷ୍ମ ପଞ୍ଜିକା କଥା କହୁଅଛି । ଏହି ସୂକ୍ଷ୍ମ ପଞ୍ଜିକା ସାହାଯ୍ୟରେ କ୍ରାନ୍ତି, ଶର, ଚନ୍ଦ୍ର ଓ ସୂର୍ଯ୍ୟଗ୍ରହଣ, ଗ୍ରହ ଓ ନକ୍ଷତ୍ର ଯୋଗ ଉଦୟ ଓ ଅସ୍ତ, ମହାପାତ (ରବି ଓ ଚନ୍ଦ୍ରର କ୍ରାନ୍ତିସାମ୍ୟ) ତିଥି, ନକ୍ଷତ୍ର ଯୋଗ ଓ କରଣାଦି ସାଧନ କରିବ । ପଞ୍ଚାଙ୍ଗ ସୂକ୍ଷ୍ମ ରବି ଓ ଚନ୍ଦ୍ର ନେଇହିଁ କରିବାକୁ ହେବ ।

ବୃଦ୍ଧୌ ପଞ୍ଚ ତଥୈଃ କ୍ଷୟେ ରସ ମିତା ନାଡ୍ୟଃ ପୁରାଣୈର୍ମତାଃ
ନିତ୍ୟଂ ଯତ୍ପରମାସ୍ତତୋ ବ୍ୟବହୃତୌ ସ୍ଥୂଳେଷ୍ୟତେ ପଂକ୍ତିକା
ପ୍ରତ୍ୟକ୍ଷାନୁଭବଂ ନ ଲୁଂପତି ବଚୋ-ଯୁକ୍ତ୍ୟର୍ଯତସ୍ତନ୍ମୟା
ତତ୍ସାକ୍ଷାତ୍କରଣାୟ କାମ୍ୟବିଧୟେ ସୂକ୍ଷ୍ମା ପରା ତନ୍ୟତେ ।୨।

ସାଧାରଣତଃ ଗୋଟିଏ ତିଥି ୬୦ ଦଣ୍ଡ । ପ୍ରାଚୀନମାନେ ତିଥି ୬୫ ଦଣ୍ଡ ଯାଏ ବଢ଼ିଯିବା ଏବଂ କମିଲେ ୫୪ ଦଣ୍ଡଯାଏ କମିଆସିବା ସ୍ୱୀକାର କରନ୍ତି । (ବୃଦ୍ଧି ୫ ଓ ହ୍ରାସ ୬) ଫଳରେ ସେମାନଙ୍କ ପଞ୍ଜିକା ସ୍ଥୂଳ ହୋଇ ପଡ଼ୁଛି ଏଥିରେ ସନ୍ଦେହ ନାହିଁ । ମାତ୍ର ବାସ୍ତବରେ ତିଥିର ବୃଦ୍ଧି ଓ କ୍ଷୟ ଏହାଠାରୁ ଯଥେଷ୍ଟ ବେଶି । ତେଣୁ ପ୍ରାଚୀନ ମତକୁ ନେଇ ସ୍ଥୂଳ ପଞ୍ଜିକା ରଚନା (୫ମ ପ୍ରକାଶ) ସ୍ପଷ୍ଟ କହିସାରିବା ପରେ ବର୍ତ୍ତମାନ ସୂକ୍ଷ୍ମ ପଞ୍ଜିକା ନିର୍ମାଣ

ଗତ ବର୍ଣ୍ଣନା କରୁଅଛୁ । କାମ୍ୟ କର୍ମାଦି କରି ଫଳ ପାଇବା ପରେ ତିଥି ଆଦିର ବାସ୍ତବ-ପ୍ରତ୍ୟକ୍ଷ ହେବ । ପ୍ରତ୍ୟକ୍ଷ ଅନୁଭବକୁ ବାଗ୍‌ଯୁକ୍ତି କେବେହେଲେ ଦବାଇପାରେ ନାହିଁ । ଏଣୁ ପ୍ରତ୍ୟକ୍ଷ ଅନୁଭୂତରେ ଆସିଥିବା ତିଥ୍ୟାଦି ସାଧନ ଉଦ୍ଦେଶ୍ୟରେ ସୂକ୍ଷ୍ମ ପଞ୍ଜିକା ପ୍ରଣୟନର ଏ ଗତ ବର୍ତ୍ତମାନ ମୁଁ ବର୍ଣ୍ଣନା କରୁଅଛୁ ।

ଦୃକ୍ ତୁଲ୍ୟତାଂ ଗଚ୍ଛତ ପର୍ବସନ୍ଧି-
ର୍ଯେନାର୍କ—ବଧ୍ୱୋଃ ପରଧିଦ୍ୱୟେନ ।
ତନ୍ମାଦ-ସଂସିଦ୍ଧଫଳାଗତାଙ୍ଗା
ସପୃଞ୍ଜିକା ସ୍ଥୂଳତୟା ପୁରୋକ୍ତା ।୩।

ସୂକ୍ଷ୍ମାର୍କଦୋଃ ଖଣ୍ଡଫଳୈ ସ୍ତୁ ସୂକ୍ଷ୍ମା
କାର୍ଯ୍ୟାହମାଂଶୋ ବହୁଭିର୍ବିଶେଷୈଃ
ତଦ୍ୱୈଷସିଦ୍ଧଃ ପରତଧରଭେଦାତ୍
ଫଳୈସ୍ତଦୁତ୍ଥୈଃ ପ୍ରଥମଃଗ୍ରହଃ ସ୍ୟାତ୍ ।୪।

ଏତସ୍ୟ ସୂକ୍ଷ୍ମସ୍ୟ ରବେଶ୍ଚ ଗତ୍ୟା ବମ୍ବପ୍ରମାଣଂ ସ୍ଥିରପର୍ବସନ୍ଧିଃ
ଛାୟା ଭୁବସ୍ତଦ୍ ଯୁଗମନ୍ଦକର୍ଣ୍ଣଃ ସୂର୍ଯ୍ୟଗ୍ରହେ ସିଧତଲମ୍ବନଂଚ ।୫।

ଭୁଙ୍ଗାନ୍ତରଂ ପାକ୍ଷିକନାମଧେୟଂ ଫଳଂ ଦଶାଂଶାଖ୍ୟ ମଦସ୍ଫୁରୀୟମ୍
କ୍ରମେଣ ବକ୍ଷ୍ୟାମି ପରୀକ୍ଷ୍ୟ ଯତ୍ନାଚ୍ଛିବାଂଗତଂ ଗ୍ରହପତେଶ୍ଚ ଗ୍ରହ ।୬।

ରବି ଓ ଚନ୍ଦ୍ରର ଦୁଇ ମନ୍ଦ ପରଧିକୁ ନେଇ ଯେଉଁ ଅମା ଓ ପୂର୍ଣ୍ଣିମା ଆସେ ଅର୍ଥାତ୍ କେବଳ ମନ୍ଦଫଳ ସଂସ୍କାରରେ ସ୍ଫୁଟ ରବି ଓ ଚନ୍ଦ୍ରକୁ ନେଇ ଯେଉଁ ଦୃକ୍‌ସିଦ୍ଧ ଅମା ଓ ପୂର୍ଣ୍ଣିମା ଆସେ ତତ୍ ପ୍ରଯୁକ୍ତ ପଞ୍ଜିକା ମୁଁ ସ୍ଥୂଳଭାବରେ କହିଗଲି (୫ମ ପ୍ରକାଶରେ)।

ସୂକ୍ଷ୍ମଭୁଜ ଖଣ୍ଡାଦି ଫଳରେ ସୂକ୍ଷ୍ମ ରବି ଚନ୍ଦ୍ର ଏବଂ ନାନା ସଂସ୍କାର-ସଂସ୍କୃତ ଚନ୍ଦ୍ର ସ୍ଫୁଟ କରି ଏଥିରୁ ଯେଉଁ ତିଥ୍ୟାଦି ନେଇ ପାଞ୍ଜି କରାଯିବ ସେହି ସୂକ୍ଷ୍ମ ପାଞ୍ଜି ଯେପରି କରାଯିବ ତାହା କହୁଅଛୁ ।

(ବାର, ତିଥି, ନକ୍ଷତ୍ର, ଯୋଗ ଓ କରଣ ଏହା ପାଞ୍ଚଟି ଅଙ୍ଗ, ଏଗୁଡ଼ିକ ଥିବା ବହିକୁ ସେଥିନିମନ୍ତେ ପଞ୍ଚାଙ୍ଗ କହନ୍ତି । ପଞ୍ଚାଙ୍ଗହିଁ ପଞ୍ଜିକା । ଏଥିରେ ପଞ୍ଚାଙ୍ଗର ଅସଲ ବିବରଣ ଥାଏ । 'ଟୀକା ନରନ୍ତର ବ୍ୟାଖ୍ୟା ପଞ୍ଜିକା ପଦନକ୍ତିକା' ଏହି ପାଞ୍ଚଟି ଓ ଅନ୍ୟ

ଗୁଡ଼ିକ ଚନ୍ଦ୍ର ଓ ସୂର୍ଯ୍ୟ ଉପରେ ନିର୍ଭର କରନ୍ତି । ଏଣୁ ରବି ଚନ୍ଦ୍ର ଅତିସ୍ଫୁଟ ହୋଇଥିଲେ ସେଥିରୁ ତିଥି, ନକ୍ଷତ୍ର, ଯୋଗ ଓ କରଣ ମଧ୍ୟ ଅତି ସୂକ୍ଷ୍ମ ହେବାକଥା । )

ରବି ଓ ଚନ୍ଦ୍ରର ମନ୍ଦପରିଧି ସୂକ୍ଷ୍ମ ତଥା ସ୍ଥୂଳ ଉଭୟ ମତରେ ସମାନ ଭିନ୍ନ ନୁହେଁ । ଏଣୁ ମନ୍ଦଫଳ ସଂସ୍କୃତ ରବି ଓ ଚନ୍ଦ୍ର ପ୍ରଥମ ଗ୍ରହ ହିସାବରେ ଗୃହୀତ ହୋଇଛି । ଏହି ପ୍ରଥମ ଚନ୍ଦ୍ର ଗ୍ରହ ତଥା ରବିର ସ୍ଫୁଟ ଗତିରୁ ବିମ୍ବମାନ ସ୍ଫୁଟ ପର୍ବାନ୍ତକାଳ ଭୂଚ୍ଛାୟା ପରିମାଣ ରବି ଓ ଚନ୍ଦ୍ରର ଦୁଇ ମନ୍ଦକର୍ଣ୍ଣ ଓ ସୂର୍ଯ୍ୟ ଗ୍ରହଣର ଲମ୍ବନ ସାଧନ କରାଯାଏ ।

ଚନ୍ଦ୍ରଗତି ଅତି ବିଚିତ୍ର ଏହା ମୁଁ ବହୁଦିନ ଧରି ପର୍ଯ୍ୟବେକ୍ଷଣ କରି କରି ଅତି ଯତ୍ନସହକାରେ ଚନ୍ଦ୍ରରେ ମନ୍ଦଫଳ ଛଡ଼ା ଆହୁରି ତିନି ଫଳ ସଂସ୍କାର କଥା କହୁଛି । ଏହି ଚାରିଟି ଫଳ ହେଲା —ମନ୍ଦ, ତୁଙ୍ଗାନ୍ତର, ପାକ୍ଷିକ ଓ ଦିଗଂଶ ।

ଅଭୀଷ୍ଟକାଲୋତ୍ଥିତ ଚନ୍ଦ୍ରମନ୍ଦାତ୍
ପକ୍ଷେ ସିତେ ସବିଭସୂର୍ଯ୍ୟହୀନାତ୍ ।
କୃଷ୍ଣେ ବିଭୋନାର୍ଯ୍ୟମବର୍ଜିତାଦ୍ ଯଦ୍
କେନ୍ଦ୍ରଂ ତଦୀୟାଦ୍ଭୁଜମୌର୍ବିକାଯା ।୭।

ଯାଭ୍ରାଙ୍ଗଭୂଘ୍ନୀ ବିଗୁଣେନ ଭକ୍ତା
ସ୍ଫୁଟାର୍କ-ଚନ୍ଦ୍ରାନ୍ତର-ଦୋର୍ଗୁଣ ଘ୍ନୀ ।
ତ୍ରିଜ୍ୟୋଦ୍ଧୃତା ଲବ୍ଧମତଃ କଳାଦ୍ୟଂ
ଗତ୍ୟାବିନଘ୍ନଂ ପ୍ରଥମ-ସ୍ଫୁଟେନ୍ଦୋଃ ।୮।

ତନ୍ମଧ୍ୟଗତ୍ୟା ବିହୃତଂ ଫଳଂସ୍ୟା-
ତ୍ତୁଙ୍ଗାନ୍ତରଂ ତେନ ବିହୀନ ଯୁକ୍ତଃ ।
ପର୍ଯ୍ୟାୟତଃ ସବିଭ-ବବିଭାର୍କ
ହୀନେନ୍ଦୁମନ୍ଦୋଚ୍ଚଭବୋକ୍ତ କେନ୍ଦ୍ରେ ।୯।

ତୁଲାଧରାଜାଦଭବତ୍ କନଷ୍ଟେ
ପ୍ରାକ୍ସିଦ୍ଧ—ଚନ୍ଦ୍ରୋ ଭବତ ଦ୍ୱିତୀୟଃ ।
ତଦ୍ସୂକ୍ଷ୍ମ ସୂର୍ଯ୍ୟାନ୍ତର କେନ୍ଦ୍ର ପାଦ
ଯାତୈଷ୍ୟଦଲ୍ପାଃ କଳକା ଦ୍ୱିଜଘ୍ନାଃ ।୧୦।

**ମୌର୍ବୀ କୃତାହାର ହୃତାଃ ଫଳଂସ୍ୟାତ୍**
**କଳାତ୍ମକଂ ପାକ୍ଷିକ ନାମଧେୟମ୍**
**ପକ୍ଷାର୍ଦ୍ଧୟୋଃ ପ୍ରାକ୍‌ପରୟୋ ସ୍ତଦାଢ଼୍ୟ**
**ହୀନ ସ୍ତୃତୀୟତ୍ୱମୁପୈତ ସୋଽୟମ୍ ।୧୯।**

ଶୁକ୍ଳପକ୍ଷରେ ସୂକ୍ଷ୍ମସୂର୍ଯ୍ୟରେ ତିନରାଶି ମିଶାଇ ତାକୁ ଇଷ୍ଟ କାଳକ ଚନ୍ଦ୍ର ମନ୍ଦୋଚ୍ଚରୁ ଫେଡ଼ । କୃଷ୍ଣ ପକ୍ଷରେ ସୂକ୍ଷ୍ମସୂର୍ଯ୍ୟରୁ ତିନରାଶି ବାଦ୍ ଦେଇ ତାକୁ ଇଷ୍ଟ କାଳକ ଚନ୍ଦ୍ର ମନ୍ଦୋଚ୍ଚରୁ ଫେଡ଼ । ଉଭୟଥା ଏହି ଯେ କେନ୍ଦ୍ର ହେଲା ତାକୁ ତୁଙ୍ଗାନ୍ତର କହନ୍ତି । ତାହାର ଭୁଜଜ୍ୟା ଆଣ । ଏହାକୁ ୧୬°ରେ ଗୁଣି ୩୪୩୮ରେ ହରିଲେ ଯାହା ଲବ୍ଧି ହେବ ତାକୁ ସୂକ୍ଷ୍ମରବି ଓ ପ୍ରଥମ ସ୍ଫୁଟ ଚନ୍ଦ୍ରର ଅନ୍ତର ଭୁଜଜ୍ୟାରେ ଗୁଣି ପୁଣି ତ୍ରିଜ୍ୟାରେ ଭାଗ ଦେଲେ କଳାଦି ଯେଉଁ ଫଳ ହେବ ତାକୁ ପ୍ରଥମ ସ୍ଫୁଟ ଚନ୍ଦ୍ରର ଗତିରେ ଗୁଣି ମଧ୍ୟମ ଚନ୍ଦ୍ର ଗତିରେ ହରିଲେ ଶେଷରେ ଯେଉଁ କଳାଦି ଫଳ ହେବ, ତାହାକୁ ହିଁ ତୁଙ୍ଗାନ୍ତର ଫଳ କହନ୍ତି ।

ତୁଙ୍ଗାନ୍ତର କେନ୍ଦ୍ର ତୁଳାଦି ୬ରାଶି ବା ମେଷାଦି ୬ରାଶିରେ ଥିଲେ ଏହି ଫଳକୁ ପ୍ରଥମ ସ୍ଫୁଟ ଚନ୍ଦ୍ରରେ ଯୁକ୍ତ ଓ ବିଯୁକ୍ତ ଯଥାକ୍ରମରେ କଲେ ୨ୟ ସ୍ଫୁଟ ଚନ୍ଦ୍ର ଆସିଯାଇ-ପାରିବ ।

ପାକ୍ଷିକ ଫଳ—ଦ୍ୱିତୀୟ ସ୍ଫୁଟ ଚନ୍ଦ୍ର ଓ ସୂକ୍ଷ୍ମ ସ୍ଫୁଟ ରବିର ଅନ୍ତର ଫଳକୁ କେନ୍ଦ୍ର ମନେକରିବା ଏହି କେନ୍ଦ୍ର ଯେଉଁ ବୃତ୍ତ ପାଦରେ ପଡ଼ିବ ତାର ଗତ ଓ ଗମ୍ୟ ଖଣ୍ଡ ଦେଖା ଉଭୟ ମଧ୍ୟରେ ଯେ ଛୋଟ ତାହାକୁ କଳା କରିଦିଅ । ତାକୁ ୨ରେ ଗୁଣି ଏହି ଗୁଣ ଫଳର ଜ୍ୟା ବାହାର କର । ଆଗକୁ ଦିଆଯାଉଥିବା ଭାଜକରେ ତାକୁ ହରିଲେ କଳାଦି ଲବ୍ଧି ପାକ୍ଷିକଫଳ ଆସିଯାଇ ପାରିବ । ପକ୍ଷର ପୂର୍ବାର୍ଦ୍ଧରେ ଓ ପରାର୍ଦ୍ଧରେ ଚନ୍ଦ୍ରଥିଲେ ଏହି ପାକ୍ଷିକଫଳକୁ ସେଥିରେ ଯଥାକ୍ରମେ ଯୋଗ ବା ବିୟୋଗ କଲେ ସ୍ଫୁଟଫଳ ହେବ ।

**ସୂର୍ଯ୍ୟୋନତଦ୍ୱ୍ୟୋଚ୍ଚବିଧୂଚ୍ଚଶେଷ**
**ଭୁଜାଂଶକାନ୍ୟୋଽନ୍ୟବିଘାତପିଣ୍ଡାତ୍**
**ଖାଷ୍ଟେନ୍ଦୁ ଭକ୍ତାଶ୍ଚ ଫଳଂ ନବତ୍ୟା**
**ଯୁକ୍ତଂ ତୃତୀୟାୟ ଫଳାୟ ହାରଃ ।୨୦।**

ପାକ୍ଷିକ ଫଳ ନିମନ୍ତେ ହାର-ରବି ମନ୍ଦୋଚ ଓ ଚନ୍ଦ୍ର ମନ୍ଦୋଚ୍ଚରୁ ଅଲଗା ଅଲଗା ସୂର୍ଯ୍ୟ ବିଯୁକ୍ତ କଲେ ଯେଉଁ ଦୁଇଟି ଫଳ ଆସିବ ସେ ଦୁଇଟିର ଭୁଜ ଚାପ ଆଣି ଗୋଟିକୁ ଅନ୍ୟଟିରେ ଗୁଣ । ଗୁଣଫଳକୁ ୧୮୦°ରେ ହରି ଲବ୍ଧିକୁ ୯୦°ରେ ଯୋଗ କଲେ ପାକ୍ଷିକ ଫଳ ନିମନ୍ତେ ହାର ଆସିଯିବ ।

**ସ୍ୱର୍ତ୍ତାର୍କଦୋଃ ସୂକ୍ଷ୍ମଫଳଂ ଦଗାପ୍ତମାଦେୟନ୍ଦୁଗତ୍ୟା ହୃତମଧ୍ୟଭକ୍ତମ୍ ।**
**ତୁର୍ଯ୍ୟଂ ଫଳଂ ସ୍ୟାତ୍ କ୍ରମତସ୍ତଦୂନଯୁକ୍ତଃ ଶଶୀ ଦୃକ୍‌ସମ ଏଷ ସୂକ୍ଷ୍ମଃ ।୧୩।**

ଦଗଂଶ ଫଳ—ରବିର ସ୍ପଷ୍ଟ ମନ୍ଦଫଳକୁ ୧୦ରେ ହରି ଫଳକୁ ସ୍ଫୁଟ ଚନ୍ଦ୍ରଗତିରେ ପୁଣି ଚନ୍ଦ୍ର ମଧ୍ୟଗତିରେ ହରିଲେ ଦଗଂଶ ଫଳ ହେବ । ସ୍ପଷ୍ଟ ରବି ଭୁଜଫଳ (ମନ୍ଦ) ଧନ ହୋଇଥିଲେ ବା ଋଣ ହୋଇଥିଲେ (ଯୋଗ, ବିୟୋଗ) ଏହି ଦଗଂଶ ଫଳକୁ ୩ୟ ଚନ୍ଦ୍ର ସ୍ଫୁଟରେ ଯଥାକ୍ରମେ ଯୁକ୍ତ ବିଯୁକ୍ତ ଓ ଯୁକ୍ତ କଲେ ତାହା ୪ର୍ଥ ସ୍ଫୁଟ ଚନ୍ଦ୍ର ହେବ । ଏହା ପ୍ରତ୍ୟକ୍ଷ ହେବ । ଏହି ଚନ୍ଦ୍ରହିଁ ଅତିସୂକ୍ଷ୍ମ ସ୍ଥିତିରେ ଦୃକ୍ ସିଦ୍ଧ ।

**ସ୍ଥଳୀଷୁ ଜଙ୍ଗମ୍ୟତ ଏବ ଯଦ୍ୱଦ୍ ଭୁଜଙ୍ଗ ଋଜ୍ୱୀଂ ଗତମେତ ଗର୍ତ୍ତେ**
**ସଦୋଚ-କର୍ଷୀତଗ ଏବମିନ୍ଦୁ ସ୍ତ୍ରଥାମ୍ୟ ମାଗଚ୍ଛତ ପର୍ବସନ୍ଧୌ ।୧୪।**

**ତଦାପ୍ୟତୁଙ୍ଗାନ୍ତରପକ୍ଷିକେ ସ୍ୟାତ୍**
**ସୂକ୍ଷ୍ମେ ଦଗଂଶାଖ୍ୟଫଳଂ ଯଥାହେଃ**
**ମତାଲ୍ପବନ୍ଧା ସ୍ୱଗତର୍ବିଳେଽପି**
**ପାର୍ଶ୍ୱଦ୍ୱୟସ୍ପର୍ଶଦୃଢ଼ାବୃଢ଼ିତ୍ୱାତ୍ ।୧୫।**

ସାପ ସାଧାରଣତଃ ସ୍ଥଳପଥରେ ଗୁଳିଯାଉଥିବାବେଳେ ବକ୍ର ଗତିରେ ଯାଏ । ମାତ୍ର ଗାତରେ ପଶିବାବେଳେ ତାର ଗତି ସରଳ ହୋଇପଡ଼େ । ଠିକ୍ ସେହିପରି ଚନ୍ଦ୍ର ସର୍ବଦା ଉଚ୍ଚାକୃଷ୍ଟ ହୋଇଯାଉଥିବାବେଳେ ମଧ୍ୟ ଉଚ୍ଚ ଆକର୍ଷଣକୁ ନମାନି ନାନାପ୍ରକାର ଗତିର ବଶବର୍ତ୍ତୀ ହୋଇଥାଏ । ମାତ୍ର ଅମାବାସ୍ୟା ଓ ପୂର୍ଣ୍ଣମୀରେ ତାର ଏ ଗତି ବୈଚିତ୍ର୍ୟ ଦେଖାଯାଏ ନାହିଁ । ମନ୍ଦୋଚ୍ଚାକୃଷ୍ଟ ଗତିରେ ବରାବର୍ ଗୁଳିଥାଏ । ଏଣୁ ଅମାବାସ୍ୟା ଓ ପୂର୍ଣ୍ଣିମାରେ ଚନ୍ଦ୍ର କେବଳ ମନ୍ଦ ଫଳରେହିଁ ସଂସ୍କୃତ ଓ ସୂକ୍ଷ୍ମ ହୋଇଥାଏ । ଫଳରେ ସେତେବେଳେ ତୁଙ୍ଗାନ୍ତର ବା ପାକ୍ଷିକ ଫଳର ଆବଶ୍ୟକତା ନାହିଁ । ତେବେ ସାପଗାତରେ ପଶିଲାବେଳେ ମଧ୍ୟ ଗାତର ପାର୍ଶ୍ୱ ଲାଗି ଯେପରି ସାପର ସ୍ୱାଭାବିକ ଗତିରେ ବାଧା ଆସେ, ସେହିପରି ପର୍ବସନ୍ଧି (ଅମାବାସ୍ୟା ଓ ପୂର୍ଣ୍ଣିମା) ନିକଟରେ ଚନ୍ଦ୍ର ମନ୍ଦଫଳଦ୍ୱାରା ସ୍ଫୁଟ ହୋଇଯାଉଥିଲେ ମଧ୍ୟ ସେଥିରେ ଦଗଂଶ ଫଳ ଦେବାକୁ ହେବ । ପର୍ବସନ୍ଧିରେ ଦଗଂଶ ଫଳ ସଂସ୍କାର କରିବାକୁ ହେବ ।

**ଭୁଜାନ୍ତରାଖ୍ୟଂ ଫଳମର୍କସୂକ୍ଷ୍ମ**
**ସ୍ଥୂଳାମୃଦୋଃଖଣ୍ଡଫଳାଦ୍ ବିଧେୟମ୍ ।**
**କ୍ରମାଦଣୁ ସ୍ଥୂଳବିଧୌ ନ ତୁ ସ୍ୟାତ୍**
**ସ୍ଫୁଟୀକ୍ରିୟା ନୈୟାଽନ୍ୟ ବିପର୍ଯ୍ୟୟେଣ ।୧୬।**

ସୂକ୍ଷ୍ମ ଓ ସ୍ଥୂଳ ଉଭୟ ଖଣ୍ଡରେ ରବିର ମନ୍ଦଭୁଜଫଳ ଆଣିବାକୁ ହେବ। ସୂକ୍ଷ୍ମ ନିମନ୍ତେ ସୂକ୍ଷ୍ମ ସାରଣୀ ଏବଂ ସ୍ଥୂଳ ନିମନ୍ତେ ସ୍ଥୂଳ ସାରଣୀ ବ୍ୟବହାର କରାଯିବା ଉଚିତ। ମନେରଖିବାକୁ ହେବ ଯେ ସୂକ୍ଷ୍ମମନ୍ଦଫଳ ଆଣିବାବେଳେ ସ୍ଥୂଳସାରଣୀ ବ୍ୟବହାର କରାଯିବ-ନାହିଁକି ସ୍ଥୂଳ ମନ୍ଦ ଆଣିବାବେଳେ ସୂକ୍ଷ୍ମ ସାରଣୀ ବ୍ୟବହାର କରାଯିବନାହିଁ।

ଭୁଙ୍ଗାନ୍ତରଂ ଯତ୍ ଫଳମତ୍ର ସିଦ୍ଧଂ
ତ୍ରିଜ୍ୟାହୃତଂ ତତ୍ ପ୍ରଥମେନ୍ଦୁଭାନ୍ୱୋଃ।
ବିଶ୍ଳେଷଦୋର୍ଜ୍ୟାପ୍ତଫଳଂ ତଦୀୟା-
ନ୍ତରୋତ୍‌ଥକୋଟୀଗୁଣସଙ୍ଗୁଣଞ୍ଚ।୧୭।

ତ୍ରିଜ୍ୟୋଦ୍ଧୃତଂ ତତ୍ ପୁନରର୍କଚନ୍ଦ୍ର
ଗତ୍ୟନ୍ତର ଘ୍ନଂ ତ୍ରିଗୁଣାପ୍ତଲବ୍ଧମ୍।
ଯୋଜ୍ୟଂତଦେବ ପ୍ରଥମେନ୍ଦୁଭୁକ୍ତି
ଫଳେ ଭବେଦ୍‌ଭୁକ୍ତଫଳଂ ଦ୍ୱିତୀୟମ୍।୧୮।

ଚନ୍ଦ୍ରର ସୂକ୍ଷ୍ମ ସ୍ଫୁଟ ଗତି :—

ସୂକ୍ଷ୍ମ ଉପାୟରେ ଅଣାଯାଇଥିବା ଭୁଙ୍ଗାନ୍ତର ଫଳକୁ ତ୍ରିଜ୍ୟାରେ ଗୁଣି ପ୍ରଥମ ସ୍ଫୁଟ-ଚନ୍ଦ୍ର ଓ ସୂକ୍ଷ୍ମ ସ୍ଫୁଟ ସୂର୍ଯ୍ୟର ଅନ୍ତର ଜ୍ୟାରେ ହରଫଳକୁ ଆଦ୍ୟ ସ୍ଫୁଟଚନ୍ଦ୍ର ଓ ସୂକ୍ଷ୍ମରବିର ଅନ୍ତର କୋଟି ଜ୍ୟାରେ ଗୁଣି ତ୍ରିଜ୍ୟାରେ ହର। ଫଳକୁ ପୁଣି ରବିସ୍ଫୁଟ ଗତି ଓ ପ୍ରଥମ ଚନ୍ଦ୍ରସ୍ଫୁଟ ଗତିରେ ଅନ୍ତରରେ ଗୁଣି ତ୍ରିଜ୍ୟାରେ ହର। ଫଳ ଯାହାହେବ ପ୍ରଥମ ସ୍ଫୁଟ-ଚନ୍ଦ୍ରର ଗତିଫଳରେ ଯୋଗକଲେ ଦ୍ୱିତୀୟ ଗତିଫଳ ହେବ। ଏହି ଗତିଫଳକୁ ଚନ୍ଦ୍ରର ମଧ୍ୟମ ଗତିର ଯୋଗ ବା ବିଯୋଗ କରିବ। (୧ମ ଗତି ନିମନ୍ତେ ପ୍ରତି ଗତିଫଳ ଯେପରି ଯୋଗ, ବିଯୋଗ କରାଯାଇଥିବ ଠିକ୍ ସେହିପରି ଏହି ବିଯୋଗ ବା ଯୋଗକରିବାକୁ ହେବ। ତାହାହେଲେ ଦ୍ୱିତୀୟ ଚନ୍ଦ୍ରଗତି ହେବ।

ତତ୍ ସଂସ୍କୃତଂ ମଧ୍ୟଗତୌପୁରୋବତ୍
ଭବେଦ୍ ଦ୍ୱିତୀୟା ରଜନୀଶଭୁକ୍ତିଃ।
ବର୍ଗୀକୃତଂ ପାକ୍ଷିକ ଲପ୍ତିକାଦ୍ୟଂ
ହାରୋଭବତ୍ୟାନ୍ତ୍ୟଫଳସ୍ୟ ବର୍ଗାଦ୍।୧୯।

ବଶୋଧ୍ୟ ତଚ୍ଛେଶ-ପଦଂ ଦ୍ୱିତୀୟ
ଚନ୍ଦ୍ରାର୍କଗତ୍ୟନ୍ତରସୁଗୁଣଂ ତତ୍ ।
ଗୋଭୂଘନାପ୍ତଂ ସିତରୁଗ୍ ଦ୍ୱିତୀୟ
ଭୁକ୍ତୌ ଧନଂ ପକ୍ଷ ପୁରୋଽନ୍ତମାଂଘ୍ରେ୍ୟାଃ ।୨୦।

ଋଣଂ ପଦୋର୍ମଧ୍ୟମୟୋ ଋତ ସ୍ୟାତ୍
ସୂକ୍ଷ୍ମାନ୍ତ୍ୟଭୁକ୍ତିଃ ଶଶିନସ୍ତୃତୀୟା
ଦନାନ୍ତରେଦ୍ୱନ୍ତରସଂମିତା ବା
ତତ୍ସିଦ୍ଧତଥ୍ୟାଦଶୁଭେଷୁ ଚିନ୍ତ୍ୟମ୍ ।୨୧।

କଳାଦ୍ୱ ପାକ୍ଷିକ ଫଳକୁ ବର୍ଗକର ପରମପାକ୍ଷିକ ବଗରୁ ବାଦ୍ ଦିଅ । ଅବଶେଷର ବର୍ଗମୂଳକୁ ୨ୟ ଚନ୍ଦ୍ର ଗତି ଓ ସ୍ଫୁଟର ବଗତିର ଅନ୍ତରରେ ଗୁଣି ୧୨୧୯ରେ ହର । ଫଳକୁ ଚନ୍ଦ୍ର, ଶୁକ୍ଲପକ୍ଷର ପ୍ରଥମାର୍ଦ୍ଧ ବା କୃଷ୍ଣପକ୍ଷର ଦ୍ୱିତୀୟାର୍ଦ୍ଧରେ ଥିଲାବେଳେ ଚନ୍ଦ୍ର ହିଁ ୨ୟ ଗତିରେ ଯୋଗକରିବ । ଚନ୍ଦ୍ର ୨ୟ ଓ ୩ୟ ପାଦରେ (ଶୁକ୍ଲପକ୍ଷର ଦ୍ୱିତୀୟାର୍ଦ୍ଧ ଓ କୃଷ୍ଣ-ପକ୍ଷର ପ୍ରଥମାର୍ଦ୍ଧରେ) ଥିବାବେଳେ ଅନ୍ତର କରିବ । ଏତେବେଳେ ହିଁ ଚନ୍ଦ୍ରର ୩ୟ ସୂକ୍ଷ୍ମ ( ଅନ୍ତ୍ୟଗତି ) ହେବ । ଏହି ସ୍ଫୁଟ ଶେଷଗତି । ଏହି ଗତି ପ୍ରତ୍ୟକ୍ଷରେ ଦେଖାଯାଉଛି ।

କାଲି ଓ ଆଜର ସ୍ଫୁଟ ଚନ୍ଦ୍ରର ଅନ୍ତରରେ ଆଜ ଚନ୍ଦ୍ରର ଯେଉଁ ଗତି ଆସେ, ତାହା ମଧ୍ୟ ପ୍ରାପ୍ତ ସୂକ୍ଷ୍ମ । ଏହି ଗତିଯୋଗେ ଯେଉଁ ତିଥି ନକ୍ଷତ୍ରାଦ୍ୱ ସାଧନ କରାଯାଏ ତାହାମଧ୍ୟ ଶୁଭ୍ରକର ଗ୍ରହଣ କରିବାକୁ ହେବ ।

ବଷ୍ଟ୍ୟାଦ୍ୟନଷ୍ଟଂ ଯଦହାସ୍ତି ତତ୍ର
ତ୍ୟାଜ୍ୟଂ ପୁନଃ ସ୍ଥୂଳମତେ ଯଦେତତ୍ ।
ତଚ୍ଚାପି ହେୟଂ ବହୁସମ୍ମତତ୍ୱାତ୍
ସ୍ଥୂଳେନ ନତ୍ୟବ୍ୟବହାରସିଦ୍ଧେଃ ।୨୨।

ସୂକ୍ଷ୍ମମତରେ ବଷ୍ଟ୍ୟାଦ୍ୱ ଅନଷ୍ଟକୁ ତ୍ୟାଗକରିବାକୁ ହେବ । (ଶୁଭକର୍ମରେ) ସ୍ଥୂଳ-ମତରେ ଆସିଥିବା ବଷ୍ଟ୍ୟାଦ୍ୱକୁ ମଧ୍ୟ ଗ୍ରହଣ କରିବା ଉଚିତ । ଅର୍ଥାତ୍ ସୂକ୍ଷ୍ମ ମତ ପରି ସ୍ଥୂଳ-ମତରେ ମଧ୍ୟ ଆସିଥିବା ବଷ୍ଟ୍ୟାଦ୍ୱକୁ ଶୁଭ କର୍ମମାନଙ୍କରେ ତ୍ୟାଗ କରିବା ଉଚିତ । ସ୍ଥୂଳମତ ସର୍ବଥା ହେୟନୁହେଁ । ନତ୍ୟ ବ୍ୟବହାର ସ୍ଥୂଳମତରେ ହେଉଥିବାରୁ ତାକୁ ସମସ୍ତେ ମାନନ୍ତି ।

ବ୍ୟର୍କେନ୍ଦୁ କେନ୍ଦ୍ରୈକସମାର୍ଦ୍ଧି ୟୁଗ୍ମଂ
ପକ୍ଷାଦମାନ୍ତ୍ୟାର୍ଦ୍ଧଯୁଗଂ ପ୍ରମେୟମ୍ ।
ପକ୍ଷାଙ୍ଘ୍ରୟଃ କେନ୍ଦ୍ର ଭଷଟ୍କୟୋଃ ସ୍ୟୁଃ
ଶରାମ୍ଭୁ ରାଶି ପ୍ରମିତୈଶ୍ଚ ଭାଗୈଃ ।୨୩।

ଚନ୍ଦ୍ରରୁ ରବିକୁ ଅନ୍ତର କଲେ ତାହା କେନ୍ଦ୍ର ହୁଏ ଏବଂ ଏହି କେନ୍ଦ୍ର ତିନିରାଶି ମଧ୍ୟରେ ହେଲେ ଶୁକ୍ଳପକ୍ଷର ପୂର୍ବାର୍ଦ୍ଧ ଏବଂ ୬ ରାଶି ମଧ୍ୟରେ ହେଲେ ଶୁକ୍ଳପକ୍ଷର ଉତ୍ତରାର୍ଦ୍ଧ । ଏହି ଅନ୍ତର ୯ ରାଶି ମଧ୍ୟରେ ହେଲେ କୃଷ୍ଣପକ୍ଷର ପୂର୍ବାର୍ଦ୍ଧ ଓ ୯ ଠାରୁ ୧୨ ମଧ୍ୟରେ ହେଲେ କୃଷ୍ଣପକ୍ଷରେ ଉତ୍ତରାର୍ଦ୍ଧ ହୁଏ । ରବିଠାରୁ ଚନ୍ଦ୍ର ୬ ରାଶି ମଧ୍ୟରେ ହେଲେ ଶୁକ୍ଳପକ୍ଷ ଏବଂ ୧୮° ଠାରୁ ୩୬° ମଧ୍ୟରେ ହେଲେ କୃଷ୍ଣପକ୍ଷ । ପକ୍ଷ ୧୮° ଅଂଶରେ ହେଉଥିବାରୁ ତାହାର ¼ ଅର୍ଥାତ୍ ୧୮°/୪ = ୪୫° ଗୋଟିଏ ପକ୍ଷର ପାଦରୂପେ କଥିତ ଅଛି, ପକ୍ଷର ଚତୁର୍ଥାଂଶକୁ ପକ୍ଷଚରଣ କୁହାଯିବାକଥା ।

ବକ୍ଷ୍ୟେଽବ୍ଜ ଭୁକ୍ତଂ ଗ୍ରହଣେ ପ୍ରସିଦ୍ଧା°
ଯୟୈବ ପର୍ବାନ୍ତ-ଗତୈଷ୍ୟକାଳେ ।
ଚନ୍ଦ୍ରଃ ସ୍ଫୁଟଃସ୍ୟାଦ୍ ସ୍ଥିତମର୍ଦ୍ଧକାଳେ।
ଦୃକ୍‌ତୁଲ୍ୟତାମେତ ଯୟା ଚ ସିଦ୍ଧଃ । ୨୪ ।

ନ୍ୟସ୍ୟଦ୍ଵିଧାଦ୍ୟେନ୍ଦୁ ଗତେଃ ଫଳଂ ତ-
ଦନ୍ତ୍ୟେନ ତୁଙ୍ଗାନ୍ତରକେଣ ନିଘ୍ନମ୍ ।
ପରେଣ ତନ୍ମାଦ୍ୟ ଫଳେନ ଭକ୍ତଂ
ଗତ୍ୟାଦ୍ୟୟୋର୍ଘ୍ନଂ କଳ ମଧ୍ୟୟାପ୍ତମ୍ ।୨୫ ।

ଫଳାନ୍ୱିତଂ କର୍କି ମୃଗାଦମନ୍ଦ—
କେନ୍ଦ୍ରେ ତଦାଢ୍ୟୋନିତମଧ୍ୟଭୁକ୍ତଃ
ଦ୍ଵିଧାର୍କ ଭୁକ୍ତ୍ୟା ରଣିତାର୍ଦ୍ଧ ହାର
ଭକ୍ତାପ୍ତଯୁକ୍ପ୍ରାନ୍ତ୍ୟଗତଃ ସ୍ଫୁଟେନ୍ଦୋଃ ।୨୬।

ଗ୍ରହଣ ଉପଯୋଗୀ ଚନ୍ଦ୍ରର ସୂକ୍ଷ୍ମସ୍ଫୁଟ ଗତି :—

ଚନ୍ଦ୍ର ଗ୍ରହଣ ଉପଯୋଗୀ ଚନ୍ଦ୍ରର ଗତିକୁ ମୁଁ ବର୍ତ୍ତମାନ କହିବ । ଏହି ଗତି ଯୋଗେ ପର୍ବାନ୍ତ (ପୂର୍ଣ୍ଣାନ୍ତ ଓ ଅମାନ୍ତ)ର ଗତ ଐଷ୍ୟକାଳ ଆଣି ସେଥିରେ ଚନ୍ଦ୍ରକୁ ସ୍ଫୁଟ କଲେ

ପ୍ରତ୍ୟକ୍ଷ ହେବ । ଏହି ଗଣିତଯୋଗେ ସାଧିତ ସ୍ୱର୍ଗ, ମୋକ୍ଷ, ସ୍ଥିତି ଆଦି ସମସ୍ତ ଦୃକ୍‌ସିଦ୍ଧ ହୁଏ । ପ୍ରଥମ ସ୍ଫୁଟ ଚନ୍ଦ୍ରର ପ୍ରଥମ ଗତିଫଳକୁ ଦୁଇ ଜାଗାରେ ରଖ । ଗୋଟିଏ ସ୍ଥାନରେ ତାକୁ କଳାଦି ପରମ ଭୁଜାନ୍ତର ଫଳରେ (୧୬°) ଗୁଣି ପରମ ଚନ୍ଦ୍ର ମନ୍ଦଫଳ କଳାରେ (୩°୦୧) ରେ ଭାଗଦିଅ । ଲବ୍ଧିକୁ ୧ମ ସ୍ଫୁଟ ଚନ୍ଦ୍ର ଗତିରେ ଗୁଣି ମଧ୍ୟମ ଗତିରେ (୭୯°୩।୩୫ରେ) ହର । ଫଳକୁ ୨ୟ ସ୍ଥାନରେ ରଖାଯାଇଥିବା ୧ମ ଗତିଫଳରେ ଯୋଗ କର । ଚନ୍ଦ୍ର ମନ୍ଦକେନ୍ଦ୍ର କର୍କଟ ଆଦି ୬ ରାଶିରେ ଥିବାବେଳେ ତାହାକୁ ଚନ୍ଦ୍ର ମଧ୍ୟମ ଗତିରେ ଯୋଗ ଓ ଅନ୍ୟଥା ବିୟୋଗ କର । ଏହା ଚନ୍ଦ୍ରର ସଂସ୍କୃତ ମଧ୍ୟ ଗତି ହେବ । ଏହାକୁ ପୁଣି ଦୁଇ ଜାଗାରେ ରଖ । ଗୋଟିଏ ଜାଗାରେ ତାକୁ ସ୍ଫୁଟର ବିଗତି ବିୟୋଗ କରାଯାଇଥିବା ଅଙ୍କ ଦ୍ୱାରରେ ଭାଗ ଦିଅ । ଫଳକୁ ଅନ୍ୟ ସ୍ଥାନରେ ଥିବା ସଂସ୍କୃତ ମଧ୍ୟ ଗତିରେ ଯୋଗକର । ଏହାହିଁ ଚନ୍ଦ୍ରର ଶେଷଗତି ବା ସୂକ୍ଷ୍ମଗତି ହେବ ।

**ଏକତ୍ର ନିତ୍ୟାନ୍ୟପରତ୍ର କାମ୍ୟା**
**ନୈବ ବେଷ୍ଟ୍ୟ କର୍ତ୍ତୁଂ ଯଦି ପଂକ୍ତିକାୟାମ୍ ।**
**ଅସମ୍ମତଃ ସ୍ୟାଜ୍ଜଗତଃ ପ୍ରୟାସାତ୍**
**କାର୍ଯ୍ୟଂ ତଦା ସୂକ୍ଷ୍ମମତେନ ସର୍ବମ୍ ।୭୭।**

ଗୋଟିକରେ ନିତ୍ୟ, ନୈମିତ୍ତିକ କର୍ମ ଓ ଅନ୍ୟଟିରେ କାମ୍ୟ କର୍ମ ଏପରି ଦୁଇଟି ପାଞ୍ଜି କଲେ ଲୋକେ ଆଦର କରିବେ ନାହିଁ ଅଥବା ଗୋଟିଏ ପାଞ୍ଜିରେ ଉଭୟ କଥା ରହିଲେ ମଧ୍ୟ ଭଲ ହେବନାହିଁ । ସେଥିପାଇଁ ବହୁ ପରିଶ୍ରମ ସତ୍ତ୍ୱେ ନିତ୍ୟ, ନୈମିତ୍ତିକ ତଥା କାମ୍ୟ ସବୁ କର୍ମ ନିମନ୍ତେ ସୂକ୍ଷ୍ମ ମତରେ ହିଁ ଗୋଟିଏ ପାଞ୍ଜି କରିବା ଉଚିତ । ସ୍ଥୂଳପାଞ୍ଜି ଅପେକ୍ଷା ସୂକ୍ଷ୍ମପାଞ୍ଜି ଅଧିକ ଆଦରଣୀୟ ଓ ଫଳଦାୟକ ।

**ଭୂଗର୍ଭଗେ କଳ୍ପିତ ସୂକ୍ଷ୍ମଗୋଳେ**
**ସ୍ୱଦେଶସୂତ୍ରାକଳିତପ୍ରଦେଶେ**
**କଦମ୍ବଗୋଳାଂକିତଭାଗଲପ୍ତେ**
**ଦୃଷ୍ଟା ଗ୍ରହାଃ ସ୍ପଷ୍ଟତୟା ଭବନ୍ତେ ।୭୮।**

**ପ୍ରାଗ୍‌ଭିର୍ମତା ଯତ୍ ସକଳକ୍ରିୟାସୁ**
**ତତ୍ରିକ୍ଷତୟୁପର୍ଯ୍ୟୟ ବୀକଳ୍ପ୍ୟତିଃ ।**
**ପୃଥଗ୍‌ବିଧା କାଳବଶାଦଭିଜ୍ଞୈ-**
**ର୍ବିଧୀୟତେ ସ୍ୱୀକ୍ରିୟତେ ଚ ଲୋକୈଃ ।୭୯।**

ଭୂପୃଷ୍ଠରେ ଆମ୍ଭେମାନେ ଅଛୁ । ଭୂଗର୍ଭରୁ ନିଜସ୍ଥାନ ଗତସୂତ୍ରକୁ ଆକାଶକୁ ବଢ଼ାଇ ଦେଲେ ତାହା ଆକାଶର ଯେଉଁ ସ୍ଥାନରେ ଲାଗେ ତାହା ନିଜ ସ୍ଥାନର ଖସ୍ୱସ୍ତିକ । ଏହି ଖସ୍ୱସ୍ତିକ ଦେଇ ଏବଂ କ୍ରାନ୍ତି ବୃତ୍ତରେ ଗ୍ରହର ରାଶି, ଅଂଶ କଳାଦି ଦେଇ ଯେଉଁ କଦମ୍ବ ପ୍ରୋତ ବୃତ୍ତ ହୁଏ ସେହିଠାରେ (କଦମ୍ବ ପ୍ରୋତବୃତ୍ତରେ) ଗ୍ରହ ରହିଲେ (ଦେଖାପଡ଼ିଲେ) ଗଣିତାଗତ ଗ୍ରହ ସ୍ପଷ୍ଟ ( ଦୃକସିଦ୍ଧ ) ବୋଲି ଧରାଯାଇଥାଏ । ଏହା ପ୍ରାଚୀନମାନଙ୍କ ମତ । ସବୁ ଶୁଭ କାର୍ଯ୍ୟରେ ଏହି ସ୍ପଷ୍ଟଗ୍ରହର ଆବଶ୍ୟକତା ପଡ଼େ । ଏହି ସ୍ପଷ୍ଟ ଗ୍ରହ ଆଣିବାପାଇଁ ସମୟକୁ ଆଗରେ ରଖି ଅଭିଜ୍ଞ ଜ୍ୟୋତିର୍ବିଦ୍‌ମାନେ ଭଗଣ ଓ ବୀଜକର୍ମରେ ସଂସ୍କାର କରିଥାନ୍ତି । ଲୋକେ ମଧ୍ୟ ସେମାନଙ୍କ ପରିଶ୍ରମର ମୂଲ୍ୟ ତଥା ସ୍ପଷ୍ଟ ଗ୍ରହକୁ ଦେଖି ( ଯଥାସ୍ଥାନରେ ) ଏସବୁ ମାନି ଚାଲିଥାନ୍ତି ।

କର୍ମ୍ମାର୍ହ ପଞ୍ଚାଙ୍ଗସମତ୍ୱସିଦ୍ଧୌ
ନିଶାପତେରେବ ମହୋପଯୋଗାତ୍ ।
ଦୃକ୍ ସିଦ୍ଧୟେଽସ୍ୟ ବିବଧଂ ହି ବୀଜଂ
ଭୁଙ୍ଗାନ୍ତରାଦ୍ୟାଖ୍ୟମକଳ୍ପି ସୂକ୍ଷ୍ମମ୍ ।୩୦।

ଶ୍ରୌତ ସ୍ମାର୍ତ୍ତାଦି ନିତ୍ୟନୈମିତ୍ତିକ କର୍ମସିଦ୍ଧି ନିମନ୍ତେ ସ୍ପଷ୍ଟ ଗ୍ରହର ଆବଶ୍ୟକତା ବେଶି ଏବଂ କେବଳ ପଞ୍ଚାଙ୍ଗ ଶୁଦ୍ଧି ନିମନ୍ତେ ସ୍ପଷ୍ଟ ଚନ୍ଦ୍ରର ଆବଶ୍ୟକତା ଥାଏ । ତହୁଁ ଅଧିକ ହେତୁ ଭୁଙ୍ଗାନ୍ତର, ପାକ୍ଷିକ ଓ ଦିଗଂଶ ଆଦି ବୀଜ ସଂସ୍କାର ମୋହାରା କଳ୍ପନା କରାଯାଇଛି । ଏହା ଅତି ଗୂଢ଼ ଓ ସୂକ୍ଷ୍ମ ।

ତଥାବୁଡ଼ୌ ଦ୍ୱିତ୍ରିପଳପ୍ରଭେଦୋ
ବେଦ୍ୟଃ ପରଂ ବିଶ୍ୱସୃଜାନଗୁନୈ୍ୟଃ ।
ଶ୍ରେୟାନ୍ ସ ତତ୍ ଶକ ଘଟୀ ପ୍ରଭେଦାତ୍
ସଯୁଦ୍ଧରେତ୍ ସାରମସାରତୋ ହି ।୩୧।

ତିଥିମାନ ଓ ନକ୍ଷତ୍ର ମାନରେ କିଛି ପ୍ରଭେଦ ମଧ୍ୟ ଆସିଯାଇପାରେ । ମାତ୍ର ତାହା ମୋ ଟାମତରେ ୨ ବା ୩ ପଳ ହୋଇପାରେ । ଏହି ପ୍ରଭେଦ କେବଳ ବିଶ୍ୱସ୍ରଷ୍ଟା ଜାଣିପାରନ୍ତି । ତେବେ ୧୪ ଦଣ୍ଡ ପ୍ରଭେଦ ତୁଳନାରେ ୨ ବା ୩ ପଳ (ଲିତା) ପ୍ରଭେଦ ମାନନେବା ଉଚିତ । କାରଣ ଅସାରରୁ ସାର ବାଛିନେବା ସର୍ବଥା ଭଲ ।

ଯତ୍ର ସ୍ଥିତ ପୃଷ୍ଠନିବାସଭାଜାଂ
ଦୃକ୍ ସୂତ୍ରତୋ ଲମ୍ବନମୂକ୍ଷସକ୍ତାତ୍ ।
ନଭଃସଦୋ ଯଚ୍ଚ କଦମ୍ବଗୋଳ
ସୂତ୍ରେଣ ବିକ୍ଷେପବତୋଽୟନୋତ୍ଥମ୍ ।୩୨।

ଦୃକ୍‌କର୍ମସାଧ୍ୟଂ ଧ୍ରୁବସୂତ୍ରସାମ୍ୟାତ୍
ତଦ୍‌ଯୁଗ୍ମମର୍କଗ୍ରହଖେଟଯୁତେ୍ୟାଃ
ସ୍ୟାତ୍ କେବଳଂ ନତ୍ରପରକ୍ରିୟାସୁ
ଖାର୍ଦ୍ଧେଽୟନାନ୍ତେ ସ୍ଫୁଟତାବଶେଷାତ୍ ।୩୩।

ନଜର ଖସ୍ୱସ୍ତିକରେ ଓ ଅୟନାନ୍ତରେ ଲମ୍ବନ ଓ ଦୃକକର୍ମର କୌଣସି ଉପଯୋଗିତା ନାହିଁ । ଗ୍ରହଣ (ରବିଗ୍ରହଣ) ଓ ଗ୍ରହ ଯୁତିରେ ଏମାନଙ୍କର ଯଥେଷ୍ଟ ଉପଯୋଗିତା ଅଛି । ତେଣୁ ତେତେବେଳେ ଏସବୁ କରିବ । ମାତ୍ର ନକ୍ଷତ୍ରାଦିରେ ଏସବୁ ସଂସ୍କାର ଦରକାରନାହିଁ । ପୃଥିବୀ ପୃଷ୍ଠ ଓ ମଧ୍ୟରୁ ଗ୍ରହ ପର୍ଯ୍ୟନ୍ତ ଯେଉଁ ଦୁଇଟି ସୂତ୍ର ଯାଇଥାଏ ସେଥିରୁ ଲମ୍ବନର ଉପତ୍ତି । ଗ୍ରହଗତ କଦମ୍ବପ୍ରୋତ ସୂତ୍ରଯୋଗେ ଶର ଓ ତଜ୍ଜନିତ ଦୃକ୍‌କର୍ମର ଉଦ୍ଭବ ହୋଇଥାଏ ମାତ୍ର ।

ବୃହତ୍ ସଂହିତାୟାମ୍ :—

ବେଳାହୀନେ ପର୍ବଣିଗର୍ଭବିପତ୍ତିଶ୍ଚ ଶସ୍ତ୍ରକୋପଶ୍ଚ
ଅତବେଳେ କୁସୁମ ଫଳକ୍ଷୟୋଭୟଂ ଶସ୍ୟନାଶଶ୍ଚ ।୩୪।

ବରାହମିହିରଙ୍କର ବୃହତ୍ ସଂହିତାରେ ଅଛି—

ଗଣିତାଗତ ପର୍ବରେ ପର୍ବ ନହେଲେ ଅର୍ଥାତ୍ ଗ୍ରହଣ, ସ୍ପର୍ଶ ଓ ମୋକ୍ଷାଦି ସମୟ ଯଥାର୍ଥରେ ନହେଲେ ଅର୍ଥାତ୍ ନିର୍ଦ୍ଦିଷ୍ଟ ସମୟର ପୂର୍ବରୁ ଏ ସବୁ ହୋଇଗଲେ ଗର୍ଭନାଶ ହୁଏ ଏବଂ ଅସ୍ତ୍ର ଆଦିରେ ଯୁଦ୍ଧ ହୁଏ । ନିର୍ଦ୍ଦିଷ୍ଟ ଗଣିତାଗତବେଳରୁ ପରେ ଏ ସବୁ ହେଲେ ଶସ୍ୟହାନୀ, କୁସୁମ ଓ ଫଳ କ୍ଷୟ ତଥା ପ୍ରଜା-ମାନଙ୍କର ଭୟ ହୋଇଥାଏ ।

ଗର୍ଗ ସଂହିତାୟାମ୍ :—

ହୀନାତରକ୍ତକାଳେ ଫଳମୁକ୍ତଂ ପୂର୍ବଶାସ୍ତ୍ରଦୃଷ୍ଟତ୍ୱାତ୍
ସ୍ଫୁଟ ଗଣିତବିଦଃ କାଳଃ କଥଞ୍ଚିଦପି ନାନ୍ୟଥା ଭବତ ।୩୫।

ଗଣିତ ସମୟ ପୂର୍ବରୁ ଓ ପରେ ତାହା ଘଟିଲେ ଶାସ୍ତ୍ରରେ ଯେଉଁ ଫଳ ଦିଆଯାଇଛି ତାହା କୁହାଗଲା । ମାତ୍ର ଦୃଷ୍ଟ୍ୟ ଗଣିତ ଅଭିଜ୍ଞ ଲୋକର ସମୟ ଗୋଳମାଳ କେବେହେଲେ ହୁଏ ନାହିଁ ।

ଦୃକ୍ ସମେ ପଙ୍କଣି ନୃପା ନବର୍ବିଘ୍ନା ଜଗତକ୍ଷସାଃ ।
ପ୍ରଜାଶ୍ଚ ସୁଖିନଃ ସର୍ବେ ଭୟରୋଗବିବର୍ଜ୍ଜିତାଃ ।୩୭।

ଗଣିତ ଆଗତ ସମୟରେ ପର୍ବ (ପୂର୍ଣ୍ଣାନ୍ତ ଓ ଅମାନ୍ତ) ଦୃକସିଦ୍ଧ ହେଲେ ରାଜାମାନେ ଶତ୍ରୁଶୂନ୍ୟ ହୁଅନ୍ତି । ସେମାନଙ୍କର କୌଣସି ପୀଡ଼ା ହୁଏନାହିଁ । ପ୍ରଜାମାନେ ରୋଗ ଶୋକରେ ନ ପଡ଼ି ସୁଖୀ ହୁଅନ୍ତି । କାହାର ମନରେ ଭୟ ଥାଏନାହିଁ ।

ବଶିଷ୍ଠ ବାକ୍ୟମ୍ :—

ଯସ୍ମିନ୍ ପକ୍ଷେ ଯତ୍ରକାଳେ ଯେନ ଦୃଗ୍ ଗଣିତୈକ୍ୟକମ୍ ।
ଦୃଶ୍ୟତେ ତେନ ପକ୍ଷେଣ କୁର୍ଯ୍ୟାତ୍ତିଥ୍ୟାଦନିର୍ଣ୍ଣୟମ୍ ।୩୭।

ବଶିଷ୍ଠ କହୁଛନ୍ତି—ଯେଉଁ ରୀତିରେ ସାଧିତ ଗ୍ରହାଦିର ଗଣିତ ପ୍ରତ୍ୟକ୍ଷ ହୋଇଥାଏ ସେହି ରୀତିରେ ତିଥ୍ୟାଦି ନିର୍ଣ୍ଣୟ କରିବା ସର୍ବଥା ଉଚିତ । ଗଣିତ ପ୍ରତ୍ୟକ୍ଷ ହେଲେ ହିଁ ସ୍ଥିର ଓ ଦୃଢ଼ ହୋଇଥାଏ ।

ସାକଲ୍ୟ ସଂହିତାୟାମ୍ :—

ସଂସାଧ୍ୟ ସ୍ପଷ୍ଟତରଂ ବୀଜଂ ନଳିକାଦ ଯନ୍ତ୍ରେଭ୍ୟଃ
ତତ୍ ସଂସ୍କୃତାସ୍ତୁ ସର୍ବେ ପକ୍ଷାଃ ସାମ୍ୟଂ ଭବେନ୍ତ୍ୟେ ବ ।୩୮।

ସାକଲ୍ୟ ସଂହିତାରେ ଅଛି :—

ନଳିକା, ଗୋଲ ଓ ଭୂଗୋଳ ଆଦି ଯନ୍ତ୍ରଦ୍ୱାରା ବୀଜ ସଂସ୍କାରକୁ ଅତି ସ୍ପଷ୍ଟ କରିବା ଉଚିତ । ଅର୍ଥାତ୍ ଗଣିତରେ ଗ୍ରହସାଧି ଯନ୍ତ୍ର ସାହାଯ୍ୟରେ ତାକୁ ପ୍ରତ୍ୟକ୍ଷ କରିବା ପରେ ଯାହା ଯୋଗ ବିଯୋଗଆଦି ବୀଜହେବ ସେଥିରେ ସଂସ୍କାର କରାଯାଉଥିଲେ, ସମସ୍ତ ରୀତିର ଗ୍ରହ ଠିକ୍ ହୋଇଯିବ । ପ୍ରତ୍ୟକ୍ଷକୁ ଲଂଘନ କଲେ ଚଳିବନାହିଁ ।

କିଂ ତେନାପି ସୁବର୍ଣ୍ଣେନ କର୍ଣ୍ଣଘାତଂ କରୋତ ଯତ୍ ।
ତଥା କିଂ ତେନ ଶାସ୍ତ୍ରେଣ ଯନ୍ନ ପ୍ରତ୍ୟକ୍ଷତଃ ସ୍ଫୁଟମ୍ ।୩୯।

ଯେଉଁ ସୁନା ଗହଣା ପିନ୍ଧିବା ଦ୍ୱାରା କାନ ଖଣ୍ଡିଆ ହେବ ତାହା କଣ ଦରକାର ? ଠିକ୍ ସେହିପରି ଯେଉଁ ଶାସ୍ତ୍ର ପ୍ରତ୍ୟକ୍ଷ ପ୍ରମାଣ ଦ୍ୱାରା ଠିକ୍ ନୁହେଁ, ସେହି ଶାସ୍ତ୍ରରେ ଫଳ କଣ ? କର୍ମାଦି କାଳେ ଲମ୍ବନ ପ୍ରତିଷେଧକ ବାକ୍ୟୋପଜପ୍ତ ଉଲ୍ଲଙ୍ଘନଂ ଯଥା—

ଯଦତ୍ର ଲମ୍ବନସଂସ୍କୃତଖେଟତ
ସ୍ଥିତି ସୁଖାନୟନଂ ପରଚ୍ଛେଦ୍ୟତେ
ବଧିର ତହି ତବ ଶ୍ରୁତଗୋଚରଂ
କଥମେବ ହି ଲମ୍ବନଶାସନମ୍ ।୪୦

ଅତଃ କୁମଧ୍ୟାତ୍ ଗତଖାର୍ଦ୍ଧସୂତ୍ରେ
ଦୃକ୍ତୁଲ୍ୟତାମେତ ନଭଶ୍ଚରେ ଯଃ ।
ସ ଏବ ଶୁଦ୍ଧଃ ପରମାର୍ଥତଃ ସ୍ୟାତ୍
ସ୍ଫୁଟସ୍ତତୋଽନ୍ୟେ ବହୁଗାସ୍ତ୍ୱତଥ୍ୟାଃ ।୪୧।

ଭୂପୃଷ୍ଠ-ସର୍ବଦେଶାନାଂ ମଧ୍ୟମେବ ଯତଃ ସମମ୍
ତତ୍ତୁଲ୍ୟଖେଚରାନୀତଂ ତଥ୍ୟାଦେ୍ୟବ ବରଂ ତତଃ ।୪୨।

ତଥ୍ୟ ଆଦ୍ଧ ଆଣିବା ନିମନ୍ତେ ଯେଉଁମାନେ ଲମ୍ବନ ସଂସ୍କାର କଥା କହନ୍ତି ସେମାନେ ଲମ୍ବନର ବ୍ୟବହାର ଜାଣନ୍ତିନାହିଁ । ସେମାନେ ବଧିର । ସେମାନଙ୍କର ଲମ୍ବନ ଜ୍ଞାନ ନିରର୍ଥକ । ଭୂଗର୍ଭରୁ ନିଜ ପୃଷ୍ଠ ସ୍ଥାନ ଦେଇ ଯେଉଁ ସୂତ୍ର ଖଗୋଳକୁ ଯାଏ । ସେଥିରେ ଯେଉଁ ଗଣିତାଗତ ଗ୍ରହ ସ୍ପଷ୍ଟ ଦେଖାଯାଏ, ସେହି ଗଣିତାଗତ ଗ୍ରହହିଁ ସ୍ପଷ୍ଟ । ଅନ୍ୟ ଗ୍ରହଗୁଡ଼ିକ ତଥ୍ୟ ନୁହନ୍ତି ।

ଭୂପୃଷ୍ଠରେ ଥିବା ସମସ୍ତ ଲୋକଙ୍କର ମଧ୍ୟହିଁ ଭୂକେନ୍ଦ୍ର । ପୃଷ୍ଠାଭିପ୍ରାୟରେ ଯେଉଁ ତଥ୍ୟାଦ୍ଧ ଆସିବାକଥା ତାହା ଏଥିଯୋଗୁଁ ଭିନ୍ନ ଭିନ୍ନ ହୋଇଥାଏ । ତଥ୍ୟାଦ୍ଧ ସମସ୍ତଙ୍କର ଆବଶ୍ୟକ । ଏଣୁ ଗର୍ଭାଭିପ୍ରାୟରେ ଏସବୁ ଆଣିଲେ ସମସ୍ତଙ୍କର ଉପଯୋଗୀ ହୋଇପାରିବ । ଏହି ଦୃଷ୍ଟିରୁ ତାହା କରାଯିବା ଉଚିତ ।

ଦୃକ୍ କରଣୈକ୍ୟବହୀନାଃ
ଖେଟାଃ ସ୍ଥୂଳା ନ କର୍ମଣା ମର୍ହାଃ
ଅତ ଇହ ତଦର୍ହତାୟୈ ତାତ୍କାଳିକ—
ବୀଜ-ବିସ୍ତରଂ ବକ୍ଷ୍ୟେ ।୪୩।

ଦୃକ୍ ଓ ଗଣିତରେ ଏକ ନ ହେଲେ ଗ୍ରହ ଶୁଭକର୍ମାଦିରେ ପ୍ରଯୋଜ୍ୟ ନୁହେଁ । ଏଣୁ ଗଣିତର ପ୍ରତ୍ୟକ୍ଷ ଉପଲବ୍ଧି ନିମନ୍ତେ ଯେଉଁ ବୀଜକର୍ମ କରାଯାଏ ତାହା ବିସ୍ତୃତଭାବେ କହୁଅଛୁ ।

ଲପ୍ତା ବଧୋରର୍କମହୀ ମିତାମେ
ଦୃଗ୍‌ଗୋଚରାଃ ପ୍ରତ୍ୟହମୀକ୍ଷିତସ୍ୟ ।
କଦମ୍ବଗୋଳାଗତ ସୂତ୍ରପାତେ
କ୍ରାନ୍ତୌ ଧନର୍ଣ୍ଣତ୍ୱକୁତେଷା ଭମଧ୍ୟାତ୍ ।୪୪।

ଭାସ୍କରାଚାର୍ଯ୍ୟ କହିଛନ୍ତି—

ମୁଁ ପ୍ରତ୍ୟହ ଚନ୍ଦ୍ରକୁ ଦେଖି ଭାବୁଛି ଯେ ମୋ ଗଣିତଦ୍ୱାରା ଯେଉଁ ଚନ୍ଦ୍ର ଆସୁଛି ତାହା ଠିକ୍ ସେହିପରି ଯନ୍ତ୍ରଦ୍ୱାରା ଦେଖାପଡ଼ୁନାହିଁ । ବେଳେ ବେଳେ ୧୧୨' ପର୍ଯ୍ୟନ୍ତ ପୂର୍ବରୁ ବା ପରେ (ନିର୍ଦ୍ଦିଷ୍ଟ ସ୍ଥାନର) ଚନ୍ଦ୍ର ଦେଖାପଡ଼ୁଛି । ବୀଜଫଳର ପରମ ଉପଚୟ ଓ ପରମ ଅପଚୟ ଅବସ୍ଥାରେ ଏହା ଦେଖାପଡ଼ିଥାଏ । ଭାସ୍କରଙ୍କ ପରମ ଭୁଜାନ୍ତର ଫଳ ୧୧୨' ମାତ୍ର ।

ମୟାପ୍ୟବୀଜୋପନୟେ ଯଦନ୍ତେ
ସୂର୍ଯ୍ୟୋକ୍ତମାଦ୍ୟଂ ପରମଂ ରହସ୍ୟଂ ।
ପ୍ରକାଶୟେ ଗୋପ୍ୟମପୀହ ବେଦଂ
ପ୍ରଣମ୍ୟ ଦେବଂ ଜଗତାଂହିତାର୍ଥମ୍ ।୪୫।

ସ୍ୱୟଂ ସୂର୍ଯ୍ୟ ମୟଙ୍କୁ ଏହିବୀଜକଥା ଶେଷରେ କହିଥିଲେ । ଏହା ଅତି ଗୋପନୀୟ ହେଲେ ମଧ୍ୟ ଜଗତର ହିତ ଦୃଷ୍ଟିରୁ ଦେବତା ଓ ବେଦକୁ ପ୍ରଣାମ କରି ମୁଁ ପ୍ରକାଶ କରିଦେଉଛି ।

ବ୍ରହ୍ମଗୁପ୍ତ ସିଦ୍ଧାନ୍ତେ ଚ :—

ବ୍ରହ୍ମୋକ୍ତଂ ଗ୍ରହଗଣିତଂ ମହତା କାଳେନ ଯତ୍‌ଖିଲୀଭୂତମ୍ ।
ଅଭିଧୀୟତେ ସ୍ଫୁଟଂ ତଜ୍ଜିଷ୍ଣୁସୁତବ୍ରହ୍ମଗୁପ୍ତେନ । ଇତି ।୪୬।

ବ୍ରହ୍ମଗୁପ୍ତ କହିଛନ୍ତି :—

ବ୍ରହ୍ମା ସ୍ୱୟଂ କହିଥିବା ଗ୍ରହଗଣିତ ବହୁକାଳପରେ ନଷ୍ଟ ହୋଇପଡ଼ିଲା । ଏଣୁ ଜିଷ୍ଣୁପୁତ୍ର ବ୍ରହ୍ମଗୁପ୍ତ ସେସବୁକୁ ବୀଜସଂସ୍କାର ଆଦି ଦ୍ୱାରା ସ୍ପଷ୍ଟ କରି କହିଅଛନ୍ତି ।

ଲପ୍ତା ବଧୋରର୍କମହୀତ ପଦ୍ୟା
ଭମଧ୍ୟତା ସ୍ୟାଦ୍ ବିଷୁବାପମସ୍ୟ ।
ତଦାପ୍ୟବୀଜୋପନୟାନ୍ନମେୟଂ
ବିକ୍ଷେପମନ୍ତ୍ୟଂ କୁବସୁଦ୍ୱିଲପ୍ତମ୍ ।୪୭।

ଯତୋଽବଧୋଃ ସର୍ବବିଭସାୟନସ୍ୟ
କ୍ରାନ୍ତିଜ୍ୟକା ଖାଦ୍ରିଗୁଣେନ୍ଦୁଭୁଲ୍ୟା
ତଦ୍‌ବାଣନଘ୍ନୀ ବିଗୁଣୋଦ୍ଧୃତାପ୍ତଂ
ଧନର୍ଣ୍ଣଦୃକ୍‌କର୍ମ୍ମ-ଭୁଜେନ ଲପ୍ତମ୍ ।୪୮।

ଆୟାତ ତଦ୍‌ବୀକ୍ଷ୍ୟ ତଦୁକ୍ତମେତ
ଦ୍ୱୋଧଂ କଦମ୍ବଧ୍ରୁବସୂତ୍ରମଧ୍ୟେ
ସମ୍ଭାବ୍ୟତେ ତଦ୍ୟଖିଳ ଶ୍ରୁତୋକ୍ତା-
ଦୃକ୍କର୍ମତୋ ଭିନ୍ନମିତୀହ ବୀଜମ୍ ।୪୯।

ତଦାପମସ୍ଥାଦ୍ୟବଧୋର୍ଭମଧ୍ୟଂ
ସ୍ୟାଦ୍‌ଯତ୍ର କୁତ୍ରାପ୍ୟୁଡୁଚକ୍ରବୃତ୍ତେଃ ।
ଭୁଙ୍ଗାନ୍ତରଂ ତତ୍‌ଫଳମନ୍ତ୍ୟମେବ
ବ୍ୟଲେକ୍ଷ ସୂର୍ଯ୍ୟେନ୍ଦୁ କଳଂତଦାତ୍ରେ ।୫୦।

(୪୭ଶ ଶ୍ଳୋକର ଆକ୍ଷରିକ ଅନୁବାଦ ଅତି କଷ୍ଟକର ହେଲା । ତାର ଭାବ ମାତ୍ର ଦିଆ-ଯାଉଛି) ଚନ୍ଦ୍ରର ପରମଶର ୨°୮'୧' ଧରିଯାଇ ଭାସ୍କରଙ୍କ ମତରେ ଦୃକ୍‌କର୍ମ (ଆୟନ) ଫଳ ଅଣାଯାଉ :— ଏହିଠାରେ ୩ ରାଶିଯୁକ୍ତ ସାୟନ ଚନ୍ଦ୍ରର କ୍ରାନ୍ତିଜ୍ୟା ୧୩୭୦' । ଏହାକୁ ୨°୮'୧' ରେ ଗୁଣି ତ୍ରିଜ୍ୟାରେ ହରଲେ ୧୧୨' ଆସେ । ଭାସ୍କରଙ୍କ ମତରେ ଆନୀତ ପରମ ଦୃକ୍‌କର୍ମ କଳା ମଧ୍ୟ ୧୧୨' । ଏଥିପାଇଁ ହୁଏତ ସନ୍ଦେହ ହୋଇପାରେ ଯେ ଆୟନ ଦୃକ୍‌କର୍ମ (ଭାସ୍କରୀୟ) ଓ ସାମନ୍ତଙ୍କ ବୀଜସଂସ୍କାର ଭିତରେ କୌଣସି ତଫାତ୍ ନ ଥିବାରୁ ଏହାକୁ ବୀଜ ନମାନ ଆୟନ ଦୃକ୍‌କର୍ମ କହିଲେ ଠିକ୍ ହେବ । ଚନ୍ଦ୍ର ବିମ୍ବଗତ କଦମ୍ବ ପ୍ରୋତବୃତ୍ତ ଓ କ୍ରାନ୍ତି-ବୃତ୍ତର ସମ୍ପାତ ହିଁ ଭ ମଧ୍ୟ ଓ ଦୃକସିଦ୍ଧ ଗ୍ରହସ୍ଥାନ । ମାତ୍ର ଏଠାରେ ମନେ ରଖିବାକୁ ହେବ ଯେ ଅନ୍ୟ ସିଦ୍ଧାନ୍ତୀମାନଙ୍କର ଆୟନ ଦୃକ୍‌କର୍ମ କଳା ଭାସ୍କରଙ୍କଠାରୁ ଯଥେଷ୍ଟ ପରିମାଣରେ ଭିନ୍ନ । ଏଣୁ ତାହାକୁ ଆୟନ ଦୃକ୍‌କର୍ମ ନକହି ବୀଜସଂସ୍କାର ହିଁ କହିବା ଠିକ୍ ହେବ । ଏହାହିଁ ଶେଷ ଭୁଙ୍ଗାନ୍ତର ଫଳ । ବୀଜଗ୍ରନ୍ଥରେ ଏହି ଫଳକୁହିଁ ଭାସ୍କର ବାହାର କରିଥିବା ଅନୁମିତ ହୁଏ ।

ଖାଙ୍ଗେନ୍ଦୁ ଲପ୍ତଂ ଶରକାଳତୋଽଭୂ
ଭୃଦ୍‌ବୃଦ୍ଧିହ୍ରାସା ବୁଚରୀ ବିଧେୟତାମ୍ ।
ଇତ୍ୟାଦ ପୂର୍ବୋକ୍ତିଭିରେବ ସିଦ୍ଧଂ
ବୀଜୈଃସ୍ୱକାଳାକ୍ଷିସମୈଃ ସ୍ଫୁଟତ୍ୱମ୍ ।୫୧।

ସମାଃ ସହସ୍ରାନ୍ତର ଏଷ୍ୟକାଳେ
ପ୍ରୋକ୍ତକ୍ରମେଣ ପ୍ରଥମସ୍ଫୁଟେନ୍ଦୋଃ ।
ଦୃକ୍ ଚନ୍ଦ୍ରତୋ ଲପ୍ସ୍ୟତ ଏବ ଯାବାନ୍
ଭେଦଃ ସ ତଦ୍-ବୀଜମିତ ପ୍ରମେୟଃ ।୫୬।

ବହୁକାଳରୁ ପରମ ଭୁଜାନ୍ତର ୧୬°' ଥିବାର ଜଣାପଡ଼ୁଛି । ତେଣୁ ଭୁଜାନ୍ତର ଫଳର ହ୍ରାସବୃଦ୍ଧି କାଳ ଅନୁସାରେ ସ୍ୱୀକାର କରିବାକୁ ହେବ । ପୂର୍ବାଚାର୍ଯ୍ୟମାନେ ଏହିପରି ଭାବରେ କହିଥିବାରୁ ବୀଜସଂସ୍କାର ଦ୍ୱାରା (ଚନ୍ଦ୍ର) ସ୍ଫୁଟ କରାଯିବା ଉଚିତ ।

ଭବିଷ୍ୟତ ହଜାରେ ବର୍ଷପରେ କଥିତ ରୀତିରେ ପ୍ରଥମସ୍ଫୁଟ ଚନ୍ଦ୍ର ସାଧନ କରି ପ୍ରତ୍ୟକ୍ଷ କରିବାକୁ ହେବ । ଏ ଉଭୟଙ୍କ ଭିତରେ ଏତେ ପ୍ରଭେଦ ରହିବ ଯେ ତାହାକୁ ହିଁ ବୀଜବୋଲି ଧରି ନେବାକୁ ହେବ । (ଭୁଜାନ୍ତର ସାମନ୍ତଙ୍କ ବହୁ ପୂର୍ବରୁ ଅଛି; ମାତ୍ର ପୂର୍ବଫଳ ଓ ସାମନ୍ତଙ୍କ ଫଳରେ ଅନେକ ତଫାତ ରହୁଛି)

ଷଟ୍ ଷଷ୍ଟି ଦଣ୍ଡାଭ୍ୟଧିକା ତଥିର୍ଯା
କୃଷ୍ଣାପରାହ୍ନଦ୍ୱୟଗ ସ୍ମୃତେ ସା ।
ସୂକ୍ଷ୍ମୈବ ନାନ୍ୟାତୁ ତଥାବିଧାସ୍ୟାତ୍
ଷୋଡ଼ାଭିଦାହ ସ୍ମୃତଷୁ ପ୍ରସିଦ୍ଧା ।୫୭।

ତିଥିଗୁଡ଼ିକୁ ସାଧାରଣତଃ ଛଭାଗରେ ବଣ୍ଟା ଯାଇଛି । ସେଥିରୁ ଗୋଟିଏ ପ୍ରକାରର ତିଥିର ପରିମାଣ ୬୬ ଦଣ୍ଡରୁ କିଛି ବେଶି ହେଲେ ଏହି ତିଥି, ଦୁଇଟି ପରପର ଦିନର (ସାବନ) ଦୁଇ ଅପରାହ୍ନକୁ ପୂର୍ଣ୍ଣ ମାତ୍ରାରେ ଧରି ରହିପାରିବ । ଏହି ତିଥିହିଁ ସୂକ୍ଷ୍ମ । ଅନ୍ୟତିଥି ( ୬୬ ଦଣ୍ଡରୁ କମ୍ ) ଏହିପରି ଲଗାଲଗି ଦୁଇଟି ଅପରାହ୍ନକୁ ପୂର୍ଣ୍ଣମାତ୍ରାରେ ଭୋଗ କରିପାରେ ନାହିଁ । ଏ ସବୁ କଥା ସ୍ମୃତିରେ ଅଛି । ଏଣୁ ସୂକ୍ଷ୍ମତିଥିକୁ ହିଁ ସ୍ମୃତି ଗ୍ରହଣ କରେ ।

ସାୟାହ୍ନମାତ୍ର ସ୍ପୃଗମାହ୍ନି ପୂର୍ବେ
ପରେ ଦିନାର୍ଦ୍ଧାଦ୍ ପୁରତୋ ଗତା ଚେତ୍ ।
ତଦ୍ଦର୍ଶଶ୍ରାଦ୍ଧମୁକ୍ତଂ କୁତପେ ପରେଦ୍ୟୁଃ
ସ୍ମୃତ୍ୟୈବ ସୂକ୍ଷ୍ମୈବ ମତା ତଥିଃ ସା ।୫୮।

କୌଣସି ଅମାବାସ୍ୟା ଗୋଟିଏ ଦିନର ସାୟାହ୍ନକୁ ସ୍ପର୍ଶକରି ପରବର୍ତ୍ତୀ ଦିନର ପୂର୍ବାହ୍ଣରେ ଯଦି ଶେଷ ହୋଇଯାଏ, ତେବେ ସେହି ଅମାବାସ୍ୟାର ଶ୍ରାଦ୍ଧ ପୂର୍ବଦିନ ନ ହୋଇ

ପରଦିନ କରିବାକୁ ହେବ । ମନେ ରଖିବାକୁ ହେବ ଯେ ଏହି ତିଥିର ପରମାଣ ମୋଟେ ୫୧ ଦଣ୍ଡ । ଏଥିରୁ ଏହାମଧ୍ୟ ଜଣାଯାଉଛି ଯେ ତିଥି ସାଧାରଣତଃ ୬୦ ଦଣ୍ଡର ହେଲେ ମଧ୍ୟ ୬ରୁ ବେଶୀ ଦଣ୍ଡ ବଢ଼ିପାରେ ଏବଂ ୮ରୁ ବେଶିଦଣ୍ଡ କମି ଯାଇପାରେ । ପ୍ରାଚୀନମାନେ କିନ୍ତୁ ୫ ଦଣ୍ଡ କମିବାକୁ ମାନନ୍ତି । ଅର୍ଥାତ୍ ସେମାନଙ୍କ ମତରେ ତିଥି ବଢ଼ି ବଢ଼ି ୬୫ ଦଣ୍ଡ ହୋଇ-ପାରେ ଏବଂ ଛୁଡ଼ ଛୁଡ଼ ୫୪ ଦଣ୍ଡ ହୋଇପାରେ । (ସାମନ୍ତେ କିନ୍ତୁ ଏହି ପରମ ବୃଦ୍ଧି ଓ କ୍ଷୟକୁ ମାନନ୍ତି ନାହିଁ । ଏକଥା ଏହି ଶ୍ଳୋକରୁ ସ୍ପଷ୍ଟ ହୋଇଯାଉଛି ଏବଂ ସ୍ମୃତି ଶାସ୍ତ୍ରଗୁଡ଼ିକ ମଧ୍ୟ ସାମନ୍ତଙ୍କ ବୃଦ୍ଧି କ୍ଷୟକୁ ସମର୍ଥନ କରୁଥିବା ଜଣାପଡ଼ୁଛି ।)

ଗୋଟିଏ ଦିନ ( ସାବନ ) କୁ ୫ ଭାଗ କଲେ ପ୍ରତି ଭାଗକୁ ୬ ଦଣ୍ଡ ପଡ଼ିବ । (ସାଧାରଣତଃ ଦିନମାନ ୩୦ ଦଣ୍ଡ ଓ ରାତ୍ରିମାନ ୩୦ ଦଣ୍ଡ) । ଦିନର ଏହି ୬ ଦଣ୍ଡିଆ ୩ୟ ଭାଗ ମଧ୍ୟାହ୍ନ ଏବଂ ୫ମ ଭାଗ ସାୟାହ୍ନ । ସ୍ମୃତିରେ ପୁଣି ଦିନମାନ (୩୦ଦଣ୍ଡ) କୁ ୧୫ରେ ଭାଗ-କରି ପ୍ରତି ଭାଗକୁ ଦୁଇଦଣ୍ଡ କରି ଧରି କୁତପ, ରୌହିଣ ଆଦି ମୁହୂର୍ତ୍ତନାମ ଦେଇଛନ୍ତି । ଏହିପରି ହିଁଭିକି ୮ମ ଭାଗ (ଦୁଇଦଣ୍ଡ ମାତ୍ର) କୁ କୁତପ କୁହାଯାଇଥାଏ ଏବଂ ୯ମ ଭାଗକୁ ରୌହିଣ କହନ୍ତି । (ସାମନ୍ତଙ୍କ ସୂକ୍ଷ୍ମ କ୍ଷୟତିଥିରେ (୫୧ ଦଣ୍ଡିଆ) ସ୍ୱୀକାର କଲେ ଅମାଶ୍ରାଦ୍ଧ ପରଦିନର କୁତୁପ ମୁହୂର୍ତ୍ତରେ ପଡ଼ିବ । ଅନ୍ୟଥା ନୁହେ । ଏଥିରୁ ସାମନ୍ତଙ୍କ ସୂକ୍ଷ୍ମତିଥି ହିଁ ସ୍ମୃତି ଅନୁମୋଦିତ ହେଉଅଛି ।)

ଯଥାହ ଗୌତମଃ :—

ପୂର୍ବାହ୍ନେ ଚେଦ୍ ପ୍ରତିପଦୋ ଭୂତେ ସାୟମମା ଯଦି ।
ଆରଭ୍ୟ କୁତପେ ଶ୍ରାଦ୍ଧଂ ରୌହିଣଂ ନ ତୁ ଲଂଘୟେତ୍ । ଇତି ।୫୫।

ଗୌତମ ସ୍ମୃତିରେ ଅଛି—ଚତୁର୍ଦ୍ଦଶୀର ସାୟାହ୍ନରେ ଅମାବାସ୍ୟା ଆରମ୍ଭ ହୋଇ ଯଦି ପରଦିନରେ ପଡ଼ୁଥିବା ପ୍ରତିପଦା ତିଥିର ମଧ୍ୟାହ୍ନ ପୂର୍ବରୁ ଶେଷ ହେଉଥାଏ, ତାହାହେଲେ ସେଦିନ କୁତପ ମୁହୂର୍ତ୍ତରେ ଶ୍ରାଦ୍ଧ ଆରମ୍ଭ କରି ରୌହିଣ ମୁହୂର୍ତ୍ତ ଶେଷ ହେବା ପୂର୍ବରୁ ଶେଷ କରିବାକୁ ହେବ । ଏହା ଅମାବାସ୍ୟା ଶ୍ରାଦ୍ଧ ।

ସପ୍ତମ୍ୟାଦିତିଥିବୟ କ୍ଷୟଘଟୀଦୃଷ୍ଟ୍ୟା ରସୋନାଃ ପୁନଃ ।
ଷୋଢା ଭେଦବିବୋଧଶଙ୍କିତ-ହୃଦାଂ ମା ଭୂଦିହାନାଦରଃ ।
ସପ୍ତମ୍ୟାଦିଷୁ ପଞ୍ଚଧାନ୍ୟତିଥିଷୁ ଦ୍ୱିଃଷଟ୍ସୁ ଷୋଢ଼େତି ଚେ
ତ୍ତାପୂର୍ଯ୍ୟଂ ସ୍ମୃତିକଂ ବଦନ୍ତ୍ୟମିହ ଦୃକ୍ସିଦ୍ଧେ ର୍ନକାପି କ୍ଷତିଃ ।୫୬।

ଶୁକ୍ଳ ଓ କୃଷ୍ଣ ଉଭୟ ପକ୍ଷର ୭ମୀ ୮ମୀ ଓ ୯ମୀ ତିଥିରେ ୬ଦଣ୍ଡରୁ କମ୍ ପରମହ୍ରାସ ହେଉଥିବାରୁ (ଏବେ ମଧ୍ୟ ତାହା ହେଉଛି ଏବଂ ସାମନ୍ତେ ଏହା ମାନନ୍ତି) ତିଥିର ଯେ ଛଅପ୍ରକାର ପ୍ରଭେଦ କୁହାଯାଇଛି ସେଥିରେ ସନ୍ଦେହ ଆସିଯାଉଛି । ଏହାର ସମାଧାନ ପାଇଁ ଏହି କଥା ମନେ ରଖିବାକୁ ହେବ :— ଏ ତିନ ତିଥି ନିମନ୍ତେ ୫ ପ୍ରକାର ପ୍ରଭେଦ ଓ ଅନ୍ୟ ୧୨ଟି ତିଥିନିମନ୍ତେ ୬ ପ୍ରକାର ପ୍ରଭେଦ ମାନିବାକୁ ହୋଇଥାଏ । ଏହି କଥାହିଁ ସ୍ମୃତିର ତାତ୍ପର୍ଯ୍ୟ । ଏହା ଧରିନେଲେ ଦୃକ୍‌ସିଦ୍ଧ ଗଣନାରେ କୌଣସି ଆଞ୍ଚ ଆସିବ ନାହିଁ । ତିଥିଭେଦ, ସ୍ମୃତିରୁ ଦେଖି ସୂକ୍ଷ୍ମ ଓ ସ୍ଥୂଳ-ତିଥିର ଆଲୋଚନା କଲେ ଏସବୁ ପରିଷ୍କାର ହୁଏ ।

**ମଧ୍ୟେ ପକ୍ଷମିବେନ୍ଦ୍ର ସଙ୍ଖ୍ୟକଘଟୀଭେଦଶ୍ଚ ପକ୍ଷାନ୍ତୟୋଃ**
**ସ୍ୟାଚ୍ଚେତ୍ ସ୍ଥୂଳମତେ ତଦା ଗ୍ରହଣୟୋ ର୍ଭୂରିପ୍ରଭେଦେକ୍ଷଣାତ୍ ।**
**ପ୍ରାଜ୍ଞୋ ଲୋକ-ଭିୟାପି ସୂକ୍ଷ୍ମତଥିମନ୍ୱେଷ୍ଟୁଂ ବ୍ୟଧାସ୍ୟନ୍ ଶ୍ରମାଂ**
**ସର୍ବୈର୍ମେଳୟିତୁମଶେରନାଦୃତତୟା ମନ୍ୟେ ତଦୀକ୍ଷାଂ ଜନୁଃ ।୫୭।**

ପକ୍ଷ ମଧ୍ୟରେ ଅର୍ଥାତ୍ ୭ମୀ ଓ ଅଷ୍ଟମୀରେ ସୂକ୍ଷ୍ମମତର ତିଥି ସାଧନଠାରୁ ସ୍ଥୂଳମତର ତିଥି ସାଧନରେ ୧୪ଦଣ୍ଡ ତଫାତ୍ ପଡ଼ିଯାଉଛି । ଏହି ତଫାତକୁ ପକ୍ଷାନ୍ତର ଚନ୍ଦ୍ର ବା ସୂର୍ଯ୍ୟର ଗ୍ରହଣ ହେଲାବେଳେ ମାନିଲେ ଉଭୟ ମତରେ ବହୁତ ତଫାତ୍ ହେବ ଏବଂ ଲୋକେ ବିଗିଡ଼ିବେ । ଏହା ଜାଣିପାରି ପ୍ରାଚୀନମାନେ ମଧ୍ୟ ସୂକ୍ଷ୍ମତିଥି ସାଧିବାକୁ ବହୁଚେଷ୍ଟା କରିଥିଲେହେଁ ସଫଳ କାମ ହୋଇପାରୁ ନ ଥିଲେ । ନକ୍ଷତ୍ର ଓ ସେଥିରେ ଚନ୍ଦ୍ରର ଅବସ୍ଥାନ ଦେଖି ତିଥିସ୍ଥିର କରିବା ସେ କାଳର ପ୍ରଥା ନ ଥିବାରୁ ସେମାନେ ତାହା ଛାଡ଼ି ଦେଇଥିଲେ । ଲୋକେ ସାଧାରଣତଃ ଗ୍ରହଣ ଦେଖିହିଁ ପଞ୍ଜିକା ବା ଜ୍ୟୋତିଷ ବିଦ୍ୟାର ପରୀକ୍ଷା କରୁଥିବାରୁ ଗ୍ରହଣ ସାଧନାରେ ଜ୍ୟୋତିର୍ବିମାନଙ୍କର ଡର ଥିଲା । ଅମାନ୍ତ ଓ ପୂର୍ଣ୍ଣାନ୍ତରେ ଭୁଙ୍ଗାନ୍ତରିତ ଫଳରୁ ଦ୧୪ଣ୍ଡ ତଫାତ୍ ମଧ୍ୟ ଆସେନାହିଁ । କାରଣ ସେତେବେଳେ ଏ ସବୁ ଫଳ ପ୍ରାୟ ଆସେ ନାହିଁ ।

**ଅଥ ଗର୍ଗ ବଶିଷ୍ଠାଦ ମୁନିଭିଃ ପରିକୀର୍ତ୍ତିତମ୍**
**ଚନ୍ଦ୍ରସ୍ୟ ଯାତ୍ରାବିବାହାଦୌ ସୂକ୍ଷ୍ମର୍କ୍ଷାନୟନଂ ବ୍ରୁବେ ।୫୮।**

ଯାତ୍ରା, ବିବାହ ଓ ଉପନୟନ ଆଦି ଶୁଭକର୍ମରେ ବୃଦ୍ଧର୍ଯ୍ୟ ଏବଂ ଗର୍ଗ, ବଶିଷ୍ଠଆଦି ମୁନିମାନେ ନିର୍ଣ୍ଣୟ କରିଥିବା ସୂକ୍ଷ୍ମ ନକ୍ଷତ୍ର ଆନୟନର ରୀତି ମୁଁ ବର୍ତ୍ତମାନ କହୁଅଛି ।

**ଚନ୍ଦ୍ରସ୍ୟ ମଧ୍ୟମାଭୁକ୍ତି—ର୍ଭଭୋଗଃ ସୂକ୍ଷ୍ମ ଉଚ୍ୟତେ ।**
**ସାର୍ଦ୍ଧ ଭୋଗାନ ଷଡ଼୍ ବ୍ରହ୍ମ ରାଧାଦତ୍ୟୁ—ତ୍ତରାଣି ଚ ।୫୯।**

**ଅର୍ଦ୍ଧଭୋଗାନ ପାଣୀନ୍ଦ୍ରା-ହ୍ନୀଶଯାମ୍ୟା-ନିଳାନି ଷଟ୍**
**ଶେଷପଞ୍ଚଦଶୈବ ସ୍ୟୁରେକ ଭୋଗାନ ଭାନ୍ୟତଃ ।୬୦।**

ସର୍ବତ୍ରେଭ୍ୟୋନ-ଚକ୍ରସ୍ୟା-ଭିଜିଭୋଗୋଽବଶେଷକଃ ।
ବୈଶ୍ୟବୈଷ୍ଣବଯୋ ର୍ମଧ୍ୟେ ତଦ୍‌ଭୋଗଃ ସ୍ଥିତହେତୁତଃ ।୭୧।

ସ୍ଫୁଟେଷ୍ଟଖେଟ ଲପ୍ତାଭ୍ୟଃ ପ୍ରୋଜ୍‌ଝ୍ୟାଶ୍ୱିନ୍ୟାଦଭୋଗକାନ୍
ବିଶୁଦ୍ଧଭୋଗସଂଖ୍ୟାନ ଭଜ ବଦ୍ୟାଦ୍‌ ଗତାନ୍ୟତଃ ।୭୨।

ତଚ୍ଛେଷୋ ବର୍ତ୍ତମାନସ୍ୟ ଭେଗୋଽତକାନ୍ତ ଉଚ୍ୟତେ ।
ଅଶୁଦ୍ଧଭୋଗାତ୍ ପତତୋ ଭୋଗ୍ୟଃ ସ୍ୟାତ୍ କଳକାତ୍ମକଃ ।୭୩।

ଗତୈଷ୍ୟାଃ କଳକାଃ ଷଷ୍ଟିଗୁଣିତା ଗ୍ରହଭୁକ୍ତିଭିଃ
ବହୃତା ଘଟିକାଦ୍ୟାଃ ସ୍ୟୁଗତୈଷ୍ୟାଃ ଫଳସମ୍ମିତାଃ ।୭୪।

ଚନ୍ଦ୍ରର ମଧ୍ୟମଗତି ପରିମାଣ ୭୯୦' । ୩୫"କୁ ସୂକ୍ଷ୍ମନକ୍ଷତ୍ର ଭୋଗ କହନ୍ତି । ରୋହିଣୀ, ଅନୁରାଧା, ପୁନର୍ବସୁ ଓ ତିନି ଉତ୍ତରା ( ଉତ୍ତରା ଫାଲଗୁନି, ଉତ୍ତରାଷାଢ଼ା ଓ ଉତ୍ତରାଭାଦ୍ରପଦ ) ଏହି ଛ ନକ୍ଷତ୍ର ମଧ୍ୟରୁ ପ୍ରତ୍ୟେକର ଭୋଗ ୭୯୦'। ୫୦ + $\frac{୭୯୦' + ୫୦'}{୨}$ = ୧୧୮୫।୫୨ । ପୁଣି ଭରଣୀ, ଆର୍ଦ୍ରା, ଅଶ୍ଳେଷା, ଜ୍ୟେଷ୍ଠା, ସ୍ୱାତି ଓ ଶତଭିଷା ଏହି ଛଅଟି ନକ୍ଷତ୍ରର (ପ୍ରତ୍ୟେକର) ଭୋଗ $\frac{୭୯୦' । ୩୫'}{୨}$ = ୩୯୫' । ୧୭' । ୨୬' । ବାକୀ ୧୫ ଟି ନକ୍ଷତ୍ରରୁ ପ୍ରତ୍ୟେକଙ୍କ ଭୋଗ ୭୯୦' । ୩୫' । ପୂର୍ବବାର ଏବଂ ଏହି ପନ୍ଦର ଏପରି ୨୭ଟି ନକ୍ଷତ୍ରର ଭୋଗକାଳକୁ ଏକାଠି କଲେ ମୋଟ ୨୧୩' । ୪୫ । ୪୧ । ୨୫ ହୁଏ । ଏହି ପରିମାଣ ୨୧୬୦୦' (ଅର୍ଥାତ୍ ଏକବୃତ୍ତ ପରିଧି ନୁହେଁ) । ଏଣୁ ଏଥିରୁ ତାକୁ ଅନ୍ତର କଲେ ଶେଷ ହେଉଛି ୨୫୪' । ୧୮' । ୩୫' ଏବଂ ଏହା ୨୮ଶ ନକ୍ଷତ୍ର ଅଭିଜିତ୍‌ର ଭୋଗ ପରିମାଣ । ଏହି ନକ୍ଷତ୍ରର ଅବସ୍ଥିତି ଉତ୍ତରାଷାଢ଼ା ଓ ଶ୍ରବଣା ମଧ୍ୟରେ ।

ସ୍ଫୁଟ ଗ୍ରହର କଳାରୁ ଯେତେ ନକ୍ଷତ୍ର ଭୋଗ କଳା (ଅଶ୍ୱିନୀଠାରୁ ଆରମ୍ଭ କରି) ଫେଡ଼ହେବ, ଫେଡ଼ । ଏହି ନକ୍ଷତ୍ର ସଂଖ୍ୟାହିଁ ଗତ ନକ୍ଷତ୍ର । ଅବଶିଷ୍ଟ ଗତକଳାହିଁ ବର୍ତ୍ତମାନ ନକ୍ଷତ୍ରର ଗତକଳା । ଏହାକୁ ଅଶୁଦ୍ଧ ନକ୍ଷତ୍ରର ଭୋଗ କଳାରୁ ବାଦ୍‌ଦେଲେ ବର୍ତ୍ତମାନ ନକ୍ଷତ୍ରର ଏଷ୍ୟକଳା ହେବ । ଏହିଗତ ଓ ଏଷ୍ୟକଳାକୁ ଅଲଗା ଅଲଗା କରି ୬୦ରେ ଗୁଣି ଗ୍ରହସ୍ଫୁଟ ଗତକଳାରେ ହରିଲେ ବର୍ତ୍ତମାନ ନକ୍ଷତ୍ରର ଗତ ଓ ଏଷ୍ୟ ଦଣ୍ଡାଦି ସମସ୍ତ ଆସିବ ।

ସମସାର୍ଦ୍ଧାର୍ଦ୍ଧଭୋଗାନାଂ ଭନାଂ ସାଭିଜିତାମପି ।
ଦ୍ୱବାହାଦଷୁ ଗୃହ୍ୟନ୍ତେ ପାଦା ଭୋଗାନୁସାରତଃ ।୭୫।

ଅଭୁକ୍ତ ସହିତ ପ୍ରତ୍ୟେକ ନକ୍ଷତ୍ରର (ଯାହାର ଭୋଗ ଚନ୍ଦ୍ରଭୁକ୍ତି ତୁଲ୍ୟ, ଯାହାର ବ୍ୟାସାର୍ଦ୍ଧ ସାର୍ଦ୍ଧ ଚନ୍ଦ୍ର ଭୁକ୍ତି ତୁଲ୍ୟ ବା ଅର୍ଦ୍ଧଚନ୍ଦ୍ର ଭୁକ୍ତି ତୁଲ୍ୟ) ଭୋଗ କଳାକୁ ୪ ରେ ଭାଗ କଲେ ଉକ୍ତ ନକ୍ଷତ୍ରର ପାଦମାନ ହୋଇଯାଏ । ଅଶ୍ୱିନୀ ଆଦି ୨୭ ନକ୍ଷତ୍ରର ଏହି ପାଦମାନ ବିବାହାଦି ଶୁଭ କର୍ମରେ ବଡ଼ ଦରକାରରେ ଆସିଥାଏ ।

**ରାଶ୍ୟନ୍ତେ ରାଶିସନ୍ଧ୍ୟାର୍ଦ୍ଧେ ଭାନ୍ତେ ଭାନ୍ତରସନ୍ଧରଃ ।**
**କଳ୍ପିତେୟା ନାତ୍ର ରାଶୀନାଂ ନୟମୋ ନବଭାଙ୍ଘ୍ରିଜଃ ।୭୬।**

**ଯତୈବ ସିଂହମଘୟୋଃ ପ୍ରବେଶେଽପ୍ୟେକଦାସ୍ଥିତେ ।**
**ସୂକ୍ଷ୍ମା ମଘା କର୍କଟାନ୍ତ୍ୟାନ୍ ଭାଗାନଷ୍ଟୌ ଭୁନକ୍ତି ହ ।୭୭।**

ଗୋଟିଏ ରାଶିର ଶେଷରେ (୧୮୦୦ କଳା) ଗ୍ରହ ଅନ୍ୟରାଶିକୁ ସଂକ୍ରମ କରେ—ଚାଲି ଯାଇଥାଏ । ପ୍ରତି ନକ୍ଷତ୍ରର ଯେଉଁ ଭୋଗକଳା ଦିଆଗଲା (୮୦୦ କଳାନୁହେଁ) ତାହାର ଶେଷରେ ଗ୍ରହ ଅନ୍ୟ ନକ୍ଷତ୍ରକୁ ସଂକ୍ରମ କରେ—ଯାଇଥାଏ । ଏହା ସୂକ୍ଷ୍ମ ବିଧିର ଥିବାରୁ ସ୍ଥୂଳରୀତିର ରାଶିପାଦ (ଗୋଟାଏ ରାଶିକୁ ୯ ପାଦରେ ବାଣ୍ଟିଦେବା) ବାଣ୍ଟିବା କଳ୍ପନା ଏଠାରେ କରିବାକୁ ହେବନାହିଁ । ଉଦାହରଣ ସ୍ୱରୂପ ସ୍ଥୂଳରୀତିର ମଘା ଓ ସିଂହରାଶିର ପ୍ରାରମ୍ଭ ଏକ ସମୟ ଓ ସ୍ଥାନରେ ହେଲେ ମଧ୍ୟ ବର୍ତ୍ତମାନ ରୀତିରେ ସାଧିତ ସୂକ୍ଷ୍ମମଘାସିଂହ ପ୍ରାରମ୍ଭ ପୂର୍ବରୁ ରହିଛି ଏବଂ କର୍କଟର ଶେଷ ୮ ଅଂଶକୁ ବ୍ୟାପି ରହିଛି ।

**ଗ୍ରହାଣାଂ ଗତ ଲପ୍ତାଭିଃର୍ବିମ୍ବବ୍ୟାସ-ବଲପ୍ତିକାଃ ।**
**ହୃତାଃ ସଂକ୍ରାନ୍ତନାଡ୍ୟଃ ସ୍ୟୁର୍ଭାନୋସ୍ତାଶ୍ଚାତପୁଣ୍ୟଦାଃ ।୭୮।**

**ଭବନ୍ତି ମିଶ୍ରଫଳଦାଃ ଦ୍ୱିସଂକ୍ରାନ୍ତଗତା ଗ୍ରହାଃ ।**
**ମଣ୍ଡଳୟୋଭୟସ୍ଥତ୍ୱା-ଦେବଂ ନକ୍ଷତ୍ରସନ୍ଧିଗାଃ ।୭୯।**

**ସ୍ୱକଳା ବିଧୁବିମ୍ବସ୍ୟାର୍କେନ୍ଦୁଭୁକ୍ତ୍ୟନ୍ତରେଣ ଚ ।**
**ଚନ୍ଦ୍ରଭୁକ୍ତ୍ୟା ଚ ଚନ୍ଦ୍ରାର୍କଭୁକ୍ତିଯୋଗେନ ଚୈତୟୋଃ ।୮୦।**

**ଗତ୍ୟନ୍ତରେଣ ଚ ହୃତା ଲବ୍ଧା ଦଣ୍ଡାଦୟଃ ପୃଥକ୍**
**ତିଥିନକ୍ଷତ୍ରଯୋଗାନାଂ କରଣାନାଂଚ ସନ୍ଧୟଃ ।୮୧।**

ସଂକ୍ରାନ୍ତି ବା ସଂକ୍ରମଣର ଅର୍ଥ ଗ୍ରହ (ରବି ସାଧାରଣତଃ) ଗୋଟିଏ ରାଶିରୁ ଅନ୍ୟ ରାଶିକୁ ଯିବା । ଗ୍ରହର କେନ୍ଦ୍ର ବିନ୍ଦୁ ଗୋଟିଏ ରାଶିର ଶେଷ ବିନ୍ଦୁରେ ରହିଲେ ଠିକ୍ ସଂକ୍ରମଣ ହୁଏ । ଏହିଠାରେ ଗ୍ରହ ଉଭୟ ରାଶିଫଳକୁ ଦିଏ । ଗୋଟିଏ ରାଶିର ଶେଷ

ବିନ୍ଦୁରୁ ଉକ୍ତ ଗ୍ରହ କେତେ ସମୟରେ ପୂର୍ଣ୍ଣ ଚାଲିଯାଇପାରେ ତାହାର ସ୍ୱଭାବ ଏହିପରି ହେବ :— ଗ୍ରହର ବିମ୍ବବ୍ୟାସକୁ ବିକଳା କରି ତାକୁ ଉକ୍ତ ଗ୍ରହର ଗତିକଳାରେ ହରିଲେ ସଂକ୍ରମଣ ସମୟ ଆସିବ । ସୂର୍ଯ୍ୟର ଏହି ସଂକ୍ରମଣ ଦଣ୍ଡାଦି ସମୟ ଅତ୍ୟନ୍ତ ପୁଣ୍ୟଦ । ଏହିପରି ଗୋଟିଏ ନକ୍ଷତ୍ରକୁ ଛାଡ଼ି ଅନ୍ୟ ନକ୍ଷତ୍ରକୁ ଗଲାବେଳେ ମଧ୍ୟ ଗ୍ରହ ଉଭୟ ନକ୍ଷତ୍ରସ୍ଥ ଫଳ ଦେଇ-ଥାନ୍ତି । ଚନ୍ଦ୍ରବିମ୍ବ ବିକଳାକୁ ଯଥାକ୍ରମେ ରବି, ଚନ୍ଦ୍ରର ଗତ୍ୟନ୍ତରରେ, କେବଳ ଚନ୍ଦ୍ରର ଗତିରେ ଚନ୍ଦ୍ର ଓ ରବିର ଗତି ଯୋଗରେ ଏବଂ ଉଭୟ ଗତ୍ୟନ୍ତରରେ ହରିଲେ ଯଥାକ୍ରମେ ତିଥି, ନକ୍ଷତ୍ର, ଯୋଗ ଓ କରଣର ସନ୍ଧିସମୟ ଆସିଯିବ । ଏହା ଦଣ୍ଡାଦି ମଧ୍ୟ ହେବ । ରାଶି ବା ନକ୍ଷତ୍ରର ଶେଷ ବିନ୍ଦୁକୁ ଯେତେସମୟରେ ଯେ ଅତିକ୍ରମ କରିପାରିବ ତାହାହିଁ ତାହାର ସନ୍ଧିକାଳ ବା ସଂକ୍ରମ କାଳ ।

ଉପୃଦ୍ୟନ୍ତେ ଯତୋଽନନ୍ତେ ତୁଙ୍ଗାପକ୍ରମପାତଜାଃ
ବୀଥୟୋ ମଣ୍ଡଳାକାରାଃ ସ୍ୱକକ୍ଷାସୁ ପୃଥଗ୍ ବିଧାଃ ।୭୨।

ତଦ୍ ଗ୍ରହାଣାଂ ଗତେର୍ମାର୍ଗଃ ଶୀଘ୍ରମନ୍ଦୋଚ୍ଚକର୍ଷଜଃ
ପ୍ରତିମଣ୍ଡଳନାମା ସ୍ୟାତ୍ କ୍ରାନ୍ତିଜାତୋଽପମଣ୍ଡଳଃ ।୭୩।

ବିକ୍ଷେପମାର୍ଗଃ ପାତୋତ୍ଥଃ କଥ୍ୟତେ ଚ ବିମଣ୍ଡଳଃ
ବିଷୁବନ୍ମଣ୍ଡଳାଦ୍ୟାସ୍ତୁ ବକ୍ଷ୍ୟନ୍ତେଽନ୍ୟ ପ୍ରକାଶ-କେ ।୭୪।

ଉଚ୍ଚ, କ୍ରାନ୍ତି ଓ ପାତଯୋଗୁଁ ଆକାଶରେ ଭିନ୍ନ ଭିନ୍ନ ବୃତ୍ତ ( ମାର୍ଗ ) ସୃଷ୍ଟି ହୋଇ-ଉଠେ । ଉଚ୍ଚଯୋଗେ ପ୍ରତିମଣ୍ଡଳ, କ୍ରାନ୍ତିଯୋଗୁଁ ଅପମଣ୍ଡଳ ବା କ୍ରାନ୍ତିବୃତ୍ତ ଏବଂ ପାତଯୋଗେ ବିମଣ୍ଡଳ ହୋଇଥିବା ଅତି ସ୍ପଷ୍ଟ ।

ପ୍ରତିଲୋମଗତେଃ କଲ୍ପେ କ୍ରାନ୍ତିପାତସ୍ୟ ପର୍ଯ୍ୟୟାଃ
ଦୃକ୍ସମାଃ କଲ୍ପିତାଃ ଖାଦ୍ରି-ଚନ୍ଦ୍ରାଭ୍ରାମ୍ବୁ-ଧିଷଣ୍ମିତା ।୭୫।

ଭଚକ୍ରଂ ସଗ୍ରହଂ ସୋଚ୍ଚଂ ସପାତଂ ସକଳୋର୍ଦ୍ଧ୍ୱଗଃ
ପ୍ରାକ୍ ପଶ୍ଚାତ୍ ପ୍ରେରୟତ୍ୟେଷ କ୍ରାନ୍ତିମାର୍ଗାନୁସାରତଃ ।୭୬।

ସପ୍ତ ବିଂଶତି ଭାଗାନ୍ତଂ ପ୍ରାଚୀଂ ମେଷାଦି-ଷଟ୍କକ୍
ପ୍ରତୀଚୀଂ ପ୍ରତତୌଲ୍ୟାଦି ଭାର୍ଦ୍ଧଗଃ ପ୍ରକ୍ଷିପତ୍ୟୟମ୍ ।୭୭।

ଯତ୍ ପ୍ରେରଣାଦ୍ବିମ୍ବମୁଖାସ୍ତାଃ ସ୍ୱସ୍ୱାପମସ୍ଥିତାଃ
ବିକ୍ଷିପ୍ତା ଇବ ଦୃଶ୍ୟନ୍ତେ ସ୍ୱସ୍ଥାନାଦ୍ ଯାମ୍ୟସୌମ୍ୟୟୋଃ ।୭୮।

ଇଷ୍ଟୈର୍ଦିନୈସ୍ତଭଗଣା ଗୁଣିତାଃ କଳ୍ପସାବନୈଃ
ଉଦ୍ଧୃତା ଭଗଣାର୍ଦ୍ଧାଦିଃ କ୍ରାନ୍ତିପାତଃ ସ୍ଫୁଟୋ ଭବେତ୍ ।୭୯।

ତଦ୍ରାଶ୍ୟାଦ୍ୟଂ ଚକ୍ରଶୁଦ୍ଧଂ ଗ୍ରାହ୍ୟଂ ତଦ୍ବାହୁଲପ୍ତିକାଃ
ଦ୍ୱିଶତାପ୍ତାଃ କଳାକ୍ତ ସୂ୍ୟ ଶ୍ଚଳାଂଶାସ୍ତେଽୟନାଂଶକାଃ ।୮୦।

ଶିଷ୍ଟାଃ ଷଷ୍ଟିହୃତାସ୍ତେନ ହାରେଣାପ୍ତାଃ କଳାଦକାଃ
ସାଷ୍ଟା ବଂଶତଷଷ୍ଟ୍ୟଂଶାଃ ପରା ନବ ଗତର୍ଦିନେ ।୮୧।

ଗ୍ରହମାନେ କ୍ରମଗତିରେ ସାଧାରଣତଃ ଗଲାପରି ପାତ ବିପରୀତ ଗତିରେ ଯାଏ । (ସାମନ୍ତେ ଉପଲବ୍ଧିରୁ ଏହାର ଭଗଣ ଆଣି ଲେଖିଛନ୍ତି ଏବଂ ତାହା ପୁଣି ୬୪୦୧୭୦ ।) କ୍ରାନ୍ତି ସୃଷ୍ଟି କରୁଥିବା ଏହିପାତ ବିଷୁବ ଓ କ୍ରାନ୍ତି ବୃତ୍ତର ସମ୍ପାତକୁହିଁ କୁହାଯାଇଥାଏ । ଏହିପାତ ସବୁ ଗ୍ରହ, ନକ୍ଷତ୍ର ଓ ଗୋଳର ଉପରେ । ଏହାର ଗତି କ୍ରାନ୍ତି ବୃତ୍ତରେ । ଏହିପାତ ଭଚକ୍ରକୁ ଗ୍ରହ, ଉଚ୍ଚ, ପାତ ( ଅନ୍ୟଗ୍ରହଙ୍କ ପାତ ) ସହ ପୂର୍ବରୁ ପଶ୍ଚିମ ଆଡ଼କୁ ଚଲାଏ । ଏଣୁ ସବୁ-ଗ୍ରହ ନକ୍ଷତ୍ରଆଦିରେ ଅୟନାଂଶ ବିକାର ଆସିଯାଏ ।

ଏହିପାତ ମେଷଆଦି ଛରାଶିରେ ଥିବାବେଳେ ନକ୍ଷତ୍ର ଓ ଗ୍ରହଆଦିଙ୍କୁ ପୂର୍ବରୁ ୨୭° ଯାଏ ଏବଂ ତୁଳାଦି ଛରାଶିରେ ଥିବାବେଳେ ପଶ୍ଚିମକୁ ୨୭° ଯାଏ ଠେଲୁଥାଏ । ଏହାର ଠେଲାପେଲାରେ ପଡ଼ି ରବିଆଦି ଗ୍ରହମାନେ ଅଶ୍ୱିନୀଆଦି ତାରକାମାନେ ନିଜ ନିଜ କ୍ରାନ୍ତିଆଗରେ ଥାଇ ମଧ୍ୟ ଦକ୍ଷିଣ ବା ଉତ୍ତରକୁ ବିକ୍ଷିପ୍ତ ହେଲାପରି ଦେଖାଯାଉଛନ୍ତି । କ୍ରାନ୍ତିପାତ ଯେ ନକ୍ଷତ୍ର ଓ ଗୋଳକୁ ପୂର୍ବରୁ ପଶ୍ଚିମକୁ ଘୁରାଉଅଛି, ଏହି ଗୂଢ଼କଥା ଏଇଥିରୁ ବାହାରି ପଡ଼ୁଛି ।

ଏହି କ୍ରାନ୍ତିପାତ ଭଗଣକୁ ଇଷ୍ଟସାବନ ଦିନ ସମୂହରେ ଗୁଣି କଳ୍ପ ସାବନ ଦିନରେ ହରିଲେ ଭଗଣ ଓ ରାଶ୍ୟାଦି କ୍ରାନ୍ତିପାତ ଆସିଯାଏ । ଏହି ରାଶ୍ୟାଦି ଫଳକୁ ୧୨ ରାଶିରୁ ବାଦଦେଇ ଅବଶିଷ୍ଟର ଭୁଜକଳା କରିବାକୁ ହେବ । ଏହି ଭୁଜକଳାକୁ ପୁଣି ୨୦୦ରେ ହରିଲେ ଫଳ ଚଳାଂଶ ହୁଏ । ଚଳାଂଶ ହିଁ ଅୟନାଂଶ । ହରଣରେ ଯେଉଁ ଶେଷ ରହିଲା ତାକୁ ପୁଣି ୬୦ ରେ ଗୁଣି ୨୦୦ ରେ ହରିଲେ କଳାଦି ଫଳ ହେବ । ଦିନକୁ ଅୟନାଂଶଗତି ୯।୨୮ ପରାଦି ।

କରଣାବ୍ଦ ମୁଖେଽଂଶାଦ୍ୟା ଦୃଗ୍ ଦୃଶୋ ଭୂଃକୁସାୟକାଃ
ଶରାବ୍ଧୟୋ ଦ୍ୱିବେଦାଶ୍ଚ ଧନାଖ୍ୟା ବୃଦ୍ଧିଶାଳିନଃ ।୮୨।

କରଣାବ୍ଦର ଆରମ୍ଭରେ ୨୨° । ୧ । ୫୧ । ୪୫ । ୪୨ ଅୟନାଂଶ ଥିଲା ।

**ତୁଲାଧରାଦିଚକ୍ରାର୍ଦ୍ଧସ୍ଥିତେ ପାତେଽୟନାଂଶକାଃ**
**ଋଣାଖ୍ୟାସ୍ତୁ ମେଷାଦି ଭାର୍ଦ୍ଧସ୍ଥେ ଧନସଂଜ୍ଞକାଃ ।୮୩।**

କ୍ରାନ୍ତିପାତ ତୁଳାଦି ଛରାଶିରେ ଥିଲେ ଅୟନାଂଶକୁ ଋଣ (ବିୟୋଗ-) ବୋଲି ଧରି-ନେବେ । କିନ୍ତୁ ତାହା ମେଷାଦି ଛରାଶିରେ ଥିଲେ ଧନ ( ଯୋଗ+ ) ବୋଲି ଧରିନେବାକୁ ହେବ ।

ସୂର୍ଯ୍ୟ ସିଦ୍ଧାନ୍ତେ :—

**ତତ୍ ସଂସ୍କୃତାଦ୍ ଗ୍ରହାତ୍ କ୍ରାନ୍ତି-ଛାୟାଚରଦଳାଦିକମ୍**
**ସ୍ଫୁଟଂ ଦୃକ୍‌ତୁଲ୍ୟତାଂ ଗଚ୍ଛେଦୟନେ ବିଷୁ-ବଦ୍‌ଦ୍ୱୟମ୍ ।ଇତି ।୮୪।**

ଅୟନାଂଶ—ସଂସ୍କୃତ ଗ୍ରହରୁ କ୍ରାନ୍ତି, ଛାୟା, ଚର ଖଣ୍ଡଆଦି ଆଣାଯିବ । କ୍ରାନ୍ତିପାତ ଯେ ଗତିଶୀଳ ଏହିକଥା (କର୍କଟକ୍ରାନ୍ତି ବା) ଉତ୍ତର ଅୟନ ଓ ଦକ୍ଷିଣ ଅୟନବେଳେ ପ୍ରତ୍ୟକ୍ଷରେ ଜାଣିହେବ । ବିଷୁବ ଦିନରେ ମଧ୍ୟ ଏହା ଜାଣିହେବ । କାରଣ ଉକ୍ତ ଦୁଇଦିନ ସମଦିବସ । ବିଷୁବ କ୍ରାନ୍ତି ସମ୍ପାତରେ ଉକ୍ତ ଦୁଇଦିନ ରବି ରହୁଥିବାରୁ କ୍ରାନ୍ତି ବା ଚରର ଅଭାବ ହେବ ।

**ସପ୍ତର୍ଷୀଣାମଗସ୍ତ୍ୟସ୍ୟ ତଥା ସଂଯମନୀପତେଃ**
**ତତ୍ପାର୍ଶ୍ୱସ୍ଥତାରାଣାଂ କ୍ରାନ୍ତିପାତୋ ନ ଚାଳକଃ ।୮୫।**

**ଏତେଷାଂ ଭଗଣସ୍ଥାନାଂ ସ୍ୱସ୍ଥାନାଦ୍ୟଦି ଦୃଶ୍ୟତେ**
**ପ୍ରାଗ୍‌ଗତଶ୍ଚଳତଂ ଚକ୍ରଂ ତତ୍ପୃଷ୍ଠାଦବଧାରୟେତ୍ ।୮୬**

**ପ୍ରତ୍ୟଗ୍‌ଗତୌ ପୂର୍ବଗତ୍ୟଂ କ୍ରାନ୍ତଂ ତଦନୁସାରତଃ**
**କ୍ରାନ୍ତିମାର୍ଗାଦ୍ ଶରଂ ଭାନାଂ ଦିଗ୍‌ଭେଦଂ ତଦ୍‌ବଶାଦ୍ ବୁଧଃ ।୮୭।**

ସପ୍ତର୍ଷି, ଅଗସ୍ତି ଓ ଯମ ତଥା ଏମାନଙ୍କର ଅତି ନିକଟରେ ଥିବା ନକ୍ଷତ୍ରମାନଙ୍କର କ୍ରାନ୍ତିପାତ ଜନିତ ଚଳନ ନାହିଁ । ଏଣୁ ଏସବୁ ନକ୍ଷତ୍ର ନକ୍ଷତ୍ରମଣ୍ଡଳୀ ଭିତରେ ଆଇ ପୂର୍ବ-ଆଡ଼କୁ ଯିବା ଦେଖାପଡ଼ିଲେ ବୁଝିବାକୁ ହେବ ଯେ ଭଗୋଳ ପଶ୍ଚିମ ଆଡ଼କୁ ଘୂରୁଛି । ଏମାନେ ପଶ୍ଚିମକୁ ଯିବା ଦେଖାଗଲେ ବୁଝିବାକୁ ହେବ ଯେ ଭଚକ୍ର ପୂର୍ବଆଡ଼କୁ ଗତି କରୁ-ଅଛି । ଏହି ଭଚକ୍ର ଚଳନ ଯୋଗୁଁ ନକ୍ଷତ୍ର ଗୁଡ଼ିକର କ୍ରାନ୍ତି, କ୍ରାନ୍ତିବୃତ୍ତରୁ ଶର ଏବଂ ଶର ଯୋଗେ କିଏ ଦକ୍ଷିଣ ବା ଉତ୍ତରକୁ ରହିଲେ ନିର୍ଣ୍ଣୟ କରନ୍ତୁଏ । ଏ କାମ ଅବଶ୍ୟ ଜ୍ୟୋତିର୍ବିଦ ପଣ୍ଡିତମାନେହିଁ କରିପାରିବେ ।

ଛାୟାର୍କାଦ୍ ସାଧିତାଦଲ୍ପେ କରଣାଗତଭାସ୍ୱତ
ତଦନ୍ତରମିତା ଭାଗାଃ ପ୍ରାକ୍-ଚଳାଂଶାଃ ପ୍ରକୀର୍ତ୍ତିତାଃ ॥୮୮।

କରଣାଗତ ଚଣ୍ଡାଂଶୋ-ରଲ୍ପେ ଛାୟା ବିବସ୍ୱତ
ପ୍ରତ୍ୟକ୍ ଚଳାଂଶା ବିଜ୍ଞେୟା ସ୍ତଦନ୍ତରମିତାଃ ସ୍ଫୁଟାଃ । ୮୯।

କମ୍ବାୟନଦ୍ୱୟେ ଭାନୋରେକକ୍ରାନ୍ତିସ୍ଥିତର୍ଯଦା
ତତ୍କାଳସ୍ଫୁଟଯୋଗାର୍ଦ୍ଧ-ମୟନାନ୍ତଗୃହାଦକମ୍ ।୯୦।

ତସ୍ୟ ସ୍ୱୟନସଂକ୍ରାନ୍ତେରନ୍ତରସ୍ଥାଶ୍ଚଳାଂଶକାଃ
ପ୍ରାକ୍‌ପଶ୍ଚାଦୟନେ କ୍ରାନ୍ତେ ର୍ଧନର୍ଣାଖ୍ୟାଃ କ୍ରମାଦମୀ ।୯୧।

ଛାୟାଯୋଗେ ଆଣାଯାଇଥିବା ସୂର୍ଯ୍ୟରୁ କେବଳ ଗଣିତରେ ସାଧି ଆଣାଯାଇଥିବା ସୂର୍ଯ୍ୟର ଭୋଗାଦ୍ଧ କମ୍ ଥିଲେ ଉଭୟର ଅନ୍ତର ଭାଗକୁ ଅୟନାଂଶ ବୋଲି ବୁଝିବ ଏବଂ ଏହି ଅୟନାଂଶର ଗତି ମଧ୍ୟ ପୂର୍ବକୁ ବୋଲି ବି ଜାଣିବ । ଏହାର ବିପରୀତ ହେଲେ ଅର୍ଥାତ୍ ଗଣିତରେ ଆଣାଯାଇଥିବା ସୂର୍ଯ୍ୟଠାରୁ ଛାୟା ସୂର୍ଯ୍ୟ ( ପ୍ରତ୍ୟକ୍ଷ ସୂର୍ଯ୍ୟ ) କମ୍ ହେଲେ ପୁଣି ଉଭୟଙ୍କର ଅନ୍ତର କରି ଅୟନାଂଶ ଆଣିବ । ମାତ୍ର ଏହା ଅୟନାଂଶର ପଶ୍ଚିମ ଗତିବୋଲି ଠିକ୍ କରିନେବ ।

କର୍କଟ ଓ ମକର କ୍ରାନ୍ତି ନିକଟରେ (ଅର୍ଥାତ୍ ଦୁଇଟିଯାକ ଅୟନରେ) ଯେତେବେଳେ ଉଭୟସ୍ଥ ରବିର କ୍ରାନ୍ତି ସମାନ ହେବ, ତେତେବେଳେ ଉଭୟ କାଳିକରବିର ଦୁଇଟି ଭୋଗାଦ୍ଧ ଯୋଗକରି ଅଧାକଲେ, ଅୟନାଂଶର ପରମାଣ ଆସିଯିବ । ନିରୟଣ କର୍କଟ ଓ ମକର ସଂକ୍ରାନ୍ତିର ପୂର୍ବରୁ ସାୟନ କର୍କଟ ଓ ମକର ସଂକ୍ରାନ୍ତି ହେବାର ଦେଖାଗଲେ ଅୟନାଂଶ ଯୋଗ (ଧନ) ହେବ ଅନ୍ୟଥା ବିୟୋଗ (ଋଣ) ହେବ ।

ପ୍ରାକ୍‌ପଶ୍ଚିମାୟତଶ୍ଚୈବ ଗ୍ରହସଂସ୍ଥିର-ବର୍ତ୍ମନଃ
ପାର୍ଶ୍ୱୟୋର୍ବକ୍ରତା ନାମ କ୍ରାନ୍ତଶ୍ଚାପକ୍ରମୋଽପମଃ ।୯୨।

ଗ୍ରହର କକ୍ଷାବୃତ୍ତ ଆକାଶ ବିଷୁବକୁ ଯେଉଁଠାରେ କାଟେ, ସେହି ସ୍ଥାନ ହିଁ କ୍ରାନ୍ତି ପ୍ରବର୍ତ୍ତକ । ଗ୍ରହକକ୍ଷା ଓ ବିଷୁବ ଉଭୟ ବୃତ୍ତ ପୂର୍ବ ପଶ୍ଚିମ-ବିସ୍ତାରୀ । ଏଣୁ ଗ୍ରହଠାରୁ ଗ୍ରହ କକ୍ଷାର ଦକ୍ଷିଣକୁ ବା ଉତ୍ତରକୁ ବିଷୁବପର୍ଯ୍ୟନ୍ତ ଯେଉଁ ବ୍ୟବଧାନ (ଅବଶ୍ୟ ଧ୍ରୁବ ପ୍ରୋତ ବୃତ୍ତରେ) ତାହାକୁ ହିଁ କ୍ରାନ୍ତି କହନ୍ତି । ଏହାର ନାମାନ୍ତର ଅପମ ଓ ଅପକ୍ରମ ।

---

୧ । କ୍ରାନ୍ତେଃ ସଂକ୍ରାନ୍ତେ ଋତ ଟିପ୍ପଣ୍ୟାମ୍ ।

ଖଗୋଳେ କଳ୍ପ୍ୟତେ ରେଖା କ୍ରାନ୍ତିମାର୍ଗାଭିଧା ହି ଯା
ବୈକଲ୍ୟାତ୍ ସଂସ୍କୃତେ ଚକ୍ରେ ଚଳାଂଶୈରାଦ୍ୟ ମଧ୍ୟୟୋଃ ।୯୩।

ଯା ନଭୋମଧ୍ୟଗା ରାଶିଦ୍ୱୟାନ୍ତେ ସୌମ୍ୟଗା ତତଃ
ଯାବତ୍ପାର୍ଶ୍ୱବିପକ୍ଷାଂଶା ନ୍ୟବଭ୍ରାନ୍ତେଽପି ଯାମ୍ୟଗା ।୯୪।

କ୍ରାନ୍ତିଜ୍ୟା ପରମା ତସ୍ମାତ୍ ଖାଦ୍ରିବଶ୍ୱକଳୋଚ୍ୟତେ
ଚଳାଂଶସଂସ୍କୃତାନାଂଯା ଗ୍ରହାଣାଂ ବାହୁମୌର୍ବିକା ।୯୫।

ଆକାଶ ଗୋଲରେ କଳ୍ପିତ ଯେଉଁ କ୍ରାନ୍ତିମାର୍ଗ ବା କ୍ରାନ୍ତିବୃତ୍ତ ଅଛି, ସେଥିରେ ବାରଟି ରାଶି ବି ଅଛି । ଏଥିରୁ ପ୍ରଥମରାଶି ଓ ଷଷ୍ଠରାଶିରେ ଆୟନ ସଂସ୍କାର କରିବାପରେ ଯେଉଁ ମେଷାଦି ଓ ତୁଳାଦି ହେବ ସେହି ଦୁଇଟି ଯାଗାରେ କ୍ରାନ୍ତି ଓ ବିଷୁବକୁ ୨୩°।୩୦' ପରମ ଅନ୍ତରରେ ରଖିବ । ଏହି ଅନ୍ତର ଉତ୍ତର ଓ ଦକ୍ଷିଣ ଉଭୟ ଆଡ଼କୁ ହେବ । ୨୩°।୩୦' ପରମ କ୍ରାନ୍ତିରଜ୍ୟା ହେବ ୧୩୭° ।

ପରମାପକ୍ରମଜ୍ୟା ଘ୍ନୀ ଯୋଦ୍ଧୃତା ତ୍ରିଜ୍ୟୟାଥବା
ଶତଘ୍ନୀ ଚନ୍ଦ୍ରତତ୍ତ୍ୱାପ୍ତା କ୍ରାନ୍ତିଜ୍ୟା ସାଭିଧୀୟତେ ।୯୬।

ତଦ୍ଧନୁଃକ୍ରାନ୍ତିକଳକାଃ କ୍ରାନ୍ତିଜ୍ୟ ବର୍ଗବର୍ଜିତାତ୍
ତ୍ରିଜ୍ୟାବର୍ଗାତ୍ ପଦଂ ଦ୍ୟୁଜ୍ୟା ସ୍ୱାହୋରାତ୍ରାର୍ଦ୍ଧକର୍ଣ୍ଣକଃ ।୯୭।

ସ୍ପଷ୍ଟଗ୍ରହକୁ ଅୟନାଂଶ ସଂସ୍କୃତ କରିବାପରେ ତାହାର ଯେଉଁ ଭୁଜଜ୍ୟା ହେବ ତାହାକୁ ପରମ କ୍ରାନ୍ତିଜ୍ୟାରେ ଗୁଣି ତ୍ରିଜ୍ୟାରେ (୩୪୩୮) ହରିଲେ ଅଥବା ୧୦୦ ରେ ଗୁଣି ୨୫୧୪ ରେ ହରିଲେ ସେହି ସ୍ପଷ୍ଟଗ୍ରହର କ୍ରାନ୍ତିଜ୍ୟା ହେବ । ତାହାର ଚାପ କରିନେଲେ ତାହା କ୍ରାନ୍ତିକଳା ହୋଇଯାଏ । ତ୍ରିଜ୍ୟା ବର୍ଗରୁ କ୍ରାନ୍ତିଜ୍ୟା ବର୍ଗକୁ ଫେଡ଼ି ମୂଳନେଲେ ତାହା ଦ୍ୟୁଜ୍ୟା ହୁଏ । ଏହି ଦ୍ୟୁଜ୍ୟା ହିଁ ଅହୋରାତ୍ର ବୃତ୍ତର ବ୍ୟାସାର୍ଦ୍ଧ ।

ଶତଘ୍ନୀ ଖେଟକୋଟୀଜ୍ୟା ଭୂତତ୍ତ୍ୱାପ୍ତା ସ୍ୱଭୁକ୍ତିଭିଃ
ଗୁଣିତା ତ୍ରିଜ୍ୟୟା ଭକ୍ତା ଲବ୍ଧାଃ ସ୍ୟୁଃ କ୍ରାନ୍ତିଭୁକ୍ତୟଃ ।୯୮।

ସ୍ପୁଟଗ୍ରହର ଭୁଜ ଓ କୋଟିଜ୍ୟାକୁ ୧୦୦ରେ ଗୁଣି ୨୫୧ରେ ହରିଲେ ଯାହା ଫଳହେବ ତାକୁ ଗ୍ରହର ଦୈନିକ ଗତିରେ ଗୁଣି ତ୍ରିଜ୍ୟାରେ ଭାଗଦେଲେ ତାହା ଦୈନିକ କ୍ରାନ୍ତିଗତିର ପରମାଣ ହୁଏ ।

**ଅୟନାଂଶୈଃ ସଂସ୍କୃତସ୍ୟ ଗ୍ରହସ୍ୟାଦ୍ୟନ୍ତଭାର୍ଦ୍ଧୟୋଃ**
**ସ୍ଫୁଟକ୍ରାନ୍ତିକ୍ରମାଦ୍‌ଗୋଳୌ ସୌମ୍ୟଯାମ୍ୟାଭିଧୌ ମତୌ ।୯୯।**

ଅୟନ ସଂସ୍କୃତ ଗ୍ରହର କ୍ରାନ୍ତି ଉତ୍ତର ହେବ, ଯଦି ଗ୍ରହ ପ୍ରଥମ ବୃତ୍ତପାଦରେ ଥାଏ । ତାହା ପୁଣି ଦକ୍ଷିଣ ହେବ, ଯଦି ଏହା ବୃତ୍ତର ତୃତୀୟ ପାଦରେ ଥାଏ ।

**ଭାସ୍କରସ୍ୟମତେ ନାସ୍ତି ପ୍ରତ୍ୟକ୍ ଚଳନମାୟନମ୍**
**ଗ୍ରହେ ତତ୍ସଂସ୍କୃତେରେବ ଧନତ୍ୱଂ ବର୍ଣ୍ଣିତଂ ଯତଃ ।୧୦୦।**

**ତଥାପି ବ୍ରହ୍ମ-ସୌରୋକ୍ତେର୍ଯୁକ୍ତେଶ୍ଚାତ୍ର ମୟୋଦିତମ୍**
**ପ୍ରାକ୍ ପ୍ରତ୍ୟକ୍‌ଚଳନଂ କିନ୍ତୁ ଛାୟାର୍କାଦ୍ ଜ୍ଞାସ୍ୟତେଽଖିଳମ୍ ।୧୦୧।**

ଅୟନର ପଶ୍ଚିମଗତି ଭାସ୍କରାଚାର୍ଯ୍ୟ ମାନନ୍ତି ନାହିଁ । ତେଣୁ ସେ ଗ୍ରହରେ ଅୟନାଂଶକୁ ଯୋଗହିଁ କରିବାକୁ କହିଅଛନ୍ତି । ତଥାପି ମୁଁ ବ୍ରହ୍ମ ଓ ସୂର୍ଯ୍ୟ ସିଦ୍ଧାନ୍ତର ଯୁକ୍ତିକୁ ବୁଝି ଅୟନର ପୂର୍ବ ଓ ପଶ୍ଚିମ ଉଭୟ ଗତିକୁ ମାନୁଅଛି । ଛାୟାରୁ ରବି ସାଧନକଲେ ସବୁ ଭଲ ଭାବରେ ଜାଣିହେବ ।

**କ୍ରାନ୍ତିଜ୍ୟା ବିଷୁବଭାଘ୍ନୀ ଦ୍ୱାଦଶାପ୍ତା କ୍ଷିତଜ୍ୟକା**
**ତ୍ରିଜ୍ୟାହତା ଦ୍ୟୁଜୀବାପ୍ତା ଚରଜ୍ୟାଥ ଚରାସବଃ ।୧୦୨।**

ସୂର୍ଯ୍ୟ ସିଦ୍ଧାନ୍ତେ :—

**ତଦ୍ଧନୁସ୍ତେ-ରୁଦକ୍‌କ୍ରାନ୍ତୌ ଧନହୀନୌ ପୃଥକ୍‌ସ୍ଥିତୌ**
**ସ୍ୱାହୋରାତ୍ର ଚତୁର୍ଭାଗୌ ଦିନରାତ୍ରି ଦଳେ ସ୍ମୃତେ ।୧୦୩।**

**ଯାମ୍ୟକ୍ରାନ୍ତୌ ବିପର୍ଯ୍ୟସ୍ତେ ଦ୍ୱିଗୁଣେ ତେ ଦିନକ୍ଷପେ**
**ଶରଯୁକ୍ତୋନତତ୍କ୍ରାନ୍ତ୍ୟା ଭଚନ୍ଦ୍ରାଦେରପି ସ୍ୱକେ ।୧୦୪।**

କ୍ରାନ୍ତିଜ୍ୟାକୁ ପଳଭାରେ ଗୁଣି ୧୨ ରେ ହରିଲେ କ୍ଷିତିଜ୍ୟା ହୁଏ । ଏହାକୁ ପୁଣି ତ୍ରିଜ୍ୟାରେ ଓ ଦ୍ୟୁଜ୍ୟାରେ ହରିଲେ ଚରଜ୍ୟା ହୁଏ । ଏଥିରୁ ଚରପ୍ରାଣ ବାହାର କର । ଏହାକୁ କ୍ରାନ୍ତି ଉତ୍ତର ହେଲେ ଯଥାକ୍ରମେ ଦିନରାତ୍ରିର ୪ର୍ଥ ଭାଗ ୧୫ ଦଣ୍ଡରେ ଯୋଗ ବିୟୋଗକଲେ ଦିନାର୍ଦ୍ଧ ଓ ରାତ୍ର୍ୟର୍ଦ୍ଧ ହେବ । ଦକ୍ଷିଣ କ୍ରାନ୍ତିବେଳେ ଏହାର ବିପରୀତ (ବିୟୋଗ ଓ ଯୋଗ) କଲେ, ଦିନାର୍ଦ୍ଧ ଓ ରାତ୍ର୍ୟର୍ଦ୍ଧ ହେବ । ଦିନାର୍ଦ୍ଧ ଓ ରାତ୍ର୍ୟର୍ଦ୍ଧକୁ ୨ ଗୁଣ କଲେ ଦିନ ଓ ରାତ୍ରି-ମାନ ହୋଇଥାଏ । ନକ୍ଷତ୍ର ଓ ଚନ୍ଦ୍ରାଦି ଅନ୍ୟ ଗ୍ରହମାନଙ୍କର ନିଜ ନିଜ ଅହୋରାତ୍ର ଦଣ୍ଡାଦି ବାହାର କରିବାକୁ ହେଲେ ସେମାନଙ୍କ ଶରକୁ କ୍ରାନ୍ତିରେ ଯୋଗ, ବିୟୋଗକରି ସ୍ପଷ୍ଟକ୍ରାନ୍ତି ଆଣିବ ଏବଂ ତା'ପରେ ପୂର୍ବରୀତିରେ କାର୍ଯ୍ୟ କରିବାକୁ ହେବ ।

**ବକ୍ଷେପାପକ୍ରମୈକତ୍ୱେ କ୍ରାନ୍ତିର୍ବିକ୍ଷେପସଂଯୁତା**
**ଦିଗ୍‌ଭେଦେଽନ୍ତରିତା ସ୍ପଷ୍ଟା ଭାସ୍କରସ୍ୟ ଯଥା ଗତା ।ଇତି ।୧୦୫।**

କ୍ରାନ୍ତିରେ ଶର ଯୋଗ ବିୟୋଗ କଲେ ସ୍ପଷ୍ଟ କ୍ରାନ୍ତି ହୁଏ । ଶର ଓ କ୍ରାନ୍ତିର ଦିଗ ଏକହେଲେ ଯୋଗ ଏବଂ ଉଭୟର ଦିଗ ଭିନ୍ନହେଲେ ବିୟୋଗ କରିବାକୁ ହେବ । ସୂର୍ଯ୍ୟର ଶର ନଥିବାରୁ ତାହାର କ୍ରାନ୍ତିରେ ଶରଯୋଗ ବିୟୋଗ ପ୍ରଶ୍ନନାହିଁ ।

**ବ୍ୟବହୃତୈ୍ୟ ଚରଂ ସ୍ଥୂଳଂ ପଳାତ୍ମକ-ମୁଦୀର୍ଯ୍ୟତେ**
**ଏକଦ୍ୱିତ୍ରିଗୃହାନ୍ତୋତ୍ଥଂ ସ୍ୱଦେଶଜଚରତ୍ରୟମ୍ ।୧୦୬।**

**ଆନୀୟ ତ୍ରିଭଜାଚ୍ଛୋଧ୍ୟଂ ଦ୍ୱିଭଜଂ ଦ୍ୱିଭଜାତ୍ପୁନଃ**
**ଏକରାଶିଜମେବଂ ସ୍ୟାଚ୍ଚରଖଣ୍ଡତ୍ରୟଂ ପୃଥକ୍ ।୧୦୭।**

**ସାୟନାର୍କାଦ—ଦୋରାଶିଭୁଗଲପ୍ତାଃ ପୃଥକ୍‌ସ୍ଥିତାଃ**
**ଏକରାଶେର୍ଯଦନ୍ୟୂନାସ୍ତଦା ଭାଗାଶ୍ଚ ଲପ୍ତିକାଃ ।୧୦୮।**

**ଚରେଣାଦ୍ୟେନ ଗୁଣିତାଃ ଶେଷାତ୍ ଷଷ୍ଟ୍ୟାପ୍ତ ସଂଯୁତାଃ**
**ତ୍ରିଂଶଦ୍ ବିଭାଜିତାଃ ଶୂନ୍ୟେ ରାଶିସ୍ଥାନେ ଫଳାହ୍ୱୟାଃ ।୧୦୯।**

**ତଦ୍‌ବାହୁ ରାଶିରେକଶ୍ଚେତ୍ ତଦ୍ଧ୍ୟାନେ ପ୍ରଥମଂଚରମ୍**
**ନିଧାୟାଂଶାଦିକଂ ଛୁଣ୍ଣଂ ଦ୍ୱିତୀୟେନ ତଥା ହୃତମ୍ ।୧୧୦।**

**ଫଳାତ୍ୟଂ ପ୍ରଥମଂ ସ୍ପଷ୍ଟଂ ବାହୁରାଶି ଦ୍ୱୟଂ ଯଦି**
**ତଦାଦଦ୍ୱୟଯୁତଃ ସ୍ଥାପ୍ୟା ତୃତୀୟଘ୍ନଂ ଲବାଦିକମ୍ ।୧୧୧।**

**ତ୍ରିଂଶଦାପ୍ତଯୁତଂ ପ୍ରାଗ୍‌ବଦତ୍ଥଂ ସ୍ୟାଦ୍‌ବ୍ସ୍ଫୁଟଂ ଚରମ୍**
**ପ୍ରତ୍ୟଂଶଂ ତଦ୍ ବିଭଜ୍ୟଂ ବା ସୂର୍ଯ୍ୟସ୍ୟୈକୈକରାଶିଜମ୍ ।୧୧୨।**

ବ୍ୟବହାର ନିମନ୍ତେ ପଳାତ୍ମକସ୍ଥୂଳଚର ଏଠାରେ କୁହାଯାଇଛି । ୧ ରାଶିର, ୨ ରାଶିର ଓ ୩ ରାଶିର ଏପରି ତିନୋଟିର ଚରଆଣି ୩ ରାଶିଚରରୁ ୨ ରାଶିଚର ଫେଡ଼ି ଗୋଟିଏ ଏବଂ ଦୁଇରାଶି ଚରରୁ ଗୋଟିଏ ରାଶିଚର ଫେଡ଼ି ଗୋଟିଏ ତଥା ଏକ ରାଶିଚର ଏପରି ତିନଚରର ଖଣ୍ଡ ଆଣିବ । ଏ ତିନୋଟି ଚର ମେଷାଦି ତିନରାଶିର ହେବ ।

ବର୍ତ୍ତମାନ ଅୟନ ସଂସ୍କୃତ ସୂର୍ଯ୍ୟାଦି ଗ୍ରହମାନଙ୍କର ଭୁଜରାଶ୍ୟଂଶ କଳା ପୃଥକ୍ କରି ରଖିବ । ଯଦି ତାହା ଗୋଟିଏ ରାଶିରୁ କମ୍ ହୁଅନ୍ତି (୩୦° ରୁ କମ୍) ତାହାହେଲେ ଅଂଶ ଓ କଳାକୁ ପୃଥକ୍ ପୃଥକ୍ ପ୍ରଥମଚର ଖଣ୍ଡରେ ଗୁଣି କଳା ସ୍ଥାନରେ ଯାହାହେବ ତାକୁ ୬୦°ରେ ହରି ଫଳ ଅଂଶ ଗୁଣରେ ମିଶାଇବ ଏବଂ ଅବଶେଷକୁ କଳାକରି ରଖିବ । ପୁଣି ଅଂଶ ଗୁଣ ଓ ଯୋଗଫଳକୁ ପୁଣି ୩୦ ରେ ହରି ଫଳକୁ ରାଶିରେ ଯୋଗ କରିବ. ଶେଷକୁ ପୁଣି ଅଂଶରେ ରଖିବ ।

ଭୁଜରେ ଗୋଟିଏ ରାଶିଥିଲେ ରାଶିସ୍ଥାନରେ ପ୍ରଥମଚର ଖଣ୍ଡକୁ ରଖି ଅଂଶାଦିକୁ ଦ୍ୱିତୀୟଚର ଖଣ୍ଡରେ ଗୁଣି ୩୦ ରେ ଭାଗଦେଇ ଫଳକୁ ପ୍ରଥମଚର ଖଣ୍ଡରେ ଯୋଗକଲେ ସ୍ପଷ୍ଟଚର ହେବ । ଭୁଜଯଦି ୨ ରାଶି ହୁଏ, ତାହାହେଲେ ୧ମ ଓ ୨ୟଚର ଖଣ୍ଡର ଯୋଗ କରିବାକୁ ହେବ । ଏଥିରେ ଯେଉଁ ଅଂଶାଦି ରହିବ ତାହାକୁ ୩ୟଚର ଖଣ୍ଡରେ ଗୁଣି ୩୦ରେ ହରିଲେ ଫଳ ଯାହାହେବ ତାକୁ ଉଭୟର ଯୋଗରେ ପୁଣି ମିଶାଇବ ତାହାହେଲେ ସ୍ଫୁଟଚର ହେବ ।

ଅଥବା ରବିର ଏକରାଶିର ଚରଆଣି ପ୍ରତି ଅଂଶକୁ କେତେ ଚରହେବ ତାହା ବାହାର କରିବ । ଲଗ୍ନାଦି ଆଣିବାକୁ ଏହିସବୁ ଚରଖଣ୍ଡର ବିଶେଷ ଆବଶ୍ୟକତା ଥିବାରୁ ସୂକ୍ଷ୍ମଚର ପ୍ରାପ୍ତି ନିମନ୍ତେ ପ୍ରତିଭାଗ ବା ଅଂଶର ଚରଖଣ୍ଡ ସାଧନ କରିବ ।

**ଅଥୋଦୟାନ୍ତରପଳାନ୍ୟର୍କାତ୍ ସାୟନସଂସ୍କୃତେଃ**
**କ୍ରମାଦ୍ବୃଦ୍ଧିକ୍ଷୟାଢ୍ୟାନି ରାଶ୍ୟର୍ଦ୍ଧେଷୁ ବିଷୁ ବିଷୁ ।୧୧୩।**

**ସୂର୍ଯ୍ୟା ନବ ଚ ବେଦାଶ୍ଚ ବେଦାନବ ଚ ଭାନବଃ**
**କ୍ରମାଦ୍ୟଂ ବର୍ଦ୍ଧମାନଂ କ୍ଷୀୟମାଣଂ ତତସ୍ତ୍ୱୟମ୍ ।୧୧୪।**

**ସ୍ୱଭାର୍ଦ୍ଧ-ଫଳସଂଖ୍ୟା ଘ୍ନା ସ୍ତିଥ୍ୟାପ୍ତା ସ୍ତେତ୍ରି-ନାଂଶକାଃ**
**ଫଳଂ ପ୍ରାକ୍ ପଳତଃ ସ୍ୱର୍ଣ୍ଣଂ କାର୍ଯ୍ୟଂ ବୃଦ୍ଧିକ୍ଷୟକ୍ରମାତ୍ ।୧୧୫।**

**ତତ୍ତ୍ୱ ସଂଖ୍ୟାର୍କଦୋଃ କୋଟିସାମ୍ୟେ ସ୍ୟାଦଥସନ୍ଧିଷୁ**
**ଗୋଳାୟନ-ଭବେଷ୍ୱେଷାଂ ଶୂନ୍ୟତା ସ୍ୟାଚତୁର୍ଷ୍ୱତଃ ।୧୧୬।**

**ତଦ୍ଘ୍ନୀର୍କୁନ୍ତରହୋରାଃ ପଳାପ୍ତାସ୍ତକଳାଦିକମ୍**
**ସାୟନା ର୍କୋଜୟୁଗ୍ମାଦ୍ୟୋଃ କାର୍ଯ୍ୟମ୍ବେଟେଷ୍ୟୃଣଂ ଧନମ୍ ୧୧୭।**

ବର୍ତ୍ତମାନ ଉଦୟାନ୍ତର ପଳକଥା ଅର୍ଥାତ୍ ଲଂକାରେ କ୍ରାନ୍ତି ସୂର୍ଯ୍ୟୋଦୟ ଓ ମଧ୍ୟମ (ବିଷୁବରେ କଳ୍ପିତ କ୍ରାନ୍ତିବୃତ୍ତ ସମାନ) ସୂର୍ଯ୍ୟୋଦୟର ଅନ୍ତର ଆଣିବାର ପ୍ରୟାସ କରା-ଯାଉଛି । ଏହାକୁ କ୍ରାନ୍ତି ମଣ୍ଡଳର ବକ୍ରତାନେଇ ବିଷୁବ ବୃତ୍ତରେ ସମୟର ସମୀକରଣ କୁହାଯାଇଥାଏ ।

କ୍ରାନ୍ତି ଓ ବିଷୁବ ବୃତ୍ତର ପ୍ରଥମ ସମ୍ପାତରୁ ପ୍ରଥମ ଭନରାଶ୍ୟର୍ଦ୍ଧ ପର୍ଯ୍ୟନ୍ତ ଉଦୟାନ୍ତର ପଳ କ୍ରମଶଃ ବଢ଼ିଥାଏ । ପୁଣି ୪ର୍ଥ ରାଶ୍ୟର୍ଦ୍ଧଠାରୁ ପୁଣି ପ୍ରଥମ ପଦ (୯୦°) ଶେଷ ପର୍ଯ୍ୟନ୍ତ ଏହା କ୍ରମରେ ଛୋଟଥାଏ । ସମଦ୍ଧବସଠାରୁ କର୍କଟ ଓ ମକର କ୍ରାନ୍ତିଆଡ଼କୁ ଉଦୟାନ୍ତର ପଳ ପରିମାଣ ହେଲା ୦,୧୫,୩୦,୪୫,୬୦,୭୫,୯୦ । ଏ ପୁଣି ୦,୧୫,୩୦,୪୫,୬୦,୭୫ ଓ ୯୦ ର ବିଭୁଜାଂଶ ଯାଗାରେ ହୋଇଥାଏ । ଯଥାକ୍ରମେ କ୍ରାନ୍ତିଠାରୁ ସମଦ୍ଧବସ ଆଡ଼କୁ ରବି ଗଲା-ବେଳେ ମଧ୍ୟ ଏହି ଗୋଟିଏ କ୍ରମରେ ଉଦୟାନ୍ତର ପଣି ଆସିଥାଏ । ମଧ୍ୟବର୍ତ୍ତୀ ସ୍ଥାନମାନଙ୍କରେ ଅନୁପାତ ଯୋଗେ ବୃଦ୍ଧିଶୀଳ ବା କ୍ଷୟଶୀଳ ଉଦୟାନ୍ତର ପଳ ଆସିବ । ବୃଦ୍ଧିଶୀଳ ହୋଇ-ଥିଲେ ଅଗ୍ରିତ ଉଦୟାନ୍ତର ପଳରେ ଏହାକୁ ଯୋଗ କରିବ ଏବଂ କ୍ଷୟଶୀଳ ହୋଇଥିଲେ ବିୟୋଗ କରିବାକୁ ହେବ ।

ରବିର ପରମ ଉଦୟାନ୍ତର ପଳ ୨୫, ଯେତେବେଳେ ରବିର ଭୁଜାଂଶ ୪୫° ମାତ୍ର । ଏତିକବେଳେ ରବି ସମଦ୍ଧବସ ବା କ୍ରାନ୍ତିମଣ୍ଡଳ ପାଖରେ ଥାଏ । ଉଦୟାନ୍ତର ପଳ ଆଣି-ସାରିବାପରେ ଗ୍ରହର ଦୈନିକ ଗତିରେ ତାକୁ ଗୁଣ ଏବଂ ଗୁଣଫଳକୁ ଗୋଟିଏ ଦିନର ସମ୍ପୂର୍ଣ୍ଣ ପଳରେ ଅର୍ଥାତ୍ ୩୬୦୦ ପଳରେ ହର । ସୂର୍ଯ୍ୟର ଭୁଜାଂଶ ବିଷମ ଓ ସମପଦରେ ଥିବା-ବେଳେ ଏହି ପଳକୁ ଯଥାକ୍ରମେ ମଧ୍ୟମ ଗ୍ରହରେ ବିଯୁକ୍ତ ବା ଯୁକ୍ତ କରିବ । ଫଳହେବ ଲଂକାର ମଧ୍ୟୋଦୟ କାଳିକ ସେହିଗ୍ରହର ରାଶ୍ୟାଦିସ୍ଥିତି ।

**ଗ୍ରହସ୍ଥିତିସ୍ତୁତ ଯଦ୍ରାଶାବୟବନାଂଶପରସ୍କୃତଃ**
**ତତ୍ସେୟାଦୟାସୁ ଗୁଣିତା ଭୁକ୍ତି ରାଶି କଳୋଦ୍ଧୃତା ॥୧୯॥**

**ତତ୍ଫଳାଢ଼୍ୟାଣ୍ଟକଲପ୍ତାଃ ସ୍ୱାହୋରାତ୍ରାସବୋ ମତାଃ**
**ଗ୍ରହେ ବକ୍ରଗତୌ ତେନ ଫଳେନ ପରବର୍ଜିତାଃ ॥୨୦॥**

ଗ୍ରହର ସାୟନ ରାଶ୍ୟାଦିସ୍ଥିତି ଦେଖ । ରାଶିର ଉଦୟ ଅସୁ ନିଅ (ଅର୍ଥାତ୍ ଯେତେ-ସମୟରେ ଉକ୍ତରାଶି ଦିଗ୍‌ବଳୟ ଉପରକୁ ଉଠିଥାଏ) । ଏହି ଉଦୟାସୁକୁ ଗ୍ରହର ଦୈନିକ ଗତିରେ ଗୁଣି ତାକୁ ୧୮୦୦ ରେ ଭାଗ ଦିଅ । ଫଳକୁ ୨୧୬୦୦ ରେ ଯୋଗକର—ଗ୍ରହ ମାର୍ଗୀଥିଲେ । ଗ୍ରହ ବକ୍ରୀଥିଲେ କିନ୍ତୁ ଏହିଫଳକୁ ୨୧୬୦୦ ରୁ ଅନ୍ତର କର । ଫଳ ଉକ୍ତ

ଗ୍ରହର ଦିନ ପରିମାଣ ହେବ । ଅର୍ଥାତ୍ ଉକ୍ତ ଗ୍ରହ ଥରେ ଉଦୟହୋଇ ପୁଣି ଉଦୟ ହେବାକୁ ସେତିକ ସମୟ ନେବ ।

ସ୍ଥୂଳନ୍ତୁ ନାଡ଼ିକାଷଷ୍ଟିଃ ସୂର୍ଯ୍ୟସାବନବାସରମ୍
ତତ୍ରାଙ୍କଶରହୀନାଃ ସ୍ୟୁର୍ଗ୍ରହର୍କ୍ଷ ସ୍ୱଦନାସବଃ ।୧୬୦।

ସୂର୍ଯ୍ୟ ସାବନ ଦିନର ପରିମାଣ ସ୍ଥୂଳତଃ ୬୦ ଦଣ୍ଡ ମାତ୍ର । ଏଥିରୁ ୫୯ ଲିପ୍ତା ବାଦ୍‌ଦେଲେ ଗୋଟିଏ ନକ୍ଷତ୍ର ଦିନ ହୁଏ । ଗ୍ରହର ସାବନଦିନ ପରିମାଣ ଆଣିବାରୀତି ଆଗରୁ କୁହାଯାଇଛି ।

ସ୍ଥୂଳେ ଦିନେ ଚେଦୁଦୟାଃ ସାଧ୍ୟାସ୍ତାତ୍କାଳକାଦ୍ରବେଃ
ସୂକ୍ଷ୍ମେ ତ୍ୱୈଦୟିକାଭାନୋସ୍ତଦା ତଭାଦୟାଃ ସ୍ଫୁଟାଃ ।୧୬୧।

ସାବନ ଇଷ୍ଟକାଳରେ ଲଗ୍ନ ଅପେକ୍ଷିତ ହେଲେ ଇଷ୍ଟକାଳକ ରବିରୁ ତାହା କରାଯିବା ଉଚିତ । ରବି ଗତିକଳାରୁ ଉତ୍ପନ୍ନ ଅସୁଯୁକ୍ତ ୬୦ ଦଣ୍ଡ ପରିମିତ ସାବନ ଅହୋରାତ୍ରରେ ଉଦୟକାଳକ ସୂର୍ଯ୍ୟରୁ ଉଦୟ ସାଧନ କରିବାକୁ ହେବ । ଉଦୟର ଅର୍ଥ ଏଠାରେ ରାଶି ଉଦୟ ବା ଲଗ୍ନ ।

କ୍ରାନ୍ତିବୃତ୍ତଦ୍ୱାଦଶାଂଶାଃ ଖଷାଷ୍ଟେନ୍ଦୁ କଳୋଽପି ସନ୍
ନିଜାହୋରାତ୍ରବୃତ୍ତସ୍ଥୋ ବିଷୁବେଽତୀବ ବର୍ଦ୍ଧିତଃ ।୧୬୨।

ଋଜୁଶ୍ଚାୟନୟୋରନ୍ତେ ଯାତ ଯତ୍ପଶ୍ଚିମାଂ ଦିଶମ୍
ତତୋ ନୈକବଧା ଭୁକ୍ତିର୍ଲଗ୍ନାନାଂ ନାଡ଼ିକାତ୍ମିକାଃ ।୧୬୩।

କ୍ରାନ୍ତିବୃତ୍ତକୁ ବାର ଭାଗକଲେ ଏକରାଶି ହୁଏ ଏବଂ ପ୍ରତ୍ୟେକ ଭାଗର ପରିମାଣ ୧୮୦୦ କଳା ହୋଇଥାଏ । ଏହି ରାଶିକଳା ବିଷୁବ ନିକଟରେ ଅତ୍ୟନ୍ତ ବକ୍ର ହୋଇଥିବାରୁ ଅର୍ଥାତ୍ ବିଷୁବ ଓ କ୍ରାନ୍ତିବୃତ୍ତ ସମ୍ପାତ ନିକଟରେ ଏହି କ୍ରାନ୍ତି ବୃତ୍ତଖଣ୍ଡ ବିଷୁବଠାରୁ ଢ଼େର ତେରଛା ହୋଇଥିବାରୁ ଏବଂ ଏହି ସମ୍ପାତଠାରୁ ୯୦° ଠାରେ (ଅୟନ ନିକଟରେ) ଏହିଖଣ୍ଡ ପୁଣି ସାମାନ୍ୟ ତେରଛା ହୋଇଥିବାରୁ ଅହୋରାତ୍ର ବୃତ୍ତରେ ଏହି ଉଭୟ କ୍ରାନ୍ତିବୃତ୍ତ ଖଣ୍ଡର ଉଦୟ ସମାନ ହୋଇପାରେ ନାହିଁ ।

ଏକରାଶେର୍ଭଯୁଗ୍ମସ୍ୟ ତ୍ରିଭାନାଂ ଜ୍ୟାଃ ପୃଥକ୍ ପୃଥକ୍
କୃତୀକୃତା-ସ୍ତତଃ ସ୍ୱସ୍ୱକ୍ରାନ୍ତିଜ୍ୟା ବର୍ଗ-ବର୍ଜ୍ଜିତାଃ ।୧୬୪।

ତନ୍ମୂଳାନ ତ୍ରିଜୀବାଭିର୍ଗୁଣିତାନ ସ୍ୱସ୍ୱାସ୍ୱସ୍ୱା
ଦ୍ୟୁଜୀବୟା ବଭକ୍ତାନ ତତ୍‌ଫଳାନାଂ ଧନୂଂଷି ଚ ।୧୬୫।

ଅଧୋଽଧଃ ପ୍ରବଶୋଧାନ କ୍ରମଶ୍ୟୁକ୍ତ୍ରମତୋଽସବଃ
ମେଷକର୍କ୍ୟାଦଲଗ୍ନାନାଂ ଭବନ୍ତ ବ୍ୟକ୍ଷଦେଶଜାଃ ।୧୬୬।

କ୍ରାନ୍ତିବୃତ୍ତ ପୂର୍ବରୁ ପଶ୍ଚିମକୁ ପ୍ରବହବାୟୁ ଜୋରରେ ବହେ । ଏଣୁ ରାଶିମାନଙ୍କର ଉଦୟକାଳ ଏପରି ସ୍ଥିର କରିବାକୁ ହେବ :— ଗୋଟିଏ ରାଶିର ଦୁଇରାଶି ଓ ତିନ ରାଶିର ପୃଥକ୍ ପୃଥକ୍ ଜ୍ୟା ବାହାର କର । ଏଗୁଡ଼ିକର ବର୍ଗକର । ପ୍ରତ୍ୟେକ ରାଶିର କ୍ରାନ୍ତିଜ୍ୟା (ଏକ-ରାଶିର କ୍ରାନ୍ତିଜ୍ୟା, ଦୁଇ ରାଶିର ଓ ତିନ ରାଶିର କ୍ରାନ୍ତିଜ୍ୟା) ଆଣ । ଏଗୁଡ଼ିକୁ ବର୍ଗକରି ପୂର୍ବ-ବର୍ଗରୁ ଯଥାକ୍ରମେ ଫେଡ଼ । ଅନ୍ତର ଫଳର ବର୍ଗମୂଳ ଆଣ । ଏହାକୁ ତ୍ରିଜ୍ୟାରେ ଗୁଣି ଯଥା-କ୍ରମେ ଏକ, ଦୁଇ, ତିନ ରାଶିଜ୍ୟାରେ ଭାଗକଲେ ଯେଉଁ ଫଳ ହେବ ତାହାର ଚାପ ବାହାର କର । ତ୍ରିରାଶିର ଚାପରୁ ଦ୍ୱିରାଶିର ଏବଂ ଦୁଇ ରାଶିର ଚାପରୁ ଏକରାଶିର ଚାପ ଅନ୍ତରକଲେ କ୍ରମରେ ରାଶିଗୁଡ଼ିକର ଉଦୟ ଅସୁ ଆସିଯାଇ ପାରିବ । ବିପରୀତ କ୍ରମରେ ବାଦଦେଲେ କର୍କଟଆଦି ତିନ ରାଶିର ଉଦୟମାନ ହୋଇପାରିବ । ଏଗୁଡ଼ିକ ବିଷୁବ ବୃତ୍ତୀୟ ଉଦୟମାନ ।

ଯଦ୍ୱା ରାଶିବୟଦ୍ୟୁଜ୍ୟା ତ୍ରଦ୍ୱେ୍ୟକ ଭଗୁଣା-ହତା
ସ୍ୱସ୍ୱଦ୍ୟୁଜ୍ୟା ହୃତା ଲବ୍ଧ ଧନୁଃପ୍ରାଣାଃ ପୃଥକ୍‌ସ୍ଥିତାଃ ।୧୬୭।

ତ୍ରିଭସୁତେଭ୍ୟା ଦ୍ୱିଭପ୍ରାଣାଃ ଶୋଧ୍ୟା ଏକଭଜାସ୍ତତଃ
ଭୂଜତ୍ରଦ୍ୱେ୍ୟକରାଶୀନାଂ ଭବେୟୁରୁଦୟାସବଃ ।୧୬୮।

ଅଥବା ପରମ ଅଳ୍ପ ଦ୍ୟୁଜ୍ୟାକୁ ତିନଜାଗାରେ ରଖି ଯଥାକ୍ରମେ ଏକରାଶି, ଦୁଇରାଶି ଓ ତିନରାଶିର ଜ୍ୟାରେ ଗୁଣି ଏକରାଶିର ଦ୍ୟୁଜ୍ୟାରେ, ଦୁଇରାଶିର ଦ୍ୟୁଜ୍ୟା ଓ ତିନ ରାଶିର ଦ୍ୟୁଜ୍ୟାରେ ହରିଲେ ଯାହାହେବ ତାହାର ଚାପ ସ୍ଥିରକର । ଏଗୁଡ଼ିକ ଯଥାକ୍ରମେ ଏକରାଶି, ଦୁଇରାଶି ଓ ତିନରାଶିର ଅସୁହେବ । ତିନ ରାଶିର ଅସୁରୁ ଦୁଇରାଶିର ଅସୁ ବାଦ୍‌ଦେଲେ ଏବଂ ଦୁଇରାଶିର ଅସୁରୁ ଏକରାଶିର ଅସୁ ବାଦ୍‌ଦେଲେ ଯଥାକ୍ରମେ ପୂର୍ବପର ୩ୟ ଓ ୨ୟ ରାଶିର ଉଦୟମାନ ଆସିଯିବ । ପ୍ରଥମ ରାଶିର ଉଦୟମାନ ତ ଆସିଛି । ଏଣୁ ମେଷାଦି ତିନରାଶିର ଉଦୟମାନ ଆସିଯିବାପରେ ପୂର୍ବପର ସବୁରାଶିର ଉଦୟମାନ ଆସିବ ।

ପଞ୍ଚାଦ୍ରିଭୂପାସ୍ତର୍କାଙ୍କ ଘନାନନ୍ଦାକ୍ଷିଗୋଭୂକଙ୍କ
ନନ୍ଦାକ୍ଷିଗୋଭୂବୋଽଙ୍ଗାଙ୍କ ଘନାଃପଞ୍ଚାଦ୍ରିଷଡ଼୍‌ଭୂବଃ ।୧୬୯।

**ଗଦତା ଉଦୟପ୍ରାଣା ମେଷତୌଲ୍ୟାଦଷଟ୍-କୟୋଃ**
**ଉଦୟେଽସ୍ତମୟେ ମଧ୍ୟେ ସମାଃ ସୁର୍ବ୍ୟକ୍ଷଦେଶକେ ।୧୩୦।**

ପୂର୍ବବର୍ଣ୍ଣିତ ସ୍ତମ୍ଭରେ ଏହି ଉଦୟମାନସବୁ ଅଣାଯାଇଅଛି । (୧) ମେଷ—୧୬୭୫ (୨) ବୃଷ—୧୭୯୬ (୩) ମିଥୁନ—୧୯୨୯ (୪) କର୍କଟ—୧୯୨୯ (୫) ସିଂହ—୧୭୯୬ (୬) କନ୍ୟା—୧୬୭୫ । ମେଷାଦିରାଶିର ଉଦୟଅସୁ (ଗୁଡ଼ିକ) କ୍ରମରେ ତୁଳାଦି ଛରାଶିର ଉଦୟମାନ ହେବେ । ଅର୍ଥାତ୍—ମେଷର ଯାହା ମୀନର ତାହା, ବୃଷର ଯାହା କୁମ୍ଭର ତାହା, ଏହିପରି କନ୍ୟାର ଯାହା ତୁଳାର ତାହା । ରାଶିମାନଙ୍କର ଏ ଉଦୟ ଅସୁ ଉଦୟ, ଅସ୍ତ ଓ ମଧ୍ୟରେ (ଅର୍ଥାତ୍ ପୂର୍ବ ଓ ପଶ୍ଚିମ କ୍ଷିତିଜ ତଥା ୧୦ ମ ଓ ଚତୁର୍ଥ; ମାଧ୍ୟନ୍ଦିନ ରେଖାରେ ସମାନ) ଯେବେଳେ ଦେଶୀୟ ମାଧ୍ୟନ୍ଦିନ ରେଖା ଅତିକ୍ରମ କରିବାବେଳେ ମଧ୍ୟ ତାହାର ପରିମାଣରେ କିଛି ପରିବର୍ତ୍ତନ ନାହିଁ ।

**ସ୍ୱଦେଶଲଗ୍ନଜ୍ଞାନାର୍ଥମଧୋଧଃ ପରିଶୋଧନମ୍**
**ଚରାସୁନାଂ ତଥା କାର୍ଯ୍ୟଂ ତତଃ ସ୍ୱଚରଖଣ୍ଡକାଃ ।୧୩୧।**

**ଅଜାଦିତ୍ରିତୟେ ତ୍ୟାଜ୍ୟାଃ କର୍କ୍ୟାଦି ତ୍ରିତୟେଽନ୍ୱିତାଃ**
**ତୁଳାଦିଷୟ୍‌ଏବାଢ଼୍ୟା ନକ୍ରାଦିଷୟ୍ ଉଜ୍‌ଝିତାଃ ।୧୩୨।**

**ରାଶୀନାମୁଦୟା ଏବଂ ସ୍ୱଚରୈଃ ସଂସ୍କୃତାଃ କ୍ରମାତ୍**
**ସ୍ୱଦେଶଜାଃ ସୁଧୀଃ ସର୍ବ୍ବେ ମଧ୍ୟଲଗ୍ନା ନିରକ୍ଷଜାଃ ।୧୩୩।**

ବିଷୁବେତର ଦେଶରେ ରାଶିମାନଙ୍କର ଉଦୟ ଅସୁ ବାହାର କରିବାକୁ ହେଲେ ପ୍ରଥମେ ପୂର୍ବକଥିତରେ ଉକ୍ତ ଦେଶରେ ଚରଖଣ୍ଡ ସବୁ ଆଣ । ଏ ତିନିଚର ଖଣ୍ଡକୁ ଲଂକାର ୧ମ ତିନି ଓ ଶେଷ ତିନିରାଶିର ଉଦୟାସୁରୁ ବିୟୋଗ କର । ଏହାକୁ ପୁଣି ୨ୟ ଓ ୩ୟ ତିନିତିନି ରାଶିର ଉଦୟାସୁରେ (ଲଙ୍କାର) ଯୋଗକର । ତାହେଲେ ଇଷ୍ଟସ୍ଥାନରେ ମେଷାଦି ୧୨ ରାଶିର ଉଦୟ ଅସୁ ହୋଇଯିବ ।

ମଧ୍ୟଲଗ୍ନର ଅର୍ଥ ମାଧ୍ୟନ୍ଦିନ ରେଖାକୁ ରାଶି ଅତିକ୍ରମ କରିବାର ସମୟ ମାନ । ବିଷୁବ୍‌ରେ ରାଶିଗୁଡ଼ିକର ଉଦୟ ଅସୁ ଆସିଗଲାପରେ ସେଥିରେ ସ୍ୱଦେଶୀୟ ଚରସଂସ୍କାର କଲେ ନିଜ ଦେଶରେ ଉକ୍ତ ରାଶି ଗୁଡ଼ିକର ଉଦୟମାନ ହୋଇଯିବ ।

**ଯାବତୋ-ବେତ କାଳେନ ରାଶିରେତସ୍ୟ ସପ୍ତମଃ**
**ତାବତାସ୍ତମୟଂଯାତ ସ୍ଥୂଳେୟଂ କ୍ଷେତ୍ରକଳ୍ପନା ।୧୩୪।**

**ହୋରାଦୃକ୍-କାଣୟୋଃ କାଳଃ ପୂର୍ବବତ୍ ସାଧ୍ୟତେ ହ୍ୟଃ
ରାଶ୍ୟର୍ଦ୍ଧ ତ୍ରିଲବକ୍ରାନ୍ତଦ୍ୟୁଜ୍ୟାଭିଃ ସ ତୁ ସୂକ୍ଷ୍ମକଃ ।୧୩୫।**

ଯେତେ ସମୟରେ ଯେଉଁ ରାଶି ପୂର୍ବରେ ଉଦୟ ହୁଏ, ଠିକ୍ ସେତିକି ସମୟରେ ତାହାର ସପ୍ତମରାଶି ପଶ୍ଚିମରେ ଅସ୍ତ ହୁଏ । ରାଶିମାନଙ୍କ ଉଦୟମାନ ଆଣିବା ନିମନ୍ତେ ଯେଉଁ କଳ୍ପନା (କ୍ଷେତ୍ରଆଦି) ହୋଇଅଛି ତାହା ସ୍ଥୂଳ-ସୂକ୍ଷ୍ମ ନୁହେଁ ।

ରାଶିର ଅଧା—୧୫°କୁ ହୋରା ଏବଂ ରାଶିର ⅓=୧୦°କୁ ଦ୍ରେକାଣ କହନ୍ତି । ଏହି ହୋରା ଓ ଦ୍ରେକାଣର ସମୟକୁ (ଉଦୟ ପରିମାଣ) ରାଶିର ଉଦୟ ଅସୁସାଧନ କଲା ପରି ସାଧିବାକୁ ହେବ । ଏଥି ନିମନ୍ତେ ରାଶି ଅର୍ଦ୍ଧର ଓ ରାଶି ⅓ର କ୍ରାନ୍ତି ଓ ଦ୍ୟୁଜ୍ୟା ଆଣିବା ଦରକାର । ଏ ସବୁ ଆଣିବା ପରେ ହୋରା ଓ ଦ୍ରେକାଣର ଉଦୟ ଅସୁ ଆଣିଲେ ରାଶିର ଉଦୟ ଅସୁଠାରୁ ଏହା ସୂକ୍ଷ୍ମତର ହେବ, ଏଥିରେ ସନ୍ଦେହ ନାହିଁ ।

**ଚଳାଂଶ ସଂସ୍କୃତଃ ସୂର୍ଯ୍ୟୋ ବର୍ତ୍ତିତେ ଯତ୍ର ମନ୍ଦିରେ
ତଦ୍‌ଭୋଗ୍ୟାଂ-ଶାଦୟୋ ନିଘ୍ନାସ୍ତଲ୍ଲଗ୍ନପ୍ରମିତାସୁଭିଃ ।୧୩୬।**

**ଖତ୍ରୟୈର୍ବିହୃତା ଲବ୍ଧାଃ ପ୍ରଣ୍ଣାଖ୍ୟାସ୍ତେଽସବୋ ମତାଃ
ଇଷ୍ଟକାଳାସୁତଃ ଶୋଧ୍ୟାସ୍ତତସ୍ତଦପରୋଦୟାଃ ।୧୩୭।**

**ଶୋଧ୍ୟାସ୍ତ୍ୱଶୁଦ୍ଧଲଗ୍ନସ୍ୟ ଭୁକ୍ତପ୍ରାଣା ଖବହ୍ନିଭିଃ
କ୍ଷୁଣ୍ଣା ଅଶୁଦ୍ଧମାନାପ୍ତା ଭାଗାଦ୍ୟା ଗତଭାନ୍ୱିତାଃ ।୧୩୮।**

**ସଂସ୍କୃତା ବୈପରୀତ୍ୟେନ ଚଳାଂଶୈର୍ଭବତ ସ୍ଫୁଟଃ
ଲଗ୍ନଃ ସ୍ୱଦେଶ ସଂସିଦ୍ଧୌ ରାଶିଭାଗକଳାଦଭିଃ ।୧୩୯।**

ଇଷ୍ଟ କାଳରୁ ଲଗ୍ନ ଆଣିବା ରୀତି:—

ଔଦୟିକ ସ୍ଫୁଟ ସୂର୍ଯ୍ୟରେ ଅୟନାଂଶ ସଂସ୍କାର କର । ସେ ଯେଉଁ ରାଶିରେ ହେବ ତାହାର ଭୁକ୍ତାଂଶ ଓ ଭୋଗ୍ୟାଂଶ ବାହାର କର । ଭୋଗ୍ୟ ଅଂଶକୁ ସେହି ରାଶିର ଉଦୟମାନରେ ଗୁଣି ୩୦°ରେ ଭାଗ ଦେଲେ ତାହା ଭୋଗ୍ୟ ଅସୁ ହେବ । ଏହାକୁ ପ୍ରଣ୍ଣ ଅସୁ ମଧ୍ୟ କହନ୍ତି । ଏହାକୁ ଇଷ୍ଟ (ସୂର୍ଯ୍ୟୋଦୟ ଇଷ୍ଟ) କାଳରୁ ବାଦ ଦିଅ । ଅବଶିଷ୍ଟରୁ ତା ପର ପର ରାଶିର ଉଦୟ ଅସୁ ବାଦ୍ ଦେଇଯାଅ । ଶେଷରେ ଯାହା ବଳିବ ତାକୁ ୩୦°ରେ ଗୁଣି ଭକ୍ତ ରାଶିର ଉଦୟ ଅସୁରେ ଭାଗ ଦିଅ । ଫଳ ମଧ୍ୟ ଅଂଶାଦି ହେବ । ଏଥିରେ ଗତ ରାଶି ସଂଖ୍ୟା ଯୋଗକର । ଏହି ମୋଟରୁ ଅୟନାଂଶ ସଂସ୍କାର ବିପରୀତ ଭାବରେ କର । ଅର୍ଥାତ୍ ସ୍ଫୁଟ-

ରବରେ ପ୍ରଥମେ ଅୟନଯୋଗ କରିଥିଲେ ବିଯୋଗ ଏବଂ ବିଯୋଗ କରିଥିଲେ ଯୋଗ । ଅବଶେଷ ଯାହା ରହିବ ତାହା ଲଗ୍ନର ରାଶି, ଅଂଶ ଓ କଳାଦି ହେବ ।

**ଇଷ୍ଟକାଳାସବୋଽଲ୍ପାଶ୍ଚେତ୍ ପ୍ରଶ୍ନତସ୍ତ୍ରିଂଶଦାହତାଃ**
**ଲଗ୍ନାପ୍ତା ସାୟନାର୍କାଢ଼୍ୟା ବ୍ୟାୟନାଃ ସ୍ୟାତ୍ତନୁଃ ସ୍ଫୁଟଃ ।୧୪୦।**

ଭୋଗ୍ୟ ଅସୁରୁ ଇଷ୍ଟକାଳ ଅଳ୍ପ ହୋଇଥିଲେ ସେହି ଭୋଗ୍ୟ ଅସୁକୁ ୩୦ରେ ଗୁଣି ସାୟନସ୍ଫୁଟ ରବିର ଉଦୟାସୁରେ ଭାଗ ଦେଲେ ଯାହା ଅଂଶାଦି ହେବ । ତାହାକୁ ସାୟନସ୍ଫୁଟ ରବରେ ଯୋଗକରି ସେଥିରୁ ଅୟନାଂଶ ବାଦ ଦେଲେ ସ୍ଫୁଟ ଲଗ୍ନ ଆସିଯାଏ ।

**ଚଳାଂଶ ସଂସ୍କୃତସ୍ପଷ୍ଟଲଗ୍ନଭୁକ୍ତାଂଶ-ଲପ୍ତିକାଃ**
**ତନ୍ମାନଘ୍ନାଃଖରାମାପ୍ତାଃ ସ୍ଥାପ୍ୟା ଭୁକ୍ତାସବସ୍ତତଃ ।୧୪୧।**

**ଅଧୋଽଧୋ ଲଗ୍ନମାନାଢ଼୍ୟାଃ ସାୟନାର୍କସ୍ୟ ଭୋଗ୍ୟକୈଃ**
**ଲଗ୍ନାସୁଭିର୍ଯୁତାସ୍ତେ ସ୍ୟୁରିଷ୍ଟକାଳାସବସ୍ତନୋଃ ।୧୪୨।**

ଅୟନାଂଶ ସଂସ୍କୃତ ଲଗ୍ନର ଭୁକ୍ତାଦିକୁ ସେହି ରାଶିର ଉଦୟମାନରେ ଗୁଣି ୩୦ରେ ହରି ନେଲେ ଭୁକ୍ତ ଅସୁ ହେବ । ସେଥିରେ ଭୁକ୍ତ (ଲଗ୍ନର ପୂର୍ବ ପୂର୍ବ) ରାଶିର ମାନ ଯୋଗ କରି ନେବ । ଏହିପରି ସାୟନ ରବିର ରାଶି ଆଦି ପର୍ଯ୍ୟନ୍ତ ଯାଅ । ପୁଣି ସାୟନ ରବିର ଭୋଗ୍ୟ ଅସୁ ଆଣି ଏଥିରେ ମିଶାଇବ । ଏହି ମୋଟ ସମୟ ହେବ ଲଗ୍ନର ଇଷ୍ଟକାଳ । ଅର୍ଥାତ୍ ସେତିକ ସମୟରେ ତେତିକ ଲଗ୍ନ ହେବାର କଥା ।

**ମଧ୍ୟଲଗ୍ନୋଽପି ସଂସାଧ୍ୟୋ ନିରକ୍ଷୋଦୟଜାସୁଭିଃ**
**ସ୍ୱଦନାର୍ଦ୍ଧାନ୍ତପ୍ରାଣାଃ ପ୍ରାଚ୍ୟା ଚ୍ଛେଚଣ୍ଡଦୀଧିତେଃ ।୧୪୩।**

**ଚଳାଂଶୈଃ ସଂସ୍କୃତସ୍ୟୈବ ଭୁକ୍ତରାଶ୍ୟଂଶ-ଜାସବଃ**
**ବ୍ୟକ୍ଷଦେଶଭବା ଯେ ସ୍ୟୁର୍ନତାସୁଭ୍ୟୋ ବିବର୍ଜ୍ଜିତାଃ ।୧୪୪।**

**ତତୋ ଯେ ରାଶୟୋଽଧୋଽଧସ୍ତତ୍ ପ୍ରାଣାଃ ପ୍ରତଲୋମତଃ**
**ଶୋଧ୍ୟାସ୍ତ୍ୱଶୁଦ୍ଧା ଅସବସ୍ତ୍ରିଂଶଦ୍ଘ୍ନାଃ ପୂର୍ବଲଗ୍ନକୈଃ ।୧୪୫।**

**ହ୍ରାଣୈର୍ହୃତାଃ ଫଳାଂଶାଦ୍ୟଂ ଶୋଧିତଂ ତ୍ରିଂଶଦଂଶତଃ**
**ଯସ୍ମାଦ୍ ଗୃହାଦିକଂ ତଚ୍ଚ ବ୍ୟୁତ୍କ୍ରମାଚ୍ଚଳଭାଗକୈଃ ।୧୪୬।**

**ସଂସ୍କୃତଂ ମଧ୍ୟଲଗ୍ନଃ ସ୍ୟାନ୍ମଧ୍ୟଂ ଖାର୍କ ଇତ୍ୟପି**
**ଯଦ୍ଦ ପଶ୍ଚାନ୍ନତଃ କାଳସ୍ତଦା ସାଧ୍ୟନଭସ୍ୱତଃ ।୧୪୭।**

ଭୋଗ୍ୟଭୁଂଶନରକ୍ଷାସୂନୂର୍ଦ୍ଧ୍ୱମଧ୍ୟଭଜାନସୂନ୍
ପ୍ରୋଜ୍‌ଝ୍ୟାଶୁଦ୍ଧନତପ୍ରାଣାନ୍‌ହୃତ୍ୱା ଗଗନବହ୍ନିଭିଃ ।୧୪୮।

ହୃତ୍ୱା ତଲ୍ଲଗ୍ନଜପ୍ରାଣୈର୍ଲବ୍ଧାଂଶାଦ୍ୟଂ ଭପୂର୍ବକମ୍
ବିଲୋମ ସଂସ୍କୃତଂ ଚେଦ୍ୟାଚଳାଂଶୈର୍ମଧ୍ୟଭଂ ହି ତତ୍ ।୧୪୯।

ପ୍ରାକ୍ ପଶ୍ଚାଦ୍ ସାୟନାର୍କୋତ୍‌ଥ ଭୁକ୍ତଭୋଗ୍ୟାସୁତୋ ଯଦ
ଅଲ୍ପାନ ତାସବସ୍ତତ୍ରେ ତ୍ରିଂଶଦ୍‌ଘ୍ନାସ୍ତଭଜାସୁଭିଃ ।୧୫୦।

ଉଦ୍ଧୃତା ଲବ୍ଧଭାଗାଦ୍ୟୈଃ ପ୍ରାକ୍‌ପଶ୍ଚାନ୍ନତୟୋ ରବିଃ
ହୀନଯୁଙ୍‌ମଧ୍ୟଲଗ୍ନଃ ସ୍ୟାଦ୍ଦିନାର୍ଦ୍ଧେ ସ୍ଫୁଟ ଏବ ସଃ ।୧୫୧।

ଦଶମ **ଲଗ୍ନ** ଆଣିବା ପ୍ରଣାଳୀ :—

ବିଷୁବ ସ୍ଥାନୀୟ ରାଶିମାନଙ୍କର ଉଦୟାସୁଦ୍ୱାରା ମଧ୍ୟଲଗ୍ନ ମଧ୍ୟ ସାଧନ କରିବାକୁ ହେବ । ରବି ଦିନାର୍ଦ୍ଧରୁ ପୂର୍ବରେ ଥିଲେ ଯେତେ ପୂର୍ବନତକାଳ (ଅସୁ ହେବ) ହେବ । ସେଥିରୁ ସାୟନ ରବିର ବିଷୁବ ସ୍ଥାନୀୟ ରବିସ୍ଥିତ ରାଶିର ଭୁକ୍ତ ଅସୁ ବିୟୋଗ କର । ଅବଶେଷରୁ ତାହାର ପୂର୍ବ ପୂର୍ବ ରାଶିମାନଙ୍କର ଉଦୟ ଅସୁ ଉତକ୍ରମରୀତିରେ ବାଦ୍ ଦିଅ । ଶେଷରୁ ଯେଉଁ ଅସୁ ବଳିଯିବ ତାକୁ ୩୦ରେ ପୁଣି ଅଶୁଦ୍ଧ ରାଶିର ଉଦୟ ଅସୁରେ ହରିଲେ ଅଂଶାଦିଫଳ ହେବ । ତାକୁ ୩୦°ରୁ ବିୟୋଗ କଲେ ଯାହା ହେବ ସେଥିରେ ବିପରୀତ ଭାବରେ ଅୟନ-ସଂସ୍କାର କଲେ ମଧ୍ୟ ଲଗ୍ନ ବା ଦଶମ ଲଗ୍ନ ହେବ । ତାହାକୁ ମଧ୍ୟ ଲଗ୍ନ ବା ମଧ୍ୟାର୍କ ମଧ୍ୟ କହିଥାନ୍ତି ।

ନତକାଳ ପଶ୍ଚିମ ହୋଇଥିଲେ ସେହି ନତକାଳରୁ ସାୟନ ରବିର ଭୋଗ୍ୟକାଳ ତଥା ତାହାର ପର ପର ପରରାଶିର ଉଦୟମାନ ବାଦ୍ ଦେବାକୁ ହେବ । ଅବଶେଷକୁ ଅଶୁଦ୍ଧ ରାଶିର ଉଦୟାସୁରେ ହରି ୩୦ରେ ଗୁଣିଲେ ଯାହା ଫଳ ହେବ, ସେଥିରେ ମେଷାଦି ଯୋଗକଲେ ରାଶ୍ୟାଦି ମଧ୍ୟ ଲଗ୍ନ ହେବ । ମାତ୍ର ଏଠାରେ ମଧ୍ୟ ଅୟନାଂଶ ବାଦ୍ ଦେବାକୁ ହେବ ।

ଯେଉଁ ପୂର୍ବ ଓ ପଶ୍ଚିମ ନତ ଅସୁ କୁହାଗଲା । ତାହା ଯଦି ଯଥାକ୍ରମେ ସାୟନ-ରବିର ଭୁକ୍ତ ଓ ଭୋଗ୍ୟ ଅସୁରୁ କମ୍ ହୁଏ । ତାହାହେଲେ ତାହାକୁ ୩୦ରେ ଗୁଣି ସେହି ରାଶିର ଉଦୟାସୁରେ ଭାଗ ଦେଲେ ଯେଉଁ ଅଂଶାଦି ଫଳ ହେବ, ତାହାକୁ ପୂର୍ବନତରେ ରବିରୁ ବାଦ୍ ଦେବ ଏବଂ ପଶ୍ଚିମ ନତରେ ରବିରେ ଯୁକ୍ତ କଲେ, ମଧ୍ୟ ଲଗ୍ନ ହେବ । ଦିନାର୍ଦ୍ଧ ବେଳେ **ସ୍ଫୁଟ ସାୟନ ରବି ହିଁ ମଧ୍ୟ ଲଗ୍ନ ହୋଇଥାଏ ।**

**ଇଷ୍ଟୈଷ୍ୟୋଦୟକାନ୍ତରସ୍ତୁ ଗୁଣିତାଃ ପ୍ରାଚ୍ୟାଶ୍ଚଳାଂଶାଦୟଃ**
**ଖାଗ୍ନ୍ୟାପ୍ତାଃ ଫଳହୀନ ଯୁକ୍ ସ୍ୱଉଦୟଃସ୍ୟାଦେଷ୍ୟଉନେଽଧିକେ**
**ଯାତେଷ୍ଟାନ୍ତର ନିଘ୍ନଖାଗ୍ନି ବିହୃତ-ପ୍ରତ୍ୟକ୍ଚଳାଂଶୈର୍ଗତେ**
**ଲଗ୍ନେଽଲ୍ପେଽଧିକ ଊନଯୁକ୍ ସ୍ୱକ ଇତ ସ୍ୟାଲ୍ଲଗ୍ନମାନଂ ସ୍ଫୁଟମ୍ ।୧୫୨।**

ରାଶିର ନିରୟଣ ଉଦୟାସୁ ଆଣିବାର ପ୍ରଣାଳୀ ଏଠାରେ ଦିଆଯାଉଅଛି । ଅୟନାଂଶ ପୂର୍ବକୁ ଗତ କରୁଥିଲେ ଉପସ୍ଥିତ ରାଶି ଓ ତାପର ରାଶିର ଉଦୟାସୁର ଅନ୍ତର ଫଳ ଆଣି ତାକୁ ଅୟନାଂଶରେ ଗୁଣି ୩୦ରେ ଭାଗ ଦିଅ । ଫଳକୁ ଉପସ୍ଥିତ ରାଶିର ଉଦୟାସୁ ତା ପର ରାଶିର ଉଦୟାସୁଠାରୁ କମ୍ ବା ବେଶୀ ହେଲେ ଯଥାକ୍ରମେ ଉପସ୍ଥିତ ରାଶିର ଉଦୟାସୁରେ ଯୋଗ ବା ବିୟୋଗ କରିବାକୁ ହେବ ।

ଅୟନାଂଶର ପଶ୍ଚାଦ୍‌ଗତ ହେଲେ ଉପସ୍ଥିତ ରାଶି ଓ ତା ପୂର୍ବ ରାଶିର ଉଦୟାସୁର ଅନ୍ତରଫଳ ନିଅ । ଏହାକୁ ଅୟନାଂଶରେ ଗୁଣି ୩୦ରେ ଭାଗ ଦିଅ । ଫଳକୁ ଉପସ୍ଥିତ ରାଶିର ଉଦୟାସୁଠାରୁ କମ୍ ବା ବେଶି ହେଲେ ଉପସ୍ଥିତ ରାଶିର ଉଦୟାସୁରେ ଯୋଗ ବା ବିୟୋଗ କରିବ ।

**ପଶ୍ଚାତ୍‌ପ୍ରାଗୟନାଂଶକେଷୁ ତନବୋ ବ୍ୟକ୍ଷେ ଚରାଦ୍ୟାତ୍ମକାଃ**
**ସାକ୍ଷେ ମେଷ ଧଟୌ ଯୁବତ୍ୟଜନିକେଷୌ ଦେଶେ ସ୍ଥିରାଃ ଧ୍ରୁବଃ କ୍ରମାତ୍**
**ଇତ୍ଥଂ ସଂସ୍କୃତଲଗ୍ନମାନବଶତଃ ସ୍ୱାଭୀଷ୍ଟ-ଦେଷ୍ଟେସ୍ଫୁଟୀ**
**କାର୍ଯ୍ୟାଶ୍ଚେତ୍ତନ-ବିସ୍ତଦାୟନ-ଲବୈର୍ନାଦ୍ୟନ୍ତୟୋଃ ସଂସ୍କୃତଃ ।୧୫୩।**

ଅୟନର ପଶ୍ଚାଦ୍‌ଗତ ବେଳେ ବିଷୁବ ଦେଶରେ ମେଷ, କର୍କଟ, ତୁଳା ଓ ମକର ରାଶିର ସାୟନ ଓ ନିରୟଣ ଉଦୟ ପରିମାଣ ସମାନ । ବିଷୁବେତର ଦେଶରେ ମେଷ ଓ ତୁଳାର ସାୟନ ଓ ନିରୟଣ ଉଦୟମାନ ମଧ୍ୟ ସମାନ ।

ଅୟନର ପୂର୍ବ ଗତବେଳେ ବିଷୁବ ଦେଶରେ ମିଥୁନ, କନ୍ୟା, ଧନୁ ଓ ମୀନ ତଥା ବିଷୁବେତର ଦେଶରେ କନ୍ୟା ଓ ମୀନର ସାୟନ ତଥା ନିରୟଣ ଉଦୟମାନ ସମାନ । ନିରୟଣ ଉଦୟାସୁ ଆସିଯିବା ପରେ ଲଗ୍ନ ଆଣିବା ନିମନ୍ତେ ଆଉ ଅୟନାଂଶ ସଂସ୍କାରର ଆବଶ୍ୟକତା ନାହିଁ ।

**ସ୍ୱମାଃଷଡ୍‌ବିଶିଖୈଃ କୃତାଃ କୃତଭୁଜୈ ରର୍ଥାଃ ସ୍ୱବେଦୈଃସାୟକା**
**ଭୂଭୃଦ୍ ବହ୍ନିଭିରଶ୍ୱଗାଃ କୃତଗୁଣୈ ର୍ବାଣାଶ୍ଚ ପକ୍ଷାଦ୍ରିଭିଃ**
**ଓଜେ ଭାର୍ଦ୍ଧଯୁଗେ କ୍ରମୋତ୍କ୍ରମବଶାତ୍ ସ୍ୟୁର୍ଲଗ୍ନଦଣ୍ଡାଃ ପଲୈଃ**
**ସମ୍ପ୍ରତ୍ୟକ୍ଷିଭୁଜାୟନାଂଶ କଳନାତ୍ କଥ୍ୟନ୍ତ ଏତେ ସ୍ଫୁଟାଃ ।୧୫୪।**

ଉତ୍କଳର କେନ୍ଦ୍ର ପୁରୁଷୋତ୍ତମ କ୍ଷେତ୍ରରେ ସାୟନ ଓ ନିରୟଣ ଲଗ୍ନମାନ ଏଠାରେ ଦିଆଯାଉଛି :— ଅୟନାଂଶ ୨୨°

| | ସାୟନ ଦ.ଲ | ନିରୟଣ ଦ.ଲ |
|---|---|---|
| ମେଷ | ୩. ୫୭ | ୪. ୧୭ |
| ବୃଷ | ୪. ୨୪ | ୪. ୫୭ |
| ମିଥୁନ | ୫. ୭ | ୫. ୨୯ |
| କର୍କଟ | ୫. ୩୭ | ୫. ୩୫ |
| ସିଂହ | ୫. ୩୪ | ୫. ୨୫ |
| କନ୍ୟା | ୫. ୨୨ | ୫. ୨୨ |
| ତୁଳା | | ୫. ୩୧ |
| ବୃଶ୍ଚିକ | | ୫. ୩୭ |
| ଧନୁ | | ୫. ୧୫ |
| ମକର | | ୪. ୩୫ |
| କୁମ୍ଭ | | ୪. ୩ |
| ମୀନ | | ୩. ୫୭ |

ସର୍ବଦ୍ୱାୟନସିଦ୍ଧମଧିତନବୋ ବେଦାଃକୃତାର୍ଥୈଃ ଶରା
ଭୂପୈସ୍ତେ ଦ୍ୱିଭୁଜୈଃ ଶରାଶ୍ଚ ବଶିଖୈର୍ବେଦାଃ କୃତାମ୍ଭୋଧିଭିଃ ।
ବେଦା ନନ୍ଦଗୁଣୈସ୍ତୁଳାଦ୍ୟଷୁ ପୁନର୍ମେଷାଦବଦ୍ ସାଂପ୍ରତଂ
ପ୍ରାକ୍ପଶ୍ଚାଦୟନାଂଶ ଭୂଶରତନୁତାମାଲୋଚ୍ୟ ସାଧ୍ୟା ବୁଧୈଃ ।୧୫୭।

ବିଷୁବ ଦେଶରେ ରାଶିଗୁଡ଼ିକର ନିରୟଣ ଉଦୟାସୁ ବର୍ତ୍ତମାନ ଲୁହାଯାଉଅଛି:—

| | ଦ.ଲ |
|---|---|
| ମେଷ | ୪. ୫୪ |
| ବୃଷ | ୫. ୧୭ |
| ମିଥୁନ | ୫. ୨୨ |
| କର୍କଟ | ୫. ୫ |
| ସିଂହ | ୪. ୪୪ |
| କନ୍ୟା | ୪. ୩୯ |

୧. ବର୍ତ୍ତମାନର ଅୟନାଂଶ (୨୨°) ପରିମାଣ ଅନୁସାରେ ଏ ସବୁ କୁହାଯାଇଛି । ତାର ଗତି ଓ ପରିମାଣ ବଦଳିଲେ ଏ ସବୁ ମଧ୍ୟ ବଦଳିବ ।

**ଲେଖ୍ୟା ଗର୍ଗବଶିଷ୍ଠମୁଖ୍ୟୈରଗଦିତା ରାଶ୍ୟାଦିତଃ ସାଧିତା**
**ଅଷ୍ଟାବିଂଶତିଭଧ୍ରୁ-ବାସ୍ତଦୁପରି ସ୍ଥୂଳାଶ୍ଚ ଲିପ୍ତାତ୍ମିକାଃ**
**ସଞ୍ଚାରାୟ ନଭଃସଦାଂ ଚ ପଦକୈସ୍ତୈ କ୍ରାନ୍ତିପାତୋଦ୍ଭବା**
**ରାଶ୍ୟାଦ୍ୟାଃ ସଗତିଧ୍ରୁବୈର୍ଗୁଣନତୈସ୍ତତ୍ସଞ୍ଚୟଃ ପାତବତ୍ ।୧୪୬।**

କେଉଁ ଗ୍ରହ କେବେ କେଉଁ ନକ୍ଷତ୍ରରୁ କେଉଁ ନକ୍ଷତ୍ରକୁ ଗଲା ତାହା ଜାଣି ଫଳାଦି କହିବା ନିମନ୍ତେ ମହର୍ଷି ଗର୍ଗ ବଶିଷ୍ଠ ପ୍ରଭୃତି ଯେଉଁ ରାଶିରେ ଅଠାଇଶ ଗୋଟି ନକ୍ଷତ୍ରର ରାଶ୍ୟାଦି ଧ୍ରୁବ କହି ଅଛନ୍ତି, ତାହା ଏଠାରେ କୁହାଯାଉଛି । ରାଶ୍ୟାଦି ଧ୍ରୁବ ସୂକ୍ଷ୍ମ । ଲିପ୍ତାଦି ଧ୍ରୁବ ମଧ୍ୟ କୁହାଯାଇ ଥାଏ—ମାତ୍ର ତାହା ସ୍ଥୂଳ । ଏ ସବୁ କଥା ପରିଶିଷ୍ଟରେ ଦିଆଯାଇ ଅଛି । ପରିଶିଷ୍ଟରେ ବିଷୁବ ଓ କ୍ରାନ୍ତି ବୃତ୍ତ ପାତର ଗତି କଥା ମଧ୍ୟ ୭୩ ଦିନକୁ ଧରି କୁହାଯାଇଛି । କେତେକ ନିର୍ଦ୍ଦିଷ୍ଟ ଦିନରେ ମଧ୍ୟ ଅୟନର ଗତି ପରିମାଣ ସ୍ୱତନ୍ତ୍ର ଭାବରେ ଦିଆଯାଇଛି । ଏହି ପରିଶିଷ୍ଟ ତାଲିକାରୁ ଅଭୀଷ୍ଟ ଦିନରେ ଅୟନ ଗତି କେତେ ହେଲା ଭଲ ଭାବରେ ଜାଣି ହେବ । ଅଶ୍ୱିନୀ ଆଦି ୨୭ ନକ୍ଷତ୍ର ଓ ଅଭିଜିତକୁ ମିଶାଇ ମୋଟ ୨୮ ନକ୍ଷତ୍ର ।

**ଲିପ୍ତାଦ୍ୟାଃ କ୍ରାନ୍ତିପାତଦ୍ୱିଗତିରହ ବୟଦ୍ ଖାଂକୁରାମା ଦ୍ୱିରାମାଃ**
**କ୍ୱର୍ଥା ବାଣାଗ୍ନୟୋଽଙ୍ଗାନ୍ୟନଳଶରମିତା ନାଗବାଣାସ୍ତ୍ରିପକ୍ଷାଃ**
**କଲ୍ୟାଦୌ ତଦ୍ଧ୍ରୁବୋ ଦୃକ୍‌ଗଗନନଗକଳାଃ କାରଣାବ୍ଦା ଗୃହାଦ୍ୟା**
**ରାମାଭୂପାସ୍ତ୍ରିରାମାଃ ଶିଖରଜଲଧୟୋ ବେଦପୂର୍ଣ୍ଣାର୍ଣ୍ଣବାଶ୍ଚ ।୧୪୮।**

ଅୟନାଂଶର (ବିଷୁବ କ୍ରାନ୍ତି ସମ୍ପାତ) ଦୈନିକ ଗତି—ଲି. ୦ ବି. ୩୧ । ୩୨ । ୫୧ । ୩୫ । ୬ । ୫୩ । ୫୮ । ୨୩ କଳିଯୁଗର ପ୍ରାରମ୍ଭ ଦିବସରେ ସ୍ଥିର ମେଷ ବିନ୍ଦୁରୁ କ୍ରାନ୍ତି ବିଷୁବ ସମ୍ପାତ ୭°୨ ଲିପ୍ତା (କଳା) ଖସି ଯାଇଥିଲା । କରଣାବ୍ଦ (ଅର୍ଥାତ୍ ଯେଉଁ ଦିନଠାରୁ ସିଦ୍ଧାନ୍ତ ଦର୍ପଣ ଅନୁସାରେ ଗ୍ରହ ଗଣିତ କରାଗଲା ) ଆରମ୍ଭରେ ଏହି କ୍ରାନ୍ତି ପାତର ପରିମାଣ ଥିଲା ରାଶି ୩ । ୧୬ । ୩୩ । ୪୬ । ୨୬ । ୪୦ ।

**ସାଧ୍ୟା ବା ମଧ୍ୟମାର୍କାନୁଗତକଳସମାଗୋଳୁକ୍ଷଷ୍ଟ୍ୟଂଶଯୁକ୍ତୈ-**
**ର୍ଗୋଭୂପକ୍ଷୈର୍ବିଯୁକ୍ତାଦ୍ୱିରଥ ଶତହୃତା ଭୂପତତ୍ତ୍ୱାପ୍ତହୀନାଃ**
**ଷଷ୍ଟ୍ୟାପ୍ତାଂଶାହୃତାସ୍ତେ ପୁନରୁଦଧିଶରୈର୍ଦ୍ୱାରତଃ ଶେଷହାନେ**
**ସ୍ତଦ୍ୟୁଗ୍ମାଲ୍ପାଶ୍ଚ ଲାଂଶା ବିଷମସମଫଳାନୁକ୍ରମାଦ୍ ସ୍ୱର୍ଣ୍ଣସଂଜ୍ଞଃ ।୧୪୯।**

ବର୍ଷାରମ୍ଭରେ କଳିଗତ ବର୍ଷରୁ କିପରି ଅୟନାଂଶ ଆଣି ହେବ ତାର ଆଉ ଗୋଟିଏ ପ୍ରଣାଳୀ ଏଠାରେ ଦିଆଯାଉଅଛି । କଳିଠାରୁ ନିଜ ବର୍ଷ ପର୍ଯ୍ୟନ୍ତ ଗତବର୍ଷ ସଂଖ୍ୟାରୁ ୨୧୯।୧୯ ବାଦ ଦିଅ । ଫଳକୁ ଦୁଇ ଯାଗାରେ ରଖ । ଗୋଟିଏ ଯାଗାରେ ଏହି ଫଳକୁ ୧୦୦ରେ ଗୁଣି ୨୫୧୬ରେ ହରି ଗୁଣଫଳ ଯାହା ହେବ ତାକୁ ପ୍ରଥମ ଯାଗାରେ ଥିବା ପ୍ରଥମ ଫଳରୁ ବାଦ ଦିଅ । ପୁଣି ଯେଉଁ ଶେଷ ବା ଶୁଦ୍ଧ ଫଳ ହେଲା ତାକୁ ୬୦ରେ ହରି ଦେଲେ ଅଂଶାଦି ହେବ । ଏହି ଅଂଶାଦିକୁ ୫୪ରେ ହର । ଲବ୍ଧିକୁ ରଖ । ଶେଷ ଯାହା ହେବ ତାକୁ ହରି ୫୪ରୁ ଫେଡ଼ । ଲବ୍ଧି ଶେଷ ଓ ଏହି ଶେଷ (୫୪ରୁ ବାଦରେ) ମଧ୍ୟରେ ଯେଉଁଟା କମ୍ ତାକୁ ଲବ୍ଧି ସଂଖ୍ୟା ବିଷମ ହୋଇଥିଲେ ଧନ ଓ ଲବ୍ଧି ସଂଖ୍ୟା ସମ ହୋଇଥିଲେ ଋଣ ମନେ କରିବ ଏବଂ ସେହି ଅନୁସାରେ ଲବ୍ଧିରେ ଯୋଗ ବା ବିୟୋଗ କଲେ ଶେଷ ଫଳ ସେହି ବର୍ଷାରମ୍ଭର ଅୟନାଂଶ ହେବ ।

ଏଠାରେ ୨୧୯।୧୯ କୁ ୨୧୯ $\frac{\text{୧୯}}{\text{୬୦}}$ ବୋଲି ବୁଝିବାକୁ ହେବ । ଗାଣିତିକ ସୂତ୍ର ହେଲା :—

$$\text{ଲବ୍ଧି} = \frac{(\text{କ. ଗ. ବ.} - \text{୨୧୯ । ୧୯}) - \frac{(\text{କ. ଗ. ବ.} - \text{୨୧୯।୧୯}) \times \text{୧୦୦}}{\text{୨୫୧୬}}}{\text{୬୦} \times \text{୫୪}}$$

ପୁଣି ଲବ୍ଧି—କମ ଶେଷ=ଅୟନାଂଶ ହୋଇଯିବ ।

**ଭୂୟଃ ସାୟନଭାନୁଦୋର୍ଜଲଧିଦୃକ୍‌ଖଣ୍ଡୋଦ୍ଭବାଃ କ୍ରାନ୍ତୟୋ**
**ଦ୍ୟୁଜ୍ୟାଶ୍ଚୋଳକମଧ୍ୟକାଃ ଶିତଗିରୌ ସିଦ୍ଧାନ୍ତବାର୍ଦ୍ଧାସବଃ**
**ନୈରକ୍ଷା ଉଦୟାସବଃ କ୍ରିୟମୁଖାନ୍ ସଂସାଧ୍ୟଲେଖ୍ୟାଃଶିଶୋ**
**ବୋଧାୟାପ୍ୟୁଦୟାନ୍ତରାସବ ଇମେ ସ୍ପଷ୍ଟାଃ ସ୍ୟୁରାମ୍ନାନ୍ତରୈଃ ।୧୬୦।**

ପରିଶିଷ୍ଟରେ ସାୟନଷ୍ଟୁଟ ସୂର୍ଯ୍ୟର ମେଷାଦି ତିନି ରାଶିରେ ୨୪ ଖଣ୍ଡରେ ଉତ୍ପନ୍ନ ଜ୍ୟା କ୍ରାନ୍ତିକଳା, ଅହୋରାତ୍ର ବୃତ୍ତବ୍ୟାସାର୍ଦ୍ଧ ପୁରୁଷୋତ୍ତମରେ ଚରଖଣ୍ଡ ଅସୁ ବିଷୁବ ବୃତ୍ତୀୟ ଉଦୟାସୁ ତଥା ଉଦୟାନ୍ତର ଅସୁ ଅଳ୍ପଜ୍ଞ ଲୋକମାନଙ୍କର ଦରକାର ନିମନ୍ତେ ଲେଖାଯିବ । କଥିତ ଜ୍ୟା ଖଣ୍ଡର ମଧ୍ୟବର୍ତ୍ତୀ ସ୍ଥାନରେ ଅନୁପାତ ଯୋଗେ କ୍ରାନ୍ତି ଆଦି ଆଣି ପାରିବ । ପରିଶିଷ୍ଟରେ ଏଇଥିପାଇଁ ସବୁ ଦିଆଯାଇଅଛି ।

**ପ୍ରାକ୍‌ଜନ୍ମାର୍ଜିତ ଦୈବକର୍ମବିସରଂ ସଂସାରଣାଂ ପ୍ରାଣିନାଂ**
**ଯଃ ସଂଜ୍ଞାପୟିତୁଂ ସରୋଜଜନୁଷା ସଂସୃଜ୍ୟ ଖେଟବ୍ରଜମ୍**
**ଦ୍ରାଙ୍‌ନ୍ଦପ୍ରବହାପମାଦବିବଧଭ୍ରାନ୍ତୌ ନିୟୋଜ୍ୟ ସ୍ୱୟଂ**
**ତନ୍ମୂର୍ତ୍ତ୍ୟୈ ପୁରୁଷୋତ୍ତମାଖ୍ୟମସୃଜନ୍ଧାମୈତମୀଶଂ ଭଜେ ।୧୬୧।**

ପୂର୍ବ ଜନ୍ମରେ ଆମେ ଯେଉଁ କର୍ମ କରିଛୁ ଏହି ଜନ୍ମାନ୍ତରେ ତାହାର ଫଳ କଣ ହେବ ତାହା (ଜନ୍ମ ମାତ୍ରେ) ଜଣାଇବା ନିମନ୍ତେ ଯେଉଁ ଭଗବାନ୍ ବ୍ରହ୍ମାଙ୍କୁ ସର୍ଜନା କରି ଗ୍ରହ ସୃଷ୍ଟି କରିବାକୁ ଆଦେଶ ଦେଇ ଅଛନ୍ତି ଏବଂ ଯେଉଁ ବ୍ରହ୍ମା ପୁଣି ଉଚ୍ଚ (ଶୀଘ୍ର, ମନ୍ଦ) ପ୍ରବହ, ପାତ ଆଦି ସୃଷ୍ଟି କରି ଗ୍ରହ ଗତିକୁ ନିୟନ୍ତ୍ରିତ କରୁ ଅଛନ୍ତି, ସେହି ଭଗବାନ ନୀଳାଦ୍ରି ବିହାରୀ ସେହି (ପତିତ) ପ୍ରାଣୀଗଣଙ୍କ ମୁକ୍ତି ନିମନ୍ତେ ଏହି ପବିତ୍ର ଧାମ ପୁରୁଷୋତ୍ତମ କ୍ଷେତ୍ରକୁ ସୃଷ୍ଟି କରି ଅଛନ୍ତି । ଏହି ମୋର ପ୍ରଭୁ ନୀଳାଦ୍ରି ବିହାରୀଙ୍କୁ ମୁଁ ସବୁବେଳେ ପ୍ରାର୍ଥନା କରୁଅଛି ।

ଇତ୍ୟୁତ୍କଳୋଦ୍ଭବନୃପାଳ କୁଳ ପ୍ରସୂତ
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽତିସିଦ୍ଧେ
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ଷଷ୍ଠୋଽପମାଦ୍ୟଣୁରବୀନ୍ଦୁରଗାତ୍ ପ୍ରକାଶଃ ।୧୭୬।

ଇତି ଶ୍ରୀ ଚନ୍ଦ୍ରଶେଖର ସିଂହକୃତୌ ସିଦ୍ଧାନ୍ତଦର୍ପଣେ
ସ୍ଫୁଟାଧିକାରେ ସୂକ୍ଷ୍ମପଞ୍ଜିକା କ୍ରାନ୍ତ୍ୟାଦି ବର୍ଣ୍ଣନୋ
ନାମ ଷଷ୍ଠଃ ପ୍ରକାଶଃ ।

ଏଠାରେ ଷଷ୍ଠ ପ୍ରକାଶ ଶେଷ ହେଲା । ଏଥିରେ କ୍ରାନ୍ତି ଓ ସୂକ୍ଷ୍ମ ରବି ତଥା ଚନ୍ଦ୍ରର କଥା ରହିଛି ।

## ସପ୍ତମଃ ପ୍ରକାଶଃ

### ତ୍ରିପ୍ରଶ୍ନାଧିକାରଃ

### ଶଙ୍କୁଚ୍ଛାୟାଦି ବର୍ଣ୍ଣନମ୍

ଦଗ୍‌ଦେଶକାଳକଳନାର୍ଥମଥାଭିଧାସ୍ୟେ
ତ୍ରିପ୍ରଶ୍ନନାମକମକର୍କଶବାକ୍ୟଚକ୍ରମ୍ ।
ସର୍ବୋପକାରକତୟା ପ୍ରଥିତଂ ପ୍ରକାଶଂ
ଗ୍ରାହ୍ୟଂ ମୁଦୋପକରଣାଖ୍ୟମତ ପ୍ରବୀଣୈଃ ।୧।

ଅତ ପ୍ରବୀଣ ଲୋକେ ସବୁକଥାର ଉପକାରକ ହିସାବରେ ଆନନ୍ଦରେ ଗ୍ରହଣ କରିଥିବା ଏହି ତ୍ରିପ୍ରଶ୍ନ ନାମକ ପ୍ରକାଶକୁ ବର୍ତ୍ତମାନ କହିବ । ଏଥିରେ ପ୍ରଯୁକ୍ତ ହୋଇଥିବା ବାକ୍ୟଗୁଡ଼ିକ ଆଦୌ କର୍କଶ ନୁହେଁ—କୋମଳ । ଏହାଦ୍ୱାରା ଲୋକେ ଦିଗ, ସ୍ଥାନ ଓ ସମୟ-ଜ୍ଞାନ କରିପାରିବେ ।

ଦକ୍‌ସାଧନାର୍ଥମବନୌ ସୁଷମୀକୃତାୟାଂ
ତୋୟୈର୍ବିଲିଖ୍ୟ ଚତୁରକ୍ଷି-ମିତାଙ୍ଗୁଳେନ ।
ସୂତ୍ରେଣ ମଣ୍ଡଳମମୁଷ୍ୟ ସମସ୍ୟ ମଧ୍ୟେ
ସୂର୍ଯ୍ୟାଙ୍ଗୁଳଂ ସୁସରଳଂ ନିଦଧୀତ ଶଙ୍କୁମ୍ ।୨।

ତଦ୍ଭାଗ୍ରମା-ବିଶତ ଯତ୍ର ଯତୋ ନିରେତ
ପ୍ରାକ୍‌ପଶ୍ଚିମସ୍ଥିତ ଇତେନ କିଲ ତତ୍ର ବିନ୍ଦୂ ।
ଦତ୍ତ୍ୱା ତତଶ୍ଚ ଶରବାହୁ-ସମାଙ୍ଗୁଳେନ
ସୂତ୍ରେଣ ବିମ୍ବଯୁଗଳଂ ବିଦଧୀତ ଧୀମାନ୍ ।୩।

ଯା ତପୂର୍ବସ୍ମରସମାଙ୍କମଣୋ'ଦ୍‌ଗ୍ରରେଖା
ମଧ୍ୟାଙ୍କୁତର୍ଭବତ ତନ୍ମୁଖପୁଚ୍ଛମାର୍ଗଃ ।
ଚିହ୍ନଂ ଭବେଦ୍ ଯମ-କୁବେର-ଦଶୋଃରହୌକ୍ଷି
ପ୍ରାଗ୍‌ବନ୍ଧୁ-ସଂସ୍କୃତଚରପଙ୍କମକାଲ୍ପ-ଭେଦାତ୍ ।୪।

ଯ୍ୟାମୋତ୍ତରାଙ୍କପର ଯଦ୍‌ବଳୟଦ୍ୱୟୋଃସ୍ଥ
ମୀନେନ ବାସବଜଳାଧିପୟୋର୍ଦିଶୌ ସ୍ତଃ ।
ଦଣ୍ଡାର୍ଧସୂତ୍ରକୃତବୃତ୍ତଚତୁଷ୍ଟୟୋଦ୍ୟ—
ନ୍ମୀନୈର୍ଭବନ୍ତି ବିଦିଶୋଽନ୍ତରକାଷ୍ଠତସ୍ତୁଃ ।୫।

ଦିଗ୍‌ସ୍ଥିର କରିବା —

ଦିଗ ନିର୍ଣ୍ଣୟ କରିବାକୁ ହେଲେ ପ୍ରଥମେ ଗୋଟିଏ ସ୍ଥାନକୁ ଲିପାପୋଛକରି ଜଳ-ସମାନ ସମତଳ କର, ଯେପରି ତାହା ଦିଗ୍‌ବଳୟର ସମାନ୍ତର ହେବ । ସେଥିରେ ୨୪ ଅଙ୍ଗୁଳ ବ୍ୟାସାର୍ଦ୍ଧ ନେଇ ଗୋଟିଏ ବୃତ୍ତ ଅଙ୍କନ କର । ତାର କେନ୍ଦ୍ରରେ ୧୨ ଅଙ୍ଗୁଳର ଗୋଟିଏ ଶଙ୍କୁ ପୋତ । ଶଙ୍କୁର ଛାୟା ଉକ୍ତ ବୃତ୍ତର ପରିଧିକୁ ଦୁଇଥର ସ୍ପର୍ଶ କଲାବେଳେ ସେହି ପରିଧି ଉପରେ ଚିହ୍ନ ଦିଅ । ଉଭୟ ଚିହ୍ନକୁ ଯୋଗକରି ଗୋଟିଏ ରେଖା ଟାଣ । ଉକ୍ତ ଦୁଇଟି ଚିହ୍ନକୁ ଦୁଇଟି କେନ୍ଦ୍ରବିନ୍ଦୁ ମନେକରି ୨୫ ଅଙ୍ଗୁଳ ବ୍ୟାସାର୍ଦ୍ଧ ନେଇ ଦୁଇଟି ବୃତ୍ତ ଟାଣ । ଏହି ଦୁଇଟି ବୃତ୍ତ ପରସ୍ପରକୁ ଦୁଇଟି ବିନ୍ଦୁରେ ଛେଦ କରିବେ ଏବଂ ସେହି ଅଂଶ ଗୋଟିଏ ମାଛପରି ଦେଖାଯିବ । ଉଭୟ ଛେଦବିନ୍ଦୁ ଗତରେଖା ହିଁ ଦକ୍ଷିଣ ଉତ୍ତର ରେଖା । ଏହି ରେଖାକୁ ବଢ଼ାଇଦେଲେ ପ୍ରଥମ ବୃତ୍ତ କେନ୍ଦ୍ର ଦେଇଯିବ । ଏହି ରେଖା, ଛାୟା ଅଗ୍ରଗତ ରେଖାଉପରେ ଲମ୍ବ ମଧ୍ୟ ହେବ । ସମୟର ବ୍ୟବଧାନ (୧ମ ଛାୟା ଅଗ୍ର-ବିନ୍ଦୁଠାରୁ ୨ୟ ଛାୟା ଅଗ୍ରଗତ ବିନ୍ଦୁ ମଧ୍ୟରେ) ଅତି ଅଳ୍ପହେତୁ ଯୁକ୍ତିତଃ କ୍ରାନ୍ତିଗତର ବ୍ୟବଧାନ ଆସୁଥିଲେ ମଧ୍ୟ ଛାଡ଼ିଦିଆଯାଇଅଛି । ଦକ୍ଷିଣୋତ୍ତର ରେଖାକୁ ଉଭୟ ଦିଗରେ ବଢ଼ାଇ ଦେଲେ ବୃତ୍ତପରିଧିରେ ଦକ୍ଷିଣୋତ୍ତର ବିନ୍ଦୁ ହେବ ଏବଂ କେନ୍ଦ୍ର ବିନ୍ଦୁରୁ ଏହା-ଉପରେ ଲମ୍ବକଲେ ତାହା ଉକ୍ତସ୍ଥାନର ପୂର୍ବ ଓ ପଶ୍ଚିମରେଖା ହେବ । ପୂର୍ବ, ପଶ୍ଚିମ, ଦକ୍ଷିଣ, ଉତ୍ତରଦିଗ ଜଣାଯିବାପରେ କୋଣ ଜାଣିବାପାଇଁ ଲଗ୍ ଲଗ୍ ଦୁଇଟି ଦିଗମଧ୍ୟସ୍ଥ ଚାପକୁ ଅଧାକରି ବିନ୍ଦୁ ଦେବାକୁ ହେବ ।

ଶଙ୍କୁଚ୍ଛାୟାକୃତଯୁତପଦଂ କର୍ଣ୍ଣ ଇତ୍ୟୁଚ୍ୟତେ ତଦ୍—
ବର୍ଗାତ୍ ଶଙ୍କୋଃ କୃତ-ବରହତାଦ୍ଗ୍ରାପ୍ୟଦଂ ସ୍ୱପ୍ରଭାୟାଃ ।
ବର୍ଗେଣୋନାପ୍ୟଦମପି ନରଃ ଶଙ୍କୁଭେ କୋଟିବାହୂ
ତଦ୍‌ଯୁଗ୍‌ଘାତାନ୍ତରମବହିତଂ କର୍ଣ୍ଣସଂଜ୍ଞଂ ସୁଧୀଭିଃ ।୬।

ଶଙ୍କୁବର୍ଗ ଓ ଛାୟାବର୍ଗର ଯୋଗଫଳର ବର୍ଗମୂଳ ବାହାର କଲେ କର୍ଣ୍ଣ ହୁଏ। କର୍ଣ୍ଣବର୍ଗରୁ ଶଙ୍କୁବର୍ଗକୁ ବାଦଦେଇ ଅବଶେଷର ମୂଳନେଲେ ତାହା କୋଟି ହୁଏ। ପୁଣି କର୍ଣ୍ଣବର୍ଗରୁ କୋଟି ବର୍ଗକୁ ବାଦଦେଇ ତାହାର ମୂଳ ନେଲେ ଭୁଜ ହୁଏ। ଉପସ୍ଥିତ କ୍ଷେତ୍ରରେ ଶଙ୍କୁ କୋଟି, ଛାୟା ଭୁଜବୋଲି ବୁଝିବାକୁ ହେବ। ଭୁଜ ଓ କୋଟିର ଅଗ୍ର-ଯୋଜକ ରେଖାହିଁ କର୍ଣ୍ଣ।

ତ୍ୟେ।ଜ୍ୟଂ ବର୍ଗଂ ଚରମବିଷମାତ୍ ପ୍ରାକ୍ତ୍ୟ ମୂଳଂ ଦ୍ୱିନଘ୍ନଂ
କୃତ୍ୱା ହୃତ୍ୱା ସମକମମୁନା ତତ୍ପୃଥଗ୍ଲବ୍ଧବର୍ଗମ୍।
ତ୍ୟକ୍ତ୍ୱା ପଙ୍କ୍ତୌ ଦ୍ୱିଗୁଣିତମିଦଂ ନ୍ୟସ୍ୟ ଲବ୍ଧଂ ଚଲନ୍ତ୍ୟା
ପଙ୍କ୍ତ୍ୟା ପ୍ରାଗ୍ୱଦ୍ଭବତି ହରଣେ ସ୍ୟାତ୍ପଦଂ ଚାର୍ଦ୍ଧମସ୍ୟାଃ ।୭।

ବର୍ଗ ରାଶିକୁ ଡାହାଣରୁ ବାମ ଆଡ଼କୁ ବିଷମ, ସମ'ରେ ଚିହ୍ନ ଦେଇ ଦେବ। ପୁଣି ଶେଷ ବିଷମ ରାଶିରୁ ଯାହାର ବର୍ଗ ଅନ୍ତର ହୋଇପାରେ ଅନ୍ତର କରି ଦେବ। ଏହି ମୂଳକୁ ଗୋଟିଏ ଅଲଗା ଧାଡ଼ିରେ ରଖିବ। ପୁଣି ଏହାକୁ ଦ୍ୱି' ଗୁଣ କରି ବର୍ଗର ଅବଶିଷ୍ଟ ସମ-ରାଶିକୁ ହରିବ। ତାହାର ଶେଷକୁ ପୁଣି ଉପରୁ ବିଷମ ରାଶି ଓହ୍ଲାଇବ। ଏଥିରୁ ପୁଣି ହରିଲା ବେଳେ ପଡ଼ିଥିବା ଲବ୍ଧିର ବର୍ଗ ବାଦ୍ ଦେବ। ପୁଣି ଲବ୍ଧିକୁ ଦୁଇ ଗୁଣ କରି ଉକ୍ତ ଧାଡ଼ିରେ ମିଶାଇବ। ଏହିପରି ଭାବରେ କରୁ କରୁ ଶେଷରେ ଯେଉଁ ଧାଡ଼ି ହେବ ତାହାର ଅଧା ଉକ୍ତ ବର୍ଗ ରାଶିର ମୂଳ ହେବ।

ମୂଳାଦଲ୍ପଃ ପ୍ରଭବତି ଯଦାମୂଳେ ଶେଷବ୍ୟିନଘ୍ନୋ
ଲପ୍ତୀଭୂତେ ତାରଣେ—ହୃତଗ୍ରରୂପେଣ ମୂଳେନ ଭକ୍ତଃ।
ଲବ୍ଧେ। ଲପ୍ତା ଯଦପଦସମଶ୍ଚାଧିକୋଽସୌଦ୍ୱିନଘ୍ନଃ
ସୈକୋଽବ୍ଧି-ଘ୍ନତ୍ରଯୁତପଦହୃତ୍ ସ୍ୟାତ୍କଳାମ୍ନା ପୁରୋବତ୍ ।୮।

ଆଦ୍ୟୁର୍ଦ୍ଧାଦ୍ୟୈ ଗୁଣକକଳକାମାଂଶଭେଦାଦ୍ଦ୍ୱିସପ୍ତ
ତଦ୍ଧ୍ୟାଂଭେଦୋ ଭବତି ଦେବତଃ ସୂକ୍ଷ୍ମକର୍ମ୍ମୀବ କାର୍ଯ୍ୟମ୍
ରୂପାଦୀନାଂ କୁରୁତ ନବଭିଃ ଫାଳକୈର୍ଘାତମସ୍ମା—
ଲ୍ଲମ୍ଭଂ ଲପ୍ତାଦ ଚ ବିକଳତା ପୂର୍ବବଚ୍ଛେଷକର୍ମ୍ମ ।୯।

ଯେଷାଂ ଯେଷାଂ ଗୁଣନବଶତୋ ମୂଳମାନେତୁମିଷ୍ଟଂ
ତେ ତେ ହସ୍ତାଙ୍ଗୁଳମୁଖମୟା ଜ୍ୟାକଳାଦ୍ୟାମୂକା ବା।
ଅଙ୍କାଗ୍ରାହ୍ୟାଃ କୃତପଦବଧୌ ରୂପଲପ୍ତାବଲପ୍ତା
ରୂପାଦ୍ୟଂ ସ୍ୟାଦ୍ୱିକଳତକ୍ଳତେର୍ମ୍ମୂଳମାପ୍ତଂ ଖଷଡ଼୍ଭିଃ ।୧୦।

---

୮। ଲପ୍ତୀଭୂତଶେଷବର୍ଗୋଣ ହିଯୁତମୂଳହୃତ ଇତ୍ୟର୍ଥଃ।

ବର୍ତ୍ତମାନ ସାବୟବ ରାଶିର (ଦଣ୍ଡ, ଲିପ୍ତା ବା କଳା, ବିକଳା ଆଦି) ବର୍ଗମୂଳ ଆଣିବାର ରୀତି କୁହାଯାଉଅଛି :—

ସାବୟବ ରାଶିର ପ୍ରଥମ ଖଣ୍ଡରୁ ଯାହାର ବର୍ଗ ଫେଡ଼ାଯାଇ ପାରିବ ଫେଡ଼ । ଶେଷକୁ ଲକ୍ଷ୍ୟ କରି ଦେଖ—ତାହା ଉକ୍ତ ବର୍ଗ ରାଶିର ମୂଳରୁ ଅଳ୍ପ କି ନୁହେଁ । ଅଳ୍ପ ହୋଇଥିଲେ ତାହାକୁ ୩ରେ ଗୁଣ । ତାହାକୁ ୬ ଗୁଣ ମୂଳରେ ୧ ମିଶାଇ ହର । ଫଳ କଳାଦି ମୂଳ ହେବ । ପୂର୍ବ ମୂଳ ଓ ଏ କଳାଦି ମୂଳକୁ ମିଶାଇ ସମୁଦାୟ ମୂଳ ହେବ ।

ଯଦି ପ୍ରଥମ ଶେଷ ମୂଳ ସମାନ ବା ତା'ଠାରୁ ଅଧିକ ହୁଏ, ତାହାହେଲେ ତାକୁ ୨ରେ ଗୁଣି ୧ ମିଶାଅ । ଏ ସମୁଦାୟକୁ ୪ ଗୁଣ ମୂଳରେ ୩ ମିଶାଇ ହରିଲେ କଳାଦି ମୂଳ ହେବ । ପୂର୍ବମୂଳ ଓ ଏ ମୂଳ ମିଶି ମୋଟ ମୂଳ ହୋଇଯିବ । ଏହି ରୀତିରେ ସବୁ ଅବୟବର ମୂଳ ଆଣି ମିଶାଇଲେ ମୋଟ ମୂଳ ହେବ । ଆୟୁର୍ଦାୟ ଆଣିଲା ବେଳେ ଗୁଣକ ଗୁଡ଼ିକରେ ଗୋଟିଏ କଳାମାତ୍ର ଭେଦରେ ୭୨ ଦିନ ତଫାତ ଆସିଯାଏ । ଏଣୁ ସାବୟବ ରାଶିର ମୂଳ ଆଣିବା ବେଳେ ଖୁବ୍ ସାବଧାନ ହେବା ଉଚିତ ଏବଂ ଏ ସୂକ୍ଷ୍ମ ମୂଳ ଆଣିବା ଉଚିତ ।

ସାବୟବ ଶଙ୍କୁ ନ'ଟି (୯ଟି) କୋଠିରେ ରଖି ଗୁଣନ କର । ଏହି ଗୁଣନ ଫଳରୁ ମୂଳ ବାହାର କର । ଏପରି କଳା ତଥା ବିକଳା ସ୍ଥାନରୁ ମଧ୍ୟ ମୂଳ ବାହାର କରିବାକୁ ହେବ । ଯେଉଁ ସାବୟବ ସଂଖ୍ୟାର ମୂଳ ଗ୍ରହଣ କରାଯିବା କଥା ତାହା ହୁଏତ ଅଂଶ କଳାଦି ବା ହାତ ଆଙ୍ଗୁଳ ଆଦି ହୋଇଥିବ । କେବଳ ବିକଳା କରି ମଧ୍ୟ ମୂଳ ନିଆଯାଇ ପାରେ । ମାତ୍ର ଏତେବେଳେ ବିକଳାକୁ ପୁଣି ୬୦ରେ ହରି କଳା ଆଦି କରାଯିବା ଉଚିତ ।

ଋଜ୍ୱୀବୃତ୍ତା ସମପୃଥୁଶିଖା ମଧ୍ୟମୂଳା ନୁଯଷ୍ଟି—
ଦୀର୍ଘାଲ୍ପା ବାଙ୍ଗୁଳମିତମତୋ ଦ୍ୱାଦଶାଂଶଃ କଳାସ୍ୟାଃ ।
କମ୍ବା କାଳାନୟନବିଧୟେ ଶଙ୍କୁମାତ୍ମାଙ୍ଗଯଷ୍ଟିଂ
କୃତ୍ୱା ଛାୟାଂ କଳୟତୁ ପୁରୋବର୍ତ୍ତିନୀଂ ପାଦମଧ୍ୟାତ୍ ।୧୧।

ମୃତ୍ପିଣ୍ଡଂ ବା ସ୍ୱନୟନସମୋଚ୍ଚାଭ୍ରକେ ବଦ୍ଧ୍ୱଦେତ—
ଭାୟାଂ ଚହ୍ନଂ କମପି ବଦଧଦ୍ଦ୍ୱାଙ୍ଗୁଳଭ୍ୟାଂ ତ୍ୟଜେତ୍ତମ୍
ଯତ୍ନୈବାସୌ ନିପତତି ତତୋଯାବଦଙ୍କଂ ପ୍ରମାତା—
ନେତ୍ରୋଚ୍ଚଦ୍ୱାଦଶଲବମିତୈରଙ୍ଗୁଳୈର୍ଭାମବୈତୁ ।୧୨।

ଶଙ୍କୁ କାଠିଟି ଗୋଲ ହେବ । ଏହାର ଅଗ୍ର ମୂଳ ଓ ମଧ୍ୟ ଗୋଲେଇ (ପରିଧି) ସମାନ ହେବ । ଏହା କଦାପି ବଙ୍କା ହେବା ଉଚିତ୍ ନୁହେଁ । ଶଙ୍କୁକୁ ନିଜ ଇଚ୍ଛାରେ ବଡ଼ ବା ଛୋଟ କରାଯାଇ ପାରେ । ମାତ୍ର ଶଙ୍କୁର ୧୨କୁ ଏକ ଅଙ୍ଗୁଳ ଧରିବା ଶାସ୍ତ୍ରୀୟ ରୀତି ।

କାଳ ଆଣିବା ନିମନ୍ତେ ନିଜ ଶରୀରକୁ ମଧ୍ୟ ଶଙ୍କୁ ବୋଲି ଧରି ଯାଇ ପାରେ । ନିଜର ଛାୟାକୁ ମାପିବାକୁ ହେଲେ ଛାୟାଗ୍ରକୁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ରଖି (ଚିହ୍ନ ରଖି) ପାଦର ମଧ୍ୟରୁ ତାହା ମାପିବାକୁ ହେବ ।

ନିଜର ଆଖି ପର୍ଯ୍ୟନ୍ତ ଉଚ୍ଚ ଗୋଟିଏ ମୃତ୍ପିଣ୍ଡ (ସ୍ତମ୍ଭ) ଠିଆ କରି ତାର ଛାୟାଗ୍ର ଯେଉଁଠି ହେବ ସେଠାରେ ଚିହ୍ନ ଦେଇ ଉକ୍ତ ମୃତ୍ପିଣ୍ଡକୁ ପକାଇ ଦେବ । ଏହି ପିଣ୍ଡ ତାର ଛାୟା ଦିଗରେ ମୂଳରୁ ଯେତେ ଦୂରରେ ପଡ଼ିବ ସେଠାରୁ ନିଜର ଆଖି ପର୍ଯ୍ୟନ୍ତ ଉଚ୍ଚତାର $\frac{୧}{୭}$ ନେଇ (ଏକ ଅଙ୍ଗୁଳ ମନେ କରି) ବାକି ଛାୟା ମାପି ନେବ । ଉକ୍ତ ପିଣ୍ଡ ତଥା ତା ପରେ ଥିବା ଛାଇର ପୂର୍ଣ୍ଣମାପହିଁ ପୂର୍ଣ୍ଣ ପରିମାଣ ହେବ ।

**ଛାୟା ଯସ୍ମାଦ୍ଦିନକରତନୂମଧ୍ୟବିନ୍ଦୋଃ ସଦେଷ୍ଟା**
**ତଦ୍‌ବିମ୍ବାନ୍ତେଷ୍ଷଣଭୁବ ତମୋଽଭବତ୍ଃ ସା ନ ଦୃଶ୍ୟା ।**
**ତସ୍ମାତ୍କର୍ଣ୍ଣକ୍ଷିତବଧ୍ନୁଭୁକାଂଶେନ—ଯୁକ୍ତୈବ କାର୍ଯ୍ୟା**
**ଯଦ୍‌ବିମ୍ବାର୍ଦ୍ଧଂ ଶିବଭୁଜଗୁଣଂ ମଧ୍ୟକର୍ଣ୍ଣୋଽରୁଣସ୍ୟ ।୧୩।**

ଏଠାରେ ଯେଉଁ ଛାୟା କଥା କୁହାଯାଇଛି ତାହା ସୂର୍ଯ୍ୟ ବିମ୍ବ କେନ୍ଦ୍ର ବିନ୍ଦୁରୁ ଉତ୍ପନ୍ନ ଶଙ୍କୁ ଛାୟା ହେବା ଉଚିତ; କିନ୍ତୁ ଯେଉଁ ରେଖା ଛାୟାଗ୍ର ଓ ଶଙ୍କୁ ଅଗ୍ରକୁ ଧରି ଟଣା ଯାଏ ତାହା ବାସ୍ତବରେ ସୂର୍ଯ୍ୟ ବିମ୍ବର କେନ୍ଦ୍ରଗାମୀ ହୁଏ ନାହିଁ । କାରଣ ସୂର୍ଯ୍ୟ କେନ୍ଦ୍ର ବିନ୍ଦୁ ହିଁ ଛାୟାର କାରଣ ନୁହେଁ—ତାହା ଛଡ଼ା ସୂର୍ଯ୍ୟର ଅନ୍ୟ ଅଂଶ ଅନ୍ଧକାରାବୃତ ନ ହୋଇ ବରଂ ଆଲୋକିତ ହିଁ ରହିଅଛି । ଏଣୁ ଏଠାରେ ସୂର୍ଯ୍ୟର କେନ୍ଦ୍ରାତିରିକ୍ତ ଅଂଶ ମଧ୍ୟ ଛାୟା କାରକ । ତେଣୁ ସୂର୍ଯ୍ୟ କେନ୍ଦ୍ରକ ଛାୟା ଆଣିବା ନିମନ୍ତେ ଶଙ୍କୁ ଛାୟାରେ ଶଙ୍କୁ କର୍ଣ୍ଣର $\frac{୧}{୨୧୧}$ ଅଂଶ ଯୋଗ କରିବାକୁ ହେବ । କାରଣ ପୃଥିବୀ ଠାରୁ ସୂର୍ଯ୍ୟର ଦୂରତା ସୂର୍ଯ୍ୟ ବ୍ୟାସାର୍ଦ୍ଧର ୨୧୧ ଗୁଣ ।

**ଶଙ୍କୁର୍ନରଃ କୋଟିରୁଦୀରିତୋଽଏ**
**ଛାୟା ପ୍ରଭାଖ୍ୟା ଭୁଜଇତ୍ୟଭିଜ୍ଞୈଃ ।**
**ଶ୍ରତ୍ୟାଖ୍ୟମେତଦ୍‌କୃତଯୋଗମୂଳଂ**
**କ୍ଷେତ୍ରଂ ନିରୁକ୍ତଂ ଖଲୁକର୍ମଭୂମିଃ ।୧୪।**

ଶଙ୍କୁକୁ ନର ଏବଂ କୋଟି ମଧ୍ୟ କୁହାଯାଏ । ପ୍ରଭା ଓ ଭୁଜ ଛାୟାର ନାମାନ୍ତର । ଭୁଜବର୍ଗ ଓ କୋଟି ବର୍ଗକୁ ଯୋଗକରି ତାହାର ମୂଳ ନେଲେ କର୍ଣ୍ଣ ହୁଏ । ଏହି କୋଟି, ଭୁଜ ଓ କର୍ଣ୍ଣକୁ ନେଇ ମୌଳିକ ତ୍ରିଭୁଜ ଗଢ଼ାଯାଇ ପାରେ । ଏହା ଅନେକ କଥାର ଭୂମିକା ।

ପ୍ରାକ୍‌ପଶ୍ଚାଦ୍‌ ଖାର୍ଦ୍ଧଗାରେଖା ସମମଣ୍ଡଳମୁଚ୍ୟତେ ।
ନରକ୍ଷୋର୍ଦ୍ଧ୍ୱଗତା ଯା ସା ବିଷୁବନ୍ମଣ୍ଡଳାଭିଧା ।୧୫।

ଯେଉଁ ବୃହତ୍ ବୃତ୍ତ ଖ ସ୍ୱସ୍ତିକ, ପୂର୍ବ ଓ ପଶ୍ଚିମ ବିନ୍ଦୁକୁ ଦେଇ ଯାଇଅଛି, ତାହାକୁ ସମମଣ୍ଡଳ ବା ପୂର୍ବାପର ବୃତ୍ତ କହନ୍ତି । ପୃଥିବୀ ବିଷୁବକୁ ତାହାର ଉପରେ ଆକାଶମାର୍ଗରେ କଳ୍ପନା କଲେ ଆକାଶ ବିଷୁବ ହୁଏ । ପୃଥିବୀ ବିଷୁବରେ ଅକ୍ଷାଂଶ ଶୂନ୍ୟ (୦) ହେଲା ପରି ଆକାଶ ବିଷୁବରେ ମଧ୍ୟ ଅକ୍ଷାଂଶ ଶୂନ୍ୟ (୦) ।

ବ୍ୟକ୍ଷେ କ୍ଷିତଜସଂଲଗ୍ନଂ ଧ୍ରୁବଦ୍ୱନ୍ଦ୍ୱଯୁତଞ୍ଚ ଯତ୍ ।
ବୃତ୍ତମୁନ୍ମଣ୍ଡଳାଖ୍ୟଂ ତନ୍ମେରୋରୁପରି ସଂସ୍ଥିତେଃ ।୧୬।

ବିସ୍ତୃତାନି ନରକ୍ଷେ ତୁ ତନ୍ନୂନ ଧ୍ରୁବ ସନ୍ନିଧୌ ।
କ୍ରମାଦ୍ଧ୍ରସ୍ୱାଣି ବୃତ୍ତାନି ପ୍ରାକ୍‌ପରାଣ୍ୟୁତସ୍ୱବତଃ ।୧୭।

ସ୍ୱସ୍ଥାନର ପୂର୍ବ ଓ ପଶ୍ଚିମ ବିନ୍ଦୁ ତଥା ଉଭୟ ଧ୍ରୁବକୁ ଯୋଗକରି ଯାଇଥିବା ବୃତ୍ତହିଁ ଉନ୍ମଣ୍ଡଳ । ପୃଥିବୀ ବିଷୁବ ଠାରୁ ମେରୁ ଆଡ଼କୁ ଗଲେ ଅହୋରାତ୍ର (ସୂର୍ଯ୍ୟର ଅହୋରାତ୍ର) ବୃତ୍ତ ଗୁଡ଼ିକ କ୍ରମେ କ୍ରମେ ଛୋଟ ଛୋଟ ହେଉଥିବାର ଦେଖାଯିବ ।

ନାଡ଼ୀବୃତ୍ତଂ ବୈଷୁବତଂ ପ୍ରତବ୍ୟପମୁଖାଶ୍ଚ ଯେ ।
ମଣ୍ଡଳାସ୍ତେଽପି ଲେଖ୍ୟାଃ ସ୍ୟୁର୍ଭୂଗୋଳେ ଖ ଇବାଖିଳାଃ ।୧୮।

ବାଉଁଶ ବା କାଠର ଗୋଟିଏ ଗୋଲ ରଚନା କରି ଆକାଶ ବିଷୁବ, କ୍ରାନ୍ତିବୃତ୍ତ, ଗ୍ରହ-ବିମଣ୍ଡଳ (କକ୍ଷା) ଓ ଅନ୍ୟ ବୃତ୍ତଗୁଡ଼ିକୁ ସେଥିରେ ଯଥା ସ୍ଥାନରେ ଦେଖାଇବ । (ଏ ଗୁଡ଼ିକ ଏକ ଧରା ତଳରେ ହେବେ) ।

ଇଷ୍ଟଘସାର୍ଦ୍ଧଜା ଭା ଚେତ୍ ଶଙ୍କୁମୂଳାଦୁଦକ୍‌ସ୍ଥିତା ।
ତଦା ତଦ୍‌ବିଷୁବଚ୍ଛାୟାନ୍ତରମଗ୍ରାଭିଧୀୟତେ ।୧୯।

ଯାମ୍ୟସ୍ଥା ଚେଦ୍ୟୁତା ସାଗ୍ରା ବିଷୁବଚ୍ଛାୟୟା ମତା ।
ସମମଣ୍ଡଳଗେ ଭାନୌ ପଳଭୈବୋତ୍ତରାଗ୍ରକା ।୨୦।

କୌଣସି ଇଷ୍ଟ ଦିନର ମଧ୍ୟାହ୍ନ କାଳୀନ ଶଙ୍କୁଚ୍ଛାୟା ଶଙ୍କୁର ମୂଳରୁ ଯଦି ଉତ୍ତରକୁ ହୁଏ ତାହାହେଲେ ସେହି ଛାୟା ଓ ସେହି ସ୍ଥାନରେ ବିଷୁବ ଛାୟା ମଧ୍ୟରେ ଯେତିକ ଅନ୍ତର

ହେବ ସେତିକହିଁ ସେହି ଦିନ ସେଠାର ଅଗ୍ରା ହେବ । ଯଦି ଏହି ଗ୍ରସ୍ମା ଶଙ୍କୁ ମୂଳରୁ ଦକ୍ଷିଣକୁ ହୁଏ ତାହାହେଲେ ବିଷୁବ ଗ୍ରସ୍ମା ସଙ୍ଗେ ଏହାର ଯୋଗକଲେ ଫଳ ସେହି ଦିନରେ ସେହି ସ୍ଥାନର ଅଗ୍ରା ହେବ । ସୂର୍ଯ୍ୟ ସମମଣ୍ଡଳରେ (ପୂର୍ବାପର ବୃତ୍ତରେ) ଥିବା ବେଳେ ପଳଭାକୁହିଁ (ବିଷୁବ ଛାୟାହିଁ) ଅଗ୍ରା କୁହାଯିବ ଏବଂ ଏହା ସବୁବେଳେ ଉତ୍ତର ହେବ ।

**ବିଷୁବଦ୍ଦିନମଧ୍ୟସ୍ଥଦ୍ୟୁମଣେର୍ଗଗନାର୍ଦ୍ଧତଃ ।**
**ନତରକ୍ଷଃ ଫଳସ୍ତତ୍ରୋନ୍ନତଲମ୍ବ ଇତୀର୍ଯ୍ୟତେ ।୨୧।**

**ଧ୍ରୁବସ୍ୟୋନ୍ନତ ରକ୍ଷାଂଶତୁଲ୍ୟା ଲମ୍ବସମା ନତଃ ।**
**ଅକ୍ଷଭା ପଳଭାଚ୍ଛାୟା ବିଷୁବଦ୍ଦିନ ମଧ୍ୟଜା ।୨୨।**

ସମଦିବସରେ ସୂର୍ଯ୍ୟ ବିଷୁବ ଉପରେ ରହି ଦିନ ଗତି କରନ୍ତି । ଏଣୁ ଏହି ଦିନର ମଧ୍ୟାହ୍ନ ବେଳେ ସୂର୍ଯ୍ୟ ନିଜର ଖସ୍ୱସ୍ତିକ ଠାରୁ ଉତ୍ତର ବା ଦକ୍ଷିଣକୁ ଯେତେଦୂରରେ ରହନ୍ତି ତାହାହିଁ ସେ ଦେଶର ଅକ୍ଷାଂଶ ବା ପଲାଂଶ । ଏହାହିଁ ସେତେବେଳେ ସୂର୍ଯ୍ୟର ନତି ବା ନତାଂଶ । ଠିକ୍ ସେତେବେଳେ ଏହି ସୂର୍ଯ୍ୟ ଦିଗ୍‌ବଳୟଠାରୁ ଯେତେ ଉପରକୁ ରହନ୍ତି ସେତିକହିଁ ତାହାର ଉନ୍ନତାଂଶ ବା ଲମ୍ବାଂଶ ।

ଏଣେ ଦିଗ୍‌ବଳୟଠାରୁ ଧ୍ରୁବ ତାରା ଯେତେ ଉପରେ ଅଛି ସେତିକ ହିଁ ସେ ଦେଶର ଅକ୍ଷାଂଶ । ଧ୍ରୁବର ନତାଂଶ ହିଁ ଲମ୍ବାଂଶ ସମାନ ।

ବିଷୁବ ଦିନରେ ୧୨ ଆଙ୍ଗୁଳ ଶଙ୍କୁର ମଧ୍ୟାହ୍ନ ଛାୟାହିଁ ଅକ୍ଷଚ୍ଛାୟା ବା ପଳଭା ।

ସୂର୍ଯ୍ୟସିଦ୍ଧାନ୍ତେ:—

**ଶଙ୍କ୍ୱକ୍ଷଭାହତେ ତ୍ରିଜ୍ୟେ ପୃଥକ୍‌କର୍ଣ୍ଣବିଭାଜିତେ ।**
**ଲମ୍ବାକ୍ଷଜ୍ୟେ ତୟୋଶ୍ଚାପେୌ ଲମ୍ବାକ୍ଷୌ ଦକ୍ଷିଣୌ ସଦା । ଇତି ।୨୩।**

୧୨ ଅଙ୍ଗୁଳ ଶଙ୍କୁ ଓ ପଲଭାକୁ ତ୍ରିଜ୍ୟାରେ ଅଲଗା ଅଲଗା ଗୁଣି ପଳକର୍ଣ୍ଣରେ ଭାଗ ଦେଲେ ଲମ୍ବଜ୍ୟା ଏବଂ ଅକ୍ଷଜ୍ୟା ହୁଏ । ଏ ଦୁଇଟିର ଚାପ ବାହାର କଲେ ଲମ୍ବାଂଶ ଓ ଅକ୍ଷାଂଶ ହୁଏ । ଏହି ଲମ୍ବାଂଶ ଓ ଅକ୍ଷାଂଶ ସର୍ବଦା ଆମ ଦେଶର ଦକ୍ଷିଣ ବୋଲି ବୁଝିବାକୁ ହେବ ।

**ସ୍ୱଦେଶାକ୍ଷ ପ୍ରଭାଜ୍ଞାନଂ ବକ୍ଷ୍ୟେ ସିଦ୍ଧାନ୍ତସମ୍ମତମ୍ ।**
**ଦକ୍ଷିଣୋତ୍ତରରେଖାସ୍ଥୋ ଭୁଜୋ ଯଃ ସ୍ୱଦିନାର୍ଦ୍ଧଜଃ ।୨୪।**

ତେନସଂଗୁଣିତା ତ୍ରିଜ୍ୟା କର୍ଣ୍ଣାପ୍ତା ତଦ୍ଧନୁଃକଳାଃ ।
ନତା ମଧ୍ୟାହ୍ନସୂର୍ଯ୍ୟସ୍ୟ ଭୁଜେ ସୌମ୍ୟେ ତୁ ଦକ୍ଷିଣାଃ ।୬୫।

ଯାମ୍ୟେ ସୌମ୍ୟାଃ ସୂର୍ଯ୍ୟରେତାଶ୍ଚ କ୍ରାନ୍ତିଲପ୍ତାଶ୍ଚ ସ୍ୱସ୍ୱତଃ ।
ଦିକ୍‌ଭେଦେ ମିଶ୍ରିତାଃ ସାମ୍ୟେ ବିଶ୍ଳିଷ୍ଟାଃ ସାକ୍ଷଲିପ୍ତିକାଃ ।୬୭।

ସୂର୍ଯ୍ୟସିଦ୍ଧାନ୍ତେ—

ତଜ୍ଜ୍ୟାକ୍ଷଜ୍ୟାଥ ତଦ୍‌ବର୍ଗଂ ପ୍ରୋଜ୍‌ଝ୍ୟ ତ୍ରିଜ୍ୟାକୃତେଃ ପଦମ୍ ।
ଲମ୍ବଜ୍ୟାକ୍ଷଗୁଣୋଽର୍କଘ୍ନୋ ଲମ୍ବଜ୍ୟାପ୍ତୋଽକ୍ଷଭାଭବେତ୍ । ଇତ ।୬୭।

ନିଜ ନିଜ ଦେଶରେ ପଲଭା (ଅକ୍ଷଚ୍ଛାୟା) କିପରି ଜାଣି ହେବ ତାହାର ସିଦ୍ଧାନ୍ତ ସମ୍ମତ ରୀତି କହୁଅଛୁ:— ନିଜେ ଥିବା ସ୍ଥାନରେ କୌଣସି ଦିନ ମଧ୍ୟାହ୍ନରେ ନିଜର ଦକ୍ଷିଣୋତ୍ତର ରେଖା ଉପରେ (ମାଧ୍ୟନ୍ଦିନରେଖା ଉପରେ) ୧୨ ଅଙ୍ଗୁଳ ଶଙ୍କୁ ସ୍ଥାପନ କରି ତାହାର ଛାୟା ମାପ । ତାକୁ ଛାୟା କର୍ଣ୍ଣରେ ହରି ୩୪୩୮ରେ ଗୁଣିଲେ ଯାହା ହେବ ତାହାର କଳା ବାହାର କର । ଏହାହିଁ ସେ ଦିନ ମଧ୍ୟାହ୍ନ ସୂର୍ଯ୍ୟର ନତ କଳା ହେବ । ଛାୟା (ଭୁଜ) ଉତ୍ତର ହୋଇ ଥିଲେ ଆମାତ ନତ କଳା ଦକ୍ଷିଣ ଦିଗର ହେବ । ମାତ୍ର ନତ କଳା ଉତ୍ତର ଦିଗର ହେବ । ଯଦି ସେହି ଛାୟା (ଭୁଜ) ଦକ୍ଷିଣ ଦିଗରେ ହୋଇଥାଏ, ସୂର୍ଯ୍ୟର କ୍ରାନ୍ତି କଳା ଓ ଏହି ନତ କଳାକୁ ଭିନ୍ନ ଦିଗର (ଗୋଟିଏ ଉତ୍ତର ଓ ଅନ୍ୟଟି ଦକ୍ଷିଣ) ହୋଇଥିଲେ ମିଶାଇବ ଏବଂ ଏକ ଦିଗର ହୋଇଥିଲେ (କେବଳ ଉତ୍ତର ବା ଦକ୍ଷିଣ) ଫେଡ଼ିବ (ବଡ଼ରୁ ସାନକୁ), ତାହାହେଲେ ଅକ୍ଷଲତା ହୋଇଯିବ । (ଏହି ଅକ୍ଷଲତାକୁ ୬୦ରେ ହରି ଦେଲେ ନିଜ ଦେଶର ଅକ୍ଷାଂଶ ଆସିଯିବ ) ।

ଅକ୍ଷଲତାର ଜ୍ୟା ଆଣି ତାର ବର୍ଗକୁ ତ୍ରିଜ୍ୟାବର୍ଗ ୧୧୮୧୯୮୪୪ରୁ ଫେଡ଼ି ତାର ମୂଳ ବାହାର କର । ତାହା ଲମ୍ବଜ୍ୟା ହେବ । ପୁଣି ଅକ୍ଷଜ୍ୟାକୁ ୧୨ରେ ଗୁଣି ଏହି ଆମାତ ଲମ୍ବଜ୍ୟାରେ ହରିଲେ ଅକ୍ଷଚ୍ଛାୟା ବା ପଲଭା ଆସିଯିବ ।

ଛାୟାର୍କାନୟନଂ ବକ୍ଷ୍ୟେ ସ୍ୱଦେଶେ ଯେ ପଲାଂଶକାଃ ।
ମଧ୍ୟାହ୍ନାର୍କନତାଂଶାଶ୍ଚ ଦିକ୍ ସମତ୍ୱେ ତଦନ୍ତରମ୍ ।୬୮।

ଦିକ୍ ଭେଦେ ତଦ୍‌ଯୁତଃ କ୍ରାନ୍ତିସ୍ତଜ୍ଜ୍ୟାତ୍ରିଗୁଣତାଡିତା ।
ପରମାପକ୍ରମଜ୍ୟାପ୍ତା ଭୁଜଜ୍ୟାସ୍ୟା ଧନୁଃକଳାଃ ।୬୯।

ଗ୍ରାହ୍ୟାସ୍ତାଃ ଯାମ୍ୟନେଽଜାଦୌ କର୍କ୍ୟାଦୌ ଖାର୍ଦ୍ଧତଶ୍ଚ୍ୟୁତାଃ ।
ତୁଲାଦୌ ଖାର୍ଦ୍ଧସଂଯୁକ୍ତାଶ୍ଚକ୍ରାଦୂନା ମୃଗାଦକେ ।୩୦।

ତତୋଽୟନାଂଶଲପ୍ତାଦ୍ୟୈର୍ବୈ ପରୀତେ୍ୟନ ସଂସ୍କୃତାଃ ।
ଭବନ୍ତ ସ୍ୱଦନାର୍ଦ୍ଧାର୍କ ଭୁକ୍ତସ୍ଫୁଟ ଗୃହାଦୟଃ ।୩୧।

ମଧ୍ୟାହ୍ନ ଛାୟାରୁ ସୂର୍ଯ୍ୟର ରାଶ୍ୟାଦ୍ୟ କପରି ବାହାର କରାଯାଇ ପାରିବ ତାହା ବର୍ତ୍ତମାନ କୁହାଯାଉଛି ।

ଆଗରୁ କୁହାଯାଇ ଥିବା ରୀତିରେ ମଧ୍ୟାହ୍ନ ସୂର୍ଯ୍ୟର ନତାଂଶ ବାହାର କର । ଏହି ନତାଂଶ ଓ ଦେଶୀୟ ଅକ୍ଷାଂଶକୁ ଗୋଟିଏ ଦିଗର ହେଲେ ଅନ୍ତର ଓ ଭିନ୍ନ ଦିଗର ହେଲେ ଯୋଗକଲେ ତାହା ସୂର୍ଯ୍ୟର ସେହି ସମୟର କ୍ରାନ୍ତି ହେବ । ଏହି କ୍ରାନ୍ତିର ଜ୍ୟାକୁ ତ୍ରିଜ୍ୟାରେ ଗୁଣି ସୂର୍ଯ୍ୟର ପରମ କ୍ରାନ୍ତିଜ୍ୟାରେ ହରିଲେ ରବିର ଭୁଜଜ୍ୟା ହେବ । ଏହାର ଚାପ ରବିର ଭୁଜାଂଶ ହେବ । ଏହି ଭୁଜାଂଶ ପ୍ରଥମ ପାଦର ହେଲେ ତାହା ହିଁ ସେତେବେଳର ସୂର୍ଯ୍ୟ । ସୂର୍ଯ୍ୟ ୨ୟ ପାଦରେ ହେଲେ ତାହାକୁ ୬ ରାଶିରୁ ବାଦ୍ ଦେବ । ୩ୟ ପାଦରେ ହେଲେ ସେଥିରେ ୩ ରାଶି ମିଶାଇବ । ୪ର୍ଥ ପାଦର ହେଲେ ତାକୁ ୧୨ ରାଶିରୁ ଫେଡ଼ିବ । ଏହା କରି ସାରି ସେଥିରେ ଅୟନାଂଶ ସଂସ୍କାର କଲେ (ବିପରୀତ ଅୟନ ସଂସ୍କାର) ତାହା ନିରୟଣ ମେଷାଦିରୁ ସ୍ଫୁଟ ରବ୍ୟାଦି ହୋଇଯିବ ।

ସ୍ଫୁଟାର୍କୋନାତ୍ ସ୍ୱମନ୍ଦୋଚାତ୍ ଫଳଂ ବାମଂ ସ୍ଫୁଟେ ରବୌ ।
ଅସକୃଦ୍ଧନହୀନଞ୍ଚେତ୍ ସ୍ୟାନ୍ମଧ୍ୟାର୍କଃ ସ୍ଥିରତ୍ୱକତ୍ ।୩୨।

ଏହି ସ୍ଫୁଟ ରବିକୁ ନିଜର ମନ୍ଦୋଚ୍ଚରୁ ବାଦ ଦେଇ ଯେଉଁ ମନ୍ଦଫଳ ହେବ ତାହାକୁ ବିପରୀତ ବିଧିରେ ଉକ୍ତ ସ୍ଫୁଟ ରବିରେ ବାରମ୍ବାର ସଂସ୍କାର କଲେ ସେ ସମୟର ମଧ୍ୟମ ରବି ଆପେ ଆପେ ଆସିଯିବ ।

ସର୍ଯ୍ୟ ସିଦ୍ଧାନ୍ତେ :—

ସ୍ୱାକ୍ଷାର୍କାପକ୍ରମଯୁତର୍ଦ୍ଦିକ୍ ସାମ୍ୟେଽନ୍ତରମନ୍ୟଥା ।
ସ୍ୟୁର୍ନତାଂଶା ରବେସ୍ତେଭ୍ୟଃ ସାଧ୍ୟେ ଦୋଃକୋଟିମୌର୍ବିକେ ।ଇତ ।୩୩।

ଶଙ୍କ୍ୱମାନାଙ୍ଗୁଳାଭ୍ୟସ୍ତେ ଦୋର୍ଜ୍ୟାତ୍ରିଜ୍ୟେ ଯଥାକ୍ରମମ୍ ।
କୋଟିଜ୍ୟୟା ବିଭଜ୍ୟାପ୍ତୌ ଛାୟାକର୍ଣ୍ଣାବହର୍ଦ୍ଦଳେ ।୩୪।

ସ୍ୱଦେଶୀୟ ଅକ୍ଷାଂଶ ଓ ସୂର୍ଯ୍ୟର କ୍ରାନ୍ତି ଏକ ଦିଗର ହେଲେ ଉଭୟଙ୍କର ଯୋଗ ଏବଂ ଭିନ୍ନ ଦିଗର ହେଲେ ଉଭୟଙ୍କର ଅନ୍ତର କଲେ ତାହା ମଧ୍ୟାହ୍ନକାଳୀନ ରବିର ନତାଂଶଜ୍ୟା ହେବ । ଏଥିରୁ ନତଜ୍ୟା ଓ ନତ କୋଟିଜ୍ୟା ଆଣ ।

ଏହି ନତଜ୍ୟାକୁ ଶଙ୍କୁରେ ଗୁଣି ନତକୋଟିଜ୍ୟାରେ ହର ଦେଲେ ମଧ୍ୟାହ୍ନ ଛାୟା ମିଳିଯିବ । ଏହାପରେ ଶଙ୍କୁକୁ ତ୍ରିଜ୍ୟାରେ ଗୁଣି ମଧ୍ୟାହ୍ନ ସୂର୍ଯ୍ୟର ନତକୋଟିଜ୍ୟାରେ ହର ଦେଲେ ମଧ୍ୟାହ୍ନ ଛାୟା କର୍ଣ୍ଣ ଆସିଯିବ ।

**ଉନ୍ମଣ୍ଡଳସ୍ଥ ଖେଟସ୍ୟ କ୍ରାନ୍ତ୍ୟୋରୁତ୍ତରଯାମ୍ୟୟୋଃ ।**
**କ୍ଷିତଜୋର୍ଦ୍ଧ୍ୱାଧରସ୍ଥାନୋ ଭବତ୍ୟୁଦ୍‌ବୃତ୍ତକୋ ନରଃ ।୩୫।**

ବିଷୁବର କ୍ଷିତଜକୁ ଉନ୍ମଣ୍ଡଳ କହନ୍ତି । ଏହି ଉନ୍ମଣ୍ଡଳ—ବୃତ୍ତର ଉତ୍ତର ଭାଗ ଭାରତୀୟ କ୍ଷିତଜର ଊର୍ଦ୍ଧ୍ୱରେ ଏବଂ ଦକ୍ଷିଣ ଭାଗ ଉକ୍ତ କ୍ଷିତଜର ତଳେ । ଏଣୁ ଉତ୍ତର ଓ ଦକ୍ଷିଣ କ୍ରାନ୍ତି ବଶତଃ ଉନ୍ମଣ୍ଡଳସ୍ଥ ଗ୍ରହର ଶଙ୍କୁ (ଉନ୍ମଣ୍ଡଳଶଙ୍କୁ) ଯଥାକ୍ରମେ ଊର୍ଦ୍ଧ୍ୱ ଓ ଅଧୋଭାଗର ହୋଇଥାଏ ।

**ବିଷୁବଦ୍‌ଭାପମଜ୍ୟାଘ୍ନୀ କର୍ଣ୍ଣାପ୍ତୋଦ୍ବୃତ୍ତନା ଭବେତ୍ ।**
**ତ୍ରିଜ୍ୟୋନ୍ମଣ୍ଡଳଶଙ୍କୁଘ୍ନୀ ଚରଜ୍ୟାପ୍ତା ଚ ଯଷ୍ଟିକା ।୩୬।**

$$\frac{\text{ପଲଭା} \times \text{କ୍ରାଜ୍ୟା}}{\text{ପଲକର୍ଣ୍ଣ}} = \text{ଉନ୍ମଣ୍ଡଳଶଙ୍କୁ}$$

$$\frac{\text{ଉ.ଶ} \times \text{ତ୍ରିଜ୍ୟା}}{\text{ଚରଜ୍ୟା}} = \text{ଯଷ୍ଟି}$$

**ଯଷ୍ଟିରୁଦ୍‌ବୃତ୍ତଶଙ୍କ୍ୱାଢ଼୍ୟା ତଦ୍‌ନୋତ୍ତରଯାମ୍ୟୟୋଃ ।**
**ଗୋଳୟୋଃକ୍ରମତଃ ଶଙ୍କୁର୍ଭବେତ ସ୍ୱଦନାର୍ଦ୍ଧଜଃ ।୩୭।**

**ଅଥବା ବକ୍ଷ୍ୟମାଣାନ୍ତ୍ୟା ଗୁଣିତୋଦ୍‌ବୃତ୍ତଶଙ୍କୁନା ।**
**ଚରଜ୍ୟାପ୍ତା ଭବେଚ୍ଛଙ୍କୁରୁଦଗ୍‌ଦକ୍ଷିଣକାଷ୍ଠୟୋଃ ।୩୮।**

ଉତ୍ତର ଓ ଦକ୍ଷିଣ ଗୋଳରେ ଯଥାକ୍ରମେ ଏହି ଯଷ୍ଟିରେ ଉନ୍ମଣ୍ଡଳ ଶଙ୍କୁକୁ ଯୁକ୍ତ ଓ ବିଯୁକ୍ତ କଲେ ତାହା ମଧ୍ୟାହ୍ନ ଶଙ୍କୁ ହୁଏ । ଆଗକୁ କୁହାଯାଉଥିବା ଅନ୍ତ୍ୟାକୁ ଉନ୍ମଣ୍ଡଳ ଶଙ୍କୁରେ ଗୁଣି ଚରଜ୍ୟାରେ ହରିଲେ ଫଳ ମଧ୍ୟାହ୍ନ ଶଙ୍କୁ ହୋଇଥାଏ ।

ସୂର୍ଯ୍ୟ ସିଦ୍ଧାନ୍ତେ :—

**ନତାଂଶଭୁଜକୋଟିଜ୍ୟେ ଦୃଗ୍‌ଜ୍ୟାଶଙ୍କୁଜ୍ୟକେ ମତେ ।**
**କ୍ରାନ୍ତିଜ୍ୟା ବିଷୁବକର୍ଣ୍ଣହତାପ୍ତା ଶଙ୍କୁଜୀବୟା । ଇତ । ।୩୯।**

**ଅଗ୍ରାମାଧ୍ୟାହ୍ନିକୀସୈବ ସୌମ୍ୟଯାମ୍ୟାପମାନୁଗା ।**
**ସ୍ୱେଷ୍ଟକର୍ଣ୍ଣହତା ମଧ୍ୟକର୍ଣ୍ଣାପ୍ତାଗ୍ରେଷ୍ଟକାଲକା ।୪୦।**

**କମ୍ବା ମଧ୍ୟେଷ୍ଟକର୍ଣ୍ଣାଭ୍ୟାଂ କ୍ରାନ୍ତିଜ୍ୟା ଗୁଣିତା ପୃଥକ୍ ।**
**ଲମ୍ବଜ୍ୟାପ୍ତା ଚ ମଧ୍ୟାଗ୍ରା ସ୍ୱେଷ୍ଟାଗ୍ରା ଭବତ କ୍ରମାତ୍ ।୪୧।**

ନତାଂଶଜ୍ୟା ଓ ନତାଂଶର କୋଟିଜ୍ୟାକୁ ଯଥାକ୍ରମେ ଦୃଗ୍‌ଜ୍ୟା ଓ ଶଙ୍କୁଜ୍ୟା କହନ୍ତି । କ୍ରାନ୍ତିଜ୍ୟାକୁ ବିଷୁବଚ୍ଛାୟା କର୍ଣ୍ଣରେ ଗୁଣି ଶଙ୍କୁରେ (୧୨) ହରିଲେ ତାହା ମଧ୍ୟାହ୍ନ ଅଗ୍ରା ହୁଏ । କ୍ରାନ୍ତିର ଦିଗ ଅନୁସାରେ ଏହା ମଧ୍ୟ ଦକ୍ଷିଣ, ଉତ୍ତର ହୋଇଥାଏ । ଦକ୍ଷିଣ କ୍ରାନ୍ତିରେ ଦକ୍ଷିଣ ଓ ଉତ୍ତର କ୍ରାନ୍ତିରେ ଉତ୍ତର ଅଗ୍ରା (ମଧ୍ୟାହ୍ନ) । ଏହି ମଧ୍ୟାଗ୍ରାକୁ ଇଷ୍ଟଛାୟା କର୍ଣ୍ଣରେ ଗୁଣି ତ୍ରିଜ୍ୟାରେ ଭାଗ ଦେଲେ କର୍ଣ୍ଣ—ବୃତ୍ତାଗ୍ରା ହୁଏ । କ୍ରାନ୍ତିଜ୍ୟାକୁ ଅଲଗା ଅଲଗା ଦୁଇ ଯାଗାରେ ରଖି ଯଥାକ୍ରମେ ତ୍ରିଜ୍ୟା ଓ ଇଷ୍ଟଛାୟା କର୍ଣ୍ଣରେ ଗୁଣି ଉଭୟ ଯାଗାରେ ଲମ୍ବଜ୍ୟାରେ ହରିଲେ ମଧ୍ୟ କର୍ଣ୍ଣ ବୃତ୍ତାଗ୍ରା ହୁଏ ।

**ଚଳାଂଶସଂସ୍କୃତେ ଭାନୌ ମେଷାଦୌ ଗୋଳ ଉତ୍ତରଃ ।**
**ତୁଳାଦୌ ସଂସ୍ଥିତେ ଯାମ୍ୟଃ ପୂର୍ବୋକ୍ତୋଽପ୍ୟେବ କାର୍ଯ୍ୟତଃ ।୪୨।**

ସାୟନ ରବି ମେଷାଦି ୬ ରାଶିରେ ଥିଲେ ଉତ୍ତର ଗୋଳରେ ଏବଂ ତୁଳାଦି ୬ରାଶିରେ ଥିଲେ ଦକ୍ଷିଣ ଗୋଳରେ ବୋଲି ବୁଝିବାକୁ ହେବ ।

**ସୌମ୍ୟଗୋଳେ ଯଦାର୍କାଗ୍ରା ବିଷୁବଚ୍ଛାୟୁତୋଽଧିକା ।**
**ତତ୍ତୟୋରନ୍ତରଂ ଯାମ୍ୟଭୁଜଃ ସ୍ୟାଚ୍ଛଙ୍କୁମୂଳତଃ ।୪୩।**

**ନ୍ୟୂନା ଚେଦନ୍ତରଂ ସୌମ୍ୟୋ ବାହୁର୍ଯାମ୍ୟେ ତୁ ଗୋଳକେ ।**
**ଅକ୍ଷପ୍ରଭାଗ୍ରୟୋର୍ଯୋଗଃ ସୌମ୍ୟୋ ବାହୁର୍ଦିନାର୍ଦ୍ଧଜଃ ।୪୪।**

କର୍ଣ୍ଣ ବୃତ୍ତୀୟ ଅଗ୍ରା ଉତ୍ତର ଗୋଳରେ ରବି ଥିବା ବେଳେ ଯଦି ବିଷୁବ ଛାୟାଠାରୁ ବେଶୀ ହୁଏ ତାହା ହେଲେ ଉଭୟର ଅନ୍ତର ଫଳକୁ ଦକ୍ଷିଣବାହୁ କୁହାଯିବ । ଏହା ଦିନାର୍ଦ୍ଧରେ ୧୨ ଅଙ୍ଗୁଳ ଶଙ୍କୁ ମୂଳରୁ ଦକ୍ଷିଣକୁ ହେବ । ଏହି କର୍ଣ୍ଣ ବୃତ୍ତାଗ୍ରା ବିଷୁବ ଛାୟା (ପଳଭା) ଠାରୁ କମ୍ ହେଲେ ଏହାକୁ ପଳଭାରୁ ଅନ୍ତର କଲେ ଭୁଜ ହେବ ଏବଂ ଏହି ଭୁଜ (୧୨) ଶଙ୍କୁ ମୂଳରୁ ଉତ୍ତରକୁ ହେବ । ଏହା ଉତ୍ତର ଗୋଳର କଥା । ଦକ୍ଷିଣ ଗୋଳରେ ପଳଭା ଓ କର୍ଣ୍ଣବୃତ୍ତାଗ୍ରାର ଯୋଗରେ ବାହୁ ହୁଏ ଏବଂ ଏହା ସବୁ ବେଳେ ଉତ୍ତର ହିଁ ହୋଇଥାଏ ।

ସମମଣ୍ଡଳରେଖାୟାଂ ଯଦାବଶତ ଶଙ୍କୁଭା ।
ତଦାଭାକର୍ଣ୍ଣକାଳାଃସ୍ୟୁଃ ସମମଣ୍ଡଳଜା ଇତ ।୪୫।

ସମମଣ୍ଡଳଭାନଃ ସ୍ୟାଦ୍ରବୌ ଦକ୍ଷିଣ ଗୋଳଗେ ।
ଅକ୍ଷାଧିକେଽପମେ ସୌମ୍ୟେ ନ ସ୍ୟାତ୍ତତ୍ରାଲ୍ପକେ ଭବେତ୍ ।୪୬।

ଲମ୍ବଜ୍ୟାବଷୁବଦ୍ଭାଘ୍ନୀ ସୌମ୍ୟକ୍ରାନ୍ତିଜ୍ୟୟୋଦ୍ଧୃତା ।
ସମମଣ୍ଡଳକର୍ଣ୍ଣଃ ସ୍ୟାଦ୍ କମ୍ବା କ୍ଷଜ୍ୟାର୍କତାଡ଼ିତା ।୪୭।

ତତ୍କ୍ରାନ୍ତିଜ୍ୟୋଦ୍ଧୃତା କମ୍ବା ଦନାର୍ଦ୍ଧଶ୍ରବଣାହୃତା ।
ଅକ୍ଷପ୍ରଭାଦନାର୍ଦ୍ଧାଗ୍ରା—ହୃତା କର୍ଣ୍ଣଃ ସ ଏବ ହ ।୪୮।

ଅକ୍ଷକର୍ଣ୍ଣହୃତା ସୌମ୍ୟ କ୍ରାନ୍ତିଜ୍ୟାକ୍ଷ ପ୍ରଭୋଦ୍ଧୃତା ।
ସମମଣ୍ଡଳଶଙ୍କୁଃ ସ୍ୟାତ୍ତଦ୍ଭୁଜ୍ୟାବର୍ଗକାନ୍ତରମ ।୪୯।

ମୂଳଂ ଦୃଗ୍ଜ୍ୟାରବଘ୍ନା ସା ଶଙ୍କୁଭକ୍ତା ଭବେଦ୍ ପ୍ରଭା ।
ତ୍ରିଜ୍ୟା ସୂର୍ଯ୍ୟହୃତା ତେନ ଭକ୍ତା ପ୍ରାଗୁଦତା ଶ୍ରୁତଃ ।୫୦।

(ଏହି ଭୂଜହିଁ ମଧ୍ୟାହ୍ନ ଛାୟା ହୋଇଥାଏ । ଏହି ଶ୍ଳୋକରୁ ସ୍ପଷ୍ଟ ବୁଝା ପଡୁ ନାହିଁ ଯେ ଏଥିରେ ଦିଆ ଯାଇଥିବା ଅଗ୍ରା ମଧ୍ୟାହ୍ନ କାଳକ ଅଗ୍ରା କ ଯେ କୌଣସି ସମୟର ଅଗ୍ରା । ଏ ପର୍ଯ୍ୟନ୍ତ ମଧ୍ୟାହ୍ନ ଛଡ଼ା ଅନ୍ୟ ସମୟର ଅଗ୍ରା ସମ୍ବନ୍ଧେ କିଛି କେଉଁଠି କୁହାଯାଇ ନାହିଁ । ସୂର୍ଯ୍ୟ ସିଦ୍ଧାନ୍ତରେ ଅଛି ଯେ ଅଗ୍ରା ଦିନ ଭିତରେ ଯେ କୌଣସି ସମୟରେ ହୋଇପାରେ । )

ଛାୟା ପୂର୍ବାପର ରେଖାରେ (ପୂର୍ବପଶ୍ଚିମ ରେଖାରେ) ପଡ଼ିବା ବେଳେ ଅର୍ଥାତ୍ ସୂର୍ଯ୍ୟ ପୂର୍ବାପର ବୃତ୍ତରେ ଥିବାବେଳେ ଛାୟା, ଛାୟାକର୍ଣ୍ଣ, ସମୟ ସୂଚକ କୋଣ (ସୂର୍ଯ୍ୟର) ଏ ସବୁକୁ ପୂର୍ବାପର ବୃତ୍ତୀୟ ବୋଲି କୁହାଯିବା କଥା । ସୂର୍ଯ୍ୟର ଦକ୍ଷିଣ କ୍ରାନ୍ତିବେଳେ ବୃତ୍ତୀୟ ଛାୟା କଦାପି ହୋଇପାରେ ନାହିଁ । ସୂର୍ଯ୍ୟର ଉତ୍ତର କ୍ରାନ୍ତି ସ୍ଥାନୀୟ ଅକ୍ଷାଂଶ ( ଉତ୍ତର ଅକ୍ଷାଂଶ ) ଠାରୁ ବେଶି ହେଉଥିବା ପର୍ଯ୍ୟନ୍ତ ମଧ୍ୟ ସମବୃତ୍ତୀୟ ( ପୂର୍ବାପର ବୃତ୍ତୀୟ ) ଛାୟା ହୋଇପାରେ ନାହିଁ । କ୍ରାନ୍ତି ଉତ୍ତର ଓ ତାହା ପୁଣି ସ୍ଥାନୀୟ ଅକ୍ଷାଂଶଠାରୁ କମ୍ ହେଉଥିବା ଯାଏଁ ସମବୃତ୍ତୀୟ ଛାୟା ହୋଇପାରେ ।

* ସମମଣ୍ଡଳ ଶଙ୍କୁ ନା ।

ସମମଣ୍ଡଳୀୟ ଗ୍ରହ୍ୟାର କର୍ଣ୍ଣ = $\frac{\text{ପଳଭା} \times \text{ଜ୍ୟାଲ}}{\text{ଜ୍ୟାକ୍ଷା (ଉତ୍ତର)}}$ ——— ( ୧ )

$= \frac{\text{ଅକ୍ଷଜ୍ୟା} \times \text{୧୨}}{\text{ଜ୍ୟାକ୍ଷା(ଉତ୍ତର)}} = \frac{\text{ପଳଭା} \times \text{ଦ୍ୟନାର୍ଦ୍ଧ କର୍ଣ୍ଣ}}{\text{ଦ୍ୟନାର୍ଦ୍ଧ କାଳିକ କର୍ଣ୍ଣବୃତ୍ତାଗ୍ରା}}$

ସମମଣ୍ଡଳ ଶଙ୍କୁ $= \frac{\text{କ୍ରାନ୍ତିଜ୍ୟା (ଉତ୍ତର)} \times \text{ପଳକର୍ଣ୍ଣ}}{\text{ପଳଭା}}$

$\sqrt{\text{ତ୍ରି}^2 - \text{ସମମଣ୍ଡଳଶଙ୍କୁ}^2} = \text{ଦୃଗ୍‌ଜ୍ୟା}$

$\frac{\text{ଦୃଗ୍‌ଜ୍ୟା} \times \text{୧୨}}{\text{ସମମଣ୍ଡଳ ଶଙ୍କୁ}} = \text{ସମମଣ୍ଡଳ ଛାୟା}$

$\frac{\text{ତ୍ରିଜ୍ୟା} \times \text{୧୨}}{\text{ସମଶଙ୍କୁ}} = \text{ସମମଣ୍ଡଳ କର୍ଣ୍ଣ}$

ସୂର୍ଯ୍ୟ ସିଦ୍ଧାନ୍ତେ—

**ସ ଶଙ୍କୁଃ ସ୍ୱାକ୍ଷଜୀବାଘ୍ନ ପରକାନ୍ତଜ୍ୟଯା ହୃତଃ ।ଇତା**
**ଫଳଛାୟାର୍କବାହୁଜ୍ୟା ତଦ୍ଧନୁର୍ଭୁଜକେନ୍ଦ୍ରକମ୍ ।୬୧।**

**ତତଃ ପୂର୍ବବଦାନେୟୌଛାୟାର୍କସ୍ଥ ଟଭାସ୍କରୌ ।**
**ଅଥୋଚ୍ୟତେ କୋଣଶଙ୍କୋଃ ସିଦ୍ଧୟେଽଗ୍ରଜ୍ୟକାଦକମ୍ ।୬୨।**

ସୂର୍ଯ୍ୟ ସିଦ୍ଧାନ୍ତେ—

**ସ୍ୱକ୍ରାନ୍ତିଜ୍ୟା ତ୍ରିଜୀବାଘ୍ନୀ ଲମ୍ବଜ୍ୟାପ୍ତାଗ୍ରମୌର୍ବିକା ।**
**ସ୍ୱେଷ୍ଟକର୍ଣ୍ଣହତା ଭକ୍ତା ତ୍ରିଜ୍ୟୟାଗ୍ରାଙ୍ଗୁଳାମ୍ବିକା ।୬୩।**

$\frac{\text{ସମଶଙ୍କୁ} \times \text{ଜ୍ୟା ଅକ୍ଷ}}{\text{ପରମକ୍ରାନ୍ତିଜ୍ୟା}}$ = ସାୟନ ରବି ଭୁଜ ଜ୍ୟା । ଏହାର ଚାପ ନେଇ ଆସିଲେ ତାହା ରବିର ଅଂଶାଦ୍ୟମାନ ହୁଏ । ଏହା କନ୍ତୁ ସବୁବେଳେ ୩ ରାଶିରୁ କମ୍ ହିଁ ଆସିବ । ଏହା ଅବଶ୍ୟ ସାୟନ ସ୍ପଷ୍ଟ ରବି । ତେଣୁ ଏହି ଆଗତ ରବି, ବୃତ୍ତର କେଉଁ ପାଦରେ ହେବ ତାହା ପୂର୍ବ ରୀତରୁ ଜଣାଯାଇପାରିବ ।

କୋଣଶଙ୍କୁ ଆଣିବା ନିମନ୍ତେ ଅଗ୍ରା ଆଦି କେତେକ ଜିନିଷରେ କଥା ଏଠାରେ କୁହା-ଯାଉଛି । ରବି କୋଣ ବୃତ୍ତରେ ଥିବା ବେଳେ ଯେଉଁ ଶଙ୍କୁ ହେବ ତାହାକୁ କୋଣଶଙ୍କୁ କହନ୍ତି । ଝନ୍ଦଗକୁ କୋଣ କୁହାଯାଏ । ତେଣୁ କୋଣବୃତ୍ତ ବାସ୍ତବରେ ଦୁଇ ହେଲେ ମଧ୍ୟ ଗୃହ ବୋଲି ମନେ କରାଯାଇ ଥାଏ ।

$$\frac{\text{କ୍ରାଜ୍ୟା} \times \text{ତ୍ରିଜ୍ୟା}}{\text{ଲଜ୍ୟା}} = \text{ମଧ୍ୟ ଅଗ୍ରା}$$

$$\frac{\text{ମଧ୍ୟ ଅଗ୍ରା} \times \text{ଇ.କର୍ଣ୍ଣ}}{\text{ତ୍ରି ଜ୍ୟା}} = \text{କର୍ଣ୍ଣ ବୃତ୍ତାଗ୍ରା}$$

ଖମଧ୍ୟାଦ୍ କୋଣରେଖାସ୍ଥସୂର୍ଯ୍ୟାଦ୍ କ୍ଷିତଜଗାମିନୀ ।
କୋ.ଟିଜ୍ୟା କୋଣଶଙ୍କଶ୍ଚୈବ ନୋଚ୍ୟତେ ତଦ୍‌ବଲୋମଗା ।୫୪।

ଯ ବଦକ୍ତ ଯା ଛାୟା କୋଣଛାୟେତି ସା ମତା ।
ସୌମ୍ୟାପମେ ସ୍ୱାକ୍ଷସମେ ନ ସ୍ୟାତାଂ କୋଣଶଙ୍କୁଭେ ।୫୫।

ଯଦ ମଧ୍ୟାହ୍ନଗୋ ଭାନୁର୍ଦକ୍ଷିଣସ୍ୟାଂ ନତସ୍ତଦା
କୋଣଶଙ୍କୁସ୍ତଦାଗ୍ନେୟ୍ୟାଂ ନୈଋତ୍ୟାଂ ପ୍ରାକ୍‌ପରାହ୍ନୟୋଃ ।୫୬।

ସ ନତଶ୍ଚେଦୁତ୍ତରସ୍ୟାଂ ତଦେଶାନମରୁଦ୍ଦିଶୋଃ ।
କୋଣଶଙ୍କୁପ୍ରଭାକର୍ଣ୍ଣୌ କୋଣାଖ୍ୟଂ ସାଧ୍ୟତାଂ ନତମ୍ ।୫୭।

ତ୍ରିଜ୍ୟାବର୍ଗାର୍ଦ୍ଧତୋଽଗ୍ରଜ୍ୟା ବର୍ଗୋନାଦ୍ଦ୍ୱାଦଶାହତାତ୍ ।
ପୁନର୍ଦ୍ୱାଦଶନିଘ୍ନାଚ୍ଚ ଲଭ୍ୟତେ ଯତ୍ ଫଳଂ ବୁଧୈଃ ।

ଲବ୍ଧଂ ଉକ୍ତରଣୀ ନାମ କର୍ମଭୂମୌ ନିଧାୟତାମ୍ ।
ପୁନରଗ୍ରଜ୍ୟା—କାର୍କଘ୍ନ-ବିଷୁବଛାୟା-ତାଡ଼ିତା ।୫୯।

ଦ୍ୱ୍ୟଦ୍ର୍ୟାଢ଼୍ୟନାକ୍ଷଭବର୍ଗୋଣୋଦ୍ଧୃତାକ୍ଷଫଳଂ ଭବେଦ୍ଧା
ତଦ୍ବର୍ଗକରଣୀଯୋଗାନ୍ମୂଳମକ୍ଷଫଳାନ୍ୟଯୁକ୍ ।୭୦।

ସୂର୍ଯ୍ୟ ସିଦ୍ଧାନ୍ତେ—

କ୍ରମତଃ କୋଣଶଙ୍କୁଃ ସ୍ୟାଦକ୍ଷିଣୋତ୍ତରଗୋଳୟୋଃ ।
ତତ୍ତ୍ରିଜ୍ୟାବର୍ଗବିଶ୍ଳେଷାନ୍ମୂଳଂ ଦୃଗ୍‌ଜ୍ୟାଭିଧୀୟତେ ।୭୧।

ଆକାଶ ମଧ୍ୟବିନ୍ଦୁରୁ (ଖ ସ୍ୱସ୍ତିକ) ବିଦିଗ୍ ବିନ୍ଦୁ ଦେଇ ଯେଉଁ ଦୁଇଟି ବୃତ୍ତ ହୁଏ ତାହାହିଁ ଚାରି ବିଦିଗ୍ (କୋଣ) ଦେଇ ହୋଇଥାଏ । ଏହାକୁ ହିଁ କୋଣବୃତ୍ତ କହନ୍ତି । ସୂର୍ଯ୍ୟ ଏହି କୋଣ ବୃତ୍ତରେ ଥିବାବେଳେ କୋଣବୃତ୍ତ ହିଁ ଦୃଗ୍ (ଦର୍ଶନ) ବୃତ୍ତ ଏବଂ ଖ ସ୍ୱସ୍ତିକଠାରୁ ରବି ପର୍ଯ୍ୟନ୍ତ ଏହି ବୃତ୍ତୀୟ ଅଂଶହିଁ ସେତେବେଳର ରବିନତାଂଶ । ରବିଠାରୁ ସ୍ୱଦିଗ୍‌ବଳୟ (କ୍ଷିତିଜ) ଉପରେ ଯେଉଁ ଲମ୍ବ ହୁଏ ତାହାହିଁ ତାହାର ଉନ୍ନତଜ୍ୟା ବା କୋଣଶଙ୍କୁ । ଏହା ବାସ୍ତବରେ କୋଣବୃତ୍ତୀୟ ନତ କୋଟିଜ୍ୟା । ସୂର୍ଯ୍ୟର ବିପରୀତ ଦିଗରେ ୧୨ ଅଂଶ ଶଙ୍କୁର ଯେଉଁ ଛାୟା ହୁଏ ତାହାକୁ କୋଣ ଛାୟା କହିବାକୁ ହେବ । ଉତ୍ତର ରବିକ୍ରାନ୍ତି ନିଜର ଅକ୍ଷାଂଶ ସମାନ ହେଲେ କୋଣଶଙ୍କୁ ବା କୋଣଶଙ୍କୁର ଛାୟା ନାହିଁ ।

ମଧ୍ୟାହ୍ନ ସୂର୍ଯ୍ୟ ଦକ୍ଷିଣକୁ ନତଥିଲେ ପୂର୍ବ ଓ ପଶ୍ଚିମ କପାଳରେ ଏହି କୋଣଶଙ୍କୁ ଯଥାକ୍ରମେ ଆଗ୍ନେୟ ଓ ନୈଋତ ଦିଗରେ ହୋଇଥାଏ । ମାତ୍ର ମଧ୍ୟାହ୍ନ ସୂର୍ଯ୍ୟ ଉତ୍ତର—ନତ ଥିଲେ ପୂର୍ବ ଓ ପଶ୍ଚିମ କପାଳରେ କୋଣଶଙ୍କୁ ଯଥାକ୍ରମେ ଈଶାନ୍ୟ ଓ ବାୟବ୍ୟ ଦିଗ (କୋଣ) ର ହୋଇଥାଏ । ଏହାପରେ କୋଣ ବୃତ୍ତୀୟ ଶଙ୍କୁ, ଛାୟା ଓ କର୍ଣ୍ଣ ସାହାଯ୍ୟରେ କୋଣବୃତ୍ତୀୟ ନତାଂଶ ସାଧନ କରିବାକୁ ହେବ ।

$$\frac{୧୨^2\left(\frac{ତ୍ରି^2}{୨}-ଅ^2\right)}{\left(\frac{୧୨^2}{୨}+ପ^2\right)}=\text{କରଣୀ}$$

$$\frac{୧୨\times ଅ\times ପ}{୭୨+ପ^2}=\text{ଅକ୍ଷଫଳ ବା ଫଳ}$$

$$\sqrt{\text{କରଣୀ}+ଫ^2}=ମୂ$$

ଏହି ମୂଳକୁ ଦକ୍ଷିଣ ଓ ଉତ୍ତର ଗୋଲାନୁଯାୟୀ ଅକ୍ଷ ଫଳରେ ଯଥାକ୍ରମେ ବିଯୁକ୍ତ ଓ ଯୁକ୍ତ କଲେ ଦକ୍ଷିଣ ଓ ଉତ୍ତର କୋଣଶଙ୍କୁ ହୋଇଥାଏ ।

$\sqrt{ତ୍ରି'^{}-କୋଣ'}$ = କୋଣଦୃଗ୍‌ଜ୍ୟା

ସ୍ୱଶଙ୍କୁନା ବିଭଜ୍ୟାପ୍ତେ ଦୃକ୍‌ତ୍ରିଜ୍ୟେ ଦ୍ୱାଦଶାହତେ ।
ଛାୟାକର୍ଣ୍ଣୌ ତୁ କୋଣେଷୁ ଯଥାସ୍ୱଂ ଦେଶକାଳୟୋଃ ।ଇତ ।୭୨।

$$\frac{\text{ଦୃଗ୍‌ଜ୍ୟା} \times ୧୨}{\text{କୋଣଶଙ୍କୁ}} = \text{କୋଣ ଛାୟା}$$

$$\frac{\text{ତ୍ରିଜ୍ୟା} \times ୧୨}{\text{କୋଣଶଙ୍କୁ}} = \text{କର୍ଣ୍ଣ}$$

ସଂସ୍କୃତସ୍ୟାୟନାଂଶୈର୍ଯା ଭସ୍ୱତୋ ବାହୁମୌର୍ବିକା ।
ସାନ୍ତ୍ୟାପକମଜୀବାଘ୍ନୀ ଲମ୍ବଜ୍ୟାପ୍ତୋଦୟଜ୍ୟକା ।୭୩।

$$\text{ଔଦୟିକ ଅଗ୍ରା} = \frac{\text{ସାୟନରବିକେନ୍ଦ୍ରଜ୍ୟା} \times \text{ପରମକ୍ରାନ୍ତିଜ୍ୟା}}{\text{ଲମ୍ବଜ୍ୟା}}$$

ଯତ୍ତୋଦୟଜ୍ୟା ଭୂଗ୍ରମସିଦ୍ଧାସ୍ତବାୟନାନ୍ତଗଃ ।
ବଦଷ୍ଟଦୟମସ୍ତଞ୍ଚ ଯାତ୍ୟର୍କୋ ବିଷୁବେ ପୁନଃ ।୭୪।

ସର୍ବତ୍ର ପୂର୍ବାପରୟୋଃ ସ ମେର୍ବୋଃ ପରତୋ ଭ୍ରମନ୍ ।
କୋଣେସ୍ତେ ପ୍ରାଙ୍ନତଂ ଯାବତ୍ତାବତ୍ପ୍ରତ୍ୟଙ୍ନତଂ ରବୌ ।୭୫।

ସମଦିବସରେ ଯେତେବେଳେ ସାୟନ ସୂର୍ଯ୍ୟର କେନ୍ଦ୍ରଭୂଜଜ୍ୟା ୨୪୩୧ ହୁଏ, (୪୫°ର ଜ୍ୟା = ୨୪୩୧) ସେତେବେଳେ ଅୟନାନ୍ତରେ ରହି ରବି କୋଣ ବୃତ୍ତରେ ଉଦୟ ଓ ଅସ୍ତ ହୋଇଥାନ୍ତି । ରବି ବିଷୁବରେ ରହିବା ବେଳେ ମେରୁ ସହିତ ସମସ୍ତ ଦେଶରେ ପୂର୍ବାପର ବୃତ୍ତରେ ରହିବା ହେତୁ ପୂର୍ବରେ କୋଣ ବୃତ୍ତରେ ତାହାର ନତାଂଶ ଯେତେ ପଶ୍ଚିମରେ ମଧ୍ୟ ତଦନ୍ତର କୋଣ ବୃତ୍ତରେ ସେତିକ ନତାଂଶ ହେବ ।

ଛାନ୍ତକଘଟିକାଗ୍ରାଦ୍ୟଂ ସର୍ବଂ ପୂର୍ବଂ ଦନାର୍ଦ୍ଧକାତ୍ ।
ଘଟେନାଃ ସଂସାଧ୍ୟ ତତ୍କାଳପ୍ରଭବାତ୍ ପୁନରନୟେତ୍ ।୭୬।

ଶାନ୍ତ, ଛାୟା, ସମୟ, ଅଗ୍ରା, ଆଦ୍ୟ ମଧ୍ୟାହ୍ନ ସୂର୍ଯ୍ୟରୁ ପ୍ରଥମେ ନେଇ ଆସିବ । ଏ ଗୁଡ଼ିକ ପୁନଃ ପୁନଃ (ଅସକୃତ୍) ଆଣି ପର ପର ଦୁଇଟି ଫଳ ଏକା ହେବା ଦେଖିଲେ ତାହାହିଁ ଠିକ୍ ଶାନ୍ତ ଆଦ୍ୟ ବୋଲି ଗ୍ରହଣ କରି ନେବାକୁ ହେବ । ପ୍ରଥମେ ଦିନାର୍ଦ୍ଧ ସମୟ ସ୍ଥୂଳ ଓ ତାହା କ୍ରମେ କ୍ରମେ ସୂକ୍ଷ୍ମ ହେଉଥିବାରୁ ଏପରି ବାରମ୍ବାର ଆଣିବାର ଫଳ ଠିକ୍ ହୋଇଥାଏ ।

**ଅଭୀଷ୍ଟକାଳତସ୍ତାୟା ଛାୟାତଃ କାଳ ଉଚ୍ୟତେ ।**
**ଯଜ୍ଜନ୍ମାନ୍ତନ୍ଯଜ୍ଞାଦୌ ସଲଗ୍ନାଃ ସୂର୍ଯ୍ୟଗ୍ରହାଃ ସ୍ଫୁଟାଃ ।୭୭।**

ବର୍ତ୍ତମାନ ସମୟରୁ ଛାୟା ଓ ଛାୟାରୁ ସମୟ ଅଣା ଯାଉଅଛି । ଏହା ଜାଣିବା ଦ୍ୱାରା ଜନ୍ମ ଓ ଯଜ୍ଞାଦି ସମୟରେ ଲଗ୍ନ ଓ ଗ୍ରହସ୍ଫୁଟ କରି ହେବ ।

**ଇଷ୍ଟକାଳନତାସୁଭ୍ୟୋ ଯୋତ୍କ୍ରମଜ୍ୟା ପ୍ରସାଧ୍ୟତେ ।**
**ସା ନତୋତ୍କ୍ରମଜୀବେତ ଜ୍ଞେୟା ବାସରଭାଗୟୋଃ ।୭୮।**

ଅଭୀଷ୍ଟ ନତକାଳରୁ ଉତ୍କ୍ରମ ଜ୍ୟା ଅଣ । ପୂର୍ବାହ୍ନ ଓ ଅପରାହ୍ନ—ଉଭୟ ଦିନ ଭାଗର ତାହାହିଁ ନତୋତ୍କ୍ରମଜ୍ୟା ହୋଇଥାଏ ।

**ଦ୍ୱିଜ୍ୟା ଚରଜ୍ୟାହୀନାଢ୍ୟା ଦକ୍ଷିଣୋତ୍ତରଗୋଳୟୋଃ ।**
**ଅନ୍ତ୍ୟା ନତୋତ୍କ୍ରମଜ୍ୟୋନା ସୋନ୍ନତଜ୍ୟାଭିଧୀୟତେ ।୭୯।**

ଉତ୍ତର ଗୋଲରେ ତ୍ରିଜ୍ୟା ଓ ଚରଜ୍ୟାର ଯୋଗ ଏବଂ ଦକ୍ଷିଣ ଗୋଲରେ ସେ ଦୁହିଁଙ୍କ ବିୟୋଗ ଅନ୍ତ୍ୟା ହୁଏ । ଏହି ଅନ୍ତ୍ୟାରୁ ନତ ଉତ୍କ୍ରମଜ୍ୟା ବାଦ ଦେଲେ ଉନ୍ନତଜ୍ୟା ହୁଏ । ଏହାର ଅନ୍ୟ ନାମ ଇଷ୍ଟ ଅନ୍ତ୍ୟା ।

**ସ୍ୱାହୋରାତ୍ରାର୍ଦ୍ଧକର୍ଣ୍ଣେନ ଗୁଣିତା ସା ତ୍ରିଜୀବୟା ।**
**ବିଭକ୍ତା ଚେଦ୍‌ଭବେଚ୍ଛେଦୋ ଲମ୍ବଜ୍ୟାଘ୍ନଃ ସ ଭାଜିତଃ ।୮୦।**

**ତ୍ରିଭଜ୍ୟୟା ଭବେଚ୍ଛଙ୍କୁସ୍ତଦ୍‌ବର୍ଗପରିଶୋଧିତାତ୍ ।**
**ତ୍ରିଜ୍ୟାବର୍ଗାତ୍ ପଦଂ ଦୃଗ୍‌ଜ୍ୟା ଛାୟାକର୍ଣ୍ଣୌ ତୁ ପୂର୍ବବତ୍ ।୮୧।**

ଏହି ଇଷ୍ଟ ଅନ୍ତ୍ୟାକୁ ସେହି ଦିନର ଦ୍ୟୁଜ୍ୟାରେ ଗୁଣି ତ୍ରିଜ୍ୟାରେ ହରିଲେ ଛେଦ ବା ହୃତି ଅର୍ଥାତ୍ ଇଷ୍ଟ ହୃତି ହୁଏ । ଏହି ଇଷ୍ଟ ହୃତିକୁ ଲମ୍ବଜ୍ୟାରେ ଗୁଣି ତ୍ରିଜ୍ୟାରେ ହରିଲେ ଶଙ୍କୁ (ମହାଶଙ୍କୁ) ହୁଏ । ତ୍ରିଜ୍ୟା ବର୍ଗରୁ ଏହି ଶଙ୍କୁବର୍ଗ ଫେଡ଼ି ମୂଳ ନେଲେ ଦୃଗ୍‌ଜ୍ୟା ହୁଏ । ଏହି ଦୃଗ୍‌ଜ୍ୟାରୁ ପୂର୍ବପରି ଛାୟା ଓ କର୍ଣ୍ଣ ଅଣାଯାଏ ।

ସୂର୍ଯ୍ୟସିଦ୍ଧାନ୍ତେ—

**ଅଭୀଷ୍ଟଛାୟୟାଭ୍ୟସ୍ତା ତ୍ରିଜ୍ୟା ତତ୍କର୍ଣ୍ଣ ଭାଜିତା ।**
**ଦୃଗ୍‌ଜ୍ୟା ତଦ୍‌ବର୍ଗସଂଶୁଦ୍ଧା ତ୍ରିଜ୍ୟା ବର୍ଗାଚ ଯତ୍ପଦମ୍ ।୭୨।**

**ଶଙ୍କୁଃ ସ ତ୍ରିଭଜୀବାଘ୍ନଃ ସ୍ୱଲମ୍ବଜ୍ୟା-ବଭାଜିତଃ ।ଇତା**
**କ୍ଷଂବାକ୍ଷ କର୍ଣ୍ଣଗୁଣିତଃ ସୂର୍ଯ୍ୟାସ୍ତଶ୍ଚେଦସଂଜ୍ଞକଃ ।୭୩।**

**ସ ତ୍ରିଜ୍ୟାଘ୍ନୋ ଦ୍ୟୁଜୀବାପ୍ତ ଉନ୍ନତଜ୍ୟା ତୟୋନତା**
**ସ୍ୱାନ୍ତ୍ୟା ନତୋତ୍କ୍ରମଜ୍ୟା ସ୍ୟାତ୍ତସ୍ୟାଶ୍ଚାପଂ ନତାସବଃ ।୭୪।**

**ସ୍ୱବାସରଦଲପ୍ରାଣାସ୍ତଦୂନାଶ୍ଚୋନ୍ନତାସବଃ**
**ରସୋଦ୍ଧୃତା ଘନାଡ୍ୟଃ ସ୍ୟୁ ପ୍ରାକ୍‌ପଶ୍ଚିମକପାଲୟୋଃ ।୭୫।**

ଛାୟାରୁ ସମୟ ଏହିପରି ଜଣାଯାଏ—ତ୍ରିଜ୍ୟାକୁ ଇଷ୍ଟ ଛାୟାରେ ଗୁଣି ଛାୟା କର୍ଣ୍ଣରେ ହରିଲେ ଦୃଗ୍‌ଜ୍ୟା ହୁଏ । ତ୍ରିଜ୍ୟାବର୍ଗରୁ ଦୃଗ୍‌ଜ୍ୟା ବର୍ଗକୁ ବାଦ ଦେଇ ତାହାର ମୂଳ ନିଅ । ତାହା ମହାଶଙ୍କୁ ହେବ । ଏହି ଶଙ୍କୁକୁ ତ୍ରିଜ୍ୟାରେ ଗୁଣି ଲମ୍ବଜ୍ୟାରେ ହରିଲେ ଅଥବା ପଳଭା କର୍ଣ୍ଣରେ ଗୁଣି ୧୨ରେ ହରିଲେ ଫଳ ହୃତି ହୋଇଥାଏ । ଏହି ହୃତିକୁ ତ୍ରିଜ୍ୟାରେ ଗୁଣି ଦ୍ୟୁଜ୍ୟାରେ ହରିଲେ ଲବ୍ଧି ଉନ୍ନତଜ୍ୟା ହୁଏ । ଇଷ୍ଟ ଅନ୍ତ୍ୟାରୁ ଏହି ଉନ୍ନତଜ୍ୟାକୁ ଫେଡ଼ିଲେ ଫଳ ନତଉତ୍କ୍ରମଜ୍ୟା ହୁଏ । ଏହାର ଚାପ—କଳା କଲେ ନତାସୁ ହେବ । ଏହି ନତକାଳକୁ ଦିନାର୍ଦ୍ଧରୁ ଫେଡ଼ିଲେ ଉନ୍ନତ ଅସୁ ହୁଏ । ଏହାକୁ ୬ରେ ହରିଲେ ପୂର୍ବ କପାଳରେ (ପୂର୍ବାର୍ଦ୍ଧରେ) ଗତ ଘନାଡ଼ୀ ଓ ପଶ୍ଚିମ କପାଳରେ (ଅପରାହ୍ଣରେ) ଗମ୍ୟ ଘନାଡ଼ୀ ଅର୍ଥାତ୍ ସୂର୍ଯ୍ୟ ଅସ୍ତ ହେବାକୁ କେତେ ଘନାଡ଼ୀ ଅଛି ଜଣା ପଡ଼ିବ ।

**ପ୍ରଦର୍ଶ୍ୟତେ ବଶେଷୋଽତ୍ର ଯଦ୍ୟଲ୍ପାସ୍ତବଂଶତେଃ ।**
**ଭବେନ୍ନତୋତ୍କ୍ରମଜ୍ୟା ତଦନ୍ତ୍ୟାବର୍ଗାଦ୍ ପରତ୍ୟଜେତ୍ ।୭୬।**

**ଉନ୍ନତଜ୍ୟାକୃତଂ ଶେଷାନ୍ମୂଳଂ ତ୍ରିଜ୍ୟାନ୍ତ୍ୟଜୀବୟୋଃ ।**
**ଯୋଗାର୍ଦ୍ଧେନ ହୃତଂ ଭଜ୍ୟାଦନ୍ତ୍ୟୟା ସ୍ୟୁର୍ନତାସବଃ ।୭୭।**

**ନତୋତ୍କ୍ରମଗୁଣସ୍ତ୍ରିଜ୍ୟାଧିକଶ୍ଚେତ୍ତ୍ରିଜ୍ୟୟୋଜ୍‌ଝିତାଃ ।**
**ଶେଷାତ୍ କ୍ରମଗୁଣାଚ୍ଚାପସ୍ତ୍ରିଜ୍ୟାଚ୍ଚାପାନ୍ୱିତୋଽସବଃ ।୭୮।**

**ଏବଂନତାସବସ୍ତ୍ରିଜ୍ୟା ଧନୁଷୋ ଯଦ ଚାଧିକାଃ ।**
**ତଦା ତଦୂନତାଃ ଶେଷାତ୍ କ୍ରମଜ୍ୟା ତ୍ରିଜ୍ୟୟାନ୍ୱିତା ।୭୯।**

**ସ୍ୟାନ୍ନତୋତ୍କ୍ରମଜୀବାଥ ପ୍ରାକ୍‌ସିଦ୍ଧା ଯେ ନତାସବଃ ।**
**ସ୍ୱାହୋରାତ୍ରାସୁଗୁଣିତାଃ ସୂକ୍ଷ୍ମାଶ୍ଚନ୍ଦ୍ରାସୁଭିର୍ହୃତାଃ ॥୮୦॥**

ନତ ଉତ୍କ୍ରମଜ୍ୟା ୨୭ରୁ କମ୍ ହେଲେ ସ୍ୱତନ୍ତ୍ର ପ୍ରକାରେ ତାହାର କାମ କରିବାକୁ ହେବ । ସେହିକଥା ଏଠାରେ କୁହାଯାଉଛି—ଉନ୍ନତଜ୍ୟା ବର୍ଗରୁ (ଇଷ୍ଟ ଅନ୍ତ୍ୟା ବର୍ଗକୁ) ଅନ୍ତ୍ୟାବର୍ଗକୁ ବାଦ ଦେଇ ଶେଷର ମୂଳକୁ ତ୍ରିଜ୍ୟା ଓ ଅନ୍ତ୍ୟାର ଯୋଗାର୍ଦ୍ଧରେ ଗୁଣି ଅନ୍ତ୍ୟାରେ ହରିବା ଫଳ ହେବ ନତାସୁ ।

ନତ ଉତ୍କ୍ରମଜ୍ୟା ତ୍ରିଜ୍ୟାରୁ ବେଶି ହେଲେ ସେଥିରୁ ତ୍ରିଜ୍ୟା ବାଦ ଦେଇ ଶେଷକୁ ଧରି (କ୍ରମଜ୍ୟା ବୋଲି ଜାଣି) ସେଥିରୁ ଚାପ ବାହାର କରିବ । ଏଥିରେ ତ୍ରିଜ୍ୟା ଚାପକୁ ମିଶାଇଲେ (୫୪୦୦) ନତ ଅସୁ ଆସିଯିବ ।

ନତ ଅସୁ ପୁଣି ୫୪୦୦ ଅସୁରୁ ଅଧିକ ହେଲେ ନତାସୁରୁ ୫୪୦୦ ଅସୁ ଫେଡ଼ି ଅବଶେଷରେ କ୍ରମଜ୍ୟା ସାଧିବ । ସେଥିରେ ତ୍ରିଜ୍ୟା ଯୋଗକଲେ ନତଉତ୍କ୍ରମଜ୍ୟା ହୁଏ ।

ନତ ଅସୁକୁ ନିଜ ନିଜ ଅହୋରାତ୍ରାସୁରେ ଗୁଣି ୨୧୬୦୦ରେ ହରିଲେ ସୂକ୍ଷ୍ମ ନତାସୁ ହୋଇଥାଏ ।

**ଛାୟାର୍କସ୍ୟାପ୍ୟଥାଗ୍ରାତଃ ସମମଣ୍ଡଳଶଙ୍କୁତଃ**
**ବକ୍ଷ୍ୟାମ୍ୟାନୟନଂ ସ୍ୱାଗ୍ରାଗୁଣିତା ଲମ୍ବମୌର୍ବିକା ॥୮୧॥**

**ଇଷ୍ଟକର୍ଣ୍ଣାଙ୍ଗୁଳୈର୍ଭକ୍ତା କ୍ରାନ୍ତିଜ୍ୟାତୋ ଭୁଜଜ୍ୟକା**
**ତତଃ ପ୍ରାଗ୍‌ବପୂର୍ବଦୈଶ୍ଚାୟା ସୂର୍ଯ୍ୟାଂଶୈ-ଶ୍ଚାୟନୈଃ ସ୍ଫୁଟଃ ॥୮୨॥**

**ତ୍ରିଭଜୀବାର୍କ-ଗୁଣିତା ସମବୃତ୍ତଶ୍ରବୋହୃତା**
**ସମମଣ୍ଡଳଶଙ୍କୁଃ ସ୍ୟାତ୍ ସୋଽଭ୍ୟସ୍ତଃ ସ୍ୱାକ୍ଷଜୀବୟା ॥୮୩॥**

**ପରମାପକ୍ରମଜ୍ୟାପ୍ତଃ ଫଳଂ ଭାନୋର୍ଭୁଜଜ୍ୟକା**
**ତତଃ କେନ୍ଦ୍ରଂ ତତଶ୍ଚାୟା ରବେଃ ପ୍ରାଗ୍‌ବଦସୌ ସ୍ଫୁଟଃ ॥୮୪॥**

ବର୍ତ୍ତମାନ କର୍ଣ୍ଣ ବୃତ୍ତୀୟ ଅଗ୍ରା ଓ ସମମଣ୍ଡଳ ଶଙ୍କୁରୁ ସାୟନ ରବି ଉପରେ ଅଣାଯାଏ ତାହା କହିବ । ଲମ୍ବଜ୍ୟାକୁ ଇଷ୍ଟକର୍ଣ୍ଣ ବୃତ୍ତାଗ୍ରାରେ ଗୁଣି ଇଷ୍ଟଛାୟା କର୍ଣ୍ଣାଙ୍ଗୁଳରେ ଭାଗ ଦେଲେ କ୍ରାନ୍ତିଜ୍ୟା ହୁଏ । ଏହାକୁ ପୁଣି ତ୍ରିଜ୍ୟାରେ ଗୁଣି ପରମ କ୍ରାନ୍ତିଜ୍ୟାରେ ହରିଲେ ରବିର ସାୟନ ଭୁଜଜ୍ୟା ହୁଏ । ଏଥିରୁ ବର୍ଷର କେଉଁ ତିନ ରାଶି ମଧ୍ୟରେ ସାୟନ ରବି ଅଛି ତାହା ଜଣାଯିବା ପରେ ସେଥିରେ ଅୟନାଂଶକୁ ବିପରୀତ ସଂସ୍କାର କଲେ ନିରୟଣ ସ୍ଫୁଟରବି ହେବ ।

ନିଜ୍ୟାକୁ ୧୨ରେ ଗୁଣି ସମମଣ୍ଡଳୀୟ ଛାୟା କର୍ଣ୍ଣରେ ହରିଲେ ଲବ୍ଧ ସମଶଙ୍କୁ ହୁଏ । ଏହି ସମଶଙ୍କୁକୁ ସ୍ୱଦେଶୀୟ ଅକ୍ଷଜ୍ୟାରେ ଗୁଣି ପରମକ୍ରାନ୍ତିଜ୍ୟାରେ ହରିଲେ ଫଳ ସାୟନ ରବିର ଭୁଜଜ୍ୟା ହୁଏ । ଏଠାରେ ମଧ୍ୟ ରବି କେଉଁ ଭିନ୍ନ ରାଶିରେ (ବୃତ୍ତ ପାଦରେ) ଅଛି ଜାଣି ସେଥିରେ ବିପରୀତ ଅୟନାଂଶ ସଂସ୍କାର କଲେ ସ୍ଫୁଟ ରବି ହେବ ।

**ଛାୟାଭ୍ରାନ୍ତିପଥୋ ନିରୂପ୍ୟତ ଇହ ପ୍ରାକ୍ କୈସମେଭୂତଳେ**
**ବୃତ୍ତେ ଯତ୍ତଳଶଙ୍କୁନା ନ ଘଟତେ ସର୍ବତ୍ର ତତ୍ସର୍ବଦା ।**
**ଗୋଳେ ତଦ୍‌ଘଟନା ଭବିଷ୍ୟତି ଯତସ୍ତସ୍ମିନ୍ନଯ୍ୟା ବକ୍ଷ୍ୟତେ**
**ରାତ୍ରେଃ କାଳ ଇହୋଚ୍ୟତେଽଥ ଭଯୁତୌ ବକ୍ତବ୍ୟ ତାରାଧ୍ରୁବୈଃ ।୮୪।**

ପ୍ରାଚୀନାଚାର୍ଯ୍ୟମାନେ କହିଛନ୍ତି ଯେ ସମଧରାତଳରେ ଶଙ୍କୁର ଛାୟାଗ୍ର ଗୋଟିଏ ବୃତ୍ତ ପଥରେ ବରାବର ଗତିକରେ । ମାତ୍ର ଏହା ସବୁ ସମୟରେ ଏବଂ ସବୁ ସ୍ଥଳରେ ଠିକ୍ ନୁହେଁ । ଶଙ୍କୁ ଛାୟାଗ୍ରର ଗତିପଥ କଥା (ଗୋଲଧ୍ୟାୟରେ) ଅନ୍ୟ ପରିଚ୍ଛେଦରେ କୁହାଯିବ ।

**ମଧ୍ୟେବ୍ୟୋମ ଗତୈଷ୍ୟ-ଦୃକ୍ଷବଶତୋ ନିର୍ଣ୍ଣିତ୍ୟ ମଧ୍ୟାଂ ତନୁଂ**
**ତାଂ ସଂସ୍କୃତ୍ୟ ଚଳାଂଶକୈର୍ଗତଘଟୀରାନୀୟ ରାତ୍ର୍ୟର୍ଦ୍ଧଜାତ୍ ।**
**ସୂର୍ଯ୍ୟାକ୍ରାନ୍ତ-ଚଳାଂଶଃସଂସ୍କୃତ-ଗୃହାଦ୍ଭୋଗ୍ୟାଘଟୀର୍ମଧ୍ୟଜା—**
**ସ୍ତଦ୍ୟୁଗ୍ମାନ୍ତରଭୁକ୍ତ-ମଧ୍ୟଭଘଟୀଃ ସଂଯୋଜ୍ୟ ସର୍ବାସ୍ତତଃ ।୮୭।**

**ପ୍ରୋଜ୍‌ଝ୍ୟାର୍କଦ୍ୟୁଦଳଞ୍ଚ ଶିଷ୍ଟଘଟିକା ରାତ୍ରେର୍ଗତାଃ ସ୍ୟୁର୍ଦିନ—**
**ସ୍ୟାର୍ଦ୍ଧେନାଥ ଯୁତା ଭବନ୍ତ୍ୟୁଦୟତଃ ସୂର୍ଯ୍ୟସ୍ୟ ତା ନିର୍ଗତାଃ ।**
**ଇତ୍ଥଂ ମଧ୍ୟଭଭୋଗ କାଳତପନାକ୍ରାନ୍ତର୍କ୍ଷଭୁକ୍ତାନ୍ତର**
**କ୍ଷେତ୍ରାଣାଞ୍ଚ ଯୁତର୍ଦ୍ଦିନାର୍ଦ୍ଧରହିତା ସ୍ୟାଦେଷ୍ୟକାଳୋ ନିଶଃ ।୮୭।**

ରାତି କେତେ ହେଲା ଏବଂ ଆଉ କେତେ ଅଛି ଏହା ଜାଣିବାକୁ ହେଲେ ଭଗ୍ରହଯୋଗ ବର୍ଣ୍ଣନ ପ୍ରକାଶରେ ଆଗରୁ ଦିଆଯାଉ ଥିବା ତାରା ଧ୍ରୁବ ଯୋଗେ ଆକାଶ ମଧ୍ୟରେ ଗତ ଓ ଏଷ୍ୟ ନକ୍ଷତ୍ରରୁ ମଧ୍ୟ ଲଗ୍ନ ସ୍ଥିର କର (୧୦ମ ଲଗ୍ନ) ସେଥିରେ ଅୟନାଂଶ ସଂସ୍କାର କର । ଏହି ସାୟନ ଦଶମ ଲଗ୍ନର ନିରକ୍ଷ ଉଦୟାସୁ ଦ୍ୱାରା ଭୁକ୍ତ ଘଟ୍ୟାଦି ଆଣ । ରାତ୍ର୍ୟର୍ଦ୍ଧ କାଳିକ ସାୟନ ରବିର ଭୋଗ୍ୟ ଘଟ୍ୟାଦି ମଧ୍ୟ ଆଣ । ଏ ଦୁଇଟିର ମଧ୍ୟବର୍ତ୍ତୀ ରାଶିମାନଙ୍କର ଉଦୟ-ଘଟ୍ୟାଦି ସେଥିର ମିଶାଅ । ଯୋଗଫଳରୁ ରବିର ଦିନାର୍ଦ୍ଧ ବାଦ ଦିଅ । ଶେଷ ଫଳ ରାତିର ଅବଶେଷ ଘଟ୍ୟାଦି ହେବ ବୋଲି ଜାଣିବା ଯୋଗଫଳରେ ରବି ଦିନାର୍ଦ୍ଧ ମିଶାଇଲେ ସୂର୍ଯ୍ୟୋଦୟ ଠାରୁ ରାତିର ଇଷ୍ଟ ଘଟ୍ୟାଦି ହେବ । ଏହିପରି ରାତ୍ରରେ ମଧ୍ୟ ଲଗ୍ନର ଭୋଗ୍ୟ ଘଟ୍ୟାଦି, ସୂର୍ଯ୍ୟ ଥିବା ରାଶିର ଭୁକ୍ତ ଘଟ୍ୟାଦି ଓ ଉଭୟର ଅନ୍ତର୍ଗତ ରାଶିମାନଙ୍କର ଉଦୟ ଘଟ୍ୟାଦି ଯୋଗ କରି ସେଥିରୁ ରବିର ଦିନାର୍ଦ୍ଧ ଫେଡ଼ିଲେ ଆଉ କେତେ ରାତି ଅଛି ଜଣାଯିବ ।

କାଲାଦ୍ ଯଦ୍ୟପି ଲଗ୍ନସିଦ୍ଧିରୁଦିତା ଭୂୟୋଽତ୍ର କୌତୂହଲାଦ୍—
ଯାମ୍ୟୋ-ଦଗ୍‌ବଲୟୋର୍ଦ୍ଧ୍ୱଗୋଡୁବଶତୋ ଦୃଗ୍‌ଦୃକ୍‌ଚଲାଂଶ-ସ୍ଫୁଟାଃ ।
ଯେ ପ୍ରାଗୁତ୍କଲଦେଶଜାନ ଗଦତା ଲଗ୍ନାସ୍ତଦୀୟାନ୍ୟହଂ
ବକ୍ଷ୍ୟେ ଭୁକ୍ତପଲାନ୍ୟତଃ ପ୍ରମୁଦତାଃ ସୂର୍ଯୋଗତାଗ୍‌ବଦଃ ॥୮୮॥

ଦିବସ ଓ ରାତ୍ର ର ସମୟକୁ ନେଇ ଲଗ୍ନ ଆଣିବାର ପ୍ରଣାଳୀ ଆଗରୁ କୁହାଯାଇଅଛି । ବର୍ତ୍ତମାନ ୨୨° ଅୟନାଂଶରେ ଓଡ଼ିଶାର ଯାମ୍ୟୋତ୍ତର ବୃତ୍ତରେ ରାତ୍ରିରେ ନକ୍ଷତ୍ର ଦେଖି ଠିକ୍ ତେତିକବେଳେ କେଉଁ ଲଗ୍ନ-ସ୍ଫୁଟ ରାଶ୍ୟାଦି କେତେ ଏଠାରେ ତାହା କୁହାଯାଉଅଛି । ଏହା ଜାଣିବା ଦ୍ୱାରା ପ୍ରତ୍ୟକ୍ଷ ଜ୍ୟୋତିଷୀମାନେ ଅତ୍ୟନ୍ତ ଆନନ୍ଦ ପାଇ ପାରିବେ ଏବଂ ଏହା ଦ୍ୱାରା ଅନେକଙ୍କର କୌତୂହଳ ନିବୃତ୍ତି ମଧ୍ୟ ହେବ ।

ଯନ୍ନକ୍ଷତ୍ରଗତାର୍କବାସରଦଳେ ଯଃ ସ୍ୟାଦ୍‌ବଲଟ୍ଟଃସ୍ଫୁଟ-
ସ୍ତସ୍ମିନ୍‌ଭେ ଗଗନାର୍ଦ୍ଧଗେ ସ ହି ଭବେତ୍ତଦୁପ୍ତମୋଽସ୍ତଂ ବ୍ରଜେତ୍ ।
ବସ୍ତ୍ରୋଃ ଖାର୍ଦ୍ଧଗତେଽଜଲଗ୍ନଜପଲାନ୍ୟମ୍ଭୋଧିନନ୍ଦାଧନେ
ତସ୍ମାଦ୍ ଖାକୃତୟଃ ପ୍ରଚେତସି ବୃଷାଦ୍ବ୍ୟୋମାଷ୍ଟନେତ୍ରାଣି ଚ ॥୮୯॥

ପ୍ରାଗ୍‌ଭଦ୍ରେଽବ୍ଧିଦୃଶୋ ବ୍ରଜନ୍ତି ମିଥୁନାତ୍ତସ୍ମାଦହିର୍ବୁଧ୍ନ୍ୟଭେ
ବେଦାଦ୍ରିକ୍ଷିତୟୋଽଥ କର୍କଟତନୋଃପୌଷ୍ଣେ ନବାମ୍ଭୋଧୟଃ ।
ଅଶ୍ୱିନ୍ୟାଂ ସ୍ୱରବାସବାଶ୍ଚ ଯମଭେଽଙ୍ଗାର୍ଥାଶ୍ୱିନୋଽଥାଗ୍ନିଭେ
ସିଂହାଦଦ୍ରିରସାବ୍ଧୟୋ ସ୍ୱରଘନାଶ୍ଚନ୍ଦ୍ରେ ସ୍ତ୍ରିୟ୍ୟାଲୋଚନେ ।୯୦।

ରୌଦ୍ରେଽଢ୍ୟାଃ କରମାର୍ଗଣା ଅଦିତଭେ ଦ୍ୱେ ତୌଳିତୋଽସ୍ମାଦ୍‌ଗୁରୌ
ବେଦେନ୍ଦ୍ରା ଭୁଜଗେ ତତୋଽବ୍ଧିଧୃତୟଃ ପିତ୍ର୍ୟେରଦାଃ କୀଟତଃ ।
ଯୋନାବଦ୍ରିନବେନ୍ଦବୋଽର୍ଯମସୁରେ ପଞ୍ଚାଷ୍ଟପକ୍ଷାସ୍ତତୋ
ହସ୍ତେ ଚୂପତ ଇକ୍ଷଣର୍ତ୍ତବ ଇଭାଙ୍କଘୋଣୟଃ ସ୍ତ୍ୱାଷ୍ଟ୍ରର ।୯୧।

ସ୍ୱାତୌ ନନ୍ଦତ ଇକ୍ଷଣେନ୍ଦବ ଇତଃ ଶକ୍ରାଗ୍ନିଭେକ୍ଷ୍ମେଷ୍ୱିଲା
ମୈତ୍ରେଽଙ୍ଗାଙ୍ଗଦୃଶୋ ମଘୋନ ଘଟତୋଽଦ୍ର୍ୟଙ୍ଗାନ ମୂଲେ ତତଃ ।
କ୍ଷ୍ମାଗ୍ନ୍ୟକ୍ଷୀଣି ଜଲେଽଣ୍ଡଜାଦ୍ ଖବସବୋ ବୈଶ୍ୱେଽକ୍ଷିବାଣେନ୍ଦବୋ
ଯାତାନାଗତଭାନ୍ତରାତ୍ତନୁପଲସ୍ୱର୍ଣ୍ଣତ୍ୱମାଲୋଚ୍ୟତାମ୍ ।୯୨।

ଯେଉଁ ନକ୍ଷତ୍ରରେ ଥାଇ ରବିର ଦନାର୍ଦ୍ଧ ସାଧିତ ହୁଏ ସେହି ଦନାର୍ଦ୍ଧ ତୁଲ୍ୟ ଇଷ୍ଟ ସମୟରେ ଯେଉଁ ଲଗ୍ନ ସାଧିତ ହୁଏ, ସେହି ଲଗ୍ନ ହେବାବେଳେ ଉକ୍ତ ରବି ଗତ ନକ୍ଷତ୍ର ଅବଶ୍ୟ ଅକାଶ ମଧ୍ୟରେ (ଯାମ୍ୟୋତ୍ତର ବୃତ୍ତ) ହେବାର କଥା । ସେହି ଲଗ୍ନର ସପ୍ତମ ରାଶି ତେତେବେଳର ଅସ୍ତ ଲଗ୍ନ ହୋଇଥାଏ ।

ଶ୍ରବଣା ଆଦି ନକ୍ଷତ୍ର ଯାମ୍ୟୋତ୍ତର ବୃତ୍ତରେ ଥିବାବେଳେ କେଉଁ ଲଗ୍ନର କେତେ ଭୋଗ ତାହା ଦଆଯାଉ ଅଛି ।

| ଅୟନାଂଶ ୨୨ ରେ ଯାମ୍ୟୋତ୍ତର ବୃତ୍ତରେ ଥିବା ନକ୍ଷତ୍ରର ନାମ | | ଉତ୍କଳ ଦେଶରେ ଲଗ୍ନ ଓ ତାର ଭୁକ୍ତପଳ | | | |
|---|---|---|---|---|---|
| ୨୨ | ଶ୍ରବଣା | ମେଷ | ୯୪ | ପଳ | ଗତ |
| ୨୩ | ଧନିଷ୍ଟା | ମେଷ | ୨୨୨ | ,, | ,, |
| ୨୪ | ଶତଭିଷା | ବୃଷ | ୨୮୦ | ,, | ,, |
| ୨୫ | ପୂର୍ବ ଭଦ୍ର ପଦ | ମିଥୁନ | ୨୪ | ,, | ,, |
| ୨୬ | ଉତ୍ତର ଭଦ୍ରପଦ | ମିଥୁନ | ୧୭୪ | ,, | ,, |
| ୨୭ | ରେବତୀ | କର୍କଟ | ୪୯ | ,, | ,, |
| ୧ | ଅଶ୍ୱିନୀ | କର୍କଟ | ୧୪୭ | ,, | ,, |
| ୨ | ଭରଣୀ | କର୍କଟ | ୨୫୬ | ,, | ,, |
| ୩ | କୃତ୍ତିକା | ସିଂହ | ୬୭ | ,, | ,, |
| ୪ | ରୋହିଣୀ | ସିଂହ | ୧୧୭ | ,, | ,, |
| ୫ | ମୃଗଶିର | କନ୍ୟା | ୨ | ,, | ,, |
| ୬ | ଆର୍ଦ୍ରା | କନ୍ୟା | ୫୮ | ,, | ,, |
| ୭ | ପୁନର୍ବସୁ | ତୁଳ | ୨ | ,, | ,, |
| ୮ | ପୁଷ୍ୟା | ତୁଳ | ୧୪୪ | ,, | ,, |
| ୯ | ଅଶ୍ଳେଷା | ତୁଳ | ୧୮୪ | ,, | ,, |
| ୧୦ | ମଘା | ବୃଶ୍ଚିକ | ୩୨ | ,, | ,, |
| ୧୧ | ପୂର୍ବା ଫାଲଗୁନୀ | ବୃଶ୍ଚିକ | ୧୯୭ | ,, | ,, |
| ୧୨ | ଉତ୍ତରା ଫାଲଗୁନୀ | ବୃଶ୍ଚିକ | ୨୮୫ | ,, | ,, |
| ୧୩ | ହସ୍ତା | ଧନୁ | ୭୨ | ,, | ,, |

| ଅୟନାଂଶ ୨୨ରେ ଯାମ୍ୟୋତ୍ତର ବୃତ୍ତରେ ଥିବା ନକ୍ଷତ୍ରର ନାମ | | ଉତ୍କଳ ଦେଶରେ ଲଗ୍ନ ଓ ତାର ଭୁକ୍ତପଳ | | | |
|---|---|---|---|---|---|
| ୧୪ | ଚିତ୍ରା | ଧନୁ | ୧୯୮ | ,, | ,, |
| ୧୫ | ସ୍ୱାତି | ମକର | ୧୨ | ,, | ,, |
| ୧୬ | ବିଶାଖା | ମକର | ୧୫୧ | ,, | ,, |
| ୧୭ | ଅନୁରାଧା | ମକର | ୨୭୬ | ,, | ,, |
| ୧୮ | ଜ୍ୟେଷ୍ଠା | କୁମ୍ଭ | ୭୬ | ,, | ,, |
| ୧୯ | ମୂଳା | କୁମ୍ଭ | ୨୩୧ | ,, | ,, |
| ୨୦ | ପୂର୍ବାଷାଢ଼ା | ମୀନ | ୮୦ | ,, | ,, |
| ୨୧ | ଉତ୍ତରାଷାଢ଼ା | ମୀନ | ୧୫୨ | ,, | ,, |

ସତ୍ସିଦ୍ଧାନ୍ତଶିରୋମଣୌ ଯଦବଦଦ୍‌ବ୍ରୁ-ପ୍ରୁତ୍ତୟେ ଭାସ୍କରଃ
କ୍ଷେତ୍ରାଣାଂ ଭୁଜକୋଟିକର୍ଣ୍ଣଘଟନାଂ ନାନାବିଧାଂ ସୂକ୍ତିଭିଃ ।
ଯତ୍‌ପ୍ରଶ୍ନୋତ୍ତରବିସ୍ତରେଣ ଗଣିତଂ ଦର୍ଶ୍ୱଦେଶକାଳାପ୍ତୟେ
ତଦ୍‌ବ୍ୟାଖ୍ୟାସହିତଂ ଯତୋଽସ୍ତି ହି ମୟା ତତ୍ ପ୍ରୋକ୍ତଂ
ବାର୍‌ଗୌରବାତ୍ ।୯୩।

ସିଦ୍ଧାନ୍ତପ୍ରଚୟାଦଲମ୍ଭି ମୟକା ଯୋ ଯୋ ବିଶେଷୋ ଦୃଶା
ତୁଲ୍ୟସ୍ତଲ୍ଲିଖିତଂ ମଦଷ୍ଟମିହ ତତ୍ତତ୍ପ୍ରାଙ୍ଗତାସିଦ୍ଧୟେ ।
ସର୍ବଗ୍ରନ୍ଥକୃତବର୍ଭୂବ ଗଣିତେ ଗୋଳାନ୍ୱିତେହ୍ୟଦ୍‌ଗତେ
କ୍ଷେତ୍ରାଣାମୁପପତ୍ତୟୋ ହି ସୁଲଭସ୍ତର୍କିଂ ବଚୋଭିବିସ୍ତରୈଃ ।୯୪।

ଭାସ୍କରାଚାର୍ଯ୍ୟ ତାଙ୍କର ସିଦ୍ଧାନ୍ତ ଶିରୋମଣିର ଏହି ତ୍ରିପ୍ରଶ୍ନାଧିକାରରେ ବହୁପ୍ରକାର ଭୁଜକୋଟି କର୍ଣ୍ଣ ନେଇ ଅନେକଗୁଡ଼ିଏ ଅଙ୍କ କ୍ଷେତ୍ର ଦେଖାଇ ଅଛନ୍ତି । ସେ କାଳ ଜାଣିବା ପାଇଁ କେତେକ ପ୍ରଶ୍ନ ପଚାରି ସେ ଗୁଡ଼ିକର ଉତ୍ତର ମଧ୍ୟ କରି ଅଛନ୍ତି । ଏ ସବୁ କଥା ବାସନାଭାଷ୍ୟ ସହିତ ଶିରୋମଣିରେ ଥିବାରୁ ଅଯଥା ଗ୍ରନ୍ଥ ବିସ୍ତାର ହେବା ଭୟରେ ମୁଁ ଏ ବିଷୟରେ ସେ ସବୁ କଥା ଲେଖୁନାହିଁ ।

ଅନ୍ୟ ଗ୍ରନ୍ଥ ତୁଳନାରେ ଯେଉଁ ଯେଉଁ ବିଷୟରେ ମୋର ସ୍ୱତନ୍ତ୍ର ବିଚାରଅଛି ଏବଂ ଯେ ସବୁକୁ ମୁଁ ସ୍ୱଚକ୍ଷୁରେ ଦେଖିଛି, ସେପରି କେତେକ କଥା ବିଶେଷ ଭାବରେ ଏ ଗ୍ରନ୍ଥରେ

ସ୍ଥାନ ପାଇଅଛି । ହୃଦୟରେ ଗୋଲ ଓ ଗଣିତର ଆସନ ଦୃଢ଼ ହୋଇଗଲେ ଗ୍ରହ୍ଣ କରିବା ଶକ୍ତି ଦୃଢ଼ ହୋଇଯାଇଥାଏ । ସେପରି ସ୍ଥଳେ କ୍ଷେତ୍ର ଗଣିତାଦିର ଉପପତ୍ତି ଆଉ କଷ୍ଟକର ହୋଇ ରହେ ନାହିଁ । ଏଣୁ ଏସବୁ ବିଷୟରେ ଗୁଡ଼ାଏ ଲେଖି ଗ୍ରନ୍ଥର କଳେବର ବଢ଼ାଇବା ଆବଶ୍ୟକ ମନେ କରୁ ନାହିଁ ।

**ଯସ୍ୟାଷ୍ଟାବ୍ଧିକଳାଢ୍ୟନନ୍ଦକୁଲବୈ ରକ୍ଷଃ ସମକ୍ଷୀକୃତଃ**
**ବ୍ୟକ୍ଷାତ୍ ସାର୍ଦ୍ଧରସର୍କ୍ଷକୈଃ ଖଖଭୂକୈର୍ଭୂମଧ୍ୟରେଖାଂକତଃ**
**ସିଦ୍ଧଂ ଯୋଜନକୈଃ ସ୍ୱଦେଶବବରଂ ତସ୍ୟାସିତାଦ୍ରୌ ଶଲ—**
**କ୍ଷ୍ମୀକେଳାକମଳାବଳାସ୍ୟଳମଳଂକୁର୍ଯ୍ୟାନ୍ମଦୀୟଂମନଃ ।୯୪।**

ଯାହାର ଉତ୍ତର ଅକ୍ଷାଂଶ ୧୯° । ୪୮ ବିଷୁବ ରେଖାଠାରୁ ଯାହାର ଦକ୍ଷିଣୋତ୍ତର ଅନ୍ତର ୨୭୬½ ଯୋଜନ ଏବଂ ଭାରତୀୟ ମଧ୍ୟରେଖା (ମାଧ୍ୟନ୍ଦିନ ରେଖା) ଠାରୁ ଯାହାର ପୂର୍ବ ଦେଶାନ୍ତର ୨୦୦ ଯୋଜନ ସେହି ନୀଳାଚଳରେ ଭାବାବେଶରେ ଚଞ୍ଚଳ ଭୂଦେବୀ ଓ ମହାଲକ୍ଷ୍ମୀଙ୍କ ସହିତ କ୍ରୀଡ଼ା କରୁଥିବା ଶ୍ରୀ ଜଗନ୍ନାଥ ମୋର ମନ ଉପରେ ସବୁବେଳେ ବସି ରହନ୍ତୁ । ମୋର ମନୋରଥ ପରିପୂର୍ଣ୍ଣ କରନ୍ତୁ ।

**ଇତ୍ୟୁତ୍କଳୋଜ୍ଜ୍ୱଳ ନୃପାଳ କୁଳପ୍ରସୂତ—**
**ଶ୍ରୀ ଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।**
**ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ**
**ତ୍ରିପ୍ରଶ୍ନବାନ୍ ମୁନିମିତଃ ଗମିତଃ ପ୍ରକାଶଃ ।**

**ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ**
**ତ୍ରିପ୍ରଶ୍ନାଧିକାରେ ଶଂକୁଚ୍ଛାୟାଦିବର୍ଣ୍ଣନୋ**
**ନାମ ସପ୍ତମଃ ପ୍ରକାଶଃ ।**

ଏଠାରେ ୭ମ ପ୍ରକାଶ ଶେଷ ହେଲା । ଏଥିରେ ତ୍ରିପ୍ରଶ୍ନର ବିଚାର କରାଯାଇଅଛି ।

## ଅଷ୍ଟମଃ ପ୍ରକାଶଃ

### ଚନ୍ଦ୍ରଗ୍ରହଣ ବର୍ଣ୍ଣନମ୍

---

**ସ୍ମାର୍ତ୍ତାଃ ସାଂହିତକାଃ ପୁରାଣନିପୁଣା-ସ୍ତାନ୍ତ୍ରିକା ବୈଦିକାଃ**
**ସ୍ନାନାର୍ଚ୍ଚା-ଜପହୋମଦାନ କୃତିନାଂ ଯସ୍ମିନ୍ନନନ୍ତଂ ଫଳଂ ।**
**ପ୍ରୋଚୁର୍ଯଶ୍ଚ ମହାଚମତ୍କୃତିକରୋ ଲୋକସ୍ୟ ତଥ୍ୟାଦିକେ**
**ବିଶ୍ୱାସାବହମିନ୍ଦୁତଶ୍ଚ ମହସୋବିଂକ୍ଷାମ୍ୟହଂ ତଂ ଗ୍ରହମ୍ ।୧।**

ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣର କଥା ବର୍ତ୍ତମାନ କହୁଅଛୁ । ଗ୍ରହଣ ଦେଖି ଲୋକେ ଚମତ୍କୃତ ହୋଇଥାନ୍ତି । ଅମା ଓ ପୂର୍ଣ୍ଣାନ୍ତରେ ହିଁ ଗ୍ରହଣ ହେଉଥିବାରୁ ଏହା ଠିକ୍ ଭାବରେ ଘଟିବାର ଦେଖିଲେ ଅନ୍ୟାନ୍ୟ ତଥ୍ୟ ପ୍ରତି ଲୋକଙ୍କର ବିଶ୍ୱାସ ଆସିଯାଏ । ଗ୍ରହଣବେଳେ ସ୍ନାନ, ପୂଜା, ଜପ, ହୋମ ଓ ଦାନାଦି କଲେ ଅନନ୍ତ ଫଳ ହୋଇଥାଏ ବୋଲି ବୈଦିକ, ତାନ୍ତ୍ରିକ, ପୌରାଣିକ, ସ୍ମାର୍ତ୍ତ ଓ ସଂହିତାକାରମାନେ ବରାବର କହି ଆସିଅଛନ୍ତି ।

**ପକ୍ଷାନ୍ତସାଧିତ-ବିପାତ-ବିଧୋର୍ଭୁଜାଂଶା**
**ବିଶ୍ୱାଲ୍ପକା ଯଦି ତଦା ଗ୍ରହସମ୍ଭବୋଽସ୍ୟ ।**
**ତସ୍ମାଦ୍ ବିଧୌ ଶିଖିତମୋଽନ୍ୟତରାନ୍ତିକସ୍ଥେ**
**ଶନ୍ତ୍ୟୋ ଗ୍ରହୋଽନ୍ତିକୁ ଲବାବଧି ପୂର୍ଣ୍ଣିମାନ୍ତେ ।୨।**

ପୂର୍ଣ୍ଣିମାନ୍ତରେ ଚନ୍ଦ୍ର ରାହୁ ବା ଚନ୍ଦ୍ରକେତୁ ସାଧନ କରି ଚନ୍ଦ୍ରରୁ ରାହୁ ବା ଚନ୍ଦ୍ରରୁ କେତୁ ଅନ୍ତର କର । ଏହି ଚନ୍ଦ୍ରର ଭୁଜାଂଶ ୧୩° ରୁ କମ୍ ହେଲେ ଚନ୍ଦ୍ର ଗ୍ରହଣର ସମ୍ଭାବନା ହୁଏ । ଏଥିରୁ ବୁଝାଗଲା ଯେ ଚନ୍ଦ୍ରରୁ ରାହୁର ଅନ୍ତର ବା ଚନ୍ଦ୍ରରୁ କେତୁର ଅନ୍ତର ୧୩° ହେବା ପର୍ଯ୍ୟନ୍ତ ଚନ୍ଦ୍ର ଗ୍ରହଣ ହୋଇପାରେ ।

ସୂର୍ଯ୍ୟଗ୍ରହୋ ଧୃତ ଲବାନ୍ତମମାନ୍ତକେଽର୍କ
ଗ୍ରସ୍ତୋ ମତୋଽନ୍ତ୍ୟକବଶାତ୍ ଶିଖିନା-ଗୁଣେତ ।
ପ୍ରତ୍ୟକ୍ ପୂରେ ନତଗୁଣାଂଶ-ଯୁତୋନସୂକ୍ଷ୍ମ—
ଦର୍ଶାନ୍ତକାଳକସୁଧାକରଦକ୍‌ଶରସ୍ୟ ।୩।

ତତ୍କାଳବବିଭନୂନତ-ବାହୁଜୀବା
ଷଷ୍ଟ୍ୟଂଶକସ୍ୟ ଚ ଯୁତେର୍ବିଯୁତେଶ୍ଚ ଶେଷାତ୍ ।
ଦକ୍‌ସାମ୍ୟଭେଦଜନୁଷଃ କ୍ରମଶଃ ସ୍ଫୁଟେଷୌ
ନ୍ୟୂନେ କୃତାଗ୍ନିତ ଇନଗ୍ରହସମ୍ଭବଃ ସ୍ୟାତ୍ ।୪।

ତତ୍‌କ୍ୱାପି ଯାମ୍ୟନତ ଭୂରତୟୋତ୍ତରେଷୌ
ସାର୍ଦ୍ଧାଂଶକେଽପି ସ ଭବେଦପି ନଃଶରତ୍ୱେ ।
ନ କ୍ୱାପ୍ୟଥୋ ନୟନମଣ୍ଡଳଗେଽପବୃତ୍ତେ
ସ ସ୍ୟାଦ୍ ବିପାତଶଶିଦୋଷ୍ଣି ନଗାଂଶତୋଽଲ୍ପେ ।୫।

ଇତ ଗ୍ରହଣ ସମ୍ଭବଃ

ଅମାନ୍ତରେ ସେହିପରି ଚନ୍ଦ୍ର ଓ ଚନ୍ଦ୍ରପାତ ସାଧନ କରି ଚନ୍ଦ୍ରରୁ ପାତ ବାଦ ଦିଅ । ଅବଶିଷ୍ଟ ଚନ୍ଦ୍ରର ଭୁଜାଂଶ । ଏହା ୧୮° ରୁ କମ୍‌ହେଲେ ସୂର୍ଯ୍ୟ ଗ୍ରହଣର ସମ୍ଭାବନା ଅଛି-ବୋଲି ଜାଣିବ ।

(ପୃଥିବୀ କେନ୍ଦ୍ରିକ) ଅମାନ୍ତ ସାଧନ କର । ଏହି ଅମାନ୍ତ କାଳରେ ପଶ୍ଚିମ-ନତ ନାଡ଼ୀର ⅓ ଯୋଗକର । ପୂର୍ବନତ ହୋଇଥିଲେ ପୂର୍ବନତ ନାଡ଼ୀର ⅓ ଅମାନ୍ତ କାଳରୁ ବିୟୋଗ କର । ଏହି ସଂସ୍କୃତ ଦର୍ଶାନ୍ତ କାଳରେ ପୁଣି ଚନ୍ଦ୍ର ସ୍ଫୁଟ କର । ସେଥିରୁ ପୁଣି ଏହି ଦର୍ଶାନ୍ତ କାଳରେ ବିତ୍ରିଭ ଲଗ୍ନ ଆଣ । ତାର ନତଜ୍ୟାର ୧/୬° ନିଅ । ଆଗତ ଚନ୍ଦ୍ରଶର ଓ ଏହି ୧/୬° ର ଏକଦିଗରେ ଯୋଗ ଓ ଭିନ୍ନ ଦିଗରେ ହେଲେ ବିୟୋଗ ହେବାଦ୍ୱାରା ସ୍ଫୁଟଶର ଆସିଯିବ । ଏହାର ପରିମାଣ ୩', ୪' ରୁ କମ୍‌ହେଲେ ମଧ୍ୟ ସୂର୍ଯ୍ୟଗ୍ରହଣର ସମ୍ଭାବନା ରହିଛି ବୋଲି ଭାବିବ । ବେଳେବେଳେ ଦକ୍ଷିଣନତି ଅତ୍ୟଧିକ ବଢ଼ି ଯିବାବେଳେ ଉତ୍ତର ଶର (ଅସ୍ଫୁଟ) ୧°.୩୦' ହେବାବେଳେ ସୂର୍ଯ୍ୟଗ୍ରହଣ ହୋଇଥିବାର ମଧ୍ୟ ଦେଖାଯାଏ । ଅସ୍ଫୁଟଶର ଆଦୌ ନ ଥିବାବେଳେ ମଧ୍ୟ କଦାଚିତ୍ ସୂର୍ଯ୍ୟଗ୍ରହଣ ନ ହେଉଥିବା ଦେଖା-ଯାଇଥାଏ । କ୍ରାନ୍ତିବୃତ୍ତ ଦୃଗ୍‌ବୃତ୍ତ ହେବାବେଳେ ଚନ୍ଦ୍ରରୁ ପାତ ବିୟୋଗକରି ତାହାର ଭୁଜାଂଶ ୭° ରୁ କମ୍‌ହେଲେ ମଧ୍ୟ ସୂର୍ଯ୍ୟଗ୍ରହଣର ସମ୍ଭାବନା ହୋଇଥାଏ ।

ପର୍ବାନ୍ତସଂସ୍କୃତରବୀନ୍ଦୁସମୀକୃତୀନ-
ଭୂ-ଭବଧ୍ରୁ-ପ୍ରମିତବାଣପିଧାନକାଳୈଃ ।
ସଲ୍ଲମ୍ବନାବନତଦର୍ଗ୍ବଳନାଙ୍ଗ୍ଳାଦ୍ୟୈଃ
ଶାସ୍ତ୍ରାନ୍ତରାଦିହ ବିଶେଷମବେତ ସନ୍ତଃ ।୭।

ସ୍ଫୁଟ ଅମାନ୍ତ ଆଣିବା ନିମନ୍ତେ ଲମ୍ବନ ଆଦିର ସଂସ୍କାର, ରବି ଓ ଚନ୍ଦ୍ରର ରାଶି ଓ ଅଂଶାଦି ସମୀକରଣ, ସୂର୍ଯ୍ୟ, ଚନ୍ଦ୍ର ଓ ଭୂଚ୍ଛାୟାର ପରିମାଣ, ଚନ୍ଦ୍ରଶର, ଗ୍ରାସ ପରିମାଣ, ସ୍ଥିତି ବିମର୍ଦ୍ଦ ଆଦିକାଳ, ବାସ୍ତବ ସ୍ଫୁଟ ଲମ୍ବନ, ସ୍ଫୁଟନତି, ଦିଗ୍ବଳନ ଓ ପରିଲେଖଆଦି ବିଷୟରେ ଗ୍ରନ୍ଥକାରଙ୍କ ରୀତି ଅନ୍ୟ ସିଦ୍ଧାନ୍ତ ଗ୍ରନ୍ଥରୁ ପୃଥକ୍ ଓ ଉପାଦେୟ ବୋଲି ସେ ଏହି ଶ୍ଳୋକରେ ବିଦ୍ୱାନ ଲୋକଙ୍କୁ ଜଣାଇ ଦେଉଅଛନ୍ତି ।

ରାକାମୟୋରବସିତ ପ୍ରଭବୋଚ୍ଚମଧ୍ୟ—
ସିଦ୍ଧେ ବିଧୌ ତପନଭାର୍ଦ୍ଧଦିବାକରାଭ୍ୟାମ୍ ।
ନ୍ୟୂନେଽଧିକେଽନ୍ତରପରାଃ ପ୍ରଥମେନ୍ଦୁ ସୂର୍ଯ୍ୟ—
ଭୁକ୍ତ୍ୟନ୍ତରେଣ ବିହୃତା ବିଘଟୀଫଳେନ ।୭।

ତଥ୍ୟନ୍ତ ଆଢ଼୍ୟବିଯୁତଃ ସମପର୍ବ କାଳଃ
ସ୍ତାତ୍କାଳକାର୍କ-ଭଦଳାଞ୍ଚ ରବିଶ୍ଚ ସୂକ୍ଷ୍ମଃ ।
ବେଦ୍ୟଃ ଶଶୀ ସମକଳାବିଧି ତୌ ଭବେତାଂ
କଙ୍କ୍ରୋଟ୍ୟତେ କ୍ୱଚନ ପର୍ବଣି ତଦ୍ବିଶେଷଃ ।୮।

ଗ୍ରହଣରେ ଅତି ଠିକ୍ ସମୟ ଆଣିବା ବେଶି ଦରକାର । ସାଧାରଣ ରୀତିରେ ତ ଅମାନ୍ତ ଓ ପୂର୍ଣ୍ଣାନ୍ତ ଆସିଯାଇପାରିବ । ପୁଣି ଠିକ୍ ସେତିକିବେଳେ ସୂର୍ଯ୍ୟ ଓ ଚନ୍ଦ୍ର ସ୍ଫୁଟ କରିବ । ଚନ୍ଦ୍ର ସ୍ଫୁଟ କଲାବେଳେ ଏଠାରେ କେବଳ ମନ୍ଦଫଳର ହିଁ ସଂସ୍କାର କରାଯିବ । ଭୁଜାନ୍ତର ବା ପାକ୍ଷିକ ଫଳ ସଂସ୍କାର ଏଠାରେ କରାଯିବ ନାହିଁ (ସାମନ୍ତେ ଆଗରୁ ଏହି କଥା ସ୍ପଷ୍ଟ ଭାବରେ ଲେଖି ଦେଇ ଅଛନ୍ତି) । ତାପରେ ରବିସ୍ଫୁଟ କରିବ । ପୂର୍ଣ୍ଣାନ୍ତରେ ସୂର୍ଯ୍ୟରେ ଛଅରାଶି ମିଶାଇ ତାର ଓ ଚନ୍ଦ୍ରର ଅନ୍ତର କର । (ମନେ ରଖିବାକୁ ହେବ ଯେ ପୂର୍ଣ୍ଣାନ୍ତରେ ଚନ୍ଦ୍ରକୁ ଦିବାଂଶ ପାକ୍ଷିକ ଆଦି ଫଳରେ ସଂସ୍କୃତ କଲାବେଳେ ଅମାନ୍ତରେ ତାକୁ କେବଳ ମନ୍ଦ ଫଳରେ ହିଁ ସଂସ୍କାର କରାଯିବ) । ଏହି ଅନ୍ତରେ କଳାକୁ ଧରି କରି ତାକୁ ପ୍ରଥମେ ଚନ୍ଦ୍ରଗତି ଓ ସୂକ୍ଷ୍ମ ରବି ଗତିର ଅନ୍ତରରେ ଭାଗଦେଲେ ପଳାତ୍ମକ ଲବ୍ଧି ହେବ । ଏହି ପଳାଦି ସମୟକୁ ଚନ୍ଦ୍ର ସୂର୍ଯ୍ୟଠାରୁ ଓ ୬ ରାଶିଯୁକ୍ତ ରବିଠାରୁ କମ୍ ଥିବାବେଳେ ବିୟୋଗ କରିବ । ତାହାହେଲେ ପର୍ବାନ୍ତ (ଦର୍ଶାନ୍ତ ବା ପୂର୍ଣ୍ଣାନ୍ତ) ସମୟ ସ୍ଫୁଟ ହୋଇଯାଇ

ପାରିବ । ଏହି ସମୟରେ ପୁଣି ସୂର୍ଯ୍ୟ ଚନ୍ଦ୍ର ସ୍ଫୁଟ କରୁଥିବ ଏବଂ ତଦନୁସାରୀ ପର୍ବାନ୍ତର ସ୍ଫୁଟ କରି ଯାଉଥିବ । ଏପରି ବାରମ୍ବାର କରି ଯେତେବେଳେ ଦେଖିବ ଯେ ରବି ଓ ଚନ୍ଦ୍ର, କଳାଦି ପର୍ଯ୍ୟନ୍ତ ସମାନ ହେଲେ ତେତେବେଳେ ଜାଣିବ ଯେ ଶେଷ ପର୍ବାନ୍ତ ହିଁ ଶୁଦ୍ଧ ଓ ଏତେବେଳେ ହିଁ ଅନ୍ୟାନ୍ୟ ଗ୍ରହଣ ଉପକରଣ ଆଣାଯିବ ।

ସୂର୍ଯ୍ୟସ୍ୟ ଦୋର୍ଗତଫଳେ ଉଦୟାନ୍ତରଞ୍ଚ
ଯଦ୍ୟେକଦା ବିତୟମେତଦୃଣଂ ଧନଂ ସ୍ୟାତ୍ ।
ତଦ୍ୱୋଦୟାନ୍ତରଭୁଜାନ୍ତରକେ ସୁଧାଂଶୋ—
ର୍ଭାସ୍ୱଦ୍‌ଗତେଃ ଫଳଯୁତୈର୍ବିକଳାସ୍ତତସ୍ତାଃ ।୯।

ଶୀତାଂଶୁଦୋଃ ଫଳକଳା ଗୁଣିତା ବିଭକ୍ତା—
ସ୍ତଦ୍‌ବ୍ୟାସଯୋଜନଚୟେନ ଚ ପୂର୍ଣ୍ଣିମାୟାମ୍ ।
ଦର୍ଶେହୃତାସ୍ତୁ ରବିଯୋଜନକୈର୍ବିଲପ୍ତା
ଲବ୍ଧାଶ୍ଚ ତାଃ ପୁନରିନେନ୍ଦୁ ଗତାନ୍ତରାପ୍ତାଃ ।୧୦।

ଦଣ୍ଡାଦକୈରିହ ଫଳୈଃ ସମପର୍ବଯୁକ୍ତ—
ମୂନଂ ପୁରୋଦିତଫଳତ୍ରିତୟୈର୍ଣ୍ଣତାୟାମ୍ ।
ସ୍ୱଦ୍ୱେ ଭମାଦ୍‌ଭବତ ଦୃକ୍‌ସମମବ କାର୍ଯ୍ୟୋ
ସୂର୍ଯ୍ୟାବ୍‌ଜୟୋଃ ସମକଳୀକୃତରୁକ୍ତ ପୂର୍ବା ।୧୧।

ଏକା ସମୟରେ ସୂର୍ଯ୍ୟର ମନ୍ଦଫଳ ଗତିଫଳ ଓ ଉଦୟାନ୍ତର ଫଳ—ଏ ତିନି ଫଳ (ସମସ୍ତେ) ଧନ କିମ୍ବା ଋଣ ହେଲେ ଚନ୍ଦ୍ରର ଉଦୟାନ୍ତର ଓ ଭୁଜାନ୍ତର ଫଳର ଯୋଗରେ ସୂର୍ଯ୍ୟ ଗତିଫଳ ଯୋଗକରି ମୋଟ ଫଳକୁ ବିକଳା କରି ଦେବ । ତାକୁ ଚନ୍ଦ୍ରର ମନ୍ଦଫଳ କଳାରେ ଗୁଣିବ । ପୂର୍ଣ୍ଣିମାର ଏ କାର୍ଯ୍ୟ ହୋଇଥିଲେ ତାକୁ ଚନ୍ଦ୍ରବିମ୍ବ ବ୍ୟାସ ଯୋଜନରେ ହରିବ । ଅମାବାସ୍ୟାର ଏ କାର୍ଯ୍ୟ ହୋଇଥିଲେ ତାକୁ ରବିବିମ୍ବବ୍ୟାସ ଯୋଜନରେ ହରିବ । ବିକଳାଦି ଲବ୍ଧି ଆଣିବ । ଏହି ବିକଳାକୁ ଉଭୟୁର ସ୍ପଷ୍ଟ ରବିଚନ୍ଦ୍ରର ଗତ୍ୟନ୍ତରରେ ହରି ଦଣ୍ଡାଦି ଫଳ ଆଣିବ । ସୂର୍ଯ୍ୟର ପୂର୍ବୋକ୍ତ ତିନୋଟି ଯାକ ଫଳ ଧନ ହୋଇଥିଲେ ଏହି ଦଣ୍ଡାଦି ଫଳ ସମ ପର୍ବକାଳରେ ବିଯୁକ୍ତ କରିବ ଏବଂ ଋଣ ହୋଇଥିଲେ ସେଥିରେ ଏହା ଯୋଗ କରିବ । ତାହାହେଲେ ଏହା ଦୃକ୍‌ସମ ପର୍ବକାଳ ହେବ । ଏହି ଦୃକ୍‌ସମପର୍ବକାଳରେ ଚନ୍ଦ୍ର ଓ ସୂର୍ଯ୍ୟକୁ ପୂର୍ବୋକ୍ତ ରୀତିରେ ସ୍ଫୁଟ କରି ସମକାଳ କରିବ । [ସମପର୍ବ କାଳ ଓ ଦୃକ୍ ସମପର୍ବକାଳର ଅନ୍ତରକାଳ ନେଇ 'ଇଷ୍ଟନାଡୀ ହତାଭୁକ୍ତ' ଇତ୍ୟାଦି ରୀତିରେ ଏହି ଅନ୍ତର ସମ୍ବନ୍ଧୀ ଗତି ଆଣି ସମପର୍ବରୁ ଦୃକ୍ ସମପର୍ବ କାଳ ଅଧିକ ହେଲେ ଏହି ଗତି ଫଳକୁ ରବି ଓ ଚନ୍ଦ୍ର (ସ୍ଫୁଟ) ରେ ଯୋଗ ଅନ୍ୟଥା ବିୟୋଗ କରିବାକୁ ହେବ । ] ଏପରି କରିବା ଦ୍ୱାରା

ସ୍ଫୁଟ ରବି ଓ ଚନ୍ଦ୍ର କଳାଦିରେ ସମାନ ହୋଇ ଯାଇ ପାରିବେ । [ସାମନ୍ତଙ୍କର ଏହି ଭୁଜଂଟି ସମସ୍ତଙ୍କ ଠାରୁ ନୂଆ—ଏହା ତାଙ୍କ ଉପଲବ୍ଧିର ଫଳ ମାତ୍ର ]

ଦ୍ୱିସପ୍ତତିସହସ୍ରଯୋଜନମିତାର୍କବିମ୍ବାୟତ-
ର୍ମହାପୁରୁଷ ବାଚୟେତ୍ୟନୁଜଗାବଥର୍ବାଶ୍ରୁତଃ ।
ମୟୈତଦନୁସାରତୋ ନୟନଗୋଚରର୍କ୍ଷ ଗ୍ରହ-
ପ୍ରମାଣପରିଧିଗ୍ରହାଦିକମକଣ୍ଟଳଂ କଳ୍ପ୍ୟତେ ।୧୬।

ବିବସ୍ୱଦ୍ ବିଷ୍କମ୍ଭ ଦ୍ୱିରସବିଧୁଭାଗଃ ସମୁଦିତୋ
ବିଧୋର୍ବିମ୍ବବ୍ୟାସଃ କୃତ କୃତ-ଚତୁର୍ଯୋଜନମିତଃ ।
ଭୁବଃପ୍ରାଜ୍ଞୈର୍ଦିଷ୍ଟଃ ସ ଚ ସବଡୁରର୍ଥାମ୍ବୁଧି ଲବୋ—
ଽନ୍ତରୀକ୍ଷେବକ୍ଷ୍ୟେଽହଂ ଶ୍ରବଣମଥଭାନୋଃ ଶଶଭୃତଃ ।୧୭।

ଅଥର୍ବ ବେଦର ଓଁକାର ଅର୍ଥ ନିରୂପଣ ପ୍ରସଙ୍ଗରେ ସୂର୍ଯ୍ୟ ବିମ୍ବ ବ୍ୟାସ ୭୨୦୦୦ ଯୋଜନ ବୋଲି ଈଶ୍ୱରୋକ୍ତ ବର୍ଣ୍ଣିତ ଅଛି । ଏହି ଉକ୍ତି ଅନୁସାରେ ମୁଁ ଦୃକ୍‌ସିଦ୍ଧ ନକ୍ଷତ୍ର, ଗ୍ରହର ବିମ୍ବମାନ, ସେମାନଙ୍କର ପରିଧିମାନ ତଥା ଗ୍ରହଣରେ ପୃଥିବୀ ଓ ଛାୟା ଆଦିର ପରିମାଣ ନିର୍ଦ୍ଦୋଷ ଭାବରେ କହୁଅଛି ।

$\frac{72000}{16}$ = ୪୫୦୦ରୁ କିଛି ବେଶି ଯୋଜନ ଚନ୍ଦ୍ର ବ୍ୟାସର ପରିମାଣ ।

$\frac{72000}{45}$ = ୧୬୦୦ ଯୋଜନ ଭୂଗୋଲ ବ୍ୟାସରପରିମାଣ ଅଟେ । ଏହି ୧୬୦୦ ଯୋଜନ ଭୂବ୍ୟାସ ବୋଲି ସବୁ ପ୍ରାଚୀନ ଜ୍ୟୋତିର୍ଷୀମାନେ ମାନନ୍ତି । ଆକାଶ ଗୋଲରେ ଏ ଗୁଡ଼ିକର ପରିମାଣ (କଳାତ୍ମକ) ଏଣିକ କହିବି ।

ଭୂମଧ୍ୟାଦ୍ରବିଳାବଧି ଗ୍ରହପତେଃ କର୍ଣ୍ଣାଖ୍ୟମାର୍ଗଣ୍ଡଭୂ—
ର୍ନନ୍ଦଦ୍ୱିଦ୍ୱିପପୂର୍ଣ୍ଣତର୍କଧରଣୀଭୃଦ୍‌ଯୋଜନୋ ମଧ୍ୟମଃ ।
ଶୀତାଂଶୋଃ ଶରପୁଷ୍କରକ୍ଷିତିଧରସ୍ତମ୍ବେରମାମ୍ଭୋଧୟୋ
ମଧ୍ୟସ୍ୟ ଶ୍ରୁତଯୋଜନାନ୍ୟଥ ତୟୋଃ ସ୍ପଷ୍ଟା ଭବେନ୍ମନ୍ଦଜାଃ ।୧୮।

ପୃଥିବୀର କେନ୍ଦ୍ରଠାରୁ ସୂର୍ଯ୍ୟ କେନ୍ଦ୍ରର ଦୂରତା (ମାଧ୍ୟମମାନରେ) ୭୬୦୮୨୯୯ ଯୋଜନ (ସୂର୍ଯ୍ୟକର୍ଣ୍ଣ) ।

ପୃଥିବୀର କେନ୍ଦ୍ରଠାରୁ ଚନ୍ଦ୍ର କେନ୍ଦ୍ରର ଦୂରତା (ମଧ୍ୟମମାନରେ) ୪୮୭୦୫ ଯୋଜନ (ଚନ୍ଦ୍ରକର୍ଣ୍ଣ) । ଏଥିରୁ ମନ୍ଦସ୍ପଷ୍ଟ କର୍ଣ୍ଣ ବ ଅଣାଯାଇ ପାରେ ।

**ଭାସ୍ୱନ୍ମଣ୍ଡଳଯୋଜନାନ ଗୁଣଭୂପକ୍ଷାକ୍ଷି ଭକ୍ତାନ ଚେତ୍**
**ବମ୍ବବ୍ୟାସକଳା ଭବନ୍ତ ସବଡୁର୍ମ୍ମଧ୍ୟା କଣାସ୍ୱାମିନଃ ।**
**ତାନେ୍ୟବର୍ତ୍ତିଗୁଣାନ ପଞ୍ଚକରଭିର୍ଭକ୍ତାନ ଚେନ୍ମଣ୍ଡଳ—**
**ବ୍ୟାସସ୍ୟାପି କଳା ଭବନ୍ତ ଧରଣୀଚ୍ଛାୟାକଳାଶ୍ଚନ୍ଦ୍ରବତ୍ ।୧୫।**

ମଧ୍ୟମମାନରେ ରବ ଓ ଚନ୍ଦ୍ରର ଆକାଶ ଗୋଳସ୍ଥ ବମ୍ବମାନ (କୋଣୀୟ ପରମାଣ) ଏଠାରେ କୁହାଯାଉଅଛି ।

ସୂର୍ଯ୍ୟର କୌଣିକ ବମ୍ବମାନ—୩୨' । ୩୨'' । ୬''' $=\frac{୨୨୦୦୦}{୨୨୧୩}$

ଚନ୍ଦ୍ରର କୌଣିକ ବମ୍ବମାନ—୩୧' । ୨୦'' । $=\frac{୪୪୪ \times ୬}{୮୫}$

ଚନ୍ଦ୍ର ବମ୍ବକଳା ଆଣିଲା ପରେ ଭୂଚ୍ଛାୟାର ବମ୍ବକଳା ଅଣାଯାଇ ପାରିବ । କାରଣ ଭୂଚ୍ଛାୟାର ଅବସ୍ଥିତ ଚନ୍ଦ୍ର ଗୋଲରେ (ଅବଶ୍ୟ ଚନ୍ଦ୍ରଗ୍ରହଣରେ) ।

**ମନ୍ଦକୋଟିଫଳଯୁକ୍ତବୂନତା**
**ନକ୍ରକର୍କିମୁଖମନ୍ଦକେନ୍ଦ୍ରକେ ।**
**ତ୍ରିଜ୍ୟକା ଭବତ ସଂସ୍କୃତା ତୟା**
**ବର୍ଜ୍ଜିତା ଦ୍ୱିଗୁଣିତତ୍ରିମୌର୍ବ୍ୱିକା ।୧୬।**

**ଶେଷକେଣ ବହୃତା ତ୍ରିଭଜ୍ୟକା-**
**ବର୍ଗତଃ ଫଳକଳାତ୍ମକଃ ସ୍ଫୁଟଃ ।**
**ମନ୍ଦକର୍ଣ୍ଣ ଇନଚନ୍ଦ୍ରୟୋଃ କ୍ଷିତେ-**
**ର୍ମ୍ମଧ୍ୟତୋଽନ୍ୟଖସଦାଂ ରବେର୍ଭବେତ୍ ।୧୭।**

ମନ୍ଦକେନ୍ଦ୍ର ମକର ଆଦ୍ୟ ୬' ରାଶିରେ ଥିବାବେଳେ ତ୍ରିଜ୍ୟାରେ ମନ୍ଦକୋଟି ଫଳ ଯୋଗକର ଓ ମନ୍ଦ କେନ୍ଦ୍ର କର୍କଟ ଆଦ୍ୟ ୬' ରାଶିରେ ଥିବାବେଳେ ତ୍ରିଜ୍ୟାରୁ ମନ୍ଦକୋଟି ଫଳ ବିଯୋଗ କରି ସଂସ୍କୃତ ତ୍ରିଜ୍ୟା ଆଣିବ । ଦ୍ୱିଗୁଣିତ ତ୍ରିଜ୍ୟାରୁ ଏହି ସଂସ୍କୃତ ତ୍ରିଜ୍ୟା ବାଦ ଦେଇ ସେଥିରେ ତ୍ରିଜ୍ୟା ବର୍ଗକୁ ହରିବ । ଫଳ ରବ ଓ ଚନ୍ଦ୍ରର କଳାଦ୍ୟ ସ୍ଫୁଟ ମନ୍ଦ କର୍ଣ୍ଣ ହେବ । ମନ୍ଦକୋଟି ଫଳ ସାହାଯ୍ୟରେ, ତାହାର ସ୍ଫୁଟ ମନ୍ଦ କର୍ଣ୍ଣ ଆସିବ ।

ପୂର୍ବ ବର୍ଣ୍ଣିତ ଶ୍ଳୋକରେ ମଙ୍ଗଳ ଆଦି ଗ୍ରହମାନଙ୍କର ଯେଉଁ ମନ୍ଦ କର୍ଣ୍ଣ ଆସିବ ତାହା ସୂର୍ଯ୍ୟ କେନ୍ଦ୍ରଠାରୁ ସେମାନଙ୍କର କେନ୍ଦ୍ରିକ ଦୂରତା ବୋଲି ବୁଝିବାକୁ ହେବ ।

**ମନ୍ଦକର୍ଣ୍ଣହତଯୋଜନଶ୍ରୁତସ୍ତ୍ରିଜ୍ୟୟା କଳ ହୃତା ଭବେଦ୍ ସ୍ଫୁଟା**
**ମଧ୍ୟକର୍ଣ୍ଣହତବମ୍ବଲପ୍ତିକା ସ୍ପଷ୍ଟକର୍ଣ୍ଣବହୃତାଃ ପରସ୍ଫୁଟାଃ ।୧୮।**

ଏପରି ଭାବରେ କଳାତ୍ମକ ସ୍ଫୁଟ ମନ୍ଦକର୍ଣ୍ଣ ଅଣା ଗଲା । ଏହାକୁ ମଧ୍ୟଯୋଜନ କର୍ଣ୍ଣରେ ଗୁଣି ତ୍ରିଜ୍ୟାରେ ହରଣ ଦେଲେ ତାହା ଯୋଜନାତ୍ମକ ସ୍ଫୁଟ ମନ୍ଦକର୍ଣ୍ଣ ହେବ । ପୁଣି ମଧ୍ୟମ ବିମ୍ବ କଳାକୁ ମଧ୍ୟମ ଯୋଜନ କର୍ଣ୍ଣରେ ଗୁଣି ସ୍ଫୁଟ ଯୋଜନ କର୍ଣ୍ଣରେ ହରିଲେ ସ୍ଫୁଟ ବିମ୍ବକଳା ହେବ ।

ସିଦ୍ଧାନ୍ତ ଶିରୋମଣୌ—

**ମନ୍ଦଶ୍ରୁତଦ୍ରାକ୍ଶ୍ରୁତବତ୍ ପ୍ରସାଧ୍ୟା**
**ତଯ୍ୟା ତ୍ରିଭଜ୍ୟାଦ୍ୱିଗୁଣା ବହୀନା ।**
**ତ୍ରିଜ୍ୟାକୃତଃ ଶେଷହୃତା ସ୍ଫୁଟା ସ୍ୟା-**
**ଲ୍ଲିପ୍ତା ଶ୍ରୁତସ୍ତିଗ୍ମ ରୁଚେର୍ବିଧୋଶ୍ଚ ।୧୯।**

**ଲିପ୍ତାଶ୍ରୁତଘ୍ନସ୍ତ୍ରିଗୁଣେନ ଭକ୍ତ**
**ସ୍ପଷ୍ଟୋଭବେଦ୍ ଯୋଜନକର୍ଣ୍ଣ ଏବମ୍ ।**
**ବିମ୍ବଂରବେର୍ଦ୍ୱିଦ୍ୱିଶରର୍ତ୍ତୁ ସଂଖ୍ୟା-**
**ନୀନ୍ଦୋଃ ଖନାଗାମ୍ବୁଧି ଯୋଜନାନି । ଇତି ।୨୦।**

ଶୀଘ୍ର କର୍ଣ୍ଣ ପରି ମନ୍ଦକର୍ଣ୍ଣ ବାହାର କର । ଦ୍ୱିଗୁଣିତ ତ୍ରିଜ୍ୟାରୁ ଏହାକୁ ଅନ୍ତର କର । ତ୍ରିଜ୍ୟା ବର୍ଗକୁ ଏହି ଅବଶେଷରେ ହର । ଫଳ ଚନ୍ଦ୍ର ବା ସୂର୍ଯ୍ୟର କର୍ଣ୍ଣ ହେବ । ଏହା କଳୁ କଳାତ୍ମକ ହେବ । ଏହା ବାସ୍ତବରେ ଭୂକେନ୍ଦ୍ରରୁ ସୂର୍ଯ୍ୟ ବା ଚନ୍ଦ୍ରର ଦୂରତା ।

$$\frac{\text{କର୍ଣ୍ଣ} \times \text{ମଧ୍ୟଯୋଜନ କର୍ଣ୍ଣ}}{\text{ତ୍ରିଜ୍ୟା}} = \text{ସ୍ଫୁଟ ଯୋଜନ କର୍ଣ୍ଣ ।}$$

ସୂର୍ଯ୍ୟକେନ୍ଦ୍ର ଓ ଚନ୍ଦ୍ର କେନ୍ଦ୍ର ପୃଥିବୀ କେନ୍ଦ୍ରଠାରୁ ଯଥାକ୍ରମେ ୬୫୨୨ଓ ୪୮୦ ଯୋଜନରେ ଅଛି ।

**ଭାସ୍କରୋକ୍ତମୃଦୁକର୍ଣ୍ଣସାଧନଂ ଯଦ୍ୟପି ସ୍ଫୁଟତମଂ ତଥାପ୍ୟଦଃ ।**
**ପ୍ରାହ୍ୟକୋଟିଫଳତୋଲ୍ଲକାନ୍ତର ବିମ୍ବମଧ୍ୟସମତାର୍ଥମେବ ହି ।୨୧।**

ଭାସ୍କରଙ୍କ ମତରେ ସ୍ଫୁଟ କର୍ଣ୍ଣ ସାଧନ ଭଲ ଭାବରେ ହୋଇଥାଏ । ମୁଁ ତଥାପି (୧୬, ୧୭ ଶ୍ଳୋକ) କୋଟିଫଳ ଯୋଗେ ସ୍ଫୁଟ କର୍ଣ୍ଣ ସାଧନ କରୁଛି । କାରଣ ମନ୍ଦୋଚ୍ଚ ଓ ସ୍ଫୁଟ ଗ୍ରହ ତିନ ରାଶି ଅନ୍ତରରେ ଥିବାବେଳେ ମଧ୍ୟ ଓ ସ୍ଫୁଟ କର୍ଣ୍ଣ ସମାନ ହୋଇ ଯାଇଥାନ୍ତି ।

**ମଧ୍ୟମାର୍କ ଶଶିବିମ୍ବକାଃ କଳାଃ**
**ସ୍ପଷ୍ଟତତ୍ ପ୍ରଥମ ଭୁକ୍ତତାଡ଼ିତାଃ ।**
**ମଧ୍ୟଭୁକ୍ତି ବିହୃତାଃ ସ୍ୱମଣ୍ଡଳ-**
**ଧ୍ୱାନ୍ତବିସ୍ତୃତରଦଃ ଫଳାନ ବା ।୨୨।**

ମଧ୍ୟମ ରବି ଓ ଚନ୍ଦ୍ର ବିମ୍ବକଳାକୁ ସେମାନଙ୍କର ଦୈନିକ ସ୍ପଷ୍ଟ ଗତିକଳାରେ ଯଥାକ୍ରମେ ଗୁଣି ଯଥାକ୍ରମେ ସେମାନଙ୍କର ଦୈନିକ ମଧ୍ୟମଗତିକଳାରେ ହରିଲେ ଉଭୟଙ୍କର **ସ୍ପଷ୍ଟ ବିମ୍ବକଳା ଆସିପାରିବ ।**

**କିଂବା ବିମ୍ବାସ୍ତ୍ରିଗୁଣ ଗୁଣିତା ଯୋଜନୈଃ ସ୍ୱୈର୍ମିତାନାଂ**
**ସ୍ୱଶ୍ରବ୍ୟାପ୍ତାଃ ସ୍ଫୁଟତରକଳାଭାନୁଭୂଭବିଧୂନାମ୍ ।**
**ଯଦ୍ୱା ଭସ୍ୱଦ୍‌ଗତଫଳ ଖରୁଦ୍ରାଂଶ ଯୁକ୍ତୋନିତାସ୍ତା**
**ମଧ୍ୟାଃ ସ୍ପଷ୍ଟାଃ ସ୍ୟୁରନ୍ନକଳକାଃ କର୍କିନକ୍ରାଦ କେନ୍ଦ୍ରେ ।୨୩।**

ଅଥବା ଯୋଜନାତ୍ମକ ବିମ୍ବ ବ୍ୟାସକୁ ତ୍ରିଜ୍ୟାରେ ଗୁଣି ସ୍ପଷ୍ଟ କର୍ଣ୍ଣ ଯୋଜନରେ ହରିଲେ ରବି, ଚନ୍ଦ୍ର ବା ଭୂଭା ବିମ୍ବବ୍ୟାସର କଳାତ୍ମକ ସ୍ଫୁଟମାନ ଆସିଯାଇ ପାରିବ ।

$$\text{ସୂର୍ଯ୍ୟର ସ୍ଫୁଟ କଳାତ୍ମକ ବିମ୍ବବ୍ୟାସ} = \text{ମଧ୍ୟବିମ୍ବବ୍ୟାସ} + - \frac{\text{ସୂର୍ଯ୍ୟର ଗତିଫଳ}}{୧୧୦}$$

ମନ୍ଦକେନ୍ଦ୍ର ୨ୟ ଓ ୩ୟ ପାଦରେ ଥିବା ବେଳେ + (ଯୋଗ) ଓ ୧ମ ଓ ୪ର୍ଥ ପାଦରେ ଥିବା ବେଳେ ତାହା — (ବିୟୋଗ) ହେବ ।

**ମଧ୍ୟଂ ମାନଂ ଗତଫଳ-କଳା-ପଞ୍ଚବିଂଶାଂଶକସ୍ୟ**
**ତ୍ୟାଗାଦ୍ ଯୋଗାଦ୍ ସ୍ଫୁଟବିଧୁମିତର୍ନକ୍ରକର୍କ୍ୟାଦକେ ସ୍ୟାତ୍ ।**
**ରୁଦ୍ରଘ୍ନୀ ବା ସ୍ଫୁଟରବିଗତଃ ଖାକ୍ଷି-ଭକ୍ତାର୍କମାନଂ**
**ଯଦ୍ୱୋନେନ୍ଦ୍ର-ସ୍ଫୁଟଗତକଳାସ୍ତତ୍ତ୍ୱ ଭକ୍ତାଃ ସ୍ୱମାନମ୍ ।୨୪।**

ସ୍ପଷ୍ଟ ଚନ୍ଦ୍ର ବିମ୍ବବ୍ୟାସ କଳାକୁ ଏପରି ମଧ୍ୟ ପ୍ରକାଶ କରାଯାଇ ପାରେ । ଯଥା—

$$\text{ସ୍ଫୁଟଚନ୍ଦ୍ର ବିମ୍ବକଳା} = \text{ମଧ୍ୟଚନ୍ଦ୍ର ବ୍ୟାସକଳା} \pm \frac{\text{ଚନ୍ଦ୍ରଗତିଫଳ କଳା}}{୨୫} \; (+) \text{ ଓ } (-)$$

ଚିହ୍ନର ବ୍ୟବହାର ସମ୍ବନ୍ଧେ ଆଗରୁ କୁହାଯାଇଅଛି । ଏଥିନିମନ୍ତେ ଆଉ ଗୋଟିଏ ସୂତ୍ର ମଧ୍ୟ ଏହିପରି ଅଛି—

$$\text{ସ୍ପଷ୍ଟ ରବି ବିମ୍ବବ୍ୟାସ କଳା} = \frac{\text{ଦୈନିକ ସ୍ପଷ୍ଟ ରବି ଗତି} \times ୧୧}{୨୦}$$

$$\text{ସ୍ପଷ୍ଟ ଚନ୍ଦ୍ର ବିମ୍ବବ୍ୟାସ କଳା} = \frac{\text{ଦୈନିକ ସ୍ପଷ୍ଟ ଚନ୍ଦ୍ର ଗତି} - ୭}{୨୫}$$

**ଭୂବ୍ୟାସନିଘ୍ନଃ ସ୍ଫୁଟ-ସୂର୍ଯ୍ୟକର୍ଣ୍ଣୋ**
**ଭୂବ୍ୟାସହୀନାର୍କତନୂବିଭକ୍ତଃ ।**
**ଫଳଂ ତଦା ମୂଳ ଶିଖାନ୍ତଦୈର୍ଘ୍ୟଂ**
**ସୂଚୀନିଭାୟାଃ ପୃଥିବୀପ୍ରଭାୟାଃ ।୨୫।**

ପୃଥିବୀ ସୂଚ୍ୟାକାର ଛାୟାର ଦୈର୍ଘ୍ୟ (ପୃଥିବୀ କେନ୍ଦ୍ରରୁ)

$$= \frac{\text{ସ୍ପଷ୍ଟ ସୂର୍ଯ୍ୟ କର୍ଣ୍ଣ} \times \text{ଭୂବ୍ୟାସ}}{\text{ସୂର୍ଯ୍ୟବ୍ୟାସ} - \text{ଭୂବ୍ୟାସ}}$$

ସିଦ୍ଧାନ୍ତ ଶିରୋମଣି

**ଭୂବ୍ୟାସହୀନଂ ରବିବିମ୍ବମିନ୍ଦୁ-**
**କର୍ଣ୍ଣାହତଂ ଭାସ୍କରକର୍ଣ୍ଣଭକ୍ତମ୍ ।**
**ଭୂବିସ୍ତୃତର୍ଲବ୍ଧଫଳେନ ହୀନା**
**ଭବେତ୍ କୁଭାବିସ୍ତୃତିରିନ୍ଦୁ ମାର୍ଗେ । ଇତି ।୨୭।**

ଚନ୍ଦ୍ର ଗୋଳରେ (କକ୍ଷାରେ)

$$\text{ଭୂଭାବ୍ୟାସ} = \text{ଭୂଚ୍ଛାୟା} - \frac{(\text{ରବିବ୍ୟାସ} - \text{ଭୂବ୍ୟାସ}) \text{ ଚକ୍ର}}{\text{ରବିବ୍ୟାସ}}$$

**ତନ୍ମାନ ଲିପ୍ତା ଶଶିବତ୍ ପ୍ରସାଧ୍ୟାଃ**
**କ୍ବାଂବା ନଗାଂଶଃ ଶଶ-ଭୂଦ୍‌ଗତେର୍ଯଃ**
**ସୋଽଷ୍ଟାଦ୍ରି ନିଘ୍ନେଷୁ ମନୂଦ୍ଧୃତାର୍କ-**
**ଗତ୍ୟୂନିତଃ ସ୍ୟାତ୍ତମସଃ ପ୍ରମାଣମ୍ ।୨୭।**

ଚ୍ଛାୟାବ୍ୟାସର କଳାତ୍ମକ ମାନ ମଧ୍ୟ ଅଣାଯାଇ ପାରେ, ଯେପରି ଚନ୍ଦ୍ର ଅଣାଯାଏ । କାରଣ ଗ୍ରହଣରେ ଚନ୍ଦ୍ର କକ୍ଷାରେ ହିଁ ଏହାରିମାନର ଆବଶ୍ୟକତା ଅଛି । ତାହାର ପରିମାଣ ଏହିପରି ମଧ୍ୟ ଦିଆଯାଇ ପାରେ—

$$\frac{\text{ଦୈନିକ ଚନ୍ଦ୍ର ସ୍ପଷ୍ଟ ଗତି}}{୭} - \frac{\text{ଦୈନିକ ସ୍ପଷ୍ଟ ରବି ଗତି} \times ୨୮}{୧୪୫}$$

**ଭୂଭା ବିଧୁଂ ଚନ୍ଦ୍ର ଇନଂ ପିଧତ୍ତେ ଯଦା ତଦୈବ ଗ୍ରହଣଂତୟୋଃସ୍ୟାତ୍ ପାତାଖ୍ୟରାହୋର୍ଭ୍ରଜସନ୍ନକର୍ଷାତ୍ତସ୍ୟାସୁର-ଗ୍ରାସ ଇତି ପ୍ରଶସ୍ତିଃ ।୨୮।**

ପୃଥିବୀର ଛାୟା ଚନ୍ଦ୍ରଙ୍କୁ ଢ଼ାଙ୍କିଲେ ଚନ୍ଦ୍ର ଗ୍ରହଣ ଓ ଚନ୍ଦ୍ର (ଛାୟା) ସୂର୍ଯ୍ୟଙ୍କୁ ଢ଼ାଙ୍କିଲେ ସୂର୍ଯ୍ୟ ଗ୍ରହଣ ହୋଇଥାଏ । ସୂର୍ଯ୍ୟ ଓ ଚନ୍ଦ୍ର ତଥା ଭୂଭାର ଚନ୍ଦ୍ରପାତ ନିକଟରେ ଅବସ୍ଥାନ କାଳରେ ହିଁ ଗ୍ରହଣ ହେଉ ଥିବାରୁ ରାହୁ ଗ୍ରାସ କରିବା କଥା ପ୍ରସିଦ୍ଧି ଲାଭ କରିଛି । କାରଣ ପାତର ନାମାନ୍ତର ରାହୁ ।

ସିଦ୍ଧାନ୍ତ ଶିରୋମଣୌ :—

**ଦିଗଦେଶକାଳାବରଣାଦିଭେଦା-**
**ନ୍ନ ଛାଦକୋ ରାହୁରିତି ବ୍ରୁବନ୍ତି ।**
**ଯନ୍ମାନିନଃ କେବଳଗୋଳବିଜ୍ଞା-**
**ସ୍ତତ୍ସଂହିତା ବେଦପୁରାଣ ବାହ୍ୟମ୍ ।୨୯।**

ଗ୍ରହଣ ଗୁଡ଼ିକର ଦିଗଭେଦ (ଥରେ ପୂର୍ବରେ ହେଲେ ଥରେ ପଶ୍ଚିମରେ) କାଳ-ଭେଦ ଓ ଗ୍ରାସ ଭେଦ ହେଉ ଥିବାର ଦେଖି ଗୋଟିଏ ମାତ୍ର ରାହୁ ଏପରି ଭିନ୍ନ ଭିନ୍ନ କିପରି ହେବ ମନେ କରି ରାହୁଙ୍କୁ ଗ୍ରହଣର ଛାଦକ ବୋଲି ମାନନ୍ତି ନାହିଁ ଯେଉଁମାନେ, ସେମାନଙ୍କୁ ଭାସ୍କର ଅଭିମାନୀ ଓ କେବଳ ଗୋଳଜ୍ଞ ଗର୍ବୀ ବୋଲି ଗାଳି ଦେଇ ଅଛନ୍ତି । ପୁଣି ସେ କହିଛନ୍ତି ସେମାନଙ୍କର ଏହି କଥା ବେଦ ସଂହିତା ଓ ପୁରାଣର ବିରୋଧୀ ।

**ରାହୁଃ କୁଭାମଣ୍ଡଳଗଃ ଶଶାଙ୍କଂ**
**ଶଶାଙ୍କଗଶ୍ଛାଦୟତୀନବିମ୍ବମ୍ ।**
**ତମୋମୟଃ ଶମ୍ଭୁବର-ପ୍ରଦାନାତ୍**
**ସର୍ବାଗମାନାମବିରୁଦ୍ଧମେତତ୍ । ଇତି ।୩୦।**

ରାହୁ ତମୋମୟ । ସେ ପୃଥିବୀ ଛାୟାମଣ୍ଡଳରେ ପ୍ରବେଶ କରି ଚନ୍ଦ୍ରଙ୍କୁ ଗ୍ରାସ କରେ । ପୁଣି ଚନ୍ଦ୍ରରେ ପ୍ରବେଶ କରି ସୂର୍ଯ୍ୟଙ୍କୁ ଆଚ୍ଛାଦନ କରେ । ଏହି ଗ୍ରାସ କାର୍ଯ୍ୟ କରିବା

ନମନ୍ତେ ଶିବ ତାଙ୍କୁ ଏହି ବର ଦେଇ ଅଛନ୍ତି । ଏପରି ସମାଧାନ କୌଣସି ଶାସ୍ତ୍ରର ବିରୋଧୀ ନୁହେ ।

ପ୍ରଗ୍ଭୁବୋ ଭ୍ରାମ୍ୟତ ଇନ୍ଦୁଇର୍ଦ୍ଧେ
ତଦ୍‌ଗର୍ଭମଭ୍ୟେଯଦଶୁଭ୍ରଙ୍ଗନୁଃ ।
ଜମ୍ବୁଦ୍ୱୟଦିଙ୍ମୁଖ ଏତବେଗା
ଭଉଦ୍‌ଗ୍ରହଃ ସାତପବମ୍ବଲୋପାତ୍ ।୩୧।

ସୂର୍ଯ୍ୟର ବିପରୀତ ଦିଗରେ ସୂର୍ଯ୍ୟଜନିତ ଭୂଚ୍ଛାୟା ଭ୍ରାନ୍ତ ବୃତ୍ତରେ ବରାବର ଭ୍ରମଣ କରୁଥାଏ । ପୂର୍ଣ୍ଣିମାନ୍ତରେ ଚନ୍ଦ୍ର ସୂର୍ଯ୍ୟର ବିପରୀତ ଦିଗରେ (ସୂର୍ଯ୍ୟଠାରୁ ଛ' ରାଶି ଅନ୍ତରରେ) ପୂର୍ବାଭିମୁଖ ହୋଇ ଯାଉ ଯାଉ ସେହି ଭୂଚ୍ଛାୟାରେ ପ୍ରବେଶ କଲେ ଚନ୍ଦ୍ରଗ୍ରହଣ ହୁଏ । ଚନ୍ଦ୍ରର କିରଣ ଲୋପ ହୁଏ । ଭୂଚ୍ଛାୟା ଭ୍ରମଣ ତୁଳନାରେ ଚନ୍ଦ୍ରର ଗତି ଅତ୍ୟଧିକ ହେତୁ ଏହିପରି ହୋଇଥାଏ । ଉଭୟଙ୍କର ଗତି ମଧ୍ୟ ପୂର୍ବକୁ ।

ଭୂଭାନୁମଧ୍ୟେ ଯଦି ଶୀତଭାନୁ
ର୍ଗଚ୍ଛନ୍ ରବିଂ ଛାଦୟତି ପ୍ରତୀଚ୍ୟାଃ ।
ଭାସ୍ୱଦ୍ ଗ୍ରହସ୍ତଦ୍ ଦ୍ୱିତୟସ୍ୟ ପୂର୍ବ
ଯାନେଽପି ଶୁଭ୍ରାଂଶୁଗତେର୍ମହତ୍ତ୍ୱାତ୍ ।୩୨।

ପୃଥିବୀ ଓ ସୂର୍ଯ୍ୟ ମଧ୍ୟରେ ଚନ୍ଦ୍ର ପୂର୍ବକୁ ଯାଉ ଯାଉ ପଶ୍ଚିମ ଦିଗରୁ ସୂର୍ଯ୍ୟଙ୍କୁ ଆଚ୍ଛାଦନ କଲେ ସୂର୍ଯ୍ୟଗ୍ରହଣ ହୋଇଥାଏ । ଏଥିରେ ଏହା ମଧ୍ୟ ଦେଖିବାର କଥା ଯେ ସୂର୍ଯ୍ୟ ଓ ଚନ୍ଦ୍ର ଉଭୟେ ପୂର୍ବକୁ ଯାଉଥିବାରୁ ଅଧିକ ଗତି ଗ୍ରହ ଚନ୍ଦ୍ର ସୂର୍ଯ୍ୟକୁ ଘୋଡ଼ାଇ ପକାଇବାର ସୁବିଧା ପାଇଥାଏ । ମୋଟ ଉପରେ ସୂର୍ଯ୍ୟଙ୍କୁ ଦେଖିବାକୁ ଲୋକେ ସୁବିଧା ନପାଇ ସୂର୍ଯ୍ୟଙ୍କୁ ଆଚ୍ଛାଦନ କରୁଥିବା ଆଲୋକବିହୀନ ତମୋମୟ ଚନ୍ଦ୍ରକୁ ହିଁ ଦେଖିଥାନ୍ତି ।

କୁଜାଦିପାତେଷୁ ଯଥାତୁରୀୟ
ଫଳସ୍ୟ ବାଚ୍ୟୋ ଧନ ହୀନଭାବଃ ।
ତଥା ଦିଗଂଶାଖ୍ୟଫଳେନ ସାହ୍ୟଃ
ସୂକ୍ଷ୍ମଃ ସ୍ଫୁଟସ୍ତୁର୍ଯ୍ୟଶଶୀବ କାର୍ଯ୍ୟଃ ।୩୩।

ଭୌମଆଦି ତାରା ଗ୍ରହମାନଙ୍କର ପାତରେ ଯେପରି ଚତୁର୍ଥ ଫଳ ଧନ ବା ଋଣ କରାଯାଇଥାଏ, ରାହୁରେ ସେହିପରି ଦିଗଂଶ ଫଳକୁ ଯୋଗ ବିୟୋଗ କରିବାକୁ ହେବ ।

ଏଠାରେ ଦିଗଂଶ ଫଳ ଚନ୍ଦ୍ରରେ ଯେପରି ସଂସ୍କାର କରାଯାଏ ଓ ଜଣାଯାଇଥାଏ, ସ୍ପଷ୍ଟରେ ସଂସ୍କାର କରିବାକୁ ଥିବା ଦିଗଂଶ ଫଳ ମଧ୍ୟ ଠିକ୍ ସେହିପରି ଆଣିବାକୁ ହେବ ଓ ସଂସ୍କାର କରିବାକୁ ହେବ ।

**ପାତୋନତତ୍କାଳକଚନ୍ଦ୍ରଦୋର୍ଜ୍ୟା**
**ଖାଷ୍ଟାଗ୍ନି ଭିଃଟେଗନ ଯୁତାର୍ଦ୍ଧିତାଚ ।**
**ଚାପୀକୃତା ଷଡ଼୍‌ବିହୃତା ଫଳଂ ସ୍ୟାତ୍**
**କଳାଦକଂ ସ୍ପଷ୍ଟଶରଃ ସୁଧାଂଶୋଃ ।୩୪।**

**ବିପାତଚନ୍ଦ୍ରସ୍ୟ ଭଷଟ୍‌କ ଆଦ୍ୟେ**
**ସୌମ୍ୟୋ ଦ୍ୱିତୀୟେ ସ ଚ ଦକ୍ଷିଣଃ ସ୍ୟାତ୍।**
**କ୍ଷିତପ୍ରଭିରେ୍ପଣଟୋ ବିଲୋମଶ୍ଚନ୍ଦ୍ରଗ୍ରହେ**
**ଦିକ୍‌ଶର ଏବ ବେଦ୍ୟଃ ।୩୫।**

ସ୍ପଷ୍ଟ ପର୍ବାନ୍ତକାଳିକ ଚନ୍ଦ୍ର ଆଣି ସେଥିରୁ ଚନ୍ଦ୍ରର ସ୍ପଷ୍ଟପାତ ବିୟୋଗ କର । ଏହାର ଭୁଜଜ୍ୟା ବାହାର କର । ଏହାହିଁ ବିକ୍ଷେପ କେନ୍ଦ୍ର ଜ୍ୟା । ଏଥିରେ ତାହାର ୩୦ ଅଂଶ ଯୋଗ କର ।

ଫଳକୁ ଅଧାକର ତାହାର ଚାପ ଆଣ । ଏହି ଚାପକୁ ପୁଣି ୬° ରେ ହରିଲେ ଚନ୍ଦ୍ରର କଳାଦି ସ୍ପଷ୍ଟଶର ହୋଇଥାଏ ।

ପାତବିହୀନ ଚନ୍ଦ୍ର ମେଷାଦି ୬ ରାଶିରେ ଥିଲେ ଆଗତ ଚନ୍ଦ୍ରଶର ଉତ୍ତର ଦିଗର ବୋଲି ବୁଝିବ, ମାତ୍ର ବିପାତ ଚନ୍ଦ୍ର ତୁଳାଦି ୬ ରାଶିରେ ଥିଲେ ଏହି ଶର ଦକ୍ଷିଣ ଦିଗର-ବୋଲି ବୁଝିବାକୁ ହେବ । ଗ୍ରହଣ ପରିଲେଖ ଲେଖିବା ବେଳେ ଏହି ଶରକୁ ଭୂସ୍ଥାନର ବିଲୋମ (ବିପରୀତ) ରେ ଦେବାକୁ ହେବ ।

**ଚାପଂ ବିନା କୋଟିଫଳଂ ତଥାସ୍ୟ**
**ଯୁତ୍ୟା ହତଂ ପାତଶଶାଙ୍କଗତ୍ୟୋଃ ।**
**ତ୍ରିଜ୍ୟାହୃତଂ ବାଣଗତଃ ସ୍ଫୁଟା ସ୍ୟା—**
**ତତ୍ସଂସ୍କୃତେଃ କ୍ରାନ୍ତିଗତେଃ ସ୍ଫୁଟତ୍ୱମ୍ ।୩୬।**

ଚାପ ନ କରି ଶରର କୋଟିଫଳକୁ ଚନ୍ଦ୍ର ଓ ତାର ପାତର ଗତି ଯୋଗରେ (ଉଭୟଙ୍କର ଗତିକୁ ଯୋଗ କରି) ଗୁଣ । ଗୁଣନ ଫଳକୁ ତ୍ରିଜ୍ୟାରେ ହରିଲେ ଶରର (ଚନ୍ଦ୍ରଶରର) ସ୍ପଷ୍ଟଗତି ଆସିବ । ଏହି ଶର ଗତିରେ କ୍ରାନ୍ତିଗତିର ସଂସ୍କାର କଲେ ତାହା ସ୍ପଷ୍ଟଶରଗତି ହେବ ।

ଲେଖ୍ୟଂ ବିପାତେନ୍ଦୁଭୁଜାବ୍‌ଧିପକ୍ଷ
ଖଣ୍ଡୈଃ ଶରାଂଶାଦସହାନ୍ତରଂ ବା ।
କୋଟିଫଳଂ ତଦ୍‌ଗତ ଯୋଗଜାଘ୍ନା-
ନ୍ତରଂ ଗତସ୍ତତ୍ତ୍ୱୟମାପ୍ତମିଷ୍ୟାଃ ।୩୭।

ଚନ୍ଦ୍ରରୁ ଚନ୍ଦ୍ରପାତ ବିୟୋଗ କରି ଭୁଜ କରିବ । ସେହି ଭୁଜାଂଶରୁ ଶର ଆଦି ଆଣି-ହେବ । ସେଥିନିମନ୍ତେ ୯୦° ର ବୃତ୍ତପାଦରେ ଜ୍ୟା ସାଧନକରି ୨୪ଟି ଜ୍ୟା (ଭୁଜଜ୍ୟା) କରି ପ୍ରତ୍ୟେକ ଖଣ୍ଡର ଶର, ଶରାନ୍ତର, କୋଟିଫଳ ଭୁଜଫଳ ଆଦି ଆଣିବ । ସେଥିରୁ ବିପାତ ଭୁଜାଂଶର ଶରଆଦି ଆଣିବା ବେଶ ସୁବିଧା ଜନକ । ୨୨୫ କଳା ତଫାତରେ ଅନୁପାତକରି ଏ ସବୁ ଅଣାଯାଇପାରିବ ।

ଯଦ୍‌ବାବିପାତେନ୍ଦୁଭୁଜୋତ୍‌ଥଲପ୍ତା
ନୃପାଂଶହୀନା ଗିରିଶୈର୍ବିଭକ୍ତାଃ
ଫଳଂଶରଃ ପାତବିହୀନଚନ୍ଦ୍ର
ବାହୋର୍ଗୃହାର୍ଦ୍ଧାବଧି କଳ୍ପନୀୟଃ ।୩୮।

ଅଥବା ଚନ୍ଦ୍ରରୁ ପାତ ବାଦଦେଇ ତାହାର ଭୁଜକଳା କରିଦେବ । ସେଥିରୁ ତାର $\frac{1}{16}$ ବିଯୁକ୍ତ କରିଦେଇ ୧୧ ରେ ହରିଦେବ । ଫଳ ଶର ହୋଇଯିବ । ଏପରି ଶର, ବିପାତ-ଚନ୍ଦ୍ରର ଭୁଜାଂଶ ୧୫° ହେବାଯାଏ ଅଣାଯାଇପାରେ । ତତୋଽଧିକ ଭୁଜାଂଶର ଶର ଏହି ଭାବରେ ଆଣିଲେ ଅତି ସ୍ଥୂଳ ହେବ ।

ଛାଦ୍ୟଛାଦକମାନଯୋଗଦଳତୋ ନ୍ୟୂନଃ ଶରଶ୍ଚେତ୍ତଦା
ଗ୍ରାସଃ ସ୍ୟାନ୍ନ ଶରେଽଧିକେ ସ୍ଫୁଟତରେ ତନ୍ମାନଯୋଗାର୍ଦ୍ଧତଃ ।
ପ୍ରୋଜ୍‌ଝ୍ୟ ସ୍ପଷ୍ଟଶରଞ୍ଚ ଶିଷ୍ଟକଳିକାସ୍ତୁନ୍ନା ଭବନ୍ତ୍ୟେବ ତା—
ସ୍ତାଦ୍ୟାଦ୍ୟଦ୍ୟଧିକାସ୍ତଦୈବ ସକଳଗ୍ରାସୋଽମ୍ବର ବ୍ୟାପକଃ ।୩୯।

ଗ୍ରାହ୍ୟ ଓ ଗ୍ରାହକ ବିମ୍ବମାନ ଯୋଗକରି ତାହାର ଅଧାରୁ ଶର କମହେଲେ ଗ୍ରାସ ହୁଏ । ସ୍ଫୁଟଶର ମାନୈକ୍ୟାର୍ଦ୍ଧରୁ ଅଧିକ ହେଲେ ଗ୍ରହଣ ହୁଏ ନାହିଁ । ମାନୈକ୍ୟାର୍ଦ୍ଧରୁ ଶର ଫେଡ଼ିଲେ ଯାହା ଅବଶେଷ ରହେ ତାହାହିଁ ଗ୍ରାସ । ଏହି ଗ୍ରାସମାନ ଗ୍ରାହ୍ୟମାନରୁ ଅଧିକ ହେଲେ ଗ୍ରାସ ସମ୍ପୂର୍ଣ୍ଣ ହୋଇ ଆକାଶଗ୍ରାସ ମଧ ହୋଇଥାଏ । ଗ୍ରାସରୁ ଗ୍ରାହ୍ୟ ବିମ୍ବ ଫେଡ଼ିଲେ ଯାହା ଅବଶେଷ ରହେ ସେତକହିଁ ଖ ଗ୍ରାସବୋଲି ବୁଝିବାକୁ ହେବ ।

---

୩୭-ଇତି ବିକ୍ଷେପଖଣ୍ଡାଃ ।

**ସ୍ପର୍ଶଶ୍ଚନ୍ଦ୍ରମସଃ ପୁରୋ ଦଶି ରବେଃ ପଶ୍ଚାଦ୍ ବମୋକ୍ଷୋଽନ୍ୟଦକ୍—**
**ପ୍ରାୟଃସ୍ୟାଚ ନମୀଳନଂ ହ୍ର ସକଳ ଗ୍ରାହ୍ୟାପିଧାନକ୍ଷଣଃ ।**
**ତବୋନ୍ମୀଳନମେବ କ୍ଷିଦୁଦତେ ସ୍ୱଚ୍ଛାଦକାନ୍ମଣ୍ଡଳେ**
**ତନ୍ମଧ୍ୟେ ଦୃଗଗୋଚରାଂଶୁ ରୁଦତୋ ଗ୍ରାସୋ ବମର୍ଦ୍ଧାଭିଧଃ ।୪୦।**

ଚନ୍ଦ୍ର ଗ୍ରହଣରେ ସ୍ପର୍ଶ ପୂର୍ବ ଦଗରେ ଓ ମୋକ୍ଷ ପଶ୍ଚିମ ଦଗରେ ହୋଇଥାଏ । ମାତ୍ର ସୂର୍ଯ୍ୟ ଗ୍ରହଣରେ ପଶ୍ଚିମ ଦଗରେ ସ୍ପର୍ଶ ଓ ପୂର୍ବଦଗରେ ମୋକ୍ଷ ହୋଇଥାଏ । ଏହ୍ପୂର୍ବ ପଶ୍ଚିମ ବେଳେ ବେଳେ ଦକ୍ଷିଣ ଉତ୍ତରକୁ ଚଳ ଯାଇଥାଏ । ତେଣୁ ପ୍ରାୟଶବ୍ଦର ପ୍ରୟୋଗ ଏଥିରେ କରାଯାଇ ଅଛି । ଯେତେ ସମୟ ଧର ଗ୍ରାହକବମ୍ବ, ଗ୍ରାହ୍ୟବମ୍ବକୁ ଘୋଡ଼ାଇ ରଖେ ତାହାହିଁ ନମୀଳନ ସମୟ । ଗ୍ରାହକବମ୍ବରୁ ଗ୍ରାହ୍ୟବମ୍ବ ମୁକ୍ତିଲାଭ କରବା ସମୟକୁ ଉନ୍ମୀଳନ କାଳ କହନ୍ତ । ନମୀଳନ ଓ ଉନ୍ମୀଳନର ମଧ୍ୟବର୍ତ୍ତୀ ସମୟକୁ ମର୍ଦ୍ଦ ସମୟ କହନ୍ତ । ଏ ସମୟରେ ଗ୍ରାହ୍ୟବମ୍ବ ଆଦୌ ଦେଖାଯାଏ ନାହିଁ । ମର୍ଦ୍ଦକୁ ବମର୍ଦ୍ଦ ମଧ୍ୟ କେହ୍ କେହ୍ କହନ୍ତ ।

**ପର୍ବାନ୍ତଃ ସମଲପ୍ତିକେନ୍ଦୁରବଜୋ ଭାର୍ଦ୍ଧେ ଚ ଚକ୍ରେ କମା**
**ଚାନ୍ଦ୍ରସ୍ୟ ଗ୍ରହଣସ୍ୟ ମଧ୍ୟସମୟଃ ସୌରସ୍ୟ ସଲ୍ଲମ୍ବନଃ ।**
**ମାନୈକ୍ୟାର୍ଦ୍ଧକୃତେଃ ସ୍ଫୁଟାଶୁଗକୃତଂ ପ୍ରୋଜ୍ଝ୍ୟାବଶେଷାପ୍ତଦଂ**
**ଷଷ୍ଟ୍ୟାସଙ୍ଗୁଣିତଂ ଦନେଶ ଶଶିନୋଃ ସୂକ୍ଷ୍ମସ୍ୱଭୁକ୍ତ୍ୟନ୍ତର ।୪୧।**

**ଭକ୍ତଂ ତତ୍ପ୍ରକନାଡ଼ିକାଃ ସପଳକାଃ ସ୍ଥିତ୍ୟର୍ଦ୍ଧଜା ମଧ୍ୟମା**
**ଗ୍ରାହ୍ୟ-ପ୍ରୋଜ୍ଝିତମାନଯୋଗଦଳତଃ ସ୍ୱାପ୍ତାଦ୍ୱିଯୁକ୍ତାଦଷୋଃ ।**
**କୃତ୍ୟାଶେଷପଦାତ୍ ପୁରେବ ଘଟିକା ମଧ୍ୟାବମର୍ଦ୍ଦାର୍ଦ୍ଧକାଃ**
**ପର୍ବାନ୍ତଃ ସ୍ଥିତମର୍ଦ୍ଧଖଣ୍ଡବୟୁତସ୍ତଦ୍ୟୁକ୍ କମାଦ୍ରୁତ୍ କମାତ୍ ।୪୨।**

**ମଧ୍ୟେ ସ୍ପର୍ଶ ନମୀଳନେ ଚ ଭବତଶ୍ଚୋନ୍ମୀଳନୋନ୍ମୋକ୍ଷକୌ**
**ତତ୍କାଳକପାତସୂକ୍ଷ୍ମଶଶିକୈର୍ବାଣୈଃ ପୁନଃ ସାଧିତାଃ ।**
**ସ୍ପର୍ଶାଦ୍ୟା ଅସକୃତ୍କ୍ରିୟାସ୍ଥିରତରାଃ ସ୍ପଷ୍ଟାଃ ସୂର୍ୟଚନ୍ଦ୍ରା ରବେ-**
**ସ୍ତ୍ରେତେ ସ୍ୱସ୍ୱବଲମ୍ବନୈଃ ସହ ପରସ୍ପଷ୍ଟା ମୁହୁଃ ସଂସ୍କୃତାଃ ।୪୩।**

ରବ ଓ ଚନ୍ଦ୍ରକଳା ପର୍ଯ୍ୟନ୍ତ ସମାନ ହେବା ବେଳେ ଯେଉଁ ପର୍ବାନ୍ତ ସାଧିତ ହୋଇଥାଏ (ଅମାନ୍ତ ବା ପୂର୍ଣ୍ଣାନ୍ତ) ତାହାକୁହିଁ ସମପର୍ବାନ୍ତ କହ୍ଥାନ୍ତ । ଏପରି ଅବସ୍ଥାରେ (ସମକାଳ) ଚନ୍ଦ୍ର ଓ ସୂର୍ଯ୍ୟ ୬ ରାଶି ଅନ୍ତରରେ ରହ୍ଲେ ଚନ୍ଦ୍ର ଗ୍ରହଣର ମଧ୍ୟକାଳ ହୁଏ । କନ୍ତୁ ସେହ୍ ସମକାଳ ଅବସ୍ଥାରେ ଉଭୟଙ୍କର ଅନ୍ତର ୧୨ ରାଶି ହେଲେ ସୂର୍ଯ୍ୟ ଗ୍ରହଣର ମଧ୍ୟକାଳ ହୁଏ ।

ଗ୍ରାହ୍ୟ ଓ ଗ୍ରାହକ ବିମ୍ବ ପରିମାଣକୁ ମିଶାଇ ଅଧାକରି ତାହାର ବର୍ଗରୁ ସ୍ଫୁଟ ଶର ବର୍ଗ ଫେଡ଼ି ଶେଷର ମୂଳ ନିଅ । ତାହାକୁ ୬୦ରେ ଗୁଣି ସ୍ପଷ୍ଟ ରବି ଓ ଚନ୍ଦ୍ରର ଗତ୍ୟନ୍ତରରେ ଭାଗ ଦେଲେ ଗ୍ରହଣ ସ୍ଥିତିର ଅଧା ସମୟ ଆସେ । ତାକୁ ଦୁଇଗୁଣ କଲେ ପୂରା ଗ୍ରହଣ ସମୟ ଆସିଥାଏ ।

ଠିକ ଏହିପରି ଗ୍ରାହ୍ୟ ଓ ଗ୍ରାହକ ବିମ୍ବ ପରିମାଣର ଅନ୍ତର କରି ତାହାର ଅଧାବର୍ଗରୁ ଶର ବର୍ଗ (ତେତେବେଳର) ବାଦ ଦିଅ । ଅବଶେଷର ମୂଳ ନେଇ ତାକୁ ୬୦ରେ ଗୁଣି ଚନ୍ଦ୍ର ସୂର୍ଯ୍ୟରୁ ଗତ୍ୟନ୍ତରରେ ଭାଗ ଦିଅ । ଫଳ ହେବ ବିମର୍ଦ୍ଦାର୍ଦ୍ଧ ଘଟ୍ୟାଦି । ଦୁଇ ଗୁଣ କଲେ ମର୍ଦ୍ଦକାଳ ଆସିବ । ସମପର୍ବାନ୍ତ କାଳରେ ସ୍ଥିତ୍ୟର୍ଦ୍ଧ ଓ ମର୍ଦ୍ଦାର୍ଦ୍ଧ ଯୋଗ କଲେ ମୋକ୍ଷ ଓ ଉନ୍ମୀଳନ ସମୟ ହୁଏ । ଏହି ମୋକ୍ଷ ଓ ଉନ୍ମୀଳନ ଆଦି ସମୟରେ ପାତ ଓ ସ୍ପଷ୍ଟ ଚନ୍ଦ୍ର ସାଧନ କରି ସେଥିରୁ ଶର ଆଣି ସେଥିରୁ ପୁଣି ବାରମ୍ବାର ସ୍ପର୍ଶ, ମୋକ୍ଷ ଆଦି ସମୟ ସାଧନ କରିବା ଉଚିତ ଏବଂ ଏପରି ଭାବରେ ସୂର୍ଯ୍ୟ ଗ୍ରହଣର ଏହି ସ୍ଫୁଟ ସ୍ପର୍ଶ ଆଦି କାଳ ଆଣିବା ପରେ ସେଥିରେ ପୁଣି ବାରମ୍ବାର ଲମ୍ବନ ସଂସ୍କାର କରି ସ୍ପଷ୍ଟ ସମୟ ଅଣାଯାଇ ଥାଏ ।

**ବକ୍ଷ୍ୟାମ୍ୟେବ ବିଶେଷମୀଶଗୁଣିତଂ ମଧ୍ୟଗ୍ରହେଷୋର୍ଦ୍ଦଳଂ**
**ସୂର୍ଯ୍ୟେନ୍ଦ୍ୱନ୍ତ୍ୟଗତାନ୍ତରେଣ ହୃତମିଷୌ ସ୍ୟାଦ୍ବର୍ଦ୍ଧମାନେ ଫଳମ୍ ।**
**ନାଡ୍ୟାଦ୍ୟଂ ବିୟୁତଂ ଯୁତଂ ତ୍ୱିତରଥା ପର୍ବଣ୍ୟତସ୍ତତ୍ ସ୍ଫୁଟଂ**
**ତତ୍କାଳେନ୍ଦୁଶରାଦ୍ୟପର୍ବଶରୟୋରନ୍ତର୍ବିଳପ୍ତାକୃତେଃ ।୪୪।**

**ଅର୍ଦ୍ଧାନ୍ ମୂଳମିହାଦ୍ୟପର୍ବଶରତଃ ସଂଶୋଧ୍ୟ ଶେଷଃ ସ୍ଫୁଟଃ**
**ସ୍ୟାଦ୍ବାଣସ୍ତତ ଆଗତେ ସ୍ଥିତିଦଳେ ସ୍ୟାତାଂ ସମେ ବିସ୍ଫୁଟେ ।**
**ଗ୍ରାସୋ ଦୃକ୍ସମତାମୁପୈତି ଚ ତତଃ ସ୍ପର୍ଶାଦୟଃ ସ୍ୟୁଃ ସକୃତ୍**
**ପଶ୍ଚାଦ୍ୟା କଥୟିଷ୍ୟତେ ଧରଣିଭା ସା ଦୃକ୍ସମା ଗୃହ୍ୟତାମ୍ ।୪୫।**

ବାରମ୍ବାର ଖଣ୍ଡ ଗୁଡ଼ ଥରକରେ କିପରି ଏହି ସବୁ ସମୟ ଅଣାଯାଇ ପାରେ ତାହା ଏଠାରେ କୁହାଯାଉଛି—

ସମପର୍ବ କାଳର ଶର ଆଣି ତାର ଅଧାକୁ ରବି ଓ ଚନ୍ଦ୍ରର ଗତ୍ୟନ୍ତରରେ ହରିଲେ ଯାହା ଦଣ୍ଡ ଆଦି ଲବ୍ଧ ହେବ ତାକୁ ସମପର୍ବ କାଳରୁ ବିୟୁକ୍ତ କରିବାକୁ ହେବ । ଶର କମୁଥିବା ଅବସ୍ଥାରେ ଥିଲେ ଯୁକ୍ତ କରିବାକୁ ହେବ । ତାହାହେଲେ ପର୍ବକାଳ ସ୍ପଷ୍ଟ ହୋଇଯିବ । ଏହି କାଳରୁ ପୁଣି ପାତ, ସ୍ପଷ୍ଟଚନ୍ଦ୍ର ଏବଂ ସେଥିରୁ ଶର ଆଣିବ । ଏହି ଶର ଏବଂ କେବଳ ସମପର୍ବକାଳିକ ଶରର ଅନ୍ତର କରି ଶେଷ ବିକଳାଦି ବର୍ଗର ଅର୍ଦ୍ଧର ବର୍ଗ-ମୂଳକୁ ସମପର୍ବକାଳିକ ଶରରୁ ବାଦ ଦେଲେ ସେତିକି ସ୍ଫୁଟ ଶର ହୁଏ । ଏହି ସ୍ଫୁଟ ଶରରୁ

ଚନ୍ଦ୍ର ପରସ୍ପର-କାଳ ସାଧନ କରିବ । ଏହି ଶର ଯୋଗେ ଯେଉଁ ଗ୍ରାସ ଆଦିର ସମୟ ଆସେ ତାହା ଦୃକ୍‌ସିଦ୍ଧ ହୋଇଥାଏ । ଏହି ଶରରୁ ଆନୀତ ସ୍ପର୍ଶ ଆଦି ସମୟ ଏକାଥରକେ ସ୍ଫୁଟ ହୋଇଯାଏ ।

ଆଗକୁ ଯେଉଁ ଭୂଚ୍ଛାୟା କଥା କୁହାଯିବ ତାହା ଦୃକ୍‌ସିଦ୍ଧ ବୋଲି ଜାଣିବ । (ଏଥିରୁ ଜଣାଯାଉଛି ଯେ ଆଗରୁ ଯେଉଁ ଭୂଭା କୁହାଯାଇଛି ତାହା ସ୍ଥୂଳ । ଏଣୁ କଦାପି ଦୃକ୍‌ସିଦ୍ଧ ନୁହେଁ ।

ଅଥେଷ୍ଟକାଳାଦ୍ ଗ୍ରସନପ୍ରମାଣଂ
ଗ୍ରାସାଦଭୀଷ୍ଟାଗ୍ରମୟଂ ପ୍ରବକ୍ଷ୍ୟେ
ପୂର୍ବାପରଭାଗେ ଗ୍ରହଣେଷ୍ଟନାଡ଼ୀଂ
ସ୍ଥିତ୍ୟର୍ଦ୍ଧତଃ ପ୍ରୋଜ୍‌ଝ୍ୟ ତତୋଽବଶିଷ୍ଟୈଃ ।୪୬।

ଦଣ୍ଡୈର୍ନିହନ୍ୟାଦ୍ ଗ୍ରହକାଳହାରଂ
ଷଷ୍ଟ୍ୟା ଭଜେତ୍କୋଟିକଳା ବଧୋଃ ସ୍ୟୁଃ ।
ଭନୋର୍ଗ୍ରହେ କୋଟିକଳାଶ୍ଚ ମଧ୍ୟ
ସ୍ଥିତ୍ୟର୍ଦ୍ଧନଘ୍ନା ସ୍ଫୁଟଲମ୍ବନୋଦ୍ଧୃତୈଃ ।୪୭।

ସ୍ଥିତ୍ୟର୍ଦ୍ଧ ଦଣ୍ଡୈର୍ବିହୃତାଃ ସ୍ଫୁଟାଃ ସ୍ୟୁ-
ସ୍ତତ୍କାଳବକ୍ଷେପକଳା ଭୁଜୋଽବ ।
ଦୋଃ କୋଟିବର୍ଗୈକ୍ୟପଦଞ୍ଚ କର୍ଣ୍ଣ-
ସ୍ତଦୂନ ମାନୈକ୍ୟଦଳଂ ପିଧାନମ୍ ।୪୮।

ଭାଗେ ପରସ୍ମିନ୍ ଗ୍ରହଣସ୍ୟମୋକ୍ଷ-
ସ୍ଥିତ୍ୟର୍ଦ୍ଧତଃ ସ୍ୱେଷ୍ଟଘଟୀ ବିଶୋଧ୍ୟା ।
ଶେଷୋ ରବୀନ୍ଦୁ ସ୍ଫୁଟସୂକ୍ଷ୍ମଭୁକ୍ତ୍ୟ-
ନ୍ତରାହତଃ ଷଷ୍ଟିହୃତଃ ସ କୋଟିଃ ।୪୯।

ତାତ୍କାଳକେନ୍ଦୋଃ ଶର ଏବବାହୁଃ
ସ୍ପଷ୍ଟୋ ରବେଃ କୋଟିକଳାଃ ପୁରେବ ।
ଗ୍ରାସ ସ୍ତଥା ଯଃ କଳକାତ୍ମକଃସ୍ୟା-
ତ୍‌ସଂଜ୍ଞାୟତେ ସଦ୍ଭିରତୋଽବଶେଷଃ ।୫୦।

ବର୍ତ୍ତମାନ ସମୟାନୁସାରେ ଗ୍ରାସ ଓ ଗ୍ରାସକୁ ଦେଖି ସମୟ କିପରି ଅଣାଯାଏ କୁହାଯାଉଛି । ମଧ୍ୟଗ୍ରହଣର ପୂର୍ବ ସମୟ ହେଲେ ତାହାକୁ ସ୍ପର୍ଶସ୍ଥିତି ଅର୍ଦ୍ଧରୁ ବାଦ ଦିଅ । ଅବଶିଷ୍ଟ ଦଣ୍ଡ ଆଦିରେ ଗ୍ରହକାଳ ହାରକୁ ଗୁଣିବ । (ଗ୍ରହକାଳ ହାର ଆଗରୁ ସୂର୍ଯ୍ୟଗ୍ରହଣରେ କୁହା-ଯାଇଛି) । ଏହି ଗୁଣ ଫଳକୁ ୬୦ରେ ହରିବ । ଏହା ଚନ୍ଦ୍ରଗ୍ରହଣରେ କୋଟି କଳା ହେବ । ମାତ୍ର ସୂର୍ଯ୍ୟଗ୍ରହଣରେ ଏହାକୁ ପୁଣି ମଧ୍ୟସ୍ଥିତି ଅର୍ଦ୍ଧରେ ଗୁଣି ସ୍ପଷ୍ଟସ୍ଥିତି ଅର୍ଦ୍ଧରେ ହରିଲେ ସ୍ଫୁଟ କୋଟିକଳା ହୋଇଥାଏ । ସେହି ସମୟର ଶର—କଳାଭୁଜ ହେବ । ବର୍ତ୍ତମାନ ଏହି କୋଟି ଓ ଭୁଜର ବର୍ଗ ଯୋଗକରି ତାର ମୂଳ ବାହାର କଲେ ତାହା କର୍ଣ୍ଣ ହେବ । ମାନୈ-କ୍ୟାର୍ଦ୍ଧରୁ ଏହି କର୍ଣ୍ଣ ଫେଡ଼ିଲେ ଗ୍ରାସମାନ ଆସିଯିବ । ମଧ୍ୟଗ୍ରହଣ ପରେ ମୋକ୍ଷ ସ୍ଥିତ୍ୟର୍ଦ୍ଧରେ ଯଦି ଇଷ୍ଟକାଳ ନିଆ ଯାଇଥାଏ ତାହାହେଲେ ମୋକ୍ଷ ସ୍ଥିତ୍ୟର୍ଦ୍ଧରୁ ଏହି ଇଷ୍ଟକାଳକୁ ଫେଡ଼ି ଶେଷକୁ ରବି ଓ ଚନ୍ଦ୍ରର ସ୍ପଷ୍ଟ ଗତ୍ୟନ୍ତରରେ ଗୁଣି ୬୦ରେ ହରିଲେ କୋଟି ହେବ । ଏଠାରେ ମଧ୍ୟ ଇଷ୍ଟକାଳର ଚନ୍ଦ୍ରଶର ଭୁଜ ପୂର୍ବପରି, ତେଣୁ ରବିର ସ୍ପଷ୍ଟ କୋଟିକଳା ଆଣିବାକୁ ହେବ । ଏହି ଭୁଜ ଓ କୋଟିର ବର୍ଗ ଯୋଗମୂଳକୁ ମାନୈକ୍ୟାର୍ଦ୍ଧରୁ ବିୟୋଗ କଲେ ଗ୍ରାସ ପରିମାଣ ହେବ । ଏହି ଗ୍ରାସ ପରିମାଣ ଜାଣିବା ପରେ ଗ୍ରାସର ଅବଶେଷ ସୁବିଧାରେ ଜାଣି ହୋଇଥାଏ ।

**ଗ୍ରସ୍ତାଃ କଳାମାନଯୁତେରର୍ଦ୍ଧାତ୍**
**ସଂଶୋଧ୍ୟ ଶେଷଃ ଶ୍ରବଣାଭିଧାନଃ ।**
**ତଦ୍ ବର୍ଗତସ୍ତତ୍ସମୟ-ସ୍ଫୁଟେଷୁ**
**ବର୍ଗୋନିତାନ୍ମୂଳକଳାସ୍ତୁ କୋଟିଃ ।୫୯।**

**ସୂର୍ଯ୍ୟଗ୍ରହେ ଲମ୍ବନ-ସଂସ୍କୃତେଷ୍ଟ—**
**ସ୍ଥିତ୍ୟର୍ଦ୍ଧସନ୍ତାଡ଼ିତକୋଟିଲିପ୍ତାଃ ।**
**ମଧ୍ୟସ୍ଥିତାର୍ଦ୍ଧେନ ହୃତାଃ ସ୍ଫୁଟାଃ ସ୍ୟୁଃ**
**ଷଷ୍ଟ୍ୟାହୃତା କୋଟିକଳା ରବୀନ୍ଦ୍ୱୋଃ ।୬୦।**

**ଭୁକ୍ତ୍ୟନ୍ତରଘ୍ନାଃ ଫଳନାଡ଼ିକାଭିଃ**
**ସ୍ଥିତ୍ୟର୍ଦ୍ଧମୂନଂ ଯଦଭୀଷ୍ଟନାଡ୍ୟଃ ।**
**ବିମୁଚ୍ୟମାନେ ତ୍ୱବଶିଷ୍ଟଲିପ୍ତା**
**ଅଭୀପ୍ସିତ ଗ୍ରାସତୟା ପ୍ରକଲ୍ପ୍ୟାଃ ।୬୧।**

**ପ୍ରାଗ୍ଵଦ୍‌ତତଃ ସ୍ୟାଦବଶିଷ୍ଟ-କାଲୋ**
**ରବଗ୍ରହେ ସ୍ପାର୍ଶିକ-ମୌକ୍ଷିକେ ଯେ ।**
**ସ୍ଥିତ୍ୟର୍ଦ୍ଧକେ ମଧ୍ୟତୟୋର୍ଦତେତେ**
**କର୍ମାନ୍ତରଂ ଲମ୍ବନଜଂ ତୟୋର୍ଯତ୍ ।୫୪।**

ଇଷ୍ଟ ଗ୍ରାସରୁ ଇଷ୍ଟକାଳ ଏହିପରି ଆସିବ:— ଗ୍ରାସ, ସ୍ପର୍ଶ ଓ ମଧ୍ୟକାଳ ମଝିରେ ହେଲେ ତାକୁ ଗ୍ରାହ୍ୟ ଗ୍ରାହକ ମାନୈକ୍ୟାର୍ଦ୍ଧରୁ ବାଦ ନେଇ ଶେଷକୁ ଉଭୟ କେନ୍ଦ୍ରର ଅନ୍ତର (ତଫାତ୍) ରୂପ କର୍ଣ୍ଣ ବୋଲି ଜାଣିବ । ଏହାର ସ୍ପର୍ଶିତ ବୃତ୍ତରେ, କର୍ଣ୍ଣର ବର୍ଗରୁ ତେତେ-ବେଳର ସ୍ଫୁଟଶରର ବର୍ଗକୁ ବାଦ ଦେଇ ତାହାର ମୂଳ ନେଲେ ତାହା କୋଟିବର୍ଗ ହେବ । ଏହା ଭ୍ରାନ୍ତ ବୃତ୍ତ ମଧ୍ୟରେ, ଏହା ଚନ୍ଦ୍ର ଗ୍ରହଣରେ ହେବ । ସୂର୍ଯ୍ୟ ଗ୍ରହଣରେ ଏହି କୋଟି କଳାକୁ ଲମ୍ବନ ସଂସ୍କୃତ ସ୍ଥିତ୍ୟର୍ଦ୍ଧରେ ଗୁଣି ମଧ୍ୟ ସ୍ଥିତ୍ୟର୍ଦ୍ଧରେ ହରି ଦେଲେ ସ୍ପଷ୍ଟ କୋଟିକଳା ହୋଇଯିବ । କୋଟିକଳାକୁ ୬୦ରେ ଗୁଣି ରବି ଓ ଚନ୍ଦ୍ରର ଗତ୍ୟନ୍ତରରେ ଭାଗ ଦେଲେ ଫଳ ଦଣ୍ଡାଦି ହେବ । ଏହି ଫଳକୁ ସ୍ପର୍ଶକାଳିକ ସ୍ଥିତ୍ୟର୍ଦ୍ଧରୁ ବାଦ ଦେଲେ ତାହା ସ୍ପର୍ଶ ପରେ ଇଷ୍ଟ ଘଟିକା ସମୟ ଆସିଯିବ ।

ମୋକ୍ଷରେ ଅବଶିଷ୍ଟ ଗ୍ରାସ କଳାକୁ ପୂର୍ବପରି ନାଡ଼ୀରେ ପରିଣତ କରି ସେହି ଦଣ୍ଡାଦି ଫଳକୁ ମୋକ୍ଷାର୍ଦ୍ଧରୁ ବିଯୁକ୍ତ କଲେ ଅବଶିଷ୍ଟ କାଳ ଆସିଯିବ । ସ୍ପାର୍ଶିକ ଓ ମୌକ୍ଷିକ ସ୍ଥିତ୍ୟର୍ଦ୍ଧକୁ ସୂର୍ଯ୍ୟ ଗ୍ରହଣରେ ମଧ୍ୟ ସ୍ଥିତ୍ୟର୍ଦ୍ଧ କୁହାଯାଏ । ମାତ୍ର ଏଥିରେ ବିଶେଷ ଭାବରେ ଲମ୍ବନ ସଂସ୍କାର ହୋଇଥାଏ । (ଏଠାରେ ଇଷ୍ଟକାଳ ଜାଣି ତାତ୍କାଳିକ ଶର ଜାଣିବାରେ ଅନେକ ଅସୁବିଧା ଅଛି । ତେଣୁ ସବୁ କାମ ମଧ୍ୟମ ଶରରେହିଁ କରାଯାଇଥାଏ । ଫଳରେ ବାରମ୍ବାର ଏହି ପ୍ରକ୍ରିୟା କଲେ ବାସ୍ତବ ସମୟ ଆସିଯିବ ।

**ଅଥାଭିଧାସ୍ୟେଽୟନଜଂ ପଳୋଦ୍ଭବଂ**
**କଳାସ୍ୱରୂପଂ ବଳନଦ୍ୱୟଂ ତୟୋଃ ।**
**ଯ ତୋ ଗ୍ରହସ୍ପର୍ଶ-ବିମୋକ୍ଷମଧ୍ୟଜା**
**ଦଶଃ ସ୍ଫୁଟାଃ ସ୍ୟୁର୍ନଭସଃ କପାଳୟୋଃ ।୫୫।**

**ଚଳାଂଶ ସଂସ୍କାରବଦର୍କଚନ୍ଦ୍ରୟୋଃ**
**ସ୍ୱକୋଟିଲିପ୍ତାଃ ଖମହୀନ୍ଦୁତାଡ଼ିତାଃ ।**
**ଖଖାଦ୍ରିବାଣୈର୍ବିହୃତାସ୍ତତଃ ଫଳଂ**
**କଳାତ୍ମକଂ ସ୍ୟାଦ୍‌ବଳନଂ ସ୍ୱମାୟନମ୍ ।୫୬।**

ହିମାଂଶୁଭଚନ୍ଦ୍ରାଃ ସ୍ୱଦିନାର୍ଦ୍ଧତୋନତଂ
ପଳାତ୍ମକଂ ଖାଙ୍କହୃତଂ ଦିନାର୍ଦ୍ଧକୈଃ ।
ନଜୈଃ ପଳୈର୍ଭଜିତମଂଶକାଦିକଂ
ନତଂ ପୁରଃ ପଶ୍ଚିମକଂ ଦିନାର୍ଦ୍ଧୟୋଃ ।୫୭।

ନିଜାକ୍ଷଭଗା ନତଭଗ-ତାଡ଼ିତା
ନବତ୍ୟବାପ୍ତାଃ ଫଳମକ୍ଷ ସମ୍ଭବମ୍ ।
ପୂର୍ବେନତେସ୍ୟାଦ୍ବଳନଂ ତଦୁତ୍ତରଂ
ନତେଚପଶ୍ଚାତ୍କନତେ ହି ଦକ୍ଷିଣମ୍ ।୫୮।

ତୟୋଃ ପଳୋତ୍‌ଥାୟନୟୋଃ ସମାଶୟୋ—
ର୍ଯୁତେର୍ବିଯୋଗାତ୍ତ୍ୱିଭିନ୍ନକାଷ୍ଠୟୋଃ ।
ସ୍ପଷ୍ଟଂ ଭବେଦ୍ବଳନାଂଶକାଦିକଂ
ତଦଙ୍ଗୁଳାଦ୍ୟଂ ପରଲେଖ ଇଷ୍ୟତେ ।୫୯।

ବର୍ତ୍ତମାନ ଚନ୍ଦ୍ର ସୂର୍ଯ୍ୟ ଗ୍ରହଣରେ ଆକ୍ଷ ଓ ଆୟନ ବଳନ କଳା କହୁଅଛୁ । ଏହି ଦୁଇଟି ବଳନ ଦ୍ୱାରା ଆକାଶର ପୂର୍ବାପର କପାଳରେ ଗ୍ରହଣରେ ସ୍ପର୍ଶ ମଧ୍ୟ ଓ ମୋକ୍ଷର ଦିଗଜ୍ଞାନ ହୋଇ ପାରିବ । ଚନ୍ଦ୍ର ଗ୍ରହଣରେ ଅୟନ ସଂସ୍କୃତ ସୂର୍ଯ୍ୟର କୋଟି ଜ୍ୟା (କଳା)କୁ ୧୯୧୦ (ପରମକ୍ରାନ୍ତିରେ) ଗୁଣି ୫୬୦୦ (ତ୍ରିଜ୍ୟା ରାଶି କଳା)ରେ ଭାଗ ଦେଲେ ଗ୍ରହଣ ଯେଉଁ ଦିଗର ସେହି ଦିଗର ଆୟନ ବଳନ ହୁଏ ।

ସୂର୍ଯ୍ୟ ଗ୍ରହଣରେ ରବି ଓ ଚନ୍ଦ୍ର ସମାନ ଥିବାରୁ କେବଳ ଚନ୍ଦ୍ର ଦ୍ୱାରା ଉଭୟ ଗ୍ରହଣର ଆୟନ ବଳନ ଜଣାଯାଇ ପାରିବ । ଚନ୍ଦ୍ରଗ୍ରହଣରେ ଚନ୍ଦ୍ର ଦିନାର୍ଦ୍ଧରୁ ନତ ଓ ସୂର୍ଯ୍ୟ ଗ୍ରହଣରେ ସୂର୍ଯ୍ୟ ଦିନାର୍ଦ୍ଧରୁ ନତ ଆଣି ତାକୁ ପଳ ଆଦି କରି ଦେବ । ତାକୁ ୯୦ରେ ଗୁଣି ନିଜ ନିଜ ଦିନାର୍ଦ୍ଧ ପଳରେ ଭାଗ ଦେଲେ ଅଂଶାଦି ଫଳ ହେବ । ପୂର୍ବ ପଶ୍ଚିମ ଦିନାର୍ଦ୍ଧ ଅନୁସାରେ ପୂର୍ବ ଓ ପଶ୍ଚିମ ଦିଗର ନତ ହେବ । ଏହି ନତରେ ସ୍ୱଦେଶର ଅକ୍ଷାଂଶକୁ ଗୁଣି ୯୦ରେ ହରିଲେ ଯେଉଁ ଫଳ ହେବ ତାହା ପୂର୍ବ ନତରେ ଉତ୍ତର ଓ ପଶ୍ଚିମ ନତରେ ଦକ୍ଷିଣ ଆକ୍ଷ ବଳନ ହେବ । ଆକ୍ଷ ଓ ଆୟନ ଉଭୟ ବଳନ ଏକ ଦିଗର ହେଲେ ଯୋଗ ଓ ବିଭିନ୍ନ ଦିଗର ହେଲେ ବିଯୋଗ କଲେ ତାହା ଚନ୍ଦ୍ର ଗ୍ରହଣରେ ଚନ୍ଦ୍ରର ଓ ସୂର୍ଯ୍ୟ ଗ୍ରହଣରେ ସୂର୍ଯ୍ୟର ଅଂଶାଦି ଦିଗ୍‌ବଳନ ହୋଇଯିବ । ଏହାହିଁ ସ୍ପଷ୍ଟ ବଳନ । ଚିହ୍ନ କରିବା ବେଳେ ସ୍ପର୍ଶ, ମୋକ୍ଷ ଆଦି କେଉଁ ଦିଗରୁ କପଟ ଭାବରେ ହେବ ତାହା ଏଥିରୁ ଜଣାଯିବ । ଏହି ବଳନ ଚାରି ଦିଗ ଦେଖାଇ ଦେବ । ଏହାର ଅଙ୍ଗୁଳ ଆଦି ପରିମାଣ ପରି ଲେଖରେ କୁହାଯାଉଛି ।

ପୂର୍ବୋଦିତଂ ସୂର୍ଯ୍ୟଦିନଂ ବିଧୂଦୟା—
ସ୍ତୟୋସ୍ତୁ ମଧ୍ୟେଦିନମସ୍ୟ ସମ୍ମତମ୍ ।
ଦିନାନ୍ତ-ସିଦ୍ଧାବୟନାଂଶ ସଂସ୍କୃତୌ
ବିଧାୟ ଭସ୍ୱଚ୍ଛଶିନୌ ତଦୃକ୍ଷୟୋଃ ।୭୦।

ରବେରଭୁକ୍ତାଃ ଶଶିନୋଗତା ଲବା
ନଭୋଦୟଘ୍ନାଃ ଖଗୁଣୋଦ୍ଧୃତାଃ ଫଳେ ।
ତଦନ୍ତରେୋତ୍ଥାସ୍ତନବଶ୍ଚ ଷଟ୍‌ଶରା—
ଯବଶ୍ଚୟୁକ୍ତା ଘଟିକାଦୟୋଽବ ଯେ ।୭୧।

ଦିନାଦିତସ୍ତବ ଉଦେଦ୍ବିଧୂଦୟଃ
ପରେଦ୍ୟୁରର୍କୋଦୟକାଲକୌ ତଥା ।
ବିଧାୟ ସୂର୍ଯ୍ୟସ୍ୟ ସ ଷଡ୍ଭଶୀତଗୋଃ
ସମେଗୃହେ ଭୁକ୍ତଲବୋଦୟାନ୍ତରମ୍ ।୭୨।

ଗୃହାନ୍ୟତାୟାଂ ରବିଭୋଗ୍ୟଚନ୍ଦ୍ରମୋ—
ଗତାଂଶକାଲଦ୍ୱୟଯୋଗ ଐନ୍ଦବଃ ।
ଇନୋଦୟାଦସ୍ତମୟଃ ସ ଷଟ୍‌ଶରା—
ସୁଭିର୍ବିୟୁଗ୍ମୂନକୈଃ ସ୍ଫୁଟଃ ପୁନଃ ।୭୩।

ସ୍ୱକାଲବିକ୍ଷେପକଲାଃ ପଲପ୍ରଭା—
ଙ୍ଗୁଳାହତାଃ ସୂର୍ଯ୍ୟହୃତାଃ ଫଲାସୁଭିଃ ।
ଯୁତୋନତଃ ସ୍ୟାଦୁଦୟୋଽପ୍ୟ-ବା-ଗୁଦକ୍
ଶରକ୍ରମାଦସ୍ତମୟସ୍ତୁ ହୀନୟୁକ୍ ।୭୪।

ଆଗରୁ ସୂର୍ଯ୍ୟର ଦିନର ପରିମାଣ କୁହାଯାଇଅଛି । ଚନ୍ଦ୍ରର ଉଦୟଠାରୁ ପୁଣି ତାର ଅସ୍ତ ପର୍ଯ୍ୟନ୍ତ ଚନ୍ଦ୍ରଦିନ ହୋଇଥାଏ । ସୂର୍ଯ୍ୟର ଦିନାନ୍ତରେ ରବି ଓ ଚନ୍ଦ୍ର ସ୍ଫୁଟକରି ସେଥିରେ ଅୟନାଂଶ ଯୋଗକର । ରବି ଥିବା ରାଶିର ଭୋଗ୍ୟାଂଶ ଓ ଚନ୍ଦ୍ର ଥିବା ରାଶିରଭୁକ୍ତ ଅଂଶ ଯଥାକ୍ରମେ ସୂର୍ଯ୍ୟ ଓ ଚନ୍ଦ୍ର ଥିବା ରାଶିର ଉଦୟାସୁରେ ଗୁଣି ୩୦ ରେ ଭାଗଦେଲେ ଯେଉଁ ଦୁଇ ଅସୁ ଆସିବ ସେଥିରେ ଉଭୟ ରବି ଚନ୍ଦ୍ର ଥିବା ରାଶି ଦ୍ୱୟର ଅନ୍ତର୍ବର୍ତ୍ତୀ ରାଶି-ମାନଙ୍କର ଉଦୟାସୁ ମିଶାଇବ । ଏହି ଯୋଗଫଳରେ ପୁଣି ୫୬ ଅସୁ ମିଶାଇବ । ଏ ସବୁକୁ

୩୬୦ ରେ ହରଲେ ଘଟିକା ଆଦ୍ଦ ଯେଉଁଫଳ ହେବ ସୂର୍ଯ୍ୟ ଉଦୟଠାରୁ ସେତକ ସମୟରେ ଚନ୍ଦ୍ରର ଉଦୟ ହେବ । ତାପର ଦିନ ପୁଣି ସୂର୍ଯ୍ୟୋଦୟବେଳେ ସାୟନ ରବି ଓ ଚନ୍ଦ୍ର ସାଧି ସାୟନ ରବି ଓ ଛ ରାଶିଯୁକ୍ତ ଚନ୍ଦ୍ର ଏକ ରାଶିରେ ହେଲେ ଉଭୟଙ୍କର ଭୁକ୍ତାସୁର ଅନ୍ତର କରିବ । ଉଭୟେ ଭିନ୍ନ ରାଶିର ହେଲେ ରବିର ଭୋଗ୍ୟ ଅସୁ ଓ ଚନ୍ଦ୍ରର ଭୁକ୍ତ ଅସୁର ଯୋଗ ଯାହାହେବ ସୂର୍ଯ୍ୟର ଉଦୟଠାରୁ ତେତକ ସମୟରେ ଚନ୍ଦ୍ରର ଅସ୍ତ ହେବ । ଏହି ସମୟରୁ ୫୬ ଅସୁ ବିୟୋଗ କଲେ ସ୍ଫୁଟ ସମୟ ହେବ । ୫୬ ଅସୁ ଲମ୍ବନ କାଳବୋଲି ଜାଣିବ । ଚନ୍ଦ୍ରର ଏହି ଯେ ଉଦୟ ଓ ଅସ୍ତ ସମୟ ଆସିଗଲା ଏ ଦୁଇର ମଧ୍ୟବର୍ତ୍ତୀ କାଳ ହିଁ ଚନ୍ଦ୍ରର ଦିନମାନ ହେବ । ଚନ୍ଦ୍ରର ଶର ନ ଥିବାବେଳେ ବା ଅଳ୍ପକମ ଶର ଥିବାବେଳେ ଏହି ଉପାୟରେ ଚନ୍ଦ୍ର ଦିନମାନ ଆସିଯାଇ ପାରିବ । ଶରଥିଲେ ଉଦୟବେଳେ ଉଦୟ-କାଳର ଶର କଳା ଓ ଅସ୍ତକାଳରେ ଅସ୍ତକାଳର ଶରକଳାକୁ ପଲଭାରେ ଗୁଣି ୧୨ରେ ହରିବ । ଲବ୍ଧ କାଳକୁ ଦକ୍ଷିଣ ଉତ୍ତର ଶର କ୍ରମରେ ଉଦୟ କାଳରେ ଯୋଗ ଓ ବିୟୋଗ କରିବ । ମାତ୍ର ଅସ୍ତବେଳେ ଏ କାଳକୁ ଦକ୍ଷିଣ ଓ ଉତ୍ତରଶର କ୍ରମରେ ଅସ୍ତ ସମୟରେ ବିୟୋଗ ଓ ଯୋଗକଲେ ସ୍ଫୁଟ ସମୟ ହେବ ।

ନିଶାପତେଃ ସୂକ୍ଷ୍ମଗତର୍ନିଶାର୍ଦ୍ଧଜା
କଳାନ୍ତକାନନ୍ଦସୁଧାଂଶୁଭକ୍ତିତା ।
ଫଳୈଃ ପଳୈଃ ସଂକଳିତା ନିଶାମିତ—
ର୍ଭବେତ୍ତଦୀୟଂ ଦିନମାନମେବ ବା ।୭୫।

ନିମ୍ନା ଚନ୍ଦ୍ରର ରାତ୍ରି ଅର୍ଦ୍ଧକାଳକ ସୂକ୍ଷ୍ମଗତ କଳାଆଣି ତାକୁ ୧୯ ରେ ହରିଲେ ଯାହା ଫଳାଦି ହେବ ତାହାକୁ ରବିର ରାତ୍ରିମାନରେ ଯୋଡ଼ିଦେଲେ ତାହା ଚନ୍ଦ୍ରଦିନର ପରିମାଣ ହେବ ।

ଯାମ୍ୟାୟନାନ୍ତହରିତ ଧ୍ରୁବତୋ ଯଦେବ—
ସ୍ଥାନଂ ଦଳୋନକୃତବାହୁ-ଲବାନ୍ତରସ୍ଥମ୍ ।
ତଦ୍ଦ୍ରପ୍ରୋଦିତଂ ଧ୍ରୁବକଦମ୍ବ ଇତି ଗ୍ରହାଣାଂ
କ୍ରାନ୍ତେ-ସ୍ତଦୁତ୍ତରଦିଶୋ ନିରନ୍ତ୍ରୟି ଶଙ୍କମ୍ ।୭୬।

ତଦ୍ୱ୍ୟସ୍ତଦିକ୍ବିନିହତୋ ଯମଦିକ୍କଦମ୍ବ—
ସ୍ତର୍କ୍ୟଃ କଦମ୍ବମନୁଜାତଶିଖଃ କଳମ୍ବଃ ।
ତତ୍ପାର୍ଶ୍ୱକୋହ୍ୟପମସମ୍ମୁଖ ଏବ ବମ୍ବଃ
ପ୍ରାଗ୍ ଯାତ ସଦଂଖ-ସଦାଂ ଶଶିନୋଽବିଲମ୍ବଃ ।୭୭।

ଉତ୍ତର ଧ୍ରୁବସ୍ଥାନରୁ ଦକ୍ଷିଣକୁ ଅୟନ ପ୍ରୋତ ବୃତ୍ତରେ ୨୩°।୩୦' ଅନ୍ତରରେ ଯେଉଁସ୍ଥାନ ତାହାକୁ ଗ୍ରହର ଧ୍ରୁବ କଦମ୍ବ କୁହାଯାଏ । ଏହା ଉତ୍ତର କଦମ୍ବ । ଏହି ଚିହ୍ନଟି କ୍ରାନ୍ତିବୃତ୍ତର ପୃଷ୍ଠ କେନ୍ଦ୍ର ଏବଂ ଏହା କ୍ରାନ୍ତି ବୃତ୍ତର ପ୍ରତ୍ୟେକ ବିନ୍ଦୁଠାରୁ ୯୦° ଅନ୍ତରରେ ବର୍ତ୍ତମାନ । ଏହାର ଠିକ୍ ବିପରୀତ ଦିଗରେ ଦକ୍ଷିଣ କଦମ୍ବ । ଏହା କ୍ରାନ୍ତି ବୃତ୍ତର ଦକ୍ଷିଣକୁ ୯୦° ଅନ୍ତରରେ ଅବସ୍ଥିତ ଏବଂ ଦକ୍ଷିଣ ଧ୍ରୁବଠାରୁ ଏହା ଉତ୍ତରକୁ ଅୟନ ପ୍ରୋତବୃତ୍ତରେ ୨୩°।୩୦' ଅନ୍ତରରେ ରହିଅଛି । ଶର ସବୁବେଳେ କଦମ୍ବାଭିମୁଖୀ ଅର୍ଥାତ୍ କଦମ୍ବ ପ୍ରୋତବୃତ୍ତରେ ହିଁ ଶର ରହେ । ଶରକୁ ତର୍ଯକ୍ ରଖି ଗ୍ରହବିମ୍ବ କ୍ରାନ୍ତି ବୃତ୍ତାଭିମୁଖ ହୋଇ ନିଜ କକ୍ଷମଣ୍ଡଳରେ ଗତି କରୁଥାଏ । ଶର ଯୋଗେ ଏହି ଗ୍ରହବିମ୍ବ କ୍ରାନ୍ତି ବୃତ୍ତରୁ ଦକ୍ଷିଣ ଓ ଉତ୍ତର ଆଡ଼କୁ ଟିକିଏ ଖସି ଯାଇଥାଏ । ଚନ୍ଦ୍ର ବିମ୍ବ ସମସ୍ତଙ୍କ ଅପେକ୍ଷା ଅଧିକ ଶୀଘ୍ରଗତିରେ ଯାଏ ।

**ଇତ୍ଥଂ ସିଦ୍ଧାତ୍ କଦମ୍ବାଦ୍ ଧ୍ରୁବତ ଉପସରତ୍ ସୂର୍ଯ୍ୟେନ୍ଦ୍ୱୋର୍ବିମ୍ବମଧ୍ୟ-**
**ସୂତ୍ରସ୍ଥୀୟାଗ୍ରୟୋ ର୍ଯଦ୍ବିବରମୁଡ଼ୁପତେର୍ମ୍ମଣ୍ଡଳାନ୍ତେଃସ୍ତିତଦ୍ବୃନ୍ନା ।**
**ଙ୍ଗଶାସ୍ତଦ୍‌ବେଷ୍ଟନାପ୍ତାଃ ଫଳମିହବଳନଂ ହ୍ୟାୟନଂ ଭଗରୂପଂ**
**ଗ୍ରାହ୍ୟଂ ତତ୍ତଦ୍ଦିଗାଖ୍ୟଂ ଖଳୁରଜନିପତୌ ସୌମ୍ୟଯାମ୍ୟାୟନସ୍ଥେ ।୭୮।**

ବିମ୍ବ କେନ୍ଦ୍ରରୁ ଧ୍ରୁବ ଓ କଦମ୍ବଦେଇ ଯେଉଁ ଦୁଇଟି ବୃତ୍ତ ହେବେ (କେନ୍ଦ୍ରଗତ ଧ୍ରୁବପ୍ରୋତ ଓ କେନ୍ଦ୍ରଗତ କଦମ୍ବ ପୋତବୃତ୍ତ) ଚନ୍ଦ୍ର ବିମ୍ବ ପରିଧିରେ ଏ ଦୁଇ ବୃତ୍ତର ଯାହାଅନ୍ତର ତଦ୍ଧ୍ୱାଗ୍ର ୩୬୦°କୁ ଗୁଣି ବିମ୍ବ ପରିଧିରେ ଭାଗଦେଲେ ତାହା ଆୟନ ବଳନ ହୁଏ । ଚନ୍ଦ୍ର ଉତ୍ତର ଅୟନରେ ଥିଲେ ତାହା ଉତ୍ତର ବଳନ ଏବଂ ଚନ୍ଦ୍ର ଦକ୍ଷିଣରେ ଥିଲେ ତାହା ଦକ୍ଷିଣ ବଳନ ।

**ପୂର୍ବୋକ୍ଷାମୁକ୍ତରେଷା କଥ ଚ ନ ବଳନଂ ପ୍ରୋଚୁରକ୍ଷଂ କ୍ରମଜ୍ୟା-**
**ସାଧଂକେଃପ୍ୟୁତ୍-କ୍ରମଜ୍ୟାକଳିତମିତ ଜଗୁଣ୍ଠାୟନଂ କୋଟିମୌର୍ବ୍ୟାଃ**
**ନାସ୍ଯାକଂତନ୍ମତଂ ଯଦ୍ଧନୁରିବ ନମିତେ ନାଡ଼ିକା-କ୍ରାନ୍ତିବୃତ୍ତେ**
**ତତ୍‌କୋଟ୍ୟଂଶୈର୍ନତାଂଶୈର୍ବଳନମୟନଜଂ ଗ୍ରାହ୍ୟକଂ କର୍ତ୍ତୁମିଷ୍ଟମ୍ ।୭୯।**

ପ୍ରାଚୀନ ଆର୍ଯ୍ୟମାନଙ୍କ ମଧ୍ୟରୁ କେହି କେହି (ବ୍ରହ୍ମଗୁପ୍ତ ଓ ଭାସ୍କର) ନତକ୍ରମଜ୍ୟାରେ ଏବଂ ଅନ୍ୟମାନେ (ଲଲ୍ଲ ଓ ଶ୍ରୀପତି) ନତ ଉତ୍କ୍ରମଜ୍ୟାରେ ଆକ୍ଷବଳନ ଆଣିବାକୁ କହିଛନ୍ତି । ଆୟନବଳନକୁ ମଧ୍ୟ କୋଟିଜ୍ୟା ବା ସବିତ ଗ୍ରହର ଭୁଜ ଉତ୍କ୍ରମଜ୍ୟାରେ ସାଧନ କରିବାର ଦୁଇ ପଦ୍ଧତି ଅଛି । ମାତ୍ର ଆମ ମତରେ କୌଣସି ଜ୍ୟାର ପ୍ରଶ୍ନ ହିଁ ଉଠୁନାହିଁ । କାରଣ ନାଡ଼ୀବୃତ୍ତ ଓ କ୍ରାନ୍ତିବୃତ୍ତ ଧନୁପ ପରି ନତ । ତେଣୁ ଗ୍ରହର କୋଟି ଅଂଶ ଓ ଗ୍ରହର ନତାଂଶ ନେଇ ଯଥାକ୍ରମେ ଆୟନ ଓ ଆକ୍ଷବଳନ କରାଯିବାର କଥା ।

ଅଷ୍ଟାଦଶାଙ୍ଗୁଳଗୁଣଭ୍ରମଣେନ ବୃତ୍ତ—
ଦ୍ୱନ୍ଦ୍ୱଂ ପୁରନ୍ଦରଜଲେଶଦଶୋର୍ବିଲିଖ୍ୟ ।
ଅନ୍ୟୋଽନ୍ୟଲଗ୍ନମନତୋନ୍ନତଭୂପ୍ରଦେଶେ
ତତ୍କେନ୍ଦ୍ରୟୋଃ ପ୍ରତଦଶଂ ଚ ଦଶୈବ ଷନ୍ଦୂନ୍ ।୭୦।

ମଧ୍ୟେ ପୁରଃପରଗତାଂ ନିଦଧୀତ ରେଖାଂ
ପ୍ରାଙ୍ମଣ୍ଡଳାଦ୍ବହିରୁଦଗ୍ଦିଶି ଚାଙ୍ଗୁଳାନ୍ତେ ।
ଷନ୍ଦୁଲ୍ତଥା ବରୁଣଦଗ୍ଗତମଣ୍ଡଳସ୍ୟ
ବାହ୍ୟେଽଙ୍ଗୁଳାନ୍ତରତଦକ୍ଷିଣଭାଗକେଽନ୍ୟମ୍ ।୭୧।

ବାହ୍ୟସ୍ଥଦକ୍ଷିଣଗଷନ୍ଧୃତ ଏବ ପଶ୍ଚା-
ଦ୍ବିମ୍ବେ ପୁରଶ୍ଚରମଷନ୍ଦୁଗ-କୋଟିଯୁଗ୍ମମ୍ ।
ଷଷ୍ଠାଂଶସଂଯୁତରସାକ୍ଷି ମିତାଙ୍ଗୁଳେନ
ସୂତ୍ରେଣ ଚାପମଥ ପୂର୍ବଗଷନ୍ଧମଧ୍ୟେ ।୭୨।

ତଦ୍ବଦ୍ବହିର୍ଲିଖିତୋତ୍ତରଷନ୍ଧତୋଽପି
ଚାପଂ ଲିଖେତ୍ପରପୁରୋଗତଷନ୍ଦୁଲଗ୍ନମ୍ ।
ଚାପଦ୍ୱୟଂ ଭବତ ସମ୍ମିଳତଂ କପାଳ-
ଦ୍ୱନ୍ଦ୍ୱସ୍ଥିତାପମପଥପ୍ରତିମଂ ଦ୍ୱୟାନ୍ତଃ ।୭୩।

ପ୍ରତ୍ୟର୍ଦ୍ଦଶୋ ହରିଦଗନ୍ତମଥାର୍କ ସଂକ୍ଷେପ୍ୟ—
ଶ୍ଚିହ୍ନୈଃ କ୍ରିୟାଦିନଳୟାନ୍ କଲୟେନ୍ନିଜାଂଶୈଃ ।
ତଦ୍ୱାର୍ଦ୍ଧଖଣ୍ଡିତତନୁଂ ଶଶିନଂ ନିବେଶ୍ୟ
ତତ୍ଶୃଙ୍ଗଯୁଗ୍ମପରିଲଗ୍ନଗୁଣେନ ଭୂୟଃ ।୭୪।

ବାହ୍ୟସ୍ଥଷନ୍ଧୁ ପରିବେଷ୍ଟନକଂ ବିଦଧ୍ୟା-
ଦତ୍ଥଂ ନିଜାପମପଥାଭିମୁଖଃ ଖଗଃ ସ୍ୟାତ୍ ।
ପ୍ରାଗ୍ବୃତ୍ତକେନ୍ଦ୍ରଯମଦିଗ୍ଗତରେଖିକାୟାଂ
ପଶ୍ଚାଦ୍ଭ୍ରମଂ ପ୍ରବହଜଂ ଷଷ୍ଟିଦିନୋତ୍ଥମ୍ ।୭୫।

ବ୍ୟକ୍ଷୋତ୍ତରେ ବସୁଭୁଜାନଳ ଯୋଜନସ୍ଥେ
ଦେଶେଽବଗଚ୍ଛତୁ ଧନୁଃପଥସମ୍ମୁଖୀନମ୍ ।
ତସ୍ମାନ୍ନତସ୍ୟ ପଳଜେ ବଳନେନ ଜୀବା
ଗ୍ରାହ୍ୟାୟନୋତ୍ଥବଳନେଽପି ନ କୋଟିଜୀବା ।୭୭।

ମଧ୍ୟସୂତ୍ରାଦୁଦଗ୍ଦକ୍ଷିଣାନ୍ତାବଧି
ଜ୍ୟାତ୍ମକଂ ମାନମେବାତ୍ର ଗୃହ୍ୟତେ ।
ମଧ୍ୟସୂତ୍ରାଦତଃ କ୍ରାନ୍ତିମାର୍ଗାନ୍ତରଂ
କ୍ରାନ୍ତିଜୀବାକ୍ଷଜୀବା ତୁ କେନ୍ଦ୍ରାଦ୍ଭବେତ୍ ।୭୭।

ପରିଲେଖ ଲେଖିବା ସ୍ଥାନକୁ ସମତଳ କରି ସେଥିରେ ଗୋଟିଏ ବୃତ୍ତ ଲେଖି ସେହି ବୃତ୍ତ ପରିଧିରେ (ଦିଗ୍‌ଜ୍ଞାନ ସୂତ୍ରରେ) ପୂର୍ବ ଓ ପଶ୍ଚିମ ବିନ୍ଦୁ ଦିଅ । ଏହି ଉଭୟ ବିନ୍ଦୁରୁ ୧୮ ଅଙ୍ଗୁଳ ବ୍ୟାସାର୍ଦ୍ଧରେ ପରସ୍ପର ସଂଲଗ୍ନ ଦୁଇଟି ବୃତ୍ତ ରଚନା କର । ଏହି ଉଭୟ ବୃତ୍ତରେ ପ୍ରତି ଦିଗ ଓ ବିଦିଗ (କୋଣରେ) ବିନ୍ଦୁ ଦିଅ । ଉଭୟ କେନ୍ଦ୍ର ମଧ୍ୟ ଦେଇ ପୂର୍ବାପର ରେଖା ଟାଣ । ପୂର୍ବ ବିନ୍ଦୁକୁ କେନ୍ଦ୍ର କରି ରଚିତ ବୃତ୍ତର ଉତ୍ତର ବିନ୍ଦୁରୁ ଉତ୍ତରକୁ ବୃତ୍ତବାହାରେ ଏକ ଅଙ୍ଗୁଳ ଅନ୍ତରରେ ଗୋଟିଏ ଏବଂ ପଶ୍ଚିମ ବିନ୍ଦୁକୁ କେନ୍ଦ୍ର କରି ରଚିତ ବୃତ୍ତର ଦକ୍ଷିଣ ବିନ୍ଦୁରୁ ଦକ୍ଷିଣକୁ ଏକ ଅଙ୍ଗୁଳ ଅନ୍ତରରେ ଗୋଟିଏ ଏପରି ଦୁଇଟି ବିନ୍ଦୁ ଦିଅ ।

ଗ୍ରହ ବିମ୍ବ ପଶ୍ଚିମ କପାଳ ଥିଲେ ଦକ୍ଷିଣ ବିନ୍ଦୁରୁ ୨୭।୧୦ ଅଙ୍ଗୁଳ ବ୍ୟାସାର୍ଦ୍ଧରେ ପଶ୍ଚିମ ବୃତ୍ତର ପୂର୍ବ ଓ ପଶ୍ଚିମ ବିନ୍ଦୁଦ୍ୱୟ ଗତ ଗୋଟିଏ ଚାପ ଟାଣ । ଗ୍ରହ ବିମ୍ବ ପୂର୍ବ-କପାଳରେ ଥିଲେ ପୂର୍ବ ବୃତ୍ତ ବାହାରେ ଥିବା ଉତ୍ତର ବିନ୍ଦୁରୁ ପୁଣି ୨୭।୧୦ ଅଙ୍ଗୁଳ ବ୍ୟାସାର୍ଦ୍ଧରେ ଉକ୍ତ ବୃତ୍ତର ପୂର୍ବ ଓ ପଶ୍ଚିମ ବିନ୍ଦୁ ଦେଇ ଗୋଟିଏ ଚାପ ଟାଣ । ଏହି ଦୁଇଟି ଚାପକୁ ମିଳାଇ ଦେଲେ ପ୍ରାକ୍ ଓ ପ୍ରତ୍ୟକ୍ କପାଳରେ ଥିବା କ୍ରାନ୍ତି ବୃତ୍ତର ଆକାର ଗ୍ରହଣ କରିବ । ଚାପ ଦ୍ୱୟ ମିଳନରେ ଏହି ଯେଉଁ କ୍ରାନ୍ତି ବୃତ୍ତ ହେଲା ତାହାର ସର୍ବପଶ୍ଚିମ ବିନ୍ଦୁରୁ ସର୍ବ ପୂର୍ବ ବିନ୍ଦୁ ପର୍ଯ୍ୟନ୍ତ ଚାପ ଭାଗକୁ ସମାନ ୧୨ ଭାଗରେ ବିଭକ୍ତ କରି ପଶ୍ଚିମ ଆଡୁ ମେଷ ବୃଷାଦି ନାମ ଦିଅ । ଏହି କ୍ରାନ୍ତି ବୃତ୍ତର ଯଥା ସ୍ଥାନରେ ଚନ୍ଦ୍ରକୁ ଅର୍ଦ୍ଧ ଖଣ୍ଡିତ କରି ଲେଖ । ଏହାର ଦୁଇଟି ଶୃଙ୍ଗାଗ୍ରକୁ ଯୋଗକରି ଗୋଟିଏ ରେଖା ଟାଣ । ଏହି ରେଖା (ଚନ୍ଦ୍ରବ୍ୟାସ) ପରିମିତ ବ୍ୟାସାର୍ଦ୍ଧରେ ଉଭୟ ବହିର୍ବିନ୍ଦୁକୁ କେନ୍ଦ୍ର କରି ସେହି ଉଭୟ ବହି-ର୍ବିନ୍ଦୁର ପରିବେଷ୍ଟନକାରୀ ପୃଥକ୍ ପୃଥକ୍ ଦୁଇଟି ବୃତ୍ତ ଅଙ୍କନ କର । ଏପରି କରିବାଦ୍ୱାରା ଗ୍ରହ ନିଜ କ୍ରାନ୍ତି ମାର୍ଗରେ ଅଭିମୁଖୀ ହୋଇଯିବା ଦେଖାଯିବ ।

ବର୍ତ୍ତମାନ ପୂର୍ବ ବିନ୍ଦୁକୁ କେନ୍ଦ୍ରକରି ରଚିତ ବୃତ୍ତର କେନ୍ଦ୍ରଗାମୀ ଦକ୍ଷିଣୋତ୍ତର ରେଖାରେ (ଯାମ୍ୟୋତ୍ତର ବୃତ୍ତରେ) ବିଷୁବ ଦିନର ପ୍ରବହଜନିତ ପଶ୍ଚାତ୍ ଭ୍ରମ ନିରକ୍ଷଠାରୁ ୩୨୮ ଯୋଜନ ଉତ୍ତରରେ ଥିବା ଦେଶରେ ( ଯାହାର ଅକ୍ଷାଂଶ ୨୩° । ୨୧′ ) ଗୃପାକାର ହିଁ ଦେଖାପଡ଼େ । ତେଣୁ ନତକାଳରୁ ଆକ୍ଷବଳନ ଆଣିବାରେ ଓ ଆୟନବଳନ ଆଣିବାରେ ଯଥାକ୍ରମେ ଜ୍ୟା ଓ କୋଟି ଜ୍ୟା ଦରକାର ନାହିଁ ।

ଯେଉଁ ଦୁଇଟି ପୂର୍ବ ପଶ୍ଚିମ ବୃତ୍ତ କରାଗଲା ସେଥିରେ ପରିଧି ବିନ୍ଦୁରୁ ମଧ୍ୟ ସୂତ୍ର ଉପରେ ଥିବା ଲମ୍ବରେଖା ହିଁ (ଯେପରି ପୂର୍ବାପର ଉପରେ ଯାମ୍ୟୋତ୍ତର) ଜ୍ୟା ରୂପ ଧରି ରହିଅଛି । ସେଥିପାଇଁ ମଧ୍ୟସୂତ୍ରରୁ (ପୂର୍ବାପରରୁ) କ୍ରାନ୍ତି ପର୍ଯ୍ୟନ୍ତ କ୍ରାନ୍ତିଜ୍ୟାର ସ୍ଥିତି । ଅକ୍ଷଜ୍ୟା, ବୃତ୍ତ କେନ୍ଦ୍ରରୁ ଯାମ୍ୟୋତ୍ତର ରେଖା ହିଁ ହୋଇଥାଏ ।

**ସ୍ଫୁରତି ଧରଣିଭାଯା ବିମ୍ବବାହ୍ୟେ ସମନ୍ତା-**
**ଦ୍ବଳୟ ସଦୃଶମସ୍ୟା ଅଞ୍ଚଳଂ ପଞ୍ଚଲପ୍ତମ୍ ।**
**ତଦବତମସ-ସଂଜ୍ଞଂ ତତ୍କୁଭାଦକ୍କଳାଢ଼୍ୟା**
**ମଳନୟତି ସିତାଂଶୋରନ୍ୟମଗ୍ରସ୍ତମୂର୍ତ୍ତେଃ ।୭୮।**

ଚନ୍ଦ୍ରଗ୍ରହଣରେ ଯେଉଁ ଭୂଭା ସାଧନ କରାଯାଏ ତାର ଚତୁର୍ଦ୍ଦିଗରେ ପାଞ୍ଚକଳା ପରି-ମାଣରେ କ୍ଷୀଣ ଅନ୍ଧାର ରହିଥାଏ । ଏହାକୁ ମିଶାଇଲେ ପୂର୍ଣ୍ଣ ଭୂଭା ବ୍ୟାସ ପରିମାଣ= (ଭୂଭା+୧° କଳା) ହେବ । ଏହି ପାଞ୍ଚ କଳାକୁ ଅବତମସ କହନ୍ତି । ୧° କଳା ଯୁକ୍ତ ଏହି ଭୂଚ୍ଛାୟା ପୂର୍ଣ୍ଣ ଚନ୍ଦ୍ରକୁ (ଅନ୍ୟ ସମୟରେ ମଧ୍ୟ) ମଳିନ କରି ଦେଇଥାଏ ।

ଏହାର ଅନ୍ୟ ଅର୍ଥ :—

ପୃଥିବୀ ଚ୍ଛାୟା ବିମ୍ବର ଚାରିପାଖରେ ୫ କଳା ମୋଟେଇର ଗୋଟିଏ ବହଳ ତମସା (ଅଳ୍ପ ଅନ୍ଧାର) ଘୋଡ଼ାଇ ହୋଇ ରହିଅଛି । ଫଳରେ ପୃଥିବୀଚ୍ଛାୟା ବିମ୍ବକଳାରେ ୧° କଳା ମିଶାଇ ପୃଥିବୀଚ୍ଛାୟା ବିମ୍ବ ପରିମାଣ ଧରି ନେବାକୁ ହୋଇଥାଏ । (ଉଭୟ ପାଖରେ ୫′+୫′) । ଏହି ସମଗ୍ର ପୃଥିବୀଚ୍ଛାୟା ବିମ୍ବକଳା ଅଗ୍ରସ୍ତ ଚନ୍ଦ୍ରକୁ ମଧ୍ୟ ବେଳେ ବେଳେ ଘୋଡ଼ାଇ ପକାଏ ।

**ଅଥବିଭୁଗସ୍ତମସୋଽବପୂର୍ବତଃ**
**କୁଭାନ୍ତଲଗ୍ନୋଽତଘନସ୍ତମସ୍ତୟା ।**
**ମତସ୍ତଦାଢ଼୍ୟା କ୍ରିୟତାଂ ତମୋମିତଃ**
**ପୁନର୍ବିଧୋରନ୍ତକଦୂରବର୍ତ୍ତିକାତ୍ ।୭୯।**

ଏହି ଅବନମସର $\frac{1}{10}$ ଭାଗ ଅଟ କଳା ହେତୁ ଭୂଚ୍ଛାୟା ସହିତ ମିଶିଯାଏ । ଏଣୁ ପ୍ରକୃତ ଭୂଚ୍ଛାୟା ବମ୍ବରେ ଅବନମସର $\frac{1}{10}$ ଭାଗକୁ ମିଶାଇ ଭୂଚ୍ଛାୟା ବିମ୍ବମାନ ଧରି ନେବାକୁ ହୋଇଥାଏ ।

**ତମଃ କ୍ଷୟର୍ଦ୍ଧୀକ୍ଷଣତଃ କ୍ରମେଣ ତ-**
**ଦ୍ଧକର୍ଣ୍ଣ-ଗତ୍ୟାଦ ଫଳାଷ୍ଟଦୋର୍ଲବଃ ।**
**ବଯୁକ୍ତ-ଯୁକ୍ତ-ସ୍ତମସୀତ ତତ୍ ସ୍ଫୁଟଂ**
**ଭବେଦ୍ଭତଃ ସ୍ପଷ୍ଟତମଃ ଶଶିଗ୍ରହଃ ॥୮୦।**

ପୁଣି ଭୂଚ୍ଛାୟା ବମ୍ବର ପରିମାଣ ପାତ ନିକଟରେ ଛୋଟ ଓ ପାତର ବେଶି ଦୂରକୁ (୯୦°) ଗଲେ ବଡ଼ ବା ମଧ୍ୟ ଦେଖାଯାଇଥାଏ । ଫଳରେ ଗତିଫଳ ରବିଗତି ଫଳ— (କାରଣ ରବି ଗତି ଅନୁସାରେ ଭୂଚ୍ଛାୟାର ଗତି ହୋଇଥାଏ)ର $\frac{1}{8}$ ଅଂଶ ଛାୟାବମ୍ବରେ ବିଯୋଗ ବା ଯୋଗ କରାଯାଇଥାଏ । ଏହି ସଂସ୍କାର କରାଯିବା ପରେ ଗ୍ରହଣ ଅତି ସ୍ପଷ୍ଟ ହୋଇଥାଏ ।

**ବଧୋର୍ମାନଂ ତସ୍ମାତ୍ ଶରଗୁଣହୃତଂ ବଣ୍ଵବହୃତଂ**
**ପୁନଃ ସୂର୍ଯ୍ୟସ୍ଵର୍ଣ୍ଣାଭିଧଗତଫଳାର୍ଦ୍ଧୋନତ ଯୁତମ୍ ।**
**ତମୋମାନଂ ତତ୍ସ୍ୟାଦତ ନୟନସିଦ୍ଧଂ ଶଶିମିତ**
**ପ୍ରଭୃଭ୍ୟୁକ୍ତଂ ପୂର୍ବଂ ମତମିଦମୁପାଦେୟମଖିଳାତ୍ ॥୮୧।**

ତେଣୁ ଚନ୍ଦ୍ର ବିମ୍ବକଳାକୁ ୩୫ରେ ଗୁଣି ୧୩ରେ ହର । ଫଳରେ ସୂର୍ଯ୍ୟଗତିଫଳାର୍ଦ୍ଧ (ଧନ ବା ଋଣ କ୍ରମରେ) ବିୟୋଗ ଓ ଯୋଗ କର । ତାହାହେଲେ ତାହା ଦୃକ୍‌ସିଦ୍ଧ ପୃଥିବୀ ଛାୟାମାନ ହୋଇଯିବ । ଚନ୍ଦ୍ରର କଳାବିମ୍ବମାନ ଆଣିବା ରୀତି ଆଗରୁ ବର୍ଣ୍ଣିତ ହୋଇଅଛି । ଏଠାରେ ବର୍ଣ୍ଣିତ ରୀତି ଅତ୍ୟନ୍ତ ଉପାଦେୟ ମନେ କରିବା ଉଚିତ ।

**କକ୍ଷାୟାଂ ଶଶିନସ୍ତିରୋହିତ-ତନୋଃ ସ୍ୟାଦ୍‌ଗୋଲକେନ କ୍ଷିତେ-**
**ର୍ଭାନୋର୍ଯାବଦନୀକ୍ଷଣଂ ଭବତ ତନ୍ମାନା କୁଭା ଯଦ୍ୟପି ।**
**ଦୃଷ୍ଟେଽର୍କସ୍ୟ ନଖାଂଶକେଽପି ପରତଶ୍ଛାୟାସମେ ବେକ୍ଷ୍ୟତେ**
**ମଧ୍ୟେନ୍ଦୋଃ ପଥି ଦୂରସନ୍ନିଧିଜୁଷୋଽନଲ୍ପାଲ୍ପ-ସୂର୍ଯ୍ୟାଂଶୟୋଃ ॥୮୨।**

**ଅବାୟଂ ଗଣିତକ୍ରମଃ ସ୍ଵଦଶଭାଗୋ ନାର୍କବିମ୍ବଃ କ୍ଷିତ-**
**ବ୍ୟାସୋ-ନଃ ଶଶିମଧ୍ୟକର୍ଣ୍ଣଗୁଣିତଃ ସ୍ପଷ୍ଟାର୍କ କର୍ଣ୍ଣୋଦ୍ଧୃତଃ ।**
**ଲବ୍ଧୋନା କ୍ଷିତ-ବିସ୍ତୃତଃ ଶଶଭୃତଃ କକ୍ଷାଗତକ୍ଷ୍ମା ପ୍ରଭା—**
**ମାନଂ ସ୍ୟାତ୍ତ୍ରି ଗୁଣାହୃତଂ ସ୍ଫୁଟ ଶଶିଶ୍ରୁତ୍ୟାପ୍ତମେତଦ୍‌କଳା ॥୮୩।**

ଏହି ଯେଉଁ ଭୂଚ୍ଛାୟା ଆମ୍ଭେମାନେ ଆଣୁ ତାହା ଚନ୍ଦ୍ରକକ୍ଷାରେ ହୋଇଥାଏ । କାରଣ, ପୃଥିବୀ ସୂର୍ଯ୍ୟଙ୍କୁ ଘୋଡ଼ାଇ ରଖିବାରୁ ହିଁ ତାହାର ଛାୟା ଚନ୍ଦ୍ରକକ୍ଷାର ଯେଉଁ ପ୍ରଦେଶକୁ ଢାଙ୍କି ରଖେ ତାହାହିଁ ଭୂଚ୍ଛାୟା ବିମ୍ବର ପରିମାଣ । ଏହି ଛାୟା ପରିମାଣରୁ କଳନା କଲେ ଜଣାଯିବ ଯେ ସୂର୍ଯ୍ୟର ୧/୬୦ ଅଂଶ (ତଥାପି) ଚନ୍ଦ୍ରକକ୍ଷାରେ ଥିବା ଭୂଚ୍ଛାୟା ନିକଟରେ ଦୃଶ୍ୟ ହୋଇଥାଏ । ପୃଥିବୀଠାରୁ ସୂର୍ଯ୍ୟ ଦୂର ଓ ନିକଟରେ ଥିବା କାରଣ ଯୋଗେ ଏହି ଭୂଭା ବିମ୍ବ ଯଥାକ୍ରମେ ଛୋଟ ଓ ବଡ଼ ଦେଖାଦେବାର କଥା ହେଲେ ମଧ୍ୟଚନ୍ଦ୍ରକକ୍ଷାରେ ତାକୁ ବରାବର ସମାନ ଧରି ନିଆଯାଇଅଛି । ଏପରି କରିବାଦ୍ୱାରା ବିମ୍ବ ପ୍ରତ୍ୟକ୍ଷରେ କୌଣସି ବାଧା ଆସୁ ନାହିଁ ।

ବର୍ତ୍ତମାନ ଏହାର ହିଁ ଗଣିତ ଏଠାରେ ଦିଆଯାଉଅଛି – ସୂର୍ଯ୍ୟ ବିମ୍ବକଳାରୁ ତାହାର ୧/୬୦ ବାଦ ଦିଅ । ଅବଶେଷରୁ ପୁଣି ଭୂବ୍ୟାସ ବାଦ ଦିଅ । ଅବଶେଷକୁ ମଧ୍ୟମଚନ୍ଦ୍ର କର୍ଣ୍ଣରେ ଗୁଣି ସ୍ପଷ୍ଟ ସୂର୍ଯ୍ୟ କର୍ଣ୍ଣରେ ହର । ଫଳକୁ ପୃଥିବୀ ବ୍ୟାସରୁ ବାଦ ଦେଲେ ତାହା ଚନ୍ଦ୍ରକକ୍ଷାରେ ପୃଥିବୀ ଛାୟା ବିମ୍ବମାନ ହେବ । ଏହାକୁ ପୁଣି ବିଂଜ୍ୟାରେ ଗୁଣି ସ୍ଫୁଟଚନ୍ଦ୍ର କର୍ଣ୍ଣରେ ହରିଲେ ସେହି ପୃଥିବୀ ଛାୟା ବିମ୍ବ (ଚନ୍ଦ୍ରକକ୍ଷାରେ) ର କଳାମାନ ହେବ ।

**ତମୋବିମ୍ବବ୍ୟାସେଽମ୍ବରକୃତ କଲୋନେ ସ୍ଫୁରିତଯୋଃ**
**ନ୍ତରେ ବୃତ୍ତଃ ଯାରଃ ସଘନତର ଭକ୍ତୋଽନ୍ଧତମସମ୍ ।**
**ଶରେଽଲ୍ପେ ତସ୍ୟାନ୍ତଃ ପ୍ରବିଶତି ଯଦା ଶୀତକିରଣ-**
**ସ୍ତଦାତ-ମ୍ଳାନଃ ସ୍ୟାନ୍ନିବିଡ଼ ତମଧୂମାବୃତ ଇବ ।୮୪।**

ପୃଥିବୀ ଛାୟା ବିମ୍ବମାନ ଆଣି ସେଥିରୁ ୪୦' ବିୟୋଗ କଲେ ତାହା ପୃଥିବୀ ଛାୟାର ଅନ୍ଧ ତମସମାନ ହେବ । ଏହି ଅଂଶ ଅତ୍ୟନ୍ତ ଗାଢ଼ କଳା । ଶର କମ୍ ହେବା ଫଳରେ ଚନ୍ଦ୍ର ଏହି ଅନ୍ଧତମସ ମଧ୍ୟରେ ପ୍ରବେଶ କଲେ ଅତିମ୍ଳାନ ଦେଖାଯାନ୍ତି—ଅର୍ଥାତ୍ ଚନ୍ଦ୍ର ଏତେବେଳେ ଅତି ମାତ୍ରାରେ ବର୍ଣ୍ଣହୀନ ଦେଖାଯାଏ—ଅତି କଳା ପଡ଼ିଯାଏ ।

**ଗ୍ରସ୍ତେଽଲ୍ପୀୟସିଭଗକେ ସିତରୁଚୋ ବର୍ଣ୍ଣୋନଭଃ ସାମ୍ୟଭା-**
**ଗଲ୍ପେ ଧୂମନିଭୋ ଦଳେକବଳତେ କୃଷ୍ଣୋଽର୍ଦ୍ଧସ୍ୱଗାଧିକେ ।**
**ରକ୍ତଶ୍ୟାମରୁଚିର୍ଭବେଚ୍ଚ ସକଳଗ୍ରାସକ୍ଷଣେ ପାଟଲୋ ।**
**ଭୂଭାମଧ୍ୟଗତସ୍ୟ ପିଙ୍ଗଳରୁଚିର୍ଭାନୋଃ ସଦୈବାସିତଃ ।୮୫।**

ଅତି ଅଳ୍ପ ଚନ୍ଦ୍ର ଗ୍ରହଣ ହେଲେ ଗ୍ରସ୍ତାଂଶ ଆକାଶ—ନୀଳ ଦେଖାଯାଏ । ଅଳ୍ପ ଚନ୍ଦ୍ର ଗ୍ରହଣରେ ଗ୍ରସ୍ତାଂଶ ଧୂଆଁଭଳି ଦେଖାଯାଏ । ଅର୍ଦ୍ଧ ଗ୍ରହଣରେ କଳା ଦେଖାପଡ଼େ । ଅର୍ଦ୍ଧାଧିକ ଗ୍ରହଣରେ ନୀଳକଳା ଦେଖାଯାଏ । ପୂର୍ଣ୍ଣଚନ୍ଦ୍ର ଗ୍ରହଣରେ ଗ୍ରସ୍ତାଂଶ ପାଟଳ ପଡ଼ିଯାଏ । ପୃଥିବୀଛାୟା ମଧ୍ୟରେ ଚନ୍ଦ୍ର ରହିଲେ ତାର ବର୍ଣ୍ଣ ପିଙ୍ଗଳ ଦେଖାଯାଏ । ସୂର୍ଯ୍ୟ ଗ୍ରହଣରେ ଏ ସବୁ ନ ହୋଇ ସବୁବେଳେ ଗ୍ରସ୍ତାଂଶ କଳା ହୋଇଥିବାର ଦେଖାଯାଏ ।

କ୍ଷୁଦ୍ର କ୍ଷପାକରତନୁଃ କ୍ଷୟିତାର୍ଦ୍ଧବମ୍ବୋ—
ଭାନୁର୍ଭବେଦତିଶିତଶୃଙ୍ଗଯୁଗୋଽତବନ୍ନଃ ।
ଚନ୍ଦ୍ରୋଽର୍ଦ୍ଧଖଣ୍ଡିତତନୁସ୍ତମସୋ ମହତ୍ତ୍ୱା—
ଦୀଷଦ୍‌ଗଭୀର ଇବ କୁଣ୍ଠିତ ଶୃଙ୍ଗ ଯୁଗ୍ମଃ ।୮୭।

ସୂର୍ଯ୍ୟ ବମ୍ବଠାରୁ ଚନ୍ଦ୍ରବମ୍ବ ସର୍ବଦା କ୍ଷୁଦ୍ର । ଏଣୁ ସୂର୍ଯ୍ୟଗ୍ରହଣବେଳେ ଅର୍ଦ୍ଧଗ୍ରାସରେ ସୂର୍ଯ୍ୟର ଉତ୍ପନ୍ନ ଶୃଙ୍ଗ ଦୁଇଟି ଅତ ତୀକ୍ଷ୍ଣ ହୁଏ । ମାତ୍ର ଚନ୍ଦ୍ର ଗ୍ରହଣରେ ପୃଥିବୀ ଛାୟାବମ୍ବ ଚନ୍ଦ୍ରଠାରୁ ଅତ ବଶାଳ ହେତୁ ଅର୍ଦ୍ଧଗ୍ରାସରେ ଚନ୍ଦ୍ରର ଗ୍ରସ୍ତାଂଶ ପ୍ରଯୁକ୍ତ ଶୃଙ୍ଗ ଦ୍ୱୟ ମୋଟା ଦେଖାଯାଇଥାଏ । ଛୋଟ ଗୋଲକୁ ବଡ଼ ଗୋଲ (ବୃତ୍ତ) କାଟିବା ସ୍ଥଳରେ ଏହା ବୁଝାଇ ହେବ ।

ଅକୃତ କୃତକ ରାହୁଂ ଯସ୍ତମସ୍ତ୍ୱାଦ୍ କୁଭାଖ୍ୟଂ
ବଶତ ଶଶିନ ତସ୍ମିନ୍ନାଗମୈର୍ଦୀକ୍ଷିତାନାମ୍ ।
ବତରତ ମନ୍ତ୍ରସିଦ୍ଧିଂ ଯଶ୍ଚ ସଦ୍ ବୈଷ୍ଣବାନାଂ
ସ ଦଶତୁ କୁଶଳଂ ନଃ ଶ୍ୟାମଶୈଳାବନୀଶଃ ।୮୭।

କୃଷ୍ଣ ବର୍ଣ୍ଣର ସମାନତା ନେଇ ଯେ ପୃଥିବୀ ଛାୟାକୁ ରାହୁରେ ଆରୋପିତ କର ଅଛନ୍ତି, ଏଥିରେ (ରାହୁରେ) ଚନ୍ଦ୍ର ପଶିବା ବେଳେ (ଚନ୍ଦ୍ର ଗ୍ରହଣ ସମୟରେ) ଯେ ତାନ୍ତ୍ରିକ ଓ ବୈଷ୍ଣବମାନଙ୍କୁ ମନ୍ତ୍ରସିଦ୍ଧ କରୁଅଛନ୍ତି ସେହି ନୀଳାଚଳନାଥ—ଆମ୍ଭମାନଙ୍କର ମଙ୍ଗଳ କରନ୍ତୁ । ଚନ୍ଦ୍ରଗ୍ରହଣବେଳେ ଜପ କଲେ ମନ୍ତ୍ର ସିଦ୍ଧ ହେବା କଥା ଅତ ପ୍ରସିଦ୍ଧ ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳ ପ୍ରସୂତ-
ଶ୍ରୀ ଚନ୍ଦ୍ରଶେଖର କୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ଚନ୍ଦ୍ରଗ୍ରହୋଽଷ୍ଟମଃ ଇତଃ ସୁଭଗଃ ପ୍ରକାଶଃ ।୮୮।

ଇତ ଶ୍ରୀ ଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ
ତ୍ରିପ୍ରଶ୍ନାଧିକାରେ ଚନ୍ଦ୍ରଗ୍ରହଣବର୍ଣ୍ଣନୋ
ନାମାଷ୍ଟମଃ ପ୍ରକାଶଃ ।

ଏଠାରେ ୮ମ ପ୍ରକାଶ ଶେଷ ହେଲା । ଏଥିରେ ଚନ୍ଦ୍ରଗ୍ରହଣର ବସ୍ତୃତ ବର୍ଣ୍ଣନା ରହିଅଛି ।

# ନବମଃ ପ୍ରକାଶଃ

## ସୂର୍ଯ୍ୟ ଗ୍ରହଣ ବର୍ଣ୍ଣନମ୍

ପୂର୍ବ-ପ୍ରକାଶ-ଉଦିତଂ ଗ୍ରହଣ ଦ୍ୱୟସ୍ୟ
ସାଧାରଣଂ ସକଳ କର୍ମ୍ମ ରବିଗ୍ରହେ ତୁ ।
ଯଲ୍ଲମ୍ବନା-ବନତକର୍ମ୍ମ ତତୋଽବିଶିଷ୍ଟଂ
ମାନାନ୍ତରଞ୍ଚ ଶଶିନସ୍ତଦହଂ ପ୍ରବକ୍ଷ୍ୟେ ।୧।

ଏହାର ପୂର୍ବ ପ୍ରକାଶରେ ଉଭୟ ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣର ସାଧାରଣ ସବୁ କଥା କୁହାଯାଇଛି । ସୂର୍ଯ୍ୟ ଗ୍ରହଣରେ ଲମ୍ବନ ଓ ନତି ଅଧିକା ଦରକାର ହୋଇଥାଏ । ଚନ୍ଦ୍ରର ବିମ୍ବମାନ ମଧ୍ୟ ସୂର୍ଯ୍ୟ ଗ୍ରହଣରେ ଭିନ୍ନ ହୋଇଥାଏ । ଏହି ତିନୋଟି କଥାର ଆଲୋଚନା ବିଶେଷ ଭାବରେ ଏଠାରେ କରାଯାଉଛି ।

ଦର୍ଶାନ୍ତଗୌ ସମକଳୌ କ୍ଷିତିଗର୍ଭ-ସୂତ୍ରେ
ସ୍ୟାତାବପି ଦ୍ୟୁମଣିଚନ୍ଦ୍ରମସୌ ନ ପଶ୍ୟେତ୍ ।
ଯଦ୍‌ଗୋଳପୃଷ୍ଠଗତମାନବ ଏକସୂତ୍ରେ
ଖାର୍ଦ୍ଧାନ୍ୟତୋଽବନତି ଲମ୍ବନ ସମ୍ଭବୋଽସ୍ମାତ୍ ।୨।

ଅମାନ୍ତରେ ରବି ଓ ଚନ୍ଦ୍ର ରାଶି ଅଂଶ କଳା ଆଦିରେ ସମାନ ଥିଲେ ମଧ୍ୟ ପୃଥିବୀକେନ୍ଦ୍ର ଓ ପୃଷ୍ଠସ୍ଥ ସୂତ୍ରରେ ଉଭୟେ ଦେଖା ପଡ଼ନ୍ତି ନାହିଁ । ଏକା ସ୍ଥାନରେ ମଧ୍ୟାହ୍ନରେ ଉଭୟଙ୍କୁ ଏହି ଏକ ସୂତ୍ରରେ ଦେଖିବାର ସୁଯୋଗ ମିଳିଥାଏ । ଅନ୍ୟ ସମୟରେ ତାହା ହୋଇ ନଥାଏ । ସେଥିନିମନ୍ତେ ଅନ୍ୟ ସମସ୍ତ କଥା ଛାଡ଼ି ଲମ୍ବନ ଓ ନତି କାହିଁକି ଓ କେତେବେଳେ ହୁଏ, ତାହା ଏ ପ୍ରକାଶରେ ବିସ୍ତୃତ ଭାବେ କୁହାଯିବ । ଆକାଶର ମଧ୍ୟ ଦେଶରେ ରବିଚନ୍ଦ୍ର ଥିବାବେଳେ ଲମ୍ବନ ନତି ହୁଏ ନାହିଁ । ଅନ୍ୟ ବେଳେ ହୋଇଥାଏ ।

ସୂକ୍ଷ୍ମେନ୍ଦୁସୂର୍ଯ୍ୟକନତ ସ୍ଫୁଟଦର୍ଶନାଂଶେ
ଯସ୍ମିନ୍ ସ କାଳ ଉଦତଃ ସମପର୍ବନାମା ।
ତେନ୍ଦ୍ରଂସ୍କୃତଃ ସ ନିଜଲମ୍ବନନାଡ଼ିକାଦ୍ୟୈ
ର୍ଭାସ୍ୱଦ୍ ଗ୍ରହଚ୍ଛଦନମଧ୍ୟ ଇହ ସ୍ଫୁଟଃସ୍ୟାତ୍ ।୩।

ରବି ଓ ଚନ୍ଦ୍ରକୁ ସ୍ଫୁଟ କରି ସେଥିରୁ ଯେଉଁ ସ୍ଫୁଟ ଦର୍ଶାନ୍ତ ହେବ, ତାହାକୁ ହିଁ ସମପର୍ବ-କାଳ କୁହାଯାଇଥାଏ । ଏହି ସମପର୍ବକାଳରେ ଲମ୍ବନ ସଂସ୍କାର କଲେ ତାହା ସୂର୍ଯ୍ୟଗ୍ରହଣରେ ଗ୍ରାସ ମଧ୍ୟକାଳ ହୋଇଥାଏ । ଏହାହିଁ ସ୍ଫୁଟ ଅମାନ୍ତକାଳ ।

ଏକା ନତଶ୍ଚନ୍ଦ୍ରମସୋଽପି ସୂର୍ଯ୍ୟାତ୍
ପ୍ରାକ୍‌ପଶ୍ଚିମସ୍ଥେ ତ୍ୱିହଲମ୍ବନାଖ୍ୟା ।
ଯାମ୍ୟୋତ୍ତରସ୍ଥେଽବନତଃ ଖମଧ୍ୟ
ସ୍ଥିତେ-ସିତାଂଶୌ ନ ହି ତେ ଭବେତାମ୍ ।୪।

ଅମାନ୍ତକାଳରେ ସୂର୍ଯ୍ୟଠାରୁ ଚନ୍ଦ୍ର ଯେ ନଇଁ ପଡ଼େ, ତାକୁଇ ଲମ୍ବନ କହନ୍ତି । ଏହି ନଇଁବା ପୂର୍ବାପର ହେଲେ ତାର ନାମ ଲମ୍ବନ । ମାତ୍ର ଏହା ଦକ୍ଷିଣ ଉତ୍ତର ହେଲେ ତାହାର ନାମ ନତି (ଲମ୍ବନ ନୁହେଁ) । ଆକାଶ ମଧ୍ୟରେ ରବିଚନ୍ଦ୍ର ଉଭୟ ଥିଲେ ଉଭୟ ଦୃକ୍‌ସୂତ୍ର ଏକ ହେବା ଫଳରେ ଅନ୍ତର ହୁଏ ନାହିଁ । ଏଣୁ ସେଠାରେ ନତି ବା ଲମ୍ବନ କହୁ ନାହିଁ ।

ନ ଲମ୍ବନଂ ବିତ୍ରିଭଲଗ୍ନତୁଲ୍ୟେ
ଭବେଦ୍‌ବିଧୌ ବିତ୍ରିଭଲଗ୍ନଜାତେ ।
ସୌମ୍ୟାପମେ ସ୍ୱାକ୍ଷସମାନଭାଗେ
ନ ସମ୍ଭବେତ୍ତାବନତର୍ହିମାଂଶୋଃ ।୫।

ଚନ୍ଦ୍ର ବିତ୍ରିଭ ସମାନ ହେଲେ ସ୍ଫୁଟ ଲମ୍ବନ ଆଦୌ ହୁଏ ନାହିଁ । ବିତ୍ରିଭ ଲଗ୍ନର ଉତ୍ତର କ୍ରାନ୍ତି ନିଜ ଦେଶର ଅକ୍ଷାଂଶ ସମାନ ହେଲେ ମଧ୍ୟ ଚନ୍ଦ୍ରର ନତି ହୁଏ ନାହିଁ ।

ତ୍ରିଭୋନଲଗ୍ନୋ ଦଗପକ୍ରମେଽକ୍ଷା
ଧିକେତ ସୌମ୍ୟେ ନତିରନ୍ୟଥାସୌଃ ।
ଯାମ୍ୟା ଭବେଦ୍ ପର୍ବଣି ଚନ୍ଦ୍ରଭାନ୍ୱୋଃ
ଯାମ୍ୟାନ୍ୱତୀ ତେ ରବିତଃ ସୁସାଧ୍ୟେ ।୬।

ବର୍ଜିତ ଲଗ୍ନର ଉତ୍ତରକ୍ରାନ୍ତି ସ୍ୱଦେଶୀୟ ଅକ୍ଷାଂଶରୁ ଅଧିକ ହେଲେ ଚନ୍ଦ୍ରର ଉତ୍ତର ନତି ହୋଇଥାଏ । ବର୍ଜିତ ଲଗ୍ନର ଉତ୍ତର କ୍ରାନ୍ତିରେ ଅକ୍ଷାଂଶରୁ ସୂର୍ଯ୍ୟର ବା ଚନ୍ଦ୍ରର ଦକ୍ଷିଣ-କ୍ରାନ୍ତି କମ୍ ହେଲେ ମଧ୍ୟ ଚନ୍ଦ୍ରର ଦକ୍ଷିଣ ନତି ହୋଇଥାଏ ।

ଅମାବାସ୍ୟାରେ ଚନ୍ଦ୍ର ଓ ସୂର୍ଯ୍ୟ ରାଶ୍ୟାଦି ଅବୟବରେ ସମାନ ଥିବାରୁ ଏହି ଉଭୟନତି (ଦକ୍ଷିଣ ଓ ଉତ୍ତର) ରବିରୁହିଁ ସାଧନା କରିବା ଉଚିତ । ଏହା ସୁବିଧାଜନକ ମଧ୍ୟ ।

**ତାତ୍କାଳୀକାର୍କାତ୍ ପ୍ରମପର୍ବଲଗ୍ନ**
**ମାନୀୟ ତସ୍ମାତ୍ ତ୍ରିଭୋନଲଗ୍ନାତ୍ ।**
**କ୍ରାନ୍ତିଂ ସମାନୀୟ ନିଜାକ୍ଷଭାଗୈ-**
**ସ୍ତଦ୍ୟୋଗଯୋଗୈ ପୃଥଗେକଦିକ୍ତ୍ୱେ ।୭।**

**କାର୍ଯ୍ୟାବତ ସ୍ତ୍ରୀଯ୍ତ୍ରିଭହୀନଲଗ୍ନନତାଂଶକାସ୍ତେ ନବତେର୍ବିଶୋଧ୍ୟାଃ**
**ଶେଷୋଭବତ୍ୟୁନ୍ନତ-ଭାଗସଂଜ୍ଞଃକ୍ରମଜ୍ୟକାସ୍ୟସ୍ତୁ ଟଦୃଗ୍‌ଗତଃସ୍ୟାତ୍ ।୮।**

ତାତ୍କାଳିକ ସାୟନ ରବି ସ୍ପଷ୍ଟାଧିକାରରେ ଦିଆଯାଇଥିବା ରୀତିରେ ଆଣି ସେଥିରୁ ସମପର୍ବ କାଳର ଲଗ୍ନ ଆଣିବ । ସେଥିରୁ ତିନ ରାଶି ଅନ୍ତର କରିବ । ସେହି ବର୍ଜିତ ଲଗ୍ନରୁ ପୁଣି କ୍ରାନ୍ତି ସାଧନ କରିବ । ଏହି କ୍ରାନ୍ତି ଓ ଅକ୍ଷାଂଶର ଭିନ୍ନ ଭିନ୍ନ ଦିଗ ହେଲେ ଅନ୍ତର ଓ ଏକ ଦିଗ ହେଲେ ଯୋଗ କଲେ ବର୍ଜିତ ଲଗ୍ନର ନତାଂଶ ହେବ । ତାକୁ ୯୦°ରୁ ବାଦ ଦେଲେ ବର୍ଜିତର ଉନ୍ନତାଂଶ ହେବ । ଏହି ଉନ୍ନତାଂଶର କ୍ରମଜ୍ୟାକୁ ହିଁ ସ୍ପଷ୍ଟଦୃଗ୍‌ଗତି କୁହାଯାଏ ।

**ବଶ୍ୱମ୍ଭର ଗୋଳଦଳଂ ରବୀନ୍ଦ୍ୱୋଃ**
**କକ୍ଷାଗତଂ କଳ୍ପିତ ମୁକ୍ତରୀତ୍ୟା ।**
**ଲମ୍ବୀକୃତଂ ଚେଦ୍ଧ୍ରବମେନଚୀସ୍ତ**
**ସ୍ତଦନ୍ତରଂ ଗ୍ରନ୍ଥ୍ୟନତର୍ଗ୍ରହେ ସ୍ୟାତ୍ ।୯।**

ପୃଥିବୀ ବ୍ୟାସାର୍ଦ୍ଧ ଯୋଜନକୁ ରବି ଚନ୍ଦ୍ର କକ୍ଷାରେ ମନେକରି ତାହାର କଳା କଲେ ତାହା ଲମ୍ବନକଳା ହୁଏ । ଏତଦ୍‌କହିଁ ରବି ଓ ଚନ୍ଦ୍ରର ପରମନତି । ଏହି ଉଭୟନତିର ଅନ୍ତର ସୂର୍ଯ୍ୟ ଗ୍ରହଣରେ ପରମନତି ହୁଏ ।

**ଯଦ୍‌ବାର୍କଭୁକ୍ତେଃ କୃତଭୂପଲବ୍‌ଧଃ ଶରାଂଶରକ୍ଷେଶଗତେର୍ନତଃ ସ୍ୱା ।**
**ପରା ତୟୋରନ୍ତରଜା ବଳସ୍ତାଶ୍ଚନ୍ଦ୍ରାର୍କଗତ୍ୟନ୍ତରଲିପ୍ତିକାସ୍ତାଃ ।୧୦।**

ନାଡ୍ୟାଦଲବ୍ଧଂ ସ୍ଫୁଟଦୃଗ୍‌ଗତଘ୍ନ
ରାଶିତ୍ରୟଜ୍ୟା ବହୃତଂଫଳଞ୍ଚ ।
ଅନ୍ତ୍ୟଂ ଭବେଲ୍ଲମ୍ବନନାଡ଼ିକାଦ୍ୟଂ
ତତ୍‌ପ୍ରାଣତୋ ଜ୍ୟାପରସଂଜ୍ଞକା ସ୍ୟାତ୍‌ ।୧୧।

$$\frac{\text{ସୂର୍ଯ୍ୟର ଦୈନିକ ଗତି}}{୧୬୪} = \text{ସୂର୍ଯ୍ୟର ପରମନତି}$$

$$\frac{\text{ଚନ୍ଦ୍ରର ଦୈନିକ ଗତି}}{୧୪} = \text{ଚନ୍ଦ୍ରର ପରମନତି}$$

ଏହି ରବି ଓ ଚନ୍ଦ୍ରର ପରମନତି ଦ୍ୱୟର ଅନ୍ତରରୁ ଉତ୍ପନ୍ନ ବିକଳାଦିକୁ ରବି ଓ ଚନ୍ଦ୍ର ଗତିର ଅନ୍ତର କଳାରେ ହରି ଦେଲେ ଦଣ୍ଡାଦି ପରମ ଲମ୍ବନ ହୋଇଥାଏ । ଏହି ପରମ ଲମ୍ବନକୁ ପୁଣି ଇଷ୍ଟକାଳର ତ୍ରିଭଶଂକୁରେ ଗୁଣି ତ୍ରିଜ୍ୟାରେ ହରିଲେ ଏହା କଳ୍ପିତ ପରମ ଲମ୍ବନ ହୁଏ । ଏହାକୁ ଅସୁ କରି ତାହାର ଜ୍ୟା କଲେ ତାକୁ ପରସଂଜ୍ଞା ହୋଇଥିବ ।

ଶତାହତାଭୂପଭୂଜୈର୍ବିଭକ୍ତା
ସା ଦୃଗ୍‌ଗତିର୍ଲମ୍ବନକୃତ୍ପୃଥେ ବା ।
ତ୍ରିଭୋନଲଗ୍ନୋଷ୍ଣକରାନ୍ତରୋତ୍‌ଥା
ଦୋର୍ଜ୍ୟାପରଘ୍ନୀ ତ୍ରିଗୁଣୋଦ୍ଧୃତା ଚ ।୧୨।

ସ୍ୟାଲ୍ଲମ୍ବନଜ୍ୟା ଫଳମସ୍ୟ ଚାପଂ
ପ୍ରାଣାତ୍ମକଂ ଲମ୍ବନମେତଦର୍କେ ।
ତ୍ରିଭୋନଲଗ୍ନାତ୍‌ ପରପୂର୍ବଦକ୍‌ସ୍ଥେ
କ୍ରମାଦ୍‌ଯୁତୋନଂ ସମପର୍ବକାଳେ ।୧୩।

ତତ୍କାଳ ସଂଭୂତ ରବିତ୍ରିଭୋନ
ଲଗ୍ନୋନ୍ନତଜ୍ୟାପରମୌର୍ବିକାଭିଃ ।
ଅର୍କତ୍ରିଭୋନାନ୍ତର-ତୋଽପିଭୂୟ
ସ୍ତଲ୍ଲମ୍ବନଂ ପୂର୍ବବଦେବସାଧ୍ୟମ୍‌ ।୧୪।

ତତ୍ସଂସ୍କୃତାତ୍‌ ତତ୍ସମପର୍ବ-କାଳତ୍‌
ପୁନର୍ନତାଦ୍ୟୈରପି ଲମ୍ବନଞ୍ଚ
ସ୍ଥିରେଽସକୃତ୍କର୍ମ ବଶାଦହୈତତ୍‌
ସଂସ୍କାରଯୋଗ୍ୟଂ ସ୍ଫୁଟ ଲମ୍ବନଂସ୍ୟାତ୍‌ ।୧୫।

ସ୍ଫୁଟ ଦୃଗ୍‌ଗତି (ବିଭିଭଶଙ୍କୁ)କୁ ୧୦°ରେ ଗୁଣି ୨୧୬ରେ ହରିଲେ ମଧ୍ୟ ଏହିପରି ଆସିବ । ବର୍ତ୍ତମାନ ବିଭିଭ ଲଗ୍ନ ଓ ରବିର ଅନ୍ତର ଜ୍ୟାକୁ ପରରେ ଗୁଣି ତ୍ରିଜ୍ୟାରେ ହରିଲେ ଫଳ ଲମ୍ବନ ଜ୍ୟା ହୁଏ । ଏହାର ଚାପ (ଅସୁ ଆତ୍ମକ) ସ୍ଫୁଟ ଲମ୍ବନ ହୋଇଥାଏ । ବିଭିଭ ଲଗ୍ନରୁ ସୂର୍ଯ୍ୟ ପଶ୍ଚିମରେ ଥିଲେ (କମ୍ ଥିଲେ) ସେହି ଲମ୍ବନକୁ ସମପର୍ବ କାଳରେ ଯୋଗ କଲେ, ସ୍ଫୁଟ ସମପର୍ବ କାଳ ହୁଏ । ବିଭିଭ ଲଗ୍ନରୁ ସୂର୍ଯ୍ୟ ପୂର୍ବରେ ଥିଲେ, (ଅଧିକ ଥିଲେ) ଏହି ଲମ୍ବନ ସମୟକୁ ସମପର୍ବ କାଳରୁ ବିୟୋଗ କଲେ ସ୍ଫୁଟ ସମପର୍ବ କାଳ ହୁଏ । ଏହିପରି ବାରମ୍ବାର ସ୍ଫୁଟ ପର୍ବକାଳ ଓ ଲମ୍ବନ ଆଣିବାକୁ ହେବ । ଏପରି ଦୁଇ ପର୍ବ କାଳ ମଧ୍ୟରେ ତଫାତ୍ ନ ରହିଲେ ତାହା ସ୍ଫୁଟ ଲମ୍ବନ ହୋଇଯାଏ ।

ବକ୍ଷ୍ୟେ ସକୃଲ୍ଲମ୍ବନ-କର୍ମ ସୂକ୍ଷ୍ମଂ
ଲଗ୍ନାର୍କୟୋରନ୍ତରତଃ ପ୍ରସାଧ୍ୟେ ।
ଦୋଃ କୋଟିଜୀବେ, ପରବାହୁଜୀବା
ନ୍ତରସ୍ୟବର୍ଗାଦ୍ଧ୍ୟୁତ କୋଟିବର୍ଗାତ୍ ।୧୬।

ପଦଂଶ୍ରୁତଃ କୋଟିଗୁଣାପ୍ତିରଘ୍ନା-
ଚ୍ଛୃତ୍ୟାହୃତାଦ୍ୟପ୍ତଂଳମସ୍ୟ ଚାପଃ ।
ମଧ୍ୟୋ ଭବେଲ୍ଲମ୍ବନଜାସୁସଂଘ
ସ୍ତସ୍ମଂସ୍କୃତାମାନ୍ତଜଦୃଗ୍‌ଗତଘ୍ନଃ ।୧୭।

ସ ଆଦ୍ୟୟା ଦୃଗ୍‌ଗତଜୀବୟାପ୍ତୋ
ବିସ୍ପଷ୍ଟତାଂ ଗଚ୍ଛତି ଭସ୍କରୋକ୍ତଃ ।
କ୍ରାନ୍ତ୍ୟେଷମଧ୍ୟୋ ବଧିକୋ ଯଦି ସ୍ୟା
ଭିଦାସ୍ୱମଧ୍ୟାନ୍ତର ଜାସୁବର୍ଗାତ୍ ।୧୮।

ଦ୍ୱାଭ୍ୟାଂ ହୃତାନ୍ମଧ୍ୟମ ଲମ୍ବନାପ୍ତାତ୍ ଫଳେନଯୁକ୍ତଃ କରଣୀୟଏବ ।
ତଲ୍ଲମ୍ବନଂଭୂୟ ଇନେନ୍ଦୁମଧ୍ୟ ଗତ୍ୟନ୍ତରଘ୍ନଂ ପ୍ରଥମେନ୍ଦୁଭକ୍ତ୍ୟୋଃ ।୧୯।

ଗତ୍ୟନ୍ତରେଣୋଦ୍ଧୃତମେବ କାର୍ଯ୍ୟଂ
ଦ୍ୱଧୋଦିତଂ ସ୍ପଷ୍ଟତମଂ ଭବେଦ୍ଧି ।
ପରସ୍କୃତୋ ଲମ୍ବନନାଡ଼ିକାଦ୍ୟୈ-
ର୍ଦର୍ଶାନ୍ତଏବ ସ୍ଫୁଟପର୍ବନାମା ।୨୦।

ବର୍ତ୍ତମାନ ଥରକରେ କିପରି ସୂକ୍ଷ୍ମ ଲମ୍ବନ ଅଣାଯିବ ତାହା କୁହାଯାଉଅଛି । ସମପର୍ବ କାଳରେ ଲଗ୍ନ ଓ ରବି ସାଧନ କରି ଉଭୟଙ୍କ ଅନ୍ତରରୁ ଭୁଜଜ୍ୟା କୋଟିଜ୍ୟା ବାହାର କର । ପୂର୍ବେ କୁହାଯାଇଥିବା ପରଜ୍ୟା ଓ ଏହି ଭୁଜଜ୍ୟାର ଅନ୍ତରଜ୍ୟା ବର୍ଗରେ କୋଟିଜ୍ୟା ବର୍ଗକୁ ମିଶାଇ ତାହାର ବର୍ଗମୂଳ ନେଲେ କର୍ଣ୍ଣ ହେବ । କୋଟିଜ୍ୟାକୁ ପରରେ ଗୁଣି କର୍ଣ୍ଣରେ ହରିଲେ ଫଳହିଁ ଅସୁ ଆକାରରେ ମଧ୍ୟମ ଲମ୍ବନ ହେବ । ଏହି ମଧ୍ୟମ ଲମ୍ବନ ସମପର୍ବ (ଅମାନ୍ତ) କାଳରେ ସଂସ୍କୃତ କରିବା ପରେ, ସେଥିରୁ ଯେଉଁ ଦୃଗ୍‌ଗତି ବାହାରିବ, ସେଥିରେ ମଧ୍ୟମ ଲମ୍ବନକୁ ଗୁଣି ଆଦ୍ୟ ଦୃଗ୍‌ଗତିରେ ଭାଗ ଦେଲେ ଭାସ୍କରୋକ୍ତ ସ୍ଫୁଟ (ଲମ୍ବନ) ହୋଇଥାଏ ।

ଏହି ସ୍ଫୁଟ ଲମ୍ବନ ମଧ୍ୟମ ଲମ୍ବନରୁ ଅଧିକ ହୋଇଥିଲେ ଉଭୟଙ୍କ ଅନ୍ତର ଅସୁର-ବର୍ଗକୁ ଦୁଇରେ ଗୁଣି ମଧ୍ୟମ ଲମ୍ବନରେ ହରିଲେ ଯାହା ଲବ୍ଧି ହେବ ତାକୁ ଏହି ସ୍ଫୁଟ ଲମ୍ବନରେ ଯୋଗ କରିବାକୁ ହେବ । ଏହିପରି ଭାବରେ ଥରକରେ ଏବଂ ବହୁ ପ୍ରକାରରେ ଏହିପରି ଦୁଇ ପ୍ରକାରରେ ସ୍ଫୁଟ ଲମ୍ବନ ଅଣାଗଲା । ଏହାକୁ ପୁଣି (ଯେ କୌଣସି ଗୋଟିଏକୁ) ରବି ଓ ଚନ୍ଦ୍ରର ମଧ୍ୟମ ଗତ୍ୟନ୍ତରରେ ଗୁଣି ପ୍ରଥମ ସ୍ଫୁଟ ଚନ୍ଦ୍ର ଓ ସୂର୍ଯ୍ୟର ଗତ୍ୟନ୍ତରରେ ଭାଗ ଦେବାକୁ ହେବ । ତାହା ହେଲେ ଭାସ୍କରୀୟ ସ୍ଫୁଟ ଲମ୍ବନ ଅତିସ୍ଫୁଟ ହୋଇଥାଏ । ଏହି ପରିସ୍ଫୁଟ ଲମ୍ବନ ନାଡ଼ିକା ଆଦି ଦ୍ୱାରା ପୂର୍ବୋକ୍ତ ରୀତିରେ ଦର୍ଶାନ୍ତକୁ ସଂସ୍କାର କଲେ ସ୍ଫୁଟତମ ପର୍ବକାଳ ହୋଇଯିବ ।

**ଷଡ଼ଭୈର୍ହୃତା ଲମ୍ବନସିଦ୍ଧକାଲ ଲଗ୍ନସ୍ଫୁଟାର୍କାନ୍ତରକୋଟିଜୀବା ।**
**ତ୍ରିଜ୍ୟାହୃତା ଦୃଗ୍‌ଗତିତାଡ଼ିତସ୍ତା ତ୍ରିଭଜ୍ୟୟାପ୍ତା ଲମ୍ବନଜା ବିନାଡ୍ୟଃ ।୨୫।**

**ଭବନ୍ତି ତାଃ ପ୍ରାଗ୍‌ବଦନେନ ମଧ୍ୟ**
**ଗତ୍ୟନ୍ତର ଘ୍ନାଃ ସ୍ଫୁଟକାନ୍ତରାପ୍ତାଃ ।**
**କାଲେସ୍ଫୁଟେ ଯୋଗବିଯୋଗବାମ୍ୟାତ୍**
**ପରିସ୍ଫୁଟାଃସ୍ୟୁଃ ସମପର୍ବକାଲଃ ।୨୬।**

ସ୍ଫୁଟ ପର୍ବକାଳରେ ସ୍ଫୁଟ ଲଗ୍ନ ଓ ସ୍ଫୁଟ ରବି ଆଣି ଉଭୟଙ୍କ ଅନ୍ତର କୋଟିଜ୍ୟାକୁ ୨୭୭ରେ ଗୁଣି ତ୍ରିଜ୍ୟାରେ ହରିଲେ ଏବଂ ଏହି ଫଳକୁ ପୁଣି ଦୃଗ୍‌ଗତିରେ ଗୁଣି ତ୍ରିଜ୍ୟାରେ ହରିଲେ ଫଳ ଲମ୍ବନ ବିନାଡ୍ୟାଦି ହେବ । ଏହି ଲମ୍ବନ ବିନାଡ଼ୀକୁ ପୂର୍ବପରି ରବି ଓ ଚନ୍ଦ୍ରର ମଧ୍ୟଗତିର ଅନ୍ତରରେ ଗୁଣି ଉଭୟଙ୍କ ସ୍ଫୁଟ ଗତିର ଅନ୍ତରରେ ହରିଲେ ଫଳ ଯାହା ହେବ ତାକୁ ସ୍ଫୁଟ ପର୍ବ କାଳରେ ବିପରୀତ ସଂସ୍କାର କଲେ ସମପର୍ବକାଳ ହୋଇଥାଏ ।

ଇତ୍ଥଂ ପ୍ରସାଧ୍ୟ ଗ୍ରହମଧ୍ୟକାଳଂ
ଚନ୍ଦ୍ରଗ୍ରହେ ଯା ସ୍ଥିତଖଣ୍ଡସିଦ୍ଧ୍ୟୈ ।
ଅନ୍ତ୍ୟା ସ୍ଫୁଟା ଚନ୍ଦ୍ରଗତଃ ପୁରୋକ୍ତା
ତୟା ହତଂ ଲମ୍ବନନାଡ଼ିକାଦ୍ୟମ୍ ।୨୩।

ଷଷ୍ଟ୍ୟାପ୍ତମେତଦ୍ ଫଳ ହୀନଯୁକ୍ ଚେତ୍
ପ୍ରାକ୍ ପଶ୍ଚାଜାର୍କଃ ସ୍ଫୁଟଶୀତଗୁଃ ସ୍ୟାତ୍ ।
ପାତୋ ଦଶାଂଶାକ୍ଷଫଳେନ ସିଦ୍ଧଃ
କାର୍ଯ୍ୟସ୍ତଦୂନାତ୍ ଶଶିନଃ ଶରଶ୍ଚ ।୨୪।

ଆନୀୟ ଭକୋଃ ସ୍ଫୁଟପଶ୍ଚଲଗ୍ନଂ
ତ୍ରିଭୋନଲଗ୍ନଂ ତଦପକ୍ରମୌ ଚ ।
ଉଦକ୍ ଶରୋନୌ ଯମଦକ୍ ଶରାଢ଼୍ୟଃ
ସ୍ୱଦେଶଜାକ୍ଷସ୍ତୁ ଭବେଦ୍ ଶରାକ୍ଷଃ ।୨୫।

ତଦ୍‌ବତ୍ତ୍ରିଭୋନାପମୟୋର୍ବିଯୋଗାଦ୍
ଯୋଗାଦ୍ ବଭିନ୍ନୈକଦଶୋଃ କ୍ରମେଣ ।
ସାଧ୍ୟା ନତଜ୍ୟାଦ ତୁ ସୈବ ମଧ୍ୟା
ଲଗ୍ନାପମଜ୍ୟାପ୍ୟୁଦୟଜ୍ୟକାଖ୍ୟା ।୨୬।

ମଧ୍ୟୋଦୟଜ୍ୟାଗୁଣିତାଃ ବଲଗ୍ନ
ଦ୍ୟୁଜ୍ୟାହୃତା ଲବ୍‌ଧକୃତଃ ସମେତା ।
ମଧ୍ୟାକୃତୌ ମୂଳମିତୋଽଯଦାପ୍ତଂ
ଦୃକ୍‌କ୍ଷେପ ଏଷ ସ୍ୱନତାନୁସାରାତ୍ ।୨୭।

ଏହିପରି ଗ୍ରହ ମଧ୍ୟ କାଳ ସାଧନ କରି ସାରିବା ପରେ ଚନ୍ଦ୍ର ଗ୍ରହଣରେ ସ୍ଥିତ୍ୟର୍ଦ୍ଧ ଜାଣିବା ନିମନ୍ତେ "ବକ୍ଷ୍ୟେଽବ୍‌ଦଭୁକ୍ତଂ ଗ୍ରହଣେ ପ୍ରସିଦ୍ଧି"। ଏହି ରୀତରେ ଚନ୍ଦ୍ରର ଶେଷ ସ୍ଫୁଟ ଗତି ଆଣି ସେଥିରେ ଲମ୍ବନ ଘଟିକାଦିକୁ ଗୁଣିବ ଏବଂ ଏହି ଗୁଣ ଫଳକୁ ୬୦ରେ ହରିଲେ ଯେଉଁ ଲବଧି ହେବ, ତାହାକୁ ସମପର୍ବ କାଳର ସୂର୍ଯ୍ୟରେ ଲମ୍ବନ ସଂସ୍କାର ପରି (ଯେପରି ଲମ୍ବନକୁ ଯୋଗ ଓ ବିଯୋଗ କରାଯାଏ) ସଂସ୍କାର କଲେ ତାହା ସମପର୍ବ କାଳୀନ ଚନ୍ଦ୍ର ହୋଇଯାଏ । ଚନ୍ଦ୍ରପାତକୁ ଦଶାଂଶ ଫଳରେ ସଂସ୍କାର କରିବ । ଏହି ସଂସ୍କୃତ ପାତକୁ ସ୍ଫୁଟ ଚନ୍ଦ୍ରରୁ ବାଦ ଦେଇ ଶର ସାଧନ କରିବ ।

ତେଣେ ତାତ୍କାଳିକ ସୂର୍ଯ୍ୟରୁ ସ୍ପଷ୍ଟ ପର୍ବ କାଳର ଲଗ୍ନ ଓ ବିତ୍ରିଭ ଲଗ୍ନ ଆଣି ସେ ଉଭୟର କ୍ରାନ୍ତି ମଧ୍ୟ ଆଣିବ । ନିଜ ଦେଶୀୟ ଅକ୍ଷାଂଶରେ ଚନ୍ଦ୍ରର ଶର ଯୋଗ କରିବା ଏବଂ ଉତ୍ତର ଚନ୍ଦ୍ର ଶରକୁ ସେଥିରୁ ବିଯୋଗ କରିବ । ତାହାହେଲେ ସେ ଶରାକ୍ଷ ହେବ । ଅର୍ଥାତ୍ ତାହାଶର ସଂସ୍କୃତ ଅକ୍ଷାଂଶ ହେବ । ଏହି ଶରାକ୍ଷ ଓ ବିତ୍ରିଭ କ୍ରାନ୍ତି ଏକଦିଗର ହେଲେ ଯୋଗ ଏବଂ ଭିନ୍ନ ଦିଗର ହେଲେ ଅନ୍ତର କଲେ ନତ ହୁଏ । ଏହାର ଜ୍ୟା ନତଜ୍ୟା । ଏହାର ହିଁ ନାମାନ୍ତର ମଧ୍ୟଜ୍ୟା । ଲଗ୍ନ କ୍ରାନ୍ତିଜ୍ୟାକୁ ଉଦୟ ଜ୍ୟା କହନ୍ତି । ମଧ୍ୟ ଜ୍ୟାକୁ ଉଦୟ ଜ୍ୟାରେ ଗୁଣି ଲଗ୍ନର ଦ୍ୟୁଜ୍ୟାରେ ଭାଗ ଦେଲେ ଯାହା ହେବ ତାର ବର୍ଗକୁ ମଧ୍ୟ ଜ୍ୟା ବର୍ଗରେ ଯୋଗ କରି ମୂଳ ନେଲେ ତାହା ଦୃକ୍ଷେପ ହେବ । (ଏହା କନ୍ତୁ ପୂର୍ବ କଳ୍ପିତ ନିଜ ନତଜ୍ୟାନୁସାରୀ ହେବ) ।

**କିଂ ବା ତ୍ରିଭୋନାଂ ତନୁମେବଭିନ୍ନଂ**
**ପ୍ରକଳ୍ପ୍ୟ ତତ୍କ୍ରାନ୍ତିଚରଦ୍ୟୁମାନମ୍ ।**
**ସଂସାଧ୍ୟ ତଲ୍ଲଗ୍ନଯୁଗାନ୍ତରୋତ୍ଥ**
**କାଳସ୍ୟ ତଦ୍ଘସ୍ରଦଳସ୍ୟଚାନ୍ତଃ ।୨୮।**

**ଯେ ଚ୍ୟସବସ୍ତନ୍ନତତୋ କ୍ରାନ୍ତିଜ୍ୟା**
**ସାଧ୍ୟାନ୍ତିକା ତଦ୍ରହିତୋନ୍ନତଜ୍ୟା ।**
**ଛେଦୋ ନରେ ଦୃଗ୍‌ଗୁଣ ଏତଦଂଶା**
**ନତାସ୍ତ୍ରିଭୋନାପମ ଉତ୍ତରୋହକ୍ଷାତ୍ ।୨୯।**

**ସ୍ୟାଚ୍ଛେଦ୍ ବହୁଃ ସୌମ୍ୟନତାଂଶ କାଷ୍ଠେ**
**ନ୍ୟଥୈବ ଯାମ୍ୟାଃ ଶରସଂସ୍କୃତାଃ ସ୍ୟୁ ।**
**ଦକ୍‌ସାମ୍ୟଭେଦୋଦ୍‌ଥଯୁତଚ୍ଛିଦାଭ୍ୟାଂ**
**ତଜ୍ଜ୍ୟା ଚ ଦୃକ୍‌କ୍ଷେପ ଇତ ଦ୍ୱିଧୈଷଃ ।୩୦।**

ଅନ୍ୟ ରୀତିରେ ଦୃକ୍ଷେପ ମଧ୍ୟ ଅଣାଯାଇ ପାରେ । ବିତ୍ରିଭ ଲଗ୍ନକୁ ରବି ମନେ କରି ସେଥିରୁ ଚର ଓ କ୍ରାନ୍ତି ସାଧନ ପୂର୍ବକ ଦିନାର୍ଦ୍ଧ ଆଣ । ଏହି ଦିନାର୍ଦ୍ଧ ଓ ବିତ୍ରିଭ ତଥା ଲଗ୍ନର ଅନ୍ତର୍ବର୍ତ୍ତୀ ସମୟର ଅନ୍ତର ଆଣି ତାକୁ ଅଂଶରେ ପରିଣତକର । ଏହାହିଁ ବିତ୍ରିଭ ନତାଂଶ । ଏହାର ଉତ୍କ୍ରମଜ୍ୟା ସାଧନକର । ଅନ୍ତ୍ୟାଠାରୁ ଏହି ଉତ୍କ୍ରମଜ୍ୟା ବାଦ କଲେ ଉନ୍ନତଜ୍ୟା ହୁଏ । ଇଷ୍ଟ ଅନ୍ତ୍ୟା ଏହାର ନାମାନ୍ତର । ଏହାପରେ ଏହା ସବୁ ସପ୍ତମପ୍ରକାଶସ୍ଥ ରୀତିରେ ଛେଦ, ଇଷ୍ଟହୃତି, ବିତ୍ରିଭଶଙ୍କୁ ଓ ତାହାର ଦୃଗ୍‌ଜ୍ୟା ଆଦି କରିବ । ତାହାର ଚାପ କଲେ ତାହା ବିତ୍ରିଭ ନତାଂଶ ଅର୍ଥାତ୍ ଦୃକ୍ଷେପ ଚାପ ହୁଏ ।

ବର୍ତ୍ତିଭର ଉତ୍ତରକ୍ରାନ୍ତି ଯଦି ଅକ୍ଷାଂଶଠାରୁ ଅଧିକ ହୁଏ, ତାହାହେଲେ ଅଣାଯାଇଥିବା ନତାଂଶ ଉତ୍ତର, ଅନ୍ୟଥା ଅର୍ଥାତ୍ ବର୍ତ୍ତିଭର ଦକ୍ଷିଣକ୍ରାନ୍ତି ଯଦି ଅକ୍ଷାଂଶଠାରୁ କମ ହୁଏ, ତାହାହେଲେ ନତାଂଶ ଦକ୍ଷିଣ ହୁଏ । ଏହି ନତାଂଶ ଓ ଚନ୍ଦ୍ରଶରର ଦିଗ ସମାନ ଥିଲେ ଯୋଗ ଓ ଦିଗ ଅସମାନ ଥିଲେ, ବିୟୋଗ କରିବା ଫଳର ଜ୍ୟା ଚନ୍ଦ୍ରର ଦୃକ୍ଷେପ ହେବ । ଏପରି ଭାବରେ ଦୃକ୍ଷେପ ଦୁଇ ପ୍ରକାରର ହୋଇଥାଏ ।

ପୃଥକ୍ସ୍ଥିତଶ୍ଚ ପ୍ରଥମେନ୍ଦୁ ଭୁକ୍ତି
ଫଳେନ ନିଘ୍ନଃ କଳିକାତ୍ମନା ସଃ ।
ତ୍ରିଜ୍ୟାହୃତଃ କର୍କିମୃଗାଦିମନ୍ଦ
କେନ୍ଦ୍ରେ ସ୍ଫୁଟଃସ୍ୟାତ୍ ଫଳଯୁଗ୍ବିୟୁକ୍ତଃ ।୩୧।

ଦୁଇଟି ଯାକ ଦୃକ୍ଷେପକୁ ଅଲଗା ଅଲଗା କରି ରଖ । ଉଭୟଙ୍କୁ କଳାତ୍ମକ ଚନ୍ଦ୍ରଗତି ଫଳରେ ଗୁଣି ତ୍ରିଜ୍ୟାରେ ହରିଲେ ଯାହା ଫଳ ହେବ, ତାହାକୁ (ସେ ଦୁଇ ଫଳକୁ ନିଜ ନିଜର ଦୃକ୍ଷେପରୁ) ଚନ୍ଦ୍ରର ମନ୍ଦକେନ୍ଦ୍ର କର୍କଟାଦି ଓ ମକରାଦି ୬ ରାଶିରେ ଥିବା ବେଳେ ଯଥାକ୍ରମେ ଯୋଗ ଓ ବିୟୋଗ କଲେ ଉକ୍ତ ଦୁଇଟିଯାକ ଦୃକ୍ଷେପ ସ୍ଫୁଟ ହେବ ।

ଦ୍ୱୟୋଧୋକ୍ତୟୋରେବ କଳାଲ୍ପମାନେ
ଗ୍ରାସେଽଷ୍ଟଚକ୍ଷୁଃ କଳିକାଦିକେ ଚ ।
ଦୃକ୍କ୍ଷେପୟୋଃ ସୂକ୍ଷ୍ମତୟା ଦ୍ୱିତୀୟୋ
ଗ୍ରାହ୍ୟୋଽନ୍ୟଥା ସ୍ଥୂଳତୟାପି ବାଦ୍ୟଃ ।୩୨।

ଦୁଇ ପ୍ରକାରର ସ୍ଫୁଟ ଦୃକ୍ଷେପ କୁହାଯାଇଛି । ୧ କଳାରୁ କମ ଓ ୨୮ କଳାରୁ ବେଶି ଗ୍ରାସ ଗ୍ରହଣରେ ୨ୟ ଦୃକ୍ଷେପ (ଅର୍ଥାତ୍ ଯେଉଁ ଦୃକ୍ଷେପ ବର୍ତ୍ତିଭ ନତାଂଶ ସଂସ୍କୃତ ଅଟେ) ଗ୍ରହଣ କରିବା ଉଚିତ । ଅନ୍ୟଥା ଅର୍ଥାତ୍ ୧'ରୁ ୨୮' ପର୍ଯ୍ୟନ୍ତ ଗ୍ରାସରେ ପ୍ରଥମ ଦୃକ୍ଷେପ ( ଶରାକ୍ଷ ବର୍ତ୍ତିଭକ୍ରାନ୍ତି ସଂସ୍କୃତ ସ୍ଥୂଳ ଦୃକ୍ଷେପ ) ଗ୍ରହଣ କରିବା ଠିକ ହେବ ।

ମଧ୍ୟାର୍କଚନ୍ଦ୍ରାନ୍ତ୍ୟନତିଦ୍ୱୟସ୍ୟ
ଦୃକ୍କ୍ଷେପନିଘ୍ନଂ ବିବରଂ ତ୍ରିମୌର୍ବ୍ୟା ।
ହୃତଂ ନତିସ୍ତଦ୍ଦ୍ୟୁସମାଂଶହୀନ
ଦୃକ୍ଷେପଭୂତର୍କଲବଃ ସ୍ଫୁଟା ବା ।୩୩।

ଏକାଶୟୋ ଶ୍ଚନ୍ଦ୍ରଶର ବିନତ୍ୟୋ
ର୍ଯୋଗଃ ପୁନର୍ଭିନ୍ନ ଦିଶୋର୍ବିୟୋଗାତ୍ ।
ଶେଷୋଽଧିକାଂଶ ସ୍ଫୁଟଦିକ୍ଶରଃସ୍ୟାଦ୍-
ଗ୍ରାସାଦିରିନ୍ଦୁଗ୍ରହବଦ୍ବିଚିନ୍ତ୍ୟଃ ।୩୪।

ଦେଶେ କ୍ୱଚିତ୍ ସୌମ୍ୟଶରେଽଧିକଶ୍ଚେ-
ଦକ୍ଷାତ୍ତଦାକ୍ଷଂ ପ୍ରବିଶୋଧ୍ୟ ବାଣାତ୍ ।
ଶେଷଃ ଶରାକ୍ଷୋ ଭବତୀହ ସୌମ୍ୟଃ
ସୌମ୍ୟେଽପମେ ବିତ୍ରିଭଜେ ତତୋଽଲ୍ପେ ।୩୫।

ସ୍ୱାକ୍ଷାଧିକେଽକ୍ଷଂ ପରିବର୍ଜ୍ୟ ତସ୍ମା-
ଚ୍ଛେଷଃଶରାକ୍ଷାଢ୍ୟ ଉଦଙ୍ନତଃ ସ୍ୟାତ୍ ।
ସୌମ୍ୟେଽପମେ ତତ୍ରନିଜାକ୍ଷତୋଽଲ୍ପେ
ତଦକ୍ଷଲପ୍ତାବିବରାଚ୍ଛରାକ୍ଷଃ ।୩୬।

ବିଶୋଧିତେ ଯାମ୍ୟନତୋଽବଶେଷଃ
ସୌମ୍ୟଃ ଶରାକ୍ଷାଦ୍ବିବରେ ବିଶୁଦ୍ଧେ ।
ଯାମ୍ୟେଽପମେ ବିତ୍ରିଭଲଗ୍ନକାତେ
ସ୍ୱାକ୍ଷାନ୍ୱିତେ ସୌମ୍ୟଶରାକ୍ଷତୋଽଲ୍ପେ ।୩୭।

ଶରାକ୍ଷତଃ ପ୍ରୋଜ୍ଝ୍ୟ ତଦକ୍ଷଯୋଗଂ
ଲପ୍ତାଦିକଃ ସୌମ୍ୟନତୋଽବଶେଷଃ ।
ୱଗାଲ୍ପକାକ୍ଷେଷୁ ବିଶେଷ ଏଷ
ଦେଶେଷୁ ଦୃଶ୍ୟୋ ହ କୁଶାଗ୍ରଧୀଭିଃ ।୩୮।

ଅତଃ ଶରାକ୍ଷ ପ୍ରତିସଂସ୍କୃତାଭ୍ୟାଃ
କ୍ରାନ୍ତେଃସଦା ବିତ୍ରିଭଲଗ୍ନକାଭ୍ୟାଂ ।
ନତାଂଶଯାମ୍ୟୋତ୍ତର ତାନସାରାତ୍
ଦୃକ୍କ୍ଷେପ ମଧ୍ୟାନତୟୋଽଖିଳାଃ ସ୍ୟୁଃ ।୩୯।

ମଧ୍ୟମ ରବି ଓ ଚନ୍ଦ୍ରର ନତ୍ୟନ୍ତର (୦ । ୨୨ । ୩୮ ଓ ୫୭ । ୨୮ । ୧୩ର ଅନ୍ତର ୫୭।୬।୩୫ )କୁ ଭୂକ୍ଷେପରେ ଗୁଣି ତ୍ରିଜ୍ୟାରେ ଭାଗ ଦେଲେ ଫଳ ସ୍ପଷ୍ଟନତି ହୋଇଥାଏ ।

$$\frac{\text{ଭୂକ୍ଷେପ} - \frac{\text{ଭୂକ୍ଷେପ}}{୨୨୫}}{୬୧}$$ ଏହା ମଧ୍ୟ ସ୍ପଷ୍ଟ ନତି ଆଣିବାର ସୂତ୍ର ।

ନତି କିନ୍ତୁ ଭୂକ୍ଷେପ ଦିଗର ହୁଏ । ଚନ୍ଦ୍ର ତଥା ସ୍ପଷ୍ଟ ନତିର ସମାନ ଦିଗରେ ଯୋଗ ଏବଂ ଭିନ୍ନ ଦିଗର ହେଲେ ଅନ୍ତର କଲେ ସ୍ପଷ୍ଟ ଶର ହୁଏ । ଉଭୟ ମଧ୍ୟରୁ ଯାହାର ପରିମାଣ ବେଶି ସ୍ପଷ୍ଟଶରର ମଧ୍ୟ ସେହି ଦିଗ ହୋଇଥାଏ । ଏଥିରୁ ଚନ୍ଦ୍ର ଗ୍ରହଣରେ କୁହାଯାଇଥିବା ରୀତିରେ ଗ୍ରାସ, ସ୍ପର୍ଶ ମୋକ୍ଷ ଆଦି ସାଧନ କରିବାକୁ ହେବ ।

ଚନ୍ଦ୍ରର ଉତ୍ତରଶର ଦେଶର ଅକ୍ଷାଂଶଠାରୁ ବେଶୀ ହେଲେ ଶରରୁ ଅକ୍ଷାଂଶକୁ ବାଦ୍ ଦେବ । ଅବଶେଷକୁ ଉତ୍ତର ଶରାକ୍ଷ କୁହାଯିବ । ରବିଭର ଉତ୍ତରକ୍ରାନ୍ତି ଏହି ଶରାକ୍ଷରୁ ଅଳ୍ପ ଏବଂ ଅକ୍ଷାଂଶଠାରୁ ବେଶି ହେଲେ ଏହି ରବିଭ ଉତ୍ତର କ୍ରାନ୍ତିରୁ ଅକ୍ଷାଂଶକୁ ବାଦ ଦେଇ ଶେଷକୁ ଶରାକ୍ଷରେ ଯୋଗ କଲେ ତାହା ଉତ୍ତର ନତି ହୁଏ । ରବିଭର ଉତ୍ତରକ୍ରାନ୍ତି ଅକ୍ଷାଂଶଠାରୁ ଅଳ୍ପ ହେଲେ ଅକ୍ଷାଂଶରୁ ଏହି କ୍ରାନ୍ତିକୁ ଅନ୍ତର କରି ଅବଶେଷରୁ ଶରାକ୍ଷକୁ ବାଦ ଦେଲେ ଅବଶେଷ ଦକ୍ଷିଣନତି ହେବ । ଏହି ଅନ୍ତରକୁ ଶରାକ୍ଷରୁ ବାଦ ଦେଲେ କିନ୍ତୁ ଉତ୍ତର ନତି ହେବ । ରବିଭର ଦକ୍ଷିଣ କ୍ରାନ୍ତିରେ ଅକ୍ଷାଂଶ ଯୋଗକଲେ ଯଦି ତାହା ଉତ୍ତର ଶରାକ୍ଷଠାରୁ ଅଳ୍ପ ହୁଏ ତାହାହେଲେ ଏହି କ୍ରାନ୍ତି ଓ ଅକ୍ଷାଂଶ ଯୋଗକୁ ଶରାକ୍ଷରୁ ବାଦ ଦେଲେ ଯାହା ଅବଶେଷ ରହିବ, ତାହା କଳାଦି ଉତ୍ତରନତି ହେବ । ଏକ ଅଂଶରୁ କମ ଅକ୍ଷାଂଶ ହେଉଥିବା ଦେଶରେ ଏ ସବୁ କଥା ବିଶେଷ ଭାବରେ ବିଚାର କରିବାକୁ ଅତି ବୁଦ୍ଧିମାନ୍ ଲୋକଙ୍କୁ ମୋର, ଏ ନିବେଦନ । ଏଥିରୁ ଜଣାଯାଉଛି ଯେ ସବୁ ସ୍ଥାନରେ ଶରାକ୍ଷ ସଂସ୍କୃତ ରବିଭ କ୍ରାନ୍ତିରୁ ଉତ୍ପନ୍ନ ନତାଂଶର ଉତ୍ତର ଓ ଦକ୍ଷିଣ ଦିଗକୁ ନେଇ ଭୂକ୍ଷେପ, ମଧ୍ୟ ଓ ନତି ସବୁ ଆଣିବାକୁ ହେବ ।

ପ୍ରାଗ୍‌ବଦ୍ରବେର୍ମାନମଥେନ୍ଦୁମାନଂ
ସାଧ୍ୟଂ ବିଧାବସ୍ତି କିୟାନ୍ ବିଶେଷଃ ।
ସୂକ୍ଷ୍ମଂ ତମୋମାନମତଃ ପ୍ରବକ୍ଷ୍ୟେ
ଦୃକ୍‌ସିଦ୍ଧୟେ ଯଦ୍ଗଦିତଂ ନ ପୂର୍ବୈଃ ।୪୦।

କର୍କ୍ୟାଦି ନକ୍ରାଦିକ କେନ୍ଦ୍ରକୋଟୀ
ଫଳୋନ ଯୁକ୍ତ ତ୍ରିଗୁଣ ସ୍ୱଘାତାତ୍ ।
ମୂଳେନ ତଦ୍ଦୋଃ ଫଳବର୍ଗ ଯୁକ୍ତାତ୍
ଦ୍ୱିଘ୍ନତ୍ରିଜୀବା ବିଯୁତାବଶେଷଃ ।୪୧।

ଯଚ୍ଛେନ ଭକ୍ତା ତ୍ରିଗୁଣସ୍ୟ ବର୍ଗାତ୍
ଫଳଂହୃ  କଲ୍ପ୍ୟାମୟନ୍ମନ୍ଦକର୍ଣ୍ଣଃ ।
ତ୍ରିଜ୍ୟାଘ୍ନମଧ୍ୟେନ୍ଦୁକଳାମ୍ବବିମ୍ବ
ସ୍ତଦ୍‌କର୍ଣ୍ଣ-ଭକ୍ତଃ ସ୍ଫୁଟଚନ୍ଦ୍ରମାନମ୍ ।୪୨।

ପୂର୍ବେ ବର୍ଣ୍ଣିତ ଚନ୍ଦ୍ରଗ୍ରହଣୋକ୍ତଖଣ୍ଡରେ ରବି ଓ ଚନ୍ଦ୍ରର ବିମ୍ବ ସାଧନ କରିବ । କିନ୍ତୁ ଏଠାରେ ଚନ୍ଦ୍ରବିମ୍ବ ଆଣିବାରେ କେତେକ ବିଶେଷତ୍ୱ ଅଛି । ଏହି ସବିଶେଷ ଚନ୍ଦ୍ରବିମ୍ବ-ମାନରୁ ସୂକ୍ଷ୍ମ ତମୋମାନ କପରି ଆଣି ହେବ (ଏଠାରେ ତମର ଅର୍ଥ ଚନ୍ଦ୍ରବିମ୍ବରୁ ଉତ୍ପନ୍ନ ତମ ଯାହା ସୂର୍ଯ୍ୟକୁ ଗ୍ରାସ କରେ) ତାହା କୁହାଯାଇଛି । ପ୍ରାଚୀନ ଆଚାର୍ଯ୍ୟମାନେ ଏପରି ଚେଷ୍ଟା କରି ନାହାନ୍ତି ।

ଚନ୍ଦ୍ରର ମନ୍ଦକେନ୍ଦ୍ର କର୍କଟ ଆଦି ଛ' ରାଶିରେ ଥିଲେ ତାହାର କୋଟି ଫଳକୁ ତ୍ରିଜ୍ୟାରୁ ବାଦ ଦେବ, ଅନ୍ୟଥା (ମନ୍ଦ କେନ୍ଦ୍ର ମକର ଆଦି ୬ ରାଶିରେ ଥିଲେ) ତ୍ରିଜ୍ୟାରେ ତାକୁ ଯୋଗ କରିବ । ଫଳର ବର୍ଗରେ ମନ୍ଦ ଭୁଜଫଳ ବର୍ଗ ଯୋଗ କଲେ ଯାହା ହେବ ତାହାର ବର୍ଗମୂଳ ବାହାର କରିବ । ତାକୁ ଦୁଇଗୁଣ ତ୍ରିଜ୍ୟା ୬୮୭୬ରୁ ବାଦ ଦେବ । ଶେଷରେ ତ୍ରିଜ୍ୟା ବର୍ଗକୁ ହରିଲେ ଯାହା ଫଳ ହେବ ତାହାହିଁ ଚନ୍ଦ୍ରର କଳାତ୍ମକ ମନ୍ଦକର୍ଣ୍ଣ ହେବ । ଚନ୍ଦ୍ରର ମଧ୍ୟମ ବିମ୍ବ କଳାକୁ ତ୍ରିଜ୍ୟାରେ ଗୁଣି ଉକ୍ତ ମନ୍ଦକର୍ଣ୍ଣରେ ହରି ଦେଲେ ଚନ୍ଦ୍ରର ସ୍ଫୁଟ ବିମ୍ବମାନ ଆସିଯିବ ।

ଆନୀୟ ଶଙ୍କୁଂ ସ୍ଫୁଟପର୍ବକାଳ
ସୂର୍ଯ୍ୟସ୍ୟ ଦୃଗ୍‌ଜ୍ୟାଂ ଚ ପରେନ୍ଦୁନତ୍ୟା ।
ହୀନସ୍ୟ ଶଙ୍କୋଃ କୃତଯୁକ୍ତ ଦୃଗ୍‌ଜ୍ୟା
ବର୍ଗାତ୍ ପଦଂ ଯତ୍ତମସଃ ସ କର୍ଣ୍ଣଃ ।୪୩।

ସ୍ଫୁଟେନ୍ଦୁମାନଂ ତ୍ରିଗୁଣଘ୍ନମେତତ୍
କର୍ଣ୍ଣୋଦ୍ଧୃତଂ ସ୍ୟାତ୍ତମସଃ ପ୍ରମାଣମ୍ ।
ଯଦ୍‌ବେଦୁଷଷ୍ଟ୍ୟଂ ଶର୍ବନଘ୍ନଶଙ୍କୁ
ତ୍ରିଜ୍ୟାପ୍ତଯୁକ୍ତେନ୍ଦୁମିତସ୍ତମଃସ୍ୟାତ୍ ।୪୪।

କିଂବା ଦିନସ୍ୟୋନ୍ନତ ଦଣ୍ଡସଂଖ୍ୟା
ଦ୍ୱିଘ୍ନା ବିଲପ୍ତା ସ୍ତମସି ପ୍ରଦେୟାଃ ।
ସ୍ପର୍ଶେ ବିମୋକ୍ଷେ ତ୍ୱିଦମେବକର୍ମ
କାର୍ଯ୍ୟଂ ହି ଶଙ୍କୌ ସୁଲଘୁପ୍ରୟାସାତ୍ ।୪୫।

ସ୍ଫୁଟ ଅମାନ୍ତକାଳ ଆଣି ସେହି କାଳର ସ୍ଫୁଟ ରବିରୁ ପୂର୍ବଶାନ୍ତରେ ଶଙ୍କୁ ଓ ଦୃଗ୍‌ଜ୍ୟା ଆଣ । ଚନ୍ଦ୍ର ପରମ ଲମ୍ବନ ଆଣି ତାକୁ ଶଂକୁରୁ ବାଦ ଦିଅ । ଅବଶେଷର ବର୍ଗରେ ଦୃଗ୍‌ଜ୍ୟା ବର୍ଗ ଯୋଗକରି ତାହାର ମୂଳ ନିଅ । ତାହା ତମର କର୍ଣ୍ଣ ହେବ । ପୂର୍ବକଥିତ ସ୍ଫୁଟଚନ୍ଦ୍ର ବିମ୍ବକୁ ତ୍ରିଜ୍ୟାରେ ଗୁଣି ତମ କର୍ଣ୍ଣରେ ଭାଗ ଦେଲେ ସୂର୍ଯ୍ୟଗ୍ରହଣରେ ତମୋମାନ ବା ଗ୍ରାହକମାନ ହେବ ।

ସ୍ଫୁଟଚନ୍ଦ୍ର ବିମ୍ବମାନର ୬୦ ରେ ସ୍ଫୁଟ ପର୍ବକାଳର ଶଙ୍କୁକୁ ଗୁଣି ତ୍ରିଜ୍ୟାରେ ହର । ଲବ୍ଧି ସ୍ଫୁଟଚନ୍ଦ୍ର ବିମ୍ବମାନରେ ଯୋଗକଲେ ମଧ୍ୟ ତମୋମାନ ହେବ ।

ସ୍ଫୁଟ ପର୍ବ କାଳରେ ଦିନର ଉନ୍ନତ ଘଟିକାକୁ ୨ରେ ଗୁଣି ସମସ୍ତ ବିକଳାକୁ ସ୍ଫୁଟ-ଚନ୍ଦ୍ର ବିମ୍ବମାନରେ ଯୋଗ କଲେ ମଧ୍ୟ ତମୋମାନ ହେବ ।

ଶଂକୁ ପ୍ରଭୃତିକୁ ନେଇ ବହୁ ଆୟାସରେ ତମୋ ବିମ୍ବ ଆଦି ଆଣିବା ଅସୁବିଧାଜନକ ହେତୁ ଉପଯୁକ୍ତ ରୀତିରେ ଏ ସବୁ କରାଯିବା ଉଚିତ ।

ଆଦ୍ୟେନ୍ଦୁଭୁକ୍ତେରଥ ଷଷ୍ଟିଭାଗଃ
ଶଙ୍କ୍ୱାହତୋ ବ୍ୟାସଦଳେନ ଭକ୍ତ ।
ଫଳେନ ଚନ୍ଦ୍ରାନ୍ତ୍ୟ-ଗତଃ ସମେତା-
ର୍କଭୁକ୍ତହୀନା ଗ୍ରହକାଳହାରଃ ।୪୬।

ଯଦ୍ୱାଷ୍ଟମାଂ-ଶୋନଦ-ନୋନ୍ନତାକ୍ଷ
ନାଡ଼ୀସମାଭିଃ କଳକାଭିରାଢ଼୍ୟା ।
ଅନ୍ତ୍ୟେନ୍ଦୁ-ଭୁକ୍ତୀରବିଭୁକ୍ତହୀନା
ହୃତର୍ମତା ସ୍ପର୍ଶବିମୋକ୍ଷ କାଳେ ।୪୭।

କୁର୍ଯ୍ୟେଦ୍ୟମିନ୍ଦୁ ଗ୍ରହଣେନ ତୁଲ୍ୟା
ଯଦେକକକ୍ଷାସ୍ଥ କୁଭେନ୍ଦୁମାନାତ୍ ।
ଗ୍ରାହ୍ୟୋନଭିନ୍ନୋଽନ ତୁ ଭିନ୍ନକକ୍ଷା
ସ୍ଥିତେରବୀନ୍ଦ୍ୱୋ ଶ୍ରୁଦନସ୍ୟ ଭେଦଃ ।୪୮।

ପ୍ରଥମ ପ୍ରକାରରେ ସ୍ଫୁଟଚନ୍ଦ୍ର ଗତିର ୬୦ କୁ ସ୍ଫୁଟ ପର୍ବକାଳର ରବିଶଙ୍କୁରେ ଗୁଣି ତ୍ରିଜ୍ୟାରେ ହରିଲେ ଯାହା ଲବ୍ଧି ହେବ ସେଥିରେ ସ୍ଫୁଟ ଚନ୍ଦ୍ରର ଅନ୍ତ୍ୟଗତି ଯୋଗ କରିବ । ଯୋଗ ଫଳରୁ ସୂର୍ଯ୍ୟଗତି ବାଦ ନେଲେ ଅବଶେଷ ଗ୍ରହଣ କାଳର ହର ହୁଏ ।

ଦିନର ଉନ୍ନତ କାଳରୁ (ଘଟ୍ୟାଦି) ତାହାର ½ କମାଇ ଦେଲ ଶେଷ କଳାରେ ଚନ୍ଦ୍ରର ଆନ୍ତ୍ୟଗତି ଯୋଗ କଲେ ଯାହା ହେବ ସେଥିରୁ ରବିର ସ୍ଫୁଟଗତି ବିୟୋଗ କଲେ ତାହା ସ୍ପର୍ଶ ଓ ମୋକ୍ଷରେ ହାର ହେବ । ଚନ୍ଦ୍ରଗ୍ରହଣରେ ପୃଥିବୀର ଛାୟା ଓ ଚନ୍ଦ୍ରବିମ୍ବ ଏକ କକ୍ଷାରେ ଥିବାରୁ ଗ୍ରାସମାନ ସ୍ଥାନ ଭେଦରେ ଭିନ୍ନ ହୁଏ ନାହିଁ । ତେଣୁ ଚନ୍ଦ୍ରଗ୍ରହଣରେ ଏ ସବୁ କାମ କରିବାକୁ କୁହାଯାଇ ନାହିଁ । ସୂର୍ଯ୍ୟ ଗ୍ରହଣରେ ଛାଦ୍ୟ ସୂର୍ଯ୍ୟ ଓ ଛାଦକ ଚନ୍ଦ୍ର ଭିନ୍ନ ଭିନ୍ନ କକ୍ଷାରେ ଥିବାରୁ ସ୍ଥାନ ଭେଦରେ ଗ୍ରାସ ଭେଦ ହୋଇଥାଏ । ତେଣୁ ଏ ସବୁ କରିବା ଦରକାର ହେବାରୁ କୁହାଗଲା ।

ତସ୍ମାତ୍ ପୁରଃ ପଶ୍ଚିମ ଯାମ୍ୟସୌମ୍ୟ
ପରସ୍ପରାନ୍ତାନ୍ତରଦେଶକେଷୁ ।
ଅତ୍ୟଲ୍ପ ସର୍ବଗ୍ରହକଙ୍କଣାଭ
ଗ୍ରାସାଃ ପୃଥକ୍ ସ୍ପଷ୍ଟତୟୈବ ସାଧ୍ୟାଃ ।୪୯।

ସୂର୍ଯ୍ୟ ଗ୍ରହଣରେ ଛାଦ୍ୟ ଓ ଛାଦକର ଭିନ୍ନ କକ୍ଷା ହେତୁ ଦେଶ ବିଶେଷରେ ଗ୍ରାସଭେଦ ହୋଇଥାଏ । ପୂର୍ବ ପଶ୍ଚିମ ଓ ଦକ୍ଷିଣ ଉତ୍ତର ଦେଶାନ୍ତର ଯେଉଁ ଦେଶମାନଙ୍କର ଅତ୍ୟନ୍ତ କମ୍ ହୁଏ ସେଠାରେ ସ୍ୱଳ୍ପ ଗ୍ରାସ, ସର୍ବଗ୍ରାସ ଓ ବଳୟାକାର ଗ୍ରାସ ମଧ୍ୟ ସ୍ପଷ୍ଟ ଗଣିତରେ ସାଧନ କରାଯିବା ଉଚିତ ।

ସ୍ଫୁଟେଷୁ ମାନୈକ୍ୟଦଳସ୍ୱକାଳ-
ହାରୈ ହିମାଂଶୁ ଗ୍ରହଣ କ୍ରମେଣ ।
ସ୍ଥିତ୍ୟର୍ଦ୍ଧ ମର୍ଦ୍ଦାର୍ଦ୍ଧ ଘଟୀପଲାନି
ସକୃତ୍ ସମାନୀୟ ତଦୂନୟୁକ୍ତାତ୍ ।୫୦।

ସ୍ପର୍ଶାଦିକାଳାନ୍ ସମପର୍ବକାଳାତ୍
ସଂସ୍ଥାପ୍ୟତତ୍ତଦ୍ ସମୟୋତ୍ଥ ଲଗ୍ନୈଃ ।
ତ୍ରିଭୋନଲଗ୍ନାତ୍ ପରପୂର୍ବଦିକ୍ସ୍ଥଂ
ନତଂ ସମାଲୋଚ୍ୟ ଗତକ୍ରମେଣ ।୫୧।

ସଂସାଧ୍ୟ ତତ୍ତଦ୍ଧରଜାନି ତୈସ୍ତୈଃ
ସଂସ୍କୃତ୍ୟ ତାଂସ୍ତାନଥ ତାନ୍ନିଧାୟ ।
ତତ୍କାଳ ଦୃକ୍କ୍ଷେପ ନତୀଷୁ ସିଦ୍ଧୈଃ
ସ୍ଥିତ୍ୟର୍ଦ୍ଧ କାଳୈଃ ସମପର୍ବ କାଳାତ୍ ।୫୨।

ସରଷ୍ଫୁଟା ଉଦ୍ଧରଚ୍ଚୈଃ ପୁନସ୍ତାନ୍
ସ୍ପର୍ଶାଦିକାନତ୍ୟ-ସକୃତ୍ କ୍ରିୟାଭିଃ ।
ସ୍ଥିରଂ ଭବେଦ୍ ସ୍ପର୍ଶ ବିମୋକ୍ଷମର୍ଦ୍ଧ
ନିମୀଳନୋନ୍ମୀଳନକାଳଜାଲମ୍ ।୫୩।

ତତ୍ ସ୍ପଷ୍ଟପର୍ବାନ୍ତରନାଡ଼ିକାଦ୍ୟଂ
ସ୍ଥିତ୍ୟର୍ଦ୍ଧମର୍ଦ୍ଧାର୍ଦ୍ଧ ଯୁଗଂ ସ୍ଫୁଟଂସ୍ୟାତ୍ ।
ସକୃତ୍ କୃତସ୍ପର୍ଶ ବିମୋକ୍ଷକେଷ୍ୱୋ
ର୍ମଧ୍ୟେଷୁତଃ କାଳକମନ୍ତରଂ ଯତ୍ ।୫୪।

ପ୍ରଥମେ ସମପର୍ବ କାଳିକ ସ୍ଫୁଟଶର, ମାନୈକ୍ୟାର୍ଦ୍ଧ ଓ ଗ୍ରହ କାଳହାରଦ୍ୱାରା ଚନ୍ଦ୍ର ଗ୍ରହଣରେ କୁହାଯାଇଥିବା ସୂତ୍ରରେ ସ୍ପର୍ଶ ଓ ମୋକ୍ଷ, ସ୍ଥିତ୍ୟର୍ଦ୍ଧ ତଥା ମର୍ଦ୍ଧାର୍ଦ୍ଧର ଘଟୀକାଳ ଆଣିବ । (ଖରକାଆଡଙ୍ଗରେ) ଏହି ସ୍ପର୍ଶ ମୋକ୍ଷ ସ୍ଥିତ୍ୟର୍ଦ୍ଧ ଓ ମର୍ଦ୍ଧାର୍ଦ୍ଧ ଘଟୀପଳାଦି ସମପର୍ବ କାଳରୁ ବାଦ୍ ଦେଲେ ଯଥାକ୍ରମେ ସମ୍ମୀଳନ ଓ ଉନ୍ମୀଳନ ସମୟ ହେବ ।

ଏହାପରେ ତାତ୍କାଳିକ ଓ ବିତ୍ରିଭ ଲଗ୍ନ ସାଧନ କରି ବିତ୍ରିଭ ଲଗ୍ନରୁ ରବିର ପୂର୍ବ ଓ ପଶ୍ଚିମ ନତ ବାହାର କର । ଏଥିରୁ ପୂର୍ବସୂତ୍ରରେ ତାତ୍କାଳିକ ସ୍ଫୁଟ ଲମ୍ବନ ଆଣ । ସେହି ସେହି ସ୍ଫୁଟ ଲମ୍ବନ କାଳରେ ସ୍ପର୍ଶମୋକ୍ଷାଦି କାଳର ସଂସ୍କାରକର । ସ୍ଫୁଟଲମ୍ବନ ସଂସ୍କୃତ ସ୍ପର୍ଶାଦିକାଳରେ ତତ୍କାଳ ସ୍ଫୁଟଶର ସିଦ୍ଧସ୍ଥିତ୍ୟର୍ଦ୍ଧ ସମୟଦ୍ୱାରା ସମପର୍ବ କାଳର ସଂଶୋଧନ କରିନେବ । ଏଥିରୁ ପୁଣି ଲମ୍ବନ ଆଣି ସ୍ପର୍ଶ ଆଦି ସମୟକୁ ସଂସ୍କାର କରିବ । ଏହିପରି ବାରମ୍ବାର କାମ କରିବାକୁ ହେବ ଯେପରି ପରପରବର୍ତ୍ତୀ ଦୁଇସ୍ପର୍ଶ ବା ମୋକ୍ଷାଦି ସମୟରେ କୌଣସି ତଫାତ୍ ଆସିବ ନାହିଁ । ଏପରି ଭାବରେ ସ୍ପର୍ଶ, ମୋକ୍ଷ, ସମ୍ମୀଳନ ଓ ଉନ୍ମୀଳନ ସମୟ ସ୍ପଷ୍ଟ ହୋଇପାରିବ । ଏହି ସ୍ପର୍ଶାଦିକାଳ ସ୍ଫୁଟପର୍ବକାଳର ଅନ୍ତରରେ ସ୍ଥିତ୍ୟର୍ଦ୍ଧ ଦ୍ୱୟ ଓ ମର୍ଦ୍ଧାର୍ଦ୍ଧ ଦ୍ୱୟର ନାଡ଼ିକାଦି ସ୍ପଷ୍ଟ ହୋଇଯିବ ।

ତସ୍ୟାନୁପାତାତ୍ ଶରସିଦ୍ଧିରସ୍ୟାଃ
ସ୍ଥିତ୍ୟର୍ଦ୍ଧକେ ବାପ୍ୟସକୃତ୍ ବିଧେୟେ ।
ଆଦ୍ୟଦ୍ୱିତୀୟସ୍ଥିତଖଣ୍ଡସିଦ୍ଧ
ପର୍ବୋଦ୍ଭବଲ୍ଲମ୍ବନ-କାନ୍ତରସ୍ୟ ।୫୫।

ତଥାନୁପାତାତ୍ସମୟାନ୍ତରେଣ୍ଥାତ୍
ଭବେତ୍ତୃତୀୟାଦିକ ଲମ୍ବନାପ୍ତିଃ ।
କମ୍ବାଦ୍ୟସଂସ୍କାରଜବାଲ୍ପଭୂର
ସ୍ଥିତ୍ୟର୍ଦ୍ଧୟୋର୍ମର୍ଦ୍ଧତ ଏବ ଯତ୍ନ୍ୟାତ୍ ।୫୬।

ଅଥବା ସକୃତ୍ ପ୍ରକାରରେ (ଥରେ) ସ୍ପର୍ଶ ଓ ମୋକ୍ଷ କାଳର ସ୍ଫୁଟ ଶର ଆଣି ଏ ଦୁଇଟିର ମଧ୍ୟଶର ସହିତ ଅନ୍ତର ସ୍ଥିର କର । ଏହାର ଅନୁପାତରେ ସ୍ପର୍ଶ ଓ ମୋକ୍ଷ କାଳର ଶର ସିଦ୍ଧ ହୁଏ । ଏହି ଶରରୁ ଥରକଆ ସ୍ୱଭରେ (ସକୃତ୍)ସ୍ଥିତ୍ୟର୍ଦ୍ଧ ସାଧନକରିବାକୁ ହେବ । ସେଥିରୁ ସ୍ପର୍ଶ, ମୋକ୍ଷକାଳ ଓ ତାତ୍କାଳିକ ସ୍ଫୁଟଶର ସାଧନ କରିବ । ସ୍ପାର୍ଶିକ ଓ ମଧ୍ୟଗ୍ରହକାଳିକ ସ୍ଫୁଟ ଶରାନ୍ତର ତଥା ମୌକ୍ଷିକ ଓ ମଧ୍ୟଗ୍ରହ କାଳିକ ସ୍ଫୁଟଶରାନ୍ତର ପୁଣି ତାତ୍କାଳିକ ସ୍ଫୁଟ-ଶରରେ ଯେଉଁ ସ୍ଥିତ୍ୟର୍ଦ୍ଧ ଅଣାଯାଇଛି, ତଦ୍ୱାରା ଅନୁପାତ କରିବାକୁ ହେବ । ଯଦି ସ୍ଫୁଟ ପର୍ବକାଳ ଜନିତ ସ୍ଥିତ୍ୟର୍ଦ୍ଧରେ ସ୍ପର୍ଶ ଓ ମଧ୍ୟକାଳିକ ଶରାନ୍ତର ହୁଏ, ତାହାହେଲେ ତାତ୍-କାଳିକ ଶରଜନିତ ସ୍ଥିତ୍ୟର୍ଦ୍ଧରେ କଣ ? ଫଳ ହେବ ଶରାନ୍ତର । ତାତ୍କାଳିକ ଶର ଶ୍ରେଷ୍ଠ ହୋଇଥିଲେ ଏହାକୁ ଅନ୍ତର ଏବଂ ବଡ଼ ହୋଇଥିଲେ ଏହାକୁ ଯୋଗ କରିବାକୁ ହେବ । ପୁଣି ଏହି ଶରରୁ ସ୍ଥିତ୍ୟର୍ଦ୍ଧ ଆଣିବ—ଏପରି ଭାବରେ ବାରମ୍ବାର କରିବା ଶେଷରେ ଲମ୍ବନ ସ୍ଫୁଟ ହୋଇଯିବ । ପର ପରବର୍ତ୍ତୀ ଲମ୍ବନ ମଧ୍ୟରେ ଆଉ କୌଣସି ତଫାତ୍ ରହିବ ନାହିଁ ।

**ପଲାନ୍ତରଂ ବର୍ଗିତ ମେତଦାପ୍ତଂ**
**ମଧ୍ୟସ୍ଥିତା ଦ୍ଧୋଦ୍ଧୃତପଲୈଃ ଫଲେନ ।**
**ଯୁକ୍ତଂ ସ୍ଫୁଟଂସ୍ୟାଦ୍ଦ୍ୱିଦ ଦଣ୍ଡତୋଽଲ୍ପଂ**
**ସ୍ଥିତ୍ୟର୍ଦ୍ଧମନ୍ୟାଂଶ ଫଲାଢ଼୍ୟମେବ ।୫୭।**

ପ୍ରଥମ **ଲମ୍ବନ ସଂସ୍କାର** କରିବା ପରେ ସ୍ପାର୍ଶିକ ଓ ମୌକ୍ଷିକ ସ୍ଥିତ୍ୟର୍ଦ୍ଧ ଓ ପ୍ରଥମ ମଧ୍ୟ-ସ୍ଥିତ୍ୟର୍ଦ୍ଧରେ ଯେଉଁ ପଲାଦି ଅନ୍ତର ତାହାର ବର୍ଗକୁ ମଧ୍ୟ ସ୍ଥିତ୍ୟର୍ଦ୍ଧ ପଲରେ ଭାଗ ଦେଲେ ଯେଉଁ ଲବ୍ଧି ହେବ ତାହାକୁ ସ୍ପାର୍ଶିକ ଓ ମୌକ୍ଷିକ ସ୍ଥିତ୍ୟର୍ଦ୍ଧରେ ଯୋଗକଲେ ତାହା ସ୍ଫୁଟ ହୁଏ ।

ସ୍ଥିତ୍ୟର୍ଦ୍ଧ ଏକ ଦଣ୍ଡରୁ କମ ହେଲେ ଏହି କାର୍ଯ୍ୟ କରାଯିବା ଅନ୍ୟଥା ନୁହେଁ । ଭାଗ-ଫଳକୁ ପୁଣି ସର୍ବଦା ଯୋଗହିଁ କରିବାକୁ ହେବ । ଏହି ସ୍ଥିତ୍ୟର୍ଦ୍ଧରୁ ପୁଣି ଥରେ ଲମ୍ବନ କରି ଏହି ସ୍ଥିତ୍ୟର୍ଦ୍ଧ ଉତ୍ପନ୍ନ ସ୍ପର୍ଶ ଓ ମୋକ୍ଷକାଳରେ ସଂସ୍କାର କରିବାକୁ ହେବ । ଏଥିରେ ସ୍ପର୍ଶ ଓ ମୋକ୍ଷକାଳ ସ୍ଫୁଟ ହୁଏ ।

**ସାଧ୍ୟଂ ତତୋ ଲମ୍ବନ ମେକବାରଂ**
**ତେନାଧ୍ୟ-ମେନସ୍ଥିତ ଖଣ୍ଡକେନ**
**ଊନେଯୁତେ ଲମ୍ବନ ଭାଜି ଦର୍ଶେ**
**ମାନୈକ୍ୟ ଖଣ୍ଡା ଦଧିକଃ ଶରଃସ୍ୟାତ୍ ।୫୮।**

ସମୋଽପି ବାତେନ ତଦାତ୍ମବାଣ-
ମଧ୍ୟଗ୍ରହେଷ୍ୱନ୍ତରଲପ୍ତିକାଭିଃ ।
ମଧ୍ୟଗ୍ରହଗ୍ରାସକଲାଘ୍ନମଧ୍ୟ-
ସ୍ଥିତ୍ୟର୍ଦ୍ଧକାଳସ୍ୟ ଦଳଂ ବିଭକ୍ତମ୍ ।୬୯।

ଫଳଂ ସକୃତ୍ କର୍ମତ ଏବ ସିଦ୍ଧଂ
ସ୍ଥିତ୍ୟର୍ଦ୍ଧକଂ ମୌକ୍ଷିକମାଦମଂ ବା ।
ତତ୍ ସଂସ୍କୃତାତ୍ ପର୍ବଣ ଏକମେବ
ସ୍ୟାଲ୍ଲମ୍ବନଂ ସ୍ପଷ୍ଟମତଃ ଶରଶ୍ଚ ।୭୦।

ଲମ୍ବନ ସଂସ୍କୃତ ଦର୍ଶାନ୍ତରୁ ମଧ୍ୟମ ସ୍ଥିତ୍ୟର୍ଦ୍ଧ ଅନ୍ତର ବା ସେଥିରେ ମଧ୍ୟମସ୍ଥିତ୍ୟର୍ଦ୍ଧ ଯୋଗକଲେ ଯେଉଁ ସ୍ପର୍ଶ ଓ ମୋକ୍ଷକାଳ ହୁଏ, ତେତେବେଳେ ସ୍ଫୁଟଶର ଯଦି ମାନୈକ୍ୟାର୍ଦ୍ଧ ସମାନ ହୁଏ, ତାହାହେଲେ ମଧ୍ୟସ୍ଥିତ୍ୟର୍ଦ୍ଧକୁ ଗ୍ରାସ କଳାରେ ଗୁଣି ତାହାର ଅଧା ନିଅ । ତାକୁ ତତ୍କାଳଶର ଓ ସ୍ଫୁଟ ପର୍ବକାଳକଶରର ଅନ୍ତର କଳାରେ ହରଦେଲେ ଯଥାକ୍ରମେ ଥରକଆ (ସକୃତ୍) ସ୍ପର୍ଶ ଓ ମୋକ୍ଷ ସ୍ଥିତ୍ୟର୍ଦ୍ଧ ହେବ । ଏହି ଦୁଇ ସ୍ଥିତ୍ୟର୍ଦ୍ଧ ସଂସ୍କୃତ ସ୍ଫୁଟ ପର୍ବକାଳରୁ ଥରକରେ ମାତ୍ର ସ୍ପଷ୍ଟ ଲମ୍ବନ ହୋଇଥାଏ । ଏହି ଲମ୍ବନ ସଂସ୍କୃତ ସ୍ପର୍ଶ ଓ ମୋକ୍ଷ କାଳରୁ ସ୍ଫୁଟଶର ସାଧିତ ହେବ । ଏ ପ୍ରକାରରେ ବାରମ୍ବାର ଲମ୍ବନ ସାଧନର ଆବଶ୍ୟକତା ନାହିଁ ।

ତମୋଽଧିକଂ ଚେଚ୍ଛଦନଂ ପ୍ରମାଣଂ
ଗ୍ରାସସ୍ତଦା ସ୍ୟାଦ୍ୱଳୟାଭିଧାନଃ ।
ତସ୍ମିଂସ୍ତମୋମାନବିହୀନମାନ
ଯୋଗାର୍ଦ୍ଧବର୍ଗାତ୍ ଶରବର୍ଗହୀନାତ୍ ।୭୧।

ମୂଳଂ ପୁରେବ-ଦ୍ଗୁଣହାରହେତୋଃ
ଫଳାତ୍ମକଃ ସ୍ୟାତ୍ ବଳୟାର୍ଦ୍ଧକାଳଃ ।
ତଦୂନଯୁକ୍ତାତ୍ ସମପର୍ବଣସ୍ତ-
ଦାରମ୍ଭନାଶାବପି ଲମ୍ବନାଭ୍ୟାମ୍ ।୭୨।

ସୂର୍ଯ୍ୟଗ୍ରହଣରେ ବମ୍ବର ପରମାଣ, ଛମନ୍ତ୍ର (ଗ୍ରାହକ ବମ୍ବରୁ) ଅଧିକ ହେଲେ ବଳଯୃ-ଗ୍ରାସ ହେବ । ଏଡକିବେଳେ ଗ୍ରାହ୍ୟ ଓଂ ଗ୍ରାହକମାନୈକ୍ୟାର୍ଦ୍ଧରୁ ଗ୍ରାହକମାନ ବାଦ ଦେଇ ଅବଶେଷର ବର୍ଗ କରିବେ । ସେଥିରୁ ସ୍ପଷ୍ଟଶର ବର୍ଗକୁ ଅନ୍ତରକରି ତାହାର ମୂଳ ନେବେ । ଏଥିରୁ ଚନ୍ଦ୍ର ଗ୍ରହଣୋକ୍ତ ରୀତିରେ (ଗୁଣ ଓ ହାର ପ୍ରୟୋଗ କରି) ଏହି ବଳଯୃ ଗ୍ରାସର ପଳାଦି ସ୍ଥିତ୍ୟର୍ଦ୍ଧ କାଳ ଆଣିବେ । ଏହି ସ୍ଥିତ୍ୟର୍ଦ୍ଧ କାଳକୁ ସମପର୍ବକାଳରେ ଯୋଗ ବା ସେଥିରୁ ଅନ୍ତର କରି ସେହି ସେହି କାଳର ଲମ୍ବନ ଆଣି ପୁଣି ଉକ୍ତ ସ୍ଥିତ୍ୟର୍ଦ୍ଧରେ ସଂସ୍କାର କଲେ ବଳଯୃ ଗ୍ରାସର ଆରମ୍ଭ ଓ ଶେଷ କାଳ ଆସିବ ।

କୃଚଦ୍ଗ୍ରହେ ଦଣ୍ଡପଳ ପ୍ରଭେଦ-
ମାଲୋକ୍ୟ ଯଜିଷ୍ଣୁ ସୁତୋଜଗାଦ ।
ତଥ୍ୟନ୍ତ ନାଡ଼ୀନତ-ବାହୁମୌର୍ବେ-
ତ୍ୟାଦ୍ୟଂ ସ୍ୱସିଦ୍ଧାନ୍ତ ଉଦାଜହାର ।୭୩।

ଯଦ୍ଭସ୍କର ସ୍ପନ୍ନତସିଦ୍ଧ ପର୍ବ
ନ ସର୍ବଦା ଦୃକ୍ସମତାଂ ଯଦେତ ।
ତତୋଽଧିକଂ କଞ୍ଚିଦହଂ ବଶେଷଂ
ବ୍ରୁବେଦ୍ଗୁରୁହେମିହର ଗ୍ରହେଽପି ।୭୪।

କଷ୍ଟାଦ୍ୟ ସୂର୍ଯ୍ୟଗ୍ରହମୁକ୍ତରୀତ୍ୟା
ସ୍ପର୍ଶାନ୍ତମଧ୍ୟସ୍ଫୁଟସାୟକା ଯେ ।
ତେ ସ୍ୱସ୍ୱଲଗ୍ନାପମ ଶିଞ୍ଜିନୀଘ୍ନା-
ସ୍ତ୍ରିଜ୍ୟୋଦ୍ଧୃତା ଯଷ୍ଟ୍ୟଯ୍ ଏବଲବ୍ଧାଃ ।୭୫।

ପରୀକୃତା ସ୍ପଦ୍ଗ୍ରହକାଳହୃତ୍ୟା
ଭକ୍ତାଃ ପଳୈରେବଫଳୈ ର୍ଯୁତୋନଃ ।
ଲଗ୍ନାପମେଷ୍ୱୋଃ ପୃଥଗେକଦକ୍ତ୍ୱେ
କ୍ରମାତ୍ତ୍ରିଧୋକ୍ତଃ ସମପର୍ବକାଳଃ ।୭୬।

କ୍ରମାଲ୍ଲକଶ୍ଚେଦ୍ ସପୁନଃ ପଳୈସ୍ତୈଃ
ସ୍ୱଲମ୍ବନ ଜ୍ୟା ଗୁଣିତୈଃ ପରାପ୍ତୈଃ
ଯୁତୋନତୋ ବଶଭ ଲଗ୍ନପଶ୍ଚାତ୍
ପୂର୍ବସ୍ଥିତେଽର୍କେ ନ ଭୁବର୍ଦ୍ଧମାନଃ ।୭୭।

ସ୍ପର୍ଶାଦକେ ସଂସ୍କୃତପର୍ବନାମ୍ନା
ସ୍ଥାପେଽଥ ମଧ୍ୟେ ନିଜଲମ୍ବନେନ ।
ସୁସଂସ୍କୃତଃ ସ୍ୟାଦ୍‌ଗ୍ରହମଧ୍ୟକାଲ-
ସ୍ତାତ୍‌କାଳିକସ୍ପଷ୍ଟଦଗାଶୁଗସ୍ୟ ।୭୮।

ବର୍ଗୋତ୍‌ପଦଂ ମଧ୍ୟମଯଷ୍ଟିବର୍ଗ-
ଯୁକ୍ତାତ୍ ସ୍ୱମଧ୍ୟସ୍ଫୁଟଦକ୍‌ଶରଃ ସ୍ୟାତ୍ ।
ସ୍ଥିତ୍ୟର୍ଦ୍ଧ ମାନୀୟ ତତଃ ସ୍ୱଲଗ୍ନ
ଦ୍ୟୁଜ୍ୟାହତଂ ବ୍ୟାସଦଳୋଦ୍ଧୃତଂ ତତ୍ ।୭୯।

ସ୍ପର୍ଶାନ୍ତବାଣଦ୍ୱିତୀୟୈକଦକ୍ତ୍ରେ
ତଦ୍ଧୀନଯୁକ୍‌ସଂସ୍କୃତ ପର୍ବ ଯୁଗ୍ମମ୍ ।
ସ୍ପର୍ଶାନ୍ତଜଂ କାର୍ଯ୍ୟ ମଥାନ୍ୟ ଦକ୍ତ୍ରେ
ସ୍ଥିତ୍ୟର୍ଦ୍ଧ ଯୋଗାର୍ଦ୍ଧ ବିଯୁକ୍ ଯୁତଂ ତତ୍ ।୭୦।

ପର୍ବଦ୍ୱୟଂଲମ୍ବନସଂସ୍କୃତଂ ଚେତ୍
ସ୍ପର୍ଶେ ବିମୋକ୍ଷେ ସମୟଃ ସ୍ଫୁଟଃ ସ୍ୟାତ୍ ।
ସ୍ଥିତ୍ୟର୍ଦ୍ଧକେନ୍ଦ୍ରୁ ଗ୍ରହଣାର୍ଦ୍ଧ ଲଗ୍ନ
ଦ୍ୟୁଜ୍ୟାହତେ ତ୍ରିଜ୍ୟାକୟା ବିଭକ୍ତେ ।୭୧।

ଗ୍ରହଣରେ ଦଣ୍ଡ ଓ ପଳ (ସମୟ) ଭେଦ ଆସୁଥିବା ଦେଖି ବିଷ୍ଣୁଙ୍କ ପୁତ୍ର ଓ ତାଙ୍କର ଶିଷ୍ୟ (ମତାନୁଯାୟୀ) ଭାସ୍କରଗୃହ ନିଜ ନିଜ ସିଦ୍ଧାନ୍ତରେ ତାର ସଂସ୍କାର କରି ବାସ୍ତବ ସମୟ ଆଣିବା ନିମନ୍ତେ ଉପାୟମାନ ଦେଖାଇ ଅଛନ୍ତି । ଏ ଦୁହିଁଙ୍କ ଦ୍ୱାରା କରାଯାଇ ଥିବା ସିଦ୍ଧାନ୍ତ ଅନୁସାରେ ମଧ୍ୟ ବାସ୍ତବ (ଠିକ) ସମୟ ପାଇବାରେ ବାଧା ଆସୁଛି । ସ୍ଫୁଟ ପର୍ବାନ୍ତ ସମୟ ଆହୁରି ଠିକ୍ ଆସୁ ନାହିଁ । ତେଣୁ ମୁଁ ଏହି ଦୁଃସାଧ୍ୟ ସୂର୍ଯ୍ୟ ଗ୍ରହଣ ସମ୍ବନ୍ଧେ କେତେକ ବିଶେଷ କଥା କହିବି ।

ପୂର୍ବୋକ୍ତରୀତିରେ ସୂର୍ଯ୍ୟ ଗ୍ରହଣ ସାଧନ କରି ସ୍ପର୍ଶ ମଧ୍ୟ ଓ ମୋକ୍ଷ କାଳର ସ୍ଫୁଟଶରକୁ ସେହି ସେହି ସମୟର ଲଗ୍ନ କ୍ରାନ୍ତିଜ୍ୟାରେ ଅଲଗା ଅଲଗା ଗୁଣି ତ୍ରିଜ୍ୟାରେ ଭାଗ ଦେଲେ ସେହି ସେହି ସମୟର ଯଷ୍ଟି ହେବ । ଏହି ତିନି ଯଷ୍ଟିର ଫଳକୁ ସ୍ପର୍ଶାଦ ଗ୍ରହକାଳ ଦ୍ୱାରରେ ହରି ଫଳାଦ ଫଳ ଆଣିବ । ଏହାକୁ ଲଗ୍ନ, କ୍ରାନ୍ତି ଓ ସ୍ଫୁଟଶରର ଦିଗ ଭିନ୍ନ ହେଲେ ସ୍ପର୍ଶାଦ

କାଳରେ ଯୋଗ ଅନ୍ୟଥା ବିଯୋଗ କଲେ ବାସ୍ତବ ସ୍ପର୍ଶ ମଧ୍ୟ ଓ ମୋକ୍ଷ କାଳ ଆସିଯିବ । ଏହି ସମୟ ପୂର୍ବ ସମୟ ଅପେକ୍ଷା ବେଶି ହେଲେ ତାହାହିଁ ବାସ୍ତବସମୟ । ମାତ୍ର କମ୍ ହେଲେ ତାଙ୍କୁ ନିଜ ନିଜ ଲମ୍ବଜ୍ୟାରେ ଗୁଣି ପୂର୍ବୋକ୍ତ ପରରେ ହରି ପଳାଦି ଫଳ ଆଣିବ । ଯେତେବେଳେ ସୂର୍ଯ୍ୟ ତ୍ରିଭ ଲଗ୍ନରୁ ପଶ୍ଚିମରେ ଥିଲେ ଏହି ଫଳକୁ ସ୍ପର୍ଶାଦି କାଳରେ ମିଶାଇବ ଅନ୍ୟଥା ବିଯୁକ୍ତ କରିବ । ଏହିପରି ଭାବରେ ବାସ୍ତବ, ସ୍ପର୍ଶ ମଧ୍ୟ ଓ ମୋକ୍ଷକାଳ ଆସିବ । ମଧ୍ୟକାଳକୁ ପୁଣି ସ୍ପଷ୍ଟ ଲମ୍ବନ ସଂସ୍କୃତ କଲେ ଗ୍ରହଣର ସ୍ପଷ୍ଟ ମଧ୍ୟକାଳ ହେବ ।

ଏହାପରେ ମଧ୍ୟକାଳକ ସ୍ପଷ୍ଟଶର ବର୍ଗରେ ମଧ୍ୟ ସ୍ଥିତି ବର୍ଗ ମିଶାଇ ତାହାର ବର୍ଗମୂଳ ନେଲେ ସ୍ପଷ୍ଟ ମଧ୍ୟ କାଳର ତାହା ସ୍ପଷ୍ଟଶର ହେବ ।

ତାହାପରେ ପୂର୍ବଖଣ୍ଡରେ ସ୍ପର୍ଶ ମୋକ୍ଷ କାଳକ ଦୁଇଟି ସ୍ଥିତ୍ୟର୍ଦ୍ଧ ଆଣିବ । ଏ ଦୁଇଟିକୁ ଅଲଗା ଅଲଗା ସ୍ପଷ୍ଟ ମଧ୍ୟକାଳକ ଲଗ୍ନ ଦ୍ୟୁଜ୍ୟାରେ ଗୁଣି ତ୍ରିଜ୍ୟାରେ ହରିଲେ ଯେଉଁ ଦୁଇ ପ୍ରକାର ଫଳ ଆସିବ ସେଥିରୁ ପ୍ରଥମଟିକୁ ସ୍ପର୍ଶ ଓ ମୋକ୍ଷ ଶରର ଦିଗ ଏକ ହେଲେ ସ୍ପାର୍ଶିକ ସଂସ୍କୃତ ପର୍ବକାଳରୁ ଅନ୍ତର କରିବ । ୨ୟଟିକୁ ମୌକ୍ଷିକ ସଂସ୍କୃତ ପର୍ବ-କାଳରେ ଯୋଗ କରିବ । ଶର ଦ୍ୱୟର ଦିଗ ଭିନ୍ନ ହେଲେ କିନ୍ତୁ ସ୍ପାର୍ଶିକ ଓ ମୌକ୍ଷିକ ସ୍ଥିତ୍ୟର୍ଦ୍ଧର ଯୋଗାର୍ଦ୍ଧକୁ ସ୍ପାର୍ଶିକ ଓ ମୌକ୍ଷିକ ସଂସ୍କୃତ ପର୍ବକାଳରେ ଯଥାକ୍ରମେ ବିଯୋଗ ଓ ଯୋଗ କରିବ । ଏ ଦୁଇଟିକୁ ପୁଣି ନିଜ ନିଜ ଲମ୍ବନ ଦ୍ୱାରା ସଂସ୍କୃତ କଲେ ସ୍ପର୍ଶ ଓ ମୋକ୍ଷ-କାଳ ମଧ୍ୟ ବାସ୍ତବ ସ୍ପଷ୍ଟ ହୋଇଯିବେ । କିନ୍ତୁ ସ୍ଥିତ୍ୟର୍ଦ୍ଧକୁ ମଧ୍ୟ ଗ୍ରହକାଳର ଦ୍ୟୁଜ୍ୟାରେ ଗୁଣି ତ୍ରିଜ୍ୟାରେ ହରିବାକୁ ହେବ ।

ପର୍ବାନ୍ତଜଂ ଲମ୍ବନ ମର୍କତଃ ସ୍ୟାତ୍
ସ୍ଥିତ୍ୟର୍ଦ୍ଧଯୁଗ୍ମୋ ନ ଯୁତେତୁ ଦର୍ଶେ ।
ତାତ୍କାଳକେନ୍ଦୋର-ସକୃତ୍ ସକୃଦ୍ୱା
ତଲ୍ଲମ୍ବନେ ସ୍ପାର୍ଶିକମୌକ୍ଷିକେସ୍ତଃ ।୭୨।

ପର୍ବାନ୍ତକାଳର ଲମ୍ବନ ତାତ୍କାଳକ ରବିରୁ ଆଣିବାକୁ ହେବ । ସ୍ପର୍ଶ ଓ ମୋକ୍ଷକାଳରେ ତାତ୍କାଳକ ଚନ୍ଦ୍ରରୁ ସ୍ପାର୍ଶିକ ଓ ମୌକ୍ଷିକ ଲମ୍ବନଆଣିବା ଉଚିତ । ଏହା ଥରକଆ ବା ବାରମ୍ବାର ଖିତରେ ଅଣାଯାଇପାରେ ।

ଦୃଗ୍‌ଗୋଚରଂ ସଦ୍‌ଗ୍ରହଣଂ ଦ୍ୱୟଂ ତଦ୍
ଗ୍ରାହ୍ୟଂ ନ ଗ୍ୟୃଦୃଶ୍ୟମିଦଂ କ୍ରିୟାର୍ହମ୍ ।
ଅତୋ ଦିନେ ଚନ୍ଦ୍ରମସୋ ନିଶାୟାଂ
ରବେସ୍ତଦସ୍ତଂ ନ ହି ସମ୍ଭବେଽପି ।୭୩।

ଦିନେ ନିଶାୟାଂ ରବିଚନ୍ଦ୍ରୟୋର୍ଗ୍ରହ
ଦ୍ୱୟସ୍ୟଭୂଗେ ଯଦି ଦୃଶ୍ୟତେଽଲ୍ପକଃ ।
ତଦାବଧିସ୍ତାବଦଶେଷକାଳକେ
ନିଷେଧଉକ୍ତୋ ଗ୍ରହଣୋଚିତଂ ସ୍ମୃତୌ ।୭୪।

ଆଖିକୁ ଦେଖାଯିବା ସୂର୍ଯ୍ୟ ଓ ଚନ୍ଦ୍ରଗ୍ରହଣକୁ ହିଁ ଆଗରୁ କୁହାଯିବ । ଯେଉଁ ଗ୍ରହଣ ଦେଖାଯିବ ନାହିଁ ସେଥିରେ ସ୍ନାନଦାନାଦି ଅନୁଷ୍ଠାନ କରିବାକୁ ଆଦେଶ ଦେବନାହିଁ । ଏଥିରୁ ଜାଣିବାକୁ ହେବ ଯେ ରାତ୍ରିରେ ସୂର୍ଯ୍ୟଗ୍ରହଣ ଓ ଦିନରେ ଚନ୍ଦ୍ରଗ୍ରହଣ ( ଗଣିତ ଅନୁସାରେ ହେଉଥିଲେ ମଧ୍ଯ ) କଦାପି ଗ୍ରହଣୀୟ ନୁହେଁ ।

କିନ୍ତୁ ଦିନବେଳେ ଅଳ୍ପ ଦେଖାଯାଉଥିବା ସୂର୍ଯ୍ୟଗ୍ରହଣ ଓ ରାତ୍ରିବେଳେ ଅଳ୍ପ ଦେଖା-ଯାଉଥିବା ଚନ୍ଦ୍ରଗ୍ରହଣ ସମୟରେ ସ୍ନାନଦାନାଦି କରଣୀୟ ଓ ପାକାଦିକର୍ମ କରଣୀୟ-ନୁହେଁବୋଲି ମଧ୍ଯ ସ୍ମୃତ୍ୟାଦି ଶାସ୍ତ୍ରରେ କଥିତ ଅଛି ।

ଅଭୀଷ୍ଟକାଳାଦ୍ ଗ୍ରସନଂ ପିଧାନତୋ
ଯଥୈବ କାଳଃ କିଲତୋଽୟନାକ୍ଷଜେ ।
ଯଥୋଦିତେ ତଦ୍‌ବଳନେ ପୁରା ତଥା
ବିଧେୟମତ୍ରାଖିଳକର୍ମ ନିର୍ମଳମ୍ ।୭୫।

ଚନ୍ଦ୍ରଗ୍ରହଣରେ ଯେପରି ଇଷ୍ଟକାଳରେ ଗ୍ରାସମାନ ଓ ସେଥିରୁ ଇଷ୍ଟକାଳ ତଥା ଆକ୍ଷ ଓ ଆୟନ ବଳନ ଆଣିବାକୁ ହୋଇଥାଏ, ଏ ସୂର୍ଯ୍ୟଗ୍ରହଣରେ ମଧ୍ଯ ସେ ସବୁ କାମ ଅତି ନିର୍ମଳ ଭାବରେ କରିବାକୁ ହେବ ।

ଅନ୍ତ୍ୟାଶ୍ଚନ୍ଦ୍ରଗ୍ରହେ ସ୍ୟୁଃ ସମୟବିଘଟିକାଃ
ପୂର୍ଣ୍ଣଗୋଽର୍ଥାବମର୍ଦ୍ଦେ
ରାମାଦ୍ର୍ୟକ୍ଷୀଣି ସୂର୍ଯ୍ୟଗ୍ରହଣସମୟଜାଃ
ପକ୍ଷରାମାର୍ତ୍ତି ବୋଽନ୍ତ୍ୟାଃ ।
ଗ୍ରାସେ ସ୍ୟୁଃ କଙ୍କଣାଖ୍ୟେ ଦ୍ୱିରଦକଲଧୟ
ସ୍ତଦ୍‌ବିମର୍ଦ୍ଦେଽଗ୍ନି ପକ୍ଷା
ବୃଦ୍ଧୌ ତାଃ ସୂକ୍ଷ୍ମତଥ୍ୟାଃ ଶରଗଗନକୃତା
ସ୍ତତ୍‌କ୍ଷୟେଽର୍ଥାଙ୍କବାଣାଃ ।୭୬।

ଚନ୍ଦ୍ରଗ୍ରହଣର ସ୍ଥିତି ସର୍ବାଧିକ ୫୯° ପଳ । ଚନ୍ଦ୍ରଗ୍ରହଣର ପରମ ମର୍ଦ୍ଦକାଳ ୨୭୩ ପଳ । ସୂର୍ଯ୍ୟଗ୍ରହଣର ସର୍ବାଧିକ ସ୍ଥିତି ୭୩୨ । ବଳୟ ଗ୍ରାସର ସର୍ବାଧିକସ୍ଥିତି ୯୮ ପଳ । ବଳୟ ଗ୍ରାସରେ ସର୍ବାଧିକ ବିମର୍ଦ୍ଦକାଳ ୨୩ ପଳ ।

ସୁକ୍ଷ୍ମତିଥି ବଢ଼ି ବଢ଼ି ୪°୫ ପଳ ଯାଏ ବଢ଼ିପାରେ । ଅର୍ଥାତ୍ (୬°ଦ+(ଦ୭+୪୫) ଦ ୬୬ । ୪୫ ହୋଇପାରେ । ଏହାର ପରମ କ୍ଷୟମାନ ୫୯୫ ପଳ (ଦ ୬° — ୯ । ୫୫) ଅର୍ଥାତ୍ ତିଥି କମି କମି ଦ ୫° । ୫ ହୋଇପାରେ ।

ସିଦ୍ଧାଃ ସୂକ୍ଷ୍ମର୍ଷବୃଦ୍ଧୌ ଶରରସନଗମା
ସ୍ତତ୍କ୍ଷୟେଽଷ୍ଟାଙ୍ଗବେଦା
ଯୋଗବୃଦ୍ଧୌ ପକ୍ଷଭୂପାଃ କ୍ଷୟଉଦଧିରସା-
ଙ୍ଗାକ ଚନ୍ଦ୍ରସ୍ୟ ଭୁକ୍ତେଃ ।
ସୂକ୍ଷ୍ମଂ ସ୍ବର୍ଣ୍ଣ ଫଳଂ ଦୃକ୍କୃତନଗମୁନୟୋ
ଭାଙ୍ଗବେଦା ବଲସ୍ତା
ଭନୋସ୍ତ୍ୟର୍କା ନଗେଶାଃ ପରମବଘଟିକା
ଲମ୍ବନେଽର୍କାଗ୍ନୟଃ ସ୍ୟୁଃ ।୭୬।

ନକ୍ଷତ୍ର ସ୍ଥିତିକାଳ ( ଖୁବ୍ ବଢ଼ି ବଢ଼ି ) ଦ ୬୬ । ୪୫ ହୋଇପାରେ ।

ନକ୍ଷତ୍ର ସ୍ଥିତିକାଳ ( କମି କମି ) ଦ ୫୨ । ୧୨ ହୋଇପାରେ ।

| | |
|---|---|
| ଯୋଗର ପରମବୃଦ୍ଧି | ୧୬୨ ପଳ । |
| ଯୋଗର ପରମକ୍ଷୟ | ୬୬୪ ପଳ । |
| ଚନ୍ଦ୍ରର ପରମ ଗତିଫଳ ଧନ (+) | ୭୭୪୨ ବିକଳା । |
| ଚନ୍ଦ୍ରର ପରମ ଗତିଫଳ ଋଣ (—) | ୪୯୨୭ ବିକଳା । |
| ରବିର ପରମ ଗତିଫଳ ଧନ (+) | ୧୨୩ ବିକଳା । |
| ରବିର ପରମ ଗତିଫଳ ଋଣ (—) | ୧୧୩ ବିକଳା । |
| ସ୍ଫୁଟ ଲମ୍ବନ ପରମ | ଘ ୫ । ୧୨ |

ସ୍ୱର୍ଲନ୍ନଂ ଶୁଭ୍ରଭ୍ରନ୍ନଂ ଷଦଧଦଧ ଉପଯୁ୍ୟଦ୍ଭ୍ରମଦ୍ଭ୍ରନୁମଦ୍ଭ୍ର
ଭୂତେର୍ନବ୍ୟାଭ୍ରଭିତ୍ତିଭ୍ରମକରମକରୋଦ୍ଭୂମିଭ୍ରଗୋଽର୍ଭକାଣାମ୍ ।
ଭୂଭୃଦ୍ଭୂଭ୍ରନୁଭୂତପ୍ରଭୁଭବତନୁଭୂଭ୍ରବୁକାଂ ଭୂତଭ୍ରଜଂ
ଭୂତାଳଂ ଯୋ ବଧତ୍ତେ ଭବତୁ ଭବଭୟୋଚ୍ଛେଦଭିନ୍ନୋ ବଭୁଃ ସଃ ।୭୮।

ଯେଉଁ ପରମେଶ୍ୱରଙ୍କୁ ଲୋକେ ପାବକ୍ଷା, ସୂର୍ଯ୍ୟ ଶିବ ଓ ଗଣେଶ ରୂପରେ ପୂଜା କରନ୍ତି ଏବଂ ଏପରି ଉପାସକଙ୍କୁ ଯେଉଁ ପରମେଶ୍ୱର ଐଶ୍ୱର୍ଯ୍ୟ ଦିଅନ୍ତି ଏବଂ ଯେ ଚନ୍ଦ୍ରଙ୍କୁ ରାହୁରେ ପରିଣତ କରି (ସୂର୍ଯ୍ୟଗ୍ରହଣ ବେଳେ) ସୂର୍ଯ୍ୟଙ୍କ ଉପରେ ନୂଆ ମେଘ ଖଣ୍ଡ ଭଳି (ଭ୍ରମରେ) ଭସାଇ ଦେଇ ଭୂସ୍ଥ ଅଜ୍ଞ ଲୋକଙ୍କୁ ଭ୍ରମରେ ପକାନ୍ତି (ଚନ୍ଦ୍ରହିଁ ମେଘପରି ସୂର୍ଯ୍ୟଙ୍କୁ ଆଚ୍ଛାଦନ କରିବା-ଦ୍ୱାରା ସୂର୍ଯ୍ୟଗ୍ରହଣ ହୋଇଥାଏ ) । ସେହି ପରମେଶ୍ୱର ଆମର ସାଂସାରିକ ତାପତ୍ରୟ ଖଣ୍ଡନକାରୀ ହୁଅନ୍ତୁ । ଆମର ସମସ୍ତ ଦୁଃଖ ସେ ହରଣ କରନ୍ତୁ ।

ଇତ୍ୟୁତ୍କଳୋଦ୍ଭୂତନୃପାଳକୁଳପ୍ରସୂତ-
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତୈକସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଲବୋଧେ
ସୂର୍ଯ୍ୟଗ୍ରହୋ ନବମକୋ ବ୍ୟଗମତ୍ ପ୍ରକାଶଃ ।୭୯।

ଇତି ଶ୍ରୀ ଚନ୍ଦ୍ରଶେଖରକୃତୌ ସିଦ୍ଧାନ୍ତଦର୍ପଣେ
ତ୍ରିପ୍ରଶ୍ନାଧିକାରେ ସୂର୍ଯ୍ୟଗ୍ରହଣ ବର୍ଣ୍ଣନୋ
ନାମ ନବମଃ ପ୍ରକାଶଃ ।

ବର୍ତ୍ତମାନ ସିଦ୍ଧାନ୍ତ ଦର୍ପଣର ନବମ ପ୍ରକାଶ ଶେଷହେଲା । ଏଥିରେ ସୂର୍ଯ୍ୟଗ୍ରହଣ କଥା ବର୍ଣ୍ଣିତ ହୋଇଅଛି ।

## ଦଶମଃ ପ୍ରକାଶଃ

### ପରିଲେଖ ବର୍ଣ୍ଣନମ୍

ସ୍ପର୍ଶସ୍ୟ ମୋକ୍ଷସ୍ୟ ଚ ମଧ୍ୟମସ୍ୟ
କାଷ୍ଠାବଗତ୍ୟୈ ପରିଲେଖସଂଜ୍ଞକମ୍ ।
ବଦାମ୍ୟଥ ଚ୍ଛେଦକମର୍କଚନ୍ଦ୍ର
ଗ୍ରହଦ୍ୱୟଂ ଯେନ ଭବେତ୍ ସମକ୍ଷମ୍ ।୧।

ସୂର୍ଯ୍ୟର ହେଉ ବା ଚନ୍ଦ୍ରର ହେଉ ଗ୍ରହଣ ସମୟରେ କେଉଁ ଦିଗରେ ସ୍ପର୍ଶ, ମଧ୍ୟ ଓ ମୋକ୍ଷ ହେଲା ତାହା ଜାଣିବା ନିମନ୍ତେ ଗ୍ରହଣର ସମ୍ପୁଚ୍ଛେଦା ପରିଲେଖ ବର୍ତ୍ତମାନ କହିବି । ଏହାରଦ୍ୱାରା ଗ୍ରହଣ ଦୁଇଟିକୁ ବେଶ ପ୍ରତ୍ୟକ୍ଷ କରି ହେବ ।

ଦୃଶୋବଲଂ ତର୍ଯ୍ୟଗଧଃସ୍ଥିତେ ସ୍ୟାଦ୍
ଦ୍ରବ୍ୟେ ଯଥା ନୈବ ତଥୋର୍ଦ୍ଧ୍ୱସଂସ୍ଥେ ।
ଏବଂ ତଚ୍ଚନ୍ଦ୍ରରବୀଷୁମାନ
ସାମ୍ୟେଽପି ମଧ୍ୟେଗଗନଂ ତନୁତ୍ୱମ୍ ।୨।

ବିଲୋକ୍ୟତେ ଚ କ୍ଷିତିଜେ ମହତ୍ତ୍ୱଂ
ପ୍ରାକ୍ସୂରିଭିସ୍ତତ୍କ୍ରମତୋଽଙ୍ଗୁଳାନି ।
ସିଦ୍ଧାନି ତତ୍ତତ୍କଳକାଚ୍ଛିଦାଭି-
ସ୍ତନ୍ମାନି ସାକ୍ଷାତ୍ କରଣାୟ ବକ୍ଷ୍ୟେ ।୩।

ଦ୍ରବ୍ୟ ତଳେ ବା ତିର୍ଯ୍ୟକ୍ ଭାବରେ ଥିଲେ ତା ଉପରେ ଦ୍ରଷ୍ଟାର ଦୃକ୍‌ଶକ୍ତି ଯେପରି ବିଶେଷ ଭାବରେ କାର୍ଯ୍ୟ କରେ ଦ୍ରବ୍ୟ ଊର୍ଦ୍ଧ୍ୱରେ ଥିଲେ ସେପରି କରିପାରେ ନାହିଁ । ଗୋଟିଏ ଦିନ ସମ୍ବନ୍ଧୀ ରବିବିମ୍ବ, ଚନ୍ଦ୍ରବିମ୍ବ ତଥା ଶର ଆକାଶରେ ସର୍ବଦା ସମାନ ପରି-

ମାଣରେ ହେଲେ ମଧ୍ୟ ଆକାଶର ମଧ୍ୟଭାଗରେ ଥିବା ବେଳେ ଏଗୁଡ଼ିକ ଅପେକ୍ଷାକୃତ ଛୋଟ ଦେଖାଯାଇଥାନ୍ତି । ପୁଣି ଏଗୁଡ଼ିକ ଦିଗ୍‌ବଳୟରେ ଥିବାବେଳେ ବଡ଼ ମଧ୍ୟ ଦେଖା ଯାଇଥାନ୍ତି । ଏଣୁ ପ୍ରାଚୀନାଚାର୍ଯ୍ୟମାନେ କ୍ଷିତିଜ ଯାମ୍ୟୋତ୍ତର ବୃତ୍ତ କ୍ରମରେ ତାତ୍କାଳିକ ହର ଆଦି ଯୋଗେ ସିଦ୍ଧ ସେହି ରବି, ଚନ୍ଦ୍ର ଓ ଭୂଚ୍ଛାୟା ଆଦିର (ଶର) ପରିମାଣ ଯାହା କହିଛନ୍ତି ତାହା ବିଶେଷ ଭାବରେ କହିବି ।

ବିଧୋ ରବେର୍ବୋନ୍ନତକାଳଶଙ୍କୁ-
-ରଷ୍ଟାଗ୍ନିଦସ୍ରୟୁକ୍ ଦ୍ୱିଗୁଣେନଭକ୍ତଃ ।
ଛେଦଃ କଳାନାମମୁନା ହୃତାନାଂ
ଫଳାନି ବିମ୍ବେଷୁ ମିତାଙ୍ଗୁଳାନି ।୪।

ତ୍ରିଘ୍ନଂ ଦିନାର୍ଦ୍ଧଂ ନିଜମୁନ୍ନତାଢ୍ୟଂ
ଦିନାର୍ଦ୍ଧଭକ୍ତଂ ଭବତି ଚ୍ଛିଦା ବା ।
କମ୍ବା ତମଃ ସୂର୍ଯ୍ୟ ଶରେନ୍ଦୁଲପ୍ତା-
ସ୍ତ୍ର୍ୟାପ୍ତାଃ ସଦା ସ୍ଥ୍ୟଶ୍ଚ ତଦଙ୍ଗୁଳାନି ।୫।

ଚନ୍ଦ୍ରଗ୍ରହଣରେ ଚନ୍ଦ୍ରର ଓ ସୂର୍ଯ୍ୟଗ୍ରହଣରେ ସୂର୍ଯ୍ୟର ଉନ୍ନତ କାଳ ଶଙ୍କୁ ସାଧନ କରି (ମଧ୍ୟ ଗ୍ରହଣ କାଳିକ ଶଙ୍କୁ) ସେଥିରେ ୧୦୩୧୪ ଯୋଗ କର । ଯୋଗଫଳକୁ ଦ୍ୱିଜ୍ୟାରେ ହର । ଫଳ ହେବ ହାର ବା ହର । ଏହି ହରରେ ଚନ୍ଦ୍ର, ସୂର୍ଯ୍ୟ ଓ ଛାୟାର ବିମ୍ବ ତଥା ଶରକଳାକୁ ହରିଲେ ସେଗୁଡ଼ିକର ଅଙ୍ଗୁଳମାନ ହେବ ।

ଅଥବା ଚନ୍ଦ୍ର ବା ସୂର୍ଯ୍ୟଗ୍ରହଣ ଦିନର ଦିନାର୍ଦ୍ଧକୁ ୩ରେ ଗୁଣି ନିଜ ନିଜ ଉନ୍ନତ କାଳରେ ଯୋଗ କରି ଏହି ଯୋଗଫଳକୁ ଦିନାର୍ଦ୍ଧରେ ଭାଗ କଲେ ଫଳ ପୁଣି ସେହି ହର ହେବ । ଏହି ହରରେ ବିମ୍ବକଳା ଓ ଶରକଳା ଆଦିକୁ ହରି ଦେଲେ ସେଗୁଡ଼ିକ ଅଙ୍ଗୁଳାତ୍ମକ ହୋଇଯିବେ ।

ଅଥବା ସ୍ଥୂଳତଃ ବିମ୍ବ ଓ ଶରକଳାକୁ ୩ରେ ହରି ଦେଲେ ସେଗୁଡ଼ିକ ଅଙ୍ଗୁଳାତ୍ମକ ହୋଇଯିବେ ।

ସୁସାଧିତାୟାଂ ଭୁବି ବିନ୍ଦୁମେକଂ
ଦତ୍ତ୍ୱା ତତଃ କର୍କଟକେନ ଲେଖ୍ୟମ୍ ।
ସବ୍ୟଂଶସପ୍ତାର୍ଥମିତାଙ୍ଗୁଳେନ
ବୃତ୍ତଂ ଖସଂଜ୍ଞଂ ବଳନାଶ୍ରିତଂ ତଦ୍ ।୬।

ମାନୈକ୍ୟଖଣ୍ଡପ୍ରମିତେନ ମଧ୍ୟେ
ସ୍ପର୍ଶାଦ୍ୟ ମୋକ୍ଷାଦ୍ୟ ଚ ବୃତ୍ତମନ୍ୟତ୍ ।
ଲେଖ୍ୟଂ ସମସାଖ୍ୟମିଦଂ ତଦନ୍ତ
ର୍ଗ୍ରାହ୍ୟାର୍ଦ୍ଧମାନେନ ତଦୀୟବମ୍ବମ୍ ।୭।

ପ୍ରାଗ୍‌ବଢିଶାଂ ସାଧନମତ୍ର କୃତ୍ୱା
ଦକ୍‌ଚନ୍ଦ୍ରବତ୍ କାର୍ଯ୍ୟମିଦଂ ଖବୃତ୍ତମ୍ ।
ପ୍ରାକ୍‌ପ୍ରତ୍ୟଗଙ୍କାଦ୍‌ବଳନଂ ଜଧେୟଂ
ତଦଂଶ ସଂଖ୍ୟାଙ୍ଗୁଳକାନ୍ତରେଣ ।୮।

ସ୍ପର୍ଶେ ବଧୋରୁତ୍ତରଯାମ୍ୟସଂଜ୍ଞଂ
ନ୍ୟସ୍ୟଂ ସ୍ୱଦଶ୍ୟେବ ରବେଶ୍ଚ ମୋକ୍ଷେ ।
ମୋକ୍ଷେ ବଧୋଃ ସ୍ପର୍ଶ ଇନସ୍ୟ ତଚ୍ଚ
ବ୍ୟସ୍ତଂ ତତଃ ସୂତ୍ରମପି ପ୍ରସାର୍ଯ୍ୟମ୍ ।୯।

ଆମଧ୍ୟବନ୍ଧ୍ୱ ସମାସବୃତ୍ତ-
ମଧ୍ୟେଽପି ଦକ୍‌ସୂତ୍ରମିତୀଦମିଷ୍ଟମ୍ ।
ତଦ୍ୟାମ୍ୟସୌମ୍ୟାଖ୍ୟଦଶୋଃ ପ୍ରସାର୍ଯ୍ୟଃ
ସୂତ୍ରାତ୍ତଥା ଜ୍ୟାକ୍ରମତଃ କଳମ୍ବଃ ।୧୦।

ଯଥା ନଗାଗ୍ରସ୍ୟ ସମାସବୃତ୍ତେ
ସ୍ପର୍ଶୋ ଭବେତ୍ତଚ୍ଚଳନାନୁସାରାତ୍ ।
ଶରଃ ଶଳାକାତ୍ମକ ଏଷ ଦେୟଃ
ଶୀତଦ୍ୟୁତେଃ ସ୍ପର୍ଶନିମୀଲୟୋଃ ପ୍ରାକ୍ ।୧୧।

ପଶ୍ଚାଦୁନ୍ମୀଲନମୋକ୍ଷୟୋଶ୍ଚ
ତଦ୍‌ଯୁଗ୍ମୟୋସ୍ତିଗ୍ମରୁଚେର୍ବିଲୋମଃ ।
ଶରାଗ୍ରତୋ ମଧ୍ୟମବନ୍ଧ୍ୱଗାମି
ସୂତ୍ରଂ ସ୍ପୃଶେଦ୍‌ଗ୍ରାହ୍ୟତନୁଂ ଚ ଯତ୍ର ।୧୨।

ସ୍ପର୍ଶସ୍ଥ ମୋକ୍ଷସ୍ଥ ଭବେଦଦହ୍ୟୈବ
ଶରସ୍ତୁ ତତ୍କାଳଭବଃ ସଦୈଷ୍ଟଃ ।
ତାତ୍କାଳିକଂ ସ୍ୟାଦ୍‌ବଳନଂ ତଥୈବ
ତସ୍ୟାନୁସାରେଣ ଶରଃ ପ୍ରସାର୍ଯ୍ୟଃ ।୧୩।

ସ ସୌମ୍ୟଯାମ୍ୟାୟତଞ୍ଜିନୀଷେବ-
ଉଥାପି କୋଣାଭିମୁଖଃ କ୍ୱଚତ୍‌ସ୍ୟାତ୍ ।
ବଦାମି ମଧ୍ୟଗ୍ରହୟୋର୍ବିଶେଷଂ
ଗ୍ରହୋଣ୍ଣ କେତୋଃ ସବଧସ୍ତ ଇନ୍ଦୌ ।୧୪।

ଜଳ ପରି ସମତଳ ଭୂମିରେ ବିନ୍ଦୁଟିଏ ଦେଇ ତାହାକୁ କେନ୍ଦ୍ର କରି ୫୭।୧୮ ଅଙ୍ଗୁଳ ବ୍ୟାସାର୍ଦ୍ଧରେ କର୍କଟକ ( Compas ) ସାହାଯ୍ୟରେ ଗୋଟିଏ ବୃତ୍ତ ଅଙ୍କନ କର । ଏହି ବୃତ୍ତର ନାମ ଖ ଗୋଲବୃତ୍ତ । ଦୁଇଟି ଯାକ ବଳନ ଏହାକୁ ଆଶ୍ରୟ କରି ରହିବେ । ଏହି ବୃତ୍ତର କେନ୍ଦ୍ରକୁ କେନ୍ଦ୍ର କରି ପୁଣି ମାନୈକ୍ୟାର୍ଦ୍ଧ ବ୍ୟାସାର୍ଦ୍ଧରେ ଅନ୍ୟ ଗୋଟିଏ ସମାସବୃତ୍ତ ଲେଖ । ପୁଣି ଉକ୍ତ ବୃତ୍ତ କେନ୍ଦ୍ରକୁ କେନ୍ଦ୍ର କରି ଗ୍ରାହ୍ୟ ବିମ୍ବ ବ୍ୟାସାର୍ଦ୍ଧରେ ଗ୍ରାହ୍ୟ ବୃତ୍ତ ଲେଖ । ଦିକ୍ପ୍ରଶ୍ନାଧିକାର ଗ୍ରନ୍ଥରେ ଖ ଗୋଲ ବୃତ୍ତରେ ଦିଗ ବିନ୍ଦୁ ନ୍ୟାସ କର । ଏହି ବୃତ୍ତର ପୂର୍ବ ଓ ପଶ୍ଚିମ ବିନ୍ଦୁରୁ ବଳାନାଂଶକୁ (ଅଂଶ ସମାନ ଅଙ୍ଗୁଳରେ) ନ୍ୟାସ କର । ଅର୍ଥାତ୍ ଚନ୍ଦ୍ରଗ୍ରହଣରେ ସ୍ପର୍ଶ ବେଳେ ଏବଂ ସୂର୍ଯ୍ୟଗ୍ରହଣରେ ମୋକ୍ଷ ବେଳେ ଯଥାକ୍ରମେ ସ୍ପାର୍ଶିକ ଓ ମୌକ୍ଷିକ ବଳନକୁ ପୂର୍ବବିନ୍ଦୁରୁ ନିଜ ନିଜ ଦିଗରେ ଅର୍ଥାତ୍ ଉତ୍ତର ବଳନକୁ ଉତ୍ତର ଆଡ଼େ ଓ ଦକ୍ଷିଣ ବଳନକୁ ଦକ୍ଷିଣ ଆଡ଼େ ଦେବାକୁ ହେବ । ପୁଣି ଚନ୍ଦ୍ରଗ୍ରହଣରେ ମୋକ୍ଷ ବେଳେ ଏବଂ ସୂର୍ଯ୍ୟଗ୍ରହଣରେ ସ୍ପର୍ଶ ବେଳେ ଯଥାକ୍ରମେ ମୋକ୍ଷ ଓ ସ୍ପାର୍ଶିକ ବଳନକୁ ପଶ୍ଚିମ ବିନ୍ଦୁରୁ ବିପରୀତ ଦିଗରେ ନ୍ୟାସ କରିବ । (ବଳନ ଉତ୍ତର ହେଲେ ଦକ୍ଷିଣକୁ ଓ ବଳନ ଦକ୍ଷିଣରେ ହୋଇଥିଲେ ଉତ୍ତରକୁ) ।

ବଳନ ଦେଇ ସାରିବା ପରେ ବଳନର ଅଗ୍ରବିନ୍ଦୁରୁ କେନ୍ଦ୍ରବିନ୍ଦୁ ପର୍ଯ୍ୟନ୍ତ ରେଖା ଟାଣିବ । ମାନୈକ୍ୟାର୍ଦ୍ଧ (ସମାସ) ବୃତ୍ତରେ ମଧ୍ୟ ଖ ବୃତ୍ତ ଅନୁସାରେ ପୂର୍ବ, ପଶ୍ଚିମ ଦକ୍ଷିଣ ଓ ଉତ୍ତର ବିନ୍ଦୁ ନ୍ୟାସ କରିବ । ଏଥିରେ ମଧ୍ୟ ପୂର୍ବ, ପଶ୍ଚିମ ଓ ଦକ୍ଷିଣ ଉତ୍ତର ରେଖା କରିବ । ଉଭୟ ବଳନର ଅଗ୍ରକୁ ଦେଇ ଯେଉଁ ରେଖା ଟାଣିବ ତାହାକୁ ବଳନାଗ୍ର ରେଖା କହନ୍ତି । ଏହି ରେଖା ସମାସବୃତ୍ତକୁ ଯେଉଁ ଦୁଇଟି ସ୍ଥାନରେ କାଟିଛି ସେଠାରୁ ଜ୍ୟା ପରିମାଣରେ ସ୍ପାର୍ଶିକ ଓ ମୌକ୍ଷିକ ଶରକୁ ଯଥାଦିଗରେ ଏପରି ନ୍ୟାସ କରିବ, ସେ ଯେପରି ସମାସ ବୃତ୍ତକୁ ସ୍ପର୍ଶ କରିବ । ( ଶରଜ୍ୟା ଓ ସମାସ ବୃତ୍ତର ଚାପ ମଧ୍ୟରେ ଯେପରି ବ୍ୟବଧାନ ନ ରହେ । )

ଚନ୍ଦ୍ରଗ୍ରହଣରେ ଏହି ଶର କାଟି ପରେ ସ୍ପର୍ଶ ଓ ସମ୍ମୀଳନ ବେଳେ ପୂର୍ବରେ, ଏବଂ ମୋକ୍ଷ ଓ ଉନ୍ମୀଳନ ବେଳେ ପଶ୍ଚିମରେ ଦେବାକୁ ହେବ । ରବିଗ୍ରହଣରେ ଏହା ଠିକ୍ ବିପରୀତ କରି ଦେବାକୁ ହେବ । (ସ୍ପର୍ଶ ଓ ସମ୍ମୀଳନ ବେଳେ ପଶ୍ଚିମରେ ଏବଂ ମୋକ୍ଷ ଓ ଉନ୍ମୀଳନ ବେଳେ ପୂର୍ବରେ ଦେବାକୁ ହେବ ।)

ବର୍ତ୍ତମାନ ଶରାଗ୍ରରୁ ମଧ୍ୟବିନ୍ଦୁକୁ ରେଖା ଟାଣିଲେ ତାହା ଯେଉଁଠାରେ ଗ୍ରାହ୍ୟବିମ୍ବ ପରିଧିକୁ କାଟିବ ସେହିଠାରେ ବାସ୍ତବରେ ସ୍ପର୍ଶ ଓ ମୋକ୍ଷ ହେବ । ଏଠାରେ ମନେରଖିବାକୁ ହେବ ଯେ ସର୍ବଦା ଶର ଓ ବଳନକୁ ତାତ୍କାଳିକ ହିଁ କରିବାକୁ ପଡ଼ିବ । ଶର ଦକ୍ଷିଣ ଓ ଉତ୍ତରାଭିମୁଖ ହେଲେ ମଧ୍ୟ ବେଳେ ବେଳେ ଆଗ୍ନେୟ ଆଦି କୋଣାଭିମୁଖୀ ହୋଇଥାଏ ।

ପଞ୍ଚାଙ୍ଗୁଳାଦ୍ୟେ ବଳନା ତତୋଽନ୍ୟତ୍
କ୍ରମାଦୁଦଗ୍ଦକ୍ଷିଣୟୋର୍ନିଧେୟମ୍ ।
ବିମ୍ବସ୍ଥମେତଦ୍‌ବଳନଂ ଖବୃତ୍ତେ
ପ୍ରାଚ୍ୟାଂ ସ୍ୱଦିକ୍‌ସଂଜ୍ଞବଶେଷ ତସ୍ମାତ୍ ।୧୪।

ପ୍ରସାର୍ଯ୍ୟ ରେଖାଂ କିଲ ମଧ୍ୟବିନ୍ଦୁ-
ସ୍ପୃଶଂ ପରାଶାନ୍ତଗତାଂ ସିତାଂଶୋଃ ।
ଗ୍ରହାନ୍ତରର୍କସ୍ୟ ତୁ ଯାମ୍ୟସୌମ୍ୟ-
ଲଗ୍ନାପମାଂଶାଙ୍ଗୁଳକାନ୍ତରସ୍ଥମ୍ ।୧୭।
ବିନ୍ଦୁଂ ପୁରଃସ୍ଥାଦ୍‌ବଳନାଦ୍ଵିତୀର୍ଯ୍ୟ
ରେଖାଂ ତତୋ ବ୍ୟାସମିତାଂ ପ୍ରସାର୍ଯ୍ୟ ।
ତଦ୍‌ପାର୍ଶ୍ୱଗଂ ମଣ୍ଡଳମଧ୍ୟବିନ୍ଦୋ-
ର୍ବିନ୍ୟସ୍ୟ ଯାମ୍ୟୋଦଗିଷ୍ଟଂ ତଦଗ୍ରାତ୍ ।୧୭।
ତଦ୍‌ଗ୍ରାହକାର୍ଦ୍ଧପ୍ରମିତେନ ବିମ୍ବଃ
ସୂତ୍ରେଣ ଲେଖ୍ୟସ୍ତମ ଇତ୍ୟଭିଜ୍ଞୈଃ ।
ଗ୍ରାହ୍ୟଂ ତଦାଚ୍ଛାଦିତମବ ଯାବ-
ତ୍ତାବାନ୍ ଗ୍ରହୋ ଦୃଶ୍ୟତ ଇନ୍ଦୁଭାନ୍ୱୋଃ ।୧୮।
ବିନ୍ଦୁଦ୍ୱୟଂ ସ୍ପର୍ଶବିମୋକ୍ଷମଧ୍ୟ-
ସ୍ଥିତାଶୁଗାଗ୍ରେଷୁ ନିଧାୟ ତସ୍ମାତ୍ ।
ଆଦ୍ୟାନ୍ତବିନ୍ଦ୍ୱନ୍ତରବହ୍ନିଭଗ-
ସୂତ୍ରେଣ ବୃତ୍ତଦ୍ୱିତୟଂଚ କାର୍ଯ୍ୟମ୍ ।୧୯।

ତଦନ୍ତର ଯଦ୍ଭୁ ପୃଥୁରେଖଯୁଗ୍ମ-
ମୁତ୍ପାଦ୍ୟତେ ତନ୍ମୁଖପୁଚ୍ଛଲଗ୍ନମ୍ ।
ସୂତ୍ରଦ୍ୱୟଂ ଦକ୍ଷିଣ ଉତ୍ତରେ ବା
ଭଗୋଳମାନାନ୍ତରକେ ପ୍ରସାର୍ଯ୍ୟ ।୨୦।

ତଦଗ୍ରୟୋର୍ଯଦ୍ ଯୁତସୂତ୍ରତୋଽନ୍ୟ-
ସୂତ୍ରେଣ ବିନ୍ଦୁତ୍ରିତୟସ୍ପୃଶୈବ ।
ଲେଖ୍ୟଂ ଧନୁର୍ଗ୍ରାହକମାର୍ଗ ଏଷ
ପ୍ରାଗନ୍ତ୍ୟ ବିନ୍ଦୁଦ୍ୱିତୟାନ୍ତର ସ୍ୟାତ୍ ।୨୧।

ଚନ୍ଦ୍ର ଓ ସୂର୍ଯ୍ୟଗ୍ରହଣର ମଧ୍ୟ ଗ୍ରହଣ କଥା ଟିକିଏ ବିଶଦ ଭାବରେ କହୁଅଛୁ । ଚନ୍ଦ୍ର ଗ୍ରହଣ ବେଳେ ଚନ୍ଦ୍ର ରାହୁ ବା କେତୁର ନିକଟବର୍ତ୍ତୀ ହେବା ବେଳେ ଖ ବୃତ୍ତରେ (ବଳନାଶ୍ରିତ ବୃତ୍ତରେ) ପୂର୍ବଦିଗରୁ ସ୍ପଷ୍ଟ ବଳନ ଯଥାଦିଗ ଦେବାକୁ ହେବ । ଏହି ଦତ୍ତ ବଳନର ଅଗ୍ରଭାଗରୁ ୫ ଅଙ୍ଗୁଳ ଅନ୍ତରରେ ଉତ୍ତର ଓ ଦକ୍ଷିଣକୁ ଆଉ ଦୁଇଟି ଚିହ୍ନ ଦେବାକୁ ହେବ । (ପୂର୍ବ ସଂପାତ ସ୍ଥଳେ ଉତ୍ତରକୁ ଓ ପଶ୍ଚିମ ସଂପାତ ସ୍ଥଳେ ଦକ୍ଷିଣକୁ) ଏହି ଦୁଇ ଚିହ୍ନ ଓ ବୃତ୍ତ କେନ୍ଦ୍ର ବିନ୍ଦୁ ଦେଇ ବ୍ୟାସ ରେଖା ଅଙ୍କନ କରିବ ।

ସୂର୍ଯ୍ୟ ମଧ୍ୟ ଗ୍ରହଣବେଳେ ପୂର୍ବରେ ଯେଉଁ ବଳନ ଦିଆଯାଇଥିବ, ତାହାର ଅଗ୍ର-ଭାଗରୁ ସେହି ସମୟର ଲଗ୍ନ କ୍ରାନ୍ତ୍ୟଂଶ ତୁଲ୍ୟ ଅଙ୍ଗୁଳ ତଫାତ୍‌ରେ କ୍ରାନ୍ତି ଦିଗ ଅନୁସାରେ ବିନ୍ଦୁ ଦେଇ ଏହି ବିନ୍ଦୁ ଓ ମଧ୍ୟବିନ୍ଦୁଗତ ରେଖାକୁ ବଢ଼ାଇ ବ୍ୟାସ ଆକାରରେ ରଖିବ । ଏହି ରେଖା ଉପରେ ଲମ୍ବ ଭାବରେ ମଧ୍ୟଗ୍ରହ ଶରକୁ ଯଥାଦିଗନ୍ୟାସ କରିବ । ଏହି ଶରର ଅଗ୍ର ବିନ୍ଦୁକୁ କେନ୍ଦ୍ର କରି ଗ୍ରାହକାର୍ଦ୍ଧ ବ୍ୟାସାର୍ଦ୍ଧରେ (ଚନ୍ଦ୍ରଗ୍ରହଣରେ ଭୂଛାୟା ବ୍ୟାସାର୍ଦ୍ଧରେ ଏବଂ ସୂର୍ଯ୍ୟଗ୍ରହଣରେ ଚନ୍ଦ୍ର ବିମ୍ବ ବ୍ୟାସାର୍ଦ୍ଧରେ) ବୃତ୍ତ କରିବ । ଏହି ବୃତ୍ତ ଗ୍ରାହ୍ୟବୃତ୍ତକୁ ଯେତିକି ଆଚ୍ଛାଦିତ କରିବ, ତାହାହିଁ ଚନ୍ଦ୍ର ଓ ସୂର୍ଯ୍ୟଗ୍ରହଣର ମଧ୍ୟଗ୍ରାସ ହେବ । ଏହାହିଁ ଲୋକେ ଦେଖିଥାନ୍ତି ।

ସ୍ପର୍ଶ, ମଧ୍ୟ ଓ ମୋକ୍ଷ ସମୟର ଶର ଆଣି ପରିଲେଖରେ ଯଥାସ୍ଥାନରେ ଦିଅ । ଏହି ତିନି ଶରାଗ୍ର ବିନ୍ଦୁ ଦେଇ ଗୋଟିଏ ବୃତ୍ତ କର । ଏହି ବୃତ୍ତ ହିଁ ଗ୍ରାହକ ମାର୍ଗ ବୋଲି ଜାଣିବ । ତିନି ବିନ୍ଦୁଗାମୀ ବୃତ୍ତରଚନା ଜ୍ୟାମିତିର ଏକ ସରଳ କ୍ରିୟା । ପୁନଶ୍ଚ ସ୍ପର୍ଶ ଓ ମୋକ୍ଷ ଶରାଗ୍ର ବିନ୍ଦୁର ବ୍ୟବଧାନର ⅓ ବ୍ୟାସାର୍ଦ୍ଧରେ ଏହି ପ୍ରତ୍ୟେକ ବିନ୍ଦୁରୁ ତିନୋଟି ବୃତ୍ତ ଅଙ୍କନ କଲେ ଦୁଇ ଦୁଇ ବୃତ୍ତ ଯୁଗକୁ ଧରି ଯେଉଁ ମତ୍ସ୍ୟ ଉତ୍ପନ୍ନ ହେବ ସେ ଦୁଇଟି ଯେଉଁଠାରେ ମିଳିତ ହେବେ (ନିକଟରେ) ତାକୁ କେନ୍ଦ୍ର କରି ଶରାଗ୍ର ଚିହ୍ନ ପର୍ଯ୍ୟନ୍ତ ବ୍ୟାସାର୍ଦ୍ଧରେ ବୃତ୍ତ କଲେ ତାହା ଉକ୍ତ ତିନୋଟିଯାକ ଚିହ୍ନକୁ ଧରି ହେବ ଏବଂ ଏହି ବୃତ୍ତ ହିଁ ଗ୍ରାହକ ମାର୍ଗ ହେବ ।

ପ୍ରାଙ୍ମାର୍ଗତୋ ଗ୍ରାହକଖଣ୍ଡତୁଲ୍ୟଂ
ଦଙ୍ମଧ୍ୟବନ୍ଦୂପରଗାମିସୂତ୍ରମ୍ ।
ପ୍ରସାରତଂଗ୍ରାହ୍ୟତନୋରୁପାନ୍ତଂ
ଯତ୍ର ସ୍ପୃଶେତ୍ତତ୍ର ନମୀଳନଂ ସ୍ୟାଦ୍ ।୨୨।

ଉନ୍ମୀଳନଂ ମୌକ୍ଷିକମାର୍ଗସୂତ୍ରା
ତ୍ତଥା ଭବେଦଷ୍ଟୁଘଟୀଷୁ ଲକ୍ଷ୍ୟଃ ।
ଗ୍ରହୋ ଯଦ ସ୍ୟାତ୍ତଦହ ବିବନ୍ଧୁ
ମାର୍ଗୋ ଦ୍ୱିଧା ମଧ୍ୟମବନ୍ଧୁତଃ ସ୍ୟାତ୍ ।୨୩।

ତଦଙ୍ଗୁଳେ ସ୍ପାର୍ଶିକମୌକ୍ଷିକାଖ୍ୟେ
ଯାତୈଷ୍ୟଦଚ୍ଛାଘଟିକାଦନଘ୍ନେ ।
ସ୍ଥିତ୍ୟର୍ଦ୍ଧକାଲେନ ନଜେନ ଭକ୍ତେ
ଫଲାଙ୍ଗୁଳେଽନ୍ତେ ପଥି ବନ୍ଦୁମେକମ୍ ।୨୪।

ଦତ୍ତ୍ୱା ତତସ୍ତାଦକଖଣ୍ଡତୁଲ୍ୟ-
ସୂତ୍ରେଣ ବୃତ୍ତଂ ବରଚଯ୍ୟ ତେନ ।
ସଂଚ୍ଛାଦତଂ ଗ୍ରାହ୍ୟମଭୀଷ୍ଟକାଳେ
ଦୃଶ୍ୟଂ ସ୍ୱକାଳାଙ୍ଗୁଳକାନୁପାତାତ୍ ।୨୫।

ନକଟରେ କରାଯାଇଥିବା ଗ୍ରାହକମାର୍ଗ ଖଣ୍ଡରୁ ଦଗ ଓ ମଧ୍ୟବନ୍ଦୁ ପର୍ଯ୍ୟନ୍ତ ଗ୍ରାହକ ବ୍ୟାସାର୍ଦ୍ଧ ସୂତ୍ରକୁ ବଢ଼ାଇ ଦେଲେ ସେ ଗ୍ରାହ୍ୟବମ୍ବର ଉପାନ୍ତ ପରଧିକୁ ଯେଉଁଠାରେ ସ୍ପର୍ଶ କରିବ ସେହି ବନ୍ଦୁରେ ନମୀଳନ ହେବ । ଠିକ୍ ଏହିପରି ମୋକ୍ଷକାଳରେ ଗ୍ରାହକମାର୍ଗରୁ ଉନ୍ମୀଳନ ହେବ । ସ୍ପର୍ଶ ପରେ ବା ମୋକ୍ଷ ପୂର୍ବରୁ ଇଷ୍ଟ ସମୟରେ ଇଷ୍ଟଗ୍ରାସ ଦେଖାଇବା ଦରକାର ହେଲେ ମଧ୍ୟ ଶରଗ୍ରରୁ ଗ୍ରାହକମାର୍ଗକୁ ସ୍ପାର୍ଶିକ ଓ ମୌକ୍ଷିକ ଭେଦରେ ଦୁଇପ୍ରକାର କଳ୍ପନା କରିବାକୁ ହେବ । ତାହାର ଅଙ୍ଗୁଳ ପରିମାଣ ଗଣି ନେବ । ସ୍ପାର୍ଶିକ ଆଙ୍ଗୁଳକୁ ଇଷ୍ଟଘଟିରେ ଗୁଣି ସ୍ପାର୍ଶିକ ସ୍ଥିତ୍ୟର୍ଦ୍ଧରେ ଭାଗ ଦେବ (ସ୍ପର୍ଶ ପରେ ଇଷ୍ଟଗ୍ରାସ ହୋଇଥିଲେ) । ମୋକ୍ଷାଙ୍ଗୁଳକୁ ମୋକ୍ଷ ହେବାକୁ ଯେତେ ସମୟ ବାକି ରହିଥିବ ସେଥିରେ ଗୁଣି ମୋକ୍ଷ ସ୍ଥିତ୍ୟର୍ଦ୍ଧରେ ହରିବ (ମୋକ୍ଷ ପୂର୍ବରୁ ଇଷ୍ଟଗ୍ରାସ ହେଲେ) ତାହାହେଲେ ସ୍ପର୍ଶ ପର ଅବସ୍ଥାରେ ସ୍ପାର୍ଶିକ ମାର୍ଗରେ ପ୍ରଥମ ଅଙ୍ଗୁଳାନ୍ତରେ ଏବଂ ମୌକ୍ଷିକ ମାର୍ଗରେ ଦ୍ୱିତୀୟ ଅଙ୍ଗୁଳାନ୍ତରେ ବନ୍ଦୁ କରିବ । ତାକୁ କେନ୍ଦ୍ର କରି ଗ୍ରାହକ ବମ୍ବ ବ୍ୟାସାର୍ଦ୍ଧରେ ବୃତ୍ତ କରିବ । ଏହି ବୃତ୍ତଦ୍ୱାରା ଗ୍ରାହ୍ୟବମ୍ବ ଯେତିକ ଆଚ୍ଛାଦତ ହେବ ଇଷ୍ଟସମୟରେ ସେତିକ ହିଁ ଗ୍ରାସ ହେବ ।

ସଂଦୃଷ୍ଟ ମିଷ୍ଟଗ୍ରସନସ୍ୱରୂପଂ
ମାନୈକ୍ୟଖଣ୍ଡାଙ୍ଗୁଳତୋ ବଶୋଧ୍ୟ ।
ଗ୍ରାସାଙ୍ଗୁଳଂ ସ୍ୱେଷ୍ଟମିତୋଽବଶିଷ୍ଟା-
ଙ୍ଗୁଳପ୍ରମାଣା ସରଳା ଶଳାକା ।୨୬।

ଗ୍ରାହ୍ୟାର୍ଦ୍ଧତୋ ମାର୍ଗମୁଖୀ ପ୍ରସାର୍ଯ୍ୟା
ସ୍ପର୍ଶେ ବମୋକ୍ଷେ ସ୍ୱଦିଶି କ୍ରମେଣ ।
ଯତ୍ର ସ୍ପୃଶେଦ୍ ଗ୍ରାହକମାର୍ଗମେଷା
ଲେଖ୍ୟଂ ତତୋ ଗ୍ରାହକବିମ୍ବମାନମ୍ ।୨୭।

ଗ୍ରାହ୍ୟଂ ଭବେଚ୍ଛନ୍ନମନେନ ଯାବ-
ତ୍ତାବାନ୍ ଗ୍ରହୋ ଦୃକ୍ସମତାମୁପୈତ ।
ମାନାନ୍ତରାର୍ଦ୍ଧେନ ମିତାଂ ଶଳାକାଂ
ପ୍ରସାର୍ଯ୍ୟ ସଂସ୍ପର୍ଶଦିଶୀନ୍ଦୁକେନ୍ଦ୍ରାତ୍ ।୨୮।

ଯତ୍ର ସ୍ପୃଶେନ୍ମାର୍ଗମିୟଂ ତତୋଽପି
ଲେଖ୍ୟଂ ତମସ୍ତତ୍ର ସିତାନ୍ତଯୋଗଃ ।
ନିମୀଳନସ୍ଥାନମିନସ୍ୟ ଚ ସ୍ୟା-
ଦୁନ୍ମୀଳନଂ ମୋକ୍ଷପଥେଽତ୍ରବୃତ୍ତାତ୍ ।୨୯।

ଗ୍ରାହ୍ୟ ଓ ଗ୍ରାହକ ବିମ୍ବଯୋଗାର୍ଦ୍ଧ ଅଙ୍ଗୁଳରୁ ଇଷ୍ଟଗ୍ରାସ ଅଙ୍ଗୁଳ ବାଦ ଦିଅ । ଅବଶେଷ ଯାହା ରହିବ ତେତିକ ଅଙ୍ଗୁଳର ଖଣ୍ଡିଏ କାଠି ଗ୍ରାହ୍ୟବିମ୍ବ କେନ୍ଦ୍ରରୁ ସ୍ପାର୍ଶିକ ଇଷ୍ଟରେ ସ୍ପର୍ଶ ମାର୍ଗାଭିମୁଖରେ ଏବଂ ମୌକ୍ଷିକ ଇଷ୍ଟରେ ମୋକ୍ଷ ମାର୍ଗ ଅଭିମୁଖରେ ରଖିବାକୁ ହେବ । ଏହି ଶଳାକା (ରେଖା) ଗ୍ରାହ୍ୟମାର୍ଗକୁ ଯେଉଁଠାରେ ସ୍ପର୍ଶ କରିବ ସେହି ବିନ୍ଦୁକୁ କେନ୍ଦ୍ର କରି ଗ୍ରାହକ ବିମ୍ବାର୍ଦ୍ଧରେ ଗ୍ରାହକବିମ୍ବ ଲେଖିବ । ଏହି ବିମ୍ବ ଗ୍ରାହ୍ୟବିମ୍ବକୁ ଯେତିକ ଘୋଡ଼ାଇ ପାରିବ ତେତିକ ଇଷ୍ଟଗ୍ରାସ ବୋଲି ଜାଣିବାକୁ ହେବ ।

ପୁଣି ଗ୍ରାହ୍ୟ ଓ ଗ୍ରାହକ ବିମ୍ବର ଅନ୍ତର କରି ତାହାର ଅର୍ଦ୍ଧ ପରିମାଣର ସରଳକାଠିକୁ ଚନ୍ଦ୍ରଗ୍ରହଣରେ ଚନ୍ଦ୍ରବିମ୍ବ କେନ୍ଦ୍ରରୁ ଓ ସୂର୍ଯ୍ୟଗ୍ରହଣରେ ସୂର୍ଯ୍ୟବିମ୍ବ କେନ୍ଦ୍ରରୁ ସ୍ପର୍ଶ ଦିଗରେ ଦେବ । ଏହି ଶଳକା ଯେଉଁଠାରେ ଗ୍ରାହକମାର୍ଗକୁ ସ୍ପର୍ଶ କରିବ ତାକୁ କେନ୍ଦ୍ର କରି ତମୋବିମ୍ବ ଲେଖିବ । ସେହିଠାରେ ହିଁ ଶୁଭ୍ର ଓ ଆଲୋକ ଯୋଗ ହେବ । ଏହାହିଁ ଗ୍ରାହ୍ୟ ଓ ଗ୍ରାହକ-ବିମ୍ବପ୍ରାନ୍ତଯୋଗ ବା ନିମୀଳନର ପ୍ରାରମ୍ଭ ସ୍ଥାନ । ମୋକ୍ଷ ବେଳେ ଠିକ୍ ଏହିପରି କରିବାରେ ଉନ୍ମୀଳନ ସ୍ଥାନ ହୋଇପାରିବ ।

ମଧ୍ୟଗ୍ରହେ ସ୍ପଷ୍ଟତମେଽଥବା ଯା
କେନ୍ଦ୍ରସ୍ପୃଗୁକ୍ତା ବଳନୋତ୍ଥରେଖା ।
ତତ୍ପାର୍ଶ୍ୱଗାନ୍ମଧ୍ୟଶରାଗ୍ରତୋଽନ୍ୟାଂ
ତାବନ୍ମିତାଂ ନ୍ୟସ୍ୟ ତଦଗ୍ରଯୁଗ୍ମାତ୍ ।୩୦।

ତତ୍ପାର୍ଶ୍ୱସିଦ୍ଧୋଦଗବାକ୍ପ୍ରଦେଶେ
ସ୍ୱାକ୍ଷଜ୍ୟକାଷ୍ଟିଲବାଙ୍ଗୁଳାନ୍ତେ ।
ସୁଧାଂଶୁ ସୂର୍ଯ୍ୟଗ୍ରହୟୋଃ କ୍ରମେଣ
ବିନ୍ଦୁଦ୍ୱୟଂ ମଧ୍ୟଶରାଗ୍ରକେ ଚ ।୩୧।

ଦତ୍ତ୍ୱାନ୍ୟମେତତ୍ତ୍ରୟଭେଦବୃତ୍ତଂ
ବିଲିଖ୍ୟ ତସ୍ମିନ୍ନିହିତସ୍ୱମଧ୍ୟମ୍ ।
ତମଃଶଳାକାବଳୟାଦକ୍ଳୃପ୍ତଂ
ଚନ୍ଦ୍ରଗ୍ରହେ ପୂର୍ବଦଶଃ ପ୍ରକଳ୍ପ୍ୟ ।୩୨।

ସୂର୍ଯ୍ୟଗ୍ରହେ ପଶ୍ଚିମଦକ୍ ପ୍ରଦେଶାତ୍
ସ୍ପର୍ଶୋଦୟୌ ଗ୍ରାହ୍ୟଦଶାସୁ ଦୃଶ୍ୟାଃ ।
ନାନ୍ୟେଷ୍ୟତେ ସ୍ପାର୍ଶିକମୌକ୍ଷିକେଷୁ
ନ ବା ତଦୀୟେ ବଳନେ ପ୍ରୟାସଃ ।୩୩।

କିନ୍ତ୍ୱର୍କ ସୂର୍ଯ୍ୟଗ୍ରହଣେ ଗୁଣାପ୍ତ-
ଲିପ୍ତାଙ୍ଗୁଳା ଯେ ତମ ଆଶୁଗାର୍କାଃ ।
ତେ ଦୃକ୍ସ୍ଥିତାଃ ଶଙ୍କୁହତାଃ ଖଖାବ୍ଧି-
ବେଦୋଦ୍ଧୃତା ଲବ୍ଧଯୁତା ବଧେୟାଃ ।୩୪।

ଅନ୍ୟ ଉପାୟରେ ସ୍ପର୍ଶ ଆଦିର ପରିଲେଖ କିପରି କରାଯାଇପାରେ ତାହା ଏଠାରେ କୁହାଯାଉଅଛି—

ଦ୍ୱିତୀୟ ମଧ୍ୟଗ୍ରହ ପରିଲେଖରେ "ପଞ୍ଚାଙ୍ଗୁଳାନ୍ତେ" ଇତ୍ୟାଦି ଶ୍ଳୋକରେ ଯେଉଁ ରେଖା କରାଯାଇଅଛି, ତାହାର ଗୋଟିଏ ପାଖରେ ଥିବା ମଧ୍ୟଶରାଗ୍ର ବିନ୍ଦୁରୁ ପୁଣି ସେତିକି ପରିମାଣରେ ଅନ୍ୟ ଗୋଟିଏ ରେଖା କରି ତାର ଦୁଇ ଅଗ୍ରବିନ୍ଦୁରୁ ସ୍ୱଦେଶର ଯେତେ ଅକ୍ଷାଂଶଜ୍ୟା ତାହାର ୬° ଭାଗ ସମାନ ଅଙ୍ଗୁଳ ନେଇ ଚନ୍ଦ୍ରଗ୍ରହଣରେ ଯେଉଁ ରେଖାକୁ

ଉତ୍ତରପାର୍ଶ୍ୱରେ ଓ ସୂର୍ଯ୍ୟଗ୍ରହଣରେ ତାହାର ଦକ୍ଷିଣପାର୍ଶ୍ୱରେ ବିନ୍ଦୁ ଦିଅ । ଏ ଦୁଇ ବିନ୍ଦୁ ଓ ମଧ୍ୟଶରର ଅଗ୍ରବିନ୍ଦୁ ଏପରି ତିନି ବିନ୍ଦୁକୁ ନେଇ ଯେଉଁ ବୃତ୍ତଖଣ୍ଡ ଅଙ୍କିତ ହେବ ତାହାହିଁ ଗ୍ରାହକମାର୍ଗ । ଏହି ମାର୍ଗରେ ଗ୍ରାହକକେନ୍ଦ୍ର ରହିବ । ଏହି ବିନ୍ଦୁରୁ ଗ୍ରାହ୍ୟଗ୍ରାହକ କେନ୍ଦ୍ରାନ୍ତର ତୁଲ୍ୟ କାଠି (ରେଖା) ଧରି ବଳୟ ଆଦି ରଚନା କଲେ ସବୁ ସ୍ଥାନ ଦେଖା ପଡ଼ିବ । ଅର୍ଥାତ୍ ସ୍ପର୍ଶ ଆଦି କାଳର କେନ୍ଦ୍ରାନ୍ତର ସମାନ କାଠି ମଧ୍ୟବିନ୍ଦୁରୁ ଦେଲେ ତାହା ଗ୍ରାହକମାର୍ଗକୁ ଯେଉଁଠି କାଟିବ ସେଠାରେ ଗ୍ରାହକବିମ୍ବ ଲେଖ । ଏହାକୁ ଚନ୍ଦ୍ରଗ୍ରହଣରେ ପୂର୍ବଦିଗରୁ ଏବଂ ସୂର୍ଯ୍ୟଗ୍ରହଣରେ ପଶ୍ଚିମ ଦିଗରୁ ଖସାଇ ନେବାକୁ ହେବ । ଏହା କଲେ ଗ୍ରାହ୍ୟବିମ୍ବର ଦିଗ ଅନୁସାରେ ସ୍ପର୍ଶ ଓ ସମ୍ମୀଳନ ଆଦି ସୁବିଧାରେ ଦେଖି ହେବ । ଏଠାରେ ସ୍ପର୍ଶ ଆଦି କାଳିକ ଶର ବା ବଳନର ଆବଶ୍ୟକତା ନାହିଁ ।

ଏପରି ଭାବରେ ସୂର୍ଯ୍ୟ ଗ୍ରହଣ ପରିଲେଖ ଲେଖିବା ବେଳେ ତାହାର ବିମ୍ବୀୟ ଶରର ନ୍ଲୁ କୁ ୨ ଯାଗାରେ ରଖି ଗୋଟିଏ ଯାଗାରେ ତାକୁ ତତ୍କାଳୀନ ରବି ଶଙ୍କୁରେ ଗୁଣି ୪୨୦୦ ଭାଗ ଦେଲେ ଯାହା ହେବ ତାକୁ ଅନ୍ୟ ସ୍ଥାନରେ ଥିବା ନ୍ଲୁରେ ମିଶାଇବାକୁ ହେବ ।

> ଅଥେଷ୍ଟକାଳେ ଫଳକେ ଗ୍ରହୌ ତୌ
> ପ୍ରାକ୍ ପଶ୍ଚିମବ୍ୟତ୍ୟୟତୋ ବିଲେଖ୍ୟ
> ବେଳାନ୍ତମାବାନ୍ଧ୍ୟ ଖମୁନ୍ନମଯ୍ୟ
> ପ୍ରଦର୍ଶନୀୟୌ ନଭସୀବ ସାକ୍ଷାତ୍ । ୩୪ ।

ଅଭୀଷ୍ଟ ସମୟରେ ଗୋଟିଏ ଫଳକ (କାଠ ପଟା ଆଦି) ରେ ଉଭୟ ଚନ୍ଦ୍ର ଓ ସୂର୍ଯ୍ୟ-ଗ୍ରହଣ ଲେଖିବ । ମାତ୍ର ଏ ଲେଖାରେ ଦିଗ ବଦଳାଇବାକୁ ହେବ । ପୂର୍ବ ଦିଗର କଥା ପଶ୍ଚିମରେ ଏବଂ ପଶ୍ଚିମ ଦିଗର କଥା ପୂର୍ବ ଦିଗରେ ଲେଖିବାକୁ ହେବ । ସମୟାନୁକ୍ରମେ ଏହି ଫଳକକୁ ଉପରକୁ ଧରି ନିର୍ଦ୍ଦିଷ୍ଟ ଗ୍ରହଣ ଏହିପରି ଦେଖାଯିବ ବୋଲି ଲୋକଙ୍କୁ ଦେଖାଇବାକୁ ହେବ ।

> ଯଦ୍ଭ୍ୟାହରଦ୍ଗ୍ରହଣପାନ୍ ସଦସତ୍ ଫଳାୟ
> ବର୍ଣ୍ଣାନ୍ ବରାହମିହିରୋ ନିଜସଂହିତାୟାମ୍ ।
> ପର୍ବାଣ୍ୟକାଳଭବମାହୁରଦୋଽତ୍ର ନୋକ୍ତଂ ଯତ୍
> ପ୍ରାକ୍ତ୍ରୋମୟୋକ୍ତିତଦହାନୁପଯୋଗିତ୍ୱାତ୍ । ୩୭ ।

ବରାହମିହିରାଚାର୍ଯ୍ୟ ନିଜ ଗ୍ରନ୍ଥ ବୃହତ୍‌ସଂହିତାରେ ଗ୍ରହଣର ପଥ, ଗ୍ରହଣର ବର୍ଣ୍ଣ ଓ ଅକାଳ ବାତ ପାତ ଏବଂ ଏମାନଙ୍କର ଫଳ ବିଷୟରେ ଅନେକ କଥା ଲେଖିଛନ୍ତି । ପ୍ରାଚୀନାଚାର୍ଯ୍ୟମାନେ ମଧ୍ୟ ଏହିପରି ଅନେକ କଥା ବି ଲେଖିଛନ୍ତି । ଗଣିତ କଲାବେଳେ ଏ ସବୁର ସେପରି କିଛି ଉପଯୋଗିତା ନ ଥିବାରୁ ମୁଁ ଏ ସବୁ ଏଠାରେ କହୁନାହିଁ—ଛାଡ଼ି ଦେଇଛି ।

ହସନ୍ତମତସୁନ୍ଦରାଧର ସୁବୃତ୍ତନେତ୍ରଶ୍ରିୟା<br>
ବସନ୍ତଶିଶୁଚଣ୍ଡ ରଶ୍ମିଶରଦଖଣ୍ଡ ପାଣ୍ଡୁଦ୍ୟୁତୀ ।<br>
ବସନ୍ତମପିତାଚଳେ ବିବିଧଦେଶଲୋକାକୁଳେ<br>
ଦଶନ୍ତମଭୟଂ ବିଭୁଂ ଭୁବନମଙ୍ଗଳାକ୍ଷଂ ଭଜେ ।୩୭।

ମୁଁ ପ୍ରଭୁ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଅଛି । ସେ ନାନା ଦେଶାଗତ ଯାତ୍ରୀ ଗହଳ ଭିତରେ ନୀଳାଚଳରେ ରହି ଅଭୟ ଦାନ କରୁଅଛନ୍ତି । ଜଗତର ମଙ୍ଗଳ କରିବା ଉଦ୍ଦେଶ୍ୟରେ ତାଙ୍କର ବରାବର ଦୃଷ୍ଟି ଅଛି । ତାଙ୍କର ଲାଲ ଟହ ଟହ ସୁନ୍ଦର ଅଧର ଓ ଅତି ଗୋଲ ଦୁଇ ଆଖିର ଶୋଭା ଯଥାକ୍ରମେ ବସନ୍ତର ପ୍ରାତଃସୂର୍ଯ୍ୟ ଓ ଶରତକାଳୀନ ପୂର୍ଣ୍ଣ-ଚନ୍ଦ୍ରକୁ ପରାସ୍ତ କରୁଅଛନ୍ତି । (ଜଗନ୍ନାଥଙ୍କ ଆଖିର ଉପର ଅଂଶ ଅତି ଧବଳ ଦେଖାଯାଏ ।)

ଇତ୍ଥଂ ଉତ୍କଳୋଦ୍ଭବ ଜଣ୍ଟପାଳକୁଳପ୍ରସୂତ—<br>
ଶ୍ରୀ ଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।<br>
ସିଦ୍ଧାନ୍ତଦର୍ପଣ ଉପାହୃତ ବାଳବୋଧେ<br>
ସଚ୍ଛେଦକୋ ନିରଗମଦ୍ଦଶମଃ ପ୍ରକାଶଃ । ୩୮ ।

ଇତି ଶ୍ରୀ ଚନ୍ଦ୍ରଶେଖରସିଂହ କୃତୌ ସିଦ୍ଧାନ୍ତ ଦର୍ପଣେ<br>
ତ୍ରିପ୍ରଶ୍ନାଧିକାରେ ପରିଲେଖ ବର୍ଣ୍ଣନୋ<br>
ନାମ ଦଶମଃ ପ୍ରକାଶଃ ।

ଏଠାରେ ପରିଲେଖ ବିଷୟକ ୧୦ମ ପ୍ରକାଶ ଶେଷ ହେଲା ।

## ଏକାଦଶଃ ପ୍ରକାଶଃ

### ଗ୍ରହଯୁଦ୍ଧବର୍ଣ୍ଣନମ୍

ସ୍ୱ ସ୍ୱ କକ୍ଷାସୁ ଚରତାଂ ଖେଚରାଣାଂ ଦବୀୟସାମ୍
ଲୋକୈର୍ଦୃଶ୍ୟାଯୁତ ଯୁଦ୍ଧମୁଚ୍ୟତେସଦସଦ୍ ଫଳାତ୍ । ୧ ।

ସ୍ୱ—ତାରା ଗ୍ରହାଣାମନ୍ୟୋଽନ୍ୟଂ ସ୍ୟାତାଂ ଯୁଦ୍ଧସମାଗମୌ
ସମାଗମଃ ଶଶାଙ୍କେନ ସୂର୍ଯ୍ୟେଣାସ୍ତମୟଃ ସହ । ଇତ । ୨ ।

ପୃଥିବୀଠାରୁ ଅତି ଦୂରରେ ଉର୍ଦ୍ଧ୍ୱ ଧିର ଭାବରେ ପାଞ୍ଚ ତାରା ଗ୍ରହ ନିଜ ନିଜ କକ୍ଷା ବୃତ୍ତରେ ଗତି କରନ୍ତି । ଏ ଗତି ମାର୍ଗୀ ବା ବକ୍ରୀ ହୋଇଥାଏ । ତଥାପି ଏମାନେ ଯୋଡ଼ ହୋଇଗଲା ପରି ବେଳେ ବେଳେ ଦେଖାଯାନ୍ତି ଏବଂ ଏହି ଯୋଗକୁହିଁ ଗ୍ରହ ଯୁଦ୍ଧ କୁହାଯାଏ । ଏହି ପାଞ୍ଚ ତାରା ଗ୍ରହରୁ କୌଣସି ଗୋଟିକର ଚନ୍ଦ୍ର ସହିତ ଏହିପରି ଯୋଗ ଦେଖାଗଲେ ତାଙ୍କୁ ସମାଗମ କୁହାଯାଏ । ଏହିମାନଙ୍କ ଭିତରୁ କେହି ସୂର୍ଯ୍ୟ ସହିତ ରହିଲେ ସେ ସୂର୍ଯ୍ୟ କିରଣରେ ଆଉ ଦେଖା ନଯାଇ ଅସ୍ତମିତ ହୋଇଯାଏ । ଏହି ଯୋଡ଼ ହେବାଠାକୁ ଉକ୍ତ ଗ୍ରହ ଅସ୍ତ ହେଲା ବୋଲି କୁହାଯିବ ।

ଗ୍ରହୌସମକଳୌ କୃତ୍ୱାଧ୍ରୁବ ସୂଏ ସମୌତତଃ
ସ୍ୱଦେଶେଯାମ୍ୟ ସୌମ୍ୟସ୍ଥୌ ବିମ୍ବାଦ୍ୟଂ ସାଧୟେତ୍ତତଃ । ୩ ।

ଯୋଡ଼ ହେବାକୁ ଥିବା ଦୁଇ ଗ୍ରହକୁ ରାଶି ଅଂଶ ଓ କଳାଦିରେ ସମାନ କରି (କଦମ୍ବ ପୋତ ବୃତ୍ତୀୟ) ପୁଣି ଧ୍ରୁବ ପ୍ରୋତ ବୃତ୍ତୀୟ କରିବ (ଅୟନ ଦୃକ୍‌କର୍ମ ଦ୍ୱାରା) । ତାପରେ ଉଭୟ ଗ୍ରହର ବିମ୍ବଶର ଓ ଲମ୍ବନ ଆଦି ଆଣିବ ।

ସ୍ୱ—ସୂର୍ଯ୍ୟେ ମନ୍ଦାଧିକେଽତୀତଃ ସଂଯୋଗୋ ଭବିତାନ୍ୟଥା ।
ଦ୍ୱୟୋଃ ପ୍ରାଗ୍‌ଯାୟିନୋରେବଂ ବକ୍ରିଣୋସ୍ତୁ ବିପର୍ଯ୍ୟୟାତ୍ । ୪ ।

ଅବକ୍ରାଦଧିକେ ବକ୍ରିଣ୍ୟେଷ୍ୟୋଽବକ୍ରେଽଧିକେ ଗତଃ
ମନ୍ଦଶୀଘ୍ରଚୈୟୋସ୍ତର୍କ୍ୟା ବକ୍ରସଂଯୋଗଂଚୈଷ୍ୟତା । ୫ ।

ସୂର୍ଯ୍ୟ ସିଦ୍ଧାନ୍ତରେ ଅଛି ଯେ—ଶୀଘ୍ରଗତିକ ଗ୍ରହ ମନ୍ଦଗତିକ-ଗ୍ରହଠାରୁ ଅଧିକ ହେଲେ (ରାଶି ଅଂଶ କଳାଦିରେ) ଉଭୟ ଗ୍ରହ ଯୋଗ ହୋଇଯାଇଅଛି ବୋଲି ଜାଣିବ । ଅନ୍ୟଥା ଏ ଯୋଗ (ଯୁଦ୍ଧ) ହେବ ବୋଲି ବୁଝାଯିବ । ଏ ନିୟମ କିନ୍ତୁ ଉଭୟ ଗ୍ରହ ପୂର୍ବକୁ ଯାଉଥିଲେ ହେବ । ଏ ଉଭୟେ ବକ୍ରୀ ହୋଇଥିବା ଅବସ୍ଥାରେ ଶୀଘ୍ରଗତି ଗ୍ରହ ମନ୍ଦଗତି ଗ୍ରହଠାରୁ ଅଧିକ ଥିଲେ ଯୋଗ ହେବ ଓ ନ୍ୟୂନ ଥିଲେ ଯୋଗ ହୋଇ ଯାଇଛି ବୋଲି ଜାଣିବ ।

ମନ୍ଦ ଓ ଶୀଘ୍ର ଗତି ଗ୍ରହ ମଧ୍ୟରେ ଗୋଟିଏ ବକ୍ରୀ ଓ ଅନ୍ୟଟି ମାର୍ଗୀ ଥିଲେ ମାର୍ଗୀଠାରୁ ବକ୍ରୀ ଗ୍ରହ (ମନ୍ଦଗତି ହେଉ ଶୀଘ୍ରଗତି ହେଉ) ଅଧିକ ହେଲେ ଯୋଗ ହେବା କଥା, କିନ୍ତୁ କମ୍ ଥିଲେ ଯୋଗ ହୋଇ ଯାଇଛି ବୋଲି ବୁଝିବ ।

ଗ୍ରହାନ୍ତରକଳାଃ ସ୍ୱ ସ୍ୱ ଭୁକ୍ତିଲପ୍ତା ସମାହତାଃ
ଭୁକ୍ତ୍ୟନ୍ତରେଣ ବିଭଜେଦନୁଲୋମ ବିଲୋମୟୋଃ । ୬ ।

ଦ୍ୱୟୋ ର୍ବକ୍ରିଣ୍ୟଥୈ-କସ୍ମିନ୍‌ଭୁକ୍ତିଯୋଗେନ ତାଭଜେତ୍
ଲବ୍ଧଂ ଲପ୍ତାଦିକଂ ଶୋଧ୍ୟଂ ଗତେଦେୟଂ ଭବିଷ୍ୟତି । ୭ ।

ବିପର୍ଯ୍ୟୟାଦ୍‌ବକ୍ରଗତ୍ୟୋରେକସ୍ମିଂସ୍ତୁ ଧନକ୍ଷୟୌ
ସମଲପ୍ତୌ ଭବେତାଂ ତୌ ଗ୍ରହୌଭଗଣସଂସ୍ଥିତୌ । ୮ ।

ବିବରଂତଦ୍‌ବଦୁଦ୍ଧୃତ୍ୟ ଦିନାଦି ଫଳମିଷ୍ୟତେ । ଇତ ।
ଗତଗମ୍ୟଂ ତତଃପ୍ରାଗ୍‌ବତ୍ ସ୍ୟାତାଂସମକଳୌ ସ୍ଥିରୌ । ୯ ।

ଯେଉଁ ଦୁଇଟି ଗ୍ରହର ଯୋଗ ବା ଯୁଦ୍ଧ କେବେ ହୋଇଛି ବା ହେବ ଏହା ଜାଣିବାର ଇଚ୍ଛା ସେହି ଦୁଇ ଗ୍ରହର ଇଷ୍ଟ କାଳରେ ଅନ୍ତର କରିବ । ତାକୁ କଳା କରି ନିଜ ନିଜ ସ୍ପଷ୍ଟ ଗତି କଳାରେ ପୃଥକ୍ ପୃଥକ୍ ଗୁଣିବ । ଉଭୟ ଗ୍ରହମାର୍ଗୀ ବା ବକ୍ରୀ ଥିଲେ ଉଭୟଙ୍କର ଗତ୍ୟନ୍ତର କଳାରେ ତାକୁ ପୃଥକ୍ ପୃଥକ୍ ହରିବ । ଉଭୟ ଗ୍ରହ ମଧ୍ୟରୁ ଗୋଟିଏ ବକ୍ରୀଥିଲେ ଉଭୟ ଗତି ଯୋଗରେ ତାକୁ ହରିବ । ଉଭୟ ସ୍ଥିତିରେ ଯେଉଁ କଳାଦି ଫଳ ଆସିବ ତାକୁ ଯୋଗ (ଯୁଦ୍ଧ) ଗତ ହୋଇଥିଲେ ଉଭୟ ଗ୍ରହରୁ ବାଦ ଦେବ। ଯୋଗ ଆଗକୁ ହେବାକୁ ଥିଲେ

ଉଭୟ ଗ୍ରହରେ ଏହି ଫଳକୁ ଯୋଗ କରିବାକୁ ହେବ । ଉଭୟ ଗ୍ରହ ବକ୍ରୀ ଥିଲେ ବିପରୀତ ସଂସ୍କାର କରିବାକୁ ହେବ । (ଅର୍ଥାତ୍ ଯୋଗ ଗତ ହୋଇଥିଲେ ଯୋଗ ଓ ଯୋଗ ହେବାକୁ ଥିଲେ ଅନ୍ତର କରିବାକୁ ହେବ) ଏହିପରି ସେହି ଉଭୟ ଗ୍ରହ ଯୋଗ ସମୟରେ କଳାଦିରେ ସମାନ ହୋଇଯିବ ।

ଉଭୟ ଗ୍ରହାନ୍ତର କଳାକୁ ଗତ୍ୟନ୍ତର ବା ଗତି ଯୋଗରେ ହରି ଗତଗମ୍ୟ (ଯଥାକ୍ରମେ) ଦିନାଦି ଫଳ ଜଣାଯାଇ ପାରେ । ଥରେ ଏପରି ଚାଳନ ଦେବାଦ୍ୱାରା ଯଦି ଉଭୟ ଗ୍ରହ କଳାଦିରେ (ରାଶି, ଅଂଶ, କଳା) ସମାନ ହୁଅନ୍ତି, ତାହାହେଲେ ସେହିପରି ଚାଳନ ଦେବାକୁ ହେବ—ଯେପରି ଉଭୟେ ସମାନ ହୋଇଯାଇ ପାରିବେ ।

ସୂ—କୁଜାର୍କିଗୁରୁପାତାନାଂ ଗ୍ରହବଚ୍ଛୀଘ୍ରଜଂ ଫଳଂ
ବାମଂ ତୃତୀୟକଂ ମାନ୍ଦ୍ୟଂ ବୁଧଭାର୍ଗବପାତୟୋଃ । ୧୦ ।

ସ୍ୱପାତୋନାଦ୍ ଗ୍ରହାଜ୍ଜୀବା ଶୀଘ୍ରାଦ୍ଭୃଗୁଜସୌମ୍ୟୟୋଃ । ଇତ ।
ମଧ୍ୟେଷ୍ୱମ୍ନ୍ୟନ୍ତ୍ୟକର୍ଣ୍ଣାପ୍ତା ବିକ୍ଷେପାଃ ସ୍ୟୁଃ ସ୍ଫୁଟାଃ ସ୍ୱକାଃ । ୧୧ ।

ସ୍ଥୂଳୋଽୟଂ ଶରସଂସ୍କାରଃ ସିଦ୍ଧାନ୍ତୋକ୍ତେରଲେଖି ଯଃ
ମୟୋଚ୍ୟନ୍ତେକୁଜାଦୀନାଂ ଦୃକ୍ସିଦ୍ଧୌ ସୂକ୍ଷ୍ମସାୟକାଃ । ୧୨ ।

ମଧ୍ୟାର୍କ ସ୍ଥାନତୋ ମନ୍ଦସ୍ଫୁଟାନାଂ ଦ୍ୟୁଷଦାଂ ଯତଃ
ବିକ୍ଷେପାଃ ସ୍ୟୁଃ ସ୍ଫୁଟା ଭୂମି ଗୋଳତଃ ଶୀତଗୋରିବ । ୧୩ ।

ମଙ୍ଗଳ, ବୃହସ୍ପତି ଓ ଶନିଙ୍କପାତରେ ସେମାନଙ୍କୁ ସ୍ଫୁଟ କଲାବେଳେ ଯେଉଁ ୪ର୍ଥ କର୍ମର ଶୀଘ୍ରଫଳ ଆସେ ତାକୁ ଗ୍ରହରେ ଯେପରି ଧନ ବା ଋଣ କରାଯାଏ ସେପରି ସଂସ୍କାର କରିବ ।

ବୁଧ ଓ ଶୁକ୍ର ଗ୍ରହର ସ୍ଫୁଟ ବେଳେ (୩ୟ କର୍ମ) ବେଳେ ଯେଉଁ ମନ୍ଦ ଫଳ ତାକୁ ଗ୍ରହରେ ଯୋଗ କରିଥିଲେ ପାତରେ ଋଣ କରିବ ଏବଂ ଗ୍ରହରେ ଋଣ କରିଥିଲେ ପାତରେ ଯୋଗ କରିବ ।

ଏହାପରେ ଏ ମାନଙ୍କ ସ୍ଫୁଟ ରାଶ୍ୟାଦିରୁ ନିଜ ନିଜ ପାତ ବାଦ ଦେବ । ଯାହା ରହିବ ତାର ଜ୍ୟା କଲେ ତାହା ବିକ୍ଷେପ କେନ୍ଦ୍ର ଜ୍ୟା ହେବ । ଏହି ବିକ୍ଷେପ କେନ୍ଦ୍ର ଜ୍ୟାକୁ ସ୍ୱ ସ୍ୱ ମଧ୍ୟ ବିକ୍ଷେପରେ ଗୁଣି ଚତୁର୍ଥ ଶୀଘ୍ର କର୍ଣ୍ଣରେ ଭାଗ କଲେ ଫଳ ସ୍ଫୁଟଶର ହୁଏ । ଏହି ଶର ସଂସ୍କାର କଥା ମୁଁ ପ୍ରାଚୀନ ସିଦ୍ଧାନ୍ତ ଅନୁରୂପ ଲେଖିଗଲି । ଏଣୁ ଏହା ସ୍ଥୂଳ ବୋଲି ମୋର ଧାରଣା । ବର୍ତ୍ତମାନ ମୋର ଅନୁଭବରେ ଯେଉଁ ଶର ସ୍ଥିର ଓ ଦୃକ୍‌ସିଦ୍ଧ ତାହା କହୁଅଛି । ଆମେ ରହୁଥିବା ପୃଥିବୀ ଠାରୁ ଯେପରି ଚନ୍ଦ୍ରର ସ୍ଫୁଟଶର ହୋଇଥାଏ, ଠିକ୍ ସେହିପରି ମଧ୍ୟମ ରବିଠାରୁ ମନ୍ଦସ୍ଫୁଟ ଗ୍ରହମାନଙ୍କର ସ୍ଫୁଟଶର ହୋଇଥାଏ ।

ତନ୍ମଧ୍ୟାଃ ଭୁଜମନ୍ଦେଜ୍ୟାଃ ଶୋଧ୍ୟାଃ ସ୍ୱସ୍ପଷ୍ଟମନ୍ଦତଃ
ତତୋଽଖିଳୈ ର୍ମାନ୍ଦ୍ୟଫଳୈଃ ପ୍ରାଗ୍‌ବଦ୍ କାର୍ଯ୍ୟା ଯୁତୋନତାଃ ।୧୪।
ବୁଧସ୍ୟ ସ୍ଫୁଟଶୀଘ୍ରୋନସ୍ଫୁଟମନ୍ଦାତ୍ ପରୈଚକମ୍
ଫଳଂ କୃତ୍ୱା ନ ଯୁକ୍ତେନ ସ୍ଫୁଟଦ୍ରାକ୍‌ଶରଶୀଘ୍ରକଃ ।୧୫।

ସ୍ୟାଦ୍ ସିତସ୍ୟ ଯଥାନୀତଃ ଶରଶୀଘ୍ରଶ୍ଚଳୋଚ୍ଚକଃ
ଶର ଶୀଘ୍ରା ବମାବୁକ୍ତା ମନ୍ଦସ୍ପଷ୍ଟା ସ୍ୱୟଂଶ୍ଚ ତେ ।୧୬।
ସ୍ୱପାତୈଃ ଶୋଧିତା ଶ୍ଚେତ୍‌ସ୍ୟୁଃ ପାତୋନ ଗ୍ରହସଂଜ୍ଞକାଃ
ତଦ୍‌ବାହୁ ଶରସିଦ୍ଧ୍ୟର୍ଥଂ ପ୍ରାଗୁକ୍ତା ସୌମ୍ୟଯାମ୍ୟତା ।୧୭।

କଳାତ୍ମକୋ ମନ୍ଦକର୍ଣ୍ଣଃ ସାଧ୍ୟଃ ପ୍ରାଗ୍‌ବତ୍ତୃତୀୟକଃ
ତତ୍ତ୍ରିଜ୍ୟାନ୍ତର ମଭ୍ୟସ୍ତଂ ତ୍ରିଭଜ୍ୟା ଭୁର୍ଯ୍ୟ କର୍ଣ୍ଣୟୋଃ ।୧୮।
ବବରେଣ ତ୍ରିଜୀବାପ୍ତଂ କ୍ଷେପକର୍ଣ୍ଣାନ୍ତରଂ ଭବେତ୍
ତ୍ରିଜ୍ୟାଧିକେଽନ୍ତ୍ୟ ଶ୍ରବଣେ ଯଦ ତ୍ରିଗୁଣତୋଽଧିକଃ ।୧୯।

ମନ୍ଦକର୍ଣ୍ଣ ସ୍ତଦାତ୍ରିଜ୍ୟା କ୍ଷେପକର୍ଣ୍ଣାନ୍ତରେଣତା
ଯଦ୍ୟଳ୍ପସ୍ତ୍ରିଗୁଣାନ୍ମନ୍ଦକର୍ଣ୍ଣ-ସ୍ତତ୍ତ୍ରିଭ ମୌର୍ବିକା ।୨୦।
କ୍ଷେପକର୍ଣ୍ଣାନ୍ତରାଢ଼୍ୟା ସ୍ୟାତ୍ କର୍ମଯୋଗ୍ୟା ଶରଶ୍ରୁତଃ
ତ୍ରିଜ୍ୟାଳ୍ପେ ଭୁର୍ଯ୍ୟକର୍ଣ୍ଣେ ତୁ ମନ୍ଦକର୍ଣ୍ଣୋ ଯଦାଧିକଃ ।୨୧।

ତ୍ରିଗୁଣାତ୍ତଦ୍ଭୁଜେଜ୍ୟାର୍କିକ୍ଷେପକର୍ଣ୍ଣାନ୍ତରାନ ତା
ତ୍ରିଜ୍ୟାଅଙ୍କସିତକ୍ଷେପ କର୍ଣ୍ଣାନ୍ତର ସମନ୍ୱିତା ।୨୨।
ମନ୍ଦଶ୍ରୁତ ରଥୋନଶ୍ଚେ ତ୍ରିଜ୍ୟାତୋ ମନ୍ଦକର୍ଣ୍ଣକଃ
ତଦାଭୁଜକର୍ଯଶୌରିଣାଂ କ୍ଷେପକର୍ଣ୍ଣାନ୍ତରେଣକ୍ଷିତା ।୨୩।
ତ୍ରିଜ୍ୟାଙ୍କ ଦୈତ୍ୟ ଗୁରୋସ୍ତୁ ତତ୍‌କର୍ଣ୍ଣାନ୍ତର ବର୍ଜିତା
ମନ୍ଦଶ୍ରୁତ ର୍ଭବେତ୍ କର୍ଣ୍ଣଯୋଗ୍ୟା ସୈବଶର ଶ୍ରୁତଃ ।୨୪।

ପ୍ରାଗ୍‌ବଦ୍ ପ ତୋନଖେଟଜ୍ୟା ମଧ୍ୟ ବକ୍ଷେପତାଡ଼ିତା
ଶରଶ୍ରୁତ ହୃତାଲବ୍ଧଂ ତ୍ରିଜ୍ୟାଘ୍ନାନ୍ତ୍ୟଶ୍ରବୋ ହୃତମ୍ ।୨୫।
ଭୌମାଦସ୍ଫୁଟବକ୍ଷେପଃ ସ୍ୟାଦ୍‌ଯୂକ୍ଷ୍ମ କଳକାତ୍ମକଃ
ଭୌମଜ୍ଞାନ୍ୟ ଗ୍ରହାଣାଂବା ସ୍ଥୂଳୋ ଗ୍ରାହ୍ୟୋଽଳ୍ପ ଭେଦତଃ ।୨୬।

ସେଥି ନିମନ୍ତେ ମଧ୍ୟମମଙ୍ଗଳ, ଗୁରୁ ଓ ଶନିଙ୍କୁ ନିଜ ନିଜ ସ୍ଫୁଟ ମନ୍ଦୋଚ୍ଚରୁ ବାଦ ଦେଲେ ସେମାନଙ୍କ ଶର ଆଣିବା ନିମନ୍ତେ ମନ୍ଦକେନ୍ଦ୍ର ହେବ । ଏହି କେନ୍ଦ୍ର ଯୋଗେ ସେମାନଙ୍କ ମନ୍ଦଫଳ ଆଣି ସମ୍ପୂର୍ଣ୍ଣ ମନ୍ଦଫଳ-ଫଳର ଧନ ଋଣ କ୍ରମରେ ଉକ୍ତ ମଧ୍ୟମ ଗ୍ରହରେ ଯୋଗ ବିଯୋଗ କଲେ ସେମାନେ ମଧ୍ୟଶର ଆଣିବା ନିମନ୍ତେ ମନ୍ଦସ୍ଫୁଟ ଗ୍ରହ ହେବେ ।

ବୁଧର ମନ୍ଦୋଚ୍ଚରୁ ଶୀଘ୍ରୋଚ୍ଚକୁ ବାଦ ଦେଲେ ଯାହା ହେବ ସେଥିରୁ ପରୋଚ୍ଚ ଫଳ (ପରୋଚ୍ଚ କେନ୍ଦ୍ରଫଳ) ଆଣି ଧନ, ଋଣ କ୍ରମରେ ପୁଣି ଶୀଘ୍ରୋଚ୍ଚରେ ଯୋଗ ବିଯୋଗ କଲେ ତାହା ଶର ସାଧନ ଉପଯୋଗୀ ଶୀଘ୍ର ଉଚ୍ଚ ହେବ । ଶୁକ୍ରର ଯେଉଁ ଶୀଘ୍ରୋଚ୍ଚ ଆସିଥିବ ତାହାହିଁ ତାର ଶର ନିମନ୍ତେ ଶୀଘ୍ର ଉଚ୍ଚ ହେବ ।

ବୁଧ ଓ ଶୁକ୍ରର ଏହି ଶର ଶୀଘ୍ର (ଶୀଘ୍ରୋଚ୍ଚ) ଏବଂ ପୂର୍ବାଗତ ମଙ୍ଗଳ ଆଦି ତିନି ଗ୍ରହର ମନ୍ଦସ୍ଫୁଟରୁ ସ୍ୱ ସ୍ୱ ପାତ ବିୟୋଗ କଲେ ଫଳ ସେମାନଙ୍କ ନିଜ ନିଜର ବିକ୍ଷେପ କେନ୍ଦ୍ର ହେବ । ଏହି କେନ୍ଦ୍ରର ଭୁଜର ଶରସାଧନ ନିମନ୍ତେ ଅନେକ ଉପଯୋଗିତା ଅଛି । ଚନ୍ଦ୍ରର ଶର ଆଣିବା ସମୟରେ ଏମାନଙ୍କ ଶରର ମଧ୍ୟ ଦକ୍ଷିଣ ଓ ଉତ୍ତର ଦିଗ କଥା କୁହାଯାଇଛି ।

ମଙ୍ଗଳ ଆଦି ଗ୍ରହମାନଙ୍କର ତୃତୀୟ ମନ୍ଦକର୍ଣ୍ଣ ପୂର୍ବବର୍ଣ୍ଣିତ ରୀତିରେ ଆଣିବାକୁ ହେବ । ଏହି ମନ୍ଦକର୍ଣ୍ଣ ଓ ତ୍ରିଜ୍ୟାର ଅନ୍ତରକୁ ତ୍ରିଜ୍ୟା ଏବଂ ଚତୁର୍ଥ ଶୀଘ୍ର କର୍ଣ୍ଣର ଅନ୍ତରରେ ଗୁଣି ତ୍ରିଜ୍ୟାରେ ଭାଗ ଦେଲେ ଯାହା ଫଳ ହେବ ତାକୁ କ୍ଷେପକର୍ଣ୍ଣାନ୍ତର କୁହାଯିବ । ଚତୁର୍ଥ ଶୀଘ୍ରକର୍ଣ୍ଣ ତ୍ରିଜ୍ୟାଠାରୁ ଅଧିକ ଥିବାବେଳେ ଯଦି ମନ୍ଦକର୍ଣ୍ଣ ତ୍ରିଜ୍ୟାରୁ ଅଧିକଥାଏ, ତାହା-ହେଲେ ତ୍ରିଜ୍ୟାରୁ କ୍ଷେପକର୍ଣ୍ଣାନ୍ତର ଫେଡ଼ିବାକୁ ହୁଏ । ମାତ୍ର ମନ୍ଦକର୍ଣ୍ଣ ତ୍ରିଜ୍ୟାରୁ କମ୍‌ଥିଲେ ତ୍ରିଜ୍ୟାରେ କ୍ଷେପକର୍ଣ୍ଣାନ୍ତର ଯୋଗ କରିବାକୁ ହେବ । ଫଳ ଶରକର୍ଣ୍ଣ ହେବ । କିନ୍ତୁ ଚତୁର୍ଥ ଶୀଘ୍ରକର୍ଣ୍ଣ ତ୍ରିଜ୍ୟାଠାରୁ କମ୍‌ଥିବା ବେଳେ ଯଦି ମନ୍ଦକର୍ଣ୍ଣ ତ୍ରିଜ୍ୟାରୁ ଅଧିକ ଥାଏ, ତାହାହେଲେ ତ୍ରିଜ୍ୟାରେ ମଙ୍ଗଳ, ବୃହସ୍ପତି ଓ ଶନିର କ୍ଷେପକର୍ଣ୍ଣାନ୍ତର ମିଶାଇବ । ବୁଧ ଓ ଶୁକ୍ରର କ୍ଷେପ-କର୍ଣ୍ଣାନ୍ତରକୁ କିନ୍ତୁ ତ୍ରିଜ୍ୟାରେ ନ ମିଶାଇ ମନ୍ଦକର୍ଣ୍ଣରେ ମିଶାଇବ । ତାହାହେଲେ ଏହି ପାଞ୍ଚଟି ଗ୍ରହର ଶରକର୍ଣ୍ଣ ହେବ । ଚତୁର୍ଥ ଶୀଘ୍ରକର୍ଣ୍ଣ ତ୍ରିଜ୍ୟାଠାରୁ କମ୍‌ଥିବାବେଳେ ମଧ୍ୟ ଯଦି ମନ୍ଦକର୍ଣ୍ଣ ତ୍ରିଜ୍ୟାରୁ କମ୍ ହୋଇଥାଏ, ତାହାହେଲେ ତ୍ରିଜ୍ୟାରୁ କ୍ଷେପକର୍ଣ୍ଣାନ୍ତର ବାଦଦେବ । ଏ ପରିସ୍ଥିତିରେ ବୁଧ ଓ ଶୁକ୍ରର କ୍ଷେପକର୍ଣ୍ଣାନ୍ତରକୁ ସେ ଦୁହିଁଙ୍କ ମନ୍ଦକେନ୍ଦ୍ରରୁ ବାଦ୍‌ଦେବାକୁ ହେବ । ତାହାହେଲେ ଏ ଅବସ୍ଥାରେ ସବୁ ତାରା ଗ୍ରହର ଶରକର୍ଣ୍ଣ ହେବ ।

ବର୍ତ୍ତମାନ ଗ୍ରହରୁ ପାତକୁ ବାଦ୍ ଦେଇ ବିକ୍ଷେପ କେନ୍ଦ୍ରଜ୍ୟା ଆଣିବ । ତାକୁ ମଧ୍ୟ ଶରରେ ଗୁଣି ଶର କର୍ଣ୍ଣରେ ଭାଗ ଦେଲେ ଯାହା ଫଳ ହେବ ତାକୁ ତ୍ରିଜ୍ୟାରେ ଗୁଣି ଚତୁର୍ଥ ଶୀଘ୍ର କର୍ଣ୍ଣରେ ହରିଲେ ଫଳ ମଙ୍ଗଳ ଆଦି ପାଞ୍ଚ ଗ୍ରହର ସ୍ଫୁଟଶର ହେବ । ଆଗରୁ କୁହା-ଯାଇଥିବା ସ୍ଥୂଳ ସ୍ଫୁଟଶରକୁ ମଧ୍ୟ ଏ କାର୍ଯ୍ୟରେ ଲଗାଯାଇ ପାରେ । ଏତେ ପ୍ରପଞ୍ଚ ଭିତରେ ପଶିବା ଅନାବଶ୍ୟକ । ସାମାନ୍ୟ ପ୍ରଭେଦକୁ ଛାଡ଼ି ଦିଆଯାଇପାରେ ।

ଚଳାଂଶ ସଂସ୍କୃତାନାଂ ଯା ଗ୍ରହାଣାଂ ସ ବିବେଶ୍ମନାମ୍
କ୍ରାନ୍ତିଜ୍ୟା ସା ସ୍ଫୁଟେଷୁଘ୍ନୀ ତଦ୍ଦ୍ୟୁଜ୍ୟା ପ୍ରାପ୍ତଲପ୍ତିକାଃ ।୨୭।

ଧନାର୍ଣ୍ଣାଖ୍ୟାସ୍ତଦାଢ଼୍ୟାନାଃ କ୍ରମାଦୟନ-ବାଣୟୋଃ
ଦଗ୍ଭେଦସାମ୍ୟୟୋସ୍ତେସ୍ୟୁର୍ଧ୍ରୁବ ସୂତ୍ରସମାଃ ସ୍ଫୁଟାଃ ।୨୮।

ଗ୍ରହରେ ଅୟନାଂଶ ସଂସ୍କାର କରି ସେଥିରେ ତିନି ରାଶି (୯୦°) ମିଶାଇଲେ ସବିଭ-ସାୟନ ସ୍ଫୁଟ ଗ୍ରହ ହେବ । ତାହାର କ୍ରାନ୍ତିଜ୍ୟାକୁ ଉକ୍ତ ଗ୍ରହର ସ୍ଫୁଟଶରରେ ଗୁଣି ସବିଭ-ସାୟନ ଗ୍ରହର ଦ୍ୟୁଜ୍ୟାରେ ଭାଗ ଦେଲେ ଯାହା ଲିପ୍ତାଦି ଫଳ ଆସିବ, ତାହାହିଁ ଆୟନ ଦୃକ୍‌କର୍ମ କଳା ବୋଲି ଜାଣିବ । ଗ୍ରହର ଅୟନ ଓ ଶର ଭିନ୍ନ ଦିଗର ହେଲେ ଏହି କଳାକୁ ଗ୍ରହରେ ଯୋଗ କରିବ । ଗ୍ରହର ଅୟନ ଓ ଶର ଭିନ୍ନ ଦିଗର ହେଲେ ଏହି କଳାକୁ ଗ୍ରହରେ ଯୋଗ କରିବ । ଗ୍ରହର ଅୟନ ଓ ଶରର ଦିଗ ସମାନ ହେଲେ ଏହି କଳା ଗ୍ରହରେ ବିଯୋଗ କରିବ । ତାହାହେଲେ ଗ୍ରହଦୃଷ୍ଟ ହେବ । ଅର୍ଥାତ୍ କଦମ୍ବ ପ୍ରୋତୀୟ ଗ୍ରହ ଧ୍ରୁବପ୍ରୋତ ବୃତ୍ତୀୟ ହୋଇଯିବ । ଏହାକୁହିଁ ଅୟନ ଦୃକ୍ କର୍ମ କୁହାଯାଇ ଥାଏ ।

ଇଦମାୟନ ଦୃକ୍‌କର୍ମ ତତ୍ପରସ୍କୃତୟୋର୍ଦ୍ୱୟୋଃ
ଅନ୍ତରେଣ ପୁନଃକାର୍ଯ୍ୟା ପ୍ରାଗ୍‌ବତ୍ ସମକଳୀକୃତଃ । ୨୯ ।

ତତୋଗତୈଷ୍ୟଦବସାଃ ସାଧ୍ୟାସ୍ତଦ୍ କାଳଖେଟୟୋଃ
ଅକୃତାୟନ ଦୃକ୍‌କୃତ୍ୟୋର୍ବିକ୍ଷେପାୟନ ଦୃକ୍‌କ୍ରିୟେ । ୩୦ ।

ଯୁଦ୍ଧ ହେବାକୁ ଥିବା ଦୁଇଟି ଯାକ ଗ୍ରହର ଦୃକ୍‌କର୍ମ ସଂସ୍କାର କରି ସାରିବା ପରେ ଉଭୟଙ୍କର ପୁଣି ଅନ୍ତର ଫଳ ଆଣିବ । ଯୁଦ୍ଧ କେବେ ହୋଇଥିଲା ବା ହେବ । ପୁଣି ଆୟନ ଦୃକ୍‌କର୍ମ ସଂସ୍କାର କରାଯାଇ ନ ଥିବା ଉକ୍ତ ଦୁଇ ଗ୍ରହର (ତାତ୍କାଳିକ) ଶର ଓ ଆୟନ ଦୃକ୍‌କର୍ମ ଆଣି ଉଭୟ ଗ୍ରହକୁ କଳାଦିରେ ସମାନକରି ଥୋଇବ । ଏପରି ବାରମ୍ବାର କରି ସାରିବା ପରେ ଦେଖିବ ଯେ ଉଭୟ ଗ୍ରହ ରାଶ୍ୟଂଶ ଓ କଳାଦିରେ ସମାନ ହୋଇ ସାରିଛନ୍ତି ।

କୃତ୍ୱା ସକୃତ୍ ସମକଳୌ ସ୍ୟାତାଂତୌ ଧ୍ରୁବସୂତ୍ରଗୌ
ତତୋଧନର୍ଣ୍ଣ କଳକା ବର୍ଗ ଯୁକ୍ତେଷୁ-ବର୍ଗତଃ । ୩୧ ।

ପଦଂସ୍ୟାଦ୍ ସୂକ୍ଷ୍ମବିକ୍ଷେପଃ କ୍ରାନ୍ତିସ୍ତତ୍ସଂସ୍କୃତାସ୍ଫୁଟା
ମଧ୍ୟୈବ ସର୍ବଦା ଭାନୋରପମଣ୍ଡଳଗସ୍ୟ ସା । ୩୨ ।

ଆପ୍ଟନ ଦୃକ୍‌କର୍ମ କଳାର ବର୍ଗରେ ଶରବର୍ଗକୁ ଯୋଗକରି ମୂଳ ନେଲେ ଯାହା ହେବ ତାହାହିଁ ସୂକ୍ଷ୍ମଶର ଅଟେ । ଗ୍ରହର ସୂକ୍ଷ୍ମ ଶର ଓ ସ୍ଥାନୀୟ କ୍ରାନ୍ତିର ଦିଗ ଭିନ୍ନ ହେଲେ, ଅନ୍ତର ଓ ଦିଗ ସମାନ ହେଲେ, ଯୋଗକଲେ ସ୍ଫୁଟ କ୍ରାନ୍ତି ହେବ । ବିମ୍ବଗତ ଧ୍ରୁବ ପ୍ରୋତବୃତ୍ତରେ ବିମ୍ବଠାରୁ ନାଡ଼ୀବୃତ୍ତ ପର୍ଯ୍ୟନ୍ତ ଏହାର ସ୍ଥିତି ବୋଲି ଜାଣିବ । ସୂର୍ଯ୍ୟକ୍ରାନ୍ତିବୃତ୍ତରେ ଥିବାରୁ ତାହାର ମଧ୍ୟମକ୍ରାନ୍ତିହିଁ ସ୍ଫୁଟକ୍ରାନ୍ତି ହୋଇଥାଏ । ସୂର୍ଯ୍ୟର ଅନ୍ୟ ଗ୍ରହମାନଙ୍କ ପରି ଶର ନାହିଁ ।

ସ୍ଫୁଟକ୍ରାନ୍ତେଶ୍ଚରଂ ସ୍ୱଂସ୍ୱଂ ଦିନାର୍ଦ୍ଧଂ ଚୈନ୍ନତଂ ନତମ୍
କାଳମାନୀୟ ଝଗଯ୍ୟୋର୍ହନ୍ୟାତ୍ ଖଖ କୃତେଷୁଭିଃ । ୩୩ ।
ଦିନାର୍ଦ୍ଧେନ ଭଜେଲ୍ଲବ୍ଧ କଳାନାଂ ଜ୍ୟେ ନତୋନ୍ନତେ
ସ୍ୟାତାଂ ମଧ୍ୟସ୍ଫୁଟକ୍ରାନ୍ତିସିଦ୍ଧୟୋର୍ଚ୍ଚରାର୍ଦ୍ଧୟୋଃ । ୩୪ ।
ପ୍ରାଣାତ୍ମକଂ ସ୍ୟାଦ୍‌ବିବରଂ ତତ୍‌କଳାଘ୍ନୀ ନତଜ୍ୟକା
ତ୍ରିଜ୍ୟାପ୍ତା ଫଳଲ-ପ୍ତାଭିର୍ଦିନପୂର୍ବପରାର୍ଦ୍ଧୟୋଃ । ୩୫ ।
ସୌମ୍ୟେ କ୍ଷେପେହୀନଯୁତୌ କ୍ରମାତ୍‌ଯାମ୍ୟେ ଯୁତୋନତୌ
କାର୍ଯ୍ୟୌ ଗ୍ରହୌ ତଦ୍‌ବିବରାତ୍ କାଳଂ ଯାତୈଷ୍ୟସଙ୍କକମ୍ । ୩୬ ।
ଜ୍ଞାତ୍ୱାସ୍ମାଦକ୍ଷଦୃକ୍‌କର୍ମ ପୌନଃ ପୁନ୍ୟାଦତ ସ୍ଥିରୌ
କୃତ୍ୱା ପଶ୍ୟେନ୍ମିକେ ଦେଶେ ଯାମ୍ୟସୌମ୍ୟାନ୍ତରଂ ତୟୋଃ । ୩୭

ଦୁଇଟିଯାକ ଗ୍ରହର ସ୍ଫୁଟକ୍ରାନ୍ତିରୁ ଚର ସାଧନଖଣ୍ଡରେ ନିଜ ନିଜର ଚର ଓ ଦିନାର୍ଦ୍ଧ ଆଣି ତ୍ରିପ୍ରଶ୍ନାଧ୍ୟାୟର ଖଣ୍ଡରେ ନତ ଓ ଉନ୍ନତକାଳ ବାହାର କର । ଉପରୋକ୍ତ (ନତ ଓ ଉନ୍ନତ କାଳକୁ) ୫୪୦୦ରେ ଗୁଣି ନିଜ ନିଜ ଦିନାର୍ଦ୍ଧରେ ହରିଲେ ତାହା ଯଥାକ୍ରମେ ନତ ଓ ଉନ୍ନତ କାଳର ଜ୍ୟା ହେବ । ଗ୍ରହର ମଧ୍ୟମ ଓ ସ୍ଫୁଟକ୍ରାନ୍ତିରୁ ଦୁଇ ପ୍ରକାର ଚର ଆଣି ସେମାନଙ୍କର ପ୍ରାଣାଦି ଅନ୍ତର ବାହାର କର । ଏହାର କଳାରେ ନତଜ୍ୟାକୁ ଗୁଣି ତ୍ରିଜ୍ୟାରେ ଭାଗଦେଲେ ତାହା କଳା ଆଦି ହେବ । ତାକୁ ଉତ୍ତର ଶରବେଳେ ଦିନର ପୂର୍ବାର୍ଦ୍ଧରେ ଗ୍ରହରୁ ବାଦ ଦେବ ଓ ଦିନର ପରାର୍ଦ୍ଧରେ ଗ୍ରହରେ ଯୋଗ କରିବ । ଦକ୍ଷିଣଶର ବେଳେ ଦିନର ପୂର୍ବାର୍ଦ୍ଧରେ ଯୋଗ ଓ ପରାର୍ଦ୍ଧ (ଦିନର ପରାର୍ଦ୍ଧ) ଗ୍ରହରୁ ବିଯୋଗ କଲେ ଆକ୍ଷ ଦୃକ୍‌କର୍ମ ସଂସ୍କୃତ ହେବ । ଏପରି ଉଭୟ ଗ୍ରହ ଆଣିସାରି ଅନ୍ତର କରିବ ଏବଂ ଏଥିରୁ ଉଭୟ ଗ୍ରହର ଅଳ୍ପ ଓ ବେଶି ଗତିଯୋଗେ ଯୁଦ୍ଧ (ଗ୍ରହଯୋଗ) ଗତ ବା ଗମ୍ୟ ସ୍ଥିର କର । ଏହି କାଳରୁ ପୁଣିବାରମ୍ବାର ଉକ୍ତ ଖଣ୍ଡରେ ଆକ୍ଷ ଦୃକ୍ କର୍ମ କରି ଉଭୟ ଗ୍ରହରେ ସଂସ୍କାର ପୂର୍ବକ ସ୍ଥିର କରି ଦେବ ଯେ ସେଥିରୁ ପୁଣି ଆକ୍ଷଦୃକ୍ କର୍ମ କଲେ ଆଉ ପ୍ରଭେଦ (ପୂର୍ବାପେକ୍ଷା) ଦେଖାଯିବ ନାହିଁ । ଏପରି କରି ସାରିବାପରେ ଉଭୟ ଗ୍ରହର ସମପ୍ରୋତ ବୃତ୍ତୀୟ ଦକ୍ଷିଣ ବା ଉତ୍ତର ଅନ୍ତର ବାହାର କରି ଦେବ ।

**କୁଜାଦୀନାଂ ବିମ୍ବମାନଂ ବୃତ୍ତାଖ୍ୟଂ ଖସ୍ୱରଂଚ ତତ୍**
**ମଧ୍ୟଂସ୍ଫୁଟମିତି ଦ୍ୱେଧା ଦୃଗ୍ ବିମ୍ବମିତି ପଞ୍ଚଧା । ୩୮ ।**

ମଙ୍ଗଳ ଆଦି ପାଞ୍ଚ ତାରା ଗ୍ରହର ବିମ୍ବ ପାଞ୍ଚ ପ୍ରକାର ଯଥା:— ମଧ୍ଯ ବୃତ୍ତବିମ୍ବ, ମଧ୍ଯ-ଖସ୍ୱରବିମ୍ବ, ସ୍ଫୁଟ ବୃତ୍ତବିମ୍ବ, ସ୍ଫୁଟ ଖସ୍ୱରବିମ୍ବ ଓ ଦୃକ୍ ତୁଲ୍ୟବିମ୍ବ ।

**ତେଜୋମୟଃ ସୂର୍ଯ୍ୟ ବିମ୍ବସ୍ତତ୍ ପ୍ରଭା ଗ୍ରହଣାଦ୍‌ଗ୍ରହାଃ**
**ଚନ୍ଦ୍ରାଦୟୋ ଜଳମୟା ଦୃଶ୍ୟନ୍ତେ ବିବିଧାକୃତୈଃ । ୩୯ ।**

**ତାରାଗ୍ରହା ବିଦୂରତ୍ୱାଦତ୍ୟଚ୍ଛତ୍ୱାଦ୍ ବିଧୋରପି**
**ଚନ୍ଦ୍ରବତ୍ ଶୃଙ୍ଗିଣେ ନାଦ୍ର ଲକ୍ଷ୍ୟନ୍ତେ ଲୋକଲୋଚନୈଃ । ୪୦ ।**

ସୂର୍ଯ୍ୟବିମ୍ବ ତେଜସ୍ୱୀ ଅଟେ । ସେଥିରୁ ତେଜ (ପ୍ରକାଶ) ଗ୍ରହଣକରି ଚନ୍ଦ୍ର ଆଦି **ଜଳପିଣ୍ଡ** ଗ୍ରହଗୁଡ଼ିକ ନାନାବର୍ଣ୍ଣ ଓ ନାନା ଆକୃତିର ଦେଖାଯାନ୍ତି । ମଙ୍ଗଳ ଆଦି ଗ୍ରହମାନେ ଚନ୍ଦ୍ରପରି ଶୃଙ୍ଗୀ ହୋଇଥିଲେ ମଧ୍ଯ ଚନ୍ଦ୍ରଠାରୁ ବେଶି ସ୍ୱଚ୍ଛ ଓ ଚନ୍ଦ୍ରର ଦୂରତା ( ଭୂପୃଷ୍ଠରୁ ) ବେଶି ଦୂରରେ ଥିବାରୁ ଚନ୍ଦ୍ରପରି ଶୃଙ୍ଗୀ ଥିବା ଦେଖାଯାନ୍ତି ନାହିଁ ।

**ଖାର୍ଥବେଦା ଖରାମାଂକାଃ ପୂର୍ଣ୍ଣାର୍ଥ ଗିରସିନ୍ଧବଃ**
**ଖାଭ୍ରଷଡ୍‌ବାହବଃ ଖାଭ୍ରେନ୍ଦୁଗ୍ନୟୋ ଯୋଜନାତ୍ମକାଃ । ୪୧ ।**
**ବିମ୍ବବ୍ୟାସାଃ କୁଜାଦୀନାଂ ବିଶ୍ୱାକୃତ ବିଭଜିତାଃ**
**ଫଳଂ କଳାଦି ତନ୍ମାନଂ ରବି କକ୍ଷାଗତଂ ଭବେତ୍ । ୪୨ ।**

**ଜ୍ଞଶୁକ୍ରୟୋଃ ସ ଏବ ସ୍ୟାନ୍ମଧ୍ୟବ୍ୟାସୋଽପରସ୍ୟ ତୁ**
**ନୟସ୍ୟ ଶୀଘ୍ରପରିଧିକ୍ଷୁର୍ଣ୍ଣଂ ତଦ୍‌ଭାଂଶ ଭଜିତମ୍ । ୪୩ ।**
**ବୃତ୍ତ ବିମ୍ବଂ ଭବେନ୍ମଧ୍ୟଂ ତଦ୍‌ବିକଳ୍ପାଃ କୁଜାଦିତଃ**
**ନାଗାସ୍ତ୍ରତ୍ୱାନ ତତ୍ତ୍ୱାନ ପୂର୍ଣ୍ଣଶୈଳା ଦଶଃ କ୍ରମାତ୍ । ୪୪ ।**

ଯୋଜନରେ ଗ୍ରହମାନଙ୍କର ବିମ୍ବବ୍ୟାସ ଏହିପରି ଯଥା:—

ମଙ୍ଗଳ—୪୫୦ ଯୋ      ବୁଧ—୯୩୦ ଯୋ      ବୃହସ୍ପତି—୪୬୫୦
ଶୁକ୍ର—୨୬୦୦ ଯୋ      ଶନି—୩୫୦୦ ଯୋ

ଏଗୁଡ଼ିକୁ **୨୨୧୩**ରେ ହରି ଦେଲେ କଳାଦି ବିଶ୍ୱମାନ ହୋଇଯିବ । ଏ **ଉଭୟ** ବିମ୍ବମାନ ରବି କକ୍ଷାରେ ବୋଲି ଜାଣିବ । ଗୋଟିଏ ଯୋଜନାତ୍ମକ ଓ ଅନ୍ୟଟି **କଳାତ୍ମକ** ।

ବୁଧ ଓ ଶୁକ୍ରର ଯେଉଁ କଳାତ୍ମକ ବିମ୍ବମାନ ଆସିଲା, ତାହାହିଁ ସେମାନଙ୍କର ମଧ୍ୟ-ବୃତ୍ତୀୟ ବ୍ୟାସ । ଅନ୍ୟ ତିନ ଗ୍ରହର କଳାତ୍ମକ ବିମ୍ବମାନଙ୍କୁ ନିଜ ନିଜ ଶୀଘ୍ର ପରିଧିରେ ଗୁଣି ୩୬୦ରେ ହରିଲେ ମଧ୍ୟବୃତ୍ତ ବିମ୍ବ ହେବ । ଏହିପରି ଭାବରେ ମଙ୍ଗଳ ଆଦି ଗ୍ରହର କଳାତ୍ମକ ବିମ୍ବମାନ ଏହି ପ୍ରକାର ଯଥା:— ମଙ୍ଗଳ—୮" ବୁଧ—୨୫' ଗୁରୁ—୨୫" ଶୁକ୍ର—୬୦" ଶନି—୧୦" ।

ଭୌମେଜ୍ୟାର୍କିଭୁବାଂ ବିମ୍ବାଦ୍ଵିଷ୍ଠାସ୍ତୁର୍ଯ ଫଳସ୍ୟ ଯା
ଉତ୍କ୍ରମଜ୍ୟା ତୟା କ୍ଷୁଣ୍ଣା ଦ୍ଵିଗୁଣତ୍ରିଜ୍ୟୟୋଦ୍ଧୃତାଃ । ୪୫ ।
ତତ୍ଫଳୈ ରୁକ୍‌ଛ୍ରିତାଃ କାର୍ଯ୍ୟା ବୁଧଭାର୍ଗବୟୋସ୍ତୁତୌ
ଦ୍ରାକ୍‌କେନ୍ଦ୍ରେ ମକରାଦସ୍ଥେ ଲପ୍ତାଃ ଶୀଘ୍ରଫଳୋଦ୍ଧୃତାଃ । ୪୬
କୋଟୀ ଲପ୍ତାଶ୍ଚ ସଂଯୋଜ୍ୟ ତଜ୍ଜ୍ୟୟା ତ୍ରିଜ୍ୟୟାଢ୍ୟୟା
ପୁନଃ କର୍କ୍ୟାଦିତତ୍‌କେନ୍ଦ୍ରେ ଦ୍ରାକ୍‌ଫଳାଢ୍ୟତ୍ରିରାଶିତଃ । ୪୭ ।

କୋଟୀରାଶ୍ୟାଦୟଃ ଶୋଧ୍ୟାଃ ଶେଷାଦ୍ଦୋର୍ଜ୍ୟା ଚ ଯା ତୟା
ବିମ୍ବୌ ସଂଗୁଣି-ତୌ ଦ୍ଵିଘ୍ନତ୍ରିଜ୍ୟାପ୍ତା-ବିତ ପଞ୍ଚ ତେ । ୪୮ ।
ଭବନ୍ତି ଭାସ୍ୱରା ମଧ୍ୟାସ୍ତ୍ରିଭାଧିକ କଳାବଳୈଃ
କ୍ରମଜ୍ୟା ତ୍ରିଜ୍ୟୟା ଯୁକ୍ତା ଶୁକ୍ରଙ୍କଗୁଣକୋ ଭବେତ୍ । ୪୯ ।
ମଧ୍ୟାସ୍ତେ ଦ୍ଵିବିଧା ବିମ୍ବାସ୍ତ୍ରିଜ୍ୟାଘ୍ନା ବୃତ୍ତଭାସ୍ୱରାଃ
ମନ୍ଦଶ୍ରୁତ୍ୟା ହୃତାସ୍ତ୍ରିଜ୍ୟାକ୍ଷୁଣ୍ଣା ଦ୍ରାକ୍‌କର୍ଣ୍ଣ ଭାଜିତାଃ । ୫୦ ।
ସ୍ଫୁଟା ଭବନ୍ତି ଯୌ ସ୍ପଷ୍ଟ ବୃତ୍ତବିମ୍ବୌ ସିତଜ୍ଞୟୋଃ
ତୌ ଚନ୍ଦ୍ରାର୍ଦ୍ଧେ ଶରାଲ୍ପତ୍ୱେ ଦୃଶ୍ୟୌ ଭାସ୍ୱତଗର୍ତ୍ତିବତ୍ । ୫୧ ।

ବର୍ତ୍ତମାନ ଭାସ୍ୱରବିମ୍ବ ଓ ସ୍ଫୁଟବୃତ୍ତ ଭାସ୍ୱରବିମ୍ବ ପ୍ରମାଣ କୁହାଯାଉଛି— ନିକଟରେ ମଙ୍ଗଳ, ବୃହସ୍ପତି ଓ ଶନିର ଯେଉଁ ବିମ୍ବବ୍ୟାସ କୁହାଗଲା, ସେଗୁଡ଼ିକୁ ଦୁଇ ସ୍ଥାନରେ ରଖିବ । ଗୋଟିଏ ସ୍ଥାନରେ ସେହା ଚତୁର୍ଥ ଶୀଘ୍ର ଫଳ । ନୟୁନ ବେଳେ ଆଗତ ଉତ୍କ୍ରମଜ୍ୟା ଦ୍ୱାରା ଗୁଣି ଦ୍ଵିଗୁଣ ତ୍ରିଜ୍ୟାରେ ୬୮୭୬ ହରିବ । ଫଳକୁ ଅନ୍ୟତ୍ର ଥିବା ବିମ୍ବବ୍ୟାସରୁ ଫେଡ଼ିଲେ ଅନ୍ତର ଫଳ ଉକ୍ତ ଗ୍ରହର ଭାସ୍ୱରବିମ୍ବ ହେବ ।

ବୁଧ ଓ ଶୁକ୍ରର ଶୀଘ୍ର କେନ୍ଦ୍ର ମକରାଦି ୬ ରାଶିରେ ଥିଲେ, ଚତୁର୍ଥ ଫଳ କଳା ଶୀଘ୍ର କେନ୍ଦ୍ର କୋଟୀ କଳାରେ ମିଶାଇ ମିଶାଣ ଫଳର ଜ୍ୟା ଅର୍ଥାତ୍ ସ୍ଫୁଟ କେନ୍ଦ୍ର କୋଟିଜ୍ୟାକୁ ତ୍ରିଜ୍ୟାରେ ମିଶାଇବ । କର୍କଟାଦି କେନ୍ଦ୍ରରେ ତିନିରାଶି ଯୁକ୍ତ ଶୀଘ୍ରଫଳରୁ ଶୀଘ୍ରକେନ୍ଦ୍ର କୋଟି-ରାଶ୍ୟାଦି ଫେଡ଼ି ସେଥିରୁ ଭୁଜଜ୍ୟା ଅର୍ଥାତ୍ ସ୍ପଷ୍ଟକେନ୍ଦ୍ର ଜ୍ୟା ଆଣିବ । ଏଥିରେ ଏ ଦୁହିଁଙ୍କର

ବମ୍ବ ବ୍ୟାସକୁ ଗୁଣି ତ୍ରିଗୁଣିତ ତ୍ରିଜ୍ୟା ୬୮୭୭ ରେ ହରିବ । ଫଳ-ଉକ୍ତ ଦୁଇ ଗ୍ରହର ମଧ୍ୟ ଭାସ୍ୱରବମ୍ବ ପ୍ରମାଣ ହୋଇ ଯିବ । ଏହି ପ୍ରକାରରେ ମଙ୍ଗଳଆଦି ପାଞ୍ଚ ପରଗ୍ରହର ମଧ୍ୟମ ଭାସ୍ୱରବମ୍ବ ଆସିଯିବ ।

ଏଠାରେ ଶୀଘ୍ର ଫଳ କଳା ଓ କୋଟି କଳାର ଯୋଗ ତ୍ରିଜ୍ୟାଠାରୁ ଅଧିକ ହେଲେ ସେମାନଙ୍କର କ୍ରମ ଜ୍ୟା ଓ ତ୍ରିଜ୍ୟାରେ ଯୋଗକଲେ ବୁଧ ଓ ଶୀଘ୍ରର ଗୁଣକ ହେବ ।

ମଧ୍ୟମ ବୃତ୍ତ ବମ୍ବ ଓ ମଧ୍ୟମ ଭାସ୍ୱର ବମ୍ବକୁ ଅଲଗା ଅଲଗା ରଖି ତ୍ରିଜ୍ୟାରେ ଗୁଣି ନିଜ ନିଜ ଶୀଘ୍ର କର୍ଣ୍ଣରେ ଭାଗ ଦେଲେ ସ୍ଫୁଟ ବୃତ୍ତ ବମ୍ବ ଓ ଭାସ୍ୱରବମ୍ବ ହେବ ।

ଏହାପରେ ଭାବରେ ବୁଧ ଓ ଶୁକ୍ରର ସ୍ପଷ୍ଟ ବୃତ୍ତ ବମ୍ବ ଆଣି ଯଦି ଦେଖିବ ଯେ, ସେ ପ୍ରତ୍ୟେକେ ଛ ଘଡ଼ିରେ ଅନ୍ତରରେ ହୁଅନ୍ତି ଅର୍ଥାତ୍ ସୂର୍ଯ୍ୟ ଓ ପୃଥିବୀମଧ୍ୟରେ ରହନ୍ତି, ତାହାହେଲେ ଶରର ଅଳ୍ପତା ହେତୁ ଉକ୍ତ ଦୁଇ ବୃତ୍ତ ସୂର୍ଯ୍ୟବମ୍ବରେ ଗାଢ଼ପରି ଦିଶିବ ।

ସ୍ଫୁଟଭାସ୍ୱରବମ୍ବାନାଂ ଦୃକ୍‌ବମ୍ବତ୍ୱମଥୋଚ୍ୟତେ
ଦୂରସ୍ଥଦୀପା ଇବ ତେ ସ୍ଥୂଳା ଭାନ୍ତି ଯଦୀକ୍ଷିତାଃ । ୪୬ ।
ଦୂରେ ପଥଃ ସ୍ଥିତମତାଂ ସ୍ୱବ୍ୟାସତଥିଦୃଗ୍‌ଗୁଣାତ୍
ଜ୍ୟୋତଷାଂ ସ୍ଥୂଳତା ଲୋକୈର୍ଦୃଶ୍ୟତେ କ୍ରମବୃଦ୍ଧିତଃ । ୪୭ ।
ତଦ୍‌ବମ୍ବନ୍ୟଘାତସ୍ୟ କଳାଦେଃ ପଦମେବ ଯତ୍
ପରଗ୍ରହାଣାଂ ଦୃଗ୍‌ବମ୍ବଂ ସ୍ୱଂ ସ୍ୱଂ ତଦ୍‌ଭବତ ସ୍ଫୁଟମ୍ । ୪୪ ।

ବର୍ତ୍ତମାନ ଭାସ୍ୱରବମ୍ବର ଦୃଶ୍ୟପରିମାଣ କୁହା ଯାଉଛି—

ଦୂରରେ ରହିଥିବା ପଦାର୍ଥ ଭାସ୍ୱରବମ୍ବ ସ୍ଥୂଳ ଦେଖା ଯାଏ । ଜ୍ୟୋତିଷ୍କ ପଦାର୍ଥର ବୃଦ୍ଧି କ୍ରମେ ୨୧୫ ଗୁଣ ପର୍ଯ୍ୟନ୍ତ ପୃଥିବୀକୁ ଦେଖାଯାଏ । ଏହା ଦୂରତା ଅନୁପାତର କଥା । ଏଣୁ ସ୍ଫୁଟ ଭାସ୍ୱର ବମ୍ବ କଳାଦି ପରିଧିକୁ ୧୬ ରେ ଗୁଣି ତାହାର ମୂଳନେଲେ ମଙ୍ଗଳ ଆଦି ପରଗ୍ରହମାନଙ୍କ ଦୃଶ୍ୟ ବମ୍ବ ପରିମାଣ ହୁଏ ।

ଭାନାଂ ସ୍ୱତୋଭାସ୍ୱରତ୍ୱାତ୍ ସମଦୂରସ୍ଥିତେଃ କ୍ଷିତେଃ
ସାମ୍ୟଂ ସଦୈବ କଳ୍ପ୍ୟେଷାଂ କାର୍ଯ୍ୟା ଦୃଗ୍‌ବମ୍ବଶାଳତା । ୪୫ ।

ନକ୍ଷତ୍ରମାନେ ସ୍ୱତଃ ପ୍ରଦୀପ୍ତ ଏବଂ ଏଗୁଡ଼ିକ ସର୍ବଦା ପୃଥିବୀ ଠାରୁ ସମାନ ଦୂରରେ ରହୁଥିବାରୁ ସେମାନଙ୍କ ବମ୍ବ ପରିମାଣରେ କୌଣସି ବୈଷମ୍ୟ ପରିଲକ୍ଷିତ ହୁଏ ନାହିଁ । ତଥାପି ଏମାନଙ୍କ ଦୃଶ୍ୟବମ୍ବ ପରିମାଣ ଆଣିବାକୁ ହେବ ।

ଯୁଦ୍ଧଭେଦାନଥୋ ବକ୍ଷ୍ୟେ ଗ୍ରହୟୋଃ ସମଲିପ୍ତୟୋଃ
ବୃତ୍ତୌ ମ୍ବାନ୍ତଦ୍ୱୟସ୍ପର୍ଶେ ଯୁଦ୍ଧମୁଲ୍ଲେଖ୍ୟନାମକମ୍ । ୫୬ ।

ବିମ୍ବବେଧେ ଚ ଭେଦାଖ୍ୟଂ ମାନଯୋଗାଲ୍ପକେଽନ୍ତରେ
ତତ୍ସ୍ୟାଦଂଶୁବିମର୍ଦ୍ଦାଖ୍ୟମପସବ୍ୟଂ ତତୋଽଧିକେ । ୫୭ ।

ଅଂଶାଦଧିଭବତ୍ୟେବ ଲିପ୍ତାଧିକ୍ୟେ ସମାଗମଃ
ସମ୍ଭବେ ତ୍ୱପସବ୍ୟସ୍ୟ ଯଦ୍ୟେକୋ ଦୀପ୍ତିମାନ୍ ଗ୍ରହଃ । ୫୮ ।

ଅନ୍ୟୋବିବର୍ଣ୍ଣସ୍ତଦ୍ଯୁଦ୍ଧଂ ଦୀପ୍ତୌଦ୍ୱୌ ଚେତ୍ସମାଗମଃ
ତଦ୍ୱଦ୍ୱୌ ଚେଦ୍ରଶ୍ମିହୀନୌ କୂଟଯୁଦ୍ଧଂ ତଦୁଚ୍ୟତେ । ୫୯ ।

ସ୍ଥୂଳବିମ୍ବୋ ଜୟୀ ଖେଟସ୍ତୁଲ୍ୟୟୋରୁତ୍ତରସ୍ଥିତଃ
ଜିତୋଽଣୁଃ ସମୟୋର୍ଯାମ୍ୟଃ ସର୍ବଦା ସର୍ବଜିଦ୍ଭୃଗୁଃ । ୬୦ ।

ସୌମ୍ୟଯାମ୍ୟସ୍ଥିତୀଜ୍ଞାପ୍ୟୈ ପ୍ରୋକ୍ତେ ଦୃକ୍କର୍ମଣୀପରମ୍
ସଲ୍ଲମ୍ବନନତସ୍ପଷ୍ଟଖେଟତଃ ସ୍ୟାତ୍ତୁ ତଦ୍ୟୁତଃ । ୬୧ ।

ବର୍ତ୍ତମାନ ଯୁଦ୍ଧସମାଗମ କଥା କୁହାଯାଉଛି –

ଦୁଇଟି ଗ୍ରହବିମ୍ବର ପରସ୍ପର ପରିଧିମାତ୍ର ସ୍ପର୍ଶ ହେଲେ ତାହାକୁ ଉଲ୍ଲେଖ ଯୁଦ୍ଧ କୁହାଯାଏ । ଗୋଟିଏ ଦୃଶ୍ୟବିମ୍ବ ଅନ୍ୟ ଗ୍ରହ ବିମ୍ବଭିତରେ ଭେଦ କରି ପଶିଗଲେ ଭେଦଯୁଦ୍ଧ ହୁଏ । ଉଭୟ ଗ୍ରହର ଯାମ୍ୟ ବା ସୌମ୍ୟ ତଫାତ୍ମାନୈକ୍ୟ ଠାରୁ ଊଣାହେଲେ ଅଂଶୁ ବିମର୍ଦ୍ଦ ଯୁଦ୍ଧ ହୁଏ । ଏହି ତଫାତ୍ ପୁଣି ମାନୈକ୍ୟଠାରୁ ଅଧିକହେଲେ ଏବଂ ୧° କଳାଠାରୁ ଆରମ୍ଭ କରି ୬° କଳା ( ° ଅଂଶ) ପର୍ଯ୍ୟନ୍ତ ହେଲେ ଅପସବ୍ୟ ଯୁଦ୍ଧ ନାମରେ କଥିତ ହୁଏ । ଏହା ପୁଣି ୬° କଳାଠାରୁ ଅଧିକହେଲେ ସମାଗମ ହୁଏ । ଅପସବ୍ୟ ଯୁଦ୍ଧ ବେଳେ ଗୋଟିଏ କାନ୍ତିଯୁକ୍ତ ଓ ଅପରଟି ବିବର୍ଣ୍ଣ (କାନ୍ତି ହୀନ) ହେଲେ, ତାହା କେବଳ ଯୁଦ୍ଧନାମରେ କଥିତ ହୁଏ । ଉଭୟ ଗ୍ରହକାନ୍ତିମାନ ହେଲେ ତାହା ସମାଗମ ହୁଏ । ଅପସବ୍ୟ ଯୁଦ୍ଧରେ ଉଭୟ ଗ୍ରହ ଶକ୍ତିହୀନ ହୋଇ ପଡ଼ିଲେ ସେହି ଯୁଦ୍ଧକୁ କୂଟ-ଯୁଦ୍ଧ କହନ୍ତି । ଅଂଶକଳାଦିରେ ସମାନ ଦୁଇପ୍ରହର ଉତ୍ତରସ୍ଥ ସ୍ଥୂଳବିମ୍ବ ଗ୍ରହକୁ ଜୟୀକୁହାଯାଏ । ତୁଲ୍ୟ ବିମ୍ବ ଦୁଇଗ୍ରହ ମଧ୍ୟରେ ଦକ୍ଷିଣସ୍ଥ ଗ୍ରହ ବିଜୟୀ, ଅନ୍ୟଟି ବିଜିତ । ବିମ୍ବ ବିଶାଳତା ଦୃଷ୍ଟିରୁ ଶୁକ୍ର ଉତ୍ତର ହେଉ ବା ଦକ୍ଷିଣ ହେଉ ଯେ କୌଣସି ଦିଗରେ ଥିଲେ ବିଜୟୀ । ଦୁଇଟି ଗ୍ରହମଧ୍ୟରୁ କିଏ କାହାର ଦକ୍ଷିଣରେ ବା ଉତ୍ତରରେ ରହିଲା, ଏହି କଥା ଜାଣିବା ନିମନ୍ତେ ଆୟନ ଓ ଆକ୍ଷ ନାମକ ଦୁଇଟି କର୍ମ ସଂସ୍କାରର କଥା ଆଗରୁ କୁହାଯାଇଛି । ଗ୍ରହଣପରି ଏହି ଯୋଗ୍ୟାଦିର ଜ୍ଞାନ କଲାବେଳେ ଲମ୍ବନ ଓ ନତି ସଂସ୍କାର ମଧ୍ୟ ଗ୍ରହରେ କରାଯିବ । ତା ନ ହେଲେ ଭଲ ହେବ ନାହିଁ ।

**ଗଣ୍ୟତେଽର୍ଦ୍ଧାଂଶ ଭେଦୋଽପି ଭୌମାଦୀନାଂ ବୁଧୈର୍ନ ଯତ୍**
**ପ୍ରାକ୍ସ୍ତନ୍ନୋଦତେ ତେଷାମତ୍ୟଲ୍ପ ନତଲମ୍ବନେ । ୭୬ ।**
**ତଥାପି ଗଣିତଜ୍ଞାନସ୍ୟାବଶ୍ୟକତୟା ମୟା**
**ପରିକଲ୍ପ୍ୟ ନଗଦ୍ୟେତେ ସନ୍ଧିୟାଂ ପରିତୁଷ୍ଟୟେ । ୭୩ ।**

ପ୍ରାଚୀନମାନେ ମଙ୍ଗଳ ପ୍ରଭୃତି ତାରା ଗ୍ରହମାନଙ୍କର ଅର୍ଦ୍ଧାଂଶ ଅର୍ଥାତ୍ ୩୦ କଳା ପର୍ଯ୍ୟନ୍ତ ତଫାତକୁ ମଧ୍ୟ ଗ୍ରହଣ କରୁ ନ ଥିଲେ । ସେଥିପାଇଁ ନତ ଓ ଲମ୍ବନ ମଧ୍ୟ ପରିହାର କରିଅଛନ୍ତି । ମାତ୍ର ଗଣିତରେ ଲମ୍ବନ ଓ ନତସଂସ୍କାର ଆବଶ୍ୟକ ହୋଇ ପଡୁଥିବାରୁ ତାହା ଜାଣିବା ଓ କରିବା ଉଚିତ୍ । ଏହି କଥା ମନରେ ରଖି ବୁଦ୍ଧିମାନ୍ ଲୋକମାନଙ୍କର ସନ୍ତୋଷ ନିମନ୍ତେ ମୁଁ ନତ ଓ ଲମ୍ବନ କଥା ଏଠାରେ କହୁଛି ।

**ପରମାନତରର୍କସ୍ୟ ଦ୍ୱାବିଂଶତିକଲପ୍ରିକାଃ**
**ସୈବ ଜ୍ଞଶୁକ୍ରୟୋର୍ମଧ୍ୟା ବିଜ୍ୟାଘ୍ନୀ ଦ୍ରାକ୍ଶ୍ରବୋ ହୃତା । ୭୪ ।**

**ପୁନସ୍ତତ୍କାଳଦୃକ୍କ୍ଷେପଗୁଣିତା ବିଜ୍ୟୟୋଦ୍ଧୃତା**
**ସ୍ଫୁଟାବନତରନେ୍ୟଷାଂ ତ୍ରୟାଣାଂ ପାପବର୍କଜା । ୭୫ ।**

**ନତଃ ସ୍ୱଦ୍ରାକ୍ପରଧ୍ୱିଭିଃ ଗୁଣିତାଦ୍ୱ୍ୟଂଶ ଭାଜିତା**
**ବିଜ୍ୟାଘ୍ନୀ ଭୂର୍ଯ୍ୟକର୍ଣ୍ଣାପ୍ତା ପୁନଦୃକ୍କ୍ଷେପ ତାଡ଼ିତାଃ । ୭୬ ।**

**ବିଜ୍ୟାପ୍ତାସ୍ୟାନ୍ନତଃ ସ୍ପଷ୍ଟା ସୂର୍ଯ୍ୟ ଗ୍ରହଣବତ୍ତୟା**
**ସଂସ୍କୃତୋ ଗ୍ରହବକ୍ଷେପଃ ସ୍ଫୁଟଃ ସ୍ୟାଦଥ ଲମ୍ବନମ୍ । ୭୭ ।**

ଗ୍ରହମାନଙ୍କର ନତ ଆନୟନ —

ସୂର୍ଯ୍ୟର ପରମ ନତ କଳା ୨୨ । ରବିର ପରମ ନତ କଳା ବୁଧ ଓ ଶୁକ୍ରର ମଧ୍ୟମ ନତ ହୁଏ । ଏହି ମଧ୍ୟମ ନତ କଳାକୁ ତ୍ରିଜ୍ୟାରେ ଗୁଣି ସେ ଦୁହିଁଙ୍କର ଶୀଘ୍ର କର୍ଣ୍ଣରେ ହରିଲେ ବୁଧ ଓ ଶୁକ୍ରର ମଧ୍ୟମ ନତ ହୁଏ । ଏହି ମଧ୍ୟମ ନତ କଳାକୁ ଦୃକ୍ଜ୍ୟାରେ ଗୁଣି ବୁଧ ଶୁକ୍ରଙ୍କ ପକ୍ଷେ ଅନ୍ତ୍ୟ ଶୀଘ୍ରକର୍ଣ୍ଣରେ ଭାଗ ଦିଆଯିବା ଲବ୍ଧ ଫଳକୁ ପୁଣି ରବିବିଭନତାଂଶ ଜ୍ୟାରେ ଗୁଣି ତ୍ରିଜ୍ୟାରେ ହରିଲେ ସ୍ଫୁଟ ନତ ହୁଏ ।

ମଙ୍ଗଳ ଗୁରୁ ଓ ଶନି ଏହି ତିନିଗ୍ରହଙ୍କ ନତି ଆନୟନ ନିମନ୍ତେ ପରମ ରବିନତିକୁ ନିଜ ନିଜ ଶୀଘ୍ର ପରିଧିରେ ଗୁଣି ୩୬୦ରେ ହରିଲେ ଯେଉଁ ଫଳ ହେବ ପୁଣି ତାକୁ ତ୍ରିଜ୍ୟାରେ ଗୁଣି ଚତୁର୍ଥ ଶୀଘ୍ରକର୍ଣ୍ଣରେ ଭାଗ ଦେଲେ ଯାହା ହେବ ତାହାକୁ ପୁଣି ଦୃକ୍ଷେପରେ ଗୁଣି ତ୍ରିଜ୍ୟାରେ ହରିଲେ ସ୍ପଷ୍ଟ ନତି ହୁଏ ।

ସୂର୍ଯ୍ୟଗ୍ରହଣରେ ଯେପରି ନତି ଓ ଚନ୍ଦ୍ରଶର ସଂସ୍କାର କରାଯାଇ ସ୍ଫୁଟଶର ହୁଏ ସେହିପରି ସ୍ଫୁଟନତିରେ ଗ୍ରହ ଶରର ସଂସ୍କାର ହେଲେ ସ୍ଫୁଟଗ୍ରହ ଶର ହୁଏ ।

**କଥ୍ୟତେ ଯତ୍ର ଖଗୟୋଃ କାଲେ ସମକଳୀକୃତଃ**
**ତଦାସ୍ୱୀୟା ପରନତଦୃଗ୍ଗତଘ୍ନୀ ତ୍ରିଜୀବୟା ।୬୮।**

**ଭକ୍ତା ବିତ୍ରିଭଲଗ୍ନସ୍ୟ ଗ୍ରହସ୍ୟାନ୍ତରଜୀବୟା**
**ଗୁଣିତା ତ୍ରିଜ୍ୟୟା ଭକ୍ତା ପ୍ରାକ୍ପ୍ରତ୍ୟକ୍ଷ୍ଟେ ନଭଶ୍ଚରେ ।୬୯।**

**ତ୍ରିଭୋନଲଗ୍ନତଃ କ୍ଷେପ୍ୟା ଶୋଧ୍ୟା ଚେତ୍ସ୍ୟାତ୍ସ ଲମ୍ବନଃ**
**ନଭଶ୍ଚରସ୍ତଦ୍ୱଧୟୋର୍ଗ୍ରହୟୋଃ ସ୍ୟାଦ୍ଯଦନ୍ତରମ୍ ।୭୦।**

**ତତୋ ଗତୈଷ୍ୟକାଳଃ ସ୍ୟାଦ୍ୟାବାନ୍ ସମକଳୀକୃତୌ**
**ଗତଯୋଗାନ୍ତର ବଶାତ୍ ପ୍ରାଗ୍ବତ୍ତଲ୍ଲମ୍ବନଂ ସ୍ଫୁଟମ୍ ।୭୧।**

ମଙ୍ଗଳ ପ୍ରଭୃତି ଗ୍ରହମାନଙ୍କର ଲମ୍ବନ ଆନୟନ ରୀତି ବର୍ତ୍ତମାନ କୁହାଯାଇଛି ।

ଯେତେବେଳେ ଦୁଇଟି ଗ୍ରହ ରାଶ୍ୟଂଶ ଓ କଳାଦିରେ ସମାନ ହେବେ, ସେତେବେଳର ସ୍ୱ ପରମ ନତିକୁ ଦୃଗ୍ଗତିରେ ଗୁଣି ତ୍ରିଜ୍ୟାରେ ଭାଗ ଦେବ । ଲବ୍ଧିକୁ ବିତ୍ରିଭ ଲଗ୍ନ ଓ ଗ୍ରହ ଅନ୍ତରଜ୍ୟାରେ ଗୁଣି ତ୍ରିଜ୍ୟାରେ ପୁଣି ହରିଲେ ଫଳ ସ୍ଫୁଟ ଲମ୍ବନ ହୁଏ । ଏହି ସ୍ଫୁଟ ଲମ୍ବନକୁ ଗ୍ରହ ବିତ୍ରିଭ ଲଗ୍ନଠାରୁ ପୂର୍ବରେ ଥିଲେ ଯୋଗ ଓ ପରେ ଥିଲେ ବିୟୋଗ କରିବ । ତାହାହେଲେ ଗ୍ରହ ଲମ୍ବନ ସଂସ୍କୃତ ହେବା ଲମ୍ବନ, ସଂସ୍କୃତ ଦୁଇମାର୍ଗୀ ଗ୍ରହର ଗତ୍ୟନ୍ତର ବଶତଃ ଏବଂ ବିଜାତୀୟ ଅର୍ଥାତ୍ ମାର୍ଗୀ ଓ ବକ୍ରୀ ଗ୍ରହର ଗତି ଯୋଗରୁ, ଉଭୟଙ୍କୁ ସମକ କରିବା ନିମନ୍ତେ ଯେତିକ ଗତୈଷ୍ୟକାଳ ହେବ ସେଥିରୁ ପୁଣି ସ୍ଫୁଟଲମ୍ବନ କରି ସମୟକୁ ସଂସ୍କୃତ କରିଯିବ । ଏପରି ବାରମ୍ବାର କଲେ ଗ୍ରହ ଯୁଦ୍ଧର ବାସ୍ତବ ସମୟ ଜଣାପଡ଼ିବ ।

**ଦୂରତ୍ୱାଦ୍ଗତଶୂନ୍ୟତ୍ୱାଦ୍ ଭ୍ରାମନତଭିବତଃ**
**ତତ୍ଖେଟସଂଯୁତୌ କାଳଃ ଖେଟଗତ୍ୟା ଶତଃ ପରମ୍ ।୭୨।**

ନକ୍ଷତ୍ର ଓ ଗ୍ରହଯୋଗ କେବେ ହୋଇଥିଲା ବା କେବେ ହେବ ତାହା ଆଣିବା ରୀତି ଏଠାରେ କୁହାଯାଉଛି— ନକ୍ଷତ୍ରଗୁଡ଼ିକ ପୃଥିବୀଠାରୁ ବହୁ ଦୂରରେ ଥିବାରୁ ଏବଂ ସ୍ୱୟଂ ଗତିଶୀଳ ହୋଇ ନ ଥିବାରୁ ଗ୍ରହଗତି ଦ୍ୱାରାହିଁ ଏହି ସମୟ ଅଣାଯାଇ ପାରିବ । ନକ୍ଷତ୍ର-ମାନଙ୍କର ନତି ବା ଲମ୍ବନ ନାହିଁ ।

**ସମ୍ଭବେ ବିମ୍ବଭେଦ ସ୍ୟାଦେନ୍ୟୋଽନ୍ୟଂ ତାରକାଃସଦାମ୍**
**ଲମ୍ବନାବନତୀ ସାଧ୍ୟେ ନାନ୍ୟେବ କ୍ଲିଷ୍ଟସାଧକତଃ ।୭୩।**

ବର୍ଣ୍ଣିତ ଗ୍ରହଯୁଦ୍ଧମାନଙ୍କ ମଧ୍ୟରୁ କେବଳ ଭେଦ ଯୁଦ୍ଧରେ ଲମ୍ବନ ଓ ଅବନତିର ସଂସ୍କାର କରାଯିବ । ଲମ୍ବନ ଓ ନତି ଆଣିବା କ୍ଲେଶସାଧ୍ୟ । ଏଣୁ ଅନ୍ୟ ଯୁଦ୍ଧମାନଙ୍କରେ ଆଣିବା ଦରକାର ନାହିଁ ।

**ଗ୍ରହବଦ୍ୟୁତକାଳସ୍ତୁ ସାଧ୍ୟୋ ଭିନ୍ନୈକଦିଗ୍ଗତୌ**
**ଭୁକ୍ତିଯୋଗାନ୍ତରାଳାଭ୍ୟାଂ ସ୍ୱସ୍ୱମାନାନୁସାରତଃ ।୭୪।**

**ବକ୍ରୟୋର୍ଲଘୁଶରୟୋଃ କଦାଚିଦ୍ ବୁଧଶୁକ୍ରୟୋଃ**
**ସୂର୍ଯ୍ୟ ମଣ୍ଡଳଭେଦଃ ସାଦ୍ତ୍ୱାଳୋଭୁକ୍ତି ଯୋଗତଃ ।୭୫।**

ଯୋଗକାଳ ସାଧନର ଉପାୟ ଏବଂ ବୁଧ ଓ ଶୁକ୍ର ସୂର୍ଯ୍ୟ ବିମ୍ବକୁ କିପରି ଭେଦ କରନ୍ତି ତାହା ବର୍ତ୍ତମାନ କୁହାଯାଉଛି—

ଗ୍ରହଣପରି ଭିନ୍ନ ଦିଗ୍‌ଗତ ଗ୍ରହ ଦ୍ୱୟର ଗତିଯୋଗଦ୍ୱାରା ଏବଂ ଏକ ଦିଗ୍‌ଗତ ଦୁଇ ଗ୍ରହର ଗତ୍ୟନ୍ତରଦ୍ୱାରା ନିଜ ନିଜର ବିମ୍ବ ପରିମାଣ ଅନୁସାରେ ସ୍ପର୍ଶାଦି ସମୟ ସାଧନ କରାଯିବ ।

ବକ୍ରୀ, ବୁଧ ଓ ଶୁକ୍ରର ଶର ଅତ୍ୟନ୍ତ ଅଳ୍ପ ହେବାବେଳେ ରବି ବିମ୍ବଭେଦ ହୁଏ । ଏଠାରେ ସ୍ପର୍ଶାଦି ସମୟ ରବି-ବୁଧ ବା ରବି-ଶୁକ୍ରଙ୍କର ଗତି ଯୋଗଦ୍ୱାରା ଅଣାଯାଏ ।

**ବିମ୍ବଭେଦେଽପି ତୈତେଷାଂ ଚନ୍ଦ୍ରେଣ ସ୍ୟାତ୍ ସମାଗମଃ**
**ନତିଲମ୍ବନସିଦ୍ଧେନ ସ୍ପର୍ଶମୋକ୍ଷାଦି ପୂର୍ବବତ୍ ।୭୬।**

**ସୂକ୍ଷ୍ମଚନ୍ଦ୍ରସ୍ୟ ସମତା ଯତ୍ର କାଳେ ଭୁଜାଦିନା**
**ଲମ୍ବନାଦ୍ୟୁ ତଦା ଚନ୍ଦ୍ର ମଧ୍ୟଭୁକ୍ତିର୍ମନୁଷ୍ଟୁତା ।୭୭।**

କୁଜାଦପରନତ୍ୟୂନା ଷଷ୍ଟି ଘ୍ନୀ ବକଳାନ୍ୱିତା
ମଧ୍ୟେନ୍ଦ୍ୱବନ୍ଧ ତତ୍‌ଟଝଟ ଗତ୍ୟନ୍ତର ବଭାଜିତା ।୭୮।

ଗ୍ରହେ ବହ୍ନିଣି ମଧ୍ୟେନ୍ଦୁ ତଦ୍‌ଗତ୍ୟୋର୍ଯୋଗଭାଜିତା
ଲବ୍ଧଂ ନାଡ଼୍ୟାଦ ତତ୍କାଳ ଦୃଗ୍‌ଗତଘ୍ନଂ ବିଭଜ୍ୟଯ୍ୟା ।୭୯।

ଭକ୍ତଂ ତତ୍ ପ୍ରାଣତୋ ଜୀବାପରଃ ସ୍ୟାଚ୍ଚନ୍ଦ୍ର ଲଗ୍ନୟୋଃ
ଅନ୍ତରାଦ୍‌ଭୁଜକୋଟିଜ୍ୟେସାଧ୍ୟେଦୋର୍ଜ୍ୟାପରାନ୍ତରାତ୍ ।୮୦।

ସ୍ୱଘ୍ନାତ୍ କୋଟୀବର୍ଗଯୁତାତ୍ ଶ୍ରୁତର୍ମୂଳଂ ପରାହତା
କୋଟିଃ ଶ୍ରୁତହୃତାଃ ଲବ୍ଧଧନୁଃ ପ୍ରାଣା ହ ମଧ୍ୟମାଃ ।୮୧।

ଚନ୍ଦ୍ରର୍କଂ ଗ୍ରହୟୋର୍ମଧ୍ୟ ଗତ୍ୟନ୍ତର ହତାହୃତାଃ
ସ୍ଫୁଟଗତ୍ୟନ୍ତରେଣାଦ ଗତଯୁତ୍ୟା ନୃଜୌପୁନଃ ।୮୨।

ବିଶ୍ଲେଷ ଲଗ୍ନପ୍ରାକ୍ ପ୍ରତ୍ୟକ୍‌ସ୍ଥିତେଚନ୍ଦ୍ରେ ସ୍ୱକାଳତଃ
ହୀନା ଯୁତାସ୍ତୁ ତତ୍କାଳ ଦୃଗ୍‌ଗତଘ୍ନାସ୍ତ ଆଦ୍ୟୟା ।୮୩।

ଦୃଗ୍‌ଗତ୍ୟାପ୍ତାଃ ସ୍ଫୁଟାହେ୍ୟତୈଃ ସଂସ୍କୃତଃ ସମଲପ୍ତୟୋଃ
ଚନ୍ଦ୍ରାନ୍ୟଗ୍ରହୟୋଃ କାଳୋ ଯୁତମଧ୍ୟେ ସ୍ଫୁଟୋଭବେତ୍ ।୮୪।

ଗ୍ରହମାନଙ୍କର ଚନ୍ଦ୍ର ସମାଗମ କଥା ବର୍ତ୍ତମାନ କୁହାଯାଉଛି ।—

ନତି ଓ ଲମ୍ବନ ଦ୍ୱାରା ସ୍ପଷ୍ଟ ଚନ୍ଦ୍ର ସାଧନ କରି ସେଥିରେ ଗ୍ରହ ବିମ୍ବର ବେଧକୁ ସମାଗମ କହନ୍ତି । ସୂର୍ଯ୍ୟ ଗ୍ରହଣ ପରି ଏଠାରେ ମଧ୍ୟ ସ୍ପର୍ଶ ମୋକ୍ଷାଦି ସମୟ ଅଣାଯିବ ।

ବର୍ତ୍ତମାନ ସମାଗମ କାଳ ଆଣିବାର ପ୍ରଣାଳୀ କୁହାଯାଉଛି । --

ଯେତେବେଳେ ସୂକ୍ଷ୍ମ ଚନ୍ଦ୍ରର ମଙ୍ଗଳ ଆଦି ଗ୍ରହମାନଙ୍କ ସହିତ ରାଶ୍ୟଂଶ କଳାଦିରେ ସମତା ଦେଖାଯିବ, ତେତେବେଳେ ଲମ୍ବନ ଜାଣିବା ନିମନ୍ତେ ଚନ୍ଦ୍ରର ମଧ୍ୟମ ଗତି ୭୯୦ । ୩୫କୁ ୧୪ରେ ହରି ୫୬ । ୨୮ ଲବ୍ଧିରୁ ମଙ୍ଗଳ ଆଦି ଗ୍ରହମାନଙ୍କର ପରମନତିଦ୍ୱାରା

* ଅସ୍ପଷ୍ଟ ଚଗଣ୍ଡପଦେନ ଚନ୍ଦ୍ର ପ୍ରଥମଗଦ ଗୃହ୍ୟତେ, ସୂର୍ଯ୍ୟ ଗ୍ରହଣେ ତଯୋକ୍ତେ

ପୂର୍ବୋକ୍ତ ଖଣ୍ଡରେ ଲବ୍ଧ ପରମ ଲମ୍ବନକୁ ଅନ୍ତର କରିବ । ତେବେ ଯାଇ ଚନ୍ଦ୍ର ଓ ଗ୍ରହର ଗତ୍ୟନ୍ତର ପରମନତି ହେବ ।

ଏହି ପରମନତିକୁ ଦୁଇ ସ୍ଥାନରେ ରଖିବ । ଗୋଟିଏ ସ୍ଥାନରେ ୬୦ରେ ଗୁଣି ସେଥିରେ ବିକଳା ଯୋଗ କରିବ । ତାହାକୁ ଚନ୍ଦ୍ରର ଓ ମାର୍ଗୀ ଗ୍ରହର ମଧ୍ୟମ ଗତି ଅନ୍ତରରେ ହରିବ । ଗ୍ରହ ବକ୍ରୀ ହୋଇଥିଲେ ଚନ୍ଦ୍ର ଓ ବକ୍ରୀ ଗ୍ରହର ମଧ୍ୟମ ଗତି ଯୋଗରେ ହରିବ । ଏହି ଫଳ ନାଡ୍ୟାଦି ପରମ ଲମ୍ବନ ହେବ । ଏହାକୁ ପୁଣି ଇଷ୍ଟ କାଳର ତ୍ରିଭ ଶଂକୁରେ ଗୁଣି ତ୍ରିଜ୍ୟାରେ ହରିଲେ ଯେଉଁ ଫଳ ହେବ ତାହାର ଅସୁ ଏବଂ ସେଥିରୁ ଜ୍ୟା ବାହାର କରିବ । ଏହାର ନାମ ରହିଲା ପର ।

ଲଗ୍ନ ଓ ଚନ୍ଦ୍ରର ଅନ୍ତର କରି ସେଥିରୁ ଭୂଜଜ୍ୟା କୋଟିଜ୍ୟା ବାହାର କରିବ । ଏହି ଭୂଜଜ୍ୟା ଏବଂ ପୂର୍ବୋକ୍ତ ପରର ଅନ୍ତରର ବର୍ଗରେ କୋଟିଜ୍ୟା ବର୍ଗ ମିଶାଇ ସେଥିରୁ ମୂଳ ବାହାର କଲେ ତାହା କର୍ଣ୍ଣ ହେବ ।

କୋଟିଜ୍ୟାକୁ ପରରେ ଗୁଣି କର୍ଣ୍ଣରେ ହରିଲେ ଯେଉଁ ଫଳ ହେବ ତାହାର ଗ୍ରୁପ ମଧ୍ୟମ ଲମ୍ବନ ଅସୁ ହେବ । ଏହି ମଧ୍ୟ ଅସୁକୁ ଚନ୍ଦ୍ର ଓ ମାର୍ଗୀ ଗ୍ରହର ମଧ୍ୟମ ଗତ୍ୟନ୍ତରରେ ଗୁଣି ଚନ୍ଦ୍ର ପ୍ରଥମ ସ୍ଫୁଟ ଗତି ଓ ଗ୍ରହ ସ୍ଫୁଟ ଗତିର ଅନ୍ତରରେ ହରିବ । ଗ୍ରହ ବକ୍ରୀ ହୋଇଥିଲେ ଉଭୟଙ୍କ କେବଳ ମଧ୍ୟମ ଗତି ଯୋଗରେ ଗୁଣି ସ୍ଫୁଟ ଗତି ଯୋଗରେ ହରିବ । ଏହି ଫଳକୁ ଚନ୍ଦ୍ର ଓ ତ୍ରିଭୋନ ଲଗ୍ନରୁ ଅଧିକ ଥିବାବେଳେ ସମଲିପ୍ତୀକରଣ ସମୟରୁ ବିଯୁକ୍ତ କରିବାକୁ ହେବ । ତ୍ରିଭୋନ ଲଗ୍ନରୁ ଚନ୍ଦ୍ର କମ୍ ଥିବାବେଳେ ସେହିସମୟରେ ମିଶାଇବ ।

ପୁଣି ସେହି ମଧ୍ୟମ ଲମ୍ବନ ଅସୁକୁ ଲମ୍ବନ ସଂସ୍କୃତ ସମଲିପ୍ତୀକରଣ କାଳିକ ତ୍ରିଭ ଶଙ୍କୁରେ ଗୁଣି ପ୍ରଥମ ତ୍ରିଭ ଶଙ୍କୁରେ ହରିଲେ ଫଳ ସ୍ଫୁଟ ଲମ୍ବନ ଅସୁ ହେବ । ଏହି ସ୍ଫୁଟ ଲମ୍ବନ ଅସୁ ଦ୍ୱାରା ସମଲିପ୍ତୀକରଣ କାଳିକ ଚନ୍ଦ୍ର ଓ ଅନ୍ୟ ଗ୍ରହର ସମୟକୁ ସଂସ୍କୃତ କଲେ ( ଯୋଗ, ବିଯୋଗକଲେ ଏହାର ଖଣ୍ଡ ଆଗରୁ ଦିଆଯାଇଛି ) ସ୍ଫୁଟ ଯୁତି ମଧ୍ୟକାଳ ହେବ ।

ତତ୍କାଲବିତ୍ରିଭତନୋର୍ଦୃକ୍କ୍ଷେପଃ ପ୍ରାଗ୍ବଦାଗତଃ
ସ୍ୱବ-ଶ୍ୱଶର ଭଗାଢ଼୍ୟଃକ୍ଷ୍ମାଙ୍ଗା ପ୍ରୋଃବନତର୍ବଧୋଃ ।୮୫।

ରାଶିବଯ୍ୟୋନଲଗ୍ନସ୍ୟ ଯାମ୍ୟସୌମ୍ୟ ନତକ୍ରମାତ୍
ଶରକ୍ଷାନୁଯୁତେଃ ସିଦ୍ଧାଯାନତସ୍ତତ୍ ପରସ୍କୃତୌ ।୮୬।

**ଚନ୍ଦ୍ରସ୍ୟତ-କୁଜାଦେଶ୍ଚ ଶରୌ ତେ ଦେକଦଗ୍‌ଭବୌ**
**ତଦାତଦ୍ ବିଯୁତେଃ ଶେଷୋବକ୍ ଶରଶ୍ଚନ୍ଦ୍ରତୋ ଗ୍ରହ ॥୮୭॥**

**ଯାମ୍ୟ ସୌମ୍ୟ ସ୍ଥିତେ ଯାମ୍ୟ ସୌମ୍ୟାଖ୍ୟ ଶ୍ଚେଦକାଯ୍ତ ସଃ ।**
**ତୌଚେଦ୍ ଭିନ୍ନଦଶୌ ତତ୍ତତ୍ ସଂଯୋଗାଦ୍ ଦକ୍‌ଶରଃସ୍ଫୁଟଃ ॥୮୮॥**

ବର୍ତ୍ତମାନ ପରିଲେଖ ନିମନ୍ତେ ସ୍ଫୁଟଶର ଅଣାଯାଉଛି ।—

ଯୁତି ମଧ୍ୟକାଳର ବିବିଭ ଲଗ୍ନରୁ ସୂର୍ଯ୍ୟଗ୍ରହଣ ରୀତିରେ ଯେଉଁ ଦୃକ୍ଷେପ ହେବ ତାହାକୁ ତାର ୫୧୩ ଅଂଶରେ ଯୋଗ କରି ସମୁଦାୟ ଫଳକୁ ୭୧ରେ ହରିଲେ ଫଳଚନ୍ଦ୍ରର ନତି ହେବ । ସୂର୍ଯ୍ୟଗ୍ରହଣୋକ୍ତ ରୀତିରେ ବିବିଭ ଲଗ୍ନରୁ ସୌମ୍ୟ, ଯାମ୍ୟ, ନତକ୍ରମରେ ଶର ଓ ଅକ୍ଷାଂଶକୁ ଆଶ୍ରୟ କରି ଗ୍ରହମାନଙ୍କର ଯେଉଁ ନତି ସିଦ୍ଧ ହେବ ତଦ୍ଦ୍ୱାରା ଚନ୍ଦ୍ର ଓ ଭୌମାଦି ଗ୍ରହର ଶରକୁ ସଂସ୍କାର କରିବ। ଅର୍ଥାତ୍ ଉଭୟଙ୍କର ଶର ଏକ ଦିଗ୍‌ଗତ ହେଲେ ଅନ୍ତର ଏବଂ ଏକ ଦିଗ୍‌ଗତ ନ ହେଲେ ଯୋଗ କରିବ । ଏହା ହେବ ସମାଗମ ପରିଲେଖ ନିମନ୍ତେ ଶର । ଚନ୍ଦ୍ରର ଦକ୍ଷିଣକୁ ଗ୍ରହଥିଲେ ଯାମ୍ୟଶର, ମାତ୍ର ଚନ୍ଦ୍ରର ଉତ୍ତରକୁ ଗ୍ରହଥିଲେ ସୌମ୍ୟଶର ହେବ ।

**ତାରା ଗ୍ରହାଣାଂ ସର୍ବେଷା ମଧ୍ୟସ୍ଥଶ୍ଚାଦକୋ ବିଧୁଃ ।**
**ପ୍ରବେଶସ୍ତତ୍‌ପୁରସ୍ତେଷାଂ ପ୍ରାୟଃ ପଶ୍ଚାଦ୍ ବିନିର୍ଗମଃ ॥୮୯॥**

ସମାଗମରେ ଗ୍ରହର ପ୍ରବେଶ ଓ ନିର୍ଗମ ଦିଗ ଏହିପରି ସ୍ଥିର କରିବ । ମଙ୍ଗଳ ଆଦି ଗ୍ରହର ଚନ୍ଦ୍ର ହିଁ ଛାଦକ । କାରଣ ଚନ୍ଦ୍ର ହିଁ ସବୁ ଗ୍ରହଙ୍କରଠାରୁ ପୃଥିବୀର ନିକଟବର୍ତ୍ତୀ ଏବଂ ଅଧିକ ଗତିକ । ଏଣୁ ପ୍ରାୟ ପୂର୍ବଦିଗରେ ସ୍ପର୍ଶ ଓ ପଶ୍ଚିମ ଦିଗରେ ମୋକ୍ଷ ହେବ ।

**କୃତେ୍ତ୍ୱ ବାୟୁନ ଦୃକ୍‌କର୍ମ ଗ୍ରହଣାଂ ନତ ସଂସ୍କୃତୈଃ ।**
**ବିଶିଖୈର୍ଯ୍ୟୁତଃ ସାଧ୍ୟା ତଦ୍‌ଧ୍ରୁବେଷ୍ବନୁସାରତଃ । ୯୦ ।**

**ଖବୃତ୍ତାନ୍ତଃ ସମାସାଖ୍ୟଂ ବୃତ୍ତଂ ସଂଲିଖ୍ୟ ପୂର୍ବବତ୍ ।**
**ତନ୍ମମଧ୍ୟେଽବ ବଧୋର୍ବିମ୍ବଂ ଖବୃତ୍ତେ ବଳନଂ ତଥା ।୯୧।**

**ସ୍ପର୍ଶେ ସ୍ଫୁଦଶି ମୋକ୍ଷେଽନ୍ୟ ଦଶି ନସ୍ୟ ତତୋଗୁଣାଃ ।**
**ଆଚନ୍ଦ୍ର ମଧ୍ୟଂ ପ୍ରସୃତୋ ଦକ୍‌ସୂବ ମିତ ସମ୍ମତଃ ।୯୨।**

**ତତ୍ପାର୍ଶ୍ୱୟୋଃ ସ୍ୱଦଗ୍ବାଣଃ ପ୍ରସାର୍ଯ୍ୟଃ ସ୍ପେଷ୍ଟକାଳକଃ**
**ସମାସେଽଗ୍ରଯୁତର୍ଯଵ ତତଃ ଶୀତାଂଶୁ ମଧ୍ୟଗମ୍ ।୯୩।**

**ସୂତ୍ରଂ ଯଵ ସ୍ପୃଶେଦେନ୍ଦ୍ରମିଂ ତସ୍ୟାଵ ସ୍ପର୍ଶ ନିର୍ଗମୌ ।**
**ଜ୍ଞେୟୌଗ୍ରହାଣାଂ ଭନାଂଚ ଗୋଲ ବେଦଭିରଶ୍ରମାତ୍ ।୯୪।**

ଗ୍ରହମାନଙ୍କର ଆୟନ ଦୃକ୍କର୍ମ କରିବା ପରେ ହିଁ ସେମାନଙ୍କର ନତି ସଂସ୍କୃତ ଶରଦ୍ୱାରା ଅଣ୍ଡିମା ଆଦି ନକ୍ଷତ୍ରମାନଙ୍କର ଧ୍ରୁବ ଓ ଶର ଅନୁସାରେ (ପଠିତ) ଭଗ୍ରହ ଯୁତି ସାଧନ କରିବ ।

ଯୋଗର ପରିଲେଖ-ଗ୍ରହଣରେ ଦିଆଯାଇଥିବା ପରି ଲେଖ ପରି ଗ୍ରହ-କ୍ଷିତିଜ ମଧ୍ୟରେ ଚନ୍ଦ୍ର ଓ ଅନ୍ୟ ଗ୍ରହର ମାନୈକ୍ୟାର୍ଦ୍ଧ ବୃତ୍ତ ଲେଖିବ ଏବଂ ଏହାର କେନ୍ଦ୍ରକୁ କେନ୍ଦ୍ରକରି ଚନ୍ଦ୍ରବିମ୍ବ ଅଙ୍କନ କରିବ । ବଳନାଗ୍ରିତ ଗ୍ରହ କ୍ଷିତିଜରେ ପୂର୍ବ ବିନ୍ଦୁରୁ ଯଥା ଦିଗରେ ସ୍ପାର୍ଶିକ ବଳନ ଦେଇ ତାହାର ବିପରୀତ ଦିଗରେ ପଶ୍ଚିମ ବିନ୍ଦୁରୁ ମୌକ୍ଷିକ ବଳନ ଦେବ । ବଳନାଗ୍ରରୁ ଚନ୍ଦ୍ରବିମ୍ବ ମଧ୍ୟପର୍ଯ୍ୟନ୍ତ ଯେଉଁ ସୂତ୍ର ତାହାହିଁ ଦିକ୍‌ସୂତ୍ର । ଏହି ଦିକ୍‌ସୂତ୍ର ଏବଂ ମାନୈକ୍ୟାର୍ଦ୍ଧ ବୃତ୍ତର ଯୋଗ ଯେଉଁ ସ୍ଥାନରେ, ସେହିଠାରୁ ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ସ୍ପର୍ଶ ଓ ମୋକ୍ଷ କାଳିକ ଦୁଇଟି ସ୍ଫୁଟଶର ନିଜ ନିଜର ଦିଗ ଅନୁସାରେ ଦେବ । ମାନୈକ୍ୟାର୍ଦ୍ଧ ବୃତ୍ତରେ ଶରାଗ୍ରର ଯେଉଁ ଯୋଗବିନ୍ଦୁ ସେହିଠାରୁ ଚନ୍ଦ୍ରମଣ୍ଡଳ ମଧ୍ୟପର୍ଯ୍ୟନ୍ତ ଯେଉଁ ସୂତ୍ର ତାହା ଚନ୍ଦ୍ରବିମ୍ବର ପରିଧିକୁ ଯେଉଁଠାରେ ସ୍ପର୍ଶ କରିବ, ସେହି ଦୁଇ ଜାଗା ଗ୍ରହ ବା ନକ୍ଷତ୍ରର ପ୍ରବେଶ ଓ ନିର୍ଗମବିନ୍ଦୁ ବୋଲି ଜାଣିବ ।

**ନକ୍ଷତ୍ରଚନ୍ଦ୍ରୟୋର୍ଯୁତ୍ୟାଂ ଦୃଗ୍‌ଗତଃ ଶତ ତାଡ଼ିତା ।**
**ଧରତ୍ରୀ ତ୍ରିଭୁଜୈର୍ଭକ୍ତା ଲମ୍ବନାୟ ପରେ ଭବେତ୍ ।୯୫।**

ନକ୍ଷତ୍ର ଓ ଚନ୍ଦ୍ର ଯୋଗରେ ବିତ୍ରିଭ ଲଗ୍ନ ଶଙ୍କୁକୁ ୧୦୦ରେ ଗୁଣି ୨୩୧ରେ ଭାଗ କଲେ ସ୍ଫୁଟ ଲମ୍ବନ ପାଇଁ ହରଜ୍ୟା ହୁଏ । ପୂର୍ବ ପର ନୟନଠାରୁ ଏହା ଖୁବ୍ ସରଳ ।

**ଏବଂ ଜ୍ଞଶୁକ୍ରୟୋର୍ଜ୍ଞେୟୌ ପ୍ରବେଶା-ପଗମକ୍ରମଃ ।**
**ସ୍ୱଶରେ ଦିକ୍‌ଶରସ୍ତତ୍ର ଚ୍ଛେଦକେ ମଧ୍ୟଗୋ ରବିଃ ।୯୬।**

ଚନ୍ଦ୍ର ଓ ଭଗ୍ରହ ଯୋଗରେ (ତାରା ଓ ଗ୍ରହର ଯେପରି ଚନ୍ଦ୍ରମଣ୍ଡଳରୁ ପୂର୍ବରେ ପ୍ରବେଶ ଏବଂ ପଶ୍ଚିମରେ ନିର୍ଗମ ସେହିପରି) । ରବି, ବୁଧ ଶୁକ୍ରର ସୂର୍ଯ୍ୟମଣ୍ଡଳର ପୂର୍ବରେ ପ୍ରବେଶ, ପଶ୍ଚିମରେ ନିର୍ଗମ ହେବ । ରବିର ଶର ନ ଥିବାରୁ ବୁଧ ଓ ଶୁକ୍ରର ଶରହିଁ ଶର ଏବଂ ଏହି ଶରର ଦିଗହିଁ ଶର ଦିଗ ବୋଲି ଜାଣିବାକୁ ହେବ ।

ତାରା ଗ୍ରହାଣାଂ କରଣୈଃ ଶଙ୍କୁଚ୍ଛାୟା ଯଦସ୍ଫୁଟା ।
ଛାୟାଗ୍ରସ୍ତେ ତଦାଦର୍ଶେ ଦୃଶ୍ୟାସ୍ତେ ଶଙ୍କୁମୂର୍ଦ୍ଧଗାଃ ।୯୭।

ସମଭୂମୌ ପ୍ରତିଷ୍ଠାପ୍ୟ ପଞ୍ଚହସ୍ତୋ ଛ୍ଛ୍ରିତଂ ନରମ୍ ।
ଦୃଢ଼ଂ ସମମୃଜୁଂ ବୃତ୍ତଂ ଦ୍ୱାଦଶାଂଶାଙ୍ଗୁଳାନ୍ୱିତମ୍ ।୯୮।

ଇଷ୍ଟକାଳକ ଖେଟସ୍ୟ ନତକାଳାନ୍ତିକାଂ ପ୍ରଭାମ୍ ।
ଶଙ୍କୋରାନୀୟ ତନ୍ମାନସୂତ୍ରେଣ ପରତୋ ଲିଖେତ୍ ।୯୯।

ତନ୍ମୂଳାଦ୍ ବୃତ୍ତମେବ ପ୍ରାକ୍ପରୟୋର୍ଯାମ୍ୟସୌମ୍ୟୟୋଃ ।
ବିଲିଖେତ୍ କେନ୍ଦ୍ରସଂସ୍ପର୍ଶି ସରଳଂ ରେଖିକାଦ୍ୱୟମ୍ ।୧୦୦।

ଗ୍ରହସ୍ୟର୍କ୍ଷସ୍ୟବା ସ୍ପଷ୍ଟ କ୍ରାନ୍ତିଜ୍ୟା ଭଶ୍ରବୋହୃତା ।
ଲମ୍ବଜ୍ୟାପ୍ତା ଭବେଦଗ୍ରା ସ୍ୱେଷ୍ଟକାଳେଽଙ୍ଗୁଳାତ୍ମିକା ।୧୦୧।

ଦକ୍ଷିଣୋତ୍ତରୟୋଃ କ୍ରାନ୍ତ୍ୟୋ ସ୍ତଦ୍ଯୁତୋନା ପଳପ୍ରଭା ।
ବିଯୋଗାଚ୍ଛେଷ ଦିକ୍ସଂସ୍ଥା ସ୍ୟାଦ୍ଭୁଜାଙ୍ଗୁଳ ସଂଜ୍ଞକା ।୧୦୨।

ଦକ୍ଷିଣୋତ୍ତରରେଖାୟାଂ ଶଳାକାଂ ଭୁଜ ସମ୍ମିତାମ୍ ।
କେନ୍ଦ୍ରାଦ୍ ପ୍ରସାର୍ଯ୍ୟ ତଦ୍ ଭେଦାଦଗ୍ରେ ବିନ୍ଦୁଂ ନିଧାୟଚ ।୧୦୩।

ନଳିକା ଯନ୍ତ୍ର ଦ୍ୱାରା ତାରା ଓ ଗ୍ରହମାନଙ୍କୁ କପରି ଦେଖି ହେବ ସେଥି ନିମନ୍ତେ ଭୁଜ-କୋଟି ଆନୟନ କରାଯାଉଛି । ଭୌମାଦି ଗ୍ରହମମାନଙ୍କର କରଣ ବଶତଃ ଦ୍ୱାଦଶାଙ୍ଗୁଳ ଶଙ୍କୁ ଛାୟା ଦୃଶ୍ୟ ହୁଏ ନାହିଁ । ତେଣୁ ଛାୟାଗ୍ର ବିନ୍ଦୁରେ ଦର୍ପଣ ଥୋଇ ଶଙ୍କୁ ଅଗ୍ର ଦୃଷ୍ଟିରେ ଦେଖିଲେ ଦେଖାଯିବ ।

ସମତଳ ଭୂମିରେ ପାଞ୍ଚ ହାତ ଉଚ୍ଚ ଗୋଟିଏ ଶଙ୍କୁ ପୋତିବ ବା ଶଙ୍କୁକୁ ଦ୍ୱାଦଶ ଭାଗ କରି ସେଥିରେ ଅଙ୍ଗୁଳ ଚିହ୍ନ ଦେବ ଏବଂ ତାହାକୁ ୧୨ ଅଙ୍ଗୁଳ ବିଶିଷ୍ଟ କରିବ । ଶଙ୍କୁ ସବୁ ସ୍ଥାନପରି ଏଠାରେ ମଧ୍ୟ ସମ, ସରଳ, ଦୃଢ଼ ଓ ମୁଖରେ ବୃତ୍ତାକାର କରିବ । ଇଷ୍ଟ-କାଳିକ ଗ୍ରହର ନତ କଳାଦି ଦ୍ୱାରା ଦ୍ୱାଦଶାଙ୍ଗୁଳ ଶଙ୍କୁର ଛାୟା ତ୍ରିପ୍ରଶ୍ନାଧିକାର ରୀତିରେ ବାହାର କରି ଛାୟା ବ୍ୟାସାର୍ଦ୍ଧର ଶଙ୍କୁ ମୂଳରେ ଗୋଟିଏ ବୃତ୍ତ ଅଙ୍କନ କରିବ । ସେହି ବୃତ୍ତରେ ଦିକ୍ ଚିହ୍ନ ଯଥାରୀତି ଦେଇସାରି କେନ୍ଦ୍ରବିନ୍ଦୁ ଦେଇ ପୂର୍ବାପର ଓ ଯାମ୍ୟୋତ୍ତର

ଦୁଇ ରେଖା ଟାଣିବ । ଏହାପରେ ଗ୍ରହର ବା ନକ୍ଷତ୍ରର ଇଷ୍ଟକାଳିକ ସ୍ପଷ୍ଟ କ୍ରାନ୍ତିଜ୍ୟା ଆଣିବାକୁ ଛାୟା କର୍ଣ୍ଣରେ ଗୁଣି ଲମ୍ବଜ୍ୟାରେ ହରିବ । ଲବ୍ଧ ଅଙ୍ଗୁଳାତ୍ମକ କର୍ଣ୍ଣ ବୃତ୍ତାଗ୍ରା ହେବ । ଏହାର ଦିଗକ୍ରାନ୍ତି ଅନୁସାରୀ ହେବ । ଦକ୍ଷିଣ କ୍ରାନ୍ତିରେ ଦକ୍ଷିଣ ଓ ଉତ୍ତର କ୍ରାନ୍ତିରେ ଉତ୍ତର । ଏହି କର୍ଣ୍ଣ ବୃତ୍ତାଗ୍ରରେ ପଲଭା ଯୋଗ ବା ଅନ୍ତର କଲେ (ସୌମ୍ୟ କ୍ରାନ୍ତିର ଅନ୍ତର ଏବଂ ଦକ୍ଷିଣ କ୍ରାନ୍ତିରେ ଯୋଗ) ତାହା ଅଙ୍ଗୁଳାତ୍ମକ ଛାୟାଗ୍ରୀୟ ଭୁଜ ହେବ । ଉଚିତ ବୃତ୍ତରେ କେନ୍ଦ୍ରରୁ ଦକ୍ଷିଣ ଉତ୍ତର ରେଖାରେ ଦିଗ ବୈପରୀତ୍ୟରେ (ଯାମ୍ୟ ଭୁଜ ହେଲେ କେନ୍ଦ୍ର ବିନ୍ଦୁରୁ ଉତ୍ତରକୁ ଏବଂ ସୌମ୍ୟ ଭୁଜ ହେଲେ କେନ୍ଦ୍ର ବିନ୍ଦୁରୁ ଦକ୍ଷିଣକୁ) । ଭୁଜ ଦେଇ ତାହାର ଅଗ୍ର ଦେଶରେ ଚିହ୍ନ ଦେବା ପରେ ଛାୟା ବର୍ଗରୁ ଭୁଜବର୍ଗ ଅନ୍ତର କରି ମୂଳ ନେଲେ ଧରାତଳ ଶଙ୍କୁ ହୁଏ । ଏହାହିଁ କୋଟି ।

**ଭୁଜବର୍ଗୋ ନଭବର୍ଗାତ୍ତଳଶଙ୍କୁର୍ଭବେତ୍ ପଦମ୍ ।**
**ସାକୋଟିଃ ପ୍ରାକ୍କପାଲସ୍ଥେ ଖଗେବନ୍ଦୋଃ ପଶ୍ଚିମଂ ଦଶମ୍ ।୧୦୪।**

**ପ୍ରତ୍ୟକ୍ସ୍ଥେ ପ୍ରତପୂର୍ବାଶାଂ ପ୍ରସାର୍ଯ୍ୟ ଯତ୍ର ସା ସ୍ପୃଶେତ୍ ।**
**ବୃତ୍ତଂ ତତ୍ର ପ୍ରଭାଗ୍ରଂ ସ୍ୟାତ୍ତତଃ ଶଙ୍କୁଶିଖାବଧି ।୧୦୫।**

**ନଳକଂ କର୍ଣ୍ଣମାର୍ଗସ୍ଥଂ ନ୍ୟସ୍ୟାସ୍ୟ ଶୁଷିରେଣ ସଃ ।**
**ଛାୟାଗ୍ରସ୍ଥମୁକୁରେ ଖେଟୋ ଦର୍ଶନୀୟୋ ବିପଶ୍ଚିତା ।୧୦୬।**

ବର୍ତ୍ତମାନ ଭୁଜକୋଟି ନିବେଶ କରାଯାଉଛି—

ଗ୍ରହବିମ୍ବ ପୂର୍ବକପାଳରେ ଥିଲେ, ଭୁଜାଗ୍ରବିନ୍ଦୁରୁ ପଶ୍ଚିମକୁ ଏବଂ ଗ୍ରହବିମ୍ବ ପଶ୍ଚିମ କପାଳରେ ଥିଲେ, ଭୁଜାଗ୍ରବିନ୍ଦୁରୁ ପୂର୍ବକୁ କୋଟି ଦେଇ ଦେଖିବ ଯେ କେଉଁଠାରେ ଏହି କୋଟିଛାୟା ବ୍ୟାସାର୍ଦ୍ଧ ବୃତ୍ତକୁ ସ୍ପର୍ଶ କରୁଛି । ସେହି ସ୍ପର୍ଶ ବିନ୍ଦୁରେହିଁ ଶଙ୍କୁର ଛାୟାଗ୍ର ହେବ । ଏହି ଛାୟାଗ୍ର ବିନ୍ଦୁରୁ ଛାୟାକର୍ଣ୍ଣ ମାର୍ଗରେ ନଳୀରଖି ନଳୀ ଭିତରେ ଚଳ ଆଡ଼କୁ ଚାହିଁଲେ ଛାୟାଗ୍ର ବିନ୍ଦୁରେ ଥିବା ଦର୍ପଣରେ ବା ପ୍ରତିବିମ୍ବ ଗ୍ରାହକ ଜଳାଦିରେ ସେହି ଗ୍ରହ ଦେଖା ପଡ଼ିବ ।

**ଯୋଗକାଳେ ଗ୍ରହୌ ଦ୍ରଷ୍ଟୁଂ ତଦ୍ୱିକ୍ଷେପ ସମାନ୍ତରମ୍ ।**
**ଶଙ୍କୁଦ୍ୱୟଂ ନିଖାୟାସ୍ୟ ଶିଖୟୋଃ ସଙ୍ଗତାବମୌ ।୧୦୭।**

**ଛାୟାଗ୍ରଲଗ୍ନନେତ୍ରାଭ୍ୟାଂ ଦର୍ଶନୀୟୌ ସୁବୁଦ୍ଧୟେ ।**
**ଦ୍ରଷ୍ଟବ୍ୟାନି ଫଳାନ୍ୟାସାଂ ସଂହିତାସୁଯୁଦ୍ଧାଂ ବୁଧୈଃ ।୧୦୮।**

ଯୁଦ୍ଧ କାଳରେ ଦୁଇ ଗ୍ରହକୁ କିପରି ଦେଖିବ ତାହା କୁହାଯାଉଛି—

ଗ୍ରହଯୁଦ୍ଧ ସମୟରେ ଯେଉଁ ଦୁଇଟି ଗ୍ରହକୁ ଦେଖିବାକୁ ଇଚ୍ଛା ସେହି ଗ୍ରହଙ୍କର ଶର ସମାନ ଅନ୍ତରରେ ପୂର୍ବାପର ଦୁଇ ଶଙ୍କୁ ପୋତି ଶଙ୍କ୍ୱାଗ୍ର ଦୃଷ୍ଟିରେ ଊର୍ଦ୍ଧ୍ୱକୁ ଚାହିଁଲେ ଉକ୍ତ ଗ୍ରହ ଦ୍ୱୟ ନିଶ୍ଚୟ ଦୃଷ୍ଟ ହେବେ । ବୁଦ୍ଧିମାନ ଲୋକ ପକ୍ଷରେ ଏହା ଅତି ସହଜ ।

ବିଭିନ୍ନ ରକମ ଗ୍ରହ ଯୁଦ୍ଧର ଫଳ ସଂହିତା ଗ୍ରନ୍ଥରେ ( **ବୃହତ୍ ସଂହିତା** ) ଅଛି ପଣ୍ଡିତମାନେ ଦେଖିବେ ।

**ଉକ୍ତାଯେ ବୃତ୍ତବିମ୍ବା ଇହ ଗଗନସଦା**
**ସୂକ୍ଷ୍ମବିମ୍ବାସ୍ତୁ ଭାନାଂ ।**
**ବକ୍ଷ୍ୟନ୍ତେ ତେଽକ୍ଷିଭାନାନ୍ନୃପ ଗୁଣସିତରୁକ୍**
**କ୍ରାନ୍ତିକାଜ୍ୱଲ୍ୟମାନାଃ ।**
**ସ୍ୱୀୟେଷ୍ୱସ୍ତୋଦୟାଂଶେଷ୍ୱମୃତ-**
**କରସମକ୍ଷେ୍ୟାତିରାଲୋକନାୟୋ ।**
**ଚ୍ୟନ୍ତେବ୍ୟାସୈର୍ଶ୍ଚତୁର୍ଘ୍ନୈସ୍ତନବ ଇତ**
**ଚତୁର୍ଥାଂଶମାନାଃ ସ୍ୱତସ୍ତାଃ ।୧୦୯।**

**ଦୃଷ୍ଟଂ ଶୁକ୍ରସ୍ୟ ଗାଢ଼ାସ୍ତମୟସମୟଜଂ**
**ମଣ୍ଡଳଂ ଚଣ୍ଡଭାନୌ**
**କୀଟାଂଶେ ପଞ୍ଚବିଂଶେ ଗତ**
**ବତ କଳତୋଽର୍ଥାଽଦ୍ରଗୋଽବ୍ଧ୍ୟଦ୍ଧବୃନ୍ଦେ ।**
**ଭାସ୍ୱଦ୍ ବିଷ୍କମ୍ଭଦନ୍ତାଂ ଶମିତମିତ ଇଦଂ**
**ଖାର୍ଥଷଟ୍ ଯୋଜନଂ ସ୍ୟାଦ୍ ।**
**ଇତ୍ୟନ୍ୟନ୍ତ୍ୱେକ୍ଷୟମସ୍ମାତ୍ତନବ ଇନ-**
**ତନୋସ୍ତାରକାଃ କୋଽଗ୍ରହାଃସ୍ୟୁଃ ।୧୧୦।**

ଏଠାରେ ଯେଉଁ ବୃତ୍ତବିମ୍ବ କୁହାଗଲା ଏବଂ ଯେଉଁ ତାରାବିମ୍ବମାନଙ୍କର ମାନ ସୂକ୍ଷ୍ମଭାବରେ ଆଗକୁ କୁହାଯିବ, ସେ ସବୁ ଅତି ସ୍ୱଚ୍ଛ ହେତୁ ୧୬ ଗୁଣ ଚନ୍ଦ୍ର ବିମ୍ବ ପରି ଜାଜ୍ୱଲ୍ୟମାନ ଦେଖା ଯାଉଛି । ଉଦୟ ଓ ଅସ୍ତ (ସୂର୍ଯ୍ୟ ସାମୀପ୍ୟରୁ) କାଳରେ ଗ୍ରହ ବିମ୍ବର ତେଜ ଚନ୍ଦ୍ରର ମାନ ଦେଖାଇବାକୁ ଯାଇ ସେ ବିମ୍ବଗୁଡ଼ିକୁ ଚତୁର୍ଗୁଣ କରି କୁହାଯାଇଛି । ଏଥିରୁ ସ୍ପଷ୍ଟ ହେଉଛି ଯେ ଏହି ବିମ୍ବର ଚତୁର୍ଥାଂଶ ହିଁ ବାସ୍ତବ ବିମ୍ବମାନ । **ଅର୍ଥାତ୍ ଦୃଶ୍ୟବିମ୍ବ** ବାସ୍ତବ ବିମ୍ବରୁ ସବୁବେଳେ ଶ୍ରେଷ୍ଠ ।

ଶୁକ୍ର ଜନିତ ସୂର୍ଯ୍ୟ ଗ୍ରହଣ ହେତୁ ତାହାର ବିମ୍ବମାନ ଏବଂ ତାରା ଗ୍ରହ ବ୍ୟବସ୍ଥା କୁହାଯାଉଛି । କଳିଗତ ବର୍ଷ ୪୯୭୫ରେ ସୂର୍ଯ୍ୟ ବୃଶ୍ଚିକ ରାଶିର ୨୫°ରେ ଥିବା ବେଳେ ଶୁକ୍ରର ଗାଢ଼ ଅସ୍ତ ସମସ୍ୱ ହୋଇଥିଲା ଏବଂ ଏତକବେଳେ ଶୁକ୍ରକୃତ ସୂର୍ଯ୍ୟଗ୍ରହଣ ମଧ୍ୟ ହୋଇ ଯାଇଥିଲା । ଏତେବେଳେ ଶୁକ୍ର ବିମ୍ବ ସୂର୍ଯ୍ୟ ବିମ୍ବର ୩୨ ଅଂଶ ମିତ ହୋଇଥିଲା ଏବଂ ତାହା ୬୫° ଯୋଜନାମିତ । ଏଥିରୁ ଯେ ଅନ୍ୟ ତାରା ଓ ଜଳୀସ୍ୱ ଗ୍ରହର ବିମ୍ବମାନ ରବି ବିମ୍ବଠାରୁ ଶ୍ରେଷ୍ଠ ଏହା ପ୍ରମାଣିତ ହୋଇଗଲା ।

**ଅମ୍ଭୁଦାବଳବଡମ୍ବିତନ୍ତ୍ରୀ**

**ରମ୍ବୁରାଶି ତଟବସ୍ତ୍ରଂଟଧାମା ।**

**କମ୍ଭୁପତ୍ରନପତଃ ପତତାନାଂ**

**ସଂବ୍ୟୁଦସ୍ୟତୁ ତମଃ ପଟଳଂ ନଃ ।୧୧୯।**

ନୀଳ ଜଳଧର କାନ୍ତିକୁ ଯେ ନିଜ କାନ୍ତି ଦ୍ୱାରା ତିରସ୍କାର କରନ୍ତି ଏବଂ ଯେ ସାଗର-ତୀରରେ ବାସ କରୁଛନ୍ତି, ସେହି ପ୍ରଭୁ ଜଗନ୍ନାଥ ଆମପରି ପତିତମାନଙ୍କର ଅଜ୍ଞାନ ଅନ୍ଧକାର ସମୂହକୁ ନଷ୍ଟ କରନ୍ତୁ ।

**ଇତ୍ୟୁତ୍କଳୋ ତ୍କଳ ନୃପାଳ କୁଳପ୍ରସୂତ**

**ଶ୍ରୀ ଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।**

**ସିଦ୍ଧାନ୍ତଦର୍ପଣ ଉପାହ୍ୱତ ବାଳବୋଧେ**

**ଏକାଦଶୋ ଗ୍ରହଯୁତଃ ପ୍ରଯଯୌ ପ୍ରକାଶଃ । ୧୨୬।**

**ଇତ ଶ୍ରୀ ଚନ୍ଦ୍ରଶେଖର କୃତୌ ସିଦ୍ଧାନ୍ତ ଦର୍ପଣେ**
**ତ୍ରିପ୍ରଶ୍ନାଧିକାରେ ଗ୍ରହଯୁତ ବର୍ଣ୍ଣନୋ**
**ନାମ ଏକାଦଶଃ ପ୍ରକାଶଃ ।**

ଏଠାରେ ଗ୍ରହଯୋଗ ନାମକ ଏକାଦଶ ପ୍ରକାଶ ଶେଷ ହେଲା ।

## ଦ୍ୱାଦଶଃ ପ୍ରକାଶଃ

### ଭଗ୍ରହଯୋଗ ବର୍ଣ୍ଣନମ୍

**ଅଥ ଭଗ୍ରହଯୋଗାୟ ଭନାଂ ବକ୍ଷ୍ୟେ ଧ୍ରୁବାନ୍ ଶରାନ୍ ।**
**ସଂଖ୍ୟାକାରାନ୍ ଯୋଗତାରାଃ ସାଙ୍ଗାନାଂ ବମ୍ବବସ୍ତୃତୀଃ ।୧।**

ତାରା ଓ ଗ୍ରହ ଯୋଗ ଜାଣିବା ନିମନ୍ତେ ଅଶ୍ୱିନୀ ଆଦି ତାରାମାନଙ୍କର ଭ୍ରାନ୍ତ ବୃତ୍ତୀୟ ଧ୍ରୁବ ଶରାଦି, ସେମାନଙ୍କର ଆକାର ଓ ସଂଖ୍ୟା, ପ୍ରତ୍ୟେକର ଯୋଗତାରା (ପ୍ରଶସ୍ତ ତାରା) ଓ ତାରଶର ଏବଂ ଏହି ଯୋଗତାରାର ବିମ୍ବବିସ୍ତାର ଏହି ପ୍ରକରଣର ପ୍ରାରମ୍ଭରେ କହୁଅଛି ।

**ଦସ୍ରାଦୀନାଂ ଧ୍ରୁବାଂଶାଃ ଖ୍ୟୁବ୍ୟଂଘ୍ରିକାଷ୍ଟାଃ କୁବାହବଃ ।**
**ସପାଦେଷ୍ୱମ୍ନୟଃ ସାର୍ଦ୍ଧଷଡ୍ବେଦାଃ ସାଂଘ୍ରିଖର୍ତ୍ତିବଃ ।୨।**

**ଶରଷଟ୍ ସାଂଘ୍ରିଶୂନ୍ୟାଙ୍କାଃ କୃତାଶା ବସୁଖେନ୍ଦବଃ ।**
**ରସାର୍କାଃ ସାର୍ଦ୍ଧବହ୍ନୀନ୍ଦ୍ରା ରାମବାଣହିମାଂଶବଃ ।୩।**

**ଶରଭୂପା ନବଘନାସ୍ତ୍ରିନନ୍ଦସିତଭନବଃ ।**
**ନଗାଭ୍ରପକ୍ଷାଃ ସାର୍ଦ୍ଧାଷ୍ଟଭୂଭୁଜାରସଦୃଗ୍ଦୃଶଃ ।୪।**

**ଅର୍ଦ୍ଧୋନାସ୍ତ୍ର୍ୟଂ ଶହୀନେନ୍ଦୁସିଦ୍ଧାଃ ଖଶରବାହବଃ ।**
**ଅର୍ଦ୍ଧଯୁକ୍ ତର୍କତତ୍ତ୍ୱାନି ଦଳୋନାଦ୍ରୀଷୁବାହବଃ ।୫।**

**ତ୍ରଭନି ସାର୍ଦ୍ଧପଞ୍ଚାଷ୍ଟପକ୍ଷା ବ୍ୟଂଘ୍ର୍ୟଷ୍ଟଭୂଗୁଣାଃ ।**
**ଦୃଗ୍ଦନ୍ତା ଦନ୍ତଗୀର୍ବାଣାଃ ଶୂନ୍ୟଂସାଭିଜିତାମିତ ।୬।**

ଅଶ୍ୱିନୀ ଆଦି ନକ୍ଷତ୍ରମାନଙ୍କର ଧ୍ରୁବାଂଶ, ଅର୍ଥାତ୍ ପ୍ରସିଦ୍ଧ ୨୮ ନକ୍ଷତ୍ର ( ଅଭିଜିତ୍କୁ ମିଶାଇ) ମଧ୍ୟରୁ କେଉଁ ନକ୍ଷତ୍ର ମେଷାଦି ଚିହ୍ନଠାରୁ କେତେ ଦୂରରେ କ୍ରାନ୍ତିବୃତ୍ତରେ ଅଛି ତାହା କୁହାଯାଉଅଛି ।

| ଅ | ଭ | କୃ | ରୋ | ମୃ | ଆ | ପୁ | ପୁ | ଅ |
|---|---|---|---|---|---|---|---|---|
| ୯° | ୨୧° | ୩୫° | ୪୬° | ୬୦° | ୬୫° | ୯୦° | ୧୦୪° | ୧୦୮° |
| ୪୫' | ୦' | ୧୫' | ୩୦' | ୧୫' | ୦' | ୧୫' | ୦' | ୦' |

| ମ | ପୂ. ଫା | ଉ. ଫା | ହ | ଚି | ସ୍ୱା | ବି | ଅ | ଜ୍ୟେ |
|---|---|---|---|---|---|---|---|---|
| ୧୨୬° | ୧୪୩° | ୧୫୩° | ୧୬୫° | ୧୭୯° | ୧୯୩° | ୨୦୭° | ୨୧୮° | ୨୨୫° |
| ୦' | ୩୦' | ୦' | ୦' | ୦' | ୦' | ୦' | ୩୦' | ୩୦' |

| ମୂ | ପୂ.ଆ | ଉ.ଆ | ଅଭି | ଶ୍ର | ଧ | ଶ | ପୂଭା | ଉଭା | ରେ |
|---|---|---|---|---|---|---|---|---|---|
| ୨୪୦° | ୨୫୦° | ୨୫୬° | ୨୫୬° | ୨୭୩° | ୨୮୫° | ୩୧୭° | ୩୨୨° | ୩୩୮° | ୦° |
| ୪୦' | ୦' | ୩୦' | ୩୦' | ୦' | ୩୦' | ୪୫' | ୦' | ୦' | ୦' |

**କ୍ରାନ୍ତ୍ୟନ୍ତାଦେଷାମଥବିକ୍ଷେପାଂଶା ଦଳାଢ୍ୟଦଶ ଇଶାଃ ।**
**ସାର୍ଦ୍ଧ୍ୟବ୍ଧ୍ୟୟଃ ସଦାର୍ଦ୍ଧେନ୍ଦ୍ରିୟାଣି ସାର୍ଦ୍ଧାନଳକ୍ଷିତୟଃ ।୭।**

**ଖ୍ୟଂଶୋନତର୍କ ଚନ୍ଦ୍ରାଃ ସାର୍ଦ୍ଧରସାଃ ସାଂଘ୍ରିରୂପମର୍କାଶ୍ଚ ।**
**ରୂପଦଳଂ ନଜକଷ୍ଟାଂଶୋନତମର୍ଥେନ୍ଦବୋ ବଶ୍ୱେ ।୮।**

**ରୁଦ୍ରାଃ ସରସାଂଶଦୃଶୌ ଦେବାବାହୁ ଭୁଜୌ ସପାଦକୃତାଃ ।**
**ସଦଳାନଳରଜନୀଶାଃ ସାର୍ଦ୍ଧାଂଗାନ୍ୟବ୍ଧିଭଗକୃତାଃ ।୯।**

**ଦ୍ୱାଷଷ୍ଟିରଭ୍ରବମଃ ଷଟ୍ତ୍ରିଂଶଦ୍ ଶୀତଦୀଧିତେସ୍ତ୍ର୍ୟଂଶଃ ।**
**ଦନ୍ତା ଗଜଭୁଜ ସଂଖ୍ୟା ଶରା ଇତ ଶରାଃ କ୍ରମାଦ୍ଭାନାମ୍ ।୧୦।**

**ବ୍ରହ୍ମବହ୍ନ୍ୟୋସ୍ୟ ଯାଧାଷଟ୍କସ୍ୟାହେଃ କରସ୍ୟବାୟ୍ୱୋଃ ।**
**ବରୁଣସ୍ୟ ଚ ବିକ୍ଷେପୋ ଯାମ୍ୟଃ ସୌମ୍ୟୋଽପରର୍କ୍ଷାଣାମ୍ ।୧୧।**

ଅଶ୍ୱିନୀ ଆଦି ନକ୍ଷତ୍ରମାନଙ୍କର ଶର କୁହାଯାଉଛି । ନକ୍ଷତ୍ର ପୁଞ୍ଜର ଯୋଗ ତାରାଗୁଡ଼ିକ କ୍ରାନ୍ତି ବୃତ୍ତଠାରୁ ଉତ୍ତର ବା ଦକ୍ଷିଣରେ କେତେ ଦୂରରେ ଅଛନ୍ତି ତାହାର ପରିମାଣହିଁ ଶର ।

| ଅ | ଭ | କୃ | ରୋ | ମୃ | ଆ | ପୁ | ପୁ | ଅ | ମ |
|---|---|---|---|---|---|---|---|---|---|
| ୧୦° | ୧୧° | ୪° | ୫° | ୧୩° | ୧୫° | ୬° | ୧° | ୧୨° | ୦° |
| ୩୦' | ୦' | ୧୫' | ୩୦' | ୩୦' | ୪୦' | ୩୦' | ୧୫' | ୦' | ୨୫' |
| ଉ | ଉ | ଉ | ଦ | ଦ | ଦ | ଉ | ଉ | ଦ | ଉ |

| ପୂ.ଫା | ଉ.ଫା | ହ | ଚି | ସ୍ୱା | ବି | ଅ | ଜ୍ୟେ | ମୂ |
|---|---|---|---|---|---|---|---|---|
| ୧୫° | ୧୩° | ୧୧° | ୨° | ୩୩° | ୨° | ୨° | ୪° | ୧୩° |
| ୦' | ୦ | ୦' | ୧୦' | ୦' | ୦' | ୦' | ୧୫' | ୩୦' |
| ଉ | ଉ | ଦ | ଦ | ଉ | ଦ | ଦ | ଦ | ଦ |

| ପୂ.ଆ | ଉ.ଆ | ଅଭି | ଶ୍ର | ଧ | ଶ | ପୂ.ଭା | ଉ.ଭା | ରେ |
|---|---|---|---|---|---|---|---|---|
| ୬° | ୩° | ୬୨° | ୩୦° | ୩୬° | ୦° | ୩୨° | ୨୮° | ୫° |
| ୩୦' | ୪୦' | ୦' | ୦' | ୦' | ୨୦' | ୦' | ୦' | ୦' |
| ଦ | ଦ | ଉ | ଉ | ଉ | ଦ | ଉ | ଉ | ଉ |

ରାମା ଗୁଣାଃଷଡ଼୍‌ବିଷୟା ହୁତାଶା
ରୂପଂଶର ବହ୍ନୟ ଆଶୁଗାଶ୍ଚ ।
ବାଣା ଦୃଶୌ ଯୁଗ୍ମ ମଥେନ୍ଦ୍ରିୟାଣି
ଧରାସ୍ତ୍ରିର ପଞ୍ଚନଗାଶ୍ଚରାମାଃ ।୧୨।

ନନ୍ଦାଃ ସମୁଦ୍ରାଃ ନଗମା ଗୁଣାଶ୍ଚ
ରାମାଃଶର ଖ୍ୟାଭ୍ରଭୁବୋଭୁଜୌ ଚ ।
ଦୃଶୌ ଦ୍ୱିରାମା ଇତ ତାରକାଣାଂ
ସଂଖ୍ୟୋଦିତା ସାଭିଜିତାଂ କ୍ରମେଣ ।୧୩।

ଜୀବର୍କ୍ଷମଧ୍ୟେ ବହୁତାରକାଣାଂ
ସ୍ଥିତାବପିବ୍ୟକ୍ତତୟା ବିନାଦ୍ୱୈଃ ।
ଏକତ୍ୱମୁକ୍ତଂ କଥଶଦ୍ଵଭିନ୍ନ
ସଂଖ୍ୟାନଭୂନତ୍ୟପରେ ବଦନ୍ତ ।୧୪।

ଉକ୍ତ ନକ୍ଷତ୍ର ପୁଞ୍ଜଗୁଡ଼ିକର ତାରା ସଂଖ୍ୟା କୁହାଯାଉ ଅଛି । ଅଶ୍ୱିନୀ—୩, ଭ—୩, କୃ—୬, ରୋ--୫, ମୃ—୩, ଆ—୧, ପୁ—୫, ପୁ—୩, ଅ—୫, ମ—୫, ପୂ.ଫା—୨, ଉ.ଫା—୨, ହ—୫, ଚ—୧, ସ୍ୱା—୧, ବି—୫, ଅ—୭, ଜ୍ୟେ-୩, ମୂ—୯, ପୂ.ଆ—୪, ଉ.ଆ—୪, ଅଭି—୩, ଶ୍ର—୩, ଧ—୫, ଶ—୧୦୦, ପୂ.ଭା—୨, ଉ.ଭା—୨, ରେ—୩୨ । ପୁଷ୍ୟା ନକ୍ଷତ୍ରରେ ( ନକ୍ଷତ୍ର ପୁଞ୍ଜରେ ) ଅନେକ-ଗୁଡ଼ିଏ ତାରା ଥିଲେ ମଧ୍ୟ ସେଗୁଡ଼ିକ ସ୍ପଷ୍ଟ ଦେଖାଯାଉ ନ ଥିବାରୁ ଆମ ମତରେ ତାହାର ଗୋଟିଏ ମାତ୍ର ତାରା । କେତେକ ଆଚାର୍ଯ୍ୟ କେତେଗୁଡ଼ିଏ ନକ୍ଷତ୍ରର ( ପୁଞ୍ଜର ) ତାରା ସଂଖ୍ୟା ଭିନ୍ନ ଭିନ୍ନ କହିଅଛନ୍ତି ।

**ଋକ୍ଷଚୟସ୍ୟାକୃତୟଃ ପ୍ରତ୍ୟୟହେତୋରଥାଭିଧାସ୍ୟତେ ।**
**ତୁରଗବଦନ ତ୍ରିକୋଣ ଜ୍ୱଳନଶିଖା ନଃ ସଦୃକ୍ଷାସ୍ତାଃ ।୧୫।**

**ମାର୍ଜାରପାଦ ବଦ୍ରୁମ କାର୍ମୁକ କଠିନୀରଜଃ ଶ୍ୱପୁଚ୍ଛ ନଭାଃ ।**
**ଲାଙ୍ଗଳ ଖରସମାଭେ ଖରକରଭେ ଚ ମୁକ୍ତାଭ୍ରା ।୧୬।**

**ମାଣିକ୍ୟ ତୋରଣ ଫଣି ହୋଡ଼ରଦ କମ୍ବୁ ସୂର୍ପ ସଦୃଶତନବଃ**
**ସୂର୍ପାଗ୍ନିବମ୍ବ ସାୟକ ମୁରଜ ବତାନ ପ୍ରତୀକାଶାଃ ।୧୭।**

**ଖରନଭ ଖରସମା ମୀନାଭ୍ର ଚେତସମ୍ମତ ଉଡ଼ବଃ**
**କାଶ୍ଚିତ୍‌କୈଶ୍ଚିତ୍ ପ୍ରୋକ୍ତା ଭିନ୍ନା କୃତୟଃ ସ୍ୱଶାସ୍ତ୍ରେଷୁ ।୧୮।**

ବର୍ତ୍ତମାନ ନକ୍ଷତ୍ର ପୁଞ୍ଜଗୁଡ଼ିକର ଆକୃତି ବର୍ଣ୍ଣନା କରାଯାଉଅଛି :—ଅଶ୍ୱିନୀର ରୂପ ଘୋଡ଼ାମୁହଁ ପରି । ଭରଣୀ ତ୍ରିଭୁଜାକାର । କୃତ୍ତିକା ଦେଖିବାକୁ ଅଗ୍ନିଶିଖା ବା ଖୁରା ପରି । ରୋହିଣୀ ଶକଟାକାର । ମୃଗଶିରା ବରାଡ଼ ପାଦ ବା ମୃଗ ମୁଖ ପରି । ଆଦ୍ରା ପ୍ରବାଳ ପରି । କେହି କେହି ତା'ର ମଣି ଆକାର ଦେଖି ଅଛନ୍ତି । ପୁନର୍ବସୁ ନକ୍ଷତ୍ରର ଆକାର ଧନୁପରି ବା ଘର ପରି । ପୁଷ୍ୟା ନକ୍ଷତ୍ର ଦେଖିବାକୁ ଖଡ଼ୀଗୁଣ୍ଡ ପରି । କାହାରି କାହାରି ମତରେ ଏହା ଶର ସମାନ । ଅଶ୍ଳେଷାର ଆକାର କୁକୁର ଲାଞ୍ଜ ପରି । କେହି କେହି ଏହାକୁ ଚକ୍ରାକାର ମାନନ୍ତି । ମଘା ଲଙ୍ଗଳ ପରି – କାହାରି କାହାରି ମତରେ ଏହା ଶାଳ ଗଛ ପରି । ପୂର୍ବ ଓ ଉତ୍ତର ଫାଲ୍‌ଗୁନୀ ଦେଖିବାକୁ ଖର ପରି-କାହାକୁ ଏ ଦୁଇଟି ଖଟ ବା ଶେଯ ପରି ଦେଖା ଯାଆନ୍ତି । ହସ୍ତା ନକ୍ଷତ୍ରର ଆକାର ହାତ ପରି । ଚିତ୍ରା ମୁକ୍ତାପରି ଦେଖାଯାଏ । ସ୍ୱାତି ମାଣିକ୍ୟ ପରି ବା ପ୍ରବାଳ ପରି ମଧ୍ୟ ଦେଖାଯାଇ ଥାଏ । ବିଶାଖା ତୋରଣ ପରି ହିଁଶେ । ଅନୁରାଧା ସାପ ପରି ବା ଭାତ ଗଦା ପରି । ଜ୍ୟେଷ୍ଠା ଦେଖିବାକୁ ବରାହ ଦାନ୍ତ ପରି । କେହି କେହି ଏହାକୁ କୁଣ୍ଡଳ ପରି ଦେଖନ୍ତି । ମୂଳା ଶଙ୍ଖ ପରି ବା ସିଂହ ଲାଙ୍ଗୁଳ ପରି ମଧ୍ୟ । ପୂର୍ବାଷାଢ଼ା

ଓ ଉତ୍ତରଷାଢ଼ା କୁଲା ପରି ଦେଖାଯାନ୍ତି । କେହି କେହି ଏହାକୁ ହାତୀଦାନ୍ତ ବା ମଞ୍ଚା ପରି ଦେଖନ୍ତି । ଅଭିଜିତ୍ର ଅଗ୍ନି ବନ୍ଧ ପରି । ଏହା ତ୍ରିକୋଣ ପରି ମଧ୍ୟ ଦେଖା ପଡ଼େ । ଶ୍ରବଣା ଶର ପରି ବା ବାମନ ପରି । ଧନିଷ୍ଠା ମର୍ଦ୍ଦଳ ପରି ଦେଖାଯାଏ । ଶତଭିଷା ତୋରଣ ପରି ଗୋଲ ଦେଖାଯାଏ । ପୂର୍ବ ଭାଦ୍ରପଦ ଓ ଉତ୍ତର ଭାଦ୍ରପଦ ଘର ପରି ଦେଖାଯାନ୍ତି—ମଞ୍ଚ ପରି ମଧ୍ୟ ଦେଖାଯାଇ ଥାନ୍ତି । ରେବତୀର ଆକାର ମାଛ ପରି । କେହି କେହି ଏହାକୁ ମର୍ଦ୍ଦଳ ପରି ଦେଖିଥାନ୍ତି । ଏହିଥିରୁ ବୁଝା ପଡ଼ୁଛି ଯେ ନକ୍ଷତ୍ରମାନଙ୍କର ଆକାର ସମସ୍ତଙ୍କ ମତରେ ସମାନ ନୁହେଁ ।

**ଅଶ୍ୱି ଚନ୍ଦ୍ର ଭଗେନ୍ଦ୍ରାଗ୍ନି ତୋୟ ବିଶ୍ୱା ଜପାଦଜାଃ ।**
**ଅହି ର୍ବୁଧ୍ନସ୍ୟୋତ୍ତରସ୍ଥା ଯୋଗତାରା ଧ୍ରୁବାଂଶଗାଃ ।୧୯।**

**ଇନ୍ଦ୍ର ଗୋବିନ୍ଦ ମିତ୍ରାଗ୍ନି ଜୀବାନାଂ ମଧ୍ୟଗାମତାଃ ।**
**ଆଦିତ୍ୟାଦିତ୍ୟ ଦୈତ୍ୟାନାମୀଶାନ ଦିଗବସ୍ଥିତାଃ ।୨୦।**

**ବିତ୍ତସ୍ୟାଭିଜିତଃ ପଶ୍ଚାତ୍ ପୂର୍ବସ୍ୟାଂ ବ୍ରହ୍ମ ସର୍ପୟୋଃ ।**
**ଯାମ୍ୟା ସ୍ଥୂଳା ପିତୁଃ ପୂଷ ଯମାର୍ଯ୍ୟମ୍ଣାଂ ଚ ଦକ୍ଷିଣାଃ ।୨୧।**

**କୃପୀଟଯୋନି କାଷ୍ଠାୟାଂ ଯୋଗତାରା ପ୍ରଚେତସଃ ।**
**ଶଙ୍କରତ୍ୱଷ୍ଟୃବାତାନାଂ ସ୍ୱରୂପାଣ୍ୟେକଭବତଃ ।୨୨।**

କେଉଁ ନକ୍ଷତ୍ରର ଯୋଗତାରା (ପ୍ରଶସ୍ତ ତାରା) କେଉଁଠାରେ ଅବସ୍ଥିତ ସେ କଥା ବର୍ତ୍ତମାନ କୁହାଯାଉଅଛି—

ଅଶ୍ୱିନୀ, ମୃଗଶିରା, ପୂର୍ବାଫାଲଗୁନୀ, ବିଶାଖା, ପୂର୍ବାଷାଢ଼ା, ଉତ୍ତରଷାଢ଼ା, ପୂର୍ବଭାଦ୍ରପଦ ଓ ଉତ୍ତରଭାଦ୍ରପଦ ନକ୍ଷତ୍ର ପୁଞ୍ଜର ଉତ୍ତରକୁ ଏମାନଙ୍କର ଯୋଗତାରା ରହିଅଛି । ଏ ଗୁଡ଼ିକର ଅବସ୍ଥିତି ନିଜ ନିଜ ନକ୍ଷତ୍ର ପୁଞ୍ଜଠାରୁ ଉତ୍ତରକୁ । ଜ୍ୟେଷ୍ଠା, ଶ୍ରବଣା, ଅନୁରାଧା, କୃତ୍ତିକା ଓ ପୁଷ୍ୟାର ଯୋଗତାରା ନକ୍ଷତ୍ର ପୁଞ୍ଜର ମଧ୍ୟଦେଶରେ ଅବସ୍ଥିତ । ପୁନର୍ବସୁ, ହସ୍ତା ଓ ମୂଳା ନକ୍ଷତ୍ରର ଯୋଗତାରା ନକ୍ଷତ୍ର ପୁଞ୍ଜର ଈଶାନକୋଣରେ ଅବସ୍ଥିତ । ଧନିଷ୍ଠା ଓ ଅଭିଜିତ୍ର ଯୋଗତାରା ନକ୍ଷତ୍ର ପୁଞ୍ଜର ପଶ୍ଚିମରେ । ମଘାର ଯୋଗତାରା ଅତି ସ୍ଥୁଳ ଓ ଏହା ଦକ୍ଷିଣ ଦିଗରେ ଅବସ୍ଥିତ । ରେବତୀ, ଭରଣୀ ଓ ଉତ୍ତର-

---

※ ନକ୍ଷତ୍ର ପୁଞ୍ଜର ଆକୃତି ୧୫ରୁ ୧୮ ଶ୍ଲୋକରେ ଯାହା ବର୍ଣ୍ଣିତ ଅଛି ତଦ୍‌ବ୍ୟତୀତ ଅଧିକ ପର୍ଯ୍ୟବେକ୍ଷଣ ଫଳରୁ ଟୀକା ଅନୁଯାୟୀ ଦିଆଯାଇଛି ।

ଫାଲ୍‌ଗୁନୀର ଯୋଗତାରା ନକ୍ଷତ୍ର ପୁଞ୍ଜର ଦକ୍ଷିଣରେ ରହିଅଛି । ଶତଭିଷାର ଯୋଗତାରା ଆଗ୍ନେୟ ଦିଗରେ । ଆର୍ଦ୍ରା, ଚିତ୍ରା ଓ ସ୍ୱାତୀ ଏକ ତାରକା । ଏଣୁ ଏମାନଙ୍କର ଯୋଗତାରା ଓ ପୁଞ୍ଜ ଭିତରେ କୌଣସି ପ୍ରଭେଦ ନାହିଁ ।

ନକ୍ଷତ୍ର ପୁଞ୍ଜର ଯେଉଁ ତାରାକୁ ଧରି ନକ୍ଷତ୍ର ଧ୍ରୁବ ଓ ଶର କୁହାଯାଇ ଅଛି, ତାହାକୁହିଁ ପୂର୍ବାଚାର୍ଯ୍ୟମାନେ ଯୋଗତାରା ଆଖ୍ୟା ଦେଇଛନ୍ତି ।

**ଯୋଗତାରା ବଲପ୍ତାସ୍ତୁ ସୂକ୍ଷ୍ମାଃ ଋମାନ୍**
**ମାନତଃ ଷଡ଼୍‌ଭୁଜୌ ବହ୍ନୟଃ ସପ୍ତୟଃ ।**
**ଇକ୍ଷଣେକ୍ଷ୍ମାଭୂତଃ କୁଞ୍ଜରଲୋଚନେ**
**ସିନ୍ଧବଃ ଷଡ଼୍‌ଗୁଣା ବାର୍ଦ୍ଧୟଣ୍ଡାବ୍ଧୟଃ ।୨୩।**

**ସୈନ୍ଧବା ସ୍ତ୍ରୀନ୍ଦବଶ୍ଚକ୍ଷୁଷୀ ସିନ୍ଧବଃ**
**ସପ୍ତ ପଞ୍ଚାବ୍ଧୟଶ୍ଚାବ୍ଧୟୋଽବ୍ଧୀନ୍ଦବଃ ।**
**ବାଜିନଃ ପାବକାର୍ବୀତଦ୍ୱୋଦ୍ୱାଃ କୃତା**
**ଅର୍ଣ୍ଣବା ବହ୍ନୟଶ୍ଚୈତ ଦସ୍ରାଦତଃ ।୨୪।**

ଯୋଗତାରାମାନଙ୍କର ବିମ୍ବ ବକଳ । କୁହାଯାଉ ଅଛି—

ଅ—୬" ଭ—୨" କୃ—୩" ରୋ—୭" ମୃ—୨" ଆ—୭" ପୁ—୮" ପୁ—୨" ଅ—୪" ମ—୬" ପୂ—୩" ଉ—୪" ହ—୪" ଚି—୭" ସ୍ୱା—୧୩" ବି—୨" ଅ—୪" ଜ୍ୟେ-୭' ମୂ—୫" ପୂଆ—୪ ଉଆ—୪" ଅ—୧୪" ଶ୍ର—୭" ଧ—୩" ପୂ—୪' ଉ—୪' ରେ—୩' ।

**ଦେବମାତୁଃ ପୁନର୍ଯାମ୍ୟଗା ତାରକା**
**ସର୍ବତାରାଧିକା ତଦ୍ବଲପ୍ତା ନଖାଃ ।**
**ତଦ୍‌ଧ୍ରୁବଃ ସପ୍ତସପ୍ତାଂଶକା ମାର୍ଗଣଃ**
**ଖାର୍ଣ୍ଣବାଂଶା କଳାପକ୍ଷମା ଦକ୍ଷିଣଃ ।୨୫।**

**ସୂର୍ଯ୍ୟ ସିଦ୍ଧାନ୍ତ ବାକ୍ୟାଦୟଂ ତାରକା**
**ଲୁବ୍ଧକାଖ୍ୟା ମୁନଶ୍ଚୈତ ନଶ୍ଚୀୟତେ ।**
**ଚେଦଦତ୍ୟାସ୍ତଦା ଯାମ୍ୟ ଗାନ୍ଧା ଲଘୁ—**
**ସ୍ତାରକା ତତ୍ ସମିପେଽପି କଣ୍ଠୀୟତାମ୍ ।୨୬।**

କେଶଦାହ୍ନର୍ମୃଗ ବ୍ୟାଧନାମା ମୃଜଃ
ସୋମଭଦ୍ ଯାମ୍ୟଗସ୍ତଦ୍ ଧ୍ରୁବୋଽଙ୍ଗେଷବଃ ।
ଯାମ୍ୟ ବାଣୋରଦାଃ ସ୍ୱାପମାଦଂଶକା
ଦଗ୍‌ବଲପ୍ତାଶ୍ଚ ତନ୍ମଣ୍ଡଳସ୍ୟାୟତଃ ।୨୭।

ତସ୍ୟ ଚେଶାନଭସ୍ୟାପି ମଧ୍ୟସ୍ଥିତା—
ସ୍ତାରକାସ୍ତିସ୍ର ଇଷ୍ୱାଭକା ଇଲ୍ୱଲାଃ ।
ଏକ ଷଷ୍ଟି ଧ୍ରୁବଃ ସ୍ଥୂଲଭସ୍ୟାର୍ଦ୍ଧ ଯୁଗ୍
ବହ୍ନିପକ୍ଷାଃ ଶରେଯାମ୍ୟ ଆସାଂମତଃ ।୨୮।

ଅନ୍ୟ କେତେକ ପ୍ରସିଦ୍ଧ ନକ୍ଷତ୍ରର ଧ୍ରୁବ କଳା, ବମ୍ବମାନ ଓ ଶରକଳା ଯଥାକ୍ରମେ ଏଠାରେ ଦିଆଯାଉ ଅଛି—ପୁନର୍ବସୁ ନକ୍ଷତ୍ରର ଦକ୍ଷିଣରେ ସବୁ ତାରାଠାରୁ ବେଶି ଉଜ୍ଜ୍ୱଳ ଗୋଟିଏ ତାରା ଅଛି । ତାହାର ବମ୍ବକଳା ୨୦″ ଧ୍ରୁବ ୭୭° ଧ୍ରୁବ ପ୍ରୋଡ଼ୟ କ୍ରାନ୍ତି ୪୦° । ସୂର୍ଯ୍ୟ ସିଦ୍ଧାନ୍ତ ଲେଖାରୁ ଏହାକୁ ଲୁବ୍‌ଧକ ତାରା ବୋଲି ମନେ କଲେ ପୁନର୍ବସୁର ଦକ୍ଷିଣରେ ଆଉ ଗୋଟିଏ ଶ୍ରେଷ୍ଠ ତାରା ମଧ୍ୟ ଦେଖିବାକୁ ମିଳିବ ଯାହା ଆଉ ଲୁବ୍‌ଧକ ନୁହେଁ । କେହି କେହି ଆଗୃଯଁ ମୃଗବ୍ୟାଧ ନକ୍ଷତ୍ରକୁ ମୃଗଶିରା ନକ୍ଷତ୍ରର ଦକ୍ଷିଣରେ ଥିବା ମାନନ୍ତି । ଏହାର ଧ୍ରୁବ ୫୨° ଦକ୍ଷିଣ ଶର ୩୨° ଓ ବମ୍ବ ପରିମାଣ ୧୦″ । ଏହି ମୃଗବ୍ୟାଧ ଓ ଆଦ୍ରା ନକ୍ଷତ୍ରର ମଧ୍ୟ ଦେଶରେ ଶର ଆକାରର ୩ଟି ନକ୍ଷତ୍ର ଦେଖାଯାନ୍ତି । ଏମାନଙ୍କୁ ଇଲ୍ୱଲା କୁହାଯାଏ । ଏ ତିନୋଟି ମଧ୍ୟରୁ ଯୋଗତାରାର ଧ୍ରୁବ ୬୧° ଓ ଦକ୍ଷିଣଶର ୨୩° । ୩୦′ ।

ହୁତଭୁଗ୍ ବ୍ରହ୍ମହୃଦୟୟୋଃ ପକ୍ଷାକ୍ଷାଂଶା ଧ୍ରୁବଶ୍ଚ ସୌମ୍ୟେକ୍ତଃ
ପ୍ରଥମସ୍ୟାଷ୍ଟୌ ବିଂଶ ଦ୍ୱିତୀୟଭସ୍ୟୋତ୍ତରେଷ୍ୱଂଶାଃ । ୨୯ ।

ବ୍ରହ୍ମ ହୃଦୟ ପୂର୍ବସ୍ୟାଂ ପଞ୍ଚଭିରଂଶୈଃ ପ୍ରଜାପତର୍ବସତ
ତଦେୟାତ୍ତରବକ୍ଷେପଃ କୁଞ୍ଜରସମାଂଶକୋଽପ୍ୟୁଦତଃ । ୩୦ ।

ଆଧୁନିକୈରଭିଯୁକ୍ତୈର୍ନିର୍ଣ୍ଣିତେ ଦ୍ୟୋକ୍ତଂ ପୃଥକ୍ ଚ ସଂସ୍ଥାନମ୍
ହୁତଭୁଗ୍ ବ୍ରହ୍ମହୃଦୟୟୋଃ ପ୍ରଜାପତେସ୍ତଦ୍ ପୁନର୍ବଂଶ । ୩୧ ।

ହୁତଭୁଗ୍ ଧ୍ରୁବଃ ସପାଦାଷ୍ଟାର୍ଥାଂଶାଃ ସାଂଘ୍ରିପଞ୍ଚ ସୌମ୍ୟଶରଃ ।
ଷଡ୍‌ବକଳାସ୍ତନ୍ମାନଂ ଧ୍ରୁବଃ ପୁନର୍ବ୍ରହ୍ମ ହୃଦୟସ୍ୟ । ୩୨ ।

**ଅଙ୍ଗାର୍ଥା ସୌମ୍ୟଶରସ୍ତ୍ରିଭୁଜ ଲବାନ୍ନୃପାସ୍ତ ନୂ ବକଳାଃ**
**ସୋମଭ ଯାମ୍ୟଗତୋ ଯୋ ଲୁବ୍ଧକ ଏତତ୍ ପ୍ରଜାପତଭମ୍ ।୩୩।**

ହୁତଭୁକ୍ ନକ୍ଷତ୍ରର ସୂର୍ଯ୍ୟସିଦ୍ଧାନ୍ତୋକ୍ତ ଧ୍ରୁବ ୫୨° ଓ ଉତ୍ତରଶର ୮° । ବ୍ରହ୍ମ ହୃଦୟର ମଧ୍ୟ ସୂର୍ଯ୍ୟସିଦ୍ଧାନ୍ତୋକ୍ତ ଧ୍ରୁବ ୫୨° ଓ ଉତ୍ତରଶର ୩୦° ।

ବ୍ରହ୍ମ ହୃଦୟର ପୂର୍ବକୁ ୫° ଅନ୍ତରରେ ପ୍ରଜାପତି ନକ୍ଷତ୍ର ଥିବାରୁ ଏହାର ଧ୍ରୁବ ୫୭° ଓ ଏହାର ଉତ୍ତରଶର ୩୮° । ଏହା ସୂର୍ଯ୍ୟ ସିଦ୍ଧାନ୍ତର ମତ ।

ଆଧୁନିକ ପ୍ରତ୍ୟକ୍ଷଦର୍ଶୀମାନେ ଏହି ତାରାମାନଙ୍କର ଯେଉଁ ଧ୍ରୁବ ଓ ଶର ମାନ କହିଅଛନ୍ତି ବର୍ତ୍ତମାନ ମୁଁ ତାହା କହୁଅଛି —

ହୁତଭୁକ୍‌ର ଧ୍ରୁବ ୫୮° । ୧୫ ଓ ଶ ୫° । ୧୫ (ଉତ୍ତର) ଏହାର ବମ୍ବମାନ ୭" ମାତ୍ର ।

ବ୍ରହ୍ମ ହୃଦୟର ଧ୍ରୁ ୫୭°, ଉତ୍ତର ଶର ୨୨° ଓ ବମ୍ବମାନ ୧୬।। । ମୃଗଶିରା ନକ୍ଷତ୍ରର ଦକ୍ଷିଣକୁ ଲୁବ୍ଧକ ତାରା ଅଛି ବୋଲି ଯାହା କୁହାଯାଉଅଛି ତାହାକୁ ପ୍ରଜାପତି ତାରା ବୋଲି ବୁଝିବାକୁ ହେବ ।

**ତ୍ୱାଷ୍ଟ୍ର ସ୍ୟାପାଂ ବସ୍ତଃ ପଞ୍ଚଲବାନ୍ତେବସତ୍ୟୁଦଗ୍‌ଭଗେ**
**ଆପ୍ୟବସୁସ୍ତତ୍‌ସୌମ୍ୟେ ସ୍ଥୂଳଃ କଂଚତ୍ତତୋଽଙ୍ଗାଂଶୈଃ । ୩୪ ।**

**ଧ୍ରୁବୋଽଗସ୍ତ୍ୟସ୍ୟ ପଞ୍ଚାଙ୍କଭାଗାଃ ପଞ୍ଚାଦ୍ରୟଃ ଶରଃ**
**ଦକ୍ଷିଣଃ ତଦ୍ଧ୍ରୁବୋ ବାମଂ ଚଳାଂଶୈଃ ସଂସ୍କୃତଃ ସ୍ଫୁଟଃ ।୩୫।**

**ଧୃତୟୋବକଳାସ୍ତସ୍ୟ ସୂକ୍ଷ୍ମମଣ୍ଡଳ ବସ୍ତୃତଃ ।**
**ଯମସ୍ୟୈବଂ ଦ୍ୱିପକ୍ଷାଂଶା ଧ୍ରୁବୋଽଙ୍ଗାଙ୍ଗାକ ମାର୍ଗଣଃ । ୩୬ ।**

**ଯାମ୍ୟୋଽଷ୍ଟୌ ବକଳା ବହ୍ନ୍ୟୋଽଗସ୍ତ୍ୟବଦ୍ଧ୍ରୁବ ସଂସ୍କୃତଃ**
**ଖଶିତ୍ରୟ୍ୟମଗସ୍ତ୍ୟସ୍ୟ ଧ୍ରୁବଃ ସୌରୌଦତଃ ପୁରା । ୩୭ ।**

**ସପ୍ତନାଗାଂଶକଃ ପ୍ରୋକ୍ତଃ ସତ୍‌ସିଦ୍ଧାନ୍ତ ଶିରୋମଣୌ**
**ଭୂଶରାକ୍ଷିକୃତା ଦେଷୁ କଳୈର୍ଭାସ୍କରଧୀମତା । ୩୮ ।**

ସ୍ୱୋକ୍ତାଦତ ଧ୍ରୁବାତ୍ ପଶ୍ଚାଦ୍ ଭଗଷଟ୍କାନ୍ତରେ ଯତଃ
ଦୃଷ୍ଟୋସୌ ସାଂପ୍ରତଂ ସାର୍ଦ୍ଧଘନାଂଶାନ୍ତର ଈଷତେ । ୩୯ ।

ଯୁଗ୍ମସ୍ୟ ବଶ୍ୱିଭଗାନ୍ତେ ତଦବ୍ଦୈର୍ଦୋର୍ଗୋକ୍ଷୁ ପର୍ବତୈଃ
ତସ୍ୟ ସ୍ଥାନାନ୍ତରଂ ସିଦ୍ଧଂ ସାର୍ଦ୍ଧରୁଦ୍ରାୟନାଂଶକମ୍ । ୪୦ ।

ଚିତ୍ରା ତାରାର ଉତ୍ତର ଆଡ଼କୁ ୫° ଅନ୍ତରରେ ଅପାଂବତ୍ସ ତାରାଅଛି । ଏହାର ଉତ୍ତରକୁ ୭° ଅନ୍ତରରେ ଆପ୍ୟବତ୍ସ ତାରା ଅବସ୍ଥିତ । ଏହି ତାରା ଅପାଂବତ୍ସଠାରୁ କିଛି ବଡ ଦେଖାଯାଏ । ଏହାର ଅନ୍ୟନାମ ଆପ ।

ଅପାଂବତ୍ସର ଧ୍ରୁବ ଓ ଆପ୍ୟ ବତ୍ସର ଧ୍ରୁବ ଚିତ୍ରାସଙ୍ଗେ ସମାନ । ଅପାଂବତ୍ସର ଉତ୍ତର ଶର ୨° । ୫୦' ଓ ଆପ୍ୟବତ୍ସର ଉତ୍ତରଶର ୮° । ୫୦' ।

ଅଗସ୍ତ୍ୟ ତାରାର ଧ୍ରୁବ-୯୫° ଓ ଦକ୍ଷିଣଶର-୭୫° । ଏହି ଅଗସ୍ତ୍ୟର ଧ୍ରୁବରେ ଅୟନାଂଶ ସଂସ୍କାର କରିବାକୁ ହେବ । ଅୟନାଂଶ ଧନବେଳେ ମିଶାଇବାକୁ ହେବ । ଅୟନାଂଶ ଋଣବେଳେ ଫେଡ଼ିବାକୁ ହେବ ।

ଏହାକଲେ ଅଗସ୍ତ୍ୟର ଧ୍ରୁବ ସ୍ପଷ୍ଟ ହେବ । ଅଗସ୍ତ୍ୟର ବିମ୍ବବ୍ୟାସ ୧୮" ।

ଯମର ଧ୍ରୁବ ୨୨° ଦକ୍ଷିଣଶର ୭୭° ଓ ବିମ୍ବ ପରିମାଣ-୮" । ଅଗସ୍ତ୍ୟପରି ଏହାକୁ ମଧ୍ୟ ଅୟନାଂଶ ସଂସ୍କୃତ କଲେ ସ୍ଫୁଟ ହୁଏ ।

ସୂର୍ଯ୍ୟ ସିଦ୍ଧାନ୍ତ ଅଗସ୍ତ୍ୟ ତାରାର ଧ୍ରୁବ ୯୦° କହନ୍ତି (ସତ୍ୟ ଯୁଗର ଅଳ୍ପ ଅବଶେଷ ଥିବାବେଳେ) । ଭାସ୍କରାଚାର୍ଯ୍ୟ ସିଦ୍ଧାନ୍ତ ଶିରୋମଣିରେ ପୁନର୍ବସୁର ଧ୍ରୁବ ୯୩° ଲେଖି ସେଥିରୁ ୭° କମ୍ ଧ୍ରୁବାଂଶରେ ଅର୍ଥାତ୍ ୮୭° ଧ୍ରୁବାଂଶରେ ଅଗସ୍ତ୍ୟକୁ କଳି ଗତ-ବର୍ଷ ୪୨୫୧ ରେ ଦେଖିଥିବା କହିଛନ୍ତି । ପୁନର୍ବସୁର ଧ୍ରୁବାଂଶ ୯୦° । ୧୫' । ଅଗସ୍ତ୍ୟ ଧ୍ରୁବ ୯୫° । ଏଣୁ ଚଳାଂଶ ସ୍ଫୁଟ ଅଗସ୍ତ୍ୟ ଧ୍ରୁବମାନ ହେଉଛି ୯୫-୨୨ ଅୟନାଂଶ=୭୩, ଅଥବା ବା ପୁନର୍ବସୁର ଧ୍ରୁବଠାରୁ ୧୭° । ୩୦' ପଛରେ ଅଗସ୍ତ୍ୟ ଦେଖାଯାଉ ଥିବାରୁ ୯୦° । ୧୫' -୧୭° । ୩୦' =୭୨° । ୪୫' ଅଗସ୍ତ୍ୟର ସ୍ଫୁଟ ଧ୍ରୁବମାନ ହେବ । ଦୃକ୍‌ସିଦ୍ଧର ୭୩° ଓ ବର୍ତ୍ତମାନର ୭୨° । ୪୫' ମଧ୍ୟରେ ବିଶେଷ ତଫାତ୍ ନାହିଁ । ଏହା ଭାସ୍କରଙ୍କ ପରେ ୭୧୯ ବର୍ଷର ପରିବର୍ତ୍ତନ ବୋଲି ମାନିବାକୁ ହେବ । ୭୩° ମିଥୁନ ରାଶିର ୧୩ ଅଂଶ । ଏତିକି ବେଳେ ଅୟନାଂଶ ୧୧° । ୩୦' ଥିଲା ।

ସି: ଦ: ୩୪

ସପ୍ତର୍ଷୀଣାଂ ଧ୍ରୁବଂ ପ୍ରାଗ୍ଭିର୍ନୋକ୍ତଃ ସଂଗ୍ରହ ସମ୍ଭବାତ୍
ତଥାପ୍ୟନୁଭବାତ୍ତେଷାଂ ବ୍ୟବସ୍ଥା କ୍ରିୟତେଽଧୁନା ।୪୧।

ପୂର୍ବାଗ୍ରଂ ଶକଟାକାର ମୁଦକ୍ସ୍ଥମୁଡ଼ୁସପ୍ତକମ୍
ସୁରର୍ଷିମଣ୍ଡଳଂ ପ୍ରୋକ୍ତଂ ବ୍ୟକ୍ତଂ ବଶ୍ୱନମସ୍କୃତମ୍ ।୪୨।

ତତ୍ ପୂର୍ବୋନ୍ନତରେଖାଗ୍ରେ ମରୀଚିଃ ପଶ୍ଚିମେ ତତଃ
ବଶିଷ୍ଠୋଽରୁନ୍ଧତୀଯୁକ୍ତସ୍ତତ୍ ପଶ୍ଚାଦଙ୍ଗିରାଃ ସ୍ଥିତଃ ।୪୩।

ତତ୍ପଶ୍ଚାଚ୍ଚତୁରସ୍ରସ୍ୟ ଶମୁଦଶ୍ୟଦ୍ୱିରସ୍ୟ ଚ
ପୁଲସ୍ତ୍ୟୋ ଦକ୍ଷିଣେ ତସ୍ୟ ପଶ୍ଚିମେ ପୁଲହଃ ସ୍ଥିତଃ ।୪୪।

କ୍ରତୁସ୍ତଦୁତ୍ତରସ୍ଥାନସ୍ତଦ୍ୱୋକ୍ତୌ ପୁଲହ କ୍ରତୂ
ଧ୍ରୁବସୂତ୍ରେଣ ଯଲ୍ଲଗ୍ନୌ ତଦୃକ୍ଷସ୍ଥା ମହର୍ଷୟଃ ।୪୫।

କଥ୍ୟନ୍ତେ ସାମ୍ପ୍ରତଂ ସିଂହେ ଭୂଭୁଜାଂଶାନ୍ତଗୌ ହତୌ
କାଲାଂଶୈର୍ବିଶ୍ୱକୈଃ ପ୍ରାଚ୍ୟାଂ ପୁଲସ୍ତ୍ୟୋ ବର୍ତ୍ତତେ ତତଃ ।୪୬।

ତତସ୍ତ୍ରୈଃ ଶାୟକୈରଦ୍ରିରଙ୍ଗୈରାନବଭିଽସ୍ତତଃ
ତତୋଽଷ୍ଟାଭିର୍ବଶିଷ୍ଠୋଽସ୍ମାନ୍ମରୀଚିର୍ବର୍ତ୍ତତେଽଷ୍ଟଭିଃ ।୪୭।

ଅରୁନ୍ଧତୀ ସ୍ଥିତା ପ୍ରାଚ୍ୟାଂ ସ୍ୱାମିନୋଽ ଦ୍ୱିକଳାନ୍ତରେ
ଯା ବଶିଷ୍ଠାତନେଦଷ୍ଟା ଯନ୍ତ୍ରଦୃଷ୍ଟାଣୁରେତତଃ ।୪୮।

ସା ନେଷ୍ଟା ସଦସଦ୍ଦୃଷ୍ଟିଫଲୋକ୍ତେଃ ପ୍ରଥମେଷ୍ୟତେ
ଏକାସ୍ୟା ମାନବକଲା ତସ୍ତ୍ରୋଽଦ୍ୱେରଷ୍ଟ ଚ୍ଛନ୍ୟତଃ ।୪୯।

ପରସ୍ପରସ୍ୟ ଚୈତେଷାଂ ସଦା ତୁଲ୍ୟାନ୍ତରସ୍ଥିତେଃ
ଗୃହ୍ୟନ୍ତାମୃକ୍ଷଯେ ଗେଷୁ କାଲାଂଶା ଦକ୍ ଫଲାମ୍ବକାଃ ।୫୦।

ତେଽଷ୍ଟାଦଶଶତାଭ୍ୟସ୍ତା ବ୍ୟକ୍ଷଲଗ୍ନାସୁଭିର୍ହୃତାଃ
ସ୍ଥାର୍ ଧ୍ରୁବାଢ୍ୟା ଭବନ୍ତୀଷ୍ଟ ମୁନକ୍ଷାନ୍ତ ଗୃହାଂଶକାଃ ।୫୧।

—ସପ୍ତର୍ଷି ମଣ୍ଡଳ—

ଚଳନଶୀଳ ଥିବାରୁ ସପ୍ତର୍ଷି ମଣ୍ଡଳର ଧ୍ରୁବ ପୂର୍ବାଗ୍ରନ୍ଥୀମାନେ କହି ନାହାନ୍ତି । ମୋ ଅନୁଭବରେ ଆସିବାରୁ ମୁଁ ଅବଶ୍ୟ ସେମାନଙ୍କ ଅବସ୍ଥିତି ସମ୍ବନ୍ଧରେ କିଛି କହୁଅଛି ।

ଉତ୍ତର ଦିଗରେ ଥିବା ଏବଂ ପୂର୍ବ ଆଡ଼କୁ ଶଗଡ଼ ଭଳି ଦେଖାଯାଉ ଥିବା ସପ୍ତର୍ଷି-ମଣ୍ଡଳ ଅତି ମାତ୍ରାରେ ବ୍ୟକ୍ତ । ସଂହିତା ଓ ପୁରାଣ ଆଦିରେ ସପ୍ତର୍ଷିମଣ୍ଡଳ ଜଗଦ୍‌ବନ୍ଦ୍ୟ ବୋଲି ଲେଖାଅଛି ।

ସପ୍ତର୍ଷିମଣ୍ଡଳରେ ପୂର୍ବକୁ ଯେଉଁ ଉନ୍ନତ ରେଖାଟି ରହିଛି ତାହାର ଅଗ୍ର ଦେଶରେ ମରୀଚଙ୍କର ଅବସ୍ଥାନ । ମରୀଚଙ୍କ ପଛକୁ ବଶିଷ୍ଠ ଅରୁନ୍ଧତୀଙ୍କ ସହ ରହି ଅଛନ୍ତି । ବଶିଷ୍ଠଙ୍କ ପଶ୍ଚିମକୁ ଅଙ୍ଗିରା । ଏହାପରେ ଯେଉଁ ଚତୁଷ୍କୋଣ ଅଛି ତାର ଈଶାନ୍ୟ କୋଣରେ ଅତ୍ରି ଅଛନ୍ତି । ଅତ୍ରିଙ୍କ ଦକ୍ଷିଣକୁ ପୁଲସ୍ତ୍ୟ—ପୁଲସ୍ତ୍ୟ ପଶ୍ଚିମକୁ ପୁଲହ । ପୁଲହଙ୍କ ଉତ୍ତରରେ କ୍ରତୁ ଅଛନ୍ତି । ପୁଲହ ଓ କ୍ରତୁଙ୍କୁ ଦେଇ ଯେଉଁ ଧ୍ରୁବ ପ୍ରୋତ ବୃତ୍ତ ହେବ ସେ ଯାମ୍ୟବୃତ୍ତସ୍ଥ ଯେଉଁ ନକ୍ଷତ୍ରକୁ ଦେଇ ଯିବ ସେହି ନକ୍ଷତ୍ରରେ ସପ୍ତର୍ଷି ପୁଞ୍ଜ ଅଛନ୍ତି ବୋଲି ଧରା ଯାଇଥାଏ । ବର୍ତ୍ତମାନ ପୁଲହ ଓ କ୍ରତୁ ସିଂହ ରାଶିର ୨୧ଶ ଅଂଶରେ ପୂର୍ବା ଫାଲ୍‌ଗୁନୀର ୩ୟ ପାଦରେ ଅଛନ୍ତି । ପୁଲହ ଓ କ୍ରତୁ ଠାରୁ ୧୩ କାଳାଂଶରେ ପୂର୍ବକୁ ପୁଲସ୍ତ୍ୟ ଅଛି । ପୁଲସ୍ତ୍ୟ ଠାରୁ ୫ କାଳାଂଶରେ ଅତ୍ରି ପୂର୍ବକୁ, ଅତ୍ରିଠାରୁ ୯ କାଳାଂଶାନ୍ତରରେ ଅଙ୍ଗିରା ପୂର୍ବକୁ, ଅଙ୍ଗିରାଠାରୁ ୮ କାଳାଂଶାନ୍ତରରେ ବଶିଷ୍ଠ ଏବଂ ବଶିଷ୍ଠଠାରୁ ପୂର୍ବକୁ ୮ କାଳାଂଶ ଅନ୍ତରରେ ମରୀଚ ଅଛନ୍ତି । ଅରୁନ୍ଧତୀ ବଶିଷ୍ଠଙ୍କ ଠାରୁ ପୂର୍ବକୁ ୭ କାଳାଂଶାନ୍ତରରେ ଅଛନ୍ତି । ବଶିଷ୍ଠଙ୍କ ନିକଟବର୍ତ୍ତୀ ଅତି କ୍ଷୁଦ୍ର ଯେଉଁ ତାରାଟି ଖୋଲା ଆଖିରେ ଦେଖାଯାଏ ନାହିଁ ଅଥଚ ଯନ୍ତ୍ର ସାହାଯ୍ୟରେ ଦେଖାଯାଏ, ସେହି ତାରା ଆମର ଶୁଭାଶୁଭ ଫଳ ଦାୟିନୀ ନୁହେ । ବଶିଷ୍ଠଙ୍କ-ଠାରୁ ପୂର୍ବକୁ ୭ କଳା ବ୍ୟବଧାନରେ ଥିବା ଅରୁନ୍ଧତୀ ଆମ୍ଭମାନଙ୍କର ଶୁଭାଶୁଭ ଫଳ ଦାତ୍ରୀ ରୂପରେ ଶାସ୍ତ୍ରରେ ବର୍ଣ୍ଣିତ । ଏହି ଅରୁନ୍ଧତୀ (ବୃହତ୍ ଉଜ୍ଜ୍ୱଳ ତାରା)ର ବିମ୍ବମାନ ୧" ବିକଳା ମାତ୍ର । ସପ୍ତର୍ଷି ମଧ୍ୟରୁ କେବଳ ଅତ୍ରିଙ୍କର ବିମ୍ବମାନ ୩" ବିକଳା । ବାକୀ ସମସ୍ତଙ୍କ ବିମ୍ବମାନ ୮" ବିକଳା । ଏହି ତାରାଗୁଡ଼ିକର ପରସ୍ପରର ବ୍ୟବଧାନ ପ୍ରାୟ ସମାନ । ଏଣୁ ଏମାନଙ୍କର କାଳାଂଶ ୧୦ ପଳ ମାତ୍ର । ଏହି ୧୦ ପଳକୁ ୧୮୦୦ରେ ଗୁଣି ନିରକ୍ଷ ଉଦୟ (ଲଗ୍ନମାନ) ଅସୁରେ ଭାଗ ଦେଲେ ଯେତେ କଳା ଲବ୍ଧ ଆସିବ ତାକୁ ପୁଲହ ଓ କ୍ରତୁର ପୂର୍ବୋକ୍ତ ଧ୍ରୁବରେ ଯୋଗ କଲେ (ସିଂହ ରାଶିର ୨୧୦ ଅଂଶ) ଭକ୍ଷ ନକ୍ଷତ୍ରର ରାଶ୍ୟାଦି ଧ୍ରୁବ ହେବ । ମନେ ରଖିବାକୁ ହେବ ଯେ ଯେଉଁ ଭକ୍ଷ ନକ୍ଷତ୍ରର କାଳାଂଶ କଆସିବ ତାହାରହିଁ ରାଶ୍ୟାଦି ଧ୍ରୁବ ଆସିଯାଇ ପାରିବ ।

**ସପ୍ତର୍ଷିମଣ୍ଡଳାୟାମସ୍ତ୍ୟେବ କାଳାଂଶକୋଽପି ଯତ୍**
**ଯାଯୁକ୍ତନାଂଶତୁଲାକନ୍ୟାସ୍ଥିତର୍ଷ୍ୟାଙ୍ଗାବ୍ୟଂଶ ଇଷ୍ୟତେ ।୫୬।**

କ୍ରାନ୍ତ୍ୟନ୍ତାଦ୍ ସୌମ୍ୟବାଣାଂଶା ଲଖ୍ୟନ୍ତେଽଙ୍ଗଶରାଃ କ୍ରତୋଃ
ପୁଲହସ୍ୟୈକପଞ୍ଚାଶତ୍ ପୁଲସ୍ତ୍ୟସ୍ୟାଗ୍ନି-ସାୟକାଃ ।୫୩।

ଅଙ୍କ ପକ୍ଷିଣ ଏବାତ୍ରେଃ ଷଷ୍ଟି ରଙ୍ଗିରସୋ ମତା
ଦ୍ୱାଷଷ୍ଟ୍ୟଂଶା ବଶିଷ୍ଠସ୍ୟ ମରୀଚେଃ ଷଷ୍ଟିରୀକ୍ଷିତା ।୫୪।

ସର୍ବଦାୟଂ ଶରଃ କ୍ରାନ୍ତେ ର୍ଯଦି ତୁଲ୍ୟୋ ଭବେତ୍ତଦା
ଯୁଗାନ୍ତସ୍ଥବଶିଷ୍ଠସ୍ୟାଚ୍ଚତୁର୍ଭାଗାନ୍ତରେ ଧ୍ରୁବାତ୍ ।୫୫।

ସ୍ଫୁଟକ୍ରାନ୍ତେର୍ମହର୍ଷୀଣାଂ ତୁଲ୍ୟତା ଯଦି ସର୍ବଦା
ତଦା ରାଶ୍ୟନ୍ତରପ୍ରାପ୍ତୌ ବିକ୍ଷେପୋ ଭିନ୍ନତାଂ ବ୍ରଜେତ୍ ।୫୬।

ସମାଗସ୍ତ୍ୟସ୍ଫୁଟକ୍ରାନ୍ତେର୍ଯଥା ସାମ୍ୟଂ ସଦେକ୍ଷ୍ୟତେ
ଦସ୍ରାଦୀନାଂ ଚ ବୈଷମ୍ୟଂ ତଥୈଷାଂ ନେକ୍ଷିତୋଽପମଃ ।୫୭।

ପ୍ରତ୍ୟବ୍ଦଂ ପ୍ରାଗ୍ଗତଃ ପ୍ରୋକ୍ତା ପୁରାତନୈରଷ୍ଟଲପ୍ତିକା
ତେଷାଂ ନୋ ନିଶ୍ଚିତା ପୂର୍ବାନୁଭବାଦର୍ଶନାନ୍ମୟା ।୫୮।

ତଥାୟନାଂଶ ସଂସ୍କାରେ ବାମତସ୍ତେଷାଂ ଯଦୀରତଃ
ତତ୍ସର୍ବଂ କବିଭିର୍ଭାବ୍ୟୈର୍ଜ୍ଞେୟଂ ମତ୍କାଳକଳ୍ପିତେଃ ।୫୯।

ସପ୍ତର୍ଷି ମଣ୍ଡଳର ପୂର୍ବାପର ଦୈର୍ଘ୍ୟ ୪୩ କାଳାଂଶ ହେଲେ ମଧ୍ୟ ସାୟନ କନ୍ୟା ଓ ତୁଳ ରାଶିରେ ତାହାର ସ୍ଥିତି ଯୋଗୁଁ ଏହାର ଦୈର୍ଘ୍ୟ ୪୬ ଅଂଶ ଦେଖାଯାଇ ଥାଏ ।

କ୍ରତୁର କ୍ରାନ୍ତି ବୃତ୍ତୀୟ ଗଣ୍ୟାଦ ଧ୍ରୁବ ସ୍ଥାନରୁ ଧ୍ରୁବ ପ୍ରୋତ ବୃତ୍ତୀୟ ଉତ୍ତରଶର ୫୬° ଅଂଶ । ପୁଲହର ୫୧° ଅଂଶ, ପୁଲସ୍ତ୍ୟର ୫୩° ଅଂଶ, ଅତ୍ରିର ୫୯° ଅଂଶ, ଅଙ୍ଗିରାର ୬୦° ଅଂଶ ଓ ବଶିଷ୍ଠଙ୍କର ୬୨ ଅଂଶ । ଶର ସବୁବେଳେ ସମାନ ରହିଲେ ମିଥୁନର ଶେଷରେ ଥିବା ବଶିଷ୍ଠ ନକ୍ଷତ୍ର ଧ୍ରୁବ ନକ୍ଷତ୍ର ଠାରୁ ୪୦ ଅଂଶରେ ରହିବେ । ବଶିଷ୍ଠର ସୌମ୍ୟଶର ୬୨ । ଯୁଗାନ୍ତରେ କ୍ରାନ୍ତି ୨୪ ମୋଟ ୮୬ । ଏଣୁ ଧ୍ରୁବ ଓ ବଶିଷ୍ଠ ମଧ୍ୟରେ ବ୍ୟବଧାନ ହେଲା ୪° ।

ସପ୍ତର୍ଷିଙ୍କର (ପ୍ରତ୍ୟେକର) ସ୍ଫୁଟକ୍ରାନ୍ତି ସର୍ବଦା ସମାନ ହେଲେ ଋଷିମାନେ ଅନ୍ୟ ରାଶିକୁ ଗମନ କଲାବେଳେ ସେମାନଙ୍କର ଶର ଭିନ୍ନ ହେବାକୁ ବାଧ୍ୟ ।

ଯମ ଓ ଅଗସ୍ତ୍ୟ ତାରାର ସ୍ଫୁଟ କ୍ରାନ୍ତି ସବୁବେଳେ ସମାନ ଥିବାର ଜଣାଯାଏ (ଦେଖାଯାଏ) ଅଶ୍ୱିନୀ ଆଦି ନକ୍ଷତ୍ରର କ୍ରାନ୍ତି ସର୍ବଦା ଭିନ୍ନ ଥିବାର ଦେଖାଯାଏ । ଏହି ସପ୍ତର୍ଷିମଣ୍ଡଳର ସେପରି ଭିନ୍ନ ହେବା ବା ନ ହେବା କ୍ରାନ୍ତି ଦେଖାଯାଇ ନାହିଁ । ଏଣୁ ଏହାକୁ ଉଭୟ କ୍ରମର ମନେ କଲେ ଠିକ୍ ହେବ । ଏହାର କ୍ରାନ୍ତି ବେଳେ ବେଳେ ସମାନ ଓ ବେଳେ ବେଳେ ଅସମାନ ଦେଖା ଯାଇଥାଏ । ପୂର୍ବାଚାର୍ଯ୍ୟମାନେ ଏମାନଙ୍କର ବାର୍ଷିକ ଗତି ୮' (୮ କଳା) ମାନନ୍ତି । ମାତ୍ର ମୁଁ ତାହା ଉପଲବ୍ଧି କରି ନ ପାରିବାରୁ ମାନି ପାରୁ ନାହିଁ ।

ଯମ, ଅଗସ୍ତ୍ୟ ଓ ସପ୍ତର୍ଷିମଣ୍ଡଳର ଧ୍ରୁବରେ ବିପରୀତ ଅୟନ ସଂସ୍କାର କରାଯିବ । ଯାହା ଲେଖା ଅଛି ତାହା ଭାବି ଜ୍ୟୋତିଷୀମାନେ ମୋ ସମୟର ତାରାସ୍ଥିତିକୁ ଧରି ଜାଣିବେ ।

ଲମ୍ବା-ତଥ୍ୟଂଶ-ମାନଃ ଖେଯଦ୍ୱ ଋଜୁର୍ୟଦଗ୍‌ଧ୍ରୁବଃ
ନ ତନ୍ମଧ୍ୟ-ଧ୍ରୁବସ୍ଥାନଂ ସୂକ୍ଷ୍ମପାତାର୍ହମିଷ୍ୟତେ ।୭୦।

କୃତାଷ୍ଟଲମ୍ବାନ୍ତରତୋ ନିଜକେନ୍ଦ୍ରାଦ୍ଦ୍ରୁତୋ ଧ୍ରୁବଃ
ମେଷାଦିସ୍ଥୋ ଭ୍ରମତ୍ୟସ୍ମାତ୍ ପୌଷ୍ଣଭେ ଗଗନାର୍ଦ୍ଧଗେ ।୭୧।

ଉନ୍ନତୋ ଦୃଶ୍ୟତେ ବିଷ୍ଣୌଦିତ୍ୟାଂ ଚାକ୍ଷସମୋଚ୍ଛ୍ରିତଃ
ତ୍ୱାଷ୍ଟ୍ରେ ନତସ୍ତତୋ ମଧ୍ୟସ୍ଥାନମସ୍ୟାନୁମୀୟତାମ୍ ।୭୨।

ଏବଂ ଯାମ୍ୟଧ୍ରୁବୋ ମେଧି ମୂଲଯୋଜିତ ଗୌରବ
ତୁଲାଦିସ୍ଥୋ ଭ୍ରମନ୍ନଭେ ଦୃଶ୍ୟେତାସୁରଭାଗଗୈଃ ।୭୩।

$\frac{୧ \text{ ଲି}}{୧୫} = \frac{୬୦ \text{ ବିକଳା}}{୧୫}$ = ୪ ବିକଳା । ଉତ୍ତର ଧ୍ରୁବ ତାରାର ବିମ୍ବମାନ ୪ ବିକଳା ମାତ୍ର । ଏହି ଉତ୍ତର ଧ୍ରୁବ ତାରା ଯେଉଁଠାରେ ଅଛି ତାହା ବାସ୍ତବ ଧ୍ରୁବ ସ୍ଥାନ ନୁହେଁ । ଏଣୁ ଏହା ବିଷୁବ ବୃତ୍ତର କେନ୍ଦ୍ର ହୋଇ ପାରିବ କି ନାହିଁ ଏହାକୁ ନେଇ ଧ୍ରୁବ-ପ୍ରୋତ ବୃତ୍ତ କରି ହେବନାହିଁ । କାରଣ ଦୃଶ୍ୟ ଧ୍ରୁବ ତାରା ନାଡ଼ୀବୃତ୍ତର ପୃଷ୍ଠକେନ୍ଦ୍ରଠାରୁ ୮୪ ଲିପ୍ତା ଦୂରରେଅଛି । ଫଳରେ ରେବତୀ ଯାମ୍ୟୋତ୍ତର ବୃତ୍ତକୁ ଆସିବା ବେଳେ (ଦିନାର୍ଦ୍ଧରେ) ଏହି ଧ୍ରୁବତାରା ମେଷାଦିରେ ରହି ଯାମ୍ୟୋତ୍ତର ବୃତ୍ତରେ ୮୪ କଳା ଉନ୍ନତ ଦେଖାଯାଏ । ଶ୍ରବଣା ଓ ପୁନର୍ବସୁ ଯାମ୍ୟୋତ୍ତର ବୃତ୍ତରେ ରହିବା ବେଳେ ଏହି ଧ୍ରୁବ ନକ୍ଷତ୍ର ପୁଣି ଦିଗ୍‌ବଳୟଠାରୁ ନିଜର ଅକ୍ଷାଂଶ ସମାନ ଉନ୍ନତ ଦେଖାଯାଏ । (ଉର୍ଦ୍ଧ୍ୱ ଖସ୍ୱସ୍ତିକଠାରୁ ଅକ୍ଷାଂଶର କୋଟି ବ୍ୟାସାର୍ଦ୍ଧ ବୃତ୍ତରେ ସେ ବୁଲିବାକୁ ଲାଗେ) । ପୁଣି ଚିତ୍ରା ନକ୍ଷତ୍ର ଉକ୍ତ ଯାମ୍ୟୋତ୍ତର ବୃତ୍ତକୁ ଗଲାବେଳେ ଏହି ଧ୍ରୁବତାରା ଉକ୍ତ ଯାମ୍ୟୋତ୍ତର ବୃତ୍ତରେ ନିଜ କେନ୍ଦ୍ର-

ଠାରୁ ୮୪ କଳା ନତ ଥିବା ଦେଖାଯାଏ । ଏହି ଛଅ ସ୍ଥାନରୁ ଏହାର କେନ୍ଦ୍ର ଅଣାଯାଇ ପାରିବ । (ଯେଉଁ ଧ୍ରୁବ-ଅହୋରାତ୍ର ବୃତ୍ତରେ ବୁଲେ ଏବଂ ଯାହାର ବ୍ୟାସାର୍ଦ୍ଧ ୮୪ କଳା, ଉକ୍ତ ଲିଖିତ ଛଅୋଟି ସ୍ଥାନରୁ ତାହାର କେନ୍ଦ୍ର ଅର୍ଥାତ୍ ଅସଲ ଧ୍ରୁବସ୍ଥାନ ସ୍ଥିରକରାଯାଇ ପାରିବ—ବୃତ୍ତ ପରିଧିର ତିନୋଟି ସ୍ଥାନ (ବିନ୍ଦୁ) ଧରି ଯେପରି ବୃତ୍ତ କେନ୍ଦ୍ର ଅଣାଯାଇ ଥାଏ) ।

ଠିକ ଏହିପରି ମେଢ଼ିରେ ଯୋଚ୍ଚି ଯାଇଥିବା ବଳଦ ସଦୃଶ ଦକ୍ଷିଣ ଧ୍ରୁବ ମଧ୍ୟ ଭୂଜାଦରେ ପୂର୍ବବତ୍ ଆକାଶରେ ଥାଇ ଦକ୍ଷିଣ ଗୋଲାର୍ଦ୍ଧରେ ଥିବା ଲୋକଙ୍କୁ ଦେଖା ଯାଉଥିବ ।

ଅଂଶାସ୍ତୁତ୍ରିବଧା ଜ୍ଞେୟା ମାନାଂଶାଃ କାଳଜାଂଶକାଃ
କ୍ଷେତ୍ରାଂଶାଶ୍ଚେତ ଲଗ୍ନାନାଂ ଭେଦାତ୍ତୌ କ୍ଷେତ୍ରକାଳକୌ ।୬୪।

ଅଂଶୌ ବଭିନ୍ନୌ ଭବତଶ୍ଚକ୍ରାନ୍ତେ ସଂଖ୍ୟୟା ସମୌ
ମାନକାଳାଂଶୟୋଃ ସାମ୍ୟଂ ବୃଷୁବଦ୍ବୃତ୍ତ ଏବ ତତ୍ ।୬୫।

ମହଦନ୍ତରମେବ ସ୍ୟାତ୍ ତଦୁଦଗ୍‌ଯାମ୍ୟଭାଗୟୋଃ
ପ୍ରାକ୍‌ପଶ୍ଚିମାନ୍ତରସ୍ୟାୟୁଂ କମୋନାବାଗୁଦଙ୍ଗତେଃ ।୬୬।

ଯଥାବ ପୁଲହକତ୍ୱୋଃ ସୌମ୍ୟଯାମ୍ୟାନ୍ତରଂ ଶରାଃ
ଭାଗା ଏବ ସମା ଦୃଷ୍ଟା ମରୀଚ୍ୟନ୍ତଂ କତୋଃ ପୁନଃ ।୬୭।

ପାକ୍‌ପଶ୍ଚାଦନ୍ତରେ ଦୃଷ୍ଟା ମାନାଂଶାସ୍ତତ୍ତ୍ୱ-ସଂଖ୍ୟକାଃ
ସାର୍ଦ୍ଧାସ୍ତତ୍ତ୍ୱ ଶରାଂଶେଭ୍ୟସ୍ତୟୋଃ ସାର୍ଦ୍ଧୌ ସ୍ଫୁଟାପମୌ ।୬୮।

ଦନବ୍ୟାସଦଳେ ପ୍ରାଗ୍ୱଦ୍ ତଦ୍‌ଯୋଗାର୍ଦ୍ଧଂ ହୃତଭଂବେତ୍
ମାନାଂଶାସ୍ତ୍ରିଜ୍ୟୟାଭ୍ୟସ୍ତା ହୃତ୍ୟାପ୍ତାଃ କ୍ଷେତ୍ରଜାଂଶକାଃ ।୬୯।

ସ୍ପୁଷ୍ଟେ ଲଗ୍ନାଃ ସୁଗଣିତାଃ ଖଖନାଗମହୀ-ହୃତାଃ
କାଳାଂଶାଃ ସ୍ୟୁସ୍ତତୋ ମାନଭାଗା ବ୍ୟୁତ୍କ୍ରମକର୍ମତଃ ।୭୦।

ଏବଂ ଧ୍ରୁବଭ୍ରାନ୍ତମାର୍ଗଃ ଖାଙ୍ଗାଗ୍ନି କ୍ଷେତ୍ରଭାଗକଃ
ଅପାୟକ୍ଷ୍ମାମୂଖିଲପ୍ତାଢ଼ୟବସୁ-ମାନାଂଶସମ୍ମିତଃ ।୭୧।

ମାନାଂଶ, କାଳାଂଶ ଓ କ୍ଷେତ୍ରାଂଶ ଭାବରେ ଅଂଶ ତିନି ପ୍ରକାର । ରାଶିଗୁଡ଼ିକର ଉଦୟାସୁ ଭିନ୍ନ ହେଉଥିବାରୁ କ୍ଷେତ୍ରାଂଶ ଓ କାଳାଂଶ ବିଭିନ୍ନ ହୋଇଥାଏ । ଚକ୍ର ଶେଷରେ କାଳାଂଶ କ୍ଷେତ୍ରାଂଶ ଉଭୟେ ସମାନ—୩୬୦ । ବିଷୁବ ବୃତ୍ତରେ କାଳାଂଶ ଓ ମାନାଂଶର ପରିମାଣ ସମାନ । ବିଷୁବଠାରୁ ଉତ୍ତର ବା ଦକ୍ଷିଣକୁ ଏହି କାଳାଂଶ ଓ ମାନାଂଶ ମଧ୍ୟରେ ବହୁ ଅନ୍ତର ଦେଖାଯାଇଥାଏ । ଦ୍ୟୁ ଜ୍ୟା ବୃତ୍ତୀୟ ଅଂଶ ମାନାଂଶ ଓ ବିଷୁବ ବୃତ୍ତୀୟାଂଶ କାଳାଂଶ । ଦ୍ୟୁ ଜ୍ୟା ବୃତ୍ତୀୟ ଅଂଶର ପରିମାଣ ବିଷୁବ ବୃତ୍ତ୍ୟାଂଶ ପରିମାଣଠାରୁ ଶ୍ରେଷ୍ଠ ଏବଂ ଦ୍ୟୁ ଜ୍ୟା ବୃତ୍ତମାନେ ମଧ୍ୟ ସମାନ ପରିମାଣରେ ହେଉ ନ ଥିବାରୁ ସେହି ବୃତ୍ତର ଅଂଶ ପରିମାଣ କଦାପି ସମାନ ନୁହେଁ । ସପ୍ତର୍ଷିମଣ୍ଡଳରେ ଥିବ ତାରାଗୁଡ଼ିକର କ୍ରମ ପୂର୍ବ ପଶ୍ଚିମ ଅବସ୍ଥାକୁ ନେଇ ହେବ । ସେମାନଙ୍କର ଦକ୍ଷିଣୋତ୍ତର ଅବସ୍ଥିତି ସହିତ ଏହି କ୍ରମର କୌଣସି ସମ୍ବନ୍ଧ ନାହିଁ । ଏହାର ଅର୍ଥ ଦ୍ରାଘିମାକୁ ନେଇ ନକ୍ଷତ୍ରକ୍ରମ ହେବ—ଅକ୍ଷାଂଶକୁ ଧରି ଏଗୁଡ଼ିକର କ୍ରମରକ୍ଷା କରାଯାଏ ନାହିଁ ।

ଯେପରି ପୁଲହ ଓ କ୍ରତୁର ଶରାନ୍ତର (ଧ୍ରୁବ ପ୍ରୋକ୍ତୀୟ ବୃତ୍ତାନ୍ତର) ୫° ଅଂଶ ମାତ୍ର । ଏହା ସବୁବେଳେ ସମାନ । ମାତ୍ର କ୍ରତୁ ମରୀଚିର ପୂର୍ବ ପଶ୍ଚିମାନ୍ତର ୨୫° । ୩୦' ଦେଖିବାକୁ ମିଳେ । ମରୀଚି ଓ କ୍ରତୁର ଶରମାନରୁ ଦୃକ୍ ରୀତିରେ ସ୍ଫୁଟ କ୍ରାନ୍ତି ସାଧନ କରାଯାଇ ପାରେ । ଉଭୟ ଦ୍ୟୁଜ୍ୟାର ଯୋଗାର୍ଦ୍ଧକୁ ହାର କୁହାଯାଉ ।

ମାନାଂଶାନ୍ତରକୁ ତ୍ରିଜ୍ୟାରେ ଗୁଣି ହାରରେ ଭାଗ ଦେଲେ ଫଳ କ୍ଷେତ୍ରାଂଶ ହେବ (କ୍ରାନ୍ତି ବୃତ୍ତୀୟ ରାଶ୍ୟଂଶାଦ୍ଧ ହେବ) କ୍ଷେତ୍ରାଂଶକୁ ରାଶିର ଉଦୟାସୁରେ ଗୁଣି ୧୮୦୦ରେ ହରି ଦେଲେ ଫଳ କାଳାଂଶ ହେବ । ଏପରି ଭାବରେ ମରୀଚି ଓ କ୍ରତୁର କାଳାଂଶ ଆଣିବ । ବିପରୀତ କ୍ରିୟାରେ ଏହି କାଳାଂଶରୁ ମାନାଂଶ ଅଣାଯାଇ ପାରିବ ।

ଧ୍ରୁବ ନକ୍ଷତ୍ରର ଭ୍ରମଣ ମାର୍ଗ ବୃତ୍ତ ହେଉ ୩୬୦° ହେଲେ ମଧ୍ୟ ତାହାର ମାନାଂଶ ୮° । ୪୮' ମାତ୍ର ।

$$\left(\frac{୩୬୦ \times ୮୪}{୩୦୩୮} = ୮° \mid ୪୮'\right)$$

କ୍ରାନ୍ତିଭେଦେ ମହର୍ଷୀଣାମାକ୍ଷତେଃ ସମତା ଯଦ
ସ୍ୟାଦ୍ ତଦାନ୍ତର କାଳାଂଶାଃ କ୍ରାନ୍ତ୍ୟଲ୍ପତ୍ୱ ମହତ୍ତ୍ୱୟୋଃ ।୭୬।

କ୍ରମାଦଲ୍ପାଶ୍ଚ ଭୂୟାଂସୋ ଭବେୟୁର୍ଦ୍ୟୁ ଗଣ କ୍ରମାତ୍
କାଳାଂଶାନ୍ତର ମେତେଷାଂ କ୍ରାନ୍ତିଭେଦେ ଯଦ ସ୍ଥିରମ୍ ।୭୩।

ତଦାକ୍ଷତେର୍ହାନିବୃଦ୍ଧୀ ସ୍ୟାତାମୃକ୍ଷାନ୍ତରାଂଶବତ୍
ସ୍ଥିରକ୍ରାନ୍ତ୍ୟର୍ଧବୈଷାଂ ସ୍ୟାଦ୍ କାଳାଂଶାଃ ସ୍ୟୁସ୍ତଦା ସ୍ଥିରାଃ।୭୪।

କ୍ଷେତ୍ରାଂଶାନାଂ ସ୍ଥିରତ୍ୱେ ସ୍ୟାତ୍ କାଳମାନାଳ୍ପଭୂରତା
କ୍ଷେତ୍ରମାନାଂଶୟୋଃ ସିଦ୍ଧିଃ କାଳମାନାଂଶୟୋରିବ ।୭୫।

କ୍ରାନ୍ତି ଭିନ୍ନ ହେବା ଅବସ୍ଥାରେ ଯଦି ସପ୍ତର୍ଷିଙ୍କ ଆକାରରେ କୌଣସି ବୈଷମ୍ୟ ଦେଖା ନ ଯାଇ ସାମ୍ୟହିଁ ଦେଖିବାକୁ ମିଳେ ତାହାହେଲେ କ୍ରାନ୍ତି କମ ବେଶି ଯୋଗେ ସେ ଦୁଇ ଦ୍ୟୁଜ୍ୟା ଯଥାକ୍ରମେ ବେଶି ଓ କମ୍ ହେବ । ଫଳରେ ଉଦୟାନ୍ତର କାଳାଂଶ ମଧ୍ୟ ଯଥାକ୍ରମେ ଅଳ୍ପ ଓ ଅଧିକ ହେବ ।

କ୍ରାନ୍ତି ଭିନ୍ନ ହେବା ବେଳେ ଏମାନଙ୍କର କାଳାଂଶାନ୍ତର ଯଦି ସ୍ଥିର ରହେ ତାହା ହେଲେ ତାଙ୍କଗୁଡ଼ିକର ପୂର୍ବାପର ଅନ୍ତର ପର (ପୂର୍ବ ପଶ୍ଚିମ ମାନାଂଶାନ୍ତର ଯେପରି ହୁଏ ସେହିପରି) ଆକାରର ହ୍ରାସ ବୃଦ୍ଧି ହେବ । ଏ ମାନଙ୍କର କ୍ରାନ୍ତି ସ୍ଥିର ଥିବା ଅବସ୍ଥାରେ କାଳାଂଶ ମଧ୍ୟ ସ୍ଥିର ରହିବ । କ୍ଷେତ୍ରାଂଶ ସ୍ଥିର ହେଲେ କାଳମାନ ଅଳ୍ପ ବେଶି ହେବ । କାଳାଂଶ ଏବଂ ମାନାଂଶ ପରି କ୍ଷେତ୍ରାଂଶ ଓ ମାନାଂଶର ମଧ୍ୟ ପ୍ରସିଦ୍ଧି ଅଛି ।

ନକ୍ଷତ୍ରାଣାଂ ଧ୍ରୁବାଂଶା ଯେ ତେ କୃତାୟନ ଦୃକ୍କ୍ରିୟାଃ
ଉଦିତା ଏବ ବିକ୍ଷେୟା ବିକ୍ଷେପାଶ୍ଚ ତଥା ସ୍ଫୁଟାଃ ।୭୬।

ଏଠାରେ ନକ୍ଷତ୍ରଗୁଡ଼ିକର ଯେଉଁ ଧ୍ରୁବାଂଶ ପଠିତ ହେଲା ସେଥିରେ ଆୟନ ଦୃକ୍କର୍ମ ସଂସ୍କାର କରାଯାଇ ଅଛି ବୋଲି ମନେ କରିବାକୁ ହେବ । ତାଙ୍କଗୁଡ଼ିକର ଯେଉଁ ଶର ଦିଆ-ଯାଇଅଛି ସେଗୁଡ଼ିକ ମଧ୍ୟ ସ୍ଫୁଟ ଅର୍ଥାତ୍ ଧ୍ରୁବ ପ୍ରୋତ ବୃତ୍ତୀୟ ବୋଲି ଜାଣିବାକୁ ହେବ ।

ଗ୍ରହାଣାମସ୍ଫୁଟୋ ବାଣଃ କଦମ୍ବାଭିମୁଖସ୍ଥିତଃ
ଦୃକ୍କର୍ମଣା ଧ୍ରୁବମୁଖଃ ସ୍ଫୁଟଃ ସ୍ୟାତ୍ତାରକେଷ୍ୱବତ୍ ।୭୭।

ଗ୍ରହଗୁଡ଼ିକର ଅସ୍ଫୁଟ ଶର କଦମ୍ବ ଅଭିମୁଖରେ ଅର୍ଥାତ୍ କଦମ୍ବ ପ୍ରୋତ ବୃତ୍ତରେ ଥାଏ । ଏଥିରେ ଦୃକ୍କର୍ମ ସଂସ୍କାର କଲେ ତାହା ଧ୍ରୁବ ମୁଖ ଅର୍ଥାତ୍ ଧ୍ରୁବ ପ୍ରୋତ ବୃତ୍ତୀୟ ହୁଏ ଯେପରି ତାରାଗୁଡ଼ିକର ସ୍ଫୁଟଶର ହୋଇଅଛି ।

ପ୍ରାକ୍ ପଶ୍ଚାଚ୍ଚଳନାଦ୍ଭାନାଂ କ୍ରାନ୍ତ୍ୟନ୍ତାଦ୍ ଶରସାମ୍ୟତଃ
କ୍ରାନ୍ତିଭେଦସ୍ତତୋ ରବିଦିନମାନଂ ପୃଥଗ୍ଭବେତ୍ ।୭୮।

କ୍ରାନ୍ତି ବୃତ୍ତଠାରୁ ନକ୍ଷତ୍ରମାନଙ୍କର ଶର ସମାନ ଥିଲେ ମଧ୍ୟ (କଦମ୍ବ ପ୍ରୋତୀୟ ଶର) ସେଗୁଡ଼ିକ (ନକ୍ଷତ୍ରଗୁଡ଼ିକ)ର ପୂର୍ବ ପଶ୍ଚିମ ଚଳନକୁ ନେଇ କ୍ରାନ୍ତିରେ ବିଭିନ୍ନତା ଆସେ । ଫଳରେ ସେଗୁଡ଼ିକର ଦିନ ଓ ରାତ୍ରି ପରିମାଣ ଭିନ୍ନ ଭିନ୍ନ ହୋଇଥାଏ । କ୍ରାନ୍ତିରୁ ଚର ଓ ଚର ସଂସ୍କାର ଦ୍ୱାରାହିଁ ଦିନ ରାତ୍ରିମାନ ବାହାର କରିବାକୁ ହୋଇଥାଏ ।

ଯସ୍ୟସୌମ୍ୟା ସ୍ଫୁଟକ୍ରାନ୍ତିର୍ଲମ୍ବାଂଶେଭ୍ୟୋଽଧିକା ସ୍ୱତଃ
ତଭଂ ସଦୋଦତଂ ଯସ୍ୟ ଯାମ୍ୟା ସ୍ୟାତ୍ତନ୍ନ ଦୃଶ୍ୟତେ ।୭୯।

ଯେଉଁ ନକ୍ଷତ୍ରର ଉତ୍ତର ସ୍ଫୁଟ କ୍ରାନ୍ତି ନିଜ ଦେଶର ଲମ୍ବାଂଶରୁ ଅଧିକହେବ, ସେହି ନକ୍ଷତ୍ର ସେଠାରେ ସର୍ବଦା ଉଦିତରହିବ । ସେଠାରେ ଉକ୍ତ ନକ୍ଷତ୍ର ସବୁବେଳେ ଦେଖାଯିବ । କୌଣସି ନକ୍ଷତ୍ରର ଦକ୍ଷିଣ ସ୍ଫୁଟକ୍ରାନ୍ତି ଲମ୍ବାଂଶଠାରୁ ଅଧିକ ହେଲେ, ସେହି ନକ୍ଷତ୍ର ସେହି ସ୍ଥାନରେ ସର୍ବଦା ଅସ୍ତ ହୋଇ ରହିବ । ଆଦୌ ଦେଖ ଯିବ ନାହିଁ ।

ଗ୍ରହର୍କ୍ଷାନ୍ତରଜା ଲପ୍ତା ଗ୍ରହଭୁକ୍ତ୍ୟା ବିଭଜିତାଃ
ଦିନାଦିଭିଃ ଫଳୈର୍ଯୋଗୋ ଗ୍ରହେହୀନେଽଧିକେ ଧ୍ରୁବାତ୍ ।୮୦।

ଏତେଷ୍ୟାଗତୋ କନ୍ଦରେ ତୁ ଗତେଽଷ୍ୟତ୍ର ବିପର୍ଯ୍ୟୟାତ୍
ଅସକୃଦ୍ କର୍ମ୍ମଣା ତୁଲ୍ୟଫଳେ ସ୍ୟାତାଂ ଗ୍ରହୋଡୁନୀ ।୮୧।

ଗ୍ରହସ୍ୟାୟନଦୃକ୍କର୍ମ କୃତ୍ୱାଥ ଗ୍ରହତାରୟୋଃ
କାର୍ଯ୍ୟେ ଦିନନିଶାମାନେ ସ୍ଫୁଟକ୍ରାନ୍ତିଚରକ୍ରମାତ୍ ।୮୨।

ଉଦୟେଽସ୍ତମୟେ ଲଗ୍ନମସ୍ତଲଗ୍ନଂ ପ୍ରକଲ୍ପ୍ୟ ଚ
ତତ୍ସମେଽର୍କେ ତଦୁଦୟମସ୍ତଂ ଜ୍ଞାତ୍ୱାନ୍ତବାଂଶକୈଃ ।୮୩।

କାର୍ଯ୍ୟା ତତ୍ସମତା ପ୍ରାଗ୍ବତ୍ ଯାମ୍ୟସୌମ୍ୟାନ୍ତରଂ ତୟୋଃ
ବିମ୍ବଭେଦଶ୍ଚ କର୍ତ୍ତୁଂ ଶକ୍ୟତେ ଗ୍ରହଯୁଦ୍ଧବତ୍ ।୮୪।

ଯେଉଁ ଗ୍ରହସହ ନକ୍ଷତ୍ରର ଯୋଗଦେଖିବାର ଇଚ୍ଛା; ସେହି ଗ୍ରହକୁ ଆୟନ ଦୃକ୍‌କର୍ମ ସଂସ୍କୃତ କରି ଉକ୍ତ ନକ୍ଷତ୍ର ଧ୍ରୁବ ଓ ଏହି ଗ୍ରହର ଅନ୍ତର କଳାଦି ବାହାର କରି ନେବ । ତାହାକୁ ଗ୍ରହର ସ୍ଫୁଟଗତି କଳାରେ ଭାଗ ଦେଲେ ଯେତେ ଦିନାଦି ଲବ୍ଧି ହେବ ସେତିକ ଦିନାଦି ବ୍ୟବଧାନରେ ତାରା ଓ ଗ୍ରହ ଯୋଗ ହୋଇଥିଲା ବା ହେବ ବୋଲି ଜାଣିବ । ନକ୍ଷତ୍ର ଧ୍ରୁବଠାରୁ ଗ୍ରହ କମ ଥିଲେ, ଯୋଗ ହେବ କିନ୍ତୁ ବେଶି ଥିଲେ ଯୋଗ ହୋଇ ଯାଇଛି ବୋଲି ବୁଝିବ ।

ଗ୍ରହ ବକ୍ର ହୋଇଥିଲେ ଏହି ସବୁର ବୈପରୀତ୍ୟରେ ଗ୍ରହର ନକ୍ଷତ୍ର ଯୋଗ ବୋଲି ବୁଝିବ । ଅର୍ଥାତ୍ ତାରାଠାରୁ ଗ୍ରହ ବେଶି ଥିଲେ ଯୋଗ ହେବ ଓ କମ୍‌ଥିଲେ ଯୋଗ ହୋଇ ଯାଇଛି ବୋଲି ବୁଝିବାକୁ ହେବ ।

ବାରମ୍ବାର ଏହି ବିଧ୍ୟାରେ ବିନାଦି ଆଣି ପୁଣି ବାରମ୍ବାର ଫଳ ସଂସ୍କାର ଓ ଦୃକ୍‌କର୍ମ ଦ୍ୱାରା ଗ୍ରହ ଓ ଉକ୍ତ ନକ୍ଷତ୍ରଙ୍କୁ ଗଣି, ଅଂଶ ଓ କାଳାଦିରେ ସମାନ କରିବ । ପରେ ଉକ୍ତ ଗ୍ରହ ଓ ନକ୍ଷତ୍ରର ସ୍ୱ ସ୍ୱ ସ୍ପଷ୍ଟକ୍ରାନ୍ତି ଓ ଚର ଆଣି ଦିନ ରାତ୍ରିମାନ ସାଧନ କରିବ । ଏହାପରେ ଗ୍ରହ ଓ ତାରାର ଉଦୟବେଳେ ଉଦୟ ଲଗ୍ନ ଏବଂ ଅସ୍ତ ବେଳେ ଅସ୍ତ ଲଗ୍ନ, ଆଗରୁ କୁହା-ଯାଉଥିବ । ଆକ୍ଷ ଦୃକ୍‌କର୍ମ ସାଧନ ଖଣ୍ଡରେ କରି ସ୍ପଷ୍ଟ ରବି ସେତିକ ହେଲେ ଉଦୟ ଓ ଅସ୍ତ ହେବା ଜାଣିବ । ଏତିକ ବେଳେ ବା ଏହାର ଅତି ନିକଟରେ ଗ୍ରହ ଓ ନକ୍ଷତ୍ର ଉଦୟାସ୍ତ ପ୍ରକରଣ ଖଣ୍ଡରେ ପୁଣି ଉଦୟ ଓ ଅସ୍ତ ଜାଣିବାକୁ ହେବ । ଗ୍ରହ ଓ ନକ୍ଷତ୍ରର ତଥାପି କିଛି ଅନ୍ତର ରହିଗଲେ ତଦ୍ଦ୍ୱାରା ପୂର୍ବାପର ସମାନ ଲିପ୍ତାଦି ଆଣିବ । ଏହି ସବୁ ହୋଇ ସାରିବା ପରେ ଗ୍ରହଯୋଗ ପରି ଗ୍ରହ ଓ ନକ୍ଷତ୍ରର ଦକ୍ଷିଣ ଉତ୍ତରାନ୍ତର (ଧ୍ରୁବ ପ୍ରୋତ ଶରାନ୍ତର) ତଥା ବିମ୍ବ ପ୍ରଭେଦ ନିର୍ଣ୍ଣୟ କରି ନେବ ।

**ବ୍ରହ୍ମେନ୍ଦ୍ରଜ୍ୟାନଳଶବ୍ଦପିତୃଦତୟୋ ମିତ୍ରେନ୍ଦ୍ରଶକ୍ରାଗ୍ନ୍ୟଃ**
**ପୌଷ୍ଣାମ୍ବୁଃ ପତବୈଶ୍ୱଦେବସଲିଳାନୀଷ୍ଣୁ କ୍ରମାତ୍ ଖେଚରୈଃ**
**ଭିଦ୍ୟନ୍ତେ ନ ପରାଣିତବ ଦତଭଂ ସର୍ବୈଃ ସଦା ଭିଦ୍ୟତେ**
**କାଦାଚତ୍କୃତୟା ଜଳାନ୍ତ୍ୟଦହନାଃ ଶିଷ୍ଟାନ ତୈଃ ପ୍ରାୟଶଃ ॥୮୫॥**

ରୋହିଣୀ, ପୁଷ୍ୟା, କୃତ୍ତିକା, ଶତା, ମଘା, ପୁନର୍ବସୁ, ଅନୁରାଧା, ଜ୍ୟେଷ୍ଠା, ବିଶାଖା, ରେବତୀ, ଶତଭିଷା, ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ା ଏହି ୧୩ଟି ନକ୍ଷତ୍ରଙ୍କୁ ଗ୍ରହମାନେ ଭେଦକରି ଯାଆନ୍ତି । ଅଶ୍ୱିନୀ, ଦ୍ୱିଜା, ମୃଗଶିରା, ଆଦ୍ରା, ଅଶ୍ଳେଷା, ପୂର୍ବାଫାଲ୍‌ଗୁନୀ, ଉତ୍ତରାଫାଲ୍‌ଗୁନୀ, ହସ୍ତା, ସ୍ୱାତୀ, ମୂଳା, ଅଭିଜିତ୍, ଶ୍ରବଣା, ଧନିଷ୍ଠା, ପୂର୍ବାଭାଦ୍ରପଦ ଓ ଉତ୍ତରଭାଦ୍ରପଦ ଏହି ୧୫ଟି ନକ୍ଷତ୍ରଙ୍କୁ ଗ୍ରହମାନେ ଭେଦକରି ପାରନ୍ତି ନାହିଁ । ଭେଦ୍ୟ ନକ୍ଷତ୍ରଗୁଡ଼ିକରୁ ପୁନର୍ବସୁକୁ ସବୁ ଗ୍ରହ ଭେଦକରି ଥାଆନ୍ତି । ପୂର୍ବାଷାଢ଼ା, ରେବତୀ ଓ କୃତ୍ତିକା କେବେ କେବେ ଭେଦ୍ୟ ହୁଅନ୍ତି—ସର୍ବଦା ନୁହେଁ । ଅନ୍ୟ ନକ୍ଷତ୍ରଗୁଡ଼ିକ ଶର ବଶତଃ ବିଶେଷ ଭାବରେ ଭେଦ୍ୟ ହୋଇ ଥାଆନ୍ତି ।

**ଯସ୍ୟଯସ୍ୟାଦ୍ବୃଷରାଶିଶକଳବଗସ୍ୟାବାକ୍‌ଶରୋଂଽଶଦ୍ୱୟାତ୍**
**ସତ୍ୟଂଶାଦଧିକୋ ଭିନତ୍ତି ଶକଟଂ ସ୍ୱାୟମ୍ଭୁବଂ ସଗ୍ରହଃ ।**
**ଅନ୍ୟର୍କ୍ଷାକୃତଭେଦଭାଗକଳନା ଯନ୍ତ୍ରେଣ କାର୍ଯ୍ୟା ବୁଧୈଃ**
**ଯାମ୍ୟୋଦଗ୍ଗମନର୍କ୍ଷଭେଦକଫଳଂ ଜ୍ଞେୟଂ ଶ୍ରୁବାନ୍‌ମୈହିରାତ୍ ॥୮୬॥**

ବୃଷ ରାଶିର ୧୯ଶ ଅଂଶରେ ଥିବା ଯେଉଁ ଗ୍ରହର ଦକ୍ଷିଣକ୍ରାନ୍ତି ୨° । ୨୦'ରୁ ଅଧିକ ହୁଏ ସେହି ଗ୍ରହ ରୋହିଣୀ ଶକଟକୁ ଭେଦକରି ପାରିବ । ଅନ୍ୟ ନକ୍ଷତ୍ରମାନଙ୍କର ଗ୍ରହ ଭେଦ ହୋଇଥିବା ନ ହୋଇଥିବା ପଣ୍ଡିତମାନେ ସେମାନଙ୍କ ଆକାରରୁ ଯନ୍ତ୍ର ବେଧ ବଳରେ ସ୍ଥିର କରିପାରିବେ ।

ଗ୍ରହମାନେ ନକ୍ଷତ୍ରର ଦକ୍ଷିଣ ଓ ଉତ୍ତରକୁ ଯିବାରେ ଏବଂ ସେମାନଙ୍କର ଆକାର ଯୋଗେ ଯେଉଁ ଫଳାଫଳ କଥା ଶାସ୍ତ୍ରରେ ଅଛି, ସେ ସବୁ ବରାହମିହିର ଆଚାର୍ଯ୍ୟଙ୍କ ବୃହତ୍ ସଂହିତାରୁ ଜାଣି ନେବାକୁ ହେବ ।

**ପ୍ରାକ୍‌ସିଦ୍ଧାନାଂ ଜ୍ୟୋତଷାଂ ସ୍ଥାନମିତ୍ଥଂ**
**ପ୍ରୋକ୍ତଂ ବ୍ୟକ୍ତଂ ଯାନ ଖନୀତରାଣି ।**
**ଦୃଶ୍ୟେ ଲକ୍ଷ୍ୟନ୍ତେ ତତ୍ତ୍ୱଦାଖ୍ୟାପିସଂଖ୍ୟା**
**ସଂଖ୍ୟାବଦ୍ଭିଃ ଖ୍ୟାତମାପ୍ତା ନ ପୂର୍ବୈଃ ।୮୭।**

ପ୍ରାଚୀନ କାଳରେ ଖ୍ୟାତି ପ୍ରାପ୍ତ କେତେକ ନକ୍ଷତ୍ରର ଏହି ପ୍ରକାରେ ସ୍ଥିତି ବୁଝାଇ ଦିଆଗଲା । ଅନ୍ୟ ଯେତେ ନକ୍ଷତ୍ର ଆକାଶରେ ଅଛନ୍ତି ସେମାନଙ୍କର ସଂଖ୍ୟା ମଧ୍ୟ ପଣ୍ଡିତମାନେ ଦେଇନାହାନ୍ତି ।

**ଅଥବ୍ୟୋମ୍ନି ଛାୟାପଥ ଇତହବୈଶ୍ୱାନରପଥୋ-**
**ଽଭିଜିନ୍ମାର୍ଗଃ ସୂକ୍ଷ୍ମୈର୍ଘନତରଭଚକ୍ରୈର୍ନିଚୁଲତଃ ।**
**ପ୍ରକାଶାତ୍ ସାବୃତ୍ତାକୃତିରନୁମିତୋଭ୍ରାମ୍ୟତି ଚ ଯ—**
**ସ୍ତଦୀୟଂ ସଂସ୍ଥାନଂ କୟୃଦହ ବଦାମି ସ୍ଫୁଟତୟା ।୮୮।**

ଆକାଶରେ ଅତି ସୂକ୍ଷ୍ମ ତାରା ଶ୍ରେଣୀ ଦ୍ୱାରା ସାନ୍ଦ୍ର ଓ ଘନ ହୋଇ ବୃତ୍ତାକାର ଗୋଟିଏ ସରଣୀ ଦେଖାଯାଏ । ଏହା ଗତିଶୀଳ । ଏହାକୁ କେହି ଛାୟାପଥ, ବୈଶ୍ୱାନର ପଥ ବା ଅଭିଜିତ୍ ମାର୍ଗ କହନ୍ତି । ଏହାର ସ୍ଥିତି ସମ୍ବନ୍ଧରେ ମୁଁ କିଛି କହିବାକୁ ଇଚ୍ଛା କରୁଅଛି ।

**କ୍ରାନ୍ତିବୃତ୍ତମୟନାନ୍ତୟୋଃସ୍ପୃଶନ୍**
**ଉତ୍ତରାୟଣଜଗୋଳସନ୍ଧିତଃ ।**
**ଉତ୍ତରେ ଖରସବାଗ ଦୂରଗଃ**
**ତ୍ୱନ୍ୟ ଗୋଲଯୁଗ ସନ୍ଧି ଦକ୍ଷିଣେ ।୮୯।**

**ବହ୍ନିତର୍କ ଲବଦୂରଗୋଽବତେ**
**ର୍ଦକ୍ଷିଣାଂଶଭିଦବାକ୍ତ୍ରିଂଶଂ ଗତଃ ।**
**ମୂଳତୋୟ ଭିଦଯୌ ତଥାଭିଜି-**
**ଦ୍ବୈଷ୍ଣବାନ୍ତର ଉଦଗିଦ୍ଶଂ ଗତଃ ।୯୦।**

ଯାମ୍ୟାୟନାନ୍ତସ୍ଥଳତୋ ଦ୍ୱିଫାଳଭୃତ୍
ଖନାଗଭୈଗାନ୍ତମୁଦଗ୍‌ଦିଶି ସ୍ଥିତଃ
ଗୋଲେ ବଲଖ୍ୟାକୃତମସ୍ୟ ପଶ୍ୟତାଂ
ଯଥାସୁବୋଧୋ ନ ତଥା ଭବେଦ୍ଦିବ ।୯୯।

ଏହି ଛାୟାପଥ ବୃତ୍ତାକାର । କ୍ରାନ୍ତି ବୃତ୍ତକୁ ଏହି ବୃତ୍ତ ସାୟନ କର୍କଟ ଓ ମକରାଦିରେ ସ୍ପର୍ଶ କରୁଅଛି । ପୁଣି ସାୟନ ମେଷାଦିରୁ ୬° ଅଂଶ ଉତ୍ତରକୁ ଓ ସାୟନ ତୁଳାଦି ବିନ୍ଦୁରୁ ୬୩ ଅଂଶ ଦକ୍ଷିଣକୁ ଏହାର ସୀମା ରହିଅଛି । ପୁନର୍ବସୁ ନକ୍ଷତ୍ରର ଦକ୍ଷିଣାଂଶକୁ ଭେଦକରି ଏହି ବୃତ୍ତ ଦକ୍ଷିଣାଶା ଅଭିମୁଖରେ ଗତ କରିଅଛି । ତେଣେ ପୁଣି ମୂଳା ଓ ପୂର୍ବାଷାଢ଼ା ଦୁଇ ନକ୍ଷତ୍ରକୁ ଭେଦକରି ଏହି ବୃତ୍ତ ଅଭିଜିତ୍ ଓ ଶ୍ରବଣା ମଧ୍ୟ ଦେଇ ଯାଇଛି । ତେଣୁ କର୍କଟର ଆଦିବିନ୍ଦୁରୁ ଏହା ଦି ଫାଳ ହୋଇ ଉତ୍ତରକୁ ୮୦° ପର୍ଯ୍ୟନ୍ତ ରହିଅଛି । ଗୋଲରେ ଲେଖି ଛାୟାପଥକୁ ଦେଖାଇଲେ ଦ୍ରଷ୍ଟା ଯେପରି ସୁବିଧାରେ ବୁଝି ପାରିବ, ଆକାଶରେ ତାହା ହୋଇ ପାରିବ ନାହିଁ ।

ସମ୍ୟଗ୍‌ଯନ୍ତ୍ର ମିଳଦ୍‌ବିଲୋଚନଜନାଃ ପଶ୍ୟନ୍ତି ତାରାମୟଂ
ତଂ ମାର୍ଗଂ ଗୁରୁଭଂ ଚ ଭାସ୍ୱତଶିଖାନୀଳାଭରେଖାଙ୍କିତାଃ ।
ଚନ୍ଦ୍ରେତୋୟଗିରିଦ୍ରୁମାନ୍ ବୁଧସିତୌ ଶୀତାଂଶୁବତ୍ ଖଣ୍ଡିତୌ
ଶୌରେର୍ବାହ୍ୟଗତଂ ପ୍ରକାଶ-ବଳୟଂ ସୂକ୍ଷ୍ମଗ୍ରହୋପଗ୍ରହାନ୍ ।୯୬।

(ଦୂରବୀକ୍ଷଣ) ଯନ୍ତ୍ର ସାହାଯ୍ୟରେ ଲୋକେ ଛାୟା ପଥରେ ତାରା ପୁଞ୍ଜଭାବରେ ଥିବା ଦେଖୁଅଛନ୍ତି । ସେମାନେ ପୁଷ୍ୟା ନକ୍ଷତ୍ର ( ବୃହସ୍ପତି ନକ୍ଷତ୍ରକୁ ) ସୂର୍ଯ୍ୟ ବିମ୍ବରେ ଥିବା କଳାଦାଗ, ଚନ୍ଦ୍ରମଣ୍ଡଳରେ ଥିବା ପାଣି, ପର୍ବତ ଓ ଗଛ ମଧ୍ୟ ଦେଖିପାରୁ ଅଛନ୍ତି । ସେମାନେ ବୁଧ ଓ ଶୁକ୍ରକୁ ଚନ୍ଦ୍ର ପରି ଖଣ୍ଡିତ ହେବା ମଧ୍ୟ ଦେଖନ୍ତି । ଶନିର ବାହାରେ ଗୋଟିଏ ତେଜସ ମଣ୍ଡଳ ଥିବା ମଧ୍ୟ ସେମାନେ ଦେଖି ଅଛନ୍ତି । ଏହି ସବୁ ଛଡ଼ା ସେମାନେ ନୂଆ ନୂଆ ଗ୍ରହ ଓ ଉପଗ୍ରହଙ୍କୁ ମଧ୍ୟ ଏହି ଯନ୍ତ୍ର ସାହାଯ୍ୟରେ ଦେଖିପାରୁ ଅଛନ୍ତି ।

ପଟାପଟୁ ରୁଚୀକୃତପ୍ରକଟହାଟକଶ୍ରୀର୍ଜଗତ୍—
କଟାହଘଟନାସ୍ଫୁଟୋତ୍କଟକଟାକ୍ଷ ପାତକ୍ରମଃ ।
ବଟଦ୍ରୁମତଟୋଦ୍ଭଟଦ୍ୟୁତରକଷ୍ଟକୂଟାଟବୀଂ
ଫଟାଧରଫଟାଚ୍ଛଟାନଟନପାଟବୀପାଟୟେତ୍ ।୯୩।

ପରହିତ ବସ୍ତ୍ର ଦ୍ୱାରା ଯେ ଶୁଦ୍ଧ ସୁବର୍ଣ୍ଣର କାନ୍ତିକୁ ତିରସ୍କୃତ କରନ୍ତି, ବ୍ରହ୍ମାଣ୍ଡ ରୂପକ କଡ଼େଇର ଯଥାଯଥ ରଚନାରେ ଯେ ବରାବର ଚକ୍ଷୁ ଦୃଷ୍ଟି ରଖି ଅଛନ୍ତି, ଯେ ଫଣୀ

କାଳୀୟଙ୍କର ଫଣା ଉପରେ ନୃତ୍ୟର ପଟୁତା ଦେଖାଇଥିଲେ ଏବଂ ଯେ କଳ୍ପବଟରେ ନିକଟରେ ମହାଦ୍ୟୁତି ଦେଖାଉ ଅଛନ୍ତି, ସେହି ମହାପ୍ରଭୁ ଶ୍ରୀ ଜଗନ୍ନାଥ ଅନିଷ୍ଟ ସମୂହ ରୂପକ ବନକୁ ନାଶ କରନ୍ତୁ (ଉପୁଡ଼ାଇ ଦିଅନ୍ତୁ) ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳପ୍ରସୂତ
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ
ସିଦ୍ଧାନ୍ତଦର୍ପଣ ଉପାହ୍ୱତବାଳବୋଧେ
ଯାତୋଽତ୍ର ଭଗ୍ରହଯୁଗର୍କମିତଃ ପ୍ରକାଶଃ ।୯୪।

ଇତଶ୍ରୀ ଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ
ତ୍ରିପ୍ରଶ୍ନାଧିକାରେ ଭଗ୍ରହଯୋଗ ବର୍ଣ୍ଣନୋନାମ
ଦ୍ୱାଦଶଃ ପ୍ରକାଶଃ ।

ଏଠାରେ ୧୨ଶ ପ୍ରକାଶ ଶେଷ ହେଲା । ଏଥିରେ ନକ୍ଷତ୍ର ଓ ସେମାନଙ୍କ ସହିତ ଗ୍ରହ ଯୁଦ୍ଧ ସମ୍ପର୍କରେ ଆଲୋଚନା କରାଯାଇଅଛି ।

## ତ୍ରୟୋଦଶଃ ପ୍ରକାଶଃ

### ଗ୍ରହର୍କ୍ଷୋଦୟାସ୍ତମୟ ବର୍ଣ୍ଣନମ୍

**ଅଥ ଗ୍ରହାଣାମୃକ୍ଷାଣାମୁଦୟାସ୍ତମୟୌ ବ୍ରୁବେ**
**ସ୍ଥୌଲ୍ୟା ଦୁକ୍ତୌ ସ୍ୱକେନ୍ଦ୍ରାଂଶୈରତ୍ର ସୂକ୍ଷ୍ମତୟା ପୁନଃ ।୧।**
**ଉଦୟା-ସ୍ତମୟୌ ଦ୍ୱେଧା ନତ୍ୟୌ ନୈମିତ୍ତିକାବପି**
**ପ୍ରବାହାଖ୍ୟମରୁଦ୍ଭ୍ରାନ୍ତଜ୍ୟୋତଶ୍ଚକ୍ରାନ୍ତବେଶ୍ମନାମ୍ ।୨।**
**ଉଦୟା-ସ୍ତମୟୌ ନତ୍ୟୌଭବତଃ ପ୍ରାକ୍‌ପରାଶୟୋଃ**
**ବକ୍ଷ୍ୟେ ନୈମିତ୍ତିକୌ ସୂର୍ଯ୍ୟସନ୍ନିକର୍ଷ-ଭବାବମୌ ।୩।**

ବର୍ତ୍ତମାନ ଗ୍ରହ ଓ ତାରାମାନଙ୍କର ଉଦୟ ଓ ଅସ୍ତ କଥା କହୁଛୁ । ସ୍ଫୁଟାଧିକାରେ ସ୍ୱ ସ୍ୱ କେନ୍ଦ୍ରାଂଶ ତଫାତରେ ଗ୍ରହର ଉଦୟ ଓ ଅସ୍ତ କଥା ସ୍ଥୂଳ ଭାବରେ କୁହାଯାଇଛୁ । ବର୍ତ୍ତମାନ ସୂକ୍ଷ୍ମ ଭାବରେ ସେ ଗୁଡ଼ିକ ଆଲୋଚନା କରିବ । ନତ୍ୟ ନୈମିତ୍ତିକ ଭାବରେ ଉଦୟ ଓ ଅସ୍ତ ପ୍ରଥମେ ଦୁଇ ରକମ । ପ୍ରବାହ ବାୟୁ ଦ୍ୱାରା ଚାଳିତ ହୋଇ ଗ୍ରହ ଓ ନକ୍ଷତ୍ର ପୂର୍ବରୁ ପଶ୍ଚିମକୁ ଗଲାବେଳେ ପୂର୍ବରେ ଉଦୟ ଓ ପଶ୍ଚିମରେ ଅସ୍ତ ହୁଅନ୍ତି । ଏହା ପ୍ରତିଦିନ ଘଟୁ-ଥିବାରୁ ଏହାକୁ ନତ୍ୟ ବା ପ୍ରାତ୍ୟହିକ କୁହାଯାଏ । ସୂର୍ଯ୍ୟର ନିକଟବର୍ତ୍ତୀ ହେବାରେ ଗ୍ରହ ଓ ନକ୍ଷତ୍ର ଯେଉଁ ଉଦୟ ଓ ଅସ୍ତ ହୁଅନ୍ତି, ତାହା ସେମାନଙ୍କର ନୈମିତ୍ତିକ ଉଦୟାସ୍ତ ।

ସ୍ମୃ— **ସୂର୍ଯ୍ୟାଦଭ୍ୟଧିକାଃ ପଶ୍ଚାଦସ୍ତଂ ଜୀବକୁଜାର୍କଜାଃ**
**ଊନାଃ ପ୍ରାଗୁଦୟଂଯାନ୍ତିଜ୍ଞଶୁକ୍ରୌ ବକ୍ରିଣୌ ତଥା ! ଇତ ।୪।**

**ଅବାଧିକୋ ନତା ଜ୍ଞେୟାବକଚେ ପ୍ରାକ୍‌ପରସ୍ଥିତେଃ**
**ଅଧିକୋ ମେଷଗସ୍ତସ୍ମାଦୂନୋ ମୀନଗତୋ ମତଃ ।୫।**

ସ୍ମୃ— **ଊନାବବସ୍ତତଃ ପ୍ରାଚ୍ୟାଂ ଅସ୍ତଂ ଚନ୍ଦ୍ରଜ୍ଞଭାର୍ଗବାଃ**
**ବଜନ୍ତ୍ୟଭ୍ୟଧିକାଃ ପଶ୍ଚାଦୁଦୟଂଶୀଘ୍ରଯାୟିନଃ ।୬।**

ମଙ୍ଗଳ, ଗୁରୁ; ଓ ଶନି ସୂର୍ଯ୍ୟଠାରୁ ଅଧିକ (ରାଶ୍ୟାଦିରେ) ହୋଇ ପଶ୍ଚିମ ଦିଗରେ ଅସ୍ତ ହୁଅନ୍ତି । ରବିଠାରୁ ଏମାନେ କମ୍ ହୋଇ ପୂର୍ବ ଦିଗରେ ଉଦିତ ହୁଅନ୍ତି । ବକ୍ରୀ ବୁଧ ଓ ଶୁକ୍ର ମଧ୍ୟ ରବିଠାରୁ ଅଧିକ ହୋଇ ପଶ୍ଚିମରେ ଅସ୍ତ ଓ କମ୍ ହୋଇ ପୂର୍ବରେ ଉଦୟ ହୁଅନ୍ତି ।

ଏଠାରେ ଅଧିକ ଊଣାର ଅର୍ଥ ରାଶ୍ୟାଦିରେ ନୁହେଁ । ରବିର ପାଖଆଖରେ ଯଦି ପଛରେ ରହନ୍ତି ତେବେ କମ୍, ଯଦି ଆଗରେ ରହନ୍ତି ତେବେ ବେଶି ବୋଲି ଧରିବାକୁ ହେବ । ଯେପରି ମେଷସ୍ଥ ରବି ମୀନଗ୍ରହ (ମୀନସ୍ଥଗ୍ରହ) ଠାରୁ ଅଧିକ ବୋଲି ଧରାଯିବ । ବୁଧ ଓ ଶୁକ୍ର ସୂର୍ଯ୍ୟଠାରୁ କମ୍ ଥିବାବେଳେ ପୂର୍ବରେ ଅସ୍ତ ହୁଅନ୍ତି । ରବିଠାରୁ ବେଶି ଥାଇ ଏ ଦୁହେଁ ପଶ୍ଚିମରେ ଉଦିତ ହୁଅନ୍ତି । ବୁଧ ଓ ଶୁକ୍ର ରବିଠାରୁ ଶୀଘ୍ର ଗତିକ ଗ୍ରହ ହେତୁ ( ଏବଂ ଏ ଦୁଇଟିର କକ୍ଷା ପୃଥିବୀ ଏବଂ ରବିର ମଧ୍ୟବର୍ତ୍ତୀର ବିକେନ୍ଦ୍ରିକ ହେତୁ) ଏପରି ଘଟିଥାଏ ।

**ସୂର୍ଯ୍ୟାସ୍ତକାଳକୌ ପଶ୍ଚାଦ୍‌ପ୍ରାଚ୍ୟାମୁଦୟକାଳକୌ**
**ଦିବାକରଗ୍ରହୌ କୁର୍ଯ୍ୟାଦ୍ଦୃକ୍କର୍ମାଥ ଗ୍ରହସ୍ୟ ତୁ ଇତି ।୭।**

**କୃତ୍ୱାୟନଜମାକ୍ଷନ୍ତୁ ବିକ୍ଷେପବିକ୍ଷେପଲିପ୍ତିକାଃ**
**ଆକ୍ଷବର୍ଘ୍ନାକ୍ଷିଭୂଭକ୍ତାଃଖଖାଷ୍ଟ ବିଧୂ ତାଡ଼ିତାଃ ।୮।**

**ତତ୍‌କାଳୋତ୍‌ଥବିଲଗ୍ନାସୁ ଭକ୍ତା ଧନମୃଣଂ ଖଗେ**
**ପ୍ରାକ୍‌ପ୍ରସ୍ତେଽର୍କେ ଯାମ୍ୟସୌମ୍ୟୋଭ୍ୟଶରୟୋର୍ବ୍ୟସ୍ତମସ୍ତଗେ ।୯।**

ଗ୍ରହମାନଙ୍କର ଉଦୟ ଓ ଅସ୍ତ ଜାଣିବାକୁ ଯାଇ କେତେକ କଥାର ଅବତାରଣା କରାଯାଉଛି । ସେଥିରୁ ବର୍ତ୍ତମାନ ଆକ୍ଷ ଦୃକ୍‌କର୍ମର ପ୍ରୟୋଗ କରାଯାଉଅଛି—

ପ୍ରଥମେ ସ୍ଥୂଳକେନ୍ଦ୍ରାଂଶ ଜାଣି ଉଦୟ ଓ ଅସ୍ତର ଆସନ୍ନ ଦିନ ଜାଣି ନେବାକୁ ହେବ । ଏହି ଦିନ ପଶ୍ଚିମ ଦିଗରେ ଉଦୟ ଓ ଅସ୍ତ ଯଥାଯଥ ଭାବରେ ଜାଣିବାକୁ ହେଲେ ଗ୍ରହ ଓ ସୂର୍ଯ୍ୟଙ୍କୁ ସୂର୍ଯ୍ୟୋଦୟ କାଳିକ କରିବାକୁ ହେବ । ଏହାପରେ ଗଣକ ଗ୍ରହର ଆୟନ ଓ ଆକ୍ଷ ଦୃକ୍‌କର୍ମ ଦିୟ କରିଯିବେ । ପ୍ରଥମେ ଆୟନ ଓ ପରେ ଆକ୍ଷ ଦୃକ୍‌କର୍ମ କରିବାର କଥା । ବର୍ତ୍ତମାନ ଏଠାରେ ଆକ୍ଷ ଦୃକ୍‌କର୍ମ କଥା କୁହାଯାଉଛି । ଗ୍ରହର ସ୍ଫୁଟଶର କଳାକୁ ପଲଭାରେ ଗୁଣି ୧୨ରେ ଭାଗ ଦେବ । ଫଳକୁ ୧୮୦୦ରେ ଗୁଣି ତାତ୍କାଳିକ ଲଗ୍ନାସୁରେ ହରିଲେ ଫଳକଳାଦି ହେବ । ଏହି ଫଳକଳାକୁ ସୂର୍ଯ୍ୟ ପୂର୍ବ କ୍ଷିତିଜରେ ଥିବାବେଳେ ଦକ୍ଷିଣ ଓ ଉତ୍ତରଶର ହୋଇଥିଲେ ଯଥାକ୍ରମେ ଗ୍ରହରେ ଯୁକ୍ତ ବା ବିଯୁକ୍ତ କରିବ । ସୂର୍ଯ୍ୟ ଅସ୍ତ ଥିବା-ବେଳେ ଅର୍ଥାତ୍ ସୂର୍ଯ୍ୟ ପଶ୍ଚିମ କ୍ଷିତିଜରେ ଥିବାବେଳେ ପୂର୍ବ ସଂସ୍କାରର ବିପରୀତ ସଂସ୍କାର କରିବାକୁ ହେବ । ଦକ୍ଷିଣଶର ଥିଲେ ବିୟୋଗ ଓ ଶର ଉତ୍ତର ହୋଇଥିଲେ ଯୋଗ କରିବାକୁ ହେବ ।

ସୂ— ତୟୋର୍ଲଗ୍ନାନ୍ତର ପ୍ରାଣାଃ କାଳାଂଶାଃ ଷଷ୍ଟିଭଜିତାଃ
ପ୍ରତୀଚ୍ୟାଂ ଷଡ୍‌ଭଯୁତୟୋସ୍ତଦ୍‌ବଲ୍ଲଗ୍ନାନ୍ତରାସବଃ ! ଇତ ।୧୦।

ସୂକ୍ଷ୍ମେନ୍ଦୋଃସ୍ଫୁଟବିକ୍ଷେପଃ ସ୍ପଷ୍ଟାବନତ ସଂସ୍କୃତଃ
ଗ୍ରାହ୍ୟସ୍ତଲ୍ଲମ୍ବନକଳାଃ ପ୍ରାକ୍‌ପ୍ରତ୍ୟକ୍‌ଯୁତବର୍ଜିତାଃ ।୧୧।

ସୂର୍ଯ୍ୟାଦନ୍ତରତୋ ଦୃଶ୍ୟୋ ରୁଦ୍ରକାଳାଂଶତୋଽଧିକଃ
ନ୍ୟୂନସ୍ତତୋ ନ ଦୃଶ୍ୟେତ ଶୀତରଶ୍ମିର୍ଭୁବି ସ୍ଥିତୈଃ ।୧୨।

ଆକ୍ଷକର୍ମ ସଂସ୍କୃତ ଗ୍ରହ ଓ ରବିର ଅନ୍ତର ଜନିତ ଅସୁକୁ (ଯେପରି ଲଗ୍ନାସୁ ଅଣାଯାଏ) ୬୦ରେ ହରିଦେଲେ ତାହା ଇଷ୍ଟକାଳାଂଶ ହୋଇଯାଏ । ପଶ୍ଚିମ ଦିଗରେ ଉଦୟ ଓ ଅସ୍ତ ଦେଖିବାକୁ ଚାହିଁଲେ ଆକ୍ଷ ଗ୍ରହରେ ୬ ରାଶି ଯୋଡ଼ି ୬ ରାଶି ଯୁକ୍ତ ରବି ଓ ତାର ଅନ୍ତର ଲଗ୍ନସୁ ବାହାର କରିବ । ଏହି ଲଗ୍ନାସୁ ଦୟର ମଧ୍ୟ ଅନ୍ତର କରିବାକୁ ହେବ । ସେଥିରୁ ପୁଣି କାଳାଂଶ ଜାଣିବ ।

ସୂକ୍ଷ୍ମ ସ୍ଫୁଟ ଚନ୍ଦ୍ରର ସ୍ଫୁଟଶରରେ ସୂର୍ଯ୍ୟ ଗ୍ରହଣୋକ୍ତ ରୀତିରେ ସ୍ଫୁଟନତି ସଂସ୍କାର କରିବାକୁ ହେବ । ତାହାର ଲମ୍ବନ କଳାକୁ ପୁଣି ପୂର୍ବକପାଳରେ ଅସ୍ତ ଦେଖିବା ନିମନ୍ତେ ସୂକ୍ଷ୍ମ ଚନ୍ଦ୍ରରେ ଯୋଗ କରିବାକୁ ହେବ ଏବଂ ପଶ୍ଚିମ କପାଳରେ ଅସ୍ତ ଦେଖିବା ନିମନ୍ତେ ସୂକ୍ଷ୍ମ ଚନ୍ଦ୍ରରେ ବିଯୋଗ କରିବାକୁ ହେବ । ଏପରି ଲମ୍ବନ ସଂସ୍କୃତ ସ୍ଫୁଟଚନ୍ଦ୍ର ଯେତେବେଳେ ସୂର୍ଯ୍ୟଠାରୁ ୧୧ କାଳାଂଶରୁ ଦୂରରେ ରହିବ, ସେତେବେଳେ ଭୂପୃଷ୍ଠସ୍ଥ ଲୋକେ ତାହାକୁ ଦେଖି ପାରିବେ । ୧୧ କାଳାଂଶ ମଧ୍ୟରେ ରହିଲେ ଚନ୍ଦ୍ର ଆଉ ଦେଖାଯାଇ ପାରିବ ନାହିଁ ।

ଭାନାଂ ବିକ୍ଷେପବାହୁଲ୍ୟାତ୍ ପ୍ରାଗ୍‌ବତ୍‌ବିକ୍ଷେପତଃ ସ୍ଫୁଟା
କ୍ରାନ୍ତିଃସାଧ୍ୟା ତତସ୍ତେଷାଂ ଦିନମାନାସବସ୍ତଥା ।୧୩।

ନତ୍ତ୍ୱୋଦୟାସ୍ତମୟୌ ଲଗ୍ନୌ ତତ୍କାଳ ସମ୍ଭବୌ
ତତ୍‌ସୂର୍ଯ୍ୟାନ୍ତରଜାସୁଭ୍ୟଃ କାଳାଂଶୈର୍ନ୍ମୀଲନୋଦ୍‌ଗମୌ ।୧୪।

ପଶ୍ଚାଦସ୍ତମୟଂ ପ୍ରାଚ୍ୟାଂ ଉଦୟଂଯାନ୍ତି ସର୍ବଦା
ଭାନି ପ୍ରାଗ୍ଗତ-ଶୂନ୍ୟତ୍ୱାତ୍ ସୂର୍ଯ୍ୟାଙ୍ଗୀବଜ୍ଞାର୍କିବତ୍ ।୧୫।

ନକ୍ଷତ୍ର ଗୁଡ଼ିକର ଶର ଅତି ବେଶି । ତେଣୁ ସେମାନଙ୍କ ଶରରୁ ସ୍ଫୁଟକ୍ରାନ୍ତି ଆଣିବାକୁ ହେବ । ଏହି ସ୍ଫୁଟକ୍ରାନ୍ତିରୁ ଶର ଆଣି ସେଗୁଡ଼ିକର ଦିନମାନ ଅସୁରେ ବାହାର କରି ଦେବ । ପ୍ରତ୍ୟହ ଉଦୟାସ୍ତକାଳ ଓ ତାତ୍କାଳିକ ଲଗ୍ନ ମଧ୍ୟ ଜାଣିବାକୁ ହେବ । ଏହି ତାତ୍କାଳିକ ଲଗ୍ନ ଓ

ଓ ତାତ୍କାଳିକ ସୂର୍ଯ୍ୟର ଅନ୍ତରାସୁକୁ ୬° ରେ ହରିଲେ ଇଷ୍ଟକାଳାଂଶ ହେବ । ଇଷ୍ଟକାଳାଂଶ ଓ ଆଗରୁ କୁହାଯାଇଥିବା ନିଜ ନିଜ କାଳାଂଶବଶତଃ କେବଳ ରବି ଗତି ଦ୍ୱାରା ଏହି ନକ୍ଷତ୍ରମାନଙ୍କର ଉଦୟ ଓ ଅସ୍ତ ଜାଣି ହେବା ନକ୍ଷତ୍ରମାନଙ୍କର; ପୂର୍ବଗତି ନାହିଁ । ତେଣୁ ସେମାନେ ମଙ୍ଗଳ ଗୁରୁ ଓ ଶନି ପରି ସୂର୍ଯ୍ୟଠାରୁ କାଳାଂଶାନ୍ତରରେ ରହି ପୂର୍ବରେ ଉଦିତ ହୋଇ ପଶ୍ଚିମରେ ଅସ୍ତ ହୁଅନ୍ତି ।

ପଶ୍ଚାଦସ୍ତମୟାତ୍ ପୂର୍ବଂ ଯେଷାଂ ପ୍ରାଗୁଦୟୋ ଭବେତ୍
ଉଦୟାସ୍ତମୟୌ ତେଷାଂ ନେଷ୍ଟୌ ପ୍ରତ୍ୟହମୀକ୍ଷଣାତ୍ ।୧୬।

ପଶ୍ଚିମରେ ଅସ୍ତ ହେବା ପୂର୍ବରୁ ଯେଉଁ ନକ୍ଷତ୍ର ଗୁଡ଼ିକର ପୂର୍ବରେ ଉଦୟ ହୋଇଥାଏ ସେଗୁଡ଼ିକର ଆଉ ଉଦୟାସ୍ତସାଧନ କରିବା ଆବଶ୍ୟକ ହୁଏ ନାହିଁ । କାରଣ ଏହି ଅବସ୍ଥା ସେମାନଙ୍କର ପ୍ରାତ୍ୟହିକ । ସେମାନେ ରବି ସନ୍ନିଧିବଶତଃ ଉଦିତ ବା ଅସ୍ତ ହୁଅନ୍ତି ନାହିଁ ।

ଯଦ୍ୟପ୍ୟାନବକ୍ଳପ୍ତାନାଂ ଭାନାମସ୍ତୋଦୟାଂଶକାଃ
ଯେ ଯେ କାଳାତ୍ମକାସ୍ତେଽତ୍ର କୀର୍ତ୍ତ୍ୟନ୍ତେ ଦୃକ୍‌ସମାଃ କ୍ରମାତ୍ ।୧୭।

ଯାଯାବନ୍ତୁ ବଳପ୍ତାନାଂ ସଂଖ୍ୟା ପଦ୍ୟାଦମାର୍ଦ୍ଧଗା
ତତ୍ତଦସ୍ତୋଦୟାଂଶାନାଂ ସଂଖ୍ୟାନ୍ତ୍ୟାର୍ଦ୍ଧେଷୁ ଗୃହ୍ୟତାମ୍ ।୧୮।

ରୂପଂସପାଦଂସାର୍ଦ୍ଧଂଚ ସଙ୍ଘିପାଦଂ ବଲୋଚନେ
ସିଦ୍ଧା ସ୍ତ୍ରିପକ୍ଷା ଦୃକ୍ ପକ୍ଷା କ୍ଷିତପକ୍ଷାଃ ଖପକ୍ଷକାଃ ।୧୯।

ସାର୍ଦ୍ଧପକ୍ଷୌ ଗୁଣା ବେଦା ବଶିଖା ଋତବୋଽଦ୍ରୟଃ
ଅଙ୍କୈକେଧୃତୟୋଽତ୍ୟଷ୍ଟିର୍ଘନା ଭୂପାନୁପାସ୍ତଥା ।୨୦।

ଅଷ୍ଟା ବଙ୍କା ଦଶେଶା ରୁଦ୍ରା ଶ୍ଚବସ୍ୱନ୍ତୋ ଗୁଣେନ୍ଦବଃ
ତଥାୟୁସ୍ତିଥୟୋଽର୍ଦ୍ଧାଷ୍ଟାଃ ଶକ୍ରାଃଶକ୍ରାଃ କୃତେନ୍ଦବଃ ।୨୧।

ମନବସ୍ତିଥୟୋ ଭୂପା ଘନାଃ ସୈକା ନବେନ୍ଦବଃ
ବର୍ଣ୍ଣେବର୍ଣ୍ଣେ ବିରୂପାଣି ସୂର୍ଯ୍ୟାଃ ସୂର୍ଯ୍ୟାଃ ପ୍ରଭାକରାଃ ।୨୨।

ନାଂଶାଃ କୁପକ୍ଷା ଦିକ୍‌ପକ୍ଷା ସ୍ୱାର୍ଧକ୍ଷାଦ୍ଧ୍ୟଷ୍ଟ ଭୂକାନ୍ତକାଃ
ରୁଦ୍ରରୁଦ୍ରାଃ ଶିବାଶ୍ଚାଥ ହରତଃ ପରକୀର୍ତ୍ତିତାଃ ।୨୩।

ଅଥୋନବିଂଶତଶ୍ଚତ୍ୱାରିଂଶଦନ୍ତବଲପ୍ତିକାଃ
ନବକାଲାଂଶକା ଏବଂ ଶ୍ଳୋକଦ୍ୱେ ରବଭିର୍ମିତାଃ ।୨୪

ନକ୍ଷତ୍ରଗୁଡ଼ିକର ବିମ୍ବମାନ ଓ ଉଦୟ ତଥା ଅସ୍ତାଂଶକାଳ କୁହାଯାଉଛି । ଏହି ବିମ୍ବମାନ ଓ ଉଦୟ ଅସ୍ତ କାଳାଂଶ ବରାବର ଦୃକ୍‌ସିଦ୍ଧ ହୋଇ ଆସିଛି ।

ନକ୍ଷତ୍ର ବିମ୍ବମାନ କେତେ କଳା ହେଲେ ତାହାର କାଳାଂଶ କେତେ ହେବ ତାହାର ତାଲିକା ତଳେ ଦିଆଗଲା ।

| ବିମ୍ବମାନ | କାଳାଂଶମାନ |
|---|---|
| ୧" । ୦ | ୨୪ |
| ୧" । ୧୫"' | ୨୩ |
| ୧" । ୩୦"' | ୨୨ |
| ୧" । ୪୫"' | ୨୧ |
| ୨" । ୦ | ୨୦ |
| ୨" । ୩୦ | ୧୯ |
| ୩" । ୦ | ୧୮ |
| ୪" । ୦ | ୧୭ |
| ୫" । ୦ | ୧୭ |
| ୬" । ୦ | ୧୬ |
| ୭" । ୦ | ୧୬ |
| ୮" । ୦ | ୧୫ |
| ୯" । ୦ | ୧୫ |
| ୧୦" । ୦ | ୧୫ |
| ୧୧" । ୦ | ୧୪ |
| ୧୨" । ୦ | ୧୪ |
| ୧୩" । ୦ | ୧୪ |
| ୧୪" । ୦ | ୧୩ |
| ୧୫" । ୦ | ୧୩ |
| ୧୬" । ୦ | ୧୩ |

| ଭଗ୍ନମାନ | କଳାଂଶମାନ |
|---|---|
| ୧୭"। ୦ | ୧୨ |
| ୧୮"। ୦ | ୧୨ |
| ୧୯"। ୦ | ୧୨ |
| ୨୦"। ୦ | ୧୧ |
| ୨୧"। ୦ | ୧୧ |
| ୨୨"। ୦ | ୧୧ |
| ୨୩"। ୦ | ୧୦ |
| ୨୪"। ୦ | ୧୦ |
| ୨୫"। ୦ | ୧୦ |
| ୨୬"। ୦ | ୧୦ |
| ୨୭"। ୦ | ୧୦ |
| ୨୮"। ୦ | ୧୦ |
| ୨୯"। ୦ | ୯ |
| ୩୦"। ୦ | ୯ |
| ୩୧"। ୦ | ୯ |
| ୩୨"। ୦ | ୯ |
| ୩୩"। ୦ | ୯ |
| ୩୪"। ୦ | ୯ |
| ୩୫"। ୦ | ୯ |
| ୩୬"। ୦ | ୯ |
| ୩୭"। ୦ | ୯ |
| ୩୮"। ୦ | ୯ |
| ୩୯"। ୦ | ୯ |
| ୪୦"। ୦ | ୯ |

ଅତଃ ଶୃଙ୍ଗେଜ୍ୟ ସୌମ୍ୟାର୍କିଭୌମାସ୍ତ୍ରୋଦୟ଼ୁ ଭୃଚ କୋଃ
ପ୍ରାୟଶୋଽଙ୍କାଂଶିବା ବର୍ଣ୍ଣେ ତଥୟୋଃ ହ୍ରୀଦଲଃ କ୍ରମାତ୍ ।୨୫।

ଚନ୍ଦ୍ରଚନ୍ଦ୍ରାର୍କିକଟସ୍ଥିତସ୍ୟ ଶଶିଜନ୍ମନଃ
ମନବୋଭ୍ରନବଃସ୍ପଷ୍ଟା ବର୍ଣ୍ଣେ ମଧ୍ୟତୟୋର୍ଦତାଃ ।୨୬।

ମଙ୍ଗଳ ଆଦି ତାରା ଗ୍ରହମାନଙ୍କର କାଳାଂଶ କୁହାଯାଉଅଛି ।—

| | |
|---|---|
| ଶୁକ୍ରର କାଳାଂଶ | ୯ |
| ବୃହସ୍ପତିର ” | ୧୧ |
| ବୁଧର ” | ୧୩ |
| ଶନିର ” | ୧୫ |
| ମଙ୍ଗଳ ” | ୧୭ |

ଚକ୍ର ବା ଚକ୍ରାର୍ଦ୍ଧରେ ଥିବା ଗ୍ରହମାନଙ୍କର କାଳାଂଶ ଏହିପରି—

| | |
|---|---|
| ବୁଧର ଚକ୍ରରେ କାଳାଂଶ | ୧୪ |
| ” ଚକ୍ରାର୍ଦ୍ଧରେ ” | ୧୨ |
| ଶୁକ୍ରର ଚକ୍ରରେ ” | ୧୦ |
| ” ଚକ୍ରାର୍ଦ୍ଧରେ ” | ୮ |

**ଗ୍ରହାର୍କୟୋର୍ଭାର୍କୟୋର୍ବା କଥିତାଂଶାଧିକେଽନ୍ତରେ**
**ବମ୍ବୋ ଦୃଶ୍ୟସ୍ତତୋ ନ୍ୟୂନେ ଗ୍ରହର୍କ୍ଷାଣାମଦର୍ଶନମ୍ ।୨୭।**

**ଅସ୍ତଦର୍ଶସ୍ତୁ ଖଗେଭ୍ୟଃ କାଳାଂଶୋନାଧିକଦ୍ୱୟୋଃ**
**କ୍ରମାଦସ୍ତମୟୋଽତୀତୋ ଭାବୀ ଚେତ ବକ୍ତ୍ରର୍ଯ୍ୟତାମ୍ ।୨୮।**

**ତେଭ୍ୟସ୍ତ୍ୱଦୟକାଷ୍ଠାୟାମାଧିକ୍ୟନ୍ୟୂନଭାବୟୋଃ**
**ଅଂଶାନାମୁଦୟୋ ଯାତୋ ଭବିଷ୍ୟନ୍ନିତି ଚନ୍ତ୍ୟତାମ୍ ।୨୯।**

ଗ୍ରହ ଓ ରବି ଅଥବା ନକ୍ଷତ୍ର ଓ ରବିର ଅନ୍ତର କଥିତ କାଳାଂଶଠାରୁ ଅଧିକ ହେଲେ ଗ୍ରହ ବିମ୍ବ ବା ନକ୍ଷତ୍ର ବିମ୍ବ ବରାବର ଦୃଶ୍ୟ ହେବ । ଏହା ଯଦି କମ ହୁଏ ତେବେ ଗ୍ରହ ଓ ନକ୍ଷତ୍ର ଅଦୃଶ୍ୟ ହୁଏ ।

ଇଷ୍ଟକାଳାଂଶ ପଠିତ କାଳାଂଶଠାରୁ ପଶ୍ଚିମ ଦିଗରେ କମ୍ ବା ବେଶୀ ହେଲେ ସେମାନଙ୍କର ଅସ୍ତ ଯଥାକ୍ରମେ ହୋଇ ସାରିଛି ବା ହେବ ବୋଲି ଜାଣିବାକୁ ହେବ । ପୂର୍ବ-ଦିଗରେ ଉଦୟ କଥାର ବିଚାର କଲାବେଳେ ଏହାର ଠିକ୍ ବିପରୀତ ହେବ । ଅର୍ଥାତ୍ ଇଷ୍ଟ କାଳାଂଶ ପଠିତ କାଳାଂଶଠାରୁ ଅଧିକ ବା କମ୍ ହେଲେ ଉଦୟ ଯଥାକ୍ରମେ ଗତ ବା ଭାବୀ ବୋଲି ଜାଣିବ ।

ଚଳାଂଶସଂସ୍କୃତର୍କାନ୍ୟ ଗ୍ରହଙ୍କାନ୍ତୋଦୟାସୁଭିଃ
ଉଦୟେଽସ୍ତମୟେ ତଦ୍ବଦ୍ ଷଷଭ୍ଭୋଦୟଜାସୁଭିଃ ।୩୦।

ଗ୍ରହାର୍କଭୁକ୍ତୀ ଗୁଣିତେ ଖାଭ୍ରନାଗେନ୍ଦୁଭିର୍ହୃତେ
ସ୍ୟାତାଂ କାଳଗତୀ ତତ୍ତଦ୍ବବରେଣୋଦୟାସ୍ତଜାଃ ।୩୧।

ବ୍ୟକ୍ଷଦୃକ୍କର୍ମଖେଟାର୍କାନ୍ତରଲଗ୍ନା ସୁସମ୍ଭବାଃ
କାଳଭାଗାହୃତାସ୍ତେ ସ୍ୟୁର୍ଗତଗମ୍ୟଦିନାଦୟଃ ।୩୨।

ଗ୍ରହେ ବକ୍ରିଣି ତତ୍ସୂର୍ଯ୍ୟଭୁକ୍ତଯୋଗେନ ଭାଜିତାଃ
ନକ୍ଷତ୍ରୋଦୟକାଳାର୍କାତ୍ ତଦସ୍ତମୟକାଳକମ୍ ।୩୩।

ପ୍ରୋକ୍ତସ୍ୟ ସ୍ଫୁଟରବେଂ ଶେଷ୍ଟଭାଗା ଲିପ୍ତୀକୃତାଃ ପୁନଃ
ଭଧ୍ରୁବସ୍ଥାର୍କଭୁକ୍ତ୍ୟାପ୍ତା ଭବନ୍ତ୍ୟନ୍ତରବାସରାଃ ।୩୪।

ଅୟନାଂଶ ସଂସ୍କୃତ ଗ୍ରହ ଓ ରବି ଯେଉଁ ଯେଉଁ ରାଶିରେ ଥିବେ ସେଗୁଡ଼ିକର ଉଦୟାସୁ ଦ୍ୱାରା ଉଦୟ ବେଳେ ଏବଂ ୬ ରାଶି ଯୁକ୍ତ ରବି ଓ ଗ୍ରହ ଯେଉଁ ଯେଉଁ ରାଶିରେ ଥିବେ ସେଗୁଡ଼ିକର ଉଦୟାସୁଦ୍ୱାରା ଅସ୍ତ ବେଳେ ରବି ଓ ଗ୍ରହର ଦୈନିକ ଗତିକୁ ଗୁଣି ୧୮୦ରେ ଭାଗ ଦେଲେ କାଳଗତି ହେବା ପରେ ଇଷ୍ଟ କାଳାଂଶାନ୍ତରକୁ ଗ୍ରହ ବକ୍ରୀଥିଲେ ତାର ଓ ରବିର ଆସନ୍ନକାଳ ଗତି ଯୋଗରେ ଏବଂ ବକ୍ରୀ ନ ଥିଲେ ଉଭୟର କାଳ ଗତ୍ୟନ୍ତରରେ ହରିଲେ ଫଳ ଦିନାଦି ହେବ । ଏହା ଗତ କି ଗମ୍ୟ ତାହା ପୂର୍ବସୂତ୍ରରୁ ସ୍ଥିର କରିବାକୁ ହେବ ।

ନକ୍ଷତ୍ରର ଉଦୟ ଓ ଅସ୍ତକାଳର ସ୍ଫୁଟରବି ଆଣି ଉଭୟର ଅନ୍ତରାଂଶକୁ କଳାକର । ତାକୁ ନକ୍ଷତ୍ର ଧ୍ରୁବ ସ୍ଥାନୀୟ ରବି ଗତି କଳାରେ ହରିଲେ ନକ୍ଷତ୍ରର ଉଦୟରୁ ଅସ୍ତ ପର୍ଯ୍ୟନ୍ତ ଦିନାଦି ଆସିଯିବ ।

ସ୍ଫୁଟାସ୍ଫୁଟକ୍ରାନ୍ତିକଯୋରନ୍ତରଂ ଯଦ୍ଦିନାର୍ଦ୍ଧୟୋଃ ।
ତତ୍ପ୍ରାଣାରାଶିଲିପ୍ତାଢ୍ୟାସ୍ତଦସ୍ତୋଦୟ-ଜାସୁଭିଃ ।୩୫।

ଚଳାଂଶ ସଂସ୍କୃତୈର୍ଭକ୍ତା ଲବ୍ଧା ଦୃକ୍କର୍ମଲିପ୍ତିକାଃ
ଋକ୍ଷସ୍ୟ ସୌମ୍ୟବିକ୍ଷେପେ କ୍ରମାତ୍ପ୍ରାକ୍ପଶ୍ଚିମସ୍ଥିତୌ ।୩୬।

**ତଦ୍‌ଧ୍ରୁବେ ବିଯୁତା ଯୁକ୍ତା ଯାମ୍ୟେଷୌ ସଂଯୁତୋନତାଃ**
**ଦୃକ୍‌କର୍ମ ଧ୍ରୁବ ଏବଂ ସ୍ୟାଦ୍ୱତ କ୍ଷେପାଂଶସଂସ୍କୃତଃ ।୩୭।**

ନକ୍ଷତ୍ରର ସ୍ଫୁଟକ୍ରାନ୍ତି ଜନିତ ଦିନାର୍ଦ୍ଧ ଓ ଅସ୍ଫୁଟ କ୍ରାନ୍ତି ଜନିତ ଦିନାର୍ଦ୍ଧର ଅନ୍ତରକର (ବାସ୍ତବରେ ସ୍ଫୁଟ ଓ ଅସ୍ଫୁଟଚରର ଅନ୍ତର) ତାହାର ଅସୁକୁ ୧୮୦୦ରେ ଗୁଣି ଅୟନାଂଶ ସଂସ୍କୃତ (ସାୟନ) ତଥା ଅସ୍ତୋଦୟ ରାଶିର ଉଦୟାସୁ ଆଦ୍ୟରେ ଭାଗ ଦେଲେ ଫଳ ଆକ୍ଷ ଦୃକ୍‌କର୍ମ କଳା ହୋଇ ପାରିବ । ଉକ୍ତ ନକ୍ଷତ୍ରର ଉତ୍ତର ଶର ପୂର୍ବ ପଶ୍ଚିମରେ ଥିବାବେଳେ ଏହି ଆଗତ କଳାକୁ ନକ୍ଷତ୍ର ଧ୍ରୁବରେ ଯଥାକ୍ରମେ ବିଯୋଗ ଯୋଗ କରିବାକୁ ହେବ । ଦକ୍ଷିଣରେ ସେହିପରି ପୂର୍ବ ପଶ୍ଚିମରେ ଥିବାବେଳେ ଯୋଗ ଓ ବିୟୋଗ ଯଥାକ୍ରମେ କରିବାକୁ ହେବ । ଏହାକୁ ଦୃକ୍‌କର୍ମ ଧ୍ରୁବ କହିବାର କଥା । ଏହାର ଅନ୍ୟ ନାମ ଉଦୟାସ୍ତ ଲଗ୍ନ । ସେହି ଧ୍ରୁବରେ କ୍ଷେପାଂଶର ସଂସ୍କାର ହେବା ଉଚିତ ।

**କାଳାଂଶା ଯୋଗତାରାଣାଂ ଯେ ସିଦ୍ଧା ଉଦୟାସ୍ତକାଃ**
**ତେ ରାଶିକଳିକାଭ୍ୟସ୍ତାଃ ପ୍ରାଚ୍ୟାଂ ସ୍ୱୋଦୟ-ଜାସୁଭିଃ ।୩୮।**

**ପଶ୍ଚାଦ୍ ଦ୍ୟୂନୋଦୟଃପ୍ରାଣୈର୍ଭକ୍ତାଃ କ୍ଷେପାଂଶକା ମତାଃ**
**ଦୃକ୍‌କର୍ମଜଧ୍ରୁବକସ୍ତୈସ୍ତୁ ପ୍ରାକ୍‌ପ୍ରତୀଚ୍ୟୋ ର୍ଯୁତୋଜ୍ଝିତଃ ।୩୯।**

**ଭବେଦ୍‌ଭଯୋଗତାରାଣ ମୁଦୟାସ୍ତମୟଧ୍ରୁବାଃ**
**ସ୍ଫୁଟାର୍କେ ତତ୍‌ସମେ ତେଷାମୁଦୟୋଽସ୍ତମୟସ୍ତଥା ।୪୦।**

ନକ୍ଷତ୍ର ସ୍ଥିତ ଯୋଗ ତାରାର ଯେଉଁ ଉଦୟ ଓ ଅସ୍ତକାଳୀନ କାଳାଂଶ ପଠିତ ଅଛି ତାହାର ଲିପ୍ତା କରି ତାକୁ ୧୮୦୦ କଳାରେ ଗୁଣ । ଗୁଣ ଫଳକୁ ପୂର୍ବ ଦିଗରେ ହେଲେ ନିଜର ରାଶ୍ୟୁଦୟାସୁରେ, ପଶ୍ଚିମରେ ହେଲେ ନିଜ ରାଶିର ୭ମ ରାଶି ଉଦୟାସୁରେ ଭାଗ ଦେଲେ ତାହା କ୍ରାନ୍ତି ବୃତ୍ତୀୟ କ୍ଷେପାଂଶ ହେବ । ଆଗରୁ ଆସିଥିବା ଦୃକ୍‌କର୍ମ ଧ୍ରୁବ ପଶ୍ଚିମର ହେଲେ ଏହି ଆନୀତ କ୍ଷେପାଂଶ ସେଥିରେ ଯଥାକ୍ରମେ ଯୋଗ ଓ ବିଯୋଗ କଲେ ତାହା ନକ୍ଷତ୍ର ଯୋଗ ତାରାର ଉଦୟ ବା ଅସ୍ତଧ୍ରୁବ ହେବ । ସ୍ଫୁଟ ସୂର୍ଯ୍ୟ ତାରାର ଉଦୟ ବା ଅସ୍ତ ଧ୍ରୁବ ସଙ୍ଗେ ସମାନ ହେଲେ ଉକ୍ତ ନକ୍ଷତ୍ର ସୂର୍ଯ୍ୟ ସାନ୍ନିଧ୍ୟରୁ ଉଦୟ ବା ଅସ୍ତ ହେବ ।

**ଉଦକ୍‌ସ୍ଥାନାମସ୍ତମୟ୍ୟା ପୂର୍ବଂ ସ୍ୱୋଦୟସମ୍ଭବାତ୍**
**ନେଷ୍ଟୋଽପ୍ୟସ୍ତମୟସ୍ତଦ୍ୱତ୍ କାଲଜ୍ଞାନାୟ କେବଳମ୍ ।୪୧।**

**କ୍ରତ୍ୱାଦୀନାମନ୍ୟକ୍ଷାଣାଂ ସାଧ୍ୟାବସ୍ତମୟୋଦୟୌ**
**କ୍ରତୋର୍ବ୍ରହ୍ମହୃଦୟାଦୀନାଂ ଯାମ୍ୟାନା-ମସ୍ତଭୂରତା ।୪୨।**

ଉତ୍ତରରେ ଥିବା କେତେକ ନକ୍ଷତ୍ରର ପଶ୍ଚିମାସ୍ତ ହେବା ଆଗରୁ ପୁଣି ପୂର୍ବୋଦୟ ହୋଇ ଯାଉଥିବାରୁ ଅସ୍ତ କଥାର ଚର୍ଚ୍ଚା ଅନାବଶ୍ୟକ ହେଲେ ମଧ୍ୟ କେତେକ ସମୟରେ ଅସ୍ତ ହୋଇପାରେ । ଏହି କାଳ ଜ୍ଞାନ ନିମନ୍ତେ ଉଦୟ ଓ ଅସ୍ତ କଥା କୁହାଯାଇ ଅଛି । ଏଣୁ ଆଦି କେତେକ ନକ୍ଷତ୍ରର ଉଦୟ ଓ ଅସ୍ତ ସାଧନ କରିବା ଉଚିତ । ଅଗସ୍ତ୍ୟ ଓ ଯମ ପ୍ରଭୃତି କେତେକ ନକ୍ଷତ୍ର ଅତ୍ୟନ୍ତ ଦକ୍ଷିଣରେ ଥିବାରୁ ସେମାନେ ବହୁ ଦିନ ଧରି ଅସ୍ତ ରହନ୍ତି ।

ସର୍ବେଷାନ୍ତୁ ଗ୍ରହର୍କ୍ଷାଣାଂ ଦିନମାନ ପ୍ରବୋଧତଃ
ତୌ ଜ୍ଞେୟା-ବପି ଦାର୍ଢ୍ୟାର୍ଥଂ କୃତୋଗଣିତବିସ୍ତର ।୪୩।

ନିଜ ନିଜ କ୍ରାନ୍ତି ଯୋଗେ ଚର ଆଣି ପ୍ରତ୍ୟେକ ଗ୍ରହ ଓ ନକ୍ଷତ୍ରର ଦିନ ପ୍ରମାଣ ଆଣି ହେବ । ଏଣୁ ସେମାନଙ୍କର ନିତ୍ୟ ଉଦୟ ଓ ଅସ୍ତ ସୁବିଧାରେ ଜାଣି ହେବ । ତଥାପି ଉଦୟ ଓ ଅସ୍ତର ନିର୍ଦ୍ଦିଷ୍ଟ କାଳ ଜାଣିବା ନିମନ୍ତେ ଏଠାରେ ଗଣିତର ବିସ୍ତାର କରାଗଲା ।

ଉଦୟାସ୍ତମୟୌ ପ୍ରୋକ୍ତୌ ପୂର୍ବସିଦ୍ଧାନ୍ତସମ୍ମତୌ
ଦୃକସିଦ୍ଧୌ ପୁନରୁଚ୍ୟେତେ ନିଜକଳ୍ପନୟାଗତୌ ।୪୪।

ଊର୍ଦ୍ଧ୍ୱଗାନାଂ ଗ୍ରହର୍କ୍ଷାଣାମଦୃଷ୍ଟୌ କାରଣଂ ଯତଃ
ଖରାଂଶୁ କିରଣବ୍ୟାପ୍ତିଃ ସା ହି ଦୃଙ୍ମଣ୍ଡଳାନଗା ।୪୫।

ଦୃଙ୍ମଣ୍ଡଳଲବାସ୍ତ୍ରିଜ୍ୟାହତା ଲମ୍ବଜ୍ୟୟା ହୃତାଃ
ତ୍ରିଜ୍ୟାଘ୍ନା ଦ୍ୟୁଜ୍ୟୟା ଭକ୍ତାଃ କାଳାଂଶାଃ ସୂର୍ଯ୍ୟତଃ ସ୍ଫୁଟାଃ ।୪୬।

ଦୃଙ୍ମଣ୍ଡଳାଂଶକାଳାଂଶ-ଭେଦସ୍ତସ୍ମାଦନଳ୍ପକଃ
ଭବେନ୍ନିର-କ୍ଷ-ଦେଶେଽପି ଦ୍ୟୁଜ୍ୟାତ୍ରିଜ୍ୟାନ୍ତରୋନ୍ମିତଃ ।୪୭।

ଏ ପର୍ଯ୍ୟନ୍ତ ପ୍ରାଚୀ ସିଦ୍ଧାନ୍ତ ମାନଙ୍କ ମତରେ ତାରା ଓ ଗ୍ରହମାନଙ୍କର ଉଦୟ ତଥା ଅସ୍ତ କଥା ବର୍ଣ୍ଣିତ ହେଲା । ବର୍ତ୍ତମାନ ନିଜ କଳ୍ପନାରେ ଏହି ଉଦୟାସ୍ତ କଥା କୁହାଯାଉଛି । ଗ୍ରହ ଓ ତାରାମାନେ କ୍ଷିତିଜର ଊର୍ଦ୍ଧ୍ୱରେ ଥିଲା ବେଳେ ମଧ୍ୟ ଯେ ଦେଖା ଯା'ନ୍ତି ନାହିଁ, ତାର କାରଣ ସେତେବେଳେ ସେମାନଙ୍କ ଉପରେ ସୂର୍ଯ୍ୟଙ୍କର କିରଣପାତ । ଏଣେ ସୂର୍ଯ୍ୟଙ୍କ କିରଣ ଦୃଙ୍ମଣ୍ଡଳାନୁଯାୟୀ ହୋଇଥାଏ । ଏଣୁ ସୂର୍ଯ୍ୟର ଦୃଙ୍ମଣ୍ଡଳୀୟ ଉନ୍ନତାଂଶକୁ ତ୍ରିଜ୍ୟାରେ ଗୁଣି ଲମ୍ବଜ୍ୟାରେ ହର । ଫଳକୁ ପୁଣି ତ୍ରିଜ୍ୟାରେ ଗୁଣି ଦ୍ୟୁଜ୍ୟାରେ ହର । ଫଳ ସୂର୍ଯ୍ୟଠାରୁ ସେମାନଙ୍କ ସ୍ଫୁଟ କାଳାଂଶ ହେବ । ସେଥିରୁ ଜାଣିବାକୁ ହେଉଛି ଯେ ଏହି ଦୃକ୍‌ମଣ୍ଡଳୀୟ ଅଂଶ ଓ କାଳାଂଶର ଅନ୍ତର କମ୍ ନୁହେଁ—ଅନେକ ବେଶି । ନିରକ୍ଷ-ଦେଶରେ ମଧ୍ୟ ଏହି ପ୍ରଭେଦ ଦ୍ୟୁଜ୍ୟା ଓ ତ୍ରିଜ୍ୟାର ଅନ୍ତର ସମାନ ହୋଇଥାଏ । ଏଣୁ ସାକ୍ଷଦେଶରେ ଏହା ସେଥିରୁ ଢେର ବେଶି ହେବାର କଥା ।

ରସାଂଙ୍ଗା କ୍ଷାଂଶ-କେ ଦେଶେ ମେଷମାସେ ଝଷସ୍ଥୟୋଃ
ଉଦ୍ୟତୋଃ ସହସୂର୍ଯ୍ୟେଣ କ୍ଷିତଜେ ଗୁରୁଶୁକ୍ରୟୋଃ ।୪୮।

ଭାସ୍ୱତୋ ଦୂରବର୍ତ୍ତିତ୍ୱାତ୍ ସିଦ୍ଧେ ଦର୍ଶନସମ୍ଭବେ
ଉଦୟାନ୍ତରକାଳାଂଶସାଧନଂ ତତ୍ର ନସ୍ଫୁଳମ୍ ।୪୯।

ଦେଶ ଓ କାଳ ନେଇ ଗୁରୁ ଓ ଶୁକ୍ରର କାଳାଂଶରେ କ ଅସୁବିଧା ଅଛି ତାହା ବର୍ଣ୍ଣାଇ ଦିଆଯାଉଛି । ଯେଉଁ ଦେଶର ଅକ୍ଷାଂଶ ୬୬° ସେଠାରେ ମେଷ ମାସରେ ରବି ମେଷ ରାଶିରେ ଥିବାବେଳେ ମୀନ ରାଶିରେ ଥିବା ଗୁରୁ ଓ ଶୁକ୍ର, ରବି ସହିତ ଉଦିତ ହୁଅନ୍ତି । ଏ ଦୁହେଁ ସୂର୍ଯ୍ୟଠାରୁ ଦୂରରେ ଦେଖାଯାଉ ଥିବାରୁ ଏତେବେଳେ ଉଦୟାନ୍ତର କାଳାଂଶ ଆଣିବା ଆଦୌ ଦରକାର ନାହିଁ । ଯେତେବେଳେ ପଠିତ କାଳାଂଶରୁ କମ୍ କାଳାଂଶ ଥିଲେ ମଧ୍ୟ କ୍ଷେତ୍ରାଂଶ ଅଧିକ ହେବାରୁ ଏପରି ହୋଇଥାଏ ।

ତଦାଦୌ ସ୍ଥୂଳକେନ୍ଦ୍ରାଂଶୈଃ ପ୍ରାଗ୍ବଦସ୍ତୋଦୟୋଦ୍ଭବମ୍
କାଳମାନୀୟ ତତ୍କାଳଦୋଃଫଲଞ୍ଚ ବବସ୍ୱତଃ ।୫୦।

ଧନର୍ଣ୍ଣଂ ସୂର୍ଯ୍ୟବତ୍ତୂର୍ଯ୍ୟକେନ୍ଦ୍ରେ ସ୍ୱସ୍ୱୋଦୟାସ୍ତକେ
ଜୀବମନ୍ଦାସୃଜାଂ ଶୁକ୍ରବୁଧୟୋସ୍ତୁ ବ୍ୟତକ୍ରମାତ୍ ।୫୧।

ସ୍ଫୁଟକେନ୍ଦ୍ରମଥୋ ଭନୋରୟନାଂଶପରିଷ୍କୃତାତ୍
ଗ୍ରହସ୍ୟୋନସ୍ୟ ପୂର୍ବୋକ୍ତକାଳାଂଶାର୍ଦ୍ଧ ବଶୋଧ୍ୟ ଚ ।୫୨।

ଅଧିକସ୍ୟ ରବୌ ତସ୍ମିନ୍ ଯୋଜୟିତ୍ୱା ତଦର୍ଦ୍ଧକମ୍
ତତ୍ସ୍ୟା-ଦ୍ରାଶ୍ୟା-ଦକଂ ଭନୌ ପ୍ରାକ୍ପ୍ରଷ୍ଠେ ଲଗ୍ନଂ ତଦେବ ହ ।୫୩।

ପ୍ରତ୍ୟକ୍ପ୍ରେ ଷଡ୍ଭଯୁକ୍ କୃତ୍ୱା ତସ୍ମାଦ୍ବକିଭତଃ ପୁନଃ
କ୍ରାନ୍ତିମକ୍ଷାଂଶସଂସ୍କାରନ୍ନତାଂଶାନୁନ୍ନତାଂଶକାନ୍ ।୫୪।

ଆନୀୟାଥ ନତାନଂଶାନ୍ କୁତେଷ୍ୱଙ୍ଗାଦ୍ରଦନ୍ତଭିଃ
କ୍ରମାଦ୍ଭଜ୍ୟ ଶୁକ୍ରେଜ୍ୟବୁଧାର୍କିଷ୍ମାଭୁବାଂ କୃତେ ।୫୫।

ତଦ୍ଫଳାଢ୍ୟା ଉନ୍ନତାଂଶାସ୍ତେଭ୍ୟଃ ସାଧ୍ୟୋନ୍ନତଜ୍ୟକା
ସ୍ୱସ୍ୱୋଦୟସ୍ତକାଳାଂଶାସ୍ତ୍ରିଜ୍ୟାଘ୍ନା ଉନ୍ନତଜ୍ୟୟା ।୫୬।

**ହୃତା ଯତ୍ଫଳମଂଶାଦ୍ୟଂ ଗ୍ରହେ ତଦପବୃତ୍ତଗେ**
**ତତ୍ସୂର୍ଯ୍ୟାନ୍ତରମେବ ସ୍ୟାଦ୍ ଧ୍ରୁବୋଽସ୍ତୋଦୟୟୋର୍ମତମ ।୫୭।**

ମଙ୍ଗଳ ଆଦି ଗ୍ରହମାନଙ୍କର ଦୃକ୍‌ସିଦ୍ଧ ଉଦୟାସ୍ତ ଧ୍ରୁବାଂଶ ଅଣାଯାଉଅଛି ।

ପ୍ରଥମେ ପଠିତ ଉଦୟ ଓ ଅସ୍ତ କେନ୍ଦ୍ରାଂଶଦ୍ୱାରା ପୂର୍ବସ୍ଥିତରେ ସ୍ଥୂଳ ଉଦୟ ଓ ଅସ୍ତ-କାଳ ଆଣି ତାତ୍କାଳିକ ସୂର୍ଯ୍ୟର ମନ୍ଦଭୁଜ ଫଳ ବାହାର କର । ଯେଉଁ ସ୍ଥିତରେ ମନ୍ଦ ଭୁଜ ଫଳକୁ ସୂର୍ଯ୍ୟରେ ସଂସ୍କାର (ଧନ ବା ଋଣ) କରାଯାଏ ସେହି ସ୍ଥିତରେ ଏହି ସୂର୍ଯ୍ୟ ମନ୍ଦ ଭୁଜ ଫଳକୁ ବୃହସ୍ପତି ଶନି ଓ ମଙ୍ଗଳର ଉଦୟାସ୍ତ କାଳିକ ଚତୁର୍ଥ ଶୀଘ୍ର କେନ୍ଦ୍ରରେ ସଂସ୍କାର କରିବ । ବୁଧ ଓ ଶୁକ୍ରଙ୍କ ପକ୍ଷରେ ଏହି ସଂସ୍କାର କାର୍ଯ୍ୟ ବିପରୀତ ହେବ । ଏହାଦ୍ୱାରା ଏ ସମସ୍ତଙ୍କର ସ୍ପଷ୍ଟ ଶୀଘ୍ରକେନ୍ଦ୍ର ଆସିଯିବ । ତାପରେ ସ୍ପଷ୍ଟ ଉଦୟ ଓ ଅସ୍ତକାଳ ଜାଣିବାକୁ ହେବ ।

ତାତ୍କାଳିକ ସାୟନ ସୂର୍ଯ୍ୟର ରାଶ୍ୟାଦିରୁ ଗ୍ରହ ରାଶ୍ୟାଦି କମ ଥିଲେ ଉକ୍ତ ଗ୍ରହର ପଠିତ କଳାଂଶର ଅଧାକୁ ସେହି ରବିରୁ ଫେଡ଼ିବ । ଗ୍ରହ ଅଧିକ (ରବିଠାରୁ) ଥିଲେ ତାହା ରବିରେ ଯୋଗ କରିବ; ଫଳ ରାଶ୍ୟାଦି ହେବ । ରବି ପୂର୍ବରେ ତତ୍କାଳରେ ଥିଲେ ଏହି ରାଶ୍ୟାଦି ହିଁ ସେତେବେଳର ଲଗ୍ନ ହେବ । ମାତ୍ର ରବି ପଶ୍ଚିମରେ ଥିଲେ ଉକ୍ତ ରବିର ରାଶ୍ୟାଦିରେ ୬ ରାଶି ଯୋଗ କରିବ । ଏଣେ ଉକ୍ତ ରାଶ୍ୟାଦି ରବିରୁ ୩ ରାଶି ବାଦ୍ ଦେଇ ସେଥିରୁ କ୍ରାନ୍ତି ସାଧନ କରିବ । ଏହି କ୍ରାନ୍ତିରେ ଅକ୍ଷାଂଶ ସଂସ୍କାରଦ୍ୱାରା ନତାଂଶ ଓ ସେଥିରୁ ଉନ୍ନତାଂଶ ବାହାର କରିବ । ଏପରି ଭାବରେ ଶୁକ୍ର, ଗୁରୁ, ବୁଧ, ଶନି ଓ ମଙ୍ଗଳର ନତାଂଶ ଆଣି ଯଥାକ୍ରମେ ତାକୁ ୪, ୫, ୬, ୭, ୮ରେ ଭାଗ କଲେ ଯେଉଁ ଫଳ ଆସିବ, ତାକୁ ଉକ୍ତ ଗ୍ରହମାନଙ୍କର ଉନ୍ନତାଂଶରେ ଯଥାକ୍ରମେ ଯୋଗ କରିବ । ଏହି ଯୋଗର ଜ୍ୟା ସାଧନ କରିବ । ବର୍ତ୍ତମାନ ମଙ୍ଗଳ, ବୁଧ, ଗୁରୁ, ଶୁକ୍ର ଓ ଶନିର ପଠିତ ଉଦୟାସ୍ତ କାଳାଂଶକୁ ତ୍ରିଜ୍ୟାରେ ଗୁଣି ଏହି ଯୋଗ ଜ୍ୟା (ସଂସ୍କୃତ ଉନ୍ନତ ଜ୍ୟା) ରେ ହରିଲେ ଯେଉଁ ଅଂଶାଦି ଫଳ ହେବ (ଗ୍ରହ ବିମ୍ବ କ୍ରାନ୍ତି ବୃତ୍ତରେ ଥିବାବେଳେ) ତାକୁ ରବିରୁ ବାଦ ଦେଲେ ଅସ୍ତୋଦୟର ଧ୍ରୁବ ହେବ ।

**ଧ୍ରୁବାର୍କସଂସ୍କୃତେ ପ୍ରାଗ୍‌ବତ୍ ସାୟନାର୍କେ ପୁରଃସ୍ଥିତେ**
**ଶୂନ୍ୟୈକାଦ୍ଧଭଗେ ତେଷାଂ ଖେଚରାଂଶା ଉଦ୍‌ଗତେ ଯଥା ।୫୮।**

**ଶୂନ୍ୟେ ଭେ ଦଶକାବ୍ୟସ୍ୟ କଳାଭିସ୍ତ୍ର୍ୟଶ୍ୱିଭିର୍ଯୁତାଃ**
**ଏକସ୍ମିନ୍ ଷଡ଼୍‌ଭୁଜୈଃ କାଷ୍ଠା-ଦ୍ୱୟୋର୍ନବ ଚ ଭୂଶରୈଃ ।୫୯।**

ବିଂଶ୍ୟଙ୍କାଃ ଖଭୁଜୈଃ ଭୈର୍ଷ୍ଟ ଚତୁର୍ଷ୍ଟ ନବ ଗୃବ୍ଧିଭିଃ
ପଞ୍ଚ ସ୍ୱଙ୍କାଶ୍ଚ ଷଟ୍ତ୍ରିଙ୍କା ଭୁବୈର୍ବ ପଞ୍ଚଭଦକାଃ ।୭୦।

ବ୍ୟୁତ୍କ୍ରମାତ୍ ସପ୍ତଭଦେଷ୍ୱେଷୁ ଜ୍ଞେୟା ଭଟେନୌ ତୁ ପଶ୍ଚିମେ
ସଂସ୍କୃତେ ପ୍ରାଗ୍ବଦେ ତସ୍ମାତ୍ ସଷଡ୍ଭନ୍ତେଽଂଶକା ମତାଃ ।୭୧।

ଏକୈକଭଧ୍ରୁବଲବାନ୍ତରଘ୍ନୈଃ ସଂସ୍କୃତାର୍କଜୈଃ
ଅଂଶୈଃଖାଗ୍ନି ହୃତୈଃ ସ୍ପଷ୍ଟା ବହ୍ୱଲ୍ପା ବଯୁତା ଯୁତାଃ ।୭୨।

ଅଥ ଶୂନ୍ୟୈକଭଦେଷ୍ୱେଷୁ କ୍ଷେତ୍ରାଂଶା ପୂର୍ବବତ୍‌ଗୁରୋଃ
ବଶ୍ୱେବେଭି ବିଂଶ୍ୟକେଦୋଭ୍ୟାଂ ସୂର୍ଯ୍ୟାରୁଦ୍ରୈଃ ପିନାକିନଃ ।୭୩।

ଗଜାକ୍ଷିଭିଃ ଶିବା ବାଣୈ ରୁଦ୍ରାରୁଦ୍ରା ଭୁବେଢ ଚ
ବୃହସ୍ୟ ଭୂପା ଗିରଶୈଃ ତଥୟୋ ନବ ବହ୍ନିଭିଃ ।୭୪।

ଇନ୍ଦ୍ରା ରଦୈର୍ଗୁଣଭୁବୋଽଙ୍ଗାଗ୍ନିଭିଃ ବଶ୍ୱକେ ନଗୈଃ
ବଶ୍ୱେବଶ୍ୱେଭୁବାର୍କେଷୁ ଧୃତୟୋ ରସସାୟକୈଃ ।୭୫।

ଧୃତୟଶ୍ଚ ନୃପୈ-ର୍ଭୂପା ଗୁଣ-ବାଣୈଃ ଶରେନ୍ଦବଃ
କୃତବେଦୈଶ୍ଚ ତଥୟୋ ଦନ୍ତଭିସ୍ତିଥୟଃ ପୁନଃ ।୭୬।

ତଥୟଃ କ୍ୱାଥ ଭୌମସ୍ୟ ଭୂଦ୍ରଶୋ ନୟନାବ୍ଧିଭିଃ
ନଖାସ୍ତ୍ୱ୍ୟକ୍ଷୈ-ର୍ନବଭୁବଃ ଶକ୍ରୈର୍ବାହୁଶରୈର୍ଘନାଃ ।୭୭।

ଘନା ଦଗ୍ଭିର୍ଘନା ଏବ ଘନା ରୁପେଣ ସମ୍ମତାଃ
ଅସ୍ତୋଦୟ ଧ୍ରୁବାଃ ସ୍ପଷ୍ଟା ମଧ୍ୟେଃ ପଞ୍ଚଭକାଃ ସମାଃ ।୭୮।

ଏବମନ୍ୟେଷୁ ଦେଶେଷୂନ୍ନତଜ୍ୟା-କ୍ରମତୋ ବୁଧୈଃ
ଉନ୍ନେୟା ଉଦୟାସ୍ତାଂଶାଃ ସୂର୍ଯ୍ୟଖେଟାନ୍ତରାନ୍ତରା ।୭୯।

ପୂର୍ବରୁ ଆସିଥିବା ଧ୍ରୁବର ଅଧାସାୟନ ରବିରେ ସଂସ୍କାର କର । ଅର୍ଥାତ୍ ସାୟନ ରୁ କମ୍‌ଥିବା ଗ୍ରହର ଧ୍ରୁବର ଅଧାକୁ ସେହି ସାୟନ ରବିରୁ ବାଦ୍ ଦିଅ । ପୁଣି ସାୟନ

ରବିରୁ ବେଶିଥିବା ଗ୍ରହର ଧ୍ରୁବର ଅଧାକୁ ସେହି ସାୟନ ରବିରେ ଯୋଗକର । ଦେଖ ଯେ ଏହି ସଂସ୍କୃତ ସାୟନ ରବି ୦, ୧, ୨ ଆଦି କେତେ ରାଶିରେ ଅଛନ୍ତି, ସେହି ଅନୁସାରେ ଏହି ଉତ୍କଳରେ ଶୁକ୍ର, ବୃହସ୍ପତି, ବୁଧ, ମଙ୍ଗଳ ଓ ଶନିର ଉଦୟାସ୍ତ ସ୍ଫୁଟ ଧ୍ରୁବାଂଶ— ଏହିପ୍ରକାରେ ଦିଆଯାଉ ଅଛି । ଏହା ଅବଶ୍ୟ ସୂର୍ଯ୍ୟ ପୂର୍ବ ଦିଗରେ ଥିବା ବେଳେ ହେବ ।

ଉକ୍ତ ରବିର ଶୂନ୍ୟ ରାଶିରେ (୧୨ ରାଶିରେ) ଶୁକ୍ରକ୍ଷେପାଂଶ ୧୦° | ୪୩'

| | | | | | | |
|---|---|---|---|---|---|---|
| ଏକ | ରାଶିରେ ଓ | ବାର | ରାଶିରେ | ଶୁକ୍ର | କ୍ଷେପାଂଶ | ୧୦° \| ୨୬' |
| ଦୁଇ | ,, | ଏଗାର | ,, | ,, | ,, | ୯° \| ୫୧' |
| ତିନ | ,, | ଦଶ | ,, | ,, | ,, | ୯° \| ୨୦' |
| ଚାରି | ,, | ନଅ | ,, | ,, | ,, | ୯° \| ୪' |
| ପାଞ୍ଚ | ,, | ଆଠ | ,, | ,, | ,, | ୯° \| ୦' |
| ଛଅ | ,, | ସାତ | ,, | ,, | ,, | ୯° \| ୧' |

ଉକ୍ତ ରବି ପଶ୍ଚିମରେ ଥିବାବେଳେ ସେଥିରେ ୬ରାଶି ମିଶାଇ ତାର ୦,୧,୨ ରାଶିରେ ପୂର୍ବପରି କ୍ଷେପାଂଶ ହେବ । ଏହାପରେ ସଂସ୍କୃତ ରବିର ଅଂଶାଦିକୁ ଧ୍ରୁବାଂଶର ଅନ୍ତରରେ ଗୁଣି ୩୦ରେ ହରିଲେ ଯେଉଁ ଲବ୍ଧି ହେବ ତାକୁ କ୍ଷେପାଂଶ ବଢୁଥିବା ବେଳେ ସେଥିରେ ଯୋଗ ଓ କ୍ଷେପାଂଶ କମୁଥିବା ବେଳେ ଅନ୍ତର କଲେ ତାହା ସ୍ପଷ୍ଟ ହେବ ।

ଏହିପରି ଭାବରେ ବୃହସ୍ପତିର କ୍ଷେପାଂଶ ହେଲା—

| | | | |
|---|---|---|---|
| | ୧ | ରାଶିରେ ୧୨ | ୧୩° \| ୨୭' |
| | ୨ | ,, ୧୧ | ୧୩° \| ୨' |
| | ୩ | ,, ୧୦ | ୧୨° \| ୧୧' |
| | ୪ | ,, ୯ | ୧୧° \| ୨୮' |
| | ୫ | ,, ୮ | ୧୧° \| ୫' |
| | ୬ | ,, ୭ | ୧୧° \| ୦' |
| ବୁଧର | ୧ | ରାଶିରେ ୧୨ରୁ | ୧୬° \| ୧୧' |
| | ୨ | ,, ୧୧ରୁ | ୧୫° \| ୩୯' |
| | ୩ | ,, ୧୦ରୁ | ୧୪° \| ୩୨' |
| | ୪ | ,, ୯ରୁ | ୧୩° \| ୩୬' |
| | ୫ | ,, ୮ରୁ | ୧୩° \| ୭' |
| | ୬ | ୭ରୁ | ୧୩° \| ୦' ୧୩° । ୧ |

| | | | | |
|---|---|---|---|---|
| ଶନିର | ୧ | ରାଶିରେ | ୧୨ଘ | ୧୮° । ୫୬' |
| | ୨ | ,, | ୧୧ଘ | ୧୮° । ୧୬' |
| | ୩ | ,, | ୧୦ଘ | ୧୬° । ୫୩' |
| | ୪ | ,, | ୯ଘ | ୧୫° । ୪୪' |
| | ୫ | ,, | ୮ଘ | ୧୫° । ୮' |
| | ୬ | ,, | ୭ଘ | ୧୫° । ୦', ୧୫° । ୧' |
| ମଙ୍ଗଳର | ୧ | ରାଶିରେ | (୧୨ଘ) | ୨୧° । ୪୨' |
| | ୨ | ,, | | ୨୦° । ୫୩' |
| | ୩ | ,, | | ୧୯° । ୧୪' |
| | ୪ | ,, | | ୧୭° । ୫୨' |
| | ୫ | ,, | | ୧୭° । ୧୦' |
| | ୬ | ,, | | ୧୭° । ୦', ୧୭° । ୧' |

୫ ରାଶିରେ ଯେଉଁ ଅସ୍ତୋଦୟ ଧ୍ରୁବ ହେବ, ତାହା ମଧ୍ୟମ କ୍ଷେପାଂଶ ସଙ୍ଗେ ସମାନ ହେବ । (୫ ରାଶି ଓ ୬ ରାଶିର ଯେ କ୍ଷେପାଂଶ ହେବେ ସେ ଦୁହିଁଙ୍କ ଅନ୍ତର ୧ ହେବା ଜଣା ପଡୁଥିବାରୁ ଏହା ହେଉଅଛି) ।

ଅନ୍ୟ ଦେଶରେ ମଧ୍ୟ ଲଗ୍ନଭଜ୍ୟା କ୍ରମରେ ସୂର୍ଯ୍ୟ ଓ ଗ୍ରହ ମଧ୍ୟସ୍ଥିତ ଉଦୟ ଓ ଅସ୍ତାଂଶ ଆଣିବାକୁ ହେବ ।

**ସ୍ଫୁଟଂ ଧ୍ରୁବାଂଶଳପ୍ତାଭି-ରନ୍ତରଂ ସୂର୍ଯ୍ୟଖେଟୟୋଃ**
**ଯଦା ତଂ ସମୟଂ ପ୍ରାଗ୍‌ବନ୍ଦି ଶୁକ୍ଳୀକୃତ୍ୟ ଭୁକ୍ତିଭିଃ । ୭୦ ।**

**ଶରାଦାୟନଦୃକ୍‌କର୍ମପରମାକ୍ଷଂ ବଧାୟ ଚ**
**ତଦନ୍ତରସ୍ପରସଂସ୍କାରାଦ୍ଧନର୍ଣ୍ଣାଶାଦକଂ ତଥା । ୭୧ ।**

**ବକଳୀକୃତ୍ୟ ଖେଟାର୍କଗତ୍ୟନ୍ତରକଳାହୃତମ୍**
**ବକ୍ରି ଶୁକ୍ରଜ୍ଞଗତ୍ୟର୍କଗତଯୋଗବଭଜିତମ୍ । ୭୨ ।**

**ଦଣ୍ଡାଦକଂ ଫଳଂ ଗ୍ରାହ୍ୟଂ ଧନେ ଦୃକ୍‌କର୍ମଣି ସ୍ଫୁଟେ**
**ସମୟେ ପଶ୍ଚିମାସ୍ତସ୍ୟ ଯୋଜ୍ୟଂ ପ୍ରାଗୁଦୟସ୍ୟ ଚ । ୭୩ ।**

**ପ୍ରାକ୍‌ପ୍ରତ୍ୟକ୍‌-ସ୍ତୋଦୟୟୋସ୍ତ୍ୟାଜ୍ୟଂ ଦୃକ୍‌କର୍ମଣିଦ୍ଧ୍ରଣେ**
**ପଶ୍ଚାଦସ୍ତମୟପ୍ରାଗୁଦୟୟୋସ୍ତ୍ୟାଜ୍ୟମନ୍ୟୟୋଃ । ୭୪ । ***

* ପ୍ରାଗସ୍ତ ପଶ୍ଚିମୋ ଦୟୟୋଃ-ଇତ୍ୟର୍ଥଃ ।

**ଯୋଜ୍ୟମେବଂ ସ୍ଫୁଟତମଃ କାଲଃ ସ୍ୟାଦୁଦୟାସ୍ତୟୋଃ**
**ସ୍ଥ ଚ ଭୁକ୍ତି-ବଶାଜ୍ ଜ୍ଞେୟଃ ସ୍ଫୁଟଚନ୍ଦ୍ରାର୍କବକ୍ରୟୋଃ ।୭୫।**

ବର୍ତ୍ତମାନ ବାସ୍ତବ ଉଦୟାସ୍ତକାଳ ଅଣାଯାଉଛି—ସୂର୍ଯ୍ୟ ଏବଂ ଗ୍ରହର ଅନ୍ତର ପୂର୍ବୋକ୍ତ ଧ୍ରୁବାଂଶ କଳା ସଙ୍ଗେ ସମାନ ହେଲେ ତାହାହିଁ ସ୍ଫୁଟ ସମୟ ହେବ । ଏହାକୁ ପୂର୍ବୋକ୍ତ ଗ୍ରହ ଓ କଳାଦ୍ୱାରା ଦୃଢ଼ କରାଇ ନେବାକୁ ହେବ । ଶରରୁ ଆୟନ ଓ ଆକ୍ଷ ଉଭୟ ଦୃକ୍‌କର୍ମ କରି ନେବ । ଏ ଉଭୟଙ୍କର ପୁଣି ଧନର୍ଣ୍ଣ ସଂସ୍କାର ପରସ୍ପରରେ କରାଇ ରଖିବ-ଶେଷ ଫଳ ଧନ ହେଉ ବା ଋଣ ହେଉ (ଯୋଗ ବା ବିୟୋଗ) । ଏ ଉଭୟ ସଂସ୍କୃତ ଅଂଶାଦି ଫଳକୁ ପୁଣି ବିକଳା କରି ତାକୁ ଗ୍ରହ ଓ ସୂର୍ଯ୍ୟର ଅନ୍ତର ଗତି କଳାରେ ହରିବ । ଗ୍ରହ ବକ୍ରୀ ହୋଇଥିଲେ ଗ୍ରହ (ବୁଧ ବା ଶୁକ୍ର) ଗତି ଓ ସୂର୍ଯ୍ୟ ଗତି କଳା ଯୋଗରେ ହରିବ । ଉଭୟ ଜାଗାରେ ଫଳ ଦଣ୍ଡାଦି ହେବ । ସ୍ଫୁଟ ଦୃକ୍‌କର୍ମ (ସଂସ୍କୃତ ଦୃକ୍‌କର୍ମ) ଯୋଗ ହୋଇଥିଲେ ପୂର୍ବୋଦୟ ତଥା ପଶ୍ଚିମାସ୍ତ ସମୟରେ ଏହି ଦଣ୍ଡାଦି ଫଳକୁ ଯୋଗ କରିବ । ମାତ୍ର ପୂର୍ବାସ୍ତ ଓ ପଶ୍ଚିମୋଦୟ ସମୟରେ ବିଯୋଗ କରିବାକୁ ହେବ । ସ୍ଫୁଟ ଦୃକ୍‌କର୍ମ ଫଳ ବିଯୋଗ ହୋଇଥିଲେ ପଶ୍ଚିମାସ୍ତ ଓ ପୂର୍ବୋଦୟ ସମୟରେ ତାହାକୁ ବିଯୋଗ କରିବାକୁ ହେବ । ପୂର୍ବାସ୍ତ ଓ ପଶ୍ଚିମୋଦୟ ସମୟରେ ଯୋଗ କରିବାକୁ ହେବ । ଏପରି ଭାବରେ ଗ୍ରହର ଉଦୟାସ୍ତ ସମୟ ଅନୁମାନରେ ସ୍ଫୁଟ ହୋଇଯିବ । ଏହାପରି ଅତି ସ୍ଫୁଟ ସମୟ ଚନ୍ଦ୍ରାର୍କ ଓ ଚନ୍ଦ୍ରସ୍ଫୁଟ ହେବା ବେଳେ ଗ୍ରହର ଗତି ବଶତଃ ଜାଣି ହୋଇଥାଏ ।

**ସ୍ଫୁଟଚନ୍ଦ୍ରୋର୍କୟୋର୍ଯ୍ୟହ ସମୟେ ସମତା ତଦା**
**ସ୍ଫୁଟଂ ଚନ୍ଦ୍ରଂ କୁଜାଦୀନାଂ ଚନ୍ଦ୍ରାର୍ଦ୍ଧଂଚ ସିତଜ୍ଞୟୋଃ । ୭୬ ।**

ସ୍ଫୁଟ ସୂର୍ଯ୍ୟ ଓ ଗ୍ରହର ଯେତେବେଳେ ରାଶ୍ୟାଦିରେ ସମାନତା ଦେଖାଯିବ ସେତେବେଳେ ମଙ୍ଗଳ ଆଦି ୫ ଗ୍ରହର ଚନ୍ଦ୍ରକାଳ ଓ ବୁଧ ଶୁକ୍ରର ଚନ୍ଦ୍ରାର୍ଦ୍ଧ ସମୟ ହେବ ।

**ଯାମ୍ୟାନାର୍କସ୍ୟ ଯଦ୍ରାଶୌ ଯେ ଯେ ସ୍ୱାସ୍ତୋଦୟାଂଶକାଃ**
**କଥିତାସ୍ତେ ତଦାତ୍ମାର୍କ ଗ୍ରହଗତ୍ୟନ୍ତରୋଦ୍ଧୃତାଃ ।୭୭।**

**ଚନ୍ଦ୍ରଜ୍ଞସିତଗତ୍ୟର୍କଗତିଯୋଗବିଭାଜିତାଃ**
**ଦିନାଦିଭିଃ ଫଳୈଃ ପୂର୍ବମସ୍ତଂ ପଶ୍ଚାଦୁଦୟଃ ।୭୮।**

ଚନ୍ଦ୍ର ଚନ୍ଦ୍ରାର୍ଦ୍ଧ କାଳଃ ସ୍ୟାତ୍ ପୁନସ୍ତାତ୍କାଳକାର୍କତଃ
ସାୟନାଦୁଦୟାସ୍ତାଂଶଲପ୍ତାଃ ପ୍ରାଗ୍ ବଦ୍ଧୃତାଃ ଫଳୈଃ ।୭୯।

ଦିନାଦ୍ୟୈରସ୍ତମୁଦୟଂ କୃତ୍ୱା ତତ୍କାଳଜାଂ ଗତିମ୍
ଚନ୍ଦ୍ର ଚନ୍ଦ୍ରାର୍ଦ୍ଧଜାଂ ତ୍ୟକ୍ତ୍ୱା ତଦ୍ୟୋଗାର୍ଦ୍ଧଂ ଗ୍ରହାର୍କୟୋଃ ।୮୦।

କର୍ମଯୋଗ୍ୟା ସ୍ଫୁଟଗତିଃ ସ୍ୟାତ୍ତତଃ ପୂର୍ବବଦ୍ ଦିନୈଃ
ପ୍ରାକ୍ପଶ୍ଚାଦାଗତୌ କାଳୌ ସ୍ୟାତାଂ ବାସ୍ତୋଦୟସ୍ଫୁଟୌ ।୮୧।

କ୍ରାନ୍ତ୍ୟୁକ୍ତାଃ ଷଟ୍ଚତୁଷ୍ଟିଭିର୍ଗୁର୍ବାଦ୍ୟସ୍ତୋଦୟାଂଶକାଃ
ଏକୋନାଃ ସପ୍ତ ଶୁକ୍ରାଂଶ୍ଚ ବକ୍ରାବକ୍ରକବେର୍ମତାଃ ।୮୨।

ଚନ୍ଦ୍ର ଚନ୍ଦ୍ରାର୍ଦ୍ଧ ସମୟରୁ ଦୃକ୍କର୍ମ ସଂସ୍କାର ନ କରି ମଧ୍ୟ କିପରି ଅସ୍ତୋଦୟକାଳ ଜଣାଯାଇ ପାରେ ତାହା ଦୃକ୍ସିଦ୍ଧ କାଳାଂଶ ପରିମାଣ ଏଠାରେ କୁହାଯାଉଛି—

'ଶୂନ୍ୟେଭେ ଦଶକାବ୍ୟସ୍ୟ' ଇତ୍ୟାଦି ଶ୍ଳୋକରେ ସାୟନ ରବିର ଯେଉଁ ଯେଉଁ ରାଶିରେ ଯେତେ ଯେତେ ଉଦୟ ଓ ଅସ୍ତାଂଶ କୁହାଯାଇଅଛି, ଗ୍ରହମାନଙ୍କର ଚନ୍ଦ୍ରକାଳରେ ଏବଂ ବୁଧ, ଶୁକ୍ରର ଚନ୍ଦ୍ରାର୍ଦ୍ଧ କାଳରେ ତାକୁ ରବି ଓ ଗ୍ରହର ଗତ୍ୟନ୍ତରରେ ହରିଲେ, (ବୁଧ ଓ ଶୁକ୍ରଙ୍କ ପକ୍ଷେ) ରବି ଓ ସେମାନଙ୍କର ଗତି ଯୋଗରେ ହରିଲେ ଫଳ ଦିନାଦି ହେବ । ଏତିକି ଦିନାଦିରେ ଚନ୍ଦ୍ର ଓ ଚନ୍ଦ୍ରାର୍ଦ୍ଧ ସମୟର ପୂର୍ବେ ଗ୍ରହମାନଙ୍କର ଅଦର୍ଶନ ଓ ପରେ ଦର୍ଶନ ମଧ୍ୟ ହେବ । ଏପରି ଭାବରେ ଯେଉଁ ଉଦୟ ଓ ଅସ୍ତ ସମୟ ଆସିବ, ତାକୁ ପୁଣି ରବି ଓ ଗ୍ରହର ଗତ୍ୟନ୍ତରରେ ଏବଂ ବୁଧ, ଶୁକ୍ର ପକ୍ଷେ ରବି ଓ ବୁଧ ଶୁକ୍ରର ଗତି ଯୋଗରେ ଭାଗ ଦେଲେ ଯେଉଁ ଦିନାଦି ଫଳ ହେବ ତାହାଦ୍ୱାରା ଚନ୍ଦ୍ର ଚନ୍ଦ୍ରାର୍ଦ୍ଧ ପୂର୍ବରୁ ଅସ୍ତ ଓ ପରେ ଉଦୟ ଜାଣି ଉଦୟାସ୍ତକାଳର ତଥା ଚନ୍ଦ୍ର ଚନ୍ଦ୍ରାର୍ଦ୍ଧ କାଳରେ ଗ୍ରହ ଓ ରବିର ଗତି ଆଣିବ । ଏହି ଦୁଇଟିର ଯୋଗାର୍ଦ୍ଧ ହିଁ ଉଦୟ ଓ ଅସ୍ତ ସମୟ ସାଧନ ନିମନ୍ତେ ଗ୍ରହ ଓ ରବିର ସ୍ଫୁଟଗତି ବୋଲି ଗ୍ରହଣ କରିବାକୁ ହେବ ଏବଂ ଏହାଦ୍ୱାରାହିଁ ଆଗକୁ କାର୍ଯ୍ୟ କରାଯାଉ ଥିବାରୁ ଏହା କର୍ମ ଯୋଗ୍ୟ ରବି ଓ ଗ୍ରହ ଗତି ହେବ । ଏହି ସ୍ଫୁଟଗତିରେ ପୂର୍ବପରି ତାତ୍କାଳିକ ସାୟନ ରବିର ରାଶି ବଶତଃ ଯେତେ ଉଦୟ ଓ ଅସ୍ତାଂଶ ଲବ୍ଧ ହେବ, ତାକୁ ଗ୍ରହ ଓ ରବିର ସ୍ଫୁଟ ଗତ୍ୟନ୍ତରରେ ବା ଗତି ଯୋଗରେ ହରିଲେ ଯେତେ ଦିନାଦି ଫଳ ଆସିବ ଚନ୍ଦ୍ରାର୍ଦ୍ଧ ସମୟରୁ ସେତିକି ଦିନରେ ଗ୍ରହର ଅସ୍ତୋଦୟ ହେବ । ଏଥିର ପୁଣି ବାସ୍ତବ ଅସ୍ତୋଦୟ ସମୟ ଜଣାଯାଇ ପାରିବ । ଉଦୟ ଓ ଅସ୍ତର ଏପରି ଜ୍ଞାନ ହେବା ପରେ ମଧ୍ୟ ଅତିଦୃଷ୍ଟି ସମ୍ପନ୍ନ (ଗଣିତଜ୍ଞ) ଲୋକେ 'ଶୁକ୍ରେଜ୍ୟ ସୌମ୍ୟାର୍କି' ଇତ୍ୟାଦି ଖଣ୍ଡରେ ଗୁରୁ ଆଦି ଗ୍ରହର ପୂର୍ବକଥିତ ଉଦୟ ଓ ଅସ୍ତାଂଶର ଏକ କମ ଉଦୟ ଓ ଅସ୍ତାଂଶର ସଂଖ୍ୟା [illegible]

ଜଣାଯାଉଛି ଯେ ଗୁରୁର ୧୦, ବୁଧର ୧୨, ଶନିର ୧୪, ମଙ୍ଗଳର ୧୬, ବକ୍ର ଶୁକ୍ରର ୭ ଓ ମାର୍ଗୀ ଶୁକ୍ରର ୯ ଉଦୟ ଓ ଅସ୍ତାଂଶ ହେବ ।

ନାସ୍ତେ ବାସ୍ତବମସ୍ତମସ୍ତି ହି ସମସ୍ତାନାମଧସ୍ତାତ୍ ପୁରଃ
ପଶ୍ଚାଦୂର୍ଦ୍ଧ୍ୱନଭସ୍ତଳସ୍ଥିତରବଶ୍ରାନ୍ତଂ ଯଦେଷାଂ ଭ୍ରମାତ୍
ଖଦ୍ୟୋତଦ୍ୟୁତଭଞ୍ଜିଭାନ୍ୟପଟୁଭିଃ ପ୍ରଦ୍ୟୋତନଜ୍ୟୋତଷା
ଲକ୍ଷ୍ୟନ୍ତେଽକ୍ଷିଭି ଋକ୍ଷବଦ୍‌ଗୁରୁସିତା ଲକ୍ଷ୍ୟାଦବାଽପ୍ୟୌଷ୍ଣ୍ୟତଃ ॥୮୩॥

କୌଣସି ଗ୍ରହର ବାସ୍ତବ ଅସ୍ତ ନାହିଁ (ଲୋପ ନାହିଁ) ଗ୍ରହମାନେ ଭ୍ରମଣ ବଶତଃ ବରାବର ପୂର୍ବ, ପଶ୍ଚିମ ଓ ଅଧ, ଉର୍ଦ୍ଧ୍ୱ ରହିବାକୁ ବାଧ ହୁଅନ୍ତି । ସୂର୍ଯ୍ୟକିରଣ ପ୍ରଭାବରେ ଆଖି ଝଲସି ଯିବାରେ ଏହି ତାରା ଗ୍ରହଗୁଡ଼ିକ ଲୋକଙ୍କୁ ଜୁଳୁଜୁଳିଆ ପୋକ ପରି ଦେଖା ଯାଆନ୍ତି । ବିମ୍ବ ବଡ଼ ହୋଇଥିବା ଯୋଗେ ଚନ୍ଦ୍ର, ବୃହସ୍ପତି ଓ ଶୁକ୍ର ଦିନରେ ମଧ ଦେଖାଯାଇ ଥାଆନ୍ତି ।

ଭାନୋରୁଦ୍‌ଗମତଃ ପୁରୋଽସ୍ତମୟତଃ ପଶ୍ଚାତ୍ ପ୍ରକାଶୋଽମ୍ବରେ
ଦୃଶ୍ୟଃ ସ୍ୟାତ୍ ସମୟାଂଶକୈର୍ଦ୍ଦଳଯୁଟେବିର୍ଯ୍ୟକ୍ଷେ ହି ପକ୍ଷାକ୍ଷିଭିଃ
ଅନ୍ୟତ୍ର ତ୍ରିଗୁଣାହତୈଃ ସ୍ଫୁରତ ତୈର୍ଲମ୍ବଜ୍ୟୟା ଭାଜିତୈଃ
ପୂର୍ଣ୍ଣେନ୍ଦୋର୍ବସୁଭିଃ କଳାକ୍ଷୟବଶାଦଲ୍ପୈର୍ଭୃଗୋରଲ୍ପନା ॥୮୪॥

ଉଦୟ ହେବା ପୂର୍ବରୁ ଏବଂ ଅସ୍ତ ହେବା ପରେ ନିରକ୍ଷ ଦେଶରେ (ବିଷୁବରେଖା ସ୍ଥିତ ଦେଶମାନଙ୍କରେ) ୨୨।୩୦ କାଳାଂଶରେ ଆକାଶରେ ନିଶ୍ଚିତ ଭାବରେ ସୂର୍ଯ୍ୟଙ୍କର ରଶ୍ମି ପ୍ରକାଶ ହୋଇଥାଏ । ସାକ୍ଷ ଦେଶମାନଙ୍କରେ ଏହି ୨୨।୩୦କୁ ତ୍ରିଜ୍ୟାରେ ଗୁଣି ନିଜ-ନିଜର ଲମ୍ବଜ୍ୟାରେ ଭାଗ ଦେଲେ ଯେଉଁ କାଳାଂଶ ଆସିବ ସେଥିରେ ସୂର୍ଯ୍ୟଙ୍କ କିରଣ ପ୍ରକାଶ ହେବ ।

ନିରକ୍ଷ ଦେଶରେ ପୂର୍ଣ୍ଣ ଚନ୍ଦ୍ରବିମ୍ବ ଉଦୟ ହେବା ପୂର୍ବରୁ ଏବଂ ଅସ୍ତ ହେବା ପରେ ୮ କାଳାଂଶରେ ତାର କିରଣ ପ୍ରକାଶ ହୋଇଥାଏ । ସ୍ୱ ସ୍ୱ ଅକ୍ଷ ଦେଶୀୟ କାଳାଂଶ ଆଣିବା ନିମନ୍ତେ ପୁଣି ଏହି କାଳାଂଶକୁ ତ୍ରିଜ୍ୟାରେ ଗୁଣି ସ୍ୱ ସ୍ୱ ଲମ୍ବଜ୍ୟାରେ ହରିବାକୁ ହେବ ।

ବନ୍ଦାମହେ ହରିହୟତ୍ୱଦ୍ରୁହିଣାହିରାଜ-
ହେରମ୍ବଶମ୍ବରହରାରିହିମାଂଶୁହଂସୈଃ ।
ଅର୍ହାସ୍ପଦୀକୃତପଦାମ୍ବୁରୁହଂ ସହସ୍ର-
ବାରାନ୍ମହେନ୍ଦ୍ରମଣିହାର ମହୋ ମହୀୟଃ ॥୮୫॥

ଅତ୍ର ପୂଜ୍ୟ ଜଗନ୍ନାଥଙ୍କର (ତେଜ) କାନ୍ତିକୁ ହଜାରେ ଥର ପ୍ରଣାମ କରୁଅଛୁ । ସେ ଇନ୍ଦ୍ରମଣି ପରି ଦେଖା ଯାଉଛନ୍ତି । ତାଙ୍କର ପାଦପଦ୍ମକୁ ଇନ୍ଦ୍ର, ବ୍ରହ୍ମା, ବାସୁକ, ଗଣେଶ, ଶିବ ଚନ୍ଦ୍ର ଓ ସୂର୍ଯ୍ୟ ପୂଜା କରୁଅଛନ୍ତି ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳପ୍ରସୂତ
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ
ସିଦ୍ଧାନ୍ତଦର୍ପଣ ଉପାହୃତ ବାଳବୋଧେ
ସାସ୍ତୋଦୟୋ ବ୍ୟରଚ ବଶ୍ୱମିତଃ ପ୍ରକାଶଃ

ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ
ତ୍ରିପ୍ରଶ୍ନାଧିକାରେ ଗ୍ରହର୍କ୍ଷୋଦୟାସ୍ତମୟବର୍ଣ୍ଣନୋ ନାମ
ତ୍ରୟୋଦଶଃ ପ୍ରକାଶଃ

ଅସ୍ତୋଦୟ ବର୍ଣ୍ଣର ପୂର୍ଣ୍ଣ ୧୩ଶ ପ୍ରକାଶ ରଚିତ ହେଲା ।

## ଚତୁର୍ଦ୍ଦଶଃ ପ୍ରକାଶଃ

### ଚନ୍ଦ୍ରଶୃଙ୍ଗୋନ୍ନତ ବର୍ଣ୍ଣନମ୍

---

ଶୃଙ୍ଗୋନ୍ନତିଂ ବିଧୋର୍ବକ୍ଷ୍ୟେ ସନତ୍ୟାସ୍ତମୟୋଦୟାମ୍ ।
ଦୃକ୍‌ସିଦ୍ଧାଂ ବାସନାବଦ୍ଭିଃ ସୁବୋଧାଂ ଚ୍ଛେଦକାନ୍ୱିତାମ୍ । ୧ ।

ଚନ୍ଦ୍ରର ଶୃଙ୍ଗୋନ୍ନତି କଥା ବର୍ତ୍ତମାନ କହିବି । ଏଥିରେ ଚନ୍ଦ୍ରର ଦୈନିକ ଉଦୟ ଓ ଅସ୍ତ କଥା ରହିବ । ଏହା ପୁଣି ଦୃକ୍‌ସିଦ୍ଧ ହେବ । ଏହାର ଗୋଟିଏ ପରିଲେଖ ମଧ୍ୟ ଦିଆଯିବ । ଏ ସବୁ କାରଣରୁ କାରଣ-ଜିଜ୍ଞାସୁମାନଙ୍କ ପକ୍ଷେ ଏହା ଅତି ବୋଧ ଦାୟକ ହେବ ।

ଉଦୟାସ୍ତମୟୌ ନତ୍ୟାବାନେୟୌ ପ୍ରଥମଂ ବିଧୋଃ ।
ଦୃକ୍‌କର୍ମ ଦ୍ୱୟ-ସଂସ୍କାର-ସ୍ପଷ୍ଟ-ସୂକ୍ଷ୍ମେନ୍ଦୁଭସ୍ୱତୋଃ । ୨ ।

ଅୟନାଂଶୈଃ ସଂସ୍କୃତୟୋଃ ସୂର୍ଯ୍ୟାସ୍ତସମୟୋତ୍ଥୟୋଃ ।
ଷଷଡ୍‌ଭୟୋଃ କାଳଲବାଃ ସାଧ୍ୟା ଲଗ୍ନାନ୍ତରାସୁଭିଃ । ୩ ।

ତୟୋରୂନସ୍ୟ ଭୋଗ୍ୟାସୂନ୍ ଭୁକ୍ତାସୂନଧିକସ୍ୟ ଚ ।
ତଦନ୍ତରେଽଥ ଲଗ୍ନାସୂନ୍ ସଂଯୋଜ୍ୟାଭ୍ରରସୋଦ୍ଧୃତେଃ । ୪ ।

ସ୍ୟୁଃ ସ୍ଫୁଟାନ୍ତର-କାଳାଂଶାରସାପ୍ତା ଘଟିକାଦୟଃ
ତନ୍ନାଡ଼ିକା ହତେ ଭୁକ୍ତୀରବୀନ୍ଦ୍ୱୋଃ ଷଷ୍ଟିଭାଜିତେ । ୫ ।

ତତ୍‌ଫଳାନ୍ୱିତୟୋର୍ଭୂୟଃ କର୍ତ୍ତବ୍ୟା ବିକଳାସବଃ ।
ଅସକୃତ୍ କର୍ମଭିସ୍ତେ ତୁ ସ୍ଥିରାଃ ସ୍ୟୁ ରବିଚନ୍ଦ୍ରୟୋଃ । ୬ ।

ଅତ୍ର ଚନ୍ଦ୍ରସ୍ୟ ଦୃକ୍‌କର୍ମଦ୍ୱୟଂ କାର୍ଯ୍ୟଂ ପୁନଃ ପୁନଃ ।
ଯତଃ ସ୍ଫୁଟେନ୍ଦୋଃ ପାତସ୍ୟ ଭେଦାଦ୍‌ବିକ୍ଷେପଭିନ୍ନତା । ୭ ।

ତଦନ୍ତରେଽଥ ପ୍ରାଣେଷ୍ଟୁ ସ୍ଥିରେଷ୍ୱିତ୍ଥଂ ବିଧୋଃ ପୁନଃ ।
ନତଂ ବଳିଭଲଗ୍ନୋତ୍ଥାଂ ସ୍ଫୁଟେଷ୍ଟଂ ଦୃଷ୍ଟିକର୍ମଣି । ୮ ।

**କୁର୍ଯ୍ୟାତ୍ ସ୍ପଷ୍ଟଗତୀନ୍ଦ୍ରାଂଶଘ୍ନିଜ୍ୟାଢ୍ୟୋ ଲମ୍ବଯୋଦ୍ଧୃତଃ ।**
**ପ୍ରାଣାତ୍ମକସ୍ତଦୂନାଃ ସ୍ୟୁର୍ଦ୍ଦୃକ୍ସିଦ୍ଧାସ୍ତେଽନ୍ତରାସବଃ । ୯ ।**

**ତୈଃ ପ୍ରାଣୈରସ୍ତମେତୀନ୍ଦୁଃ ଶୁକ୍ଳେଽର୍କାସ୍ତମୟାତ୍ପରମ୍ ।**
**ଅହର୍ଗଣସାଧନତ୍ୱଂ ହ ଦ୍ୱୟୋସ୍ତ'ତ୍କାଳକୀକୃତୌ । ୧୦ ।**

**ତତ୍କୃତୌ କେବଲସ୍ୟେନ୍ଦୋଃ ପ୍ରାଣାନାମାର୍କ୍ଷତା ମତା ।**
**ସୂର୍ଯ୍ୟାସ୍ତକାଳକୌ ତୌ ଚେଦ୍ଗ୍ରାହ୍ୟୌ ତେ ଚନ୍ଦ୍ରସାବନାଃ ।୧୧।**

ସୂର୍ଯ୍ୟାସ୍ତ ପରେ କେତେବେଳେ ଚନ୍ଦ୍ରାସ୍ତ ହେବ ତାହା ବୁଝାଯାଉ ଅଛି —

ପ୍ରତ୍ୟହ ଚନ୍ଦ୍ରର ଉଦୟ ଓ ଅସ୍ତକାଳ ଆଣିବା ଉଚିତ । (ଗ୍ରହ ଉଦୟ ଓ ଅସ୍ତାଧିକାର ଖଣ୍ଡରେ) । ସୂର୍ଯ୍ୟାସ୍ତ ସମୟରେ ସୂକ୍ଷ୍ମ ଚନ୍ଦ୍ର ଓ ସ୍ଫୁଟରବି ସାଧନ କରି ସେ ଦୁହିଁଙ୍କୁ ସାୟନ କରିବ । ପୁଣି ସେ ଦୁହିଁଙ୍କୁ ଦୁଇ ଦୃକ୍‌କର୍ମ ଦ୍ୱାରା ସଂସ୍କୃତ କରିବ । ଏ ଉଭୟଙ୍କୁ ପୁଣି ୬ ରାଶି ଯୁକ୍ତ କରିବ । ଏ ସବୁ କରି ସାରିବା ପରେ ଉଭୟଙ୍କ ଲଗ୍ନ ଅନ୍ତର ଅସୁ ଦ୍ୱାରା କାଳାଂଶ ସାଧନ କରିବ । ବର୍ତ୍ତମାନ ରାଶ୍ୟାଦିରେ ନ୍ୟୂନର ଭୋଗ୍ୟ ଅସୁ ଓ ଅଧିକର ଭୁକ୍ତ ଅସୁ ଏବଂ ମଧ୍ୟବର୍ତ୍ତୀ ରାଶିଗୁଡ଼ିକର ଉଦୟ ଅସୁକୁ ଏକତ୍ର ଯୋଗ କଲେ ଯାହା ହେବ ତାକୁ ୬୦ରେ ଭାଗ ଦେଲେ ଫଳ ରବି ଓ ଚନ୍ଦ୍ରର ସ୍ଫୁଟ ଅନ୍ତର କାଳାଂଶ ହେବ । ରବି ଓ ଚନ୍ଦ୍ରର ଗତିକୁ ଏହି ଘଟିକାଦି ଫଳରେ ଗୁଣି ୬୦ରେ ଭାଗ ଦେଲେ କଳାଦି ଫଳ ଯାହା ହେବ ତାହା ପୁଣି ରବି ଓ ଚନ୍ଦ୍ରରେ ଯୋଗ କଲେ ପୁଣି ଯେଉଁ ରବି ଓ ଚନ୍ଦ୍ର ହେବେ ସେ ଦୁହିଁଙ୍କର ପୁଣି ଅନ୍ତର ଅସୁ ଆଣିବ । ଏହିପରି ବାରମ୍ବାର କରିବା ଫଳରେ ରବି ଓ ଚନ୍ଦ୍ରର ଅନ୍ତର ଅସୁ ସ୍ଥିର ହୋଇଯିବ । ଏଥିରେ ଚନ୍ଦ୍ରର ଆୟନ ଓ ଆକ୍ଷ ଦୃକ୍‌କର୍ମ ଦୁଇଟି ବାରମ୍ବାର କରିବାକୁ ହେବ । ନ ହେଲେ ସ୍ଫୁଟଚନ୍ଦ୍ର ଓ ତା' ପାତରଭେଦ ହେତୁ ଶରର ଭିନ୍ନତା ବରାବର ଆସିଯିବ । ଏପରି ଭାବରେ ରବି ଓ ଚନ୍ଦ୍ରର ଅନ୍ତର ଅସୁ ସ୍ଥିର (ଅପରିବର୍ତ୍ତିତାସୁ) ହୋଇଯିବା ପରେ ଚନ୍ଦ୍ରକୁ ବର୍ଜିତ (ଛଅ ରାଶି କମ କରି) ତାର ନତି ଓ ଶର ଆଣିବାକୁ ହେବ । ତାପରେ ଆୟନ ଓ ଆକ୍ଷ ଦୃକ୍‌କର୍ମ କରିବ । ଏହାପରେ ପୁଣି କାର୍ଯ୍ୟର ସୂକ୍ଷ୍ମତା ସାଧନ ନିମନ୍ତେ ୬ ରାଶି ରବି ଓ ଚନ୍ଦ୍ରରେ ମିଶାଇ ଉଭୟର ଅନ୍ତର ଅସୁ ଆଣିବ । ଚନ୍ଦ୍ରର ସ୍ଫୁଟ ଗତିର ୧/୧୨ କୁ ଦ୍ୱିଜ୍ୟାରେ ଗୁଣି ଲମ୍ବଜ୍ୟାରେ ଭାଗ ଦେଲେ ତାହା ଅସୁ ଆତ୍ମକ ହେବ । ଏହାହିଁ ଚନ୍ଦ୍ରର ପରମ ଲମ୍ବନାସୁ ହେବ । ପୂର୍ବରୁ ଅଣାଯାଇଥିବା ଅନ୍ତର ଅସୁରୁ ଏହି ପରମ ଲମ୍ବନାସୁ ଫେଡ଼ିଲେ ତାହା ବାସ୍ତବ ଦୃକ୍‌ସିଦ୍ଧ ଅନ୍ତରାସୁ ହେବ । ସୂର୍ଯ୍ୟାସ୍ତ ପରେ ଏତିକି ସମୟରେ ଚନ୍ଦ୍ର ଅସ୍ତ ହୁଏ ।

ରବି ଓ ଚନ୍ଦ୍ର ତାତ୍କାଳିକ କରିବାବେଳେ ଅସୁକୁ ସାବନ ଓ କେବଳ ଚନ୍ଦ୍ରକୁ ତାତ୍କାଳିକ କଲାବେଳେ ଅସୁକୁ ନାକ୍ଷତ୍ର ମନେକରିବାକୁ ହେବ—ଏହାହିଁ ମୋର ମତ । ମାତ୍ର ରବି ଓ ଚନ୍ଦ୍ରକୁ ସୂର୍ଯ୍ୟାସ୍ତ କାଳରେ ଆଣିବାକୁ ହେଲେ ଅସୁକୁ ଚନ୍ଦ୍ର-ସାବନ ବୋଲି ମନେ କରିବା ଉଚିତ ।

ଭଗଣାର୍ଦ୍ଧଂରବେର୍ଦ୍ଦତ୍ତ୍ୱା କାର୍ଯ୍ୟାସ୍ତଦ୍ଵବଶ୍ଚସବଃ ।
ତୈଃ ପ୍ରାଣୈଃ କୃଷ୍ଣପକ୍ଷେ ତୁ ଶୀତାଂଶୁରୁଦୟଂ ବ୍ରଜେତ୍ ।୯୨।

ଅଥାପ୍ୟର୍କାସ୍ତ କାଲୋଦ୍ଭୌ ରବୀନ୍ଦୁ-ଦୃକ୍ କ୍ରିୟେ ବଧୋଃ
ଉଦୟେ ଲମ୍ବନାସୂନାଂ ଧନତଂସ୍ଥିରତୋକ୍ତବତ୍ ।୯୩।

କୃଷ୍ଣ ପକ୍ଷରେ ସୂର୍ଯ୍ୟାସ୍ତକାଳିକ ରବି ସାଧନ କରି ସେଥିରେ ୬ ରାଶି ମିଶାଇବ । ଏହି ରବି ଓ ଚନ୍ଦ୍ରର ଅନ୍ତରାସୁ ଆଣିବ । ସୂର୍ଯ୍ୟାସ୍ତ ପରେ ଏତିକ ଅସୁ ଆଦି କାଳରେ ଚନ୍ଦ୍ର ଉଦୟ ହେବ । ଏଠାରେ ମଧ୍ୟ ସୂର୍ଯ୍ୟ ଅସ୍ତ ସମୟର ରବି ଓ ଚନ୍ଦ୍ରରେ ଉଦୟ ଦୃକ୍‌କର୍ମ ସଂସ୍କାର କରିବାକୁ ହେବ । ଉଦୟ ବେଳେ ଲମ୍ବନାସୁ ଯୋଗ କରିବାକୁ ହେବ ଏବଂ ବାରମ୍ବାର ଏହି କାର୍ଯ୍ୟ କରିଲେ ସମୟ ଅପରିବର୍ତ୍ତମାନ ହେବା ଅବସ୍ଥାକୁ ଆସିବ ।

ଉଦୟେଽସ୍ତମୟେ ବାପି ସ୍ୱଦନେ ଯଦି କୁତ୍ର ବା ।
ଯଦା ଦୃକ୍‌ଚନ୍ଦ୍ରମାଃ ସାଧ୍ୟସ୍ତଦାୟଂ କ୍ରମ ଉଚ୍ୟତେ ।୯୪।

ଷଷ୍ଠପ୍ରକାଶବର୍ତ୍ମନାକୃତ୍ୱା ସୂକ୍ଷ୍ମସ୍ଫୁଟଂ ବିଧୁମ୍-
ଦେଷ୍ଟକାଳିକମାନୀୟ ପୂର୍ବାପରକପାଳୟୋଃ ।୯୫।

ଲଗ୍ନଂ ତାତ୍କାଳିକଂକୃତ୍ୱା ବିତ୍ରିଭଂ ଦୃଗ୍ଗତଂ ତତଃ
ନତଜ୍ୟାଂ ପ୍ରାକ୍‌ପରେଦ୍‌ଭୂତାଂ ସା ଦୃଗ୍ଗତଗୁଣାହୃତା ।୯୬।

ତ୍ରିଜ୍ୟାପ୍ତାଦ୍ୟେନ୍ଦୁଭୁକ୍ତିଘ୍ନୀ ମନୁଘ୍ନତ୍ରିଜ୍ୟୟୋଦ୍ଧୃତା
ଫଳଲପ୍ତା ଯୁତୋନଃ ସ୍ୟାଦ୍‌ବିତ୍ରିଭୋଦୟତୋ ବିଧୁଃ ।୯୭।

ପ୍ରାକପ୍ରତ୍ୟକ୍‌ସ୍ଥସ୍ତତଃ ପ୍ରାକ୍‌ବ୍‌ଦ୍ଦତସ୍ତଦ୍ ସଂସ୍କୃତାଦ୍ ଶରାଦ୍
ଦୃକ୍‌କର୍ମାୟନମାକ୍ଷଂ ଚ ସ୍ୟାତ୍ତତୋ ଦୃଶ୍ୟି ଧ୍ରୁର୍ଭବେତ୍ ।୯୮।

ସୂର୍ଯ୍ୟ ଅସ୍ତ, ଉଦୟ ବା ଯେ କୌଣସି ଦିନର ଯେ କୌଣସି ସମୟରେ ଭୂପୃଷ୍ଠାଭି-ପ୍ରାୟରେ ଦୃଶ୍ୟ ଚନ୍ଦ୍ର ଆଣିବାର କ୍ରମ ବର୍ତ୍ତମାନ କୁହାଯାଉ ଅଛି—

ପ୍ରଥମେ ଷଷ୍ଠ ପ୍ରକାଶରେ କୁହାଯାଇ ଥିବା ରୀତିରେ ସୂକ୍ଷ୍ମ ସ୍ଫୁଟଚନ୍ଦ୍ର ଆଣିବାକୁ ହେବ । ଏହାକୁ ପୁଣି ପୂର୍ବ ବା ପଶ୍ଚିମ କପାଳରେ ଇଷ୍ଟକାଳିକ ଚନ୍ଦ୍ର କରିବ । ଇଷ୍ଟକାଳରେ ଲଗ୍ନ ଓ ବିତ୍ରିଭ ଲଗ୍ନ ତଥା ବିତ୍ରିଭଶଙ୍କୁ ଆଣିବ । ପୂର୍ବ ବା ପଶ୍ଚିମ ଯେଉଁ କପାଳରେ ଚନ୍ଦ୍ର ଥିବ ସେହି କପାଳରେ ତାହାର ଦୃଗ୍‌ଜ୍ୟା ଆଣି ତାକୁ ବିତ୍ରିଭ ଶଙ୍କୁରେ ଗୁଣି ତ୍ରିଜ୍ୟାରେ ହରିବ । ଲବ୍ଧିକୁ ପ୍ରଥମ ସ୍ଫୁଟ ଚନ୍ଦ୍ର ଗତିରେ ଗୁଣି ୧୪ ତ୍ରିଜ୍ୟାରେ ହରିଲେ ଯେତେ କାଳାଦି ଫଳ ହେବ, ତାହାକୁ ବିତ୍ରିଭ ଲଗ୍ନଠାରୁ ପୂର୍ବ କପାଳରେ ଥିବା ଚନ୍ଦ୍ରରେ ମିଶାଇବ ଏବଂ ପଶ୍ଚିମ

କପାଳରେ ଥିବା ଚନ୍ଦ୍ରରୁ ବାଦ ହେବ । ତାହାହେଲେ ଇଷ୍ଟକାଳରେ ଲମ୍ବନ ସଂସ୍କୃତ ସ୍ପୁଟ-ଚନ୍ଦ୍ର ଆସିଯିବ । ଏହାପରେ ପୂର୍ବୋକ୍ତ ପୁଣି ଚନ୍ଦ୍ରନତ ସାଧନ କରିବ । ଏହି ନତରେ ଶରକୁ ସଂସ୍କୃତ କରି ସ୍ପୁଟ କରିବା ପରେ ଆୟନ ଓ ଅକ୍ଷ ଦୃକ୍କର୍ମ କରିବ । ଏହି ଦୃକ୍କର୍ମ ଫଳରେ ଲମ୍ବନ ସଂସ୍କୃତ ଚନ୍ଦ୍ରକୁ ସଂସ୍କାର କଲେ ଚନ୍ଦ୍ର ସମପ୍ରୋତ ବୃତ୍ତୀୟ ଦର୍ଶନ ଯୋଗ୍ୟ ହେବ । ଏହାହିଁ ଭୂପୃଷ୍ଠାଭିପ୍ରାୟରେ ଦୃଶ୍ୟ ଚନ୍ଦ୍ର ।

**ଶୃଙ୍ଗୋନ୍ନତଦ୍ୱିଧା ଶୁକ୍ଲକୃଷ୍ଣଭେଦାତ୍ତୟୋଃ ସିତା ।**
**ଦୃଶ୍ୟତ୍ୱାତ୍‌ସମ୍ମତା ସର୍ବୈଃ କୈଶ୍ଚିତ୍ କୃଷ୍ଣାନୁମାନତଃ ।୧୯।**

**ଚନ୍ଦ୍ରୋଦୟଦ୍ୱୟାନ୍ତଃସ୍ଥୋଽହୋରାବଶ୍ଚାନ୍ଦ୍ରସାବନଃ**
**ସ୍ପାନ୍ତେସ୍ତଦ୍ଦିନମାନଂଚ ସାଧମିଷ୍ଟଂ ନତଂ ତତଃ ।୨୦।**

**ପୂର୍ବାର୍ଦ୍ଧେ ଶୁକ୍ଲପକ୍ଷସ୍ୟ କୃଷ୍ଣସ୍ୟାନ୍ତ୍ୟଦଳେ ବୁଧୈଃ**
**ଶୁକ୍ଲା ଶୃଙ୍ଗୋନ୍ନତଃ କୃଷ୍ଣା କୃଷ୍ଣଶୁକ୍ଲମୁଖାନ୍ତୟୋଃ ।୨୧।**

ଶୃଙ୍ଗର ଉନ୍ନତି ଶୃଙ୍ଗୋନ୍ନତି । ବେଳେ ବେଳେ ଧଳା ଶୃଙ୍ଗର ଉନ୍ନତି ହୁଏ ଏବଂ ବେଳେ ବେଳେ କଳାଶୃଙ୍ଗର ଉନ୍ନତି ମଧ୍ୟ ହୋଇଥାଏ । ଅବଶ୍ୟ ଗୋଟିଏ ହେଲେ ଅନ୍ୟଟି ହେବ ନାହିଁ । ତେବେ ଶୁକ୍ଲ ଶୃଙ୍ଗର ବୃଦ୍ଧିକୁହିଁ ପଣ୍ଡିତମାନେ ସାଧାରଣତଃ ଶୃଙ୍ଗୋନ୍ନତି କହି ଆସୁଛନ୍ତି । କୃଷ୍ଣ ଶୃଙ୍ଗର ଉନ୍ନତି ସାଧାରଣତଃ ଦେଖାଯାଉ ନ ଥିବା ଦୃଷ୍ଟିରୁ ପଣ୍ଡିତମାନେ କେବଳ ଅନୁମାନ ବଳରେ ଏହାର କଳ୍ପନା କରିଛନ୍ତି ।

ଚନ୍ଦ୍ରର ଉଦୟଠାରୁ ପୁଣି ଉଦୟ ପର୍ଯ୍ୟନ୍ତ ସମୟକୁ ଚାନ୍ଦ୍ରସାବନ ଦିନ କୁହାଯାଇ ଥାଏ । ଚନ୍ଦ୍ରର ସ୍ପୁଟକ୍ରାନ୍ତି ସାଧନ କରି ସେଥିରୁ ଚନ୍ଦ୍ରଦିନମାନ ଓ ସେଥିରୁ ଇଷ୍ଟ ନତକାଳ ଆଣିବ (ପୂର୍ବବତରେ) ।

ଶୁକ୍ଲପକ୍ଷର ପୂର୍ବାର୍ଦ୍ଧରେ (ପ୍ରତିପଦାରୁ ୭ମୀ ପର୍ଯ୍ୟନ୍ତ ଓ କୃଷ୍ଣ ପକ୍ଷର ଉତ୍ତରାର୍ଦ୍ଧରେ (୯ମୀରୁ ୧୪ଶୀ ପର୍ଯ୍ୟନ୍ତ) ଶୁକ୍ଲ ଶୃଙ୍ଗର ଉନ୍ନତି ସାଧନ କରିବାକୁ ହେବ । ଠିକ ସେହି ଯୁକ୍ତିରେ କୃଷ୍ଣ ପକ୍ଷର ପୂର୍ବାର୍ଦ୍ଧରେ ଓ ଶୁକ୍ଲ ପକ୍ଷର ଉତ୍ତରାର୍ଦ୍ଧରେ କୃଷ୍ଣ ଶୃଙ୍ଗର ଉନ୍ନତି ସାଧନ କରାଯିବା ଉଚିତ । ଶୁକ୍ଲ ହେଉ ବା କୃଷ୍ଣ ହେଉ ଯେଉଁ ଭାଗ ଅର୍ଦ୍ଧାଲ୍ପ ଥିବ ତାହାରହିଁ ଶୃଙ୍ଗୋନ୍ନତି ହେବା କଥା । ଏ ଦୃଷ୍ଟିରୁ ସବୁ ଚିନ୍ତା କରିବା ଦରକାର ।

**ବିମଣ୍ଡଳସ୍ଥିତେ ଚନ୍ଦ୍ରମଣ୍ଡଳେଽର୍କାଂଶୁସଂକ୍ରମାତ୍ ।**
**ଅପବୃତ୍ତସ୍ଥିତଭବା ଦ୍ୱିବିଧାକୃତ—ସମ୍ଭବଃ ।୨୨।**

**ଅପ୍ୟର୍କାଦ୍ ସମଦୂରସ୍ଥମିନ୍ଦୁଶୃଙ୍ଗଦ୍ୱୟଂ ସଦା**
**ଦେଶାନ୍ତରବଶାଦ୍ଭୂଙ୍ଗଂ ତାରତମ୍ୟେନ ଦୃଶ୍ୟତେ ।୨୩।**

ଚନ୍ଦ୍ରମଣ୍ଡଳ ବିମଣ୍ଡଳ ବୃତ୍ତରେ ଥାଏ । ଏଣେ ସୂର୍ଯ୍ୟକ୍ରାନ୍ତି ବୃତ୍ତରେ ରହନ୍ତି । ଏହି ସୂର୍ଯ୍ୟଙ୍କ କିରଣ ଚନ୍ଦ୍ର ଉପରେ ପଡ଼ି ଚନ୍ଦ୍ରର ଅନେକ ପ୍ରକାର ଆକାର ତିଆରି କରିଥାଏ ।

ଚନ୍ଦ୍ରର ଶୃଙ୍ଗ ଦୁଇଟି ରବିଠାରୁ ସମାନ ଦୂରରେ ଥିଲେ ମଧ୍ୟ ଦେଶାନ୍ତର ଯୋଗେ ତାର ନ୍ୟୂନାଧିକତା ଆସିଯାଏ ବୋଲି ଶୃଙ୍ଗ ଦୁଇଟି ବଙ୍କା ଦେଖା ଯାଇଥାନ୍ତି ।

ସୌମ୍ୟାୟନାନ୍ତଗୋ ଭାନୁର୍ଦିନାର୍ଦ୍ଧେ ମସ୍ତକୋପରି ।
ଦୃଶ୍ୟତେ ଯତ୍ର ତଦ୍ଦେଶେ ମେଷାଦସ୍ଥେ ବିବସ୍ୱତି ।୨୪।

ସମମଣ୍ଡଳବଦ୍ଧୃଶ୍ୟଂ ଦିବସାନ୍ତେଽପମଣ୍ଡଳମ୍
ତଦାବିକ୍ଷିପ୍ତଶୀତାଂଶୁପ୍ରାଗ୍ଗତଃ ସରଳେକ୍ଷ୍ୟତେ ।୨୫।

ସମତା ଶୃଙ୍ଗୟୋସ୍ତସ୍ମାଦ୍ କ୍ରାନ୍ତିବୃତ୍ତକ୍ରମାଦ୍ଭବେତ୍
ସନ୍ନିବେଶୋ ଗତଶ୍ଚୈତୌଃ କିନ୍ତୁ ଭେଦଃ ଶରୋଦ୍ଭବଃ ।୨୬।

ଯେଉଁ ଦେଶର ଦିନାର୍ଦ୍ଧରେ ସାୟନ ମିଥୁନାନ୍ତରେ ଥିବା ସୂର୍ଯ୍ୟ ଠିକ ମୁଣ୍ଡ ଉପରେ ରହେ [ଯେଉଁ ଦେଶର ଅକ୍ଷାଂଶ ପରମ କ୍ରାନ୍ତି ସହ ସମାନ] ସେହି ଦେଶକୁ ସାୟନ ମେଷାଦିରେ ଥିବା ସୂର୍ଯ୍ୟ-ଗତ-କ୍ରାନ୍ତିବୃତ୍ତ, ସୂର୍ଯ୍ୟାସ୍ତ ବେଳେ ପୂର୍ବାପର ବୃତ୍ତପରି ଦୃଷ୍ଟସ୍ଥ ଦେଖାଯିବ । ପୁଣି ସେହି ଦେଶରେ ଶରହୀନ (ଶର ଆଦୌ ନ ଥିବା ଅବସ୍ଥାରେ) ଚନ୍ଦ୍ରର ପୂର୍ବଗତି ଅତି ସରଳ ହେବ । (ବାସ୍ତବ ପୂର୍ବ ଆଡ଼କୁ ଏ ଗତି ହେବ) ଫଳରେ ଜଣାଯାଉଛି ଯେ କ୍ରାନ୍ତି ବୃତ୍ତର ସ୍ଥିତିକୁ ନେଇ ଚନ୍ଦ୍ରର ଅବସ୍ଥିତି ଶୃଙ୍ଗ ଓ ଗତି ହୋଇଥାଏ । ମାତ୍ର ଏଥିରେ ମଧ୍ୟ ଶର ଭେଦ ଜନିତ ଭିନ୍ନତା ରହିଯାଇଥାଏ ।

ଚନ୍ଦ୍ରଗ୍ରହଣବତ୍ସାଧ୍ୟମତ୍ରାପି ବଳନଦ୍ୱୟମ୍
ଆୟନଂ ସଳଜଂ ସ୍ପଷ୍ଟଂ ବୈକ୍ଷେପାଖ୍ୟମିହୋଚ୍ୟତେ ।୨୭।

ଚନ୍ଦ୍ରାର୍କାନ୍ତରଜୀବାସ୍ମିନ୍ କୋଟିର୍ବିକ୍ଷେପକୋ ଭୁଜଃ ।
ତୟୋଃକୋଟିବର୍ଗୟୋର୍ଯୋଗାଦ୍ ପଦଂ ସ୍ୟାଦ୍‌କର୍ଣ୍ଣସଂଜ୍ଞକମ୍ ।୨୮।

ବିଜ୍ୟା ଭୁଜଘ୍ନୀ କର୍ଣ୍ଣାପ୍ତା ଫଳଂଜ୍ୟାପୀ କୃତଂକଳାଃ
ଷଷ୍ଟ୍ୟାପ୍ତା ବଳନାଂଶାଃ ସ୍ୟୁର୍ବୈକ୍ଷେପାସ୍ତେଽଙ୍ଗୁଳାତ୍ମକାଃ ।୨୯।

ଚନ୍ଦ୍ର ଗ୍ରହଣ ପରି ଏହି ଚନ୍ଦ୍ର ଶୃଙ୍ଗୋନ୍ନତିରେ ଆୟନ ଓ ଆକ୍ଷ ବଳନ ମଧ୍ୟ ସାଧନ କରିବାକୁ ହେବ । ବର୍ତ୍ତମାନ ଶରଜ ବଳନ କଥା କହୁଅଛୁ—ରବି ଓ ଚନ୍ଦ୍ରର ଅନ୍ତର ବୃତ୍ତ ଜ୍ୟା କୋଟି, ଚନ୍ଦ୍ରର ଶରଜ୍ୟା ଭୁଜ ଏବଂ ଏ ଦୁହିଁଙ୍କ ବର୍ଗଯୋଗର ମୂଳକର୍ଣ୍ଣ । ଏହି

ତ୍ରିଭୁଜରେ ତ୍ରିଜ୍ୟାକୁ ଶରରେ ଗୁଣି କର୍ଣ୍ଣରେ ଭାଗ ଦେଲେ ଫଳ ଯାହା ହେବ ତାର (ଧନୁ) କଳା କରିବ । ଏହାକୁ ୬୦ରେ ହରିଲେ ଶରଜ ବଳନାଂଶ ହେବ । ଏହି ଅଂଶକୁ ଅଙ୍ଗୁଳ ରୂପରେ ଗ୍ରହଣ କରିବାକୁ ହେବ ।

ଖବୃତ୍ତମାଦୌ ପୂର୍ବୋକ୍ତମାନଂ ଦିକ୍ ଚିହ୍ନିତଂ ଲିଖେତ୍ ।
ଷଡ଼ଙ୍ଗୁଳଗୁଣେନେନ୍ଦୁ ତନ୍ମଧ୍ୟେ ଦ୍ୱାଦଶାଙ୍ଗୁଳମ୍ ।୩୦।

ଖବୃତ୍ତେ ବଳନଂ ସ୍ପଷ୍ଟଂ ପ୍ରାଚ୍ୟାଂ ପ୍ରାକ୍‌ସ୍ଥେ ସ୍ୱଦଶ୍ୟଦଃ ।
ଇନ୍ଦୌ ପ୍ରତ୍ୟକ୍ କପାଳସ୍ଥେ ପଶ୍ଚାଦ୍ଦିଗ୍‌ଭେଦତୋ ନ୍ୟସେତ୍ ।୩୧।

ତଚ୍ଚିହ୍ନତଃ ସୌମ୍ୟଯାମ୍ୟା ବୈକ୍ଷେପବଳନାଙ୍ଗୁଳମ୍ ।
ଦିଗ୍‌ବୈପରୀତ୍ୟତୋ ନ୍ୟସେତ୍ କପାଳଦ୍ୱିତୟେଽପ୍ୟଦଃ ।୩୨।

ତଦଗ୍ରସ୍ଥାଙ୍କିନଂ ବିନ୍ଦୁଂ ଜଣ୍ଟିତ୍ୟର୍କତୟା ତତଃ
ସୂତ୍ରଂ ପ୍ରସାରତଂ ଚନ୍ଦ୍ରବିମ୍ବମଧ୍ୟାନ୍ତମାନୟେତ୍ ।୩୩।

ତତ୍‌ସୂତ୍ରମିନ୍ଦୁବିମ୍ବାନ୍ତଂ ଯତ୍ର ସ୍ପୃଶତ ସୂର୍ଯ୍ୟତଃ
ଜ୍ୟୋତ୍ସ୍ନୋତ୍‌ପତ୍ତିକ୍ଷୟୌ ତତ୍ର ଭବେତାଂ ପର୍ବସନ୍ଧିଜୌ ।୩୪।

ଗ୍ରହଣ ପରିଲେଖରେ ଯେତିକି ବ୍ୟାସାର୍ଦ୍ଧ ନେଇ ଖ ବୃତ୍ତ ଲେଖା ଯାଇଅଛି, ସେତିକି ବ୍ୟାସାର୍ଦ୍ଧରେ ଏଠାରେ ମଧ୍ୟ ଗୋଟିଏ ଖ ବୃତ୍ତ ଅଙ୍କନ କରି ତାହାକୁ ଦିଗଙ୍କିତ କର । ଏହି ଖ ବୃତ୍ତ ମଧ୍ୟରେ ୬ ଆଙ୍ଗୁଳ ବ୍ୟାସାର୍ଦ୍ଧରେ ଚନ୍ଦ୍ରମଣ୍ଡଳ ଲେଖିବ । ଏହାର ବ୍ୟାସ ୧୨ଆଙ୍ଗୁଳ ହେବା କଥା ହେବ । ସ୍ଫୁଟ ବଳନକୁ ଏହି ଖ ବୃତ୍ତ ପରିଧିରେ ଚନ୍ଦ୍ର ପୂର୍ବ କପାଳରେ ଥିବା-ବେଳେ ପୂର୍ବ ବିନ୍ଦୁରୁ ଏବଂ ପଶ୍ଚିମ କପାଳରେ ଥିବାବେଳେ ପଶ୍ଚିମ ବିନ୍ଦୁରୁ ସ୍ଫୁଟ ବଳନର ଦିଗ ଅନୁସାରେ ଦକ୍ଷିଣକୁ ବା ଉତ୍ତରକୁ ଦେବ । ଏହି ସ୍ଫୁଟ ବଳନାଗ୍ର ଚିହ୍ନରୁ ଶରଜ ବଳନକୁ ସ୍ଫୁଟବଳନ ଦକ୍ଷିଣ ହୋଇଥିଲେ ଉତ୍ତରକୁ ଏବଂ ତାହା ଉତ୍ତର ହୋଇଥିଲେ ଦକ୍ଷିଣକୁ (ଦିଗ ବିପରୀତ କରି) ଉଭୟ କପାଳରେ ଦେବ । ଏ ରୀତି ଉଭୟ କପାଳ ପାଇଁ ପ୍ରଯୁଜ୍ୟ । ଶରଜ ବଳନର ଅଗ୍ରବିନ୍ଦୁକୁ ସୂର୍ଯ୍ୟ ମନେକରି ସେଠାରୁ ଚନ୍ଦ୍ରବିମ୍ବ କେନ୍ଦ୍ର ପର୍ଯ୍ୟନ୍ତ ଗୋଟିଏ ସରଳରେଖା ଟାଣିବ । ଏହି ରେଖା ଚନ୍ଦ୍ରବିମ୍ବ ପରିଧିକୁ ଯେଉଁଠାରେ କାଟିବ ସେହିଠାରେ ପର୍ବ ସନ୍ଧିରେ ସୂର୍ଯ୍ୟଯୋଗେ ଜ୍ୟୋତ୍ସ୍ନା (ଶୁକ୍ଳତା) ର ଉତ୍ପତ୍ତି ବା ଲୟ ହେବ ବୋଲି ଜାଣିବ ।

ଚନ୍ଦ୍ରାର୍କାନ୍ତରଜା ଲପ୍ତାଃ ଖଖନନ୍ଦହୃତାଃ ଫଳମ୍
ଶୁକ୍ଲାଙ୍ଗୁଳଂ ତଦନ୍ୱନ୍ତା-ଦନ୍ତର୍ଦେୟଂରବେର୍ଦିଶଃ ।୩୫।

ଶୁକ୍ଲାଗ୍ରେବନ୍ୟସେଦ୍ବିନ୍ଦୁମଥ ସୂର୍ଯ୍ୟାତ୍ ଖବୃତ୍ତକେ ।
ନବତ୍ୟଂଶାନ୍ତରେ ବିନ୍ଦୂ ପାର୍ଶ୍ୱୟୋର୍ନ୍ୟସ୍ୟ ତଦ୍ୟୁଗାତ୍ ।୩୬।

ପ୍ରାଗ୍ବତ୍ ସୂତ୍ରେ ପ୍ରସାର୍ଯ୍ୟେନ୍ଦୌ ତତ୍ସ୍ପର୍ଶ ସ୍ଥାନୟୋରୁଭୌ
ବିନ୍ଦୂ ଦତ୍ତ୍ୱା ଲଖେଦ୍ବିନ୍ଦୁତ୍ରୟାଦ୍ବୃତ୍ତ ତ୍ରୟଂ ବୁଧଃ ।୩୭।

ପଞ୍ଚାଙ୍ଗୁଳଶୃଣେନାଦ ସ୍ୟାତାଂ ମତ୍ସ୍ୟୌ ତଦନ୍ତରେ
ତତ୍ପୁଚ୍ଛମୁଖସଂସକ୍ତ ସୂତ୍ରୟୋର୍ଯୋଗ ସଂଯୁତଃ ।୩୮।

ତତୋ ବିନ୍ଦୁତ୍ରୟସ୍ପର୍ଶି ଧନଶ୍ଚନ୍ଦ୍ରାନ୍ତରେ ଲଖେତ୍ ।
ତସ୍ମାଦ୍ବିମ୍ବାନ୍ତରସ୍ଥାନଂ ଶୁକ୍ଲୀକୃତେୟଷତାଂ ବଧୂମ୍ ।୩୯।

ପ୍ରତ୍ୟକ୍ସ୍ଥେ ଶୁକ୍ଲପକ୍ଷେଽସ୍ମିନ୍ କୃଷ୍ଣେ ଚନ୍ଦ୍ରେ ପୁରଃସ୍ଥିତେ ।
ତଦର୍କାନ୍ତରଲିପ୍ତାଭ୍ୟୋ ବଳନାର୍କଦଶୋ ଦୃଶ୍ୟତେଃ ।୪୦।

ବ୍ୟସ୍ତୈର୍ଯଥୋଦତା ତଦ୍ବତ୍ପ୍ରାକ୍ପ୍ରତ୍ୟକ୍ସ୍ଥେ ସିତେଽସିତେ ।
ବଳନାମ୍ବାର୍କତଃ କାର୍ଯ୍ୟଃ ଶୁକ୍ଳସ୍ୟାବ୍ୟାପ୍ତି ନିର୍ଣ୍ଣୟଃ ।୪୧।

ଅର୍କୋନେନ୍ଦୋଃ ସିତେପକ୍ଷେ ପ୍ରତୀଚ୍ଛିତ୍ତୌ ବିଲଖ୍ୟ ତାଂମ୍।
ଛେଦକଂ ଦର୍ଶୟେଚ୍ଛୃଙ୍ଗମୁନ୍ନତଂ ସୌମ୍ୟଯାମ୍ୟଗମ୍ ।୪୨।

ପ୍ରାଗ୍ଭିତ୍ତୌ କୃଷ୍ଣପକ୍ଷାନ୍ତେଽପ୍ୟର୍ଦ୍ଧାଧିକଶୀତଗୋଃ ।
ଉନ୍ନୟେଦସିତାଂ ଶୃଙ୍ଗୋନ୍ନତଂ ତଦ୍ବଳନାର୍କତଃ ।୪୩।

ବର୍ତ୍ତମାନ ରବ ଚନ୍ଦ୍ରର ଅନ୍ତର କଳାକୁ ୯୦୦ରେ ହରିଲେ ଶୁକ୍ଳାଙ୍ଗୁଳ ହେବ । ଏହି ଶୁକ୍ଳାଙ୍ଗୁଳକୁ ଚନ୍ଦ୍ରବିମ୍ବ ପ୍ରାନ୍ତରୁ ଉକ୍ତ ରେଖାରେ ରବ ଆଡୁ ଦେବ (ଚନ୍ଦ୍ର ଭିତରକୁ ଦେବ) । ଶୁକ୍ଳ ଅଗ୍ରରେ ଚିହ୍ନ ଦେବ ।

ବଳନାଗ୍ରିତ ବୃତ୍ତରେ ସୂର୍ଯ୍ୟ ଚିହ୍ନରୁ ଦୁଇ ପାଖରେ ନବତି ଅଂଶରେ (୯୦°) ଦୁଇଟି ଦୁଇଟି ବିନ୍ଦୁ ଦେବ । ଏହି ଦୁଇ ବିନ୍ଦୁରୁ ମଧ୍ୟ ଚନ୍ଦ୍ର କେନ୍ଦ୍ର ପର୍ଯ୍ୟନ୍ତ ଦୁଇ ରେଖା ପୂର୍ବପର କରିବ । ଏହି ଦୁଇ ରେଖା ଚନ୍ଦ୍ରମଣ୍ଡଳକୁ ଯେଉଁ ଦୁଇ ସ୍ଥାନରେ କାଟିବ ସେଠାରେ ମଧ୍ୟ ଦୁଇଟି ବିନ୍ଦୁ ଦେବ । ଏହି ଦୁଇ ବିନ୍ଦୁ ଓ ଚନ୍ଦ୍ରମଣ୍ଡଳ ମଧ୍ୟଗତ ବିନ୍ଦୁ ଏପରି ତିନ ବିନ୍ଦୁରୁ

୫ ଅଙ୍ଗୁଳ ବ୍ୟାସାର୍ଦ୍ଧରେ ତିନୋଟି ବୃତ୍ତ ଲେଖିବ । ଏହି ତିନବୃତ୍ତ କଟାକଟି କ୍ଷେତ୍ରାନ୍ତରାଳରେ ଦୁଇଟି ମତ୍ସ୍ୟାକୃତି ଉତ୍ପନ୍ନ ହେବ । ଏ ଦୁଇ ମତ୍ସ୍ୟର ମୁଖ ପୁଚ୍ଛ ରେଖା କରିବ । ଏ ଦୁଇ ମୁଖ ପୁଚ୍ଛ ରେଖା ପରସ୍ପରକୁ ଯେଉଁଠାରେ କାଟିବେ, ସେହି ବିନ୍ଦୁରୁ ପୂର୍ବରେ ଦିଆଯାଇଥିବା ତିନ ବିନ୍ଦୁକୁ ସ୍ପର୍ଶ କରି ଗୋଟିଏ ବୃତ୍ତ ଅଙ୍କନ କରିବ । ଏହି ବୃତ୍ତରୁ ସୂର୍ଯ୍ୟ ଚିହ୍ନଥିବା ଦିଗରେ ବିମ୍ବାନ୍ତର ସ୍ଥାନ ଶୁକ୍ଳକରି ଚନ୍ଦ୍ରକୁ ଦେଖ ।

ଶୁକ୍ଳ ପକ୍ଷରେ ପଶ୍ଚିମ କପାଳରେ ଏବଂ କୃଷ୍ଣ ପକ୍ଷରେ ପୂର୍ବ କପାଳରେ ରବି ଓ ଚନ୍ଦ୍ରର ଅନ୍ତର କଳାଯୋଗେ ବଳନାଗ୍ରରେ ଥିବା ରବି ଚିହ୍ନ ଆଡ଼କୁ ଶୁକ୍ଳତାର ବ୍ୟାପ୍ତି, ଯେଉଁ ପ୍ରକାରେ ହେବାର କୁହାଗଲା ଠିକ୍ ସେହିପରି ଭାବରେ ଶୁକ୍ଳପକ୍ଷରେ ପୂର୍ବ କପାଳରେ ଓ କୃଷ୍ଣ ପକ୍ଷରେ ପଶ୍ଚିମ କପାଳରେ ବଳନାଗ୍ର ଗତ ରବି ଚିହ୍ନରୁ କୃଷ୍ଣତା ବଢିବା ବା ଛାଡ଼ିବା ସ୍ଥିର କରିବାକୁ ହେବ ।

ଶୁକ୍ଳପକ୍ଷରେ ଅଧାରୁ କମ୍ ଚନ୍ଦ୍ରର ପୂର୍ବପରି ନକସାଟିଏ ପଶ୍ଚିମ ଦିଗରେ ଥିବା କାନ୍ଥରେ ଲେଖି ଉତ୍ତରକୁ ବା ଦକ୍ଷିଣକୁ ଟେକ ହୋଇ ଯାଇଥିବା ଶୃଙ୍ଗ ଲୋକଙ୍କୁ ଦେଖାଇ-ବାକୁ ହେବ । କୃଷ୍ଣ ପକ୍ଷରେ ଏହି ନକ୍ସା (ପରିଲେଖ ବା ଛେଦ୍ୟକ) ପୂର୍ବ ଦିଗରେ ଥିବା କାନ୍ଥରେ ଲେଖି ଉତ୍ତର ବା ଦକ୍ଷିଣ ଶୃଙ୍ଗ ଟେକ ହୋଇଯାଇଥିବା ଦେଖାଇବାକୁ ପଡ଼ିବ ।

ଅର୍ଦ୍ଧାଧିକ ଶୁକ୍ଳ ହୋଇଥିବା ଚନ୍ଦ୍ର ବିମ୍ବର (ଉପରେ କୁହାଯାଇଥିବା) ବଳନାଗ୍ର ରବି ଚିହ୍ନରୁ କୃଷ୍ଣ ଶୃଙ୍ଗର ଉନ୍ନତି କଳ୍ପନା କରିବାକୁ ହେବ ।

ସିଦ୍ଧାନ୍ତକ୍ରମତଃ ପ୍ରୋକ୍ତଶ୍ଚନ୍ଦ୍ରେଽସୌ ସୈତ୍ୟସଂକ୍ରମଃ ।
ଅଥ ଯୁକ୍ତ୍ୟନଭୂତଭ୍ୟାଂ ପ୍ରସିଦ୍ଧୋଽତ୍ରାନୁବର୍ଣ୍ଣ୍ୟତେ ।୪୪।

ଚନ୍ଦ୍ରଯୋଜନ କର୍ଣ୍ଣଘ୍ନୀ ବ୍ୟର୍କେନ୍ଦୁଜ୍ୟାର୍କକର୍ଣ୍ଣହୃତ୍ ।
ତତ୍କାଳାତ୍ରେ୍ୟାନତଃ କାର୍ଯ୍ୟୋ ଗ୍ଳୌ ଶୁକ୍ଳାଶୁକ୍ଳପକ୍ଷୟୋଃ ।୪୫।

ତସ୍ୟ ସୂକ୍ଷ୍ମ ସ୍ଫୁଟଦୋର୍ଜ୍ୟା ବ୍ୟର୍କସୋମାତ୍ତ ମଦୋର୍ଜ୍ୟକା ।
ସା ଗୁଣାଦ୍ରଶରୈର୍ଭକ୍ତା ଲବ୍ଧଂ ଶୁକ୍ଳାଙ୍ଗୁଳାଦିକମ୍ ।୪୬।

ଅର୍ଦ୍ଧୋନେନ୍ଦୋରପୈତତ୍ସ୍ୟାଦ୍ କୃଷ୍ଣମର୍ଦ୍ଧାଧିକସ୍ୟ ଚ ।
କ୍ଷୀଣେ ଶୁକ୍ଳାଙ୍ଗୁଳଂ ଦେୟଂ ଦ୍ୱାଦଶାଙ୍ଗୁଳମଣ୍ଡଳେ ।୪୭।

ପୁଚ୍ଛେ ଷଡ଼ଙ୍ଗୁଳାଦ୍ ପ୍ରୋକ୍ତଂ କୃଷ୍ଣଂ ଶିଷ୍ଟଂ ସିତାଙ୍ଗୁଳମ୍ ।
ଯୋଜ୍ୟଂ ବମ୍ବଦଳେ ଚେତ୍‌ସ୍ୟାଦ୍ବଳନାର୍କଦଣ୍ଡଃ ସ୍ଫୁଟଃ ।୪୮।

ଆକାରଶ୍ଚନ୍ଦ୍ରବମ୍ବସ୍ୟ ପ୍ରାଗ୍ବଦ୍ ବନ୍ଦୁଦ୍ୱୟୋଦ୍ଭବାତ୍ ।
ମତ୍ସ୍ୟଦ୍ୱୟାତ୍ ସୂତ୍ରସକ୍ତାତ୍ ସିଦ୍ଧଃ ସାକ୍ଷାତ୍ ସ ଲକ୍ଷ୍ୟତେ ।୪୯।

ପ୍ରାଚୀନ ସିଦ୍ଧାନ୍ତ ଗ୍ରନ୍ଥ ଅନୁସାରୀ ଚନ୍ଦ୍ର ବମ୍ବରେ ଶୁକ୍ଳ ଆୟନର ସ୍ୱତ କୁହାଗଲା । ବର୍ତ୍ତମାନ ମୋର ଅନୁଭବ ଓ ଯୁକ୍ତି ଦ୍ୱାରା ଦୃକ୍‌ସିଦ୍ଧ ପ୍ରସିଦ୍ଧ ତଥା ଉତ୍ତମ ଶୁକ୍ଳ ସାଧନ ସ୍ୱତ କ୍ରମେ ମୁଁ ନଜେ ବର୍ଣ୍ଣନା କରୁଅଛି ।

ଚନ୍ଦ୍ରରୁ ସୂର୍ଯ୍ୟଙ୍କୁ ବାଦ ଦେଇ ଅବଶେଷର ଭୁଜଜ୍ୟାକୁ ଚନ୍ଦ୍ରର ଯୋଜନ କର୍ଣ୍ଣରେ ଗୁଣି ରବ ଯୋଜନ କର୍ଣ୍ଣରେ ହରଲେ ଯେଉଁ କଳା ଆଦ ଫଳ ହେବ ତାହାକୁ ଶୁକ୍ଳ ପକ୍ଷର ଚନ୍ଦ୍ରରେ ଯୋଗ ଓ କୃଷ୍ଣ ପକ୍ଷରେ ଚନ୍ଦ୍ରରୁ ବୟୋଗ କରବ । ଏହା ହେବ ସ୍ଫୁଟ ଚନ୍ଦ୍ର । ରବକୁ ପୁଣି ଏହ ଚନ୍ଦ୍ରରୁ ଫେଡ଼ ଅବଶେଷର ଉତ୍କ୍ରମଜ୍ୟା କର । ଏହାକୁ ୫୭୩ରେ ହରଲେ ଅର୍ଦ୍ଧାଳ୍ପ ଶୁକ୍ଳ ହୋଇଥିବା ଚନ୍ଦ୍ରର ଶୁକ୍ଳ ଅଙ୍ଗୁଳାଦ ହେବ । ଅର୍ଦ୍ଧାଧିକ ଶୁକ୍ଳ ଚନ୍ଦ୍ରବମ୍ବର ଏହ ଅଙ୍ଗୁଳାଦ୍ୟ ଫଳ କୃଷ୍ଣ ମଧ୍ୟ ହୋଇପାରେ । ଚନ୍ଦ୍ର ଅର୍ଦ୍ଧାଳ୍ପ ଶୁକ୍ଳ ହୋଇଥିବାବେଳେ ୧୨ ଆଙ୍ଗୁଳ ଚନ୍ଦ୍ରବମ୍ବରେ ଶୁକ୍ଳାଙ୍ଗୁଳ ହେବ । ଚନ୍ଦ୍ର ଅର୍ଦ୍ଧାଧିକ ଶୁକ୍ଳ ହୋଇଥିବାବେଳେ କୃଷ୍ଣ ଅଙ୍ଗୁଳାଦ ୬ ଅଙ୍ଗୁଳରୁ ବାଦ ଦେଇ ଅବଶିଷ୍ଟ ଶୁକ୍ଳ ଅଙ୍ଗୁଳକୁ ଯଦ ବମ୍ବାର୍ଦ୍ଧ ୬ ଅଙ୍ଗୁଳରେ ଯୋଡ଼ବ ତାହାହେଲେ ବଳନର ଅଗ୍ରରେ ଥିବା ରବ ଦଗରେ ପୂର୍ବପର ମତ୍ସ୍ୟ ଦ୍ୱୟର ମୁଖ ପୁଚ୍ଛଗତ ରେଖାଦ୍ୱୟ ସଂପାତ ବନ୍ଦୁରୁ ଚନ୍ଦ୍ର ବମ୍ବର ସେହ ସ୍ପଷ୍ଟ ଆକୃତ ସାକ୍ଷାତ୍ ଦେଖିବାକୁ ମିଳବ ।

ସାର୍ଦ୍ଧାଙ୍ଗୁଳାଳ୍ପ ଶୁକ୍ଳସ୍ୟ ଶୃଙ୍ଗାନ୍ତାବତ ସୌକ୍ଷ୍ମ୍ୟତଃ ।
ନ ଦୃଶ୍ୟୋ ଦର୍ଶନଂ ତଦ୍ବତ୍‌ସମ୍ଭବେତ୍ତଦୁପାନ୍ତୟୋଃ ।୫୦।

ଦେଢ଼ ଅଙ୍ଗୁଳରୁ ଅଳ୍ପ ଶୁକ୍ଳ ପରମାଣ ଦୃଶ୍ୟ ହୁଏ ନାହିଁ । କାରଣ ଶୃଙ୍ଗର ପ୍ରାନ୍ତ-ଭାଗ ଅତ ସୂକ୍ଷ୍ମ ହୋଇ ଯାଇଥାଏ । ଅବଶ୍ୟ ଶୃଙ୍ଗର ଅଗ୍ରଭାଗ ନକଟରେ ଥିବା କେତେକ ଶୁକ୍ଳ ଦେଖାଯାଇ ଥାଏ ମାତ୍ର ।

କଳା ବୃଦ୍ଧିକ୍ଷୟାବସ୍ୟ ଦୃଶ୍ୟତାଂ ପରଲେଖକେ ।
ଶୁକ୍ଳପକ୍ଷସ୍ୟ ପାଦାନ୍ତେ ସୂର୍ଯ୍ୟାସ୍ତମୟକାଳକଃ ।୫୧।

ଚନ୍ଦ୍ରେ ।ଽର୍କାଙ୍ଗୁଳକୋ ଲେଖ୍ୟ ଉତ୍ତରାଚସ୍ୟେନ ଭୂତଳେ ।
ତନ୍ମଧ୍ୟେ ଦକ୍ଷ କୋଣେଷୁ ଦେୟଂ ରେଖାଚତୁଷ୍ଟୟମ୍ । ୫୨ ।

ତନ୍ମଧ୍ୟାତ୍ ସଞ୍ଚରେଦ୍ଗୋଳୋ ବସ୍ତ୍ରମଧ୍ୟେ ଭଜେଦ୍ଯଥା ।
ଚନ୍ଦ୍ରାର୍କ ପଶ୍ଚିମତୋ ଦୂରେ କଳ୍ପନୀୟୋ ଦିବାକରଃ ।୫୩।

ବିମ୍ବାର୍ଦ୍ଧଂ ପଶ୍ଚିମଂ ଶୁକ୍ଳଂ ସାତପଂ କଳ୍ପୟେତ୍ତତଃ ।
ଭୂଷଂଜ୍ଞଂ ଗଞ୍ଜବସ୍ତ୍ରାନ୍ତେ ଉଦୟେଽଗ୍ନି ଦିଶି ଦୃଶ୍ୟତେ ।୫୪।

ଉତ୍ତରସ୍ୟା ମଦୀକ୍ଷଣୋଃ କଳ୍ପନୀୟୋର୍କମନ୍ଦିରମ୍ ।
ତର୍ଯ୍ୟକ୍ସ୍ଥିତ୍ୱାଦ୍ଭାନୁଃ ପ୍ରେକ୍ଷ୍ୟଃ ସମୋଽପି ତେଦ୍ଧି ସଦାତପଃ ।୫୫।

ଈଶାନକୋଣୈର୍ତଦକ୍ଷୋରାୟତା ଯାବ ରେଖିକା ।
ସା ଛେତ୍ରୀ ଶୁକ୍ଳକୈର୍ଦୃଶ୍ୟା ଚନ୍ଦ୍ରମଣ୍ଡଳ ବଞ୍ଚିତଃ ।୫୬।

ଦକ୍ଷିଣୋତ୍ତରରେଖାନ୍ତବ୍ୟାପିପଶ୍ଚିମଶୁକ୍ଳଦଃ ।
ଅଧଃଶ୍ଚେନ୍ଦୋ ଦକ୍ଷିଣୋ ଭାଗୋ ଦୃଶ୍ୟତାମେତ ଯତ୍ନତୋ ।୫୭।

ଚନ୍ଦ୍ରନେତ୍ରନିର୍ଗତଂ ସୂତ୍ରଂ ଯାମ୍ୟରେଖାଗ୍ର-ସଙ୍ଗତମ୍ ।
ଲଗ୍ନଂ ପଶ୍ଚିମରେଖାନ୍ତେ ନୈର୍ଋତୈଶାନ୍ୟରେଖିକାମ୍ ।୫୮।

ଯଦ୍ୱତ୍କ୍ଷଣତନ୍ତ୍ରସ୍ୟ ନୈର୍ଋତାକ୍ତଂ ସିତସ୍ଥିତଃ ।
ଐଶାନ୍ୟାନ୍ତଂ ସିତାଭ୍ରବସ୍ତ କର୍ଣ୍ଣସୂତ୍ରେଣ ଲକ୍ଷ୍ୟତେ ।୫୯।

ସାର୍ଦ୍ଧବାଣ୍ୟନ୍ତରେଽର୍କେନ୍ଦ୍ୱୋଃ ଶାସ୍ତ୍ରୋକ୍ତସ୍ତ୍ର୍ୟଙ୍ଗୁଳଃ ସିତଃ ।
ସାକ୍ଷାଦବାଗତୋ ଯସ୍ମାତ୍ ପାଦୋନଦ୍ୱ୍ୟଙ୍ଗୁଳାତ୍ମକଃ ।୬୦।

ଅତଶ୍ଚନ୍ଦ୍ରସ୍ୟ ସର୍ବସ୍ୱ ଶୌକ୍ଲ୍ୟମୁଦ୍ଗମଜୀବୟା ।
ସାଧ୍ୟଂ ବୁଧୈର୍ଯତୋ ଦୃଶ୍ୟା ଗୋଲାଂଶଃ କର୍ଣ୍ଣବର୍ତ୍ମନା ।୬୧।

ଶିଷ୍ୟ; ପରିଲେଖ ବା ନକ୍ସା (ଛେଦ୍ୟକ) ରଚନା କରି ଚନ୍ଦ୍ରକଳାର ବୃଦ୍ଧି ଓ କ୍ଷୟ ଦେଖାଇବାକୁ ହେବ । ଶୁକ୍ଳ ପକ୍ଷର ଚତୁର୍ଥୀ ତିଥିରେ ସୂର୍ଯ୍ୟାସ୍ତ କାଳରେ ଲୋକ ପ୍ରଥମେ ଉତ୍ତର ଆଡ଼କୁ ମୁହଁକରି ଭୂ ପୃଷ୍ଠରେ ୧୨ ଆଙ୍ଗୁଳ ବ୍ୟାସର ଚନ୍ଦ୍ରବିମ୍ବ ଲେଖିବ । ଏହି ଚନ୍ଦ୍ର-ବିମ୍ବ ପରିଧିରେ ଦିଗ ବିଦିଗ ଚିହ୍ନ ଦେଇ ପ୍ରତି ବିନ୍ଦୁରୁ ବ୍ୟାସ ରେଖାମାନ ଟାଣି ନେବ । ସବୁରେଖା ଚନ୍ଦ୍ରର କେନ୍ଦ୍ର ବିନ୍ଦୁରେ ନିଶ୍ଚୟ ପରସ୍ପରକୁ କାଟିବେ । ଏହି କେନ୍ଦ୍ର ବିନ୍ଦୁରେ ହିଁ ପ୍ରତ୍ୟେକ ରେଖା ସମାନ ଭାବରେ ଦ୍ୱିଖଣ୍ଡିତ ହେବେ । ଚନ୍ଦ୍ର ବିମ୍ବଠାରୁ ପଶ୍ଚିମକୁ ଦୂରରେ ସୂର୍ଯ୍ୟ ଲେଖିବ । ଏହି ସୂର୍ଯ୍ୟ ବିମ୍ବ ଯୋଗେ ଚନ୍ଦ୍ରମଣ୍ଡଳର ପଶ୍ଚିମ ବିମ୍ବାର୍ଦ୍ଧ ଶୁକ୍ଳ ହେବ ବୋଲି କଳ୍ପନା କରିବ । ଶୁକ୍ଳ ଦେଖିବା ନିମନ୍ତେ ଚନ୍ଦ୍ରବିମ୍ବ କେନ୍ଦ୍ରରୁ ୫ ହାତ ଦୂରରେ

ଆଗ୍ନେୟ ଦିଗକୁ ଭୂକେନ୍ଦ୍ର ହେବ । ଏହି ଭୂକେନ୍ଦ୍ରର ଉପରସ୍ଥ ଆକାଶକୁ ଉତ୍ତର ଦିଗ କଳ୍ପନା କରିବ । ସୂର୍ଯ୍ୟ କିରଣରେ ଚନ୍ଦ୍ର ବିମ୍ବର ଅର୍ଦ୍ଧ ସବୁବେଳେ ଆଲୋକିତ ହେଉଥିଲେ ମଧ୍ୟ ଭୂକୁ କୃଷ୍ଣ ଚନ୍ଦ୍ର ବିମ୍ବାର୍ଦ୍ଧ (କୃଷ୍ଣ ବୃତ୍ତ) ଓ ଶୁକ୍ଳ (ଶୁକ୍ଳ ବୃତ୍ତ) ଅନ୍ତରରେ କର୍ଣ୍ଣବତ୍ ହେଉଥିବାରୁ ଶୁକ୍ଳଭାଗ ଅଳ୍ପ (ଅର୍ଦ୍ଧରୁ ବହୁତ କମ୍) ଦେଖାଯାଇ ଥାଏ । ଈଶାନ ଓ ନୈଋତ ଦିଗ୍ଗାମୀ ଚନ୍ଦ୍ରମଣ୍ଡଳ ବ୍ୟାସ ଭୂ ବିନ୍ଦୁରେ ଥିବା ଲୋକଙ୍କୁ ନିଶ୍ଚୟ ଦେଖାଯିବ । ଦକ୍ଷିଣ ଓ ଉତ୍ତର ରେଖାକୁ ସ୍ପର୍ଶ କରୁଥିବା ପଶ୍ଚିମ ଭାଗର ଶୁକ୍ଳକୁ ଚନ୍ଦ୍ରକୁ ଯିବା ଦକ୍ଷିଣୋତ୍ତର ଭୂବିନ୍ଦୁକୁ କୃଷ୍ଣ ହେବା କଥା । ତେଣୁ ଭୂକେନ୍ଦ୍ରରୁ ଚନ୍ଦ୍ରମଣ୍ଡଳର ପଶ୍ଚିମ ବିନ୍ଦୁକୁ ସ୍ପର୍ଶ କରୁଥିବା ରେଖା ଈଶାନ ନୈଋତ ରେଖାରେ ନୈଋତ ଚିହ୍ନ ପର୍ଯ୍ୟନ୍ତ ଶୁକ୍ଳ ରହିବ । ଈଶାନ ଶୀର୍ଷ ଚିହ୍ନ ପର୍ଯ୍ୟନ୍ତ ଏଣେ କୃଷ୍ଣ । ଶୁକ୍ଳ ଆଦୌ ନାହିଁ । କର୍ଣ୍ଣ ସୂତ୍ରରେ ଏହା ଶୁକ୍ଳ ବୃତ୍ତ ଧରାତଳରେ ଦେଖାଯାଏ ।

ରବି ଓ ଚନ୍ଦ୍ରର ଅନ୍ତର ୪୫ ହେଲେ ୩ ଆଙ୍ଗୁଳ ଶୁକ୍ଳ ବୋଲି ପ୍ରାଚୀନ ଶାସ୍ତ୍ରରେ ଅଛି । ଏଠାରେ ଦିଆଯାଇଥିବା ଅଙ୍କଲେଖରେ କୋଣ ସୂତ୍ରରେ ପ୍ରତ୍ୟକ୍ଷରେ ୨।୧୫ ଆଙ୍ଗୁଳ ଶୁକ୍ଳହିଁ ଆସୁଅଛି । ଏଣୁ ପଣ୍ଡିତମାନେ ଉକ୍ତ ମର୍ଯ୍ୟାଦାରହିଁ ଚନ୍ଦ୍ରର ଶୁକ୍ଳ ପରିମାଣ ସାଧନ କରିବା ଉଚିତ । କାରଣ ଗୋଲ ଜଳଧର କୌଣସି ଭାଗ ଦୃକ୍ସୂତ୍ର ମାର୍ଗରେହିଁ ଦେଖାଯାଇ ଥାଏ ।

ଏବଂ ଶୁକ୍ଳକଭୟୋଃ ଶୃଙ୍ଗେ ଚନ୍ଦ୍ରାର୍କାନ୍ତକବର୍ତ୍ତିନୋଃ ।
ଯନ୍ତ୍ରେଣ ବହୁଷା ଦୃଶ୍ୟେ ଚନ୍ଦ୍ରବଦ୍ଦୂରଦର୍ଶିନା ।୭୨।

ବର୍ଷେଽସ୍ମିନ୍ ଭାରତେ ସୌମ୍ୟଂ ପ୍ରାୟଶଃ ଶୃଙ୍ଗମୁନ୍ନତମ୍ ।
କପାଳଦ୍ୱିତୟେ ଦୃଶ୍ୟଂ କଦାଚିଦ୍ଦକ୍ଷିଣଂ ବିଧୋଃ ।୭୩।

ଏବେ ବର୍ଣ୍ଣିତ ପ୍ରକାରରେ ଜ୍ୟୋତିଷୀ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଶୃଙ୍ଗପରି ରବି ସମୀପଗତ ବୁଧ ଓ ଶୁକ୍ରର ଶୃଙ୍ଗ (ଶୁକ୍ଳ) ମଧ୍ୟ ଦେଖି ପାରିବେ । ପୂର୍ବ ବା ପଶ୍ଚିମ ଯେଉଁ କପାଳରେ ଥାଉ ନା କାହିଁକି ଭାରତବର୍ଷକୁ ତାର ଉତ୍ତର ଶୃଙ୍ଗ ହିଁ ଉନ୍ନତ ହେବା ପ୍ରାୟ ଦେଖାଯାଏ । ଚନ୍ଦ୍ରର ଦକ୍ଷିଣ ଶୃଙ୍ଗ ମଧ୍ୟ କଦାଚିତ୍ ଉନ୍ନତ ହେବା ଦେଖାଯାଇଥାଏ ।

ଛାୟାକର୍ଣ୍ଣବଶାଦ୍ବୁଧୋ ରବିଶଶିକାନ୍ତ୍ୟାନ୍ତରେଣୋଦିତା ।
ଯା ଶୃଙ୍ଗୋନ୍ନତିରାବଭୌ ଜଳ ମୟ୍ୟା ଯା ତସ୍ୟାକ୍ଷ୍ୟବିନ୍ଦୁର୍ଭବେ ।
ଯଦ୍ବାନୌ ବକ୍ଷ୍ୟବସ୍ଥିତେ ନିତରୁଚେର୍ଯୌମ୍ୟାୟନାନ୍ତଃସ୍ଥିତେଃ ।
ଖାର୍କୋଽର୍କଂ ଧ୍ରୁବସୂତ୍ରଖଣ୍ଡିତମିବାବଭଂ ସ୍ୱଧା ଲକ୍ଷିତେ ।୭୪।

ବ୍ୟର୍କେନ୍ଦୂତ୍କ୍ରମଦୋର୍ଜ୍ୟକାଦମଗତଚ୍ଛୁଣ୍ଣା ଖବାଣାମ୍ବୁଧି-
ଭ୍ରାବେନ୍ଦୁ ହୃତା ଫଳଂ ଶଶଭୃତୋ ଜ୍ୟୋସ୍ନାକଳାବମ୍ବଜାଃ ।
ଅର୍ଦ୍ଧୋନସ୍ୟ ଦଳାଧିକସ୍ୟ ତୁ ଦଳଂ ତଦ୍ଧୀନମର୍ଦ୍ଧାନ୍ୱିତଂ ।
ପ୍ରାକ୍ ପଶ୍ଚାତ୍ ସିତବମ୍ବମାନମୁଦିତଂ ଲପ୍ତାତ୍ମକଂ ଦୃକ୍ସମମ୍ ।୭୪।

ପ୍ରାଚୀନ ଆଚାର୍ଯ୍ୟମାନେ ଛାୟାକର୍ଣ୍ଣ-ବଶତଃ (ଇଷ୍ଟକାଳରେ ୧୨ ଅଙ୍ଗୁଳ ଶଙ୍କୁର ଛାୟା-ଦ୍ୱାରା) ରବି ଓ ଚନ୍ଦ୍ରର ସାନ୍ତ୍ୟନ୍ତର ଯୋଗେ ଚନ୍ଦ୍ରର ଶୃଙ୍ଗୋନ୍ନତି ସାଧନ କରିଥିଲେ ତାହା ଦୃକ୍‌ସିଦ୍ଧ ହେଉ ନ ଥିବାରୁ ମୁଁ ଗ୍ରହଣ କରି ନାହିଁ—ଛାଡ଼ି ଦେଇଛି ।

ସୂର୍ଯ୍ୟ ବିଷୁବରେଖା ଉପରେ ଥିବାବେଳେ (ସାୟନ ମେଷାଦି ବା ତୁଳାଦିରେ ଥିବା-ବେଳେ) ସାୟନ ମକରାଦିରେ ଥିବା ଚନ୍ଦ୍ରର ବିମ୍ବାର୍ଦ୍ଧ ଖ ସୃଷ୍ଟି କରେ ଯାମ୍ୟୋତ୍ତର ରେଖା-ଦ୍ୱାରା (ବୃତ୍ତରେ) ଖଣ୍ଡିତ ହେବା ଦେଖାଯାଏ । ଏହି ଅଙ୍କିତ ପ୍ରଦେଶ ଅତ୍ୟନ୍ତ ସରଳ (ଆଦୌ ବକ୍ର ନୁହେ) ମଧ୍ୟ ଦିଶେ । ଫଳରେ ବିମ୍ବାର୍ଦ୍ଧ ଶୁକ୍ଳ ଦେଖାଯାଏ । ଏହି କାରଣରୁ ସ୍ପଷ୍ଟ ଚନ୍ଦ୍ରରୁ ସୂର୍ଯ୍ୟଙ୍କୁ ବାଦ ଦେଲେ ଯେତେ ଅନ୍ତର ଆସିବ ତାର ଉତ୍କ୍ରମଜ୍ୟାକୁ ଚନ୍ଦ୍ରର ପ୍ରଥମ ସ୍ଫୁଟ ଗତିରେ ଗୁଣି ୧୭୩୪୫°ରେ ହରିଲେ ବିମ୍ବାର୍ଦ୍ଧାଳ୍ପ ଚନ୍ଦ୍ରର ଶୁକ୍ଳକଳା ହେବ । ଏହି ଶୁକ୍ଳ କଳାକୁ ଚନ୍ଦ୍ର ବିମ୍ବାର୍ଦ୍ଧରୁ କମ୍ ଥିବାବେଳେ ବିମ୍ବାର୍ଦ୍ଧରୁ କମ ଏବଂ ଚନ୍ଦ୍ର-ବିମ୍ବାର୍ଦ୍ଧରୁ ଅଧିକ ଥିବାବେଳେ ବିମ୍ବାର୍ଦ୍ଧରେ ଯୋଗକଲେ କଳାତ୍ମକ ଶୁକ୍ଳ ବିମ୍ବମାନ ଦୃକ୍‌ସିଦ୍ଧ ହେବ । ଚନ୍ଦ୍ର ପୂର୍ବ ବା ପଶ୍ଚିମ ଯେଉଁ କପାଳରେ ଥାଉ ସେଥିରେ କିଛି ଯାଏ ଆସେ ନାହିଁ ।

ଷ୍ଟାଭୂକାଲଲବାନ୍ତରେଽର୍କଶଶିନୋଃ ଶୁଭ୍ରାଂଶୁବିମ୍ବଦ୍ୟୁତଃ
ପ୍ରାୟେଣ କ୍ଷିତଭୂତ୍‌ଦ୍ବଷପେଶ ବକଳାମାନାଦନୂନା ବୁଧାତ୍ ।
ନ୍ୟୂନା ଯଦ୍ଗୁରୁ ବିମ୍ବତୋ ଭବତି ତଦ୍ବ୍ୟକ୍ତୌ ସଦାସ୍ତୋଦୟୌ ।
ରୁଦ୍ରାଂଶୈର୍ନତୁ ସିଦ୍ଧତୋଽପରମତଦେଧ୍ୟାତପ୍ରବେଶକ୍ରମାତ୍ ।୭୫।

ସୂର୍ଯ୍ୟଠାରୁ ଚନ୍ଦ୍ର ୧୧°ରେ ଥିବାବେଳେ ଏହାର କାନ୍ତି ୧୭ ବିକଳା ମାତ୍ର । ଏହା ବର୍ତ୍ତିତ ବିମ୍ବ ପରିମାଣ ଥିବା ବୁଧ ବିମ୍ବଠାରୁ ବେଶୀ ଏବଂ ବୃହସ୍ପତିର ତେଜସ୍ୱୀ ବିମ୍ବଠାରୁ କମ୍ ଦେଖାପଡ଼େ । ସେଥି ନିମନ୍ତେ ଯେଉଁମାନେ ୧୧° ଦୂରତାରେ (କାଳାଂଶ) ଚନ୍ଦ୍ରର ଉଦୟ ଓ ଅସ୍ତ ମାନନ୍ତି ତାହା ଠିକ୍ ନୁହେଁ ।

ବିମ୍ବସ୍ୟାଷ୍ଟୋତ୍ତରଶତ ଲବଃ ପ୍ରେକ୍ଷ୍ୟତେ ଶୁକ୍ଳପକ୍ଷେ
ପ୍ରାକ୍ତିଥ୍ୟନ୍ତେ ତନୁରପି ବୁଧୈଃ ଷଷ୍ଠଭାଗଶ୍ଚତୁର୍ଥ୍ୟାମ୍ ।
ପଞ୍ଚମ୍ୟନ୍ତେଽଦ୍ରିରଥ ଦଶମୀପ୍ରାନ୍ତଭାଗେ ତ୍ରିପାଦାଃ
ପକ୍ଷାନ୍ତେଽର୍ଦ୍ଧେଽଖିଳଦଳଭୃତବୈଷ୍ଣବାନ୍ତେଽରସାଂଶଃ ।୭୬।

ଶୁକ୍ଳ ପକ୍ଷର ପ୍ରତିପଦାନ୍ତରେ ଚନ୍ଦ୍ରମଣ୍ଡଳର ୧୦୮ଶ ଭାଗ ଅତି ସୂକ୍ଷ୍ମ ହେଲେ ମଧ୍ୟ ଦେଖାଯାଇଥାଏ । ସେହି ପକ୍ଷର ଚତୁର୍ଥୀ ତିଥିର ଶେଷରେ ତାହାର ୬ଷ୍ଠ ଭାଗ ଶୁକ୍ଳ ଦେଖାପଡ଼େ । ପଞ୍ଚମୀ ତିଥିର ଶେଷରେ ୪ର୍ଥ ଭାଗ ଶୁକ୍ଳ ଦିଶେ । ଦଶମୀ ତିଥିର ଅବସାନ କାଳରେ ୩ ଭାଗ ଶୁକ୍ଳ ଦିଶେ । ପୁଣି ପୂର୍ଣ୍ଣିମାନ୍ତରେ ପୂର୍ଣ୍ଣବିମ୍ବ ଶୁକ୍ଳ ହୁଏ ଏବଂ ଅଷ୍ଟମୀ ତିଥିରେ ଅଧାବିମ୍ବ ଶୁକ୍ଳ ହେବାର ଦେଖା ପଡ଼ିଥାଏ । ଏକାଦଶୀ ତିଥିର ଅବସାନ କାଳରେ ୫/୭ ଭାଗ ଶୁକ୍ଳ ଦେଖାପଡ଼େ ।

**ଯାବେଦ୍ଦେବୋଧସି ଧରୋପର ରୋଚମାନଃ**
**ଯାରୋଜବାନ୍ଧବ-ଯରୋଷତରୋକ୍ତରୋପାତ୍ ।**
**ନାରୋପଗୋପନପରୋଽରଧରୋ ବରୋଧ୍ୱ—**
**ମାରୋତ୍ଥରୋଗନକରୋପରତିଂ କରୋତୁ ।୭୮।**

ଯେଉଁ ସୁଦର୍ଶନ ଚକ୍ରଧାରୀ ଶ୍ରୀ ଜଗନ୍ନାଥ ଲବଣ ସମୁଦ୍ର ତୀରବର୍ତ୍ତୀ ଭୂମିରେ (ପୁରୁଷୋତ୍ତମ କ୍ଷେତ୍ରରେ) ଶୋଭା ପାଉଅଛନ୍ତି ସେ ସୂର୍ଯ୍ୟ ପୁତ୍ର ଯମର ଦୁଷ୍ଟ ବଚନ ସମୂହରୁ ନର ସମୂହଙ୍କୁ ରକ୍ଷା କରୁଅଛନ୍ତି ସେ କାମ ଶତ୍ରୁ ଜନିତ ସମସ୍ତ ରୋଗ ନାଶ କରନ୍ତୁ । (ଆମ୍ଭମାନଙ୍କୁ କାମନାଜନିତ ସମସ୍ତ ବ୍ୟାଧିରୁ ରକ୍ଷା କରନ୍ତୁ ।)

**ଇତ୍ୟୁତ୍କଳୋଦ୍ଭବନୃପାଳକୁଳପ୍ରସୂତ**
**ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।**
**ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ**
**ଶୃଙ୍ଗୋନ୍ନତି ବ୍ୟଗମଦନ୍ଦ୍ରମିତଃ ପ୍ରକାଶଃ ।୭୯।**

**ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ**
**ଦ୍ୱିପ୍ରଶ୍ନାଧିକାରେ ଚନ୍ଦ୍ରଶୃଙ୍ଗୋନ୍ନତି-ବର୍ଣ୍ଣନୋ ନାମ**
**ଚତୁର୍ଦ୍ଦଶଃ ପ୍ରକାଶଃ ।**

ବର୍ତ୍ତମାନ ୧୪ଶ ପ୍ରକାଶ ଶେଷ ହେଲା । ଏଥିରେ ଶୃଙ୍ଗୋନ୍ନତିର ଆଲୋଚନା କରାଯାଇଅଛି ।

## ପଞ୍ଚଦଶଃ ପ୍ରକାଶଃ

### ମହାପାତବର୍ଣ୍ଣନମ୍

ଯାତ୍ରାଦୀନାଂ ଶୁଭଫଳମଳଂ କର୍ମଣାଂ ସତ୍କୃତାନାଂ
ଯସ୍ମିନ୍ ଭସ୍ମୀଭବତି ଗଣକା ଯତ୍ର ମୁହ୍ୟନ୍ତି ଭୂୟଃ ।
ତଂ ଯୋଗେନ୍ଦ୍ରଂ ହବନଜପାଦ୍ୟେଷୁ ସୂର୍ଯ୍ୟୋପରାଗ-
ପ୍ରଖ୍ୟଂ ବକ୍ଷ୍ୟାମ୍ୟହମିହ ମହାପାତମାପ୍ତତନ୍ତ୍ରାତ୍ ।୧।

ଆସ୍ତିକ୍ୟ ବୁଦ୍ଧିରେ କରାଯାଇଥିବା ଯାତ୍ରା, ବିବାହ, ଉପନୟନ ଆଦି ସକଳ ଶୁଭକର୍ମ ଯେଉଁ ମହାପାତ ଯୋଗରେ ଅତି ମାତ୍ରାରେ ଭସ୍ମୀଭୂତ ହୋଇଯାଏ, ଯେଉଁ ମହାପାତର ଆଲୋଚନା କରୁ କରୁ ପଣ୍ଡିତମାନେ ମୋହଗ୍ରସ୍ତ ହୋଇପଡ଼ନ୍ତି ଏବଂ ଯେଉଁ ମହାପାତ ଯୋଗରେ ଦାନ, ଜପ ଓ ସ୍ନାନାଦି ଶୁଭକର୍ମ ସୂର୍ଯ୍ୟ ଗ୍ରହଣରେ ଯେପରି ଶୁଭଫଳ ହୋଇଥାଏ; ସେହିପରି ଶୁଭଫଳ ଦିଏ—ଯୋଗ ଶ୍ରେଷ୍ଠ ସେହି ମହାପାତକୁ ମୁଁ ଶାସ୍ତ୍ରତତ୍ତ୍ୱ ଆଲୋଚନା ପୂର୍ବକ ସଂଗ୍ରହ କରି ଏଠାରେ ବର୍ଣ୍ଣନା କରୁଅଛି ।

ବୈଧୃତ ବ୍ୟତିପାତାଖ୍ୟୌ ଭେଦୌ ପାତସ୍ୟ କୀର୍ତ୍ତିତୌ
ଗୋଲାୟନାଖ୍ୟଭେଦସମ୍ଭବୌ ରବିଚନ୍ଦ୍ରୟୋଃ ।୨।

ବୈଧୃତ ଓ ବ୍ୟତିପାତ ଭେଦରେ ପାତ ଦୁଇପ୍ରକାର । ଚନ୍ଦ୍ର ଓ ସୂର୍ଯ୍ୟ ଏକ ଗୋଲରେ ଥାଇ ଭିନ୍ନ ଅୟନର ହେଲେ ବ୍ୟତିପାତ ଯୋଗହୁଏ । ମାତ୍ର ସେ ଦୁହେଁ ଏକ ଅୟନରେ ଥାଇ ଭିନ୍ନ ଗୋଲର ହେଲେ ବୈଧୃତ ଯୋଗହୁଏ । ମାତ୍ର ଏଠାରେ ମନେ ରଖିବାକୁ ହେବ ଯେ ରବି ଓ ଚନ୍ଦ୍ର ଉଭୟର (ଉପରୋକ୍ତ ସ୍ଥଳରେ ଥାଇ) କ୍ରାନ୍ତି ସାମ୍ୟ ହେଲେ ଏ ଦୁଇଯୋଗ ହୋଇଥାଏ ।

ସ୍ୟାଦ୍‌ଗୋଲସନ୍ଧିରର୍କେନ୍ଦ୍ୱୋର୍ବିଷୁବଦ୍‌ବଳୟସ୍ଥୟୋଃ ।
ସନ୍ଧିରାୟନ ଏବ ସ୍ୟାତ୍ ପରମାପକ୍ରମସ୍ଥୟୋଃ ।୩।

ରବି ଓ ଚନ୍ଦ୍ର ବିଷୁବ ବୃତ୍ତରେ (ବୃହତ୍ ଅହୋରାତ୍ର ବୃତ୍ତରେ) ଥିଲାବେଳେ ଉଭୟଙ୍କର ଗୋଲ ସନ୍ଧି ହୋଇଥାଏ । ଉଭୟେ ପରମକ୍ରାନ୍ତି ହେବା ସ୍ଥାନରେ ରହିଲେ ସେମାନଙ୍କର ଅୟନ ସନ୍ଧି ହୋଇଥାଏ ।

କାନ୍ତିସାମ୍ୟଂ ଯଦା ଭିନ୍ନାୟନୟୋରେକଗୋଲୟୋଃ ।
ତଦୋକ୍ତଃ ସ୍ୟାଦ୍ବ୍ୟତୀପାତାଖ୍ୟସ୍ତଦା ଚନ୍ଦ୍ରବିବସ୍ୱତୋଃ ।୪।

ବିଭିନ୍ନଗୋଲୟୋରେକାୟନୟୋଃ କାନ୍ତିତୁଲ୍ୟତା ।
ଯଦା ତଦା ବୈଧୃତାଖ୍ୟଃ ସମ୍ଭବେଦ୍ ଦୃଷ୍ଟି ଭୟାନକଃ ।୫।

ରବି ଓ ଚନ୍ଦ୍ର ଏକ ଗୋଲ ଓ ଭିନ୍ନ ଅୟନରେ ଥାଇ (ସେ ଦୁହିଁଙ୍କର) କ୍ରାନ୍ତି ସାମ୍ୟ ହେଲେ ବ୍ୟତୀପାତ ଯୋଗ ହୁଏ । ଉଭୟେ ଭିନ୍ନ ଗୋଲରେ ଥାଆନ୍ତି ଓ ଏକ ଅୟନରେ ଥାଇ କ୍ରାନ୍ତି ସାମ୍ୟ ହେଲେ ବୈଧୃତ ଯୋଗ ହୋଇଥାଏ । କ୍ରାନ୍ତି ସମାନ ହେଲେ ପରସ୍ପରର, ଦୃଷ୍ଟି ଯୋଗ ହୁଏ ବୋଲି କହିତ ଅଛି ।

ସୂ—ତୁଲ୍ୟାଂଶୁଜାଲସଂପର୍କାତ୍ତୟୋସ୍ତୁ ପ୍ରବହାହୃତଃ ।
ତଦ୍ଦୃକ୍ କ୍ଷେପୋଦ୍ଭବୋ ବହ୍ନିର୍ଲୋକାଭାବାୟ ଜାୟତେ ।୬।

ବିନାଶୟତିପାତୋଽସ୍ୟ ଲୋକାନାମସକୃଦ୍ୟତଃ ।
ବ୍ୟତପାତଃ ପ୍ରସିଦ୍ଧୋଽତଃ ସଂଜ୍ଞାଭେଦେନ ବୈଧୃତଃ ।୭।

ସ କୃଷ୍ଣୋ ଦାରୁଣବପୁର୍ଲୋହିତାକ୍ଷୋ ମହୋଦରଃ ।
ସର୍ବାନିଷ୍ଟକରୋ ରୌଦ୍ରୋ ଭୂୟୋ ଭୂୟଃ ପ୍ରଜାୟତେ ଇତି ।୮।

ସୂର୍ଯ୍ୟସିଦ୍ଧାନ୍ତରେ ଅଛି—

ସମାନ କ୍ରାନ୍ତି ହେଉଥିବା ରବି ଓ ଚନ୍ଦ୍ରର ସମାନ ଶକ୍ତି ବର୍ଷିଷ୍ଣୁ କିରଣ ସଂଯୋଗରୁ ସେ ଦୁହିଁଙ୍କ ପ୍ରଚଣ୍ଡ ଦୃଷ୍ଟି ସମୁତ୍ପନ୍ନ ଅଗ୍ନି ପ୍ରବହ ବାୟୁରେ ଖେଳଯାଇ ପ୍ରାଣୀ-ଜଗତକୁ ନଷ୍ଟ କରିଦିଏ ।

ଅତିପାତ ଯୋଗ ବାରମ୍ବାର ପ୍ରାଣୀ ଜଗତର ଅକଲ୍ୟାଣକର ହେତୁ ସଂସାରର ବିନାଶକୁ ଟାଣି ଆଣିଥାଏ । ଅତିପାତର ଅନ୍ୟ ନାମ ବ୍ୟତୀପାତ । ବୈଧୃତ ମଧ୍ୟ ଏହାର ଅନ୍ୟନାମ । ଉଭୟପାତ ଅତ୍ୟନ୍ତ ମନ୍ଦଫଳ ଦାତା ।

ପ୍ରତ୍ୟେକପାତର ବର୍ଣ୍ଣ କୃଷ୍ଣ ଶରୀର ଅତି ଭୟଙ୍କର ଏବଂ ଆଖି ଅତ୍ୟନ୍ତ ଲାଲ । ଏ ଦୁହିଁଙ୍କର ପେଟ ଅତି ବଡ଼ ଏବଂ ଏମାନେ ପ୍ରାଣୀ ମାନଙ୍କର ଅନିଷ୍ଟ କରିଥାନ୍ତି । ଏ ଦୁହେଁ ଅତି ପ୍ରଚଣ୍ଡ ଏବଂ ପ୍ରତି ମାସରେ ଏ ଦୁହେଁ ଉତ୍ପନ୍ନ ହୁଅନ୍ତି । (ବୈଧୃତ ବ୍ୟତୀପାତ ୧୭ ଯୋଗ ମଧ୍ୟରୁ ଦୁଇଟିର ନାମ) ଏ ଦୁହେଁ ପ୍ରତି ମାସରେ ଉତ୍ପନ୍ନ ହୁଅନ୍ତି ସତ ମାତ୍ର ମଧ୍ୟମାନଙ୍କରେ ଉତ୍ପନ୍ନ ହେଉଥିବାରୁ ବେଶି କ୍ଷୟକ୍ଷତି କରି ପାରନ୍ତି ନାହିଁ । ଦୁଷ୍ଟ ମାନଙ୍କରେ ଏ ଦୁହେଁ କଦାଚିତ୍ ଉତ୍ପନ୍ନ ହେଲେ ସଂସାରର ଅନେକ କ୍ଷତି ହୋଇଥାଏ ।

ଚଳାଂଶସଂସ୍କୃତାର୍କେନ୍ଦ୍ୱୋର୍ଯୋଗଶ୍ଚକ୍ରଂ ଯଦା ଭବେତ୍ ।
ତଦା ସନ୍ନିହିତୋ ଯୋଗୋ ବୈଧୃତଃ ପୁନରେତୟୋଃ ।୯।

ଯୋଗାତ୍ ଷଡ୍‌ଭବନାନ୍ୟଷ୍ଟାଦଶବାସଂ ଭବନ୍ତି ଚେତ୍ ।
ବ୍ୟତିପାତସ୍ତଦାସନ୍ନୋ ଭିନ୍ନପାଦସ୍ଥୟୋସ୍ତୁ ତୌ ।୧୦।

ପ୍ରାୟସ୍ତତ୍‌ସମ୍ଭବୋ ମାସେ ଦ୍ୱିର୍ଭବେନ୍ନ କ୍ୱଚିଦ୍ ଭବେତ୍ ।
କ୍ୱଚିତ୍ ସନ୍ନିହିତେ କାଳେ ଦ୍ୱିଃ ସ୍ୟାଦ୍ବିକ୍ଷେପଭେଦତଃ ।୧୧।

ଅୟନାଂଶ ସଂସ୍କୃତ ରବି ଓ ଚନ୍ଦ୍ରର ରାଶ୍ୟାଦି ଯୋଗ ଯେତେବେଳେ ୧୨ ରାଶି ହୁଏ ତେତେବେଳେ ବୈଧୃତ ଯୋଗ ନିକଟେଇ ଆସେ । ପୁଣି ପୂର୍ବପର ଏ ଦୁହିଁଙ୍କର ଯୋଗ ୬ ରାଶି ବା ୧୮ ରାଶି ହେଲେ ବ୍ୟତିପାତ ଆସନ୍ନ ହୋଇଥାଏ । ରବି ଓ ଚନ୍ଦ୍ର ଭିନ୍ନପାଦରେ (ବୃତ୍ତର ୧ ଅଂଶ) ଥିବାବେଳେ ହିଁ ଉଭୟ ପାତର ଉତ୍ପତ୍ତି ହୋଇଥାଏ । କୌଣସି ମାସରେ ଆଦୌ ଏ ପାତ ନ ପଡ଼ିବା ମଧ୍ୟ ଦେଖା ଦେଇଥାଏ । ଚନ୍ଦ୍ରଶରର ଭିନ୍ନତା ନେଇ ଥରେ ଥରେ ଅତି ନିକଟରେ ଏ ପାତ ପଡ଼ିବା ଫଳରେ ପାତ ଦୁଇଥର ମଧ୍ୟ ପଡ଼ିସିବାର ଦେଖାଯାଏ ।

ପାତସମ୍ଭବକାଳୋତ୍‌ଥଯୋଗାନ୍ ବକ୍ଷ୍ୟେଽୟନାଂଶକୈଃ ।
କଳୀକୃତୈ ଦ୍ୱିଗୁଣିତୈଶ୍ଚକ୍ର ଚକ୍ରାର୍ଦ୍ଧଜାଃ କଳାଃ ।୧୨।

ବିଲୋମସଂସ୍କୃତା ଶୁଦ୍ଧାଧିକାଶ୍ଚେଚ୍ଚକ୍ରଶୋଧିତାଃ ।
ଖଖାଷ୍ଟାପ୍ତାଗତା ଯୋଗା ବିଷ୍କୁମ୍ଭାଦ୍ୟାଃ ସରୂପକାଃ ।୧୩।

ବର୍ତ୍ତମାନାସ୍ତତଃ ଶେଷାତ୍ ଷଷ୍ଟିଘ୍ନା ଖଶରାଷ୍ଟଭିଃ ।
ଭାଜିତାତ୍ ଫଳନାଡ୍ୟାଢ୍ୟା ଯଦା ସୂକ୍ଷ୍ମା ଭବନ୍ତି ହି ।୧୪।

ତଦୈବେନ୍ଦୁଶରଶ୍ଚେତ୍‌ସ୍ୟାନ୍ମଧ୍ୟସମୟଃ ଶରାତ୍ ।
ପ୍ରାକ୍‌ପଶ୍ଚାତ୍ ସମ୍ଭବେତ୍‌ପାତଃ ସାଧ୍ୟତାଂ ପ୍ରଥମଂ ତତଃ ।୧୫।

ଉକ୍ତ ପାତ ସମ୍ଭାବନା କାଳରୁ ଉତ୍ପନ୍ନ ହେଉଥିବା ବିଷ୍କୁମ୍ଭ ଆଦି ଯୋଗର ବିବରଣ ଦେଉଅଛୁ ।

ଅୟନାଂଶକୁ କଳାକରି ଦ୍ୱିଗୁଣିତ କର । ଏହାକୁ ୨୧୬୦୦ କଳା ଓ ୧୦୮୦୦ କଳାରେ ବିଲୋମ ସଂସ୍କାର କର । (ଅର୍ଥାତ୍ ଅୟନାଂଶ ଯୋଗଥିଲେ ବିଯୋଗ ଏବଂ ବିଯୋଗ ଥିଲେ ଯୋଗ) । ଉଭୟଫଳ ୨୧୬୦୦ କଳା ବାଦ୍ ଦିଅ । ଅବଶେଷକୁ ୮୦୦'ରେ ହରିଲେ ଲବ୍‌ଧି ବିଷ୍କୁମ୍ଭ ଆଦି ଗତ ଯୋଗ ହେବ। ଲବ୍‌ଧିରେ ୧ ମିଶାଇଲେ ବର୍ତ୍ତମାନ ଯୋଗ ସଂଖ୍ୟା ହେବ ।

ହରିବା ବେଳେ ବଳଥିବା ଶେଷକୁ ୬୦ରେ ଗୁଣି ୮୫୦ରେ ହରିଲେ ଯେତେ ଘଟୀ ଆଦି ଫଳ ହେବ ତାକୁ ବର୍ତ୍ତମାନ ଯୋଗରେ ଯୋଗକଲେ ତାହା ସ୍ପଷ୍ଟ ହୁଏ ।

ଏତିକବେଳେ ଚନ୍ଦ୍ରର ଶର ନ ଥିଲେ ପାତର ମଧ୍ୟ-ସମୟ ହୋଇଥାଏ । ଶର ଥିଲେ ଏହି ସମୟର ପୂର୍ବରୁ ବା ପରେ ପାତର ଏହି ମଧ୍ୟ ସମୟ ହୋଇଥାଏ । ସେଥିନିମନ୍ତେ ପ୍ରଥମେ ମଧ୍ୟମ ମାନରେ କ୍ରାନ୍ତି ସାମ୍ୟରୂପକ ସାଧାରଣ ପାତ ସାଧନ କରାଯିବା ଉଚିତ ହେବ ।

**ଅଥେଦାନୀଂ ଶୁକ୍ଳବୃଦ୍ଧ୍ୟୋସ୍ତୁତୀୟାଦ୍ୟମପାଦୟୋଃ ।**
**ଭବତ ପ୍ରାୟଶୋ ମଧ୍ୟଂ ବୈଧୃତବ୍ୟତପାତୟୋଃ ।୧୬।**

ବର୍ତ୍ତମାନ ଅୟନାଂଶ ୨୨ । ଏତେବେଳେ ଶୁକ୍ଳ ଓ ବୃଦ୍ଧିରେ (୨୪ଶ ଓ ୧୧ଶ ଯୋଗ) ବୈଧୃତ ଓ ବ୍ୟତିପାତ (ଯଥାକ୍ରମେ) ୩ୟ ଓ ୧ମ ପାଦ (୬ ଅଂଶ) ରେ ପ୍ରାୟ ପଡ଼ି ଯାଇଥିବାରୁ ଏହି ସମୟକୁ ଏ ଦୁଇର ମଧ୍ୟ ସମୟ ବୋଲି କୁହାଯାଇପାରେ ।

**ଅତୋଽନୁମାୟ ତତ୍କାଲଂ ଚନ୍ଦ୍ରଚନ୍ଦ୍ରାର୍ଦ୍ଧଜଂ ଯୁତେଃ ।**
**ତଦ୍ ଯୋଗାଦନଜୌ କାର୍ଯ୍ୟୌ ସୂକ୍ଷ୍ମୌ ସୂର୍ଯ୍ୟନିଶାକରୌ ।୧୭।**

**ନ୍ୟୂନାଧିକବଲପ୍ତାସ୍ତୁ ତଦ୍ଭୁକ୍ତ୍ୟନ୍ତରଭାଜିତାଃ ।**
**ଲବ୍ଧୈର୍ଦଣ୍ଡାଦିଭିଃ କାଲଃ ପୂର୍ବଃ କାର୍ଯ୍ୟୋ ଯୁତୋଜ୍ଝିତଃ ।୧୮।**

**ଏବଂ ସ୍ୟାଦସକୃଦ୍କର୍ମ ଚନ୍ଦ୍ରସ୍ୱର୍ଦ୍ଧସମୀକୃତେଃ ।**
**ତତସ୍ତତ୍କାଲଜାତ୍ପାତାଦ୍ସାଧ୍ୟଃ ସୂକ୍ଷ୍ମେନ୍ଦୁ ସାୟକଃ ।୧୯।**

**ଭୂପୃଷ୍ଠକଷ୍ଟଦୃଷ୍ଟୀନାମନ୍ୟାସ୍ୟନୁପଯୋଗତଃ ।**
**ନୈବ କାର୍ଯ୍ୟନ୍ଦୁ ଦୃକ୍କର୍ମ ଲମ୍ବନାବନତକ୍ରିୟା ।୨୦।**

ଏଣୁ ଶୁକ୍ଳଯୋଗ ଓ ବୃଦ୍ଧି ଯୋଗରୁ ଚନ୍ଦ୍ର ଓ ଚନ୍ଦ୍ରାର୍କ (୨୧୬୦୦ ଓ ୧୦୮୦୦) ସମୟ ଅନୁମାନ କରି ସେହି ଦିନ ତାତ୍କାଳିକ ସ୍ପଷ୍ଟ ସୂର୍ଯ୍ୟ ଓ ଚନ୍ଦ୍ର ସାଧନ କରିବା ଉଭୟରେ ଅୟନାଂଶ ସଂସ୍କାର ଯଥାରୀତିରେ କରିବ । ଉଭୟଙ୍କୁ ମିଶାଇବା ଶୁକ୍ଳ ଯୋଗବେଳେ ଏ ମିଶାଣ ଫଳ ୨୧୬୦୦ କଳାରୁ ଏବଂ ବୃଦ୍ଧି ଯୋଗ ବେଳେ ଏହା ୧୦୮୦୦ କଳାରୁ କେତେ ବେଶୀ ବା କମ୍ ବାହାର କରି ନେବ । ଏହାକୁ ଭୁକ୍ତ ଚନ୍ଦ୍ରର ଓ ରବିର ଗତ୍ୟନ୍ତରରେ

କଳାରେ ଭାଗ ଦେଲେ ଲବ୍ଧି ଯେତେ ଦଣ୍ଡାଦି ହେବ ତାକୁ ପୂର୍ବରୁ ଅନୁମାନରେ ଧରାଯାଇ ଥିବା ସମୟରେ ଯୋଗ ବା ବିୟୋଗ କରିବ । (ରବିଚନ୍ଦ୍ର ଯୋଗକଳା ଚକ୍ର ଓ ଚକ୍ରାର୍ଦ୍ଧ କଳାରୁ କମ୍ ହୋଇଥିଲେ ଯୋଗ ଅନ୍ୟଥା ବିୟୋଗ) ଏହି ସ୍ପଷ୍ଟରେ ସାୟନ ରବି ଓ ଚନ୍ଦ୍ର ଯୋଗ ତଥା ଚକ୍ର ଓ ଚକ୍ରାର୍ଦ୍ଧର (ବାରମ୍ବାର କରି) ସ୍ଥିରତା ଆଣିବ । ସମତାଦୃଢ଼ କରିବାକୁ ହେବ । ଏତିକବେଳେ ଚନ୍ଦ୍ରର ସୂକ୍ଷ୍ମଶର ମଧ ସାଧନ କରିବ । ମନେ ରଖିବାକୁ ହେବ ଯେ ଏ ଯୋଗ ସବୁ ଆଖିକୁ ଦେଖାଯାଉ ନ ଥିବାରୁ ଚନ୍ଦ୍ରରେ ଆକ୍ଷ ଓ ଆୟନ କର୍ମ ବା ଲମ୍ବନ ଓ ନତି କର୍ମ କରାଯିବ ନାହିଁ । ଭୂକେନ୍ଦ୍ର ଦୃଷ୍ଟିରୁ ହିଁ ପାତ ସାଧନ କରାଯିବ ।

ସୂ—ଅଥୌଜପଦଗସ୍ୟେନ୍ଦୋଃ କ୍ରାନ୍ତିର୍ବିକ୍ଷେପସଂସ୍କୃତା ।
ଯଦା ସ୍ୟାଦଧିକା ଭାନୋଃ କ୍ରାନ୍ତେଃ ପାତୋ ଗତସ୍ତଦା ।୨୧।

ଊନା ଚେଦ୍‌ସ୍ୟାତ୍ତତୋ ଭାବୀ ବାମଂ ଯୁଗ୍ମପଦସ୍ୟ ଚ ।
ଯଦାଲ୍ପତ୍ୱଂ ବିଧୋଃ କ୍ରାନ୍ତିର୍ବିକ୍ଷେପାଢ଼େଦ୍‌ବିଶୁଦ୍ଧ୍ୟତି ।୨୨।

ବିଷମ ବୃତ୍ତ ପାଦରେ (୧ମ ଓ ୩ୟ) ଥିବା ଚନ୍ଦ୍ର ଶର ସଂସ୍କୃତ କ୍ରାନ୍ତି (ସ୍ପଷ୍ଟକ୍ରାନ୍ତି) ସୂର୍ଯ୍ୟର କ୍ରାନ୍ତିଠାରୁ ଅଧିକ ହେଲେ ପାତ ଅତୀତ ହୋଇଛି ବୋଲି ଜାଣିବ । କିନ୍ତୁ କମ୍ ହେଲେ ପାତ ନିକଟରେ ହେବ ବୋଲି ଜାଣିବ । ସମବୃତ୍ତପାଦ (୨ୟ ଓ ୪ର୍ଥ)ରେ ଥିବା ଚନ୍ଦ୍ରର ସ୍ପଷ୍ଟକ୍ରାନ୍ତି ସୂର୍ଯ୍ୟକ୍ରାନ୍ତିରୁ ଅଧିକ ହେଲେ ପାତ ଆଗକୁ ହେବ ଏବଂ କମ୍ ହେଲେ ପାତ ହୋଇ ଯାଇଛି ବୋଲି ଜାଣିବାକୁ ହେବ ।

ଗୋଲଜ୍ଞୈଃ ସକଳଂ ଜ୍ଞେୟଂ ଗଣକୈର୍ବାସନାବଳାତ୍ ।
ଗତୈଷ୍ୟତ୍ୱଂ ହି ବାଳାନାଂ ବୋଧାୟ ଗଣିତକ୍ରମଃ ।୨୩।

ଗୋଲ ଜ୍ଞାନ ଥିବା ଗଣକମାନେ ଯୁକ୍ତିବଳରେ (ପ୍ରମାଣ) ହେଲାଣି କି ହେବ ସବୁ ବୁଝି ପାରିବେ । ଅଜ୍ଞଲୋକଙ୍କ ବୋଧ ନିମନ୍ତେ ଗତ ଓ ଗମ୍ୟ ଗଣିତ କ୍ରିୟା ଲେଖା ଯାଉଛି ।

ଯୋଗଭାର୍ଦ୍ଧାନ୍ତୟୋଃ ସିଦ୍ଧା ଯଦା ସମକଳୀକୃତଃ ।
ତତ୍କାଳତୋ ଗତେ ପାତେ ସଂଶୋଧ୍ୟାଃ ଷଷ୍ଟିନାଡ଼ିକାଃ ।୨୪।

ଗମ୍ୟେତାସ୍ତୁ ସଂଯୋଜ୍ୟାଃ ପୁନସ୍ତତ୍କାଳ-ସମ୍ଭବୈଃ ।
ସୂର୍ଯ୍ୟେନ୍ଦୁପାତବିଶିଖୈଃ ସାଧ୍ୟଂ କ୍ରାନ୍ତ୍ୟନ୍ତରଂ ତୟୋଃ ।୨୫।

ତଦା ପ୍ରାକ୍‌କାଳତଶ୍ଚେତ୍ ସ୍ୟାଦ୍‌ଗତୈଷ୍ୟତ୍ୱବିପର୍ଯ୍ୟୟଃ ।
ତଦା ତତ୍ ଷଷ୍ଟି ଦଣ୍ଡାନ୍ତର୍ମଧ୍ୟଂ ପାତସ୍ୟ ସମ୍ଭବେତ୍ ।୨୬।

ଯଦା ଗତସ୍ୟ ଜାତତା ଗମ୍ୟତା ଚ ଭବିଷ୍ୟତଃ ।
ତଦା ଦୂରେ ଭବେଦ୍ଯୋଗୋ ନ ତୁ ତଦ୍ଦିବସାନ୍ତରେ ।୨୭।

ତତ୍ସିଦ୍ଧୟେ ଗତଃ ସାଧ୍ୟ ଯାମ୍ୟସୌମ୍ୟାପମୋଦ୍ଭବା ।
ପ୍ରାକ୍ ପଶ୍ଚାତ୍କାଳୟୋଃ ପାତଯାତୈଷ୍ୟତ୍ୱବିପର୍ଯ୍ୟୟେ ।୨୮।

ତତ୍କ୍ରାନ୍ତ୍ୟନ୍ତରୟୋର୍ଯୋଗସ୍ତ୍ୟାଗସ୍ତ-ଦବିପର୍ଯ୍ୟୟେ ।
ଭବେତ୍ କ୍ରାନ୍ତିଗତଃ ସାଦ୍ୟା ପାତାର୍ଥଂ କଳକାତ୍ମିକା ।୨୯।

ଆଦ୍ୟକ୍ରାନ୍ତ୍ୟନ୍ତରକଳାଃ ଷଷ୍ଟିଘ୍ନା ଗତଭାଜିତାଃ ।
ଫଳଂ ନାଡ୍ୟାଦିସଂସ୍କାର୍ଯ୍ୟଂ କାଲେ ସମକଳୋଭବେ ।୩୦।

ଆଗରୁ କୁହାଯାଇଥିବା ଯୋଗବଶତଃ ଯେତେବେଳେ ଚନ୍ଦ୍ର ଓ ଚନ୍ଦ୍ରାର୍କର ସମକଳା କରାଯିବ, ପାତ କରାଯାଇ ଥିବାର ଜଣାଗଲେ ସେ ସମୟରୁ ୬୦ ଦଣ୍ଡ ଫେଡ଼ିବ । ପାତ ଆଗକୁ ପଡ଼ିବାର ଥିଲେ ସେହି ସମୟରେ ୬୦ ଦଣ୍ଡ ଯୋଗ କରିବ । ଏହି ସମୟରେ ରବି, ଚନ୍ଦ୍ର, ପାତ ଓ ଶର ବାହାର କରି ପୁଣି ରବି ଓ ଚନ୍ଦ୍ରର ସ୍ଫୁଟ ଓ କ୍ରାନ୍ତିର ଅନ୍ତର ସାଧନ କରିବ । ଏତେବେଳେ ପୂର୍ବକଥିତ ସମୟଠାରୁ ପାତ (ଗତ ଓ ଗମ୍ୟ) ଯଦି ବିପରୀତ ଦେଖା-ଯାଏ (ଗତ ବା ଗମ୍ୟ ଯଥାକ୍ରମେ) ତେବେ ୬୦ ଦଣ୍ଡ ମଧ୍ୟରେ ସ୍ଫୁଟକ୍ରାନ୍ତି ସମାନ ହେବ । ମାତ୍ର ପୂର୍ବ ସମୟର ଗତଗମ୍ୟ ପାତ ଏତେବେଳେ ଯଦି ଠିକ୍ ସେହିପରି ଗତଗମ୍ୟ ହିଁ ଥିବା ଦେଖାଯାଏ, ତାହାହେଲେ ପାତ ଉକ୍ତ ୬୦ ଦଣ୍ଡ ପରେ ହିଁ ହେବ । ଉକ୍ତ ୬୦ ଦଣ୍ଡାତ୍ମକ ଦିନ ଭିତରେ ହେବ ନାହିଁ ।

ଯୋଗସିଦ୍ଧି ନିମନ୍ତେ ବର୍ତ୍ତମାନ କ୍ରାନ୍ତିର ଅନ୍ତର ସାଧନ କରିବ । ଚନ୍ଦ୍ର, ଚନ୍ଦ୍ରାର୍କ ସମୀକରଣ କାଳର ପୂର୍ବ ଓ ପରକାଳରେ ପାତରଗତଗମ୍ୟତା ବୈପରୀତ୍ୟରେ ସମୀକରଣ କାଳକକ୍ରାନ୍ତିର ଅନ୍ତର ଓ ୬୦ ଘଟିକା ସଂସ୍କୃତ ସମୀକରଣ କାଳକ କ୍ରାନ୍ତିର ଅନ୍ତର ଏପରି ଦୁଇ କ୍ରାନ୍ତ୍ୟନ୍ତରର ଯୋଗକରିବା ଗତଗମ୍ୟ ତାର ବିପର୍ଯ୍ୟୟ ନ ହୋଇ ସ୍ଥିତାବସ୍ଥା ରହିଲେ ଉଭୟ କ୍ରାନ୍ତ୍ୟନ୍ତରର ଅନ୍ତର କରିବ । ଏହାହିଁ ପାତ ଆନୟନ ନିମନ୍ତେ କଳାତ୍ମକ ପ୍ରଥମ ଗତି ଓ କ୍ରାନ୍ତି ଗତି ହେବ । ପ୍ରଥମ କ୍ରାନ୍ତ୍ୟନ୍ତର କଳାକୁ ୬୦ରେ ଗୁଣି ପ୍ରଥମ କ୍ରାନ୍ତିଗତିରେ ଭାଗଦେଲେ ଫଳ ଯାହାହେବ ତାକୁ ସମୀକରଣ କାଳରେ ପାତ ହେବାକୁ ଥିଲେ ଯୋଗ-କରିବ । ପାତ ଅତୀତ ହୋଇ ଯାଇଥିଲେ ସେହି ସମୀକରଣ ସମୟରୁ ତାକୁ ବିୟୋଗ କରିବ ।

ଗତୈଷ୍ୟତାବଶାଦ୍ଭୂୟସ୍ତତ୍କାଳ କ୍ରାନ୍ତିତଃପୁନଃ ।
ସାଧ୍ୟଂ କ୍ରାନ୍ତ୍ୟନ୍ତରଂ ପ୍ରାଗ୍ୱଦ୍ଗତୈଷ୍ୟାଦ୍ଦ୍ୱିଗତିତଃ କଳାଃ ।୩୧।

କାଳେନ ଯାବତା ଯାବଲ୍ଲମ୍ବଂତତଃପଞ୍ଚମାନ୍ତରମ୍ ।
ତତ୍ସ୍ପର୍ଶମୁକ୍ତ୍ୟୋ ତନ୍ମଧ୍ୟକାଳନାଡ଼ୀଭୂତଂ ଗତଂ ।୩୨।

ଅସକୃତ୍ କର୍ମସଂସିଦ୍ଧକାଳଭୁକ୍ତ୍ୟପମାନ୍ତରୈଃ ।
କ୍ରାନ୍ତ୍ୟଂଶସାମ୍ୟଂ ଯଦା ସ ସ୍ୟାତ୍ ମଧ୍ୟଃ କାଳୋଽନ୍ତମାଗତଃ ।୩୩।

ପାତର ତାତ୍କାଳିକ ଗତାଗମ୍ୟତା ବଶତଃ ଇଷ୍ଟକାଳରେ ପୁଣି ରବି, ଚନ୍ଦ୍ର ଓ କ୍ରାନ୍ତିଦ୍ୱାୟ ପୂର୍ବପରି କ୍ରାନ୍ତ୍ୟନ୍ତର ସାଧନ କରିବ ଏବଂ ପୂର୍ବପରି କ୍ରାନ୍ତିଗତି ମଧ୍ୟ ସାଧନ କରିବ । ଏହା ଦ୍ୱିଗୁଣିତ କ୍ରାନ୍ତିଗତି ହେବ । ସଂସ୍କୃତ କାଳର କ୍ରାନ୍ତ୍ୟନ୍ତରକୁ ଇଷ୍ଟନାଡ଼ୀରେ ଗୁଣି ୨ୟ କ୍ରାନ୍ତିଗତିରେ ଭାଗ ଦେଲେ ଘଟିକାଦି ଯେତେ ଫଳ ହେବ ,ସେଥିରେ ସଂସ୍କୃତ ସମୀକରଣ କାଳକୁ ପୁଣି ସଂସ୍କାର କରିବ । (ଏପରି ବାରମ୍ବାର କରିବା ଫଳରେ କ୍ରାନ୍ତ୍ୟନ୍ତର ଶୂନ୍ୟ ହୋଇଯିବ । )

ଇଷ୍ଟକାଳରେ ଯେତେ କ୍ରାନ୍ତ୍ୟନ୍ତର ହେବ ତାକୁ ୬°ରେ ଗୁଣି ଇଷ୍ଟକାଳରେ ଭାଗକଲେ କ୍ରାନ୍ତିଗତି ହେବ । ଏହିପରି ବାରମ୍ବାର କରୁ କରୁ ଇଷ୍ଟକାଳର କ୍ରାନ୍ତିର ଅନ୍ତର ଗତି ଯାହା ହେବ ତଦ୍ଦ୍ୱାରା ଯେତେବେଳେ ରବି ଓ ଚନ୍ଦ୍ର ସ୍ଫୁଟକ୍ରାନ୍ତିର ସମାନତା ଆସିବ ତାହାହିଁ ପାତ ମଧ୍ୟକାଳହେବ । ଗତି ମଧ୍ୟ ଆଗର ହେବ । ଏହି ପାତମଧ୍ୟ ସମୟରେ ହିଁ ରବି ଓ ଚନ୍ଦ୍ରମଣ୍ଡଳର କେନ୍ଦ୍ର ବିନ୍ଦୁଜନିତ କ୍ରାନ୍ତିସାମ୍ୟ ନଷ୍ଟପ୍ରାୟ ହେବ ।

ଦୃଷ୍ଟୌ ଯୋଗସ୍ତ ଦୈବ ସ୍ୟାଦ୍ବିମ୍ବୟୋର୍ମଧ୍ୟବିନ୍ଦୁଜଃ ।
ସ୍ଥିତକାଳାବଗତୟେ ସ୍ପର୍ଶମୋକ୍ଷୌ ବ୍ରୁବେଽଧୁନା ।୩୪।

ପୂର୍ବବଦ୍ବିମ୍ବୟୋର୍ମାନଯୋଗାର୍ଦ୍ଧଂ ରବିଚନ୍ଦ୍ରୟୋଃ ।
ଆନୀୟାଭ୍ରତ୍ସ୍ୟାଭ୍ୟସ୍ତଂ କ୍ରାନ୍ତିଗତ୍ୟାନ୍ତ୍ୟୟା ଭଜେତ୍ ।୩୫।

ଲବ୍ଧା ଭବନ୍ତି ପାତସ୍ୟ ମଧ୍ୟସ୍ଥିତ୍ୟର୍ଦ୍ଧ ନାଡ଼ିକାଃ ।
ମଧ୍ୟକାଳସ୍ତୁ ହୀନାଢ୍ୟଃ ସ୍ପର୍ଶୋ ମୋକ୍ଷଶ୍ଚ ମଧ୍ୟମଃ ।୩୬।

ତତ୍କାଳପ୍ରଭବାର୍କେନ୍ଦୁସ୍ଫୁଟକ୍ରାନ୍ତ୍ୟୋ-ର୍ଯଦନ୍ତରମ୍ ।
ତନ୍ମାନଯୋ ଦଳତୋ ନ୍ୟୂନଂ ଚେତ୍ ସ୍ପର୍ଶକୋ ଗତଃ ।୩୭।

ମୋକ୍ଷୋ ଭାବୀ ଯଦା ତଦ୍ବିମ୍ବକ୍ରାନ୍ତ-ହ୍ୟନ୍ତରମ୍ ।
ସ୍ପର୍ଶୋ ଭାବୀ ଗତୋ ମୋକ୍ଷସ୍ତତ୍କ୍ରାନ୍ତ୍ୟନ୍ତରଲକ୍ଷିତାଃ ।୩୮।

ଖାରଭେଷି ବୃଂଣିତା ମଧ୍ୟସ୍ଥିତ୍ୟର୍ଦ୍ଧଘଟିକାହ୍ୱତାସ୍ତ ।
ଲବ୍ଧା ଭୁକ୍ତକଳାଃ ସ୍ପର୍ଶମୋକ୍ଷୋତ୍ଥାଃ ପ୍ରଥମା ମତାଃ ।୩୯।

ମାନଯୋଗାର୍ଦ୍ଧବିକଳାସ୍ତଦ୍ଭୁକ୍ତାଃ ସ୍ପର୍ଶମୋକ୍ଷଜାଃ ।
ସ୍ଥିତ୍ୟର୍ଦ୍ଧନାଡ଼ିକାମଧ୍ୟେ ହୀନାଢ଼୍ୟାଃ ସମୟେ ପୁନଃ ।୪୦।

ତତ୍କାଲସ୍ପଷ୍ଟବବରଲପ୍ତିକାଃ ଷଷ୍ଟିତାଡିତାଃ ।
ଦ୍ୱିତୀୟସ୍ଥିତଖଣ୍ଡାପ୍ତା ଲବ୍ଧା ଭୁକ୍ତିରତ କମାତ୍ ।୪୧।

ତତ୍ସ୍ପଷ୍ଟ୍ୟନ୍ତରଯୋଗାର୍ଦ୍ଧସାମ୍ୟେ ସ୍ପର୍ଶବନର୍ଗମୌ ।
ଭବେତାଂ ସୁସ୍ଥିରୌ ସ୍ପଷ୍ଟୌ ଦଣ୍ଡାଶ୍ଚ ସ୍ଥିତଖଣ୍ଡକାଃ ।୪୨।

ପାତର ଆଦ୍ୟଠାରୁ ଅନ୍ତପର୍ଯ୍ୟନ୍ତ ମୋଟ ସମୟ ଜାଣିବା ନିମନ୍ତେ ପାତର ସ୍ପର୍ଶ ଓ ମୋକ୍ଷ କଥା ବର୍ତ୍ତମାନ କହୁଅଛୁ । ଚନ୍ଦ୍ରଗ୍ରହଣ ଖଣ୍ଡରେ ପାତ ମଧ୍ୟକାଳକ ରବି ଓ ଚନ୍ଦ୍ରର ବିମ୍ବ ଆଣି ଏ ଉଭୟଙ୍କ ମାନୈକ୍ୟାର୍ଦ୍ଧ ଜାଣିବ । ଏହି ମାନୈକ୍ୟାର୍ଦ୍ଧକୁ ୬୦ରେ ଗୁଣି ଶେଷ ସ୍ପଷ୍ଟ ଗତିରେ ଭାଗଦେବ । ଫଳହେବ ପାତର ମଧ୍ୟସ୍ଥିତ୍ୟର୍ଦ୍ଧ ନାଡ଼ୀ । ପାତର ମଧ୍ୟକାଳରୁ ଏହାକୁ ବାଦ୍‌ଦେଲେ ମଧ୍ୟମସ୍ପର୍ଶକାଳ ହେବ ଏବଂ ପାତର ମଧ୍ୟ କାଳରେ ଏହାକୁ ଯୋଗଦେଲେ ପାତ ମଧ୍ୟମ ମୋକ୍ଷକାଳ ହେବ । ପୁଣି ତତ୍କାଳରେ ଯେଉଁ ରବି ଚନ୍ଦ୍ର ହେବେ ସେ ଦୁହିଁଙ୍କ ସ୍ଫୁଟକ୍ରାନ୍ତିର ଅନ୍ତରକର । ଏହା ମାନୈକ୍ୟାର୍ଦ୍ଧରୁ କମ୍ ହୋଇଥିଲେ ସ୍ପର୍ଶ ସମୟ ଚାଲିଯାଇଛି ବୋଲି ବୁଝିବାକୁ ହେବ । ଅର୍ଥାତ୍ ପାତ ଆରମ୍ଭ ହୋଇସାରିଥିବା କହିବ ଏବଂ ମୋକ୍ଷ ନିକଟରେ ହେବାକୁ ଅଛିବୋଲି ସ୍ଥିରକରିବା ମାନୈକ୍ୟାର୍ଦ୍ଧରୁ କ୍ରାନ୍ତି-ଦ୍ୱୟର ଅନ୍ତର ବହୁ ଅଧିକ ଦେଖାଗଲେ ସ୍ପର୍ଶ ହେବ ବୋଲି କହିବା—ମୋକ୍ଷ ଚାଲିଯାଇଥିବ ନିଶ୍ଚୟ ।

ମଧ୍ୟମ ସ୍ପର୍ଶ ଓ ମୋକ୍ଷ କାଳକ କ୍ରାନ୍ତିର ଅନ୍ତରକଳାଦିକୁ ୬୦ରେ ଗୁଣି ମଧ୍ୟମ ସ୍ଥିତ୍ୟର୍ଦ୍ଧ ଘଟିକାରେ ହରିଲେ ପ୍ରଥମ ସ୍ପାର୍ଶିକ ଓ ମୌକ୍ଷିକ କ୍ରାନ୍ତିଭୁକ୍ତି କଳା ଆସିବ । ସ୍ପାର୍ଶିକମାନୈକ୍ୟାର୍ଦ୍ଧ ବିକଳା ଓ ମୌକ୍ଷିକମାନୈକ୍ୟାର୍ଦ୍ଧ ବିକଳାକୁ ଯଥାକ୍ରମେ ସ୍ପାର୍ଶିକ ଓ ମୌକ୍ଷିକ କ୍ରାନ୍ତିଗତି କଳାରେ ହରିଲେ ସ୍ପର୍ଶ, ସ୍ଥିତି ଅର୍ଦ୍ଧ ଓ ମୋକ୍ଷସ୍ଥିତି ଅର୍ଦ୍ଧ ନାଡ଼ିକାଦି ହେବ । ଏହାକୁ ଯଥାକ୍ରମେ ପାତ ମଧ୍ୟ କାଳରୁ ବାଦ୍ ଓ ସେଥିରେ ଯୋଗକଲେ ସ୍ପର୍ଶ ଓ ମୋକ୍ଷ କାଳହେବ ।

ପୁଣି ଏହି ସ୍ପର୍ଶ ଓ ମୋକ୍ଷକାଳର କ୍ରାନ୍ତ୍ୟନ୍ତରକଳାକୁ ୬୦ରେ ଗୁଣି ଯଥାକ୍ରମେ ଦ୍ୱିତୀୟ ସ୍ପାର୍ଶିକ ତଥା ଦ୍ୱିତୀୟ ମୌକ୍ଷିକ ସ୍ଥିତ୍ୟର୍ଦ୍ଧ ଘଟିରେ ହରିଲେ ଦ୍ୱିତୀୟ ସ୍ପାର୍ଶିକ ଓ ଦ୍ୱିତୀୟ ମୌକ୍ଷିକ କ୍ରାନ୍ତିଗତି ହେବ । ଏହାକୁ ବାରମ୍ବାର କରିବା ପରେ ସ୍ପାର୍ଶିକ ଓ ମୌକ୍ଷିକ

ଶାନ୍ତ୍ୟନ୍ତର ତଥା ସ୍ପାର୍ଶିକ ମାନୈକ୍ୟାର୍ଦ୍ଧ ଓ ମୌକ୍ଷିକ ମାନୈକ୍ୟାର୍ଦ୍ଧ ସମାନ ହେଲେ ସ୍ପର୍ଶ ଓ ମୋକ୍ଷକାଳ ସ୍ଥିର ଓ ସ୍ପଷ୍ଟ ହୋଇଯିବ । ଏହା ଫଳରେ ସ୍ଥିତ୍ୟର୍ଦ୍ଧ ନାଡ଼ିକାଦି ମଧ୍ୟ ସ୍ଥିର ହୋଇଯାଇ ପାରିବ ।

ସୂ—ଆଦ୍ୟନ୍ତକାଳୟୋର୍ମଧ୍ୟେ କାଲୋ ଜ୍ଞେୟୋଽତିଦାରୁଣଃ ।
ପ୍ରଜ୍ୱଲଜ୍ଜ୍ୱଲନାକାରଃ ସର୍ବକର୍ମସୁ ଗର୍ହିତଃ ।୪୩।

ଏକକାଷ୍ଠାଗତଂ ଯାବଦର୍କେନ୍ଦ୍ୱୋର୍ମଣ୍ଡଲାନ୍ତରମ୍ ।
ସମ୍ଭବସ୍ତାବଦେବାସ୍ୟ ସର୍ବକର୍ମବିନାଶକୃତ୍ ।୪୪।

ସ୍ନାନଦାନଜପଶ୍ରାଦ୍ଧବ୍ରତହୋମାଦିକର୍ମଭିଃ ।
ପ୍ରାପ୍ୟତେ ସୁମହଚ୍ଛ୍ରେୟସ୍ତତ୍କାଳଜ୍ଞାନତସ୍ତଥା ।ଇତି ।୪୫।

ପାତର ଆରମ୍ଭ ଓ ଅବସାନ ମଧ୍ୟରେ ଯେତେ ସମୟ, ତାହା ଅଗ୍ନି ପରି ଅତି ଉଗ୍ର । ଏହି ସମୟ ବିବାହ ଓ ଉପନୟନ ଆଦି ଶୁଭକର୍ମରେ ସର୍ବଦା ନିନ୍ଦନୀୟ ହୋଇଥାଏ । ରବି ଓ ଚନ୍ଦ୍ରର ଏକ ଦିଗଗତକ୍ରାନ୍ତି ସମାନ ହେଲେ ପାତର ଉତ୍ପତ୍ତି ହୋଇଥାଏ । ଏତିକିବେଳେ ସମସ୍ତ ଶୁଭକର୍ମ ନଷ୍ଟ ହୋଇଥାଏ । ପାତର ସମୟ ଜାଣି ସେହି ସମୟରେ (ଗ୍ରହଣ କାଳପରି) ସ୍ନାନ, ଦାନ, ଜପ, ଶ୍ରାଦ୍ଧ, ବ୍ରତ ଓ ହୋମାଦି କଲେ ଅନେକ ପ୍ରକାରର ମଙ୍ଗଳ ହୋଇଥାଏ ।

ମଧ୍ୟମଃ ସ୍ଥିତିକାଲୋଽସ୍ୟ ପ୍ରହରଂ ଦ୍ୱିତୟଂ ଭବେତ୍ ।
ନବଦଣ୍ଡାତ୍ମକୋ ନ୍ୟୂନଃ ସର୍ବ୍ୟଂଶାଦର୍ଦ୍ଧୟୁଙ୍ମହାନ୍ ।୪୬।

ପାତର ସାଧାରଣ (ମଧ୍ୟମ) ସ୍ଥିତିକାଳ ଦୁଇ ପ୍ରହର ଅର୍ଥାତ୍ ଦ ୧୫ଣ୍ଡ ହୋଇଥାଏ । ଅତି କମ୍‌ରେ ଏହାର ସ୍ଥିତିକାଳ ଦ ୯ଦଣ୍ଡ ଓ ଅତି ବେଶିରେ ଏହାର ସ୍ଥିତିକାଳ ଦ୨ । ୨୦ ।

ଚକ୍ରାନ୍ତେ ଚନ୍ଦ୍ରପାତୋଽର୍କୌ ରବିଶୁକ୍ରାନ୍ତସନ୍ଧିଧୌ ।
ଚନ୍ଦ୍ରଶ୍ଚେଦ୍ବାର୍ଦ୍ଧଗସ୍ତର୍ହି ପାତସ୍ୟାଲ୍ପା ସ୍ଥିତିର୍ଭବେତ୍ ।୪୭।

ଚନ୍ଦ୍ରୋଚ୍ଚପାତଶଶିନୋ ଯଦି ସ୍ୟୁଃ କର୍କଟାଦିଗାଃ ।
ଧନୁରନ୍ତ୍ୟାଂଘ୍ରିଗୋ ଭାନୁସ୍ତଦା ସ୍ୟାତ୍ ସୁଚିରସ୍ଥିତିଃ ।୪୮।

ପାତୋଽର୍ବ ଦ୍ୱିବି ଭଗୋନଃ ସ୍ୟାଚ୍ଚେଦ୍ବ୍ରିଃ ସନ୍ଧିଧୌ ଭବେତ୍ ।
ଅୟନାନ୍ତେ ବିଧୋର୍ନ ସ୍ୟାଦ୍ ଗଜାକ୍ଷ୍ୟଂ ଶାଧ୍ବକେଽପମେ ।୪୯।

୧୨ ରାଶିର ଶେଷରେ ଚନ୍ଦ୍ରର ଉଚ୍ଚ ଓ ପାତଥିବା ବେଳେ ୧୨ ରାଶିର ନିକଟରେ ସାୟନ ରବିଥିଲେ ଏବଂ ସାୟନ ଚନ୍ଦ୍ର କନ୍ୟା ରାଶିର (୬ ରାଶି) ଅନ୍ତ ନିକଟରେ ହେଲେ ପାତର ସ୍ଥିତିକାଳ ଅଳ୍ପ କମ୍ ହୁଏ । ଚନ୍ଦ୍ରର ଉଚ୍ଚ, ପାତ ଓ ସ୍ପଷ୍ଟ ଚନ୍ଦ୍ର କର୍କଟ ରାଶିର ପ୍ରଥମରେ ଥିବାବେଳେ ସୂର୍ଯ୍ୟ ଧନୁ ରାଶିର ଶେଷ ପାଦରେ ଥିଲେ ପାତର ସ୍ଥିତିକାଳ ଦୀର୍ଘ (ଅଳ୍ପ) ହୋଇଥାଏ । ମାତ୍ର ଏଠାରେ ଯଦି ଚନ୍ଦ୍ରର ପାତ କର୍କଟର ଆଦ୍ୟରେ ନଥାଇ ମିଥୁନ ରାଶିର ୨୮° ଠାରୁ କର୍କଟର ୧° ମଧ୍ୟରେ ରହେ ତାହାହେଲେ ଅଳ୍ପ କମ୍ ସମୟ ମଧ୍ୟରେ ଦୁଇଥର କ୍ରାନ୍ତିସାମ୍ୟ ହୋଇଥାଏ । ଅୟନ ସମାପ୍ତିରେ ଚନ୍ଦ୍ରଥିବା ବେଳେ ତାର ସ୍ଫୁଟକ୍ରାନ୍ତି ୨୮°ରୁ ଅଧିକ ହେଲେ ଆଉ କ୍ରାନ୍ତି ସାମ୍ୟ ଆଦୌ ହୋଇପାରେ ନାହିଁ ।

**ଅକ୍ଷବକ୍ଷେପଜୋ ଗ୍ରାହ୍ୟୋ ଗୋଲଭେଦଃ ସିତଦ୍ୟୁତେଃ ।**
**ନ ଗ୍ରାହ୍ୟୋଽୟନ-ଭେଦୋଽସ୍ୟ ସ୍ୱାୟନାଭିମୁଖସ୍ଥିତେଃ ।୫୦।**

ପାତ ବିଷୟେ ଚନ୍ଦ୍ରର ଶରଜନିତ ଗୋଲ ଭେଦ (ପୂର୍ବ ଗୋଲ ବା ପଶ୍ଚିମ ଗୋଲ) ଗ୍ରହଣ କରିବାକୁ ହେବ । ଚନ୍ଦ୍ର ନିଜର ଅୟନ ଅଭିମୁଖରେ ଥିବାରୁ ତାର ଅୟନ ଭେଦ ହେବାର ନୁହେଁ ।

**ଗୋଲସନ୍ଧୌ କ୍ରାନ୍ତିଗତିର୍ବହ୍ୱୀଷୋର୍ଯନ୍ନ ଭିଦ୍ୟତେ ।**
**ଅଲ୍ପାସାୟନସନ୍ଧୌ ତୁ ଗତ୍ୟେଷୋର୍ଭିଦ୍ୟତେ କ୍ୱଚିତ୍ । ୫୧ ।**

**ଯାମ୍ୟେ ସୌମ୍ୟେଽୟନେ ଚନ୍ଦ୍ରସୌମ୍ୟଯାମ୍ୟଗତଃ ଶରାତ୍ ।**
**ଦୃଷ୍ଟାପ୍ୟୟନସାମ୍ମୁଖ୍ୟା-ଭାବାନ୍ନାୟନଭିନ୍ନତା । ୫୨ ।**

**ପାତେନ ଦୂରତଃ ଖେଟୋ ବିକ୍ଷିପ୍ତୋଽପି ସ୍ୱପାର୍ଶ୍ୱୟୋଃ ।**
**ନ ତ୍ୟଜେତ୍କ୍ରାନ୍ତିବୃତ୍ତସ୍ୟ ସାମ୍ମୁଖ୍ୟଂ ହି କଦାଚନ । ୫୩ ।**

ସ୍ଫୁଟକ୍ରାନ୍ତି ନିମନ୍ତେ ଏହା ଗ୍ରହଣ କରାଯିବାର କଥା । ଗୋଲ ସନ୍ଧିରେ ଶର ବଶତଃ ସ୍ଫୁଟକ୍ରାନ୍ତିର ଅୟନ ଭେଦ ହୋଇପାରେ ନାହିଁ । କିନ୍ତୁ ଅୟନ ସନ୍ଧିରେ ଉକ୍ତ କ୍ରାନ୍ତି ଗତି ଶରର ଗତି ବଶତଃ କଦାଚିତ୍ ଭିନ୍ନ ହୋଇ ଯାଇଥାଏ । ଗୋଲ ସନ୍ଧିରେ କ୍ରାନ୍ତି ଗତି ଅଧିକ ହେବା ଓ ଅୟନ ସନ୍ଧିରେ ତାହା କମିଯିବାହିଁ ଏହାର କାରଣ ।

ଦକ୍ଷିଣ ଗୋଲ ଓ ଉତ୍ତର ଗୋଲରେ ଶରବଶତଃ ଚନ୍ଦ୍ରର ଯଥାକ୍ରମେ ଉତ୍ତର ଓ ଦକ୍ଷିଣ ଗତି (ସ୍ଫୁଟକ୍ରାନ୍ତିର ଉତ୍ତର ଗତି ଓ ଦକ୍ଷିଣ ଗତି) ଦେଖାଗଲେ ମଧ୍ୟ ଅୟନ ବଶତଃ ଦିଗଭେଦ ହୋଇ ନ ଥାଏ ।

ଯାତ ଆଦି ଗ୍ରହ (ଏଠାରେ ଚନ୍ଦ୍ର) କ୍ରାନ୍ତି ବୃତ୍ତର ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ବିଶେଷ ଭାବରେ ବିକ୍ଷିପ୍ତ ହେଲେ ମଧ୍ୟ ସେ କ୍ରାନ୍ତି ବୃତ୍ତର ଅଭିମୁଖରେ ବରାବର ଚାଲିଥାଏ। କ୍ରାନ୍ତି ବୃତ୍ତର ଅଭିମୁଖକୁ ସେ ଛାଡ଼ି ପାରେ ନାହିଁ। ଶରଦ୍ଵାରା ଗ୍ରହ ଏପାଖ ସେପାଖ ହେଲେ ମଧ୍ୟ ବରାବର କ୍ରାନ୍ତି ଅଭିମୁଖରେ ଚାଲିଥାଏ।

ବୃହତ୍ ଯାତ୍ରା ନାମକ ଗ୍ରନ୍ଥରେ ବରାହମିହିରାଚାର୍ଯ୍ୟ ମହାପାତ (ଏହା ବୈଧୃତ ଓ ବ୍ୟତିପାତ)ର ଗୋଳ ଓ ଅୟନ ବ୍ୟବସ୍ଥାକୁ ବହୁ ଯୁକ୍ତି ସହକାରେ ଲେଖି ଅଛନ୍ତି।

ବରାହମିହିରାଚାର୍ଯ୍ୟୈ-ର୍ବୃହଦ୍ ଯାତ୍ରାହ୍ୱୟେ ଶ୍ରୁତେ।
ବ୍ୟବସ୍ଥା ବହୁଧା ସୈବ ବହୁଯୁକ୍ତିପୁରଃସରମ୍। ୫୪।

ରବୀନ୍ଦୁଯୋଗତୋ ଯୋଗା ଯେ ସପ୍ତାବିଂଶତିଃ ସ୍ମୃତା।
ସାଧିତାସ୍ତେଷୁ ଯୌ ସପ୍ତାବିଂଶ-ସପ୍ତଦଶାବମୌ। ୫୫।

ବୈଧୃତ ବ୍ୟତିପାତାଖ୍ୟୌ ଯୋଗାବତ୍ୟନ୍ତଦାରୁଣୌ
ତୌ ହି ଖାର୍କ୍ଷୁରଚକ୍ରୈକାର୍ଗଳଗାର୍କେନ୍ଦ୍ୱ ଦୃଷ୍ଟିଜୌ। ୫୬।

ଆଗରୁ ଗ୍ରହସ୍ପଷ୍ଟ କରିବା ପ୍ରକରଣରେ ରବି ଓ ଚନ୍ଦ୍ରର ରାଶ୍ୟାଦି ଯୋଗରୁ ୨୭ ସଂଖ୍ୟକ ଯୋଗ ସାଧନା କରିବା କୁହା ଯାଇଅଛି। ଏ ୨୭ ଯୋଗ ମଧ୍ୟରେ ୨୭ ଶ ଓ ୧୭ ଶ ଯୋଗଦ୍ୱୟ ଯଥାକ୍ରମେ ବୈଧୃତ ଓ ବ୍ୟତିପାତ। ଏ ଦୁଇଟି ଯୋଗ ଅତି ନିଷ୍ଠୁର ଅଟନ୍ତି। ଖାର୍କ୍ଷୁର ଚକ୍ରରେ ରବି ଓ ଚନ୍ଦ୍ର ଏକ ଅର୍ଗଳରେ ରହିଥିବାରୁ ସେ ଉଭୟଙ୍କର ଯେଉଁ କ୍ରୋଧ ଦୃଷ୍ଟି ଜାତ ହୁଏ ସେଥିରୁହିଁ ଏହି ଦୁଇ ଯୋଗର ଉତ୍ପତ୍ତି ହୋଇଅଛି।

ସୂ—ସାର୍ପୈନ୍ଦ୍ର ପୌଷ୍ଣଧିଷ୍ଣ୍ୟାନାମନ୍ତ୍ୟାଃ ପାଦାଭସନ୍ଧୟଃ।
ତଦଗ୍ରଭସ୍ୟାଦ୍ୟପାଦାର୍ଦ୍ଧଂ ଗଣ୍ଡାନ୍ତଂ ନାମ କୀର୍ତ୍ତ୍ୟତେ ।ଇତି। ୫୭।

ଅଶ୍ଳେଷା, ଜ୍ୟେଷ୍ଠା ଓ ରେବତୀ ନକ୍ଷତ୍ରରେ ସନ୍ଧି ହୋଇଥାଏ ଅର୍ଥାତ୍ ଏ ତିନି ନକ୍ଷତ୍ରର ୪ର୍ଥ ପାଦ ଶେଷରେ ନକ୍ଷତ୍ର ଓ ରାଶି ଗତ ହେବା ସଙ୍ଗେ ସଙ୍ଗେ ଅନ୍ୟ ପରବର୍ତ୍ତୀ ନକ୍ଷତ୍ର ଓ ରାଶିର ଆରମ୍ଭ ହୋଇଯାଏ।

ଏହି ନକ୍ଷତ୍ରମାନଙ୍କର ପର ପର ନକ୍ଷତ୍ରର ପ୍ରଥମ ପାଦାର୍ଦ୍ଧକୁ ଗଣ୍ଡର ଶେଷ କୁହାଯାଇ ଥାଏ।

ଦୃଷ୍ଟ୍ୱା ଲଗ୍ନନବାଂଶକା ଇହ ମୟୋଚ୍ୟନ୍ତେକୁଳୀରେ ଝଷେ
କୀଟେଽନ୍ତ୍ୟା ହରଗୃପମେଷମୃଗଗା ମୀନାଜସମ୍ବନ୍ଧିନଃ ।
ତେ ଗଣ୍ଡାନ୍ତଭସନ୍ଧିପାତସଦୃଶାଃ ସର୍ବେଷୁ କର୍ମସ୍ୱପି
ତ୍ୟାଜ୍ୟା ବିଷ୍ଟିମୁଖାସ୍ତ୍ୱନିଷ୍ଟକରଣା ହୋରାଗମୋକ୍ତାଃ ପୁନଃ ।୪୮।

ରାଶିସନ୍ଧି ଗତ ଦୋଷ ଶୁଭକର୍ମରେ ସର୍ବଥା ତ୍ୟାଜ୍ୟ । କର୍କଟ, ବୃଶ୍ଚିକ ଓ ମୀନରାଶିର ଶେଷ (୯ମ) ନବାଂଶ ମୀନରେ ପଡ଼ିଥାନ୍ତି । ସିଂହ, ଧନୁ ଓ ମୀନର ପ୍ରଥମ ନବାଂଶ ମେଷ ରାଶିରେ ପଡ଼ିଥାଏ । ଏଣୁ ଏହି ସବୁ ନବାଂଶ ଦୋଷଯୁକ୍ତ । ଏହି ନବାଂଶଗୁଡ଼ିକ ଗଣ୍ଡାନ୍ତପରି ରାଶି ଓ ନକ୍ଷତ୍ର ସନ୍ଧିରେ ପଡ଼ୁଥିବାରୁ ସକଳ ଶୁଭକର୍ମରେ ତ୍ୟାଜ୍ୟ । ବିଷ୍ଟି ପ୍ରଭୃତି ଅନିଷ୍ଟକାରକ କରଣ ଆଦି ମଧ୍ୟ ତ୍ୟାଜ୍ୟ । ହୋରା ଶାସ୍ତ୍ରରେ ଏସବୁ ଅନିଷ୍ଟକର ବୋଲି କୁହାଯାଇଛି ।

ପ୍ରାକ୍‌କଳ୍ପେ ଭୁଗ୍ରହାଦସ୍ଥିରଚରସୃଜତଃ ଖାଭ୍ରବେଦାବ୍ଧିବେଦା
ଦିବ୍ୟାବ୍ଦା ଯେ ବ୍ୟତୀୟୁଃ ସରସିଜଜନୁଷଃ ପ୍ରତ୍ୟହଂପର୍ଯ୍ୟୟାଣାମ୍ ।
ତାବତ୍‌କାଳାତ୍‌ପ୍ରବୃତ୍ତେରତରଦନମୁଖାଦ୍ୟାତସୌରାଦ୍ୟସଂଘାଃ
ସୃଷ୍ଟ୍ୟାଦ୍ୟାଃ ସୃଷ୍ଟିକାଳବ୍ୟବକଳନବଶାଦୁକ୍ତପୂର୍ବା ମୟୈତ ।୪୯।

ବ୍ରହ୍ମାଚରାଚରର ସୃଷ୍ଟି କରିବାରେ କଲ୍ପାରମ୍ଭରୁ ୪୭୪୦୦୦ ଦିବ୍ୟବର୍ଷ କଟାଇ ଦେଇଥିଲେ । ଏଣୁ ଏହି ସମୟକୁ ସୃଷ୍ଟିକାଳ ବା ସୃଷ୍ଟିବର୍ଷ କହୁଥାନ୍ତି । ଏହି ସୃଷ୍ଟିବର୍ଷ ଶେଷ ହେବାର ଠିକ୍ ପରଦିନ ଠାରୁ ଗ୍ରହ, ଉଚ୍ଚ, ପାତ ପ୍ରଭୃତିର ଭଗଣାରମ୍ଭ ହୋଇଅଛି । ଏଣୁ ମୁଁ କଳ୍ପ ବର୍ଷରୁ ଏହି ସୃଷ୍ଟିବର୍ଷ ପରିତ୍ୟାଗ କରି ଗ୍ରହସାଧନ କରିବାକୁ ହେବ ବୋଲି ଆଗରୁ କହି ସାରିଛି ।

ସୃଷ୍ଟ୍ୟନ୍ତେ ଚୈତ୍ରଶୁକ୍ଲପ୍ରତିପଦି ଯମକୋଟ୍ୟୁଦ୍‌ଗମେତୀଗ୍ମଭାନୋଃ
ଲଙ୍କାରେ ଯୋଚପାତାଽଖିଳଗଗନଚରାଶ୍ଚକ୍ରବକ୍ତ୍ରେ ନିଯୁକ୍ତାଃ ।
ତସ୍ମାଦ୍‌ଘସ୍ରାବ୍ଦମାସାପମଭଗଣମୁଖା ଯୌଗପଦ୍ୟାତ୍ ପ୍ରବୃତ୍ତାଃ
କିଂଚ ବ୍ରହ୍ମାହରାଦେର୍ଯୁଗମନୁଘଟିକାମାନ୍ମନ୍ୟାନ୍ କିଂଚତ୍ ।୫୦।

ସୃଷ୍ଟି ବର୍ଷର ଠିକ୍ ସମାପ୍ତି ସମୟରେ ଚୈତ୍ରଶୁକ୍ଲ ପ୍ରତିପଦାତିଥିର ଆରମ୍ଭ । ଯମ କୋଟି ପତ୍ତନରେ ସୂର୍ଯ୍ୟର ଉଦୟ ଏବଂ ଲଙ୍କାରେ ରାତ୍ର ଅର୍ଦ୍ଧ । ଏ ଦିନ ରବିବାର । ଏତିକବେଳେ ବ୍ରହ୍ମା ଗ୍ରହ, ଉଚ୍ଚ, ପାତ ଆଦିଙ୍କୁ ସ୍ୱ ସ୍ୱ କକ୍ଷାରେ ଗତି କରିବା ପାଇଁ ମେଷାଦି ବିନ୍ଦୁରେ ଛାଡ଼ି ଦେଇଥିଲେ । ଏଣୁ ଠିକ୍ ଏତିକବେଳୁହିଁ ଦିନ, ମାସ, କ୍ରାନ୍ତି ଓ ଭଗଣ ଆଦିର ପ୍ରବୃତ୍ତି ହେଲା ।

ବ୍ରହ୍ମାଙ୍କ ଦିନରୁ ଏ ସବୁ ଆରମ୍ଭ ହୋଇ ନାହିଁ । ଏଠାରୁ କେବଳ ଘଟୀ, ଯୁଗ ଓ ମନୁ ଆଦିର ଉତ୍ପତ୍ତି ହୋଇଅଛି ।

**ଯେ ପ୍ରୋକ୍ତାଃ ସଦସତ୍‌ଫଳାୟ ଜଗତଃ ଶ୍ରୀବ୍ୟାସପିତ୍ରାଦିଭି**
**ରାଜାଦ୍ୟା ଜଲଦାଃ ସଦାତପତୟୋ ଯୋଗାଃ ସୁଯୋଗାଦୟଃ ।**
**ଭାବାଭାବଜୁଷାମଦୃଷ୍ଟବଶତସ୍ତତ୍‌ଫଳାନାଂ ମୟା**
**କାଦାଚିତ୍କତୟା ନ ତେଽତ୍ର ଗଦିତାସ୍ତ୍ୟକ୍ତାଶ୍ଚ ସିଦ୍ଧାନ୍ତିଭିଃ ।୭୧।**

ବ୍ୟାସପିତା ପରାଶର ପ୍ରଭୃତି ଋଷିମାନେ ଜଗତର ଶୁଭାଶୁଭ ଫଳ ନିମନ୍ତେ ରାଜା, ମନ୍ତ୍ରୀ ଓ ପାଳକ, ଦ୍ରୋଣ ଓ ପୁଷ୍କର ଆଦି ମେଘ; ଆଢ଼କାଧିପତି, ଅଗ୍ନି ବର୍ଷା ଓ ବ୍ୟାଧି ଆଦିର ଯୋଗ, ରାଜଯୋଗ ଓ ଅଧିରାଜଯୋଗାଦିର ବର୍ଣ୍ଣନା କରି ଯାଇଛନ୍ତି । ମାତ୍ର ଏ ସବୁ କେତେ-ବେଳେ କେତେବେଳେ ଫଳ ଦିଅନ୍ତି ଏବଂ କେତେବେଳେ ବର୍ଣ୍ଣିତ ଫଳ ଦିଅନ୍ତି ନାହିଁ । ଏହି ସବୁକଥା ଚିନ୍ତାକରି ମୁଁ ଏହି ସବୁ ସମ୍ବନ୍ଧେ କିଛି ଲେଖି ନାହିଁ । କୌଣସି ସିଦ୍ଧାନ୍ତ ଗ୍ରନ୍ଥରେ ମଧ୍ୟ ଏ ସବୁ କଥା ନାହିଁ ।

**ଯତ୍ସୂର୍ଯ୍ୟେନ୍ଦ୍ୱୋର୍ଭଗଣବିରତିଃ ସ୍ୟାଦ୍‌ଯୁଗେ ତତ୍‌କୃତାଂଶେ**
**ନିଃଶେଷତ୍ୱଂ କ୍ଷିତିଦିନତତେର୍ଦ୍ୱାପରାନ୍ତପ୍ରସିଦ୍ଧାଃ ।**
**ସୃଷ୍ଟେରବ୍ଦା ଯୁଗକୃତଲବେନୋଦ୍ଧୃତାଃ ଶେଷଶୂନ୍ୟା-**
**ସ୍ତସ୍ମାନ୍ନୋକ୍ତସ୍ତପନଶଶିନୋର୍ଦ୍ୱାପରାନ୍ତଧ୍ରୁବୋଽତ୍ର ।୭୨।**

ଗୋଟିଏ ମହାଯୁଗ ଶେଷରେ ସୂର୍ଯ୍ୟ ଓ ଚନ୍ଦ୍ରର ଭଗଣ ପୂର୍ତ୍ତି ହୋଇଥାଏ । ଏହି ମହାଯୁଗ ¼ ଅଂଶରେ ୧୦୮୦୦୦୦ ବର୍ଷରେ ମଧ୍ୟ ସାବନ ଅହର୍ଗଣ ନିରବୟବ ହେଉଅଛି । ଏହାର ସଂଖ୍ୟା ୩୯୪୪୭୯୪୫୭ । ଦ୍ୱାପର ଯୁଗାନ୍ତ ଗତ ସୃଷ୍ଟ୍ୟବ୍ଦ ୧୯୫୫୮୮୦୦୦୦କୁ ମଧ୍ୟ ୧୦୮୦୦୦୦ରେ ହରିଲେ (ଲବ୍ଧି ୧୮୧୧) ଶେଷ ଶୂନ୍ୟ ହୁଏ । ଏହି କାରଣରୁ ଦ୍ୱାପରାନ୍ତରେ ରବି ଓ ଚନ୍ଦ୍ରର ଧ୍ରୁବ କହିବା ଦରକାର ହୋଇ ନାହିଁ । ସେତେବେଳେ ଅହର୍ଗଣ ଓ ରବିଚନ୍ଦ୍ର ଭଗଣର ମଧ୍ୟ ନିରବୟବପରି-ସମାପ୍ତି ହେଉଅଛି ।

**ସୃଷ୍ଟ୍ୟବ୍ଦାନାଂ କଲିଗତସମାନାଂ ଦିନୌଘଃ ସୁମେଳଃ**
**ସ୍ୟାନ୍ମଧ୍ୟାର୍କକ୍ଷିତିଜମୁଖଗତୀବତ୍ ତତ୍‌ପୂର୍ବଘସ୍ରେ ।**
**ତେନୈବାଭ୍ୟୁକ୍ତା ଦିନଗତଯୁତାସ୍ତେ ଧ୍ରୁବାଃ ପଞ୍ଜିକାଦୌ**
**ସୌରେ ତୁଲ୍ୟାଃ କରଣ ଶରଦାଂ ତଦ୍ଦିନାନ୍ୟାରବାରତ୍ ।୭୩।**

ଖ୍ଚନ୍ଦ୍ରେ ବାରେ ବ୍ୟରଚ କରଣାବ୍ଦାବଗ୍ରାଦ୍ୟାତଥ୍ୟର୍ଯା
ସା ବୈଶାଖେ ଯଦପି ମଲନେ ସୃଷ୍ଟ୍ୟସୂର୍ଯ୍ୟେନ୍ଦୁକେଃଭୂତ୍ ।
ମଧ୍ୟାର୍କେନ୍ଦୂଦ୍ଭବମଲନମାସସ୍ୟ ପୂର୍ବଂ ଗତତ୍ୱା—
ତସ୍ୟାଃ ଖେଟଧ୍ରୁବସମୁଚତଃ ଶୁଦ୍ଧଚୈତ୍ରାଦଭ୍ୱବଃ ।୭୪।

ଏତତ୍‌ପୂର୍ବଂ ସପଦକୃତଦେବାର୍ଥଭୂଧୃତ୍ୟ ହୋଭି—
ର୍ଯା କଲ୍ୟାଦୌ ମଧୁମୁଖତଥିସ୍ତୁଲ୍ୟମଧ୍ୟେନ୍ଦ୍ୱିନୋତ୍‌ଥା ।
ପ୍ରାଗ୍‌ଭିଃ ପ୍ରୋକ୍ତା ଧ୍ରୁବଗଣଯୁତା ସା ସ୍ଫୁଟେ ମାଧବେଃଭୂ-
ତତ୍ ଖେଟାଦଧ୍ରୁବନଗମନେ ମଧ୍ୟମଧ୍ୟାଦରଷ୍ଟଃ ।୭୫।

ମଧ୍ୟମସୂର୍ଯ୍ୟ ମେଷାଦ୍ଦିରେ ପ୍ରବେଶ କରିବାବେଳେ (ଦିନରେ) ସୃଷ୍ଟ୍ୟାଦିଠାରୁ ଦ୍ୱାପରାନ୍ତ ଗତବର୍ଷ ୧୯୫୫୮୮୦୦୦୦ର ଏବଂ କଳି ଗତବର୍ଷ (କରଣାବ୍ଦର ଆରମ୍ଭ ପର୍ଯ୍ୟନ୍ତ କଳିର ଗତାବ୍ଦ ସଂଖ୍ୟା) ୪୯୭୦ର ଅହର୍ଗଣ ଯଥାକ୍ରମେ ୭୧୪୪୦୨୨୯୬୬୨୭ ଓ ୧୮୧୫୩୩୪-ରେ ମେଳ ଭଲ ଭାବରେ ରହୁଅଛି । (ଟିପ୍‌ପଣୀ ଦେଖ) ଉଭୟ ଅହର୍ଗଣରେ ବାର ଶୁଦ୍ଧି ଠିକ୍ ରହୁଅଛି ।

କରଣାବ୍ଦ ଆରମ୍ଭ ମଧ୍ୟମ ରବି ବର୍ଷାନ୍ତ ଦିନର ପୂର୍ବଦିନ ମଧ୍ୟମମାନରେ ଚୈତ୍ରଶୁକ୍ଳ ପ୍ରତିପ୍ରଦା ଥିଲା । ସେ ଦିନ ଯେଉଁ ଧ୍ରୁବାଦି କୁହାଯାଇଛି ସେଥିରେ ଦିନ ଗତି ( ଗ୍ରହର ଦୈନିକ ଗତି )ମିଶାଇଲେ ପଞ୍ଜିକାଦିରେ ତାହା ସୂର୍ଯ୍ୟ ସିଦ୍ଧାନ୍ତୀୟ ମଧ୍ୟମ ଗ୍ରହ ଧ୍ରୁବର ସମାନ ହେବ । କରଣାବ୍ଦ ଅହର୍ଗଣର ବାରାଦି ମଙ୍ଗଳବାରରୁ ଗଣାଯିବ ।

ସୋମବାରରେ କରଣାବ୍ଦର ପୂର୍ବ ଦିନର ଆରମ୍ଭ କଳ୍ପନା ମୁଁ କରିଅଛି । ଏହି ଦିନ ଚୈତ୍ର ଶୁକ୍ଳ ପ୍ରତିପଦା ଥିଲା । ଏହି ପ୍ରତିପଦା ମଧ୍ୟ ସ୍ପଷ୍ଟମାନରେ ବୈଶାଖ ଅଧିମାସରେ ଘଟିଥିଲା । ଏହି କରଣାବ୍ଦ ଆରମ୍ଭ ଦିନର ପୂର୍ବରୁ ମଧ୍ୟମମାନରେ ବୈଶାଖ ଅଧିମାସ ଚାଲିଯାଇ ଥିବାରୁ ଏହି ଚୈତ୍ର ପ୍ରତିପଦା ବିଶୁଦ୍ଧ ହୋଇ ପଡ଼ିଲା ଏବଂ ଏଥିନିମନ୍ତେ ଏହି ଶୁଦ୍ଧ ଶୁକ୍ଳ ପ୍ରତିପଦା ସୋମବାର ଦିନ ଗ୍ରହପାତ ଆଦିର ଧ୍ରୁବ କଥନ ନିମନ୍ତେ ଅତି ଉପଯୁକ୍ତ ହୋଇଅଛି ।

କରଣାବ୍ଦ ଆରମ୍ଭର ଦି୧୮୧୫୩୩ । ୧୫ନ ପୂର୍ବେ କଳିଯୁଗାରମ୍ଭ ଲଙ୍କାର ଅର୍ଦ୍ଧ-ରାତ୍ରରେ ହୋଇଥିଲା । ଏତେବେଳେ ମଧ୍ୟମମାନରେ ଆଣିଥିବା ଚୈତ୍ରଶୁକ୍ଳ ପ୍ରତିପଦା ପଡ଼ି-ଥିବାର ପ୍ରାଚୀନମାନେ କହିଯାଇଛନ୍ତି । ତାହା ପୁଣି ଏବେ କରଣାବ୍ଦ ଆରମ୍ଭ ଦିନ ସ୍ପଷ୍ଟ-ମାନରେ ବୈଶାଖରେ ପଡ଼ୁଛି । ଏହି ଚୈତ୍ରଶୁକ୍ଳ ପ୍ରତିପଦା ଆଣିବା ନିମନ୍ତେ ଦ୍ୱାପରାନ୍ତ ଧ୍ରୁବ ଯୋଗ କରିବା ଦରକାର ହୋଇଅଛି । ଏଥିରୁ ଜଣାପଡୁଛି ଯେ ଗ୍ରହ, କ୍ଷେତ୍ର ପାତାଦିର ଧ୍ରୁବ କହିବା ନିମନ୍ତେ, ମଧ୍ୟ ଓ ସ୍ପଷ୍ଟକାଳର ଅପେକ୍ଷା କରିବାକୁ ହେବ ।

କଲ୍ୟବ୍ଦାବେଦକୃତଖଗୁଣୈ ର୍ଭୁକତା ବଙ୍ଗମାବ୍ଦା
ସ୍ତେ ଶକାବ୍ଦାଃ ଶରଗୁଣକୁଭିସ୍ତେଭ୍ୟୁପକ୍ଷାଭ୍ରଚନ୍ଦ୍ରୈଃ ।
ଶାସ୍ତ୍ରାବ୍ଦାସ୍ତେଽପି ଚ ବଧୁଶରୈର୍ଭାସ୍କରୀୟାବ୍ଦକାଃ ସ୍ୟୁ-
ସ୍ତେନାଗେନ୍ଦ୍ରୈରଭୂତଜଗୈଃ କୌଚନାଦାର୍ପଣାବ୍ଦାଃ ।୭୬।

କଳିର ଗତ ବର୍ଷରୁ ୩୦୪୪ ବର୍ଷ ବାଦ୍ ଦେଲେ ବର୍ତ୍ତମାନ ବଙ୍ଗାବ୍ଦ ହେବ । ବଙ୍ଗାବ୍ଦରୁ ୧୩୫ ବର୍ଷ ଅନ୍ତର କଲେ ଶକାବ୍ଦ ହେବ । ଶକାବ୍ଦରୁ ୧୦୨୧ ବର୍ଷ ବାଦ୍ ଦେଲେ ଶାସ୍ତ୍ରାବ୍ଦ ହେବ ।ଶାସ୍ତ୍ରାବ୍ଦରୁ ୫୧ ବର୍ଷ ବାଦ୍ ଦେଲେ ଭାସ୍କରାବ୍ଦ ହେବ । ଭାସ୍କରାବ୍ଦରୁ ୧୪୮ ବର୍ଷ ବାଦ୍ ଦେଲେ କୁଚନାବ୍ଦ ଓ ସେହି ଭାସ୍କରାବ୍ଦରୁ ୭୧୯ ବର୍ଷ ବାଦ୍ ଦେଲେ ଦର୍ପଣାବ୍ଦ ହେବ ।

ଯସ୍ମିନ୍ ଖେଟାନୟନମୁଦିତଂ ସୃଷ୍ଟିଜାଦ୍ଦର୍ଗଣେଭ୍ୟଃ
ସିଦ୍ଧାନ୍ତୋଽସୌ ଯୁଗଦିନଗଣାଦ୍ୟତ୍ର ତନ୍ତ୍ରଂତଦେବ ।
ଯସ୍ମିନ୍ଶାକାଦ୍ୟଭିମତସମା ବାସରେଭ୍ୟସ୍ତଦୁକ୍ତଂ
ଶାସ୍ତ୍ରଂପ୍ରାଜ୍ଞୈଃ କରଣମିତ ତତ୍କାର୍ଯ୍ୟମତ୍ରାସ୍ତି ସର୍ବମ୍ ।୭୭।

ଯେଉଁଥିରେ ସୃଷ୍ଟ୍ୟାଦ ଅହର୍ଗଣରୁ ଗ୍ରହାନୟନ କରାଯିବା ବର୍ଣ୍ଣିତ ଥାଏ ତାହାକୁ ସିଦ୍ଧାନ୍ତ କହନ୍ତି । ଯୁଗାଦ ଅହର୍ଗଣରୁ ଯେଉଁ ଗ୍ରନ୍ଥରେ ଗ୍ରହାନୟନ ବର୍ଣ୍ଣିତ ତାହା ତନ୍ତ୍ର । ଶକାବ୍ଦ ଓ ଅନ୍ୟ ଅନ୍ୟ ବର୍ଷ ଯୋଗେ ଅହର୍ଗଣ ସାଧନ କରି ସେଥିରୁ ଗ୍ରହ ଆଣିବା ପ୍ରଣାଳୀ ଯେଉଁଥିରେ ବର୍ଣ୍ଣିତ ତାହାକୁ ପଣ୍ଡିତମାନେ କରଣ ବୋଲି କହିଥାଆନ୍ତି । ଅନ୍ୟ ସବୁ ବର୍ଷ ଇଚ୍ଛା ଅନୁସାରେ ନିଆ ଯାଇଥାଏ ।

ଏହି ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥରେ ଏହି ତିନୋଟିଯାକ କଥା ରହିଅଛି । ତେଣୁ ଏହାକୁ ଏକାଧାରରେ ସିଦ୍ଧାନ୍ତ, ତନ୍ତ୍ର ଓ କରଣ ଗ୍ରନ୍ଥ କୁହାଯାଇପାରିବ ।

ନୃଣାଂ ପାପଂ ଦଶଦିନକୃତଂ ହନ୍ତି ସିଦ୍ଧାନ୍ତ-ବେତ୍ତା
ଦୃଷ୍ଟଃ ସଦ୍ୟସ୍ତ୍ରିଦିନ-ଜନିତଂ ତନ୍ତ୍ରବେତ୍ତା ନିହନ୍ତି ।
ଏକାହୋତ୍ଥଂ କରଣକପୁଣୋ ଯସ୍ତୁଶାସ୍ତ୍ରାନଭିଜ୍ଞଃ
କାଳଂ ବ୍ରୂତେ ବହୁବୃଜିନଦଃ ସୋଽତ୍ର ନକ୍ଷତ୍ରସୂଚୀ ।୭୮।

ସିଦ୍ଧାନ୍ତୀଙ୍କ ଦର୍ଶନ ଲୋକର ଦଶ ଦିନର ପାପ ନାଶ କରେ । ତନ୍ତ୍ରଜ୍ଞଙ୍କ ଦର୍ଶନ ସେହିପରି ତିନଦିନର ପାପ ନାଶ କରେ । କରଣ ଗ୍ରନ୍ଥଜ୍ଞ ଗୋଟିଏ ମାତ୍ର ଦିନର ପାପ ନାଶ କରିଥାଏ ।

ଜ୍ୟୋତିଷ ଶାସ୍ତ୍ରରେ ଅନଭିଜ୍ଞ ହୋଇ ଯେଉଁ ଲୋକ କାଳ କଥା (ବାର, ତିଥି ଆଦି ଜ୍ୟୋତିଷ କଥା ) କହେ ତାହାକୁ ନକ୍ଷତ୍ର ସୂଚୀ କହନ୍ତି । ଏହି ଲୋକଙ୍କୁ ଦେଖିଲେ ପାପ ବହୁତ ବଢିଯାଏ ।

ଚନ୍ଦ୍ରଂ ମନ୍ଦାତ୍ତ୍ରିଭସମଧିକଂ ପ୍ରେକ୍ଷ୍ୟପକ୍ଷାର୍ଦ୍ଧସିଦ୍ଧଂ
ଦ୍ୱିତ୍ର୍ୟଂଶାଢ୍ୟା ଯଦଜହ ଗତତା ଭଧ୍ରୁବା ଭସ୍କରାଦ୍ୟୈଃ ।
ତତ୍ସ୍ୱୈଃଜାଦସ୍ତିତରପି ପୃଥକ୍ସମ୍ମତା ଯତ୍ରଆଦ୍ୟେ-
ରପ୍ରାମାଣ୍ୟାତ୍ତଦଖିଳମୁପାଦତ୍ତନୋ ବତ୍ତମାତ୍ର୍ୟାଃ ।୭୯।

ହେ ଶ୍ରେଷ୍ଠ ବିଦ୍ୱାନମାନେ, ଭାସ୍କର ପ୍ରଭୃତି ଜ୍ୟୋତିଷୀମାନେ ପକ୍ଷାର୍ଦ୍ଧରେ ସ୍ଫୁଟଚନ୍ଦ୍ରକୁ ଶନି (ରାଶି) ଠାରୁ ତିନରାଶି ଅଧିକ ହେବା ଦେଖି ତାଙ୍କ ସିଦ୍ଧାନ୍ତ ଗଣିତ (ଶିରୋମଣି)ରେ ନକ୍ଷତ୍ର ଧ୍ରୁବରେ ୨।୩ ଅଂଶ ଯୋଗକରି ଦେଇଛନ୍ତି ଅର୍ଥାତ୍ ସେ ନିଜେ ଗ୍ରହସ୍ଫୁଟ କରି ପ୍ରତ୍ୟକ୍ଷ କରି ନାହାନ୍ତି । ଅନ୍ୟ କେତେକ ଜ୍ୟୋତିଷୀ ରାଶି ଚକ୍ରରେ (କ୍ରାନ୍ତି ବୃତ୍ତରେ) ମେଷ ଆଦ୍ୟ ବିନ୍ଦୁକୁ ଭିନ୍ନ ଭାବରେ (ଭିନ୍ନ ସ୍ଥାନରେ) ସ୍ୱୀକାର କରୁଅଛନ୍ତି । ମାତ୍ର ଏ ସବୁକୁ ପ୍ରମାଣ ଅଭାବରୁ ମୁଁ ଆଦୌ ଗ୍ରହଣ କରୁନାହିଁ ।

କୈଶ୍ଚିଦ୍ ପ୍ରୋକ୍ତଂ କମଳଜନୁଷଃ ସ୍ୱାୟୁଷୋଽର୍ଦ୍ଧଂ ବ୍ୟତୀତଂ
କୈରପ୍ୟେତତ୍ ପ୍ରତନମୁନିଭିଃ ସାର୍ଦ୍ଧବର୍ଷାଷ୍ଟକାଢ୍ୟମ୍ ।
ତତ୍କୈଶ୍ଚିତ୍ସ୍ୱା ଭବତୁ ନ ତତଃ କୋଽପି ଲୋକୋପଯୋଗଃ
କଳ୍ପସ୍ୟାସ୍ୟ ଦ୍ୟୁଚରଗଣିତଂ ସ୍ୟାଦଦଂ ତନ୍ମୁଦେବଃ ।୮୦।

କେହି କେହି କହନ୍ତି ବର୍ତ୍ତମାନ ବ୍ରହ୍ମାଙ୍କର ପରମାୟୁରୁ ଅଧା କଟି ଗଲାଣି । ଅନ୍ୟମାନଙ୍କ ମତରେ ବ୍ରହ୍ମାଙ୍କର ବର୍ତ୍ତମାନ ବା୮୍ୟର୍ଷ ମାତ୍ର ଶେଷହୋଇ ଅଛି । ଏମତ ସବୁ କେତେକ ବଶିଷ୍ଟ ଋଷିଙ୍କର । ଏତନ୍ମଧ୍ୟରୁ ଯେ କୌଣସି ମତଟି ଠିକ୍ ହେଲେ ମଧ୍ୟ ସେଥିରୁ କୌଣସି ଲୋକୋପକାର ହେଉନାହିଁ । ବର୍ତ୍ତମାନ କଳ୍ପର ଏ ଯେଉଁ ଗ୍ରହଗଣିତ କଥା କୁହାଗଲା ତଦ୍ଦ୍ୱାରା ଆପଣମାନଙ୍କର ଆନନ୍ଦ ହେଲେ ହେଲା ।

ଯଦ୍ୟେପ୍ୟକ୍ତା ମେ ନିଜଭଜନତୋ ଦୂରମୁତ୍ସାର୍ଯ୍ୟ ବୁଦ୍ଧିଂ
ଦୈବାଧୀନାଂ ଗଣିତବ୍ରପଣୀ ପାତୟନ୍ତ୍ୟାତତାୟ୍ୟାମ୍ ।
ସଂଖ୍ୟାତୀତାନ୍ ଗତପତତୋଦ୍ଧାରକାରୁଣ୍ୟସିନ୍ଧୁଃ
ସ୍ୱ ସ୍ୟାଚ୍ଛେତଃ ଶରଣଚରଣଶ୍ଚ ସିନ୍ଧୁଜାପ୍ରାଣବନ୍ଧୁଃ ।୮୧।

ମୁଁ ସବୁବେଳେ ବିଷ୍ଣୁ ଭଜନ କରିବାକୁ ଭଲପାଏ । ମାତ୍ର ଯାହାର ଇଚ୍ଛା ମୋତେ ଭଜନରୁ ଟାଣିଆଣି ମୋ ବୁଦ୍ଧିକୁ ବିସ୍ତୃତ ଗଣିତ ବଜାରରେ ଠେଲପେଲ ପୂରାଇ ଦେଉଛି ଏବଂ ମୁଁ ଭାବୁଛି ଯେ ମୋର ଏ ବୁଦ୍ଧି ମଧ୍ୟ ଦୈବାଧୀନ ହୋଇ କାର୍ଯ୍ୟ କରୁଛି ପଛେ ମୋ କଥା ମାନୁନାହିଁ, ସେହି କୃପାସିନ୍ଧୁ ସମୁଦ୍ର ତନୟା ଲକ୍ଷ୍ମୀଙ୍କର ପ୍ରାଣବନ୍ଧୁଙ୍କ ଚରଣଯୁଗଳ ମୋର ଏହି ବୁଦ୍ଧିର ଆଶ୍ରୟସ୍ଥଳ ହେଉ । କାରଣ ସେହି ପ୍ରଭୁ ଜଗନ୍ନାଥ ଅସଂଖ୍ୟ ଅନୁଗତ ପତିତମାନଙ୍କୁ ଉଦ୍ଧାର କରିବାରେ ଦୟାର ସମୁଦ୍ରସାଜ ଦୟା ପ୍ରଦର୍ଶନ କରିଅଛନ୍ତି ।

ଇତ୍ୟୁତ୍କଳୋତ୍କଳନୃପାଳକୁଳପ୍ରସୂତ ।
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଲବୋଧେ
ଯାତଃ ସପାତ ଇହ ପଞ୍ଚଦଶଃ ପ୍ରକାଶଃ ।୭୬।

ସିଦ୍ଧାନ୍ତ ଦର୍ପଣର ୧୫ଶ ପ୍ରକାଶ ଏଠାରେ ଶେଷ ହେଲା । ଏଥିରେ ପାତର ଆଲୋଚନା ହୋଇଅଛି ।

ଇତମୁଦିତସୁଧୀରେଶୁଦ୍ଧସିଦ୍ଧାନ୍ତପୂର୍ବେ
ନୟନନବଷୟସିଦ୍ଧବ୍ୟୋମଗେ ଦର୍ପଣେଽସ୍ମିନ୍ ।
ତ୍ରିଭିରଦମଧିକାରୈଃ ପଞ୍ଚଭୂଭିଃ ପ୍ରକାଶୈ-
ର୍ଗ୍ରହଗଣିତ ସମାଖ୍ୟଂ ପୂର୍ବମର୍ଦ୍ଧଂ ସମାପ୍ତମ୍ ।୭୭।

ତିନ ଅଧିକାରରେ ୧୫ଟି ପ୍ରକାଶ ରହି ସିଦ୍ଧାନ୍ତଦର୍ପଣ ଗ୍ରନ୍ଥର ଗ୍ରହଗଣିତ ନାମକ ଏହି ପୂର୍ବାର୍ଦ୍ଧ ବର୍ତ୍ତମାନ ଶେଷ ହେଲା । ଏଥିରେ ବର୍ଣ୍ଣିତ ଗ୍ରହଗୁଡ଼ିକ ଦୃକ୍‌ସିଦ୍ଧ ! ଏଣୁ ବୁଦ୍ଧି-ମାନ୍ ଲୋକଙ୍କର ଏହା ତୋଷପ୍ରଦ ହେବ ।

ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ
ତ୍ରିପ୍ରଶ୍ନାଧିକାରେ ମହାପାତ ବର୍ଣ୍ଣନୋ ନାମ
ପଞ୍ଚଦଶଃ ପ୍ରକାଶଃ ।୧୫।

ଇତି ମହାପାତ ବର୍ଣ୍ଣନ ।

# ଷୋଡ଼ଶଃ ପ୍ରକାଶଃ

## ଗୋଳାଧିକାରଃ

---

### ପ୍ରଶ୍ନବର୍ଣ୍ଣନମ୍

ଯତ୍ପାଦାମ୍ବୁରୁହପ୍ରସକ୍ତହୃଦୟା ବ୍ରହ୍ମାଦୟୋଽନାସ୍ଥୟା
କାଲେଽନ୍ୟେ ଚ ନୈକସାମ୍ୟବରହାତ୍ତଦ୍ବୃତ୍ତି ଗାୟନ୍ ବା
ଶିଷ୍ୟପ୍ରଶ୍ନବଶାଦସୂକ୍ଷ୍ମବଚସା ସିଦ୍ଧାନ୍ତଜାତଂ ଜଗୁଃ
ସର୍ବଜ୍ଞା ଅପି ମାଦୃଶା ଇବ ନମସ୍ତସ୍ମୈ ଜଗତ୍ସ୍ୱାମିନେ ।୧।

ଜଗତର ସ୍ୱାମୀ ଜଗନ୍ନାଥଙ୍କୁ ମୁଁ ନମସ୍କାର କରୁଅଛି । ତାଙ୍କର ଚରଣରେ ଲଗ୍ନ ରଖି ବ୍ରହ୍ମା ବଶିଷ୍ଠାଦ ସିଦ୍ଧାନ୍ତୀମାନେ ସମୟ କ୍ରମରେ (ପୂର୍ବ ପୂର୍ବ ସିଦ୍ଧାନ୍ତରେ ଅନାସ୍ଥା ଆସିଯିବାରୁ ଏବଂ ଅନ୍ୟ ସିଦ୍ଧାନ୍ତ ଗ୍ରନ୍ଥର ଗଣନା ଦୃକ୍‌ସିଦ୍ଧ ନ ହେବାରୁ ସେ ଗୁଡ଼ିକରେ ଅନାଦର କରି) ଅନେକ ସିଦ୍ଧାନ୍ତ ଗ୍ରନ୍ଥ ପ୍ରଣୟନ କରିଗଲେ ଏବଂ ଶିଷ୍ୟମାନଙ୍କର ପ୍ରଶ୍ନର ଯଥାଯଥ ଉତ୍ତର ଦେଇଗଲେ । ଏମାନେ ସର୍ବଜ୍ଞ ଥିଲେ ମଧ୍ୟ ମୋର ପରି ଶ୍ରେଷ୍ଠ ଶ୍ରେଷ୍ଠ ସିଦ୍ଧାନ୍ତ ଗ୍ରନ୍ଥ ସବୁ ରଚନା କରିଛନ୍ତି ।

ଯଶ୍ଚକ୍ଷୁର୍ଗ୍ରହଣାତଶୋଽପି ଗଗନେ ଗୃହ୍ନନ୍ ଗ୍ରହାଣାଂ ଗଣଂ
ଭୂଗୋଲଂ ପରିଗଚ୍ଛତ ଗ୍ରହପତିଃ ସର୍ବାଗ୍ରିମୋମଧ୍ୟମଃ
ଲୋକାଲୋକବଶୋକତାବନକୃତେ ସ୍ପଷ୍ଟତ୍ରୟୀମୂର୍ତ୍ତିମାନ୍
ଯଶ୍ଚକ୍ଷୁର୍ଜଗଦାତ୍ମନୋ ଭଗବତସ୍ତସ୍ମୈ ସବିତ୍ରେ ନମଃ ।୨।

ମଧ୍ୟମ ସୂର୍ଯ୍ୟ ଦୃଷ୍ଟି ଶକ୍ତିର ଅଗୋଚ ହେଲେ ମଧ୍ୟ ସର୍ବପ୍ରଥମ ଏବଂ ଗ୍ରହରାଜ । ସେ ଅନ୍ୟ ଗ୍ରହମାନଙ୍କୁ ନେଇ ଆକାଶରେ ଭୂଗୋଲକୁ ପରିଭ୍ରମଣ କରନ୍ତି । ସେ ସଂସାରର ଆଲୋକ ଓ ସୁଖ ଦାତା ହେତୁ ଏ ଦୁଇଟିର ରକ୍ଷକ ରୂପରେ ବ୍ୟକ୍ତ । ଏହି ସୂର୍ଯ୍ୟ ପୁଣି ବେଦରୂପୀ ଏବଂ ତିନି ବେଦଯାକ ସୂର୍ଯ୍ୟଙ୍କର ହିଁ ସ୍ତୁତି କରନ୍ତି । ମୁଁ ମଧ୍ୟ ଏହି ସୂର୍ଯ୍ୟଙ୍କୁ ପ୍ରଣାମ କରୁଅଛି । ସୂର୍ଯ୍ୟ ବିଶ୍ୱରୂପୀ ଭଗବାନଙ୍କର ଚକ୍ଷୁରୂପ ଅଟନ୍ତି ।

ପ୍ରାକ୍‌ସିଦ୍ଧାନ୍ତଚୟଂ ପ୍ରମାୟ୍ୟ ନୟ୍ୟନାକର୍ହଂ ମହାର୍ହାକ୍ଷରଂ
ଯଃ ସିଦ୍ଧାନ୍ତଶିରୋମଣିଂ ପ୍ରଣିଗଦନ୍ନ୍ପ୍ରୀଣୟ୍ୟତ୍ପ୍ରାଣିନଃ ।
ଆତ୍ମୀୟ୍ୟାବସରପ୍ରଣୀତଭଗଣପ୍ରତ୍ୟକ୍ଷିତୈଃ ଖେଚରୈ—
ରସ୍ମାକୀନମହୋପକାର—କୃତନଂ ବନ୍ଦେ ଗୁରୁଂ ଭାସ୍କରମ୍ ।୩।

ଅତି ମୂଲ୍ୟବାନ୍ ଓ ଅତ୍ୟନ୍ତ ପ୍ରାଚୀନ ସିଦ୍ଧାନ୍ତକୁ ଦୃକ୍‌ସିଦ୍ଧ ହେଉ ନଥିବାର ପ୍ରମାଣ କରି ଭାସ୍କରାଚାର୍ଯ୍ୟ ସିଦ୍ଧାନ୍ତ ଶିରୋମଣି ରଚନା କଲେ । ସେ ନିଜ ସମୟରେ ଗ୍ରହମାନଙ୍କୁ ପ୍ରତ୍ୟକ୍ଷ କରି ସେମାନଙ୍କର ଭଗଣାଦି ଲେଖି ଦେଇ ଯାଇ ଅଛନ୍ତି । ଏହା କରିବାଦ୍ୱାରା ସେ ସାଧାରଣ ଲୋକଙ୍କୁ ଯେପରି ଆନନ୍ଦ ଦେଇ ପାରିଛନ୍ତି, ମୋର ମଧ୍ୟ ସେହିପରି ମହାଉପକାର କରି ଅଛନ୍ତି । ମୋର ସେ ଗୁରୁ ଓ ମୁଁ ତାଙ୍କର ବନ୍ଦନା ଏଠାରେ କରୁଅଛି ।

ମହଃ କାଂଚନ୍ନୀଳାଚଳନିଳୟିଲୀଳାକୃତଜଗତ୍
ଜଗନ୍ନାଥାଖ୍ୟଂ ତନ୍ମନସି ବିନିଧାୟ୍ୟା-ଘନିଧନମ୍ ।
ତଦୀୟ୍ୟାନୁକ୍ରୋଶାଦ୍ ଗ୍ରହଗଣିତମାଖ୍ୟାୟ୍ୟରଭସା—
ଦହଂ ବ୍ରୁବେ ପୂର୍ବୈରୁତମତତଂ ଗୋଲଗଣିତମ୍ ।୪।

ନୀଳାଦ୍ରିବିହାରୀ ପାପନାଶକାରୀ ଜଗନ୍ନାଥ ରୂପକ ତେଜକୁ ମୁଁ ହୃଦୟରେ ଧ୍ୟାନ କରୁଅଛି । ତାଙ୍କର ଖେଳଘର ଏ ସଂସାର । ତାଙ୍କର ଅନୁଗ୍ରହରୁ ଗ୍ରହ ଗଣିତ ଲେଖାସାରି ମୁଁ ବର୍ତ୍ତମାନ ଗୋଲଗଣିତ ଲେଖା ଆରମ୍ଭ କରୁଅଛି । ପ୍ରାଚୀନ ସିଦ୍ଧାନ୍ତୀମାନେ ଅତି ବିସ୍ତୃତ ଭାବରେ ଏହି ଗୋଲ କଥା କହିଅଛନ୍ତି । ଏକଥା ବର୍ଣ୍ଣନା କରିବାକୁ ମୋର ମନରେ ଆନନ୍ଦ ମଧ୍ୟ ଜାତ ହେଉଅଛି ।

ସିଦ୍ଧାନ୍ତଜାତୋଦ୍ଧୃତବାକ୍ୟଚକ୍ରସନ୍ଦର୍ଭିତାମ୍ନ ଗ୍ରଥିତାଗ୍ର୍ୟପଦୈ୍ୟଃ
ଗୋଲଂ ବ୍ରୁବେ ବାଳବିବୋଧନାୟ୍ୟ ବାଚଂ ପୁରସ୍କୃତ୍ୟ ଚ ଭାସ୍କରୀୟ୍ୟାମ୍ ।୫।

ଗୋଲଗଣିତ ଜାଣି ନ ଥିବା ଲୋକେ ଯେପରି ସୁବିଧାରେ ତାହା ବୁଝି ପାରିବେ ସେଥିପାଇଁ ଭାସ୍କରାଚାର୍ଯ୍ୟଙ୍କ ବଚନ ଉଦ୍ଧାର କରି ଗୋଲଗଣିତ କହୁଅଛି । ଏଥିରେ ପ୍ରାଚୀନ ଅନ୍ୟାନ୍ୟ ସିଦ୍ଧାନ୍ତର ବାକ୍ୟାବଳୀ ମଧ୍ୟ ଅଛି । ମୋର ନିଜର ଅନେକ ଭଲ ରଚନା ମଧ୍ୟ ରହିଛି, ଯେଉଁଗୁଡ଼ିକ ପ୍ରାଚୀନ ସିଦ୍ଧାନ୍ତ ପଢ଼ିବା ଯୋଗେ ହୋଇପାରିଛି । ମୋଟ ଉପରେ ଅତି ଭଲ ଭାବରେ ମୁଁ ଗୋଲାଧ୍ୟାୟ ବର୍ଣ୍ଣନା କରିବାର ପ୍ରୟାସ କରୁଅଛି ।

ସିଦ୍ଧାନ୍ତ ଶିରୋମଣୀ:—

ମଧ୍ୟାଦ୍ୟଂଦ୍ୟୁଷଦାଂ ଯଦତ୍ର ଗଣିତଂ ତସ୍ୟୋପପତ୍ତିଂ ବିନା
ପ୍ରୌଢ଼ିଂ ପ୍ରୌଢ଼ସଭାସୁ ନୈତି ଗଣକୋ ନିଃସଂଶୟୋ ନ ସ୍ୱୟମ୍।
ଗୋଲେ ସା ବିମଳା କରାମଳକବତ୍ପ୍ରତ୍ୟକ୍ଷତୋ ଦୃଶ୍ୟତେ
ତସ୍ମାଦସ୍ମ୍ୟୁପପତ୍ତିବୋଧବିଧୟେ ଗୋଲପ୍ରବନ୍ଧୋଦ୍ୟତଃ ।୬।

ଗ୍ରହମାନଙ୍କର ମଧ୍ୟ ସ୍ପୁଟ ଆଦି ଯେଉଁ ଗଣିତ ଜ୍ୟୋତିଷରେ ଅଛି ସେଗୁଡ଼ିକର ବାସ୍ତବଯୁକ୍ତି ଜାଣି ନ ପାରିଲେ ଗଣକ ବିଦ୍ୱତ୍ ସମାଜରେ ପ୍ରତିପତ୍ତି ପାଇପାରେ ନାହିଁ । ସେ ସବୁ ବିଷୟରେ ନିଜେ ମଧ୍ୟ ସନ୍ଦେହ ମୁକ୍ତ ହୋଇପାରେ ନାହିଁ । ଗୋଲରେ ଏହି ଯୁକ୍ତି ଗୁଡ଼ିକ ଅତି ସ୍ପଷ୍ଟ ଭାବରେ ଜଣା ପଡ଼ିଯାଏ, ଯେପରି ହାତରେ ଥିବା ଅଁଳା କୋଳିର କୌଣସି ଅଂଶ ନ ଦେଖି ଲୋକ ରହିପାରେ ନାହିଁ । ମୁଁ ସେଥିନିମନ୍ତେ ଏହି ସବୁ ଯୁକ୍ତି ବୁଝାଇ ଦେବା ଉଦ୍ଦେଶ୍ୟରେ ଗୋଲଗ୍ରନ୍ଥ ରଚନା କରୁଅଛି ।

ଭୋଜ୍ୟଂ ଯଥା ସର୍ବରସଂ ବିନାଜ୍ୟଂ ରାଜ୍ୟଂ ଯଥା ରାଜବିବର୍ଜିତଂ ଚ
ସଭା ନ ଭାତୀବ ସୁବକ୍ତୃହୀନା ଗୋଲାନଭିଜ୍ଞୋ ଗଣକସ୍ତଥୈବ ।୭।

ଯେପରି ସମସ୍ତ ରସ ପରିପୂର୍ଣ୍ଣ ଭୋଜ୍ୟ ସାମଗ୍ରୀ ଘୃତହୀନ ହେଲେ ଭଲ ହୁଏ ନାହିଁ, ରାଜା ନ ଥାଇ ରାଜ୍ୟର ମହତ୍ତ୍ୱ ନାହିଁ, ଭଲ ବକ୍ତା ନ ଥିଲେ ସଭା ସୁନ୍ଦର ଦେଖାଯାଏ ନାହିଁ, ଠିକ୍ ସେହିପରି ଗୋଲଜ୍ଞାନ ବିବର୍ଜିତ ଗଣକ ଅକାମୀ ମନେହୁଏ ।

ବାଗ୍ମୀ ବ୍ୟାକରଣଂବିନୈବ ବିଦୁଷାଂ ଧୃଷ୍ଟଃ ପ୍ରବିଷ୍ଟଃ ସଭାଂ
ଜଳ୍ପନ୍ନଳ୍ପମତଃ ସ୍ମୟାତ୍ ପଟୁବଟ ଭ୍ରୂଭଙ୍ଗ—ବକ୍ରୋକ୍ତିଭିଃ ।
ହ୍ରୀତଃ ସନ୍ନୁପହାସମେତି ଗଣକୋ ଗୋଲାନଭିଜ୍ଞସ୍ତଥା
ଜ୍ୟୋତିର୍ବିତ୍ସଦସି ପ୍ରଗଲ୍ଭଗଣକପ୍ରଶ୍ନପ୍ରପଞ୍ଚୋକ୍ତିଭିଃ ।୮।

ବୁଦ୍ଧିହୀନ କୌଣସି ଧୂର୍ତ୍ତ ବକ୍ତା ବ୍ୟାକରଣ ଜ୍ଞାନ ନ ଥାଇ ସଭାରେ ପଶି ଏଣୁ ତେଣୁ ଗୁଡ଼ାଏ ବକୁ ବକୁ ଦକ୍ଷ ବିଦ୍ୱାନମାନଙ୍କର ବକ୍ର ଦୃଷ୍ଟାଣୀ ଓ ଉକ୍ତିର ଶିକାର ହୋଇ ଯେପରି ଲଜ୍ଜିତ ଓ ଉପହସିତ ହୁଏ ଠିକ୍ ସେହିପରି ଗୋଲଜ୍ଞାନହୀନ ଗଣକ ଜ୍ୟୋତିଷୀସଭାରେ ବିଶିଷ୍ଟ ଜ୍ୟୋତିଷମାନଙ୍କ ନାନାପ୍ରକାର ପ୍ରଶ୍ନ ଓ ବାକ୍ୟ ଜାଲରେ ଅପ୍ରତିଭ ହୋଇଯାଏ ।

ଦୃଷ୍ଟାନ୍ତ ଏବାବନିଭଗ୍ରହାଣାଂ ସଂସ୍ଥାନମାନପ୍ରତିପାଦନାର୍ଥଂ
ଗୋଲଃ ସ୍ମୃତଃ କ୍ଷେତ୍ରବିଶେଷ ଏଷ ପ୍ରାଜ୍ଞୈରତଃ ସ୍ୟାଦ୍ଗଣକେନ ଗମ୍ୟଃ ।୯।

ପୃଥିବୀ, ତାରା ଓ ଗ୍ରହମାନଙ୍କର ସ୍ଥିତି ତଥା ପରିମାଣ ଆଦି ପ୍ରତିପାଦନ କରିବା ନିମନ୍ତେ ଗୋଲ ଏକ ଦୃଷ୍ଟାନ୍ତର (ନକ୍ସା ବା ପ୍ରତିରୂପ) ସ୍ଥାନ ନେଇଅଛି । ପଣ୍ଡିତମାନେ ଗୋଲକୁ ଏକ କ୍ଷେତ୍ରଭାବରେ ଗ୍ରହଣ କରିଅଛନ୍ତି । ଏଣୁ ଗଣକ ଗଣିତ ସାହାଯ୍ୟରେ ଏହା ବେଶ୍ ବୁଝି ପାରିବେ ।

**ଜ୍ୟୋତିଃଶାସ୍ତ୍ରଫଳଂ ପୁରାଣଗଣକୈରାଦେଶ ଇତ୍ୟୁଚ୍ୟତେ**
**ନୂନଂ ଲଗ୍ନବଳାଶ୍ରିତଂ ପୁନରିଦଂ ତତ୍ ସ୍ପଷ୍ଟଖେଟାଶ୍ରୟମ୍ ।**
**ତେ ଗୋଳାଶ୍ରୟିଣୋଽନ୍ତରେଣ ଗଣିତଂ ଗୋଳୋଽପି ନ ଜ୍ଞାୟତେ**
**ତସ୍ମାଦ୍ୟୋ ଗଣିତଂ ନ ବେତ୍ତି ସ କଥଂ ଗୋଳାଦିକଂ ଜ୍ଞାସ୍ୟତି ।୧୦।**

ପ୍ରାଚୀନ ଗଣକମାନେ ଜ୍ୟୋତିଷ ଶାସ୍ତ୍ରର ଫଳକୁ ଆଦେଶ ରୂପରେ ଗ୍ରହଣ କରି ଅଛନ୍ତି । ଏହି ଫଳ କିନ୍ତୁ ଲଗ୍ନକୁ ଧରି ହୋଇଥାଏ । ଲଗ୍ନ ଗ୍ରହକୁ ଆଶ୍ରୟ କରେ । ସ୍ପଷ୍ଟ ଗ୍ରହ ନ ଜାଣି କେବଳ ଲଗ୍ନଯୋଗେ ଫଳ କହି ହୁଏ ନାହିଁ । ଗ୍ରହଗୁଡ଼ିକ ଗୋଲ (ବ୍ରହ୍ମାଣ୍ଡଗୋଲ)କୁ ଆଶ୍ରୟ କରି ରହି ଅଛନ୍ତି । ଗୋଲ ଜାଣିବା ନିମନ୍ତେ ଗଣିତ ଜ୍ଞାନ ଦରକାର । ଯେ ଗଣିତ ଜାଣେନା ସେ ଗୋଲ ପ୍ରଭୃତି କିପରି ଜାଣିବ ?

**ଦ୍ୱିବିଧଗଣିତମୁକ୍ତଂ ବ୍ୟକ୍ତମବ୍ୟକ୍ତଯୁକ୍ତଂ**
**ତଦବଗମନନିଷ୍ଠଃ ଶବ୍ଦଶାସ୍ତ୍ରେ ପଟିଷ୍ଠଃ ।**
**ଯଦି ଭବତି ତଦେଦଂ ଜ୍ୟୋତିଷଂ ଭୂରି ଭେଦଂ**
**ପ୍ରପଠିତୁମଧିକାରୋଽସ୍ୟାନ୍ୟଥା ନାମଧାରୀ ।ଇନ୍ଦ୍ର ।୧୧।**

ପାଟୀ ଓ ବୀଜଗଣିତ ରୂପରେ ଗଣିତ ଦୁଇପ୍ରକାର । ଏ ଦୁଇ ପ୍ରକାର ଗଣିତ ତଥା ବ୍ୟାକରଣରେ ବିଳିଷ୍ଟ ଜ୍ଞାନଥିଲେ ବହୁ ବାଦବିସମ୍ବାଦ ପୂର୍ଣ୍ଣ ଜ୍ୟୋତିଷଶାସ୍ତ୍ର ପଢ଼ିବାକୁ ଲୋକର ଅଧିକାର ହୁଏ । (ସେ ଜ୍ୟୋତିଷକୁ ପଢ଼ି ହଜମ କରି ପାରିବ) ଅନ୍ୟଥା ଲୋକ ନାମ ମାତ୍ରରେ ଜ୍ୟୋତିଷୀ ହୁଏ । (କିଛି ଜାଣିପାରେ ନାହିଁ) ।

**ଗୁର୍ବନ୍ତେବାସିସମ୍ବାଦବ୍ୟାଜେନାଥ ବିବିଚ୍ୟତେ**
**ତତ୍ତ୍ୱଂ ଖଭୂଭଗୋଳାନାଂ ବାସନାବଗତାର୍ଥତଃ ।୧୨।**

ଗୁରୁ ଓ ଶିଷ୍ୟଙ୍କ କଥୋପକଥନ ଛଳରେ ଆକାଶ ଗୋଲ ଓ ତାରାଗୋଲ ତଥା ଭୂଗୋଳର ସ୍ୱରୂପ ବର୍ଣ୍ଣନା କରାଯାଉଅଛି । ଏହା ପଢ଼ିଲେ ସବୁ କଥାର କାରଣ ଜ୍ଞାନ ହୋଇ ପାରିବ ।

ତତ୍ ଭୋଃ ଶ୍ରୀମଦାଚାର୍ଯ୍ୟ ନିଜବାଗମୃତେନ ଯତ୍
ତ୍ୱୟୋକ୍ତଂ ଖେଟଗଣିତଂ ଗୋଲାଖ୍ୟଂ ଯଚ୍ଚ ସୂଚିତମ୍ ।୧୩।

ତେନ ମେ ଦ୍ୱାପରଲତା ବୃଦ୍ଧିବ ନତୁ ବର୍ଦ୍ଧିତା
ନାନାମତଦ୍ରୁମାଲମ୍ବବହୁଶାଖୀକୃତା ଯତଃ ।୧୪।

ନିବାସାୟ ପୁରାସ୍ମାକଂ ଯା ସୃଷ୍ଟା ବଷ୍ଣୁନା ଧରା
ଯୁଜ୍ୟତେ ପ୍ରଥମଂ ତସ୍ୟାଃ ସ୍ୱରୂପଂ ପରିଶୀଳିତୁଂ ।୧୫।

ଗୋଲଂ ଜ୍ଞାତ୍ୱା ତତସ୍ତସ୍ମିନ୍ନିଃସନ୍ଦେହଂ ନଭଃ ସଦାମ୍
ଗଣିତସ୍ୟାନୁଭୂତର୍ମେ ଭୂୟାତ୍ତ୍ୱଦନୁଗ୍ରହାତ୍ ।୧୬।

ହେ ଆଚାର୍ଯ୍ୟ ମହାଶୟ, ଆପଣଙ୍କ ଲେଖା ଅତି ସୁନ୍ଦର-ଅମୃତ ପରି ରୁଚିକର । ଆପଣ ଗ୍ରହ ଗଣିତ କହିଗଲେ । ଗୋଲ ଗଣିତର ସୂଚନା ଦେଇ ଅଛନ୍ତି । ଏ ସବୁଦ୍ୱାରା ମୋର ସନ୍ଦେହ ବଢ଼ିଛି ସିନା କମୁ ନାହିଁ । କାରଣ ଆପଣ ଯାହା କହୁଛନ୍ତି ତାହା ନାନା ଆଚାର୍ଯ୍ୟଙ୍କ ମତ ରୂପକ ବୃକ୍ଷ ଅଟେ ଏବଂ ତାହା ବହୁ ଶାଖା ପ୍ରଶାଖାରେ ପରିପୂର୍ଣ୍ଣ ହୋଇ ଗଲାଣି । ଏଣୁ ସ୍ୱାଭାବିକ ଭାବରେ ମୋର ସନ୍ଦେହକୁ ଯଥେଷ୍ଟ ବଢ଼ାଇ ଦେଇଛି ।

ବହୁପୂର୍ବେ ସୃଷ୍ଟିର ପ୍ରାରମ୍ଭରେ ଈଶ୍ୱର ଆମ୍ଭମାନଙ୍କର ରହିବା ନିମନ୍ତେ ଏହି ପୃଥିବୀକୁ ସୃଷ୍ଟି କଲେ । ମୋତେ ଏହାର ସ୍ୱରୂପ ବୁଝାଇ କହନ୍ତୁ । ତାହାପରେ ଆପଣଙ୍କ ଦୟାରୁ ମୋର ଖ ଗୋଲ ଓ ଗ୍ରହ ଗଣିତରେ ଯଥାଯଥ ଅନୁଭୂତି ହୋଇ ପାରିବ ।

ଚକ୍ରାକାରାଂ ବସୁମତୀଂ କଥୟନ୍ତି ପୁରାବିଦଃ
ଧୃତାଂ କ୍ରୋଡ଼ାହ କୂର୍ମାଦ୍ୟୈଃ ପଞ୍ଚାଶତ୍‌କୋଟିଯୋଜନାମ୍ ।୧୭।

ତନ୍ମଧ୍ୟେ ଜାମ୍ବବୋ ଦ୍ୱୀପୋ ଲକ୍ଷଯୋଜନବିସ୍ତୃତଃ
ତାବତା ଲବଣୋଦେନ ବେଷ୍ଟିତୋ ନବବର୍ଷଭୃତ୍ ।୧୮।

ମଧ୍ୟେ ତସ୍ୟ ସ୍ଥିତୋ ମେରୁଃ ଖଖାବ୍ଧ୍ୟଷ୍ଟ ଯୋଜନୈଃ
ଉଚ୍ଛ୍ରିତୋ ଭୂପ୍ରବିଷ୍ଟୋଽସୌ ଖାଭ୍ରାଭ୍ରାଙ୍ଗେନ୍ଦୁ ଯୋଜନୈଃ ।୧୯।

ଜମ୍ବୁଦ୍ୱୀପାଦ୍ବହିର୍ଦ୍ୱୀପାଃ ପରତଃ ସ୍ୱସମୈର୍ବୃତାଃ
ସିନ୍ଧୁଭିସ୍ତେ ପୁରାଣୋକ୍ତାଃ କ୍ରମଦ୍ୱିଗୁଣ ବିସ୍ତୃତାଃ ।୨୦।

ପୁରାଣମାନଙ୍କରେ ପୃଥିବୀର ଆକାର ଚକ୍ର ପର (ଥାଳ ପର) ବୋଲି କୁହାଯାଇଛି । ଏହି ପୃଥିବୀକୁ ପୁଣି ବରାହ, ସର୍ପ (ବାସୁକୀ) ଓ କଚ୍ଛପ ପ୍ରଭୃତି ଧରିଥିବା ମଧ୍ୟ ବର୍ଣ୍ଣିତ ହୋଇ ଅଛି । ଏହାର ବିସ୍ତୃତି ୫୦ କୋଟି ଯୋଜନ । ଏହା ମଧ୍ୟରେ ଏକଲକ୍ଷଯୋଜନ ବିସ୍ତୃତ ଲବଣ ସମୁଦ୍ର ଦ୍ୱାରା ପରିବେଷ୍ଟିତ ଜମ୍ବୁଦ୍ୱୀପ ରହିଛି । ଜମ୍ବୁଦ୍ୱୀପ ମଧ୍ୟରେ ପୁଣି ଭାରତ ପ୍ରଭୃତି ୯ଟି ଦେଶ ରହିଅଛନ୍ତି । ଜମ୍ବୁଦ୍ୱୀପର ବିସ୍ତାର ମଧ୍ୟ ଏକ ଲକ୍ଷ ଯୋଜନ । ଜମ୍ବୁ-ଦ୍ୱୀପର ମଧ୍ୟସ୍ଥଳରେ ୮୪୦୦୦ ଯୋଜନ ଲମ୍ବା ମେରୁ ପର୍ବତ ରହିଅଛି । ମେରୁର ୧୬୦୦୦ ଯୋଜନ ପୁଣି ଭୂଗର୍ଭରେ ରହିଅଛି । ଅର୍ଥାତ୍ ମେରୁର ମୋଟ ଉଚ୍ଚତା ୧୦୦୦୦୦ ଯୋଜନ ସେଥିରୁ ୧୬୦୦୦ ଯୋଜନ ଭୂଗର୍ଭ ଭିତରେ ଓ ୮୪୦୦୦ ଯୋଜନ ବାହାରକୁ ଦେଖାଯାଉ ଅଛି । ଜମ୍ବୁଦ୍ୱୀପର ବାହାରେ କ୍ରମରେ ଦ୍ୱିଗୁଣ ବିସ୍ତୃତ ହୋଇ ଅନ୍ୟ ଦ୍ୱୀପମାନେ ରହିଛନ୍ତି ଏବଂ ସେମାନଙ୍କୁ ସେହି ଦ୍ୱୀପତୁଲ୍ୟ ସାଗର ଘେରି ରହିଛନ୍ତି ।

ପ୍ରାନ୍ତସ୍ଥପୁଷ୍କରଦ୍ୱୀପମଧ୍ୟଗେ ବଳୟାକୃତୌ
ଭ୍ରମତ୍ୟର୍କ ରଥଯୂର୍ଦ୍ଧ୍ୱେ ମାନସୋତ୍ତର ପର୍ବତେ ।୬୧।

ଦ୍ୱୀପାବ୍ଧୀନାଂ ବହିଃ ସ୍ୱର୍ଣ୍ଣଭୂର୍ଲୋକାଲୋକପର୍ବତୌ
ଗର୍ଭୋଦସ୍ତଦ୍ବହିର୍ବ୍ରହ୍ମକଟାହଃ କ୍ଷ୍ମାଦଭିର୍ବୃତଃ ।୬୨।

ଭାନୁର୍ଭ୍ରମତ ଭୂପୃଷ୍ଠାଲ୍ଲକ୍ଷଯୋଜନଦୂରଗଃ
ମଙ୍କ୍ଷନ୍ଦୂଦ୍ୟନ୍ତିବାଭାତ ତର୍ଯ୍ୟଙ୍‌ଙ୍‌ତ୍ୟନ୍ତଦୂରଗଃ ।୬୩।

ଭ୍ରାମ୍ୟନ୍ତ ଚନ୍ଦ୍ରଭୌମାଦ୍ୟା ଉପର୍ଯ୍ୟୁପରି ସୂର୍ଯ୍ୟତଃ
ଧ୍ରୁବାନ୍ତାଃ ସ ଚ ମେରୁର୍ଦ୍ଧ୍ୱେ ତତୋଲୋକାଃ ସ୍ଥିତା ଇତ ।୬୪।

ବୌଦ୍ଧାସ୍ତୁ ଭଭ୍ରମାଲୋକାନ୍ନିରାଧାରଂ କ୍ଷ୍ମମବ୍ରୁବନ୍
ଖେଽଧୋ ଯାନ୍ତୀଂ ଚ ଖସ୍ଥସ୍ୟାଦର୍ଶନାଦ୍‌ଗୁରୁବସ୍ତୁନଃ ।୬୫।

ଜୈନା ବଦନ୍ତ ସୂର୍ଯ୍ୟେନ୍ଦୂ ଦ୍ୱୌ ଦ୍ୱୌ ଚ ଭଗଣୀ ତଥା
ଚତୁଷ୍କୋଣସ୍ତମ୍ଭରୂପଂ ମେରୁଂ ମଧ୍ୟଗତଂ ସ୍ଥିରମ୍ ।୬୬।

ପର୍ଯ୍ୟେତ ଭୂର୍ଜକାନ୍ତଃ ସ୍ଥା ତସ୍ମାଦର୍କାଦୟୋ ଜନୈଃ
ତ ଏକାନ୍ତରମୁଦ୍ୟନ୍ତୋ ଦୃଶ୍ୟନ୍ତେ ମେରୁକୋଣତଃ ।୬୭।

ପ୍ରାନ୍ତରେ (ଶେଷରେ) ଥିବା ପୁଷ୍କର ଦ୍ୱୀପର ମଧ୍ୟଭାଗରେ ବଳୟ ଆକାରରେ ମାନ-ସୋତ୍ତର ପର୍ବତ ରହିଅଛି । ତାହାର ଉପରେ ସୂର୍ଯ୍ୟଙ୍କ ରଥର ଚକ୍ର ଭ୍ରମଣ କରୁଅଛି । ଏହି ସବୁ ଦ୍ୱୀପ ଓ ସାଗରର ବାହାରେ ଲୋକାଲୋକ ପର୍ବତ ରହିଛି । ଏହି ପର୍ବତର ଭୂ ଭାଗ ସ୍ୱର୍ଣ୍ଣମୟ । ଏହି ପର୍ବତର ବାହାରେ ବ୍ରହ୍ମ କଟାହର ଅବସ୍ଥାନ । ଏହାକୁ ଅନ୍ତର୍ଜଳ ପୃଥିବ୍ୟାଦି ବେଷ୍ଟନ କରି ରହିଛନ୍ତି ।

ଭୂପୃଷ୍ଠରୁ ଲକ୍ଷେ ଯୋଜନ ଦୂରରେ ସୂର୍ଯ୍ୟ ପରିଭ୍ରମଣ କରୁଅଛନ୍ତି । ଭୂପୃଷ୍ଠରୁ ଅତି ଦୂରରେ ଥିବାରୁ ସୂର୍ଯ୍ୟଉଦୟ ଓ ଅସ୍ତ ହେଲପରି ଦେଖାଯାଉ ଅଛନ୍ତି । ସୂର୍ଯ୍ୟଙ୍କ ଉପରେ ଉପରେ ଚନ୍ଦ୍ର ଓ ମଙ୍ଗଳ ଆଦି ଗ୍ରହମାନେ ଭ୍ରମଣ କରନ୍ତି । ଏ ସମସ୍ତଙ୍କ ପରେ ଧ୍ରୁବର ଅବସ୍ଥିତି । ଧ୍ରୁବତାରା ମେରୁର ଊର୍ଦ୍ଧ୍ୱ ଦେଶରେ ରହିଅଛି । ଧ୍ରୁବର ଉପରେ ଉପରେ ମହ, ଜନ, ତପ ଆଦି ଲୋକ ରହିଅଛନ୍ତି । ନକ୍ଷତ୍ରଗୁଡ଼ିକ ପୃଥିବୀକୁ ପରିଭ୍ରମଣ କରୁଥିବାରୁ ପୃଥିବୀର ଆଧାର ନାହିଁ ବୋଲି ବୌଦ୍ଧମାନେ କହନ୍ତି । ଆକାଶରେ କୌଣସି ଗୁରୁ ବସ୍ତୁ ରହି ନ ପାରିବା ଦେଖି ସେମାନେ କହନ୍ତି ଯେ ପୃଥିବୀ ତଳକୁ ତଳକୁ ଯାଉଅଛି । ଜୈନ-ମାନଙ୍କ ମତରେ ଦୁଇ ସୂର୍ଯ୍ୟ, ଦୁଇ ଚନ୍ଦ୍ର ଓ ୫୪ ନକ୍ଷତ୍ର । ଚତୁଷ୍କୋଣ ସ୍ତମ୍ଭ ରୂପକ ମେରୁକୁ ସେ ଜଳ ଭିତରେ ରହି ପରିକ୍ରମା କରୁଅଛି । ତେଣୁ ମେରୁକୋଣରୁ ଗୋଟିକ ପରେ ଗୋଟିଏ ଭାବରେ ସୂର୍ଯ୍ୟର ଉଦୟ ହେଉଥିବା ଦେଖାଯାଏ ।

ଇଂଲଣ୍ଡପଣ୍ଡିତାଃ ସୂକ୍ଷ୍ମମତୟଃ କଥୟନ୍ତି ଚ
ଭୂଗୋଳୋବର୍ତ୍ତୁଳଃ କ୍ଷୁଦ୍ରୋ ଭୌମାଦିଗ୍ରହବଦ୍ଦିବ ।୨୮।

ଖମଧ୍ୟସ୍ଥବୃହଦ୍ ସୂର୍ଯ୍ୟବମ୍ବସ୍ୟାବୟବଭ୍ରମୈଃ
ଆକୃଷ୍ଟଶ୍ଚକ୍ରବଦ୍ଭ୍ରାନ୍ତ କ୍ରାନ୍ତିବୃତ୍ତେ ବ୍ରଜତ୍ୟସୌ ।୨୯।

ସପାଦାଶ୍ଚୁଗଷଡ୍‌ବହ୍ନି ଦନୈଃ ପୂର୍ବଗତକ୍ରମାତ୍
ଭଗଣଃ ସ୍ୱତନୂଦ୍‌ଭ୍ରାନ୍ତ୍ୟା ଦ୍ୟୁବର୍ଷଂ ଗ୍ରସ୍ୟ ସଂଭବେତ୍ ।୩୦।

ଇତ୍ଥଂ ଗତିର୍ଦ୍ୱିଧା ଭୂମେର୍ବାହ୍ନିକୀ ବାର୍ଷିକୀତି ଚ
ଭ୍ରମନ୍ତ୍ୟାଃ ସ୍ୱତନୋର୍ଯସ୍ମାତ୍ ନତ୍ୟଂ ସ୍ଥାନାନ୍ତରସ୍ଥିତଃ ।୩୧।

ନ ପତନ୍ତି ଜନା ଭୂମେର୍ମାଧ୍ୟାକର୍ଷଣଶକ୍ତିତଃ
ଘଣ୍ୟନ୍ତର୍କାଦିକାନ୍ ଭ୍ରାନ୍ତାନ୍ନାବିକା ଇବ ନଗାନିବ ।୩୨।

ସୃଷ୍ଟିବୁଦ୍ଧ ଇଂଲଣ୍ଡ ପଣ୍ଡିତମାନେ କହନ୍ତି ଯେ ଭୂଗୋଲ ସୂର୍ଯ୍ୟବିମ୍ବଠାରୁ ଶ୍ରେଷ୍ଠ ଏବଂ ଦୀର୍ଘବୃତ୍ତାକାର । ଆକାଶରେ ଥାଇ ମଙ୍ଗଳ ଆଦି ଗ୍ରହପରି ବୃହତ୍ତମ ସୂର୍ଯ୍ୟବିମ୍ବର ଆକର୍ଷଣରେ ସେ ଆକୃଷ୍ଟ ହୋଇ କ୍ରାନ୍ତି ବୃତ୍ତରେ ଚକ୍ରପରି ଭ୍ରମଣ କରେ । ସୂର୍ଯ୍ୟବିମ୍ବର ଆକର୍ଷଣ ତାହାର ଅଙ୍ଗପ୍ରତ୍ୟଙ୍ଗ ଭ୍ରମଣରୁ ହିଁ ଉତ୍ପନ୍ନ ହୋଇଥାଏ । ଏହିପରି ପୂର୍ବାଭିମୁଖ ଗତିରେ ୩୬୫ । ୧୫ ଦିନରେ ପୃଥିବୀର ଭ୍ରମଣ ପୂର୍ତ୍ତି ହୁଏ । ପୃଥିବୀର ସ୍ୱାଙ୍ଗ ଭ୍ରମଣ ଦ୍ୱାରା ତହିଁରେ ଦିନ ଓ ରାତ୍ରି ହୁଏ । ଏହିପରି ଭାବରେ ପୃଥିବୀର ଆହ୍ନିକ ଓ ବାର୍ଷିକ ଗତିରୁ ଦିନ ରାତ୍ରି ତଥା ବର୍ଷ ହୋଇଥାଏ ।ପୃଥିବୀର ଏହିପରି ବାର୍ଷିକ ଗତିରୁ ତାହାର ପ୍ରତ୍ୟହ ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥାନ ହୁଏ । ଭୂମିର ମାଧ୍ୟାକର୍ଷଣ ଶକ୍ତି ହେତୁ ଲୋକେ ପୃଥିବୀ ପୃଷ୍ଠରୁ କେଉଁଆଡ଼େ ପଡ଼ିଯାଉ-ନାହାନ୍ତି । ନାବିକମାନେ ନାଆରେ ଥାଇ ପର୍ବତଗୁଡ଼ିକୁ ଭ୍ରମଣଶୀଳ ଥିବା ଦେଖିଲା ପରି ପୃଥିବୀସ୍ଥ ଲୋକେ ରବି ଆଦି ଗ୍ରହ ନକ୍ଷତ୍ରମାନଙ୍କୁ ଗତିଶୀଳ ଦେଖନ୍ତି । କିନ୍ତୁ ପ୍ରକୃତରେ ପୃଥିବୀ ଘୂରୁଅଛି ।

ଭୁବି ମେଷାଦିକସ୍ଥାୟାଂ ତୁଲାଦୌ ଦୃଶ୍ୟତେ ରବିଃ
ଦକ୍ଷିଣୋତ୍ତରଗାୟାନ୍ତୁ ସୌମ୍ୟଯାମ୍ୟାପମୌ ତଥା ।୩୩।

ପୃଥିବୀ ମେଷାଦିରେ ରହିଲାବେଳେ ସୂର୍ଯ୍ୟ ତୁଲାଦିରେ ଦେଖାଯାନ୍ତି । ପୃଥିବୀର ଦକ୍ଷିଣ ଓ ଉତ୍ତର ଗତି ବଶତଃ ସୂର୍ଯ୍ୟର ଯଥାକ୍ରମେ ଉତ୍ତର ଓ ଦକ୍ଷିଣ କ୍ରାନ୍ତି ହୁଏ ।

ବୁଧଶୁକ୍ରାବନୀଭୌମଗୁରୁମନ୍ଦାଃ କ୍ରମାଦ୍ରବେଃ
ଦୂରତ୍ୱାନ୍ମନ୍ଦଗତୟଃ ପରିଗଚ୍ଛନ୍ତି ତଂ ପ୍ରତି ।୩୪।

ତାନ୍ ପ୍ରତ୍ୟୁପଗ୍ରହାଃ କ୍ଷୁଦ୍ରା ଭ୍ରମନ୍ତସ୍ତୈଃ ସମଂ ପୁନଃ
ଭ୍ରମନ୍ତ୍ୟର୍କଂ ଯଥାକୃଷ୍ଟା ଭୁବେନ୍ଦୁସ୍ତାଂ ପ୍ରତି ଭ୍ରମନ୍ ।୩୫।

ଭ୍ରାନ୍ତିରୁତ୍ତାପ ଆଲୋକ ଋତୁଭେଦାଶ୍ଚ ସୂର୍ଯ୍ୟତଃ
ଭୁବିଗ୍ରହେଷୁ କାର୍ଯ୍ୟାଣି ସର୍ବାଣିସ୍ୟୁରଭେଦତଃ ।୩୬।

ଇତସ୍ଥିତେ ଗ୍ରହଗତ ଗ୍ରହଣାଦ୍ୟେବ ଦୃକ୍ସମମ୍ ।
ବୃହଦାକର୍ଷଣାତ୍ କ୍ଷୁଦ୍ରଭ୍ରାନ୍ତିର୍ନ୍ୟାଯ୍ୟା ଭବତ୍ୟପି ।୩୭।

ବୁଧ, ଶୁକ୍ର, ପୃଥିବୀ, ମଙ୍ଗଳ, ବୃହସ୍ପତି ଓ ଶନି କ୍ରମରେ ରବିଠାରୁ ଦୂରରେ ରହିଥିବାରୁ ଏମାନଙ୍କର ଗତି ମଧ୍ୟ କ୍ରମରେ ହ୍ରାସ ହୁଏ । ଏମାନେ ନିଜ ନିଜ ଗତିରେ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରନ୍ତି । କ୍ଷୁଦ୍ର ଉପଗ୍ରହମାନେ ଗ୍ରହମାନଙ୍କୁ ପରିଭ୍ରମଣ କରିବା ସଙ୍ଗେ ସଙ୍ଗେ

ସେମାନଙ୍କ ସହିତ ସୂର୍ଯ୍ୟଙ୍କୁ ମଧ୍ୟ ପରିଭ୍ରମଣ କରନ୍ତି । ଉଦାହରଣ ସ୍ୱରୂପ ପୃଥିବୀର ଉପଗ୍ରହ ଚନ୍ଦ୍ର ପୃଥିବୀକୁ ପରିଭ୍ରମଣ କରିବା ସଙ୍ଗେ ସଙ୍ଗେ ପୃଥିବୀ ସହ ସୂର୍ଯ୍ୟଙ୍କୁ ମଧ୍ୟ ପରିଭ୍ରମଣ କରୁଅଛି । ଭ୍ରମଣ, ଉତ୍ତାପ, ଆଲୋକ ଓ ଋତୁ ଭେଦ ଆଦି ସୂର୍ଯ୍ୟ ଯୋଗୁଁ ଯେପରି ପୃଥିବୀରେ ହୁଏ, ଅନ୍ୟ ଗ୍ରହରେ ମଧ୍ୟ ସେହିପରି ହୋଇଥାଏ ।

ଏପରି ମାନିବା ଦ୍ୱାରା ଗ୍ରହମାନଙ୍କର ଗତି, ଗ୍ରହଣ [ସୂର୍ଯ୍ୟ ଓ ଚନ୍ଦ୍ର] ପ୍ରଭୃତି ପୃଥିବୀଙ୍କର ଦୃକ୍‌ସିଦ୍ଧ ହୁଏ । ଆହୁରି ମଧ୍ୟ ବୃହତ୍ ପଦାର୍ଥର ଆକର୍ଷଣରୁ କ୍ଷୁଦ୍ର ପଦାର୍ଥର ଯେ ଭ୍ରମଣ ହୁଏ ତାହା ମଧ୍ୟ ଏ ପ୍ରକାର ଗ୍ରହସ୍ଥିତି ମାନିବା ଯୋଗୁଁ ଯୁକ୍ତିଯୁକ୍ତ ହୋଇଥାଏ ।

**ସିଦ୍ଧାନ୍ତେଷୁ ସ୍ଥିରା ପୃଥ୍ୱୀ ଗଦିତା ବ୍ୟୋମମଧ୍ୟଗା**
**ବୃତେନ୍ଦୁଜ୍ଞସିତାର୍କାରଗୁରୁମନ୍ଦର୍କ୍ଷବର୍ତ୍ମଭିଃ ।୩୮।**

ପ୍ରାଚ୍ୟ ପ୍ରାଚୀନ ସିଦ୍ଧାନ୍ତମାନଙ୍କରେ ଅଛି ଯେ ଆକାଶ ମଧ୍ୟରେ ସ୍ଥିରହୋଇ ପୃଥିବୀ ରହିଅଛି ଏବଂ ଏହାକୁ ଚନ୍ଦ୍ର, ବୁଧ, ଶୁକ୍ର, ରବି, ମଙ୍ଗଳ, ବୃହସ୍ପତି ଓ ଶନିଙ୍କର କକ୍ଷାବୃତ୍ତ ଘେରି ରହିଅଛି ।

**ଆର୍ଯ୍ୟଭଟୋଽବ୍ରବୀଦ୍‌ଭୂଃ ଖେ ସ୍ୱସ୍ଥାନସ୍ଥା ଭ୍ରମତ୍ୟତଃ**
**ପ୍ରତ୍ୟଗ୍‌ଗତିର୍ଭଚକ୍ରସ୍ୟ ପ୍ରାଗ୍‌ଯାତୈର୍ଦୃଶ୍ୟତେ ଜନୈଃ ।୩୯।**

ଆର୍ଯ୍ୟଭଟ୍ଟ କହିଛନ୍ତି ଯେ ପୃଥିବୀ ନିଜସ୍ଥାନରେ ରହି ବୁଲୁଛି ଅର୍ଥାତ୍ ପୃଥିବୀର ସ୍ୱ ଅକ୍ଷରେ ଭ୍ରମଣ ହୋଇଥାଏ । ଏଣୁ ପୃଥିବୀରେ ଥାଇ ପୂର୍ବକୁ ଗତି କରୁଥିବା ଲୋକେ [ପୃଥିବୀର ପୂର୍ବଗତି ଫଳରେ] ନକ୍ଷତ୍ରମାନଙ୍କୁ ପଶ୍ଚିମକୁ ଯାଉଥିବାର ଦେଖନ୍ତି ।

**ସାଂପ୍ରତଂ ଭବତା ପ୍ରୋକ୍ତା ସ୍ୱାର୍ଯ୍ୟାଭିଭ୍ରମକାରଭିଃ**
**ଗ୍ରହୈସ୍ତେନ ପରୀତାସ୍ତେ ଭ୍ରମତା ବସୁନେତ ଚ ।୪୦।**

ବର୍ତ୍ତମାନ ଆପଣ କହୁଛନ୍ତି ଯେ ନିଜକୁ ପରିଭ୍ରମଣ କରୁଥିବା ଗ୍ରହମାନଙ୍କୁ ନେଇ ସୂର୍ଯ୍ୟ ପୃଥିବୀକୁ ପ୍ରଦକ୍ଷିଣ କରୁଅଛି । ଚନ୍ଦ୍ର ମଧ୍ୟ ପୃଥିବୀକୁ ପରିଭ୍ରମଣ କରୁଅଛି [ପୂର୍ବ ଅର୍ଥ ହେଲା ଚନ୍ଦ୍ର ସହିତ ସମସ୍ତ ଗ୍ରହ ସୂର୍ଯ୍ୟଙ୍କୁ ପରିଭ୍ରମଣ କରିବା ସଙ୍ଗେ ସଙ୍ଗେ ସୂର୍ଯ୍ୟଙ୍କ ସହ ପୃଥିବୀକୁ ପ୍ରଦକ୍ଷିଣ କରନ୍ତି । ମାତ୍ର ଚନ୍ଦ୍ର ପୃଥିବୀର ଉପଗ୍ରହ ଏପରି ନୁହେଁ]

**ଗ୍ରହାଣାଂ ଯୋଜନଗତସ୍ତୁଲ୍ୟେତ ପ୍ରାଙ୍‌ମୟା ଶ୍ରୁତା**
**ତ୍ୱତ୍ତସ୍ତୁ ବିଷମେତ୍ୟେବ କେୟଂ ସୃଷ୍ଟିର୍ନବା ତବ ।୪୧।**

ଗ୍ରହମାନଙ୍କର ଯୋଜନାତ୍ମକ ଗତି ସମାନ ବୋଲି ମୁଁ ଆଗରୁ ଶୁଣିଛି । ଆପଣ କିନ୍ତୁ ଏହା ସମାନ ନୁହେଁ ବୋଲି କହୁଛନ୍ତି । ଆପଣଙ୍କର ଏ ନୂତନ କଳ୍ପନା କାହିଁକି ?

ବହୁଧା ଶ୍ରୂୟତେ ସୃଷ୍ଟିରୈଶ୍ୱରୀ ତବ କା ସତୀ
କେନ କ୍ରମେଣ ରଚିତା ଗ୍ରହାଦ୍ୟା ବସୁମତ୍ୟପି ।୪୨।

ଲୋକେ ଈଶ୍ୱରଙ୍କ ଏହି ସୃଷ୍ଟିକୁ ମଧ୍ୟ ଭିନ୍ନ ଭିନ୍ନ ଢଙ୍ଗରେ ବ୍ୟାଖ୍ୟା କରିବାର ଦେଖାଯାଏ । କେଉଁ ବ୍ୟାଖ୍ୟାଟି ଠିକ୍ ? ଗ୍ରହମାନଙ୍କର ସୃଷ୍ଟିର କ୍ରମ କଣ ? ପୃଥିବୀର ରଚନା କ୍ରମ ମଧ୍ୟ କଣ ?

କ୍ଷମାକାରା କ୍ଷମାଧାରା ସା ଧରା କତିସାଗରା
ଦ୍ୱୀପୈର୍ଧରାଧରୈର୍ବ୍ୟାପ୍ତା କଥଂ କତିନରାଶ୍ରିତା । ୪୩ ।

ପୃଥିବୀର ଆକାର ଓ ଆଧାର କହନ୍ତୁ । ଏଥିରେ କେତେ ସମୁଦ୍ର ଅଛନ୍ତି ? ପୃଥିବୀରେ କେତେ ଦ୍ୱୀପ ଓ ପର୍ବତ ଅଛନ୍ତି ? କେତେ ଲୋକ ଏଥିରେ ବାସ କରନ୍ତି ?

କାୟନ୍ତୌ ପରିଧିବ୍ୟାସୌ କିଂ ଫଳଂ ପୃଷ୍ଠଜଂ ଘନଂ
ଊର୍ଦ୍ଧ୍ୱାଧରସ୍ଥଲୋକାନାଂ ଜ୍ୟୋତିଷାଂ କୀଦୃଶୀ ସ୍ଥିତିଃ । ୪୪।

ପୃଥିବୀର ବ୍ୟାସ, ପରିଧି, ପୃଷ୍ଠ ଓ ଘନଫଳ କହନ୍ତୁ । ପୃଥିବୀରେ ଊର୍ଦ୍ଧ୍ୱ ଏବଂ ଅଧ ଭାଗରେ ଥିବା ଲୋକେ କିପରି ରହିଛନ୍ତି ? ଗ୍ରହ ନକ୍ଷତ୍ରମାନେ ମଧ୍ୟ କିପରି ରହିଛନ୍ତି ?

ଚେତନାଚେତନାବାସୋ ଯଥା ଭୂପୃଷ୍ଠଗର୍ଭୟୋଃ
ଚନ୍ଦ୍ରଭୌମାଦିବମ୍ବେଷୁ ତଥାସ୍ତେ କିଂ ନ ବା ସ୍ଥିତିଃ । ୪୫ ।

ଗ୍ରହାଣାଂ କଲ୍ପଭଗଣା ଯେ ସିଦ୍ଧାନ୍ତେଷୁ କୀର୍ତ୍ତିତାଃ ।
ତେଷାଂ ଦୃକ୍‌ସିଦ୍ଧିବିରହତ୍ୟାତ୍ ଆର୍ଯ୍ୟଭଟାଦିଭିଃ ପୁନଃ । ୪୬ ।

କଲ୍ପିତା ଦୃକ୍‌ସମାକ୍ଷେ ତେ ଭାସ୍କରାଦ୍ୟୈର୍ନିରାକୃତାଃ
ତୈର୍ଯେ ସ୍ଥିରୀକୃତାସ୍ତେଭ୍ୟୋ ଭଗଣା ଭବଦୀରିତାଃ । ୪୭ ।

ବର୍ଷମାଣ୍ଟେ ଉଦାମୀଷାଂ ସ୍ତ୍ରୌର୍ଯେ୍ୟ କିଂ ମାନମୁଚ୍ୟତାଂ
ବର୍ଷର୍ଯେ୍ୟଷ୍ୟନ୍ତି ତେତେତେ ଭବତୀ କା ଗତିସ୍ତଦା । ୪୮ ।

ଯଦି ସଂବତ୍ସରାଃ ଷଷ୍ଟିର୍ମଧ୍ୟେଜ୍ୟଗ୍ରହଭୋଗଜାଃ
ତଦା ତସ୍ମିନ୍ନଜାଦସ୍ତେ କଥଂ ନ ପ୍ରଭବାଦୟଃ । ୪୯ ।

ପୃଥିବୀ ପୃଷ୍ଠରେ ଏବଂ ଗର୍ଭରେ ଯେପରି ଚେତନ ଓ ଅଚେତନ ପ୍ରାଣୀବାସ କରନ୍ତି, ଚନ୍ଦ୍ର ମଙ୍ଗଳ ଆଦି ଗ୍ରହବିମ୍ବରେ ସେହିପରି ପ୍ରାଣୀ ବାସ କରନ୍ତି କି ? ନା ନୁହେଁ ?

ପ୍ରାଚୀନ ସିଦ୍ଧାନ୍ତ ମାନଙ୍କରେ ଗ୍ରହମାନଙ୍କର ଯେଉଁ କଳ୍ପ ଭଗଣ ଦିଆଯାଇଥିଲା ସେ ଗୁଡ଼ିକ ଦୃକ୍‌ସିଦ୍ଧ ନ ହେବାରୁ ଆର୍ଯ୍ୟଭଟ୍ଟ ଆଦି ସିଦ୍ଧାନ୍ତୀମାନେ ସେ ଗୁଡ଼ିକୁ ଗ୍ରହଣ ନକରି ଅନ୍ୟ ଦୃକ୍‌ସିଦ୍ଧ ଭଗଣ କଳ୍ପନା କରିଗଲେ । ଏ ଗୁଡ଼ିକୁ ଭାସ୍କର ପ୍ରଭୃତି ସିଦ୍ଧାନ୍ତୀମାନେ କାଟି ଦେଇ ପୁଣି ସ୍ୱତନ୍ତ୍ର ଭଗଣ କହିଯାଇଛନ୍ତି । ଆପଣଙ୍କ ଭଗଣ ଭାସ୍କରାଦିଙ୍କଠାରୁ ଭିନ୍ନ । ଏହି ସବୁରୁ ଜଣାଯାଉଛି ଯେ ଭଗଣ ସ୍ଥିର ନୁହେଁ । ତା' ହେଲେ ଆପଣଙ୍କ ଭଗଣ କପରି ସ୍ଥିର ରହିବ । ତାକୁ କେହି ନ କାଟିବେ କପରି ?

ଯଦି ମଧ୍ୟମ ବୃହସ୍ପତିର ରାଶିଭୋଗରୁ ୬୦ଟି ବାର୍ହସ୍ପତ୍ୟ ସଂବତ୍ସରର ଉତ୍ପତ୍ତି, ତା ହେଲେ ବୃହସ୍ପତି (ମଧ୍ୟମ) ମେଷାଦିରେ ଥିବାବେଳେ ପ୍ରଭବାଦି ସଂବତ୍ସରର ଆରମ୍ଭ କାହିଁକି ହୁଏ ନାହିଁ ?

ପଦକାନାଂ କଥଂ ସୃଷ୍ଟିଃ ଖେଟାନାଂତୁ ସ୍ଫୁଟୀକୃତଃ
ଭୂମାବେବ ସମା କିଂବା ଯଦ୍ୱ କୁତ୍ରାପି ସା ଭବେଦ୍ । ୫୦ ।

ଅହର୍ଗଣ ଆଦି ପଦକ ଆପଣ କାହିଁକି ସୃଷ୍ଟି କରି ଅଛନ୍ତି । ଗ୍ରହସ୍ଫୁଟ କରିବାକୁ ଏତେ ପ୍ରପଞ୍ଚ କାହିଁକି ? ଗ୍ରହ ମାନଙ୍କର ଏ ସ୍ଫୁଟତା କେବଳ ପୃଥିବୀ ପାଇଁ ଅଭିପ୍ରେତ ନା ଅନ୍ୟତ୍ର (ଗ୍ରହାଦି ସ୍ଥାନରେ) ଏ ରୀତି ଚଳିବ ?

ପୂର୍ବୈଃ କୃତଂ କୁଜାଦୀନାଂ ସିଦ୍ଧୌ କର୍ମଚତୁଷ୍ଟୟଂ
ଅଧିକଂ ଯତ୍ତ୍ୱୟୋକ୍ତଂ ତତ୍ କିଂନ ମ ଜ୍ଞକିଭୂଭୁବାଂ । ୫୧ ।

ପ୍ରାଚୀନମାନେ ମଙ୍ଗଳ ପ୍ରଭୃତି ଗ୍ରହମାନଙ୍କର ସ୍ଫୁଟତା ନିମନ୍ତେ ଗୃତ ସଂସ୍କାର କରିଛନ୍ତି । ଆପଣ ବୁଧ, ଶନି ଓ ମଙ୍ଗଳର ସ୍ଫୁଟତା ନିମନ୍ତେ ଯେଉଁ ଅଧିକା ସଂସ୍କାର ଦେଲେ ତାହାର କାରଣ କଣ ?

ସମ୍ଭବଃ ପରଧୀନାଂ ସ୍ୟାତ୍ କଥଂ ହ୍ରାସ୍ୱନ୍ଦକଳ୍ପନାଂ
ଚୈଷମ୍ୟଂ ସ୍ୟାତ୍ କଥଂ ତେଷାଂ ଓଜଯୁଗ୍ମପଦାନ୍ତୟୋଃ ।୫୨।

କେନ୍ଦ୍ରଭ୍ରମଃ କଥଂ ବାହୋଃ ଫଳଂ ମେଷତୁଳାଦିକଂ
ଧନର୍ଣ୍ଣାଖ୍ୟଂ କଥଂ ଭୁକ୍ତେଃ କର୍କିନକ୍ରାଦିକଂ ତଥା ।୫୩।

ଶୀଘ୍ର ଓ ମନ୍ଦ ପରିଧିର କଳ୍ପନା କାହିଁକି ? ଓଜ ଓ ଯୁଗ୍ମ ପଦରେ ସେଗୁଡ଼ିକର ସମାନତା କି ରହୁନାହିଁ କାହିଁକି ? ମନ୍ଦ ଶୀଘ୍ର ଯୋନ କେନ୍ଦ୍ରର ଭ୍ରମଣ କପରି ହୁଏ ? ମେଷାଦି ଓ ତୁଳାଦି କେନ୍ଦ୍ରରେ ମନ୍ଦଫଳ ଓ ଶୀଘ୍ର ଫଳ ଯଥାକ୍ରମେ ଧନ ଓ ଋଣ କାହିଁକି ହୁଏ ? କର୍କ୍ୟାଦି ତଥା ମକରାଦି କେନ୍ଦ୍ରରେ ଗ୍ରହ ଗତି ଫଳ (କ୍ରମରେ) କାହିଁକି ଧନ ବା ଋଣ ହୁଏ ।

ସିଦ୍ଧାଂଶ ସନ୍ମିତା କ୍ରାନ୍ତିଃ ସିଦ୍ଧାନ୍ତେଷ୍ୱଖିଳେଷ୍ୱପି
ତ୍ୱୟୋକ୍ତାର୍ଦ୍ଧାଂଶହୀନା କିଂ ସୌମ୍ୟେ ଯାମ୍ୟେଽପମେ କଥଂ ।୫୪।

କ୍ଷୟବୃଦ୍ଧି ବିପର୍ଯ୍ୟାସୋ ଦିନରାତ୍ର୍ୟୋର୍ଭବେଦ୍ଭୁବି ।
କ୍ରାନ୍ତିବୃତ୍ତସ୍ଥରାଶୀନାମୁଦୟା ନ ସମାଃ କୁତଃ ।୫୫।

ତପର୍ତ୍ତୌ ଦୁଃସହଃ କିଂ ସ୍ୟାଦ୍ ଆତପଃ ଶିଶିରେ ସୁଖଃ
ଗ୍ରୀଷ୍ମାନ୍ତେ କିଂ ପ୍ରବର୍ଷନ୍ତି ନାନ୍ୟର୍ତ୍ତୌ କିଂ ତଥା ଘନାଃ ।୫୬।

ସବୁ ସିଦ୍ଧାନ୍ତରେ ପରମକ୍ରାନ୍ତିର ମାନ ସମାନ ଏବଂ ଏହା ୨୪° । ଆପଣ ଏହାକୁ ୨୩½° କାହିଁକି ମାନୁଛନ୍ତି ? କ୍ରାନ୍ତି ଦକ୍ଷିଣ ଓ ଉତ୍ତର କାହିଁକି ହୁଏ ? ପୃଥିବୀରେ ଦିନ ରାତ୍ରିର ହ୍ରାସ ବୃଦ୍ଧି କାହିଁକି ହୁଏ ? ସବୁ ରାଶି ତ କ୍ରାନ୍ତି ବୃତ୍ତରେ ଅଛନ୍ତି, ସେମାନଙ୍କ ଉଦୟ କାଳ ସମାନ ନୁହେଁ କାହିଁକି ? ଗ୍ରୀଷ୍ମ ଋତୁରେ ଖରା ଦୁଃସହ ହୁଏ, ଶିଶିର ଋତୁରେ କିନ୍ତୁ ଏହା ସୁଖକର ହୋଇଥାଏ । ଏହାର କାରଣ କ'ଣ ? ଗ୍ରୀଷ୍ମ ଋତୁର ଶେଷରେ ମେଘ ବେଶି ବର୍ଷା କରେ; ମାତ୍ର ଅନ୍ୟ ଋତୁରେ ତାହା କାହିଁକି ନ ହୁଏ ?

ମାନଂ ସୂର୍ଯ୍ୟସ୍ୟ ପୂର୍ବୋକ୍ତାଦେକାଦଶ ଗୁଣଂ କଥଂ ।
ଊନଂ ଚନ୍ଦ୍ରସ୍ୟ କିଂ ବ୍ରୂଷେ କଥଂ ତଦ୍ଗ୍ରହଣ ଦ୍ୱୟଂ ।୫୭।

ଚନ୍ଦ୍ରଗ୍ରହଣବତ୍ପର୍ବ ସନ୍ଧୌ ମଧ୍ୟଗ୍ରହୋ ରବେଃ
ନ ସ୍ୟାଦସ୍ମାଦ୍ବଦାସ୍ୟାପି ଲମ୍ବନସ୍ୟାଲ୍ପଭୂରତାଂ ।୫୮।

ବକ୍ତୁଂ ପରମଗ୍ରାସଂ ସବଲମ୍ବନସଂସ୍କୃତଂ
ସିଦ୍ଧଂଚେତ୍ତସ୍ୟ କିଂ ପ୍ରୋକ୍ତଃ ସଂସ୍କାରଃ ଶରଜଃ ପୁନଃ ।୫୯।

ଲମ୍ବନେଽବନତୌ ମଧ୍ୟଲଗ୍ନବିତ୍ରିଭ—ଲଗ୍ନୟୋଃ
କଃ ସାଧୁଃ ସାଧିତ, କସ୍ମାତ୍ ଶରାକ୍ଷଃ ପ୍ରାକ୍ନବଶ୍ରୁତଃ ।୬୦।

ଆଦ୍ୟମଧ୍ୟାବସାନେଷୁ ଦ୍ୟୁମଣି ଗ୍ରହଣସ୍ୟ ତେ
ଶଂକ୍ୱଃ କିଂ କଳ୍ପିତୋଽପୂର୍ବସ୍ତମୋ—ମଣ୍ଡଳବୃଦ୍ଧୟେ ।୬୧।

କିଂନ.ର୍କ ଗ୍ରହବଚ୍ଚାନ୍ଦ୍ରେ ଗ୍ରାସବାଣାଦଶେକତା
ବଳନସ୍ୟାପି ଦିଗ୍ଭେଦଃ କିଂ ପ୍ରାକ୍ପ୍ରତ୍ୟକ୍ କପାଳୟୋଃ ।୬୨।

ପ୍ରାଚୀନ ସିଦ୍ଧାନ୍ତୀମାନେ ସୂର୍ଯ୍ୟ-ବିମ୍ବମାନ ଯେତିକ କହିଥିଲେ ଆପଣ କେଉଁ କାରଣରୁ ତାର ୧୧ ଗୁଣ ସୂର୍ଯ୍ୟ ବିମ୍ବମାନ ମାନିଛନ୍ତି ? ପ୍ରାଚୀନୋକ୍ତ ଚନ୍ଦ୍ର ବିମ୍ବରୁ ଆପଣଙ୍କ ଚନ୍ଦ୍ର ବିମ୍ବ ଊଣା କାହିଁକି ? ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହଣ ଆପଣଙ୍କର କି ପ୍ରକାରର ? ଚନ୍ଦ୍ରର ପରି ପର୍ବସନ୍ଧିରେ (ଅମାନ୍ତ ଓ ଶୁକ୍ଳ ପ୍ରତିପଦୋ ଦ୍ୱାରମ୍ଭରେ) ରବିର ମଧ୍ୟ ଗ୍ରହଣ ହୁଏ ନାହିଁ କାହିଁକି କହନ୍ତୁ । ରବି ଲମ୍ବନର ନ୍ୟୂନତା ଓ ଆଧିକ୍ୟ କେଉଁ ସ୍ଥଳରେ ହୁଏ ତାହା କହନ୍ତୁ । ସୂର୍ଯ୍ୟଙ୍କ ପରମଗ୍ରାସମାନ ଆଣିବା ନିମନ୍ତେ ଲମ୍ବନ ସଂସ୍କାର ତ କଲେ କିଂତୁ ଶରଜ ସଂସ୍କାର କଣ ?

ଲମ୍ବନ ଓ ନତି ସାଧନ ନିମନ୍ତେ ମଧ୍ୟ ଲଗ୍ନରେ ନାଁ ବିତ୍ରିଭ ଲଗ୍ନରେ ଆବଶ୍ୟକତା ବେଶି, ତାହା ଭଲକରି ବୁଝାଇ ଦିଅନ୍ତୁ । ଆପଣଙ୍କ ଶରାକ୍ଷ ସଂସ୍କାର ପ୍ରାଚୀନମାନେ କାହିଁକି କହି ନାହାନ୍ତି, କହନ୍ତୁ । ସୂର୍ଯ୍ୟ ଗ୍ରହଣର ଆଦ୍ୟ, ମଧ୍ୟ ଓ ପ୍ରାନ୍ତଭାଗରେ ସ୍ପର୍ଶ, ମଧ୍ୟ ଓ ମୋକ୍ଷବେଳେ ଦୃକ୍‌ସିଦ୍ଧ ତମୋମଣ୍ଡଳ ଜାଣିବା ପାଇଁ ଆପଣ ଏକ ଅପୂର୍ବ ଶଙ୍କୁ କଳ୍ପନା କରିଛନ୍ତି । ଏହା କିନ୍ତୁ ପ୍ରାଚୀନମାନଙ୍କର ନ ଥିଲା ତ ? ସୂର୍ଯ୍ୟ ଗ୍ରହଣପରି ଚନ୍ଦ୍ର ଗ୍ରହଣରେ ଗ୍ରାସ ଓ ଶରର ଏକାଦିଗ କାହିଁକି ହୁଏ ନାହିଁ ? ପୂର୍ବ ଓ ପଶ୍ଚିମ କପାଳରେ ବଳନର ମଧ୍ୟ ଦିଗ୍‌ଭେଦ କାହିଁକି ହୁଏ ?

**ଯେଷାଂ ଯେଷାଂ ଯୁତିର୍ଦୃଷ୍ଟା ଖେଟାନାଂ ଭୂମି ପୃଷ୍ଠଗୈଃ**
**କିୟଦ୍ଭିର୍ଯୋଜନୈରିଷ୍ଟଂ ତତ୍ତତ୍‌କକ୍ଷାନ୍ତରଂ ତ୍ୱୟା ।୭୩।**

**ଦୃକ୍‌କର୍ମଣ୍ୟାୟନେ ମଧ୍ୟବଶିଖସ୍ୟ ସ୍ଫୁଟୀକୃତୌ**
**ନ୍ୟୂନତାୟାତ ସର୍ବଦ୍ୱ ପୁରାବତ୍—ସାଧନ କ୍ରମାତ୍ ।୭୪।**

**ଭବନ୍ମତେ ତୁ ସୂକ୍ଷ୍ମସ୍ୟ ସ୍ଫୁଟସ୍ୟ ବଶିଖସ୍ୟ କିଂ**
**କ୍ରାନ୍ତି ସଂସ୍କାରଯୋଗ୍ୟସ୍ୟ ମଧ୍ୟତୋଽଧିକତେଷ୍ୟତେ ।୭୫।**

**ଗ୍ରହୋଡ଼ୁଭିର୍ବାହୁତରୈର୍ବିହାୟସି ମହୀୟସି**
**ବ୍ୟାପ୍ତେଽପି ବଶି କିଂ ନ ସ୍ୟା-ଦହ୍ନୀବ ତମୋହତଃ ।୭୬।**

**ସୂର୍ଯ୍ୟସ୍ୟ କିରଣବ୍ୟାପ୍ତିଃ କତିଯୋଜନସମ୍ମିତା**
**କିୟତୀ ସା ଗ୍ରହର୍କ୍ଷାଣାଂ କିୟଦ୍ଦୂରେ ଚ ଦୃଶ୍ୟତା ।୭୭।**

ଯେଉଁ ଗ୍ରହମାନଙ୍କର ଯୋଗ ଭୂମି ପୃଷ୍ଠରେ ଲୋକେ ଦେଖନ୍ତି ସେମାନଙ୍କର କକ୍ଷାନ୍ତର ଆପଣଙ୍କ ମତରେ କେତେ ଯୋଜନ ? ଆୟନ ଦୃକ କର୍ମରେ କଦମ୍ବ ପ୍ରୋତାୟ ଶରକୁ ଧ୍ରୁବ ପ୍ରୋତାୟ କଲେ ପ୍ରାଚୀନମାନଙ୍କ ମତରେ ସାଧାରଣତଃ କମ୍ ହୋଇଥାଏ । ମାତ୍ର ଆପଣଙ୍କ ମତରେ ତାହା ବେଶି ହୋଇଥାଏ ଏହାର କାରଣ କଣ ?

ବିଶାଳ ଆକାଶରେ ତ ଅସଂଖ୍ୟ ଗ୍ରହ ଓ ତାରା ପରିବ୍ୟାପ୍ତ ହୋଇ ରହିଛନ୍ତି, ତଥାପି କାହିଁକି ରାତିରେ ଦିନପରି ଅନ୍ଧକାର ନାଶ ହୁଏନାହିଁ ? ସୂର୍ଯ୍ୟର କିରଣ କେତେ ଯୋଜନ ପର୍ଯ୍ୟନ୍ତ ଯାଏ ? ଗ୍ରହ ଓ ତାରାମାନଙ୍କର ଆଲୋକ ମଧ୍ୟ କେତେ ଦୂର ପର୍ଯ୍ୟନ୍ତ ଯାଇଥାଏ ? ଗ୍ରହ ଓ ତାରାଗୁଡ଼ିକ କେତେ ଦୂରରୁ ଦେଖାଯାନ୍ତି ।

**କ୍ଷୁଣ୍ଣାନି କୁଦିନାନି ସ୍ୱୈର୍ଗ୍ରହାଣାଂ ଗତଯୋଜନୈଃ**
**ସ୍ୱକକ୍ଷାଯୋଜନାନୀତି ଶ୍ରୁତଂ ଯତ୍ତଦିହ ତ୍ୱୟା ।୭୮।**

**କିରସ୍ତତ୍ଖଣ୍ଡିତ ବୈଷମ୍ୟାଦ୍ୟଦି ତଦ୍‌ବେଷ୍ଟନଂ ଦିବଃ**
**ଭବନ୍ମତେ କୟନ୍ମାନଂ ବ୍ରହ୍ମାଣ୍ଡୋଦରନାମକମ୍ ।୭୯।**

କଳ୍ପ ସାବନ ଦିନରେ ଦୈନିକ ଗ୍ରହ ଯୋଜନ ଗତିକି ଗୁଣିବାଦ୍ୱାରା ବ୍ରହ୍ମାଣ୍ଡ କକ୍ଷା ଯୋଜନ ହୁଏ ବୋଲି ଶାସ୍ତ୍ରମାନଙ୍କରେ କଥିତ ଅଛି । ଆପଣ ଗ୍ରହ ଯୋଜନ ଗତି ସମାନ ନୁହେଁ ବୋଲି କହିବାଦ୍ୱାରା ତାହା ଖଣ୍ଡିତ ହେଲା । ଏପରି ଅବସ୍ଥାରେ ଆପଣଙ୍କ ମତରେ ବ୍ରହ୍ମାଣ୍ଡ ପରିଧିର ପରିମାଣ କେତେ ଏବଂ ତାହା କପରି ବା ଜଣାଯିବ ?

**ଗ୍ରହର୍କ୍ଷାସ୍ତୋଦୟୌ ଯଦ୍ବଦ୍‌ଦୃକ୍କର୍ମ୍ମଭ୍ୟାଂ ତ୍ୱୟୋଦିତୌ**
**ତଥା କିଂ ଭବତୋ ମେରୌ ନ ବା ତନ୍ନିର୍ଣ୍ଣୟଂ ବଦ ।୭୦।**

ଆପଣ ଆକ୍ଷ ଓ ଆୟୁ ଦୃକ୍‌କର୍ମ ଦୁଇଟି ଦ୍ୱାରା ଗ୍ରହ ଓ ନକ୍ଷତ୍ରମାନଙ୍କର ଉଦୟ ଓ ଅସ୍ତ କଥା ଯେ କହିଛନ୍ତି, ମେରୁଠାରେ ମଧ୍ୟ ତାହା କ'ଣ ସେପରି କରାଯିବ ? ଏହାର ନିଷ୍ପତ୍ତି କରିଦିଅନ୍ତୁ ।

**କ୍ଷୀୟମାଣାଃ କଳା ଦେବୈଃ ପୀୟନ୍ତେଽମୃତଦୀଧିତେଃ**
**ଇତି ବାଦଃ ପୁରାଣାନା-ମନୃତଃ କି-ମୃତୋ ମତଃ ।୭୧।**

**ପୂର୍ବସ୍ୟାଂ ପଶ୍ଚିମସ୍ୟାଞ୍ଚ ପ୍ରାୟଶଃ ଶଶିନୋ ଦିଶି**
**ଉନ୍ନତଃ ସୌମ୍ୟଶୃଙ୍ଗସ୍ୟ ଦୃଶ୍ୟତେ ଭାରତେ କଥମ୍ ।୭୨।**

**ରବୀନ୍ଦୁମାର୍ଗୟୋର୍ଭୂରିବିପ୍ରକର୍ଷାତ୍ କଥଂ ଭବେତ୍**
**ଭୂଦୃଷ୍ଟକାନ୍ତସାମ୍ୟୋତ୍‌ଥପାତେ ତଦ୍ଦୃଷ୍ଟିସଙ୍ଗତଃ ।୭୩।**

ଦେବତାମାନେ ଚନ୍ଦ୍ରର କିରଣ ପିଇଯାନ୍ତି ବୋଲି ଯେଉଁ ପୌରାଣିକ ମତ ଅଛି ତାହା ସତ୍ୟ ନା ମିଥ୍ୟା ? ପୂର୍ବଦିଗରେ ହେଉ ବା ପଶ୍ଚିମ ଦିଗରେ ହେଉ ଚନ୍ଦ୍ରର ଉତ୍ତର ଶୃଙ୍ଗ ଭାରତକୁ ପ୍ରାୟ ଉନ୍ନତ ଦେଖାଯାଏ, ଏହାର କାରଣ କ'ଣ ? ରବି ଓ ଚନ୍ଦ୍ର ତ ବହୁଦୂରରେ (ପରସ୍ପରଠାରୁ) ରହିଛନ୍ତି, ତଥାପି ସେ ଦୁହିଙ୍କ କ୍ରାନ୍ତି ସାମ୍ୟ ଜନିତ ଯେଉଁ ବୈଧୃତି ବ୍ୟତିପାତ ଯୋଗ ହୁଏ (ପାତ-ଯୋଗ) ସେଥିରେ ରବି-ଚନ୍ଦ୍ର ଉଭୟଙ୍କର ଦୃଷ୍ଟି ସଂଯୋଗ କପରି ହୁଏ ?

କସ୍ମ ମନ୍ତ ନ ବା ଲୋକାଃ ପ୍ରଭହାନ୍ତ୍ୟହବାଦଯ୍ଃ
ଦନାବ୍ଦମାସହୋରାଣାମଧିପାନାଂ କମଶ୍ଚ କଃ ।୭୪।

ମହ ତପ ଆଦ ଲୋକ ପ୍ରବହ ବାୟୁଦ୍ୱାରା ବୁଲନ୍ତ କ ? ଦନ, ବର୍ଷ, ମାସ ଓ ହୋରାର ସ୍ୱାମୀମାନେ କେଉଁ କମରେ ହୁଅନ୍ତ ?

ସ୍ୟାତାଂ ଭାନୋର୍ଯଦ ଦନନଶେ ଦର୍ଶନାଦର୍ଶନାଭ୍ୟାଂ
ନାଡ଼ୀଷଷ୍ଟ୍ୟା ଦ୍ୟୁନଶମବନୌ ଯୁକ୍ତମାସୀତ୍ତଦା ନଃ ।
ପୈତ୍ରଂ ମାସା କସ୍ମୁ ଶଶିଭୁବା ଦୈବମର୍କାବ୍ଦତଃ କଂ
ବ୍ରାହ୍ମ୍ୟଂ ଖାଭ୍ରାମ୍ବରଭୁଜମିତୈଃ କଂ ଯୁଗୈଃ ସ୍ୟାତ୍ତଦେବ ।୭୫।

ସୂର୍ଯ୍ୟର ଦର୍ଶନ ଓ ଅଦର୍ଶନଦ୍ୱାରା (ଉଦୟ, ଅସ୍ତ କମରେ) ଦନ ଓ ରାତ୍ର ହେଉଥିଲେ ୬° ଦଣ୍ଡରେ ଅହୋରାତ୍ର ହେବା ଠିକ୍ । ତାହା ହେଲେ ଚନ୍ଦ୍ରମାସରେ ପୁଣି କାହାଁକ ପିତୃଦନ ହେବ ? ସୌରବର୍ଷରେ ଅଥଚ ଦେବତାମାନଙ୍କର କାହାଁକ ଦନରାତ୍ର ହେବ ? ୨୦୦୦ ମହାଯୁଗରେ ବ୍ରହ୍ମାଙ୍କର ଦନରାତ୍ର ମଧ୍ୟ କାହାଁକ ହେବ ?

କତବଧଃ ପ୍ରଳୟଃ କତଧାଃ ସମାଃ
ସମୟବୋଧକଯନ୍ତ୍ରମହୋ କଥମ୍
ନଭସି ଲଗ୍ରହଭାଂଶ କଳାମିତୌ
ଭବତ କଂ କରଣଂ ଭବଦୀପ୍ସିତମ୍ ।୭୬।

ଷଡୃତବଃ ପ୍ରଭବନ୍ତ କଥଂ କ୍ଷିତୌ
କ୍ୱସୁ ସମା ନ ସମାଃ କ୍ୱସୁ ସବତଃ ।
ଉପକୃତର୍ଭଗଣାଜ୍ଜଗତୋଽସ୍ତିକା
ଜଗଦଦଂ ଗମନାଦତ ନାସ୍ତିକାଃ ।୭୭।

ଯଦବଦନ୍ନଦ ଉତ୍ତରମସ୍ତି କଂ
ଶଶିତନାବସିତଂ କସ୍ମୁତେକ୍ଷ୍ୟତେ
କମସମାଧିମତାମପି ମୋକ୍ଷଦଂ
ଯଦନୁଭୈଃ ସୁଲଭଂ ପରମଂ ପଦମ୍ ।୭୮।

ଶ୍ରମମ୍ଭତେ କଳୟନ୍ତ କଥଂ ଜନା—
ସ୍ତ୍ରିଥିମୁଖାଙ୍ଗମତୀତମନାଗତମ୍ ।
କଥୟ ସବମିଦଂ ଯଦବେତ୍ୟ ମେ
ଭ୍ରମଚୟଃ ଶମମେଷ୍ୟତ ଦୁର୍ଦ୍ଦମଃ । ୭୯ ।

ପ୍ରଳୟ କେତେ ପ୍ରକାର ? ବର୍ଷ କେତେ ପ୍ରକାର ? କାଳମାପକ ଯନ୍ତ୍ର କପରି ? ଆକାଶ ଗୋଲରେ ନକ୍ଷତ୍ର ଓ ଗ୍ରହର ବିକ୍ଷେପାଂଶ କଳାମାନରେ ଆପଣଙ୍କର ଅଭିମତ କରଣ କପରି ଉଦହନ୍ତି ? ପୃଥିବୀରେ ଶିଶିର ଆଦି ଛ ଋତୁ କାହିଁକି ହୁଅନ୍ତି ? ବର୍ଷଗୁଡ଼ିକ (ସୌର, ଗୃନ୍ଦ୍ର, ସାବନ ଆଦି) କଣ ପରିମାଣରେ ସମାନ ନୁହନ୍ତି ? ଗ୍ରହ ଭଗଣରୁ ଅଥବା ନକ୍ଷତ୍ର-ଗଣରୁ ଜଗତର କିଛି ଉପକାର ହୁଏ କି ନାହିଁ ? ବେଦନିନ୍ଦା କରୁଥିବା ଲୋକେ "ଗଚ୍ଛତି ଇତି ଜଗତ୍" ଅର୍ଥାତ୍ ପୃଥିବୀ ଗତିଶୀଳ ବୋଲି ଯାହା କହନ୍ତି ତାହାର କିଛି ଉତ୍ତର ଅଛି କି ନାହିଁ ? ଚନ୍ଦ୍ର ବିମ୍ବରେ କଳା ପୁଣି କାହିଁକି ଦେଖା ପଡ଼େ ? ବ୍ରହ୍ମ ଚିନ୍ତା କରିବା ଲୋକଙ୍କୁ ଯେପରି ମୋକ୍ଷ ପଦ ସୁଲଭ ହୁଏ ସମାଧିହୀନ ଲୋକଙ୍କୁ ମଧ୍ୟ କ'ଣ ତାହା ମିଳିପାରେ ? ଲୋକେ ବିନା ପରିଶ୍ରମରେ କପରି ଅତୀତ ତଥା ଭବିଷ୍ୟତ ତିଥି ନକ୍ଷତ୍ରାଦି ପଞ୍ଚାଙ୍ଗ ଗଣନା କରି ପାରନ୍ତି, କହନ୍ତୁ । ଏପରି ଯେତେ ପ୍ରଶ୍ନ ସବୁର ଉତ୍ତର ଦିଅନ୍ତୁ । ଏ ସବୁର ଉତ୍ତର ଶୁଣିଲେ ମୋର ଦୁର୍ଲଙ୍ଘ୍ୟ ସନ୍ଦେହ ସବୁ ନଷ୍ଟ ହେବ ।

ଜଳଜନାଭିବିଭୂଷଣବିଗ୍ରହୋ—
ଜଳଜସମ୍ଭବରାଜଦନୁଗ୍ରହଃ ।
ଜଳଜନା-ଜନ କାରଣ ଦର୍ଶନୋ
ଜଳଜନାଭିରଭୀତ କରୋତ୍ୱସ୍ମୁନଃ । ୮୦ ।

ଯାହାଙ୍କ ବିଗ୍ରହ ପଦ୍ମନାଭିରେ ବିଭୂଷିତ ବ୍ରହ୍ମାଙ୍କଠାରେ ଯେ ବିଶେଷ ଅନୁଗ୍ରହ କରିଥାନ୍ତି ଏବଂ ଯାହାଙ୍କ ଦର୍ଶନମାତ୍ରେ କୁମ୍ଭୀର ପୁଣି ଜନ୍ମ ପରିଗ୍ରହରୁ ରକ୍ଷା ପାଇଗଲା, ସେହି ପଦ୍ମନାଭ ପ୍ରଭୁ ଜଗନ୍ନାଥ ଆମ୍ଭମାନଙ୍କର ଭୟ ଦୂର କରନ୍ତୁ ।

ଇତ୍ୟୁତ୍କଳୋଦ୍ଭବ୍ୟଜନ୍ମପାଳକୁଳପ୍ରସୂତ—
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷି ସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ପ୍ରଶ୍ନାନ୍ୱିତୋ ବ୍ୟରଚ ଷୋଡ଼ଶକଃ ପ୍ରକାଶଃ । ୮୧ ।

ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ ଗୋଳାଧିକାରେ
ପ୍ରଶ୍ନକର୍ତ୍ତୃନୋନାମ ଷୋଡ଼ଶଃ ପ୍ରକାଶଃ ।

ଉତ୍କଳର ଉଜ୍ଜ୍ୱଳ ରାଜବଂଶଜ ଚନ୍ଦ୍ରଶେଖର ତାଙ୍କର ଦୃକ୍‌ସିଦ୍ଧ ସିଦ୍ଧାନ୍ତ ଦର୍ପଣର ଷୋଡ଼ଶ ପ୍ରକାଶ ଶେଷ କଲେ । ସିଦ୍ଧାନ୍ତ ଦର୍ପଣ ଜ୍ୟୋତିଷ ଜାଣିନଥିବା ଲୋକଙ୍କୁ ମଧ୍ୟ ଶୀଘ୍ର ଜ୍ୟୋତିଷ ତତ୍ତ୍ୱ ବୁଝାଇ ଦେଇ ପାରିବ । ଏହି ପ୍ରକାଶରେ କେବଳ ଅନେକଗୁଡ଼ିଏ ପ୍ରଶ୍ନ ପଚରା ଯାଇଅଛି ।

# ସପ୍ତଦଶଃ ପ୍ରକାଶଃ

## ଭୂଗୋଲସ୍ଥିତି ବର୍ଣ୍ଣନମ୍

**ସଚ୍ଛାସ୍ତ୍ରଗୁଚ୍ଛାତ୍ କତିଚିଦ୍ ବିଶେଷାନ୍**
**ସଚ୍ଛିଷ୍ୟପୃଚ୍ଛାଚ୍ଛଳତଃ ପ୍ରଦର୍ଶ୍ୟ**
**ତତ୍ସାରଭୂତୋତ୍ତରମାର୍ଯ୍ୟ-ବାଗ୍ଭି**
**ର୍ଯଚ୍ଛାମିବତ୍ସା ବହିତଃ ସକୃତ୍ ସ୍ୟାଃ ।୧।**

ଉତ୍ତମ ଶିଷ୍ୟର ପ୍ରଶ୍ନ ଛଳରେ ଅନେକ ଶାସ୍ତ୍ରରୁ କେତେକ ବିଶିଷ୍ଟ ବିଷୟର ଚର୍ଚ୍ଚା କରି ସେ ସବୁର ସାର ଉତ୍ତର ସଂସ୍କୃତ ଭାଷାରେ ଦେବା ନିମନ୍ତେ ମୁଁ ଯତ୍ନଶୀଳ ହେଉଅଛି । ହେ ବତ୍ସ (ଶିଷ୍ୟ) ତୁମେ ସାବଧାନ ହୋଇ ଶୁଣ ।

**ପ୍ରତ୍ୟକ୍ଷଶବ୍ଦାନୁମିତି ପ୍ରମାଣୈ—**
**ର୍ବ୍ୟବସ୍ଥୟା ଚ ସ୍ଥିରତା ସ୍ଥିରାୟାଃ**
**ଅହସ୍କରାଦେଶ୍ଚଳତାଖିଳାନାଂ**
**ଗୋଲକୃତିତ୍ୱଂ ପ୍ରତିପାଦ୍ୟତେଽତ୍ର ।୨।**

ମୁଁ ବର୍ତ୍ତମାନ ପୃଥିବୀର ଅଚଳତ୍ୱ ସମ୍ବନ୍ଧେ ପ୍ରତ୍ୟକ୍ଷ, ଶାବ୍ଦ, ଅନୁମାନଦ୍ୱାରା ବ୍ୟବସ୍ଥା ପ୍ରମାଣର ଚର୍ଚ୍ଚା କରୁଅଛି । ସୂର୍ଯ୍ୟାଦି ଗ୍ରହମାନଙ୍କର ଆକାର ଯେ ଗୋଲ ତାହା ମଧ୍ୟ ଏଠାରେ ମୁଁ ପ୍ରତିପାଦନ କରୁଅଛି ।

ପ୍ରତ୍ୟକ୍ଷ—ଆଖିରେ ଦେଖି ମାନିବା । ଶାବ୍ଦ—ବେଦ ଓ ଆପ୍ତ ବଚନକୁ ମାନି ଚଳିବା ।
ଅନୁମାନ—ଧୂମକୁ ଦେଖି ପର୍ବତରେ ଯେପରି ନିଆଁ ଥିବା ସ୍ଥିର କରାଯାଏ ସେପରି କାର୍ଯ୍ୟକୁ ଦେଖି କାରଣ ସ୍ୱୀକାର କରିବା ।
ବ୍ୟବସ୍ଥା—ବିପକ୍ଷମାନଙ୍କର ଯୁକ୍ତି ଖଣ୍ଡନ କରି ସ୍ୱମତ ସ୍ଥାପନ କରିବା ।

**ଭୂଗୋଲଃ ସୌମ୍ୟଶୁକ୍ରାବନିତନୟସୁରଗୁର୍ଯ୍ୟସୂର୍ଯ୍ୟାସୂର୍ଯ୍ୟାମୃଜାନାଂ**
**କକ୍ଷାବୃତ୍ତୈର୍ବୃତସ୍ୟାସ୍ଫୁଟଦିବସକୃତଃ କକ୍ଷୟା ବେଷ୍ଟିତୋଽୟମ୍**
**ମଧ୍ୟେ (୨) ଦୂରେଽନ୍ତିକେ ଚ ସ୍ଫୁଟରବିଭଗଣର୍କ୍ଷେଶକକ୍ଷାପରୀତ—**
**ସ୍ତ୍ରିଷ୍ଟତ୍ୟଣ୍ଡସ୍ୟ ମଧ୍ୟେ ନଭସି ଖଳୁ ସଦାଧାରଶୂନ୍ୟଃ ସ୍ୱଶକ୍ତ୍ୟା ।୩।**

(୧)—ପରପକ୍ଷନିରାସ ପୂର୍ବକସ୍ୱପକ୍ଷସ୍ଥାପନେନ, ଯଥୋକ୍ତକଥନଂ ନାମ ବ୍ୟବସ୍ଥା ।
(୨)—ମଧ୍ୟସୂର୍ଯ୍ୟସ୍ୟ ।

ବୁଧ, ଶୁକ୍ର, ମଙ୍ଗଳ, ଗୁରୁ ଓ ଶନି ଏ ପାଞ୍ଚ ତାରାଗ୍ରହର କକ୍ଷା କେନ୍ଦ୍ରରେ ସୂର୍ଯ୍ୟ ରହିଅଛି । ଏ ସୂର୍ଯ୍ୟ କଳ୍ପ ସ୍ଫୁଟ ସୂର୍ଯ୍ୟ ନୁହେଁ—ମଧ୍ୟମ । ଏହି ମଧ୍ୟମ ସୂର୍ଯ୍ୟର କକ୍ଷା କେନ୍ଦ୍ରରେ ପୃଥିବୀ ରହିଛି । ମଧ୍ୟମ ସୂର୍ଯ୍ୟ ପୃଥିବୀର କେବେ କେବେ ନିକଟରେ ଏବଂ କେବେ କେବେ ଦୂରରେ ମଧ୍ୟ ରହେ । ବ୍ରହ୍ମାଣ୍ଡ ମଧ୍ୟରେ ତାର ସ୍ଥିତି । ଆକାଶରେ ଆଧାର ଶୂନ୍ୟ ହୋଇ ସେ ନିଜ ଶକ୍ତି ବଳରେ ରହିଅଛି । ପୃଥିବୀକୁ ସ୍ଫୁଟ ରବି, ନକ୍ଷତ୍ର ସମୂହ (୨୭ ନକ୍ଷତ୍ର) ଓ ଚନ୍ଦ୍ରର କକ୍ଷା ବେଢ଼ି ରହିଅଛି ।

**ଶ୍ଳୋ :—ସର୍ବତଃ ପର୍ବତାରାମଗ୍ରାମ ଚୈତ୍ୟଚୟୈଶ୍ଚିତଃ**
**କଦମ୍ବକୁସୁମଗ୍ରନ୍ଥିଃ କେଶରପ୍ରସରୈରିବ ।ଇତି। ।୪।**

ପାହାଡ଼, ବଗିଚା, ଗାଁ ଓ ଅଚୈତ୍ୟ ବୃକ୍ଷ ଇତ୍ୟାଦିଦ୍ୱାରା ପରିବ୍ୟାପ୍ତ ହୋଇ ପୃଥିବୀ ରହିଛି—ଯେପରି କଦମ୍ବ ଫୁଲର ଗଣ୍ଠି ଉପରେ କେଶର ଗୁଡ଼ିକ ଥାଏ । କଦମ୍ବ ଫୁଲର ଡେଙ୍ଗା ଡେଙ୍ଗା କେଶରଗୁଡ଼ିକ ପୃଥିବୀ ଉପରେ ପାହାଡ଼, ବଗିଚା ପରି ।

**ମମାୟମେବ ସିଦ୍ଧାନ୍ତୋ ମତାନ୍ତରବିଧାୟକାନ୍**
**କାଂଶ୍ଚିତ୍ପ୍ରତ୍ୟୁତ୍ତରଂ ଯଚ୍ଛନ୍ନିମଂ କୁର୍ବେ ସୁନିଶ୍ଚଳମ୍ ।୫।**

ରବି ଚନ୍ଦ୍ର ଓ ନକ୍ଷତ୍ର କକ୍ଷା ଭିତରେ ପୃଥିବୀ—ଗୋଲ ଆଧାର ଶୂନ୍ୟ ହୋଇ ସ୍ଥିର ରହିଛି, ଏହା ହିଁ ମୋର ସ୍ପଷ୍ଟ ସିଦ୍ଧାନ୍ତ । ଯେଉଁମାନେ ଏ ବିଷୟରେ ମୋଠାରୁ ଭିନ୍ନ ମତ ପୋଷଣ କରନ୍ତି, ସେମାନଙ୍କ ପ୍ରଶ୍ନର ଉତ୍ତର ଦେଇ ମୁଁ ମୋ ମତକୁ ଶଙ୍କାଶୂନ୍ୟ କରିଦେବାକୁ ଚାହେଁ ।

**ସୂ—ମଧ୍ୟେ ସମନ୍ତାଦଣ୍ଡସ୍ୟ ଭୂଗୋଳୋ ବ୍ୟୋମ୍ନି ତିଷ୍ଠତି**
**ବିଭ୍ରାଣଃ ପରମାଂ ଶକ୍ତିଂ ବ୍ରହ୍ମଣୋ ଧାରଣାତ୍ମିକାମ୍ ।ଇତି। ।୬।**

ଆକାଶରେ ବ୍ରହ୍ମାଣ୍ଡର ଠିକ୍ ମଧ୍ୟ ଦେଶରେ ପୃଥିବୀ ସବୁ ଆଡ଼ୁ ସ୍ଥିରହୋଇ ରହିଅଛି । ନିଜକୁ ଧରି ରଖିବାର ଧାରଣୀ ଶକ୍ତିକୁ ସେ ବ୍ରହ୍ମଠାରୁ ଗ୍ରହଣ କରିଛି । ଏ ଧାରଣୀ ଶକ୍ତି ଅତି ମହତ୍ ।

**ଶ୍ଳୋ—ମୂର୍ତ୍ତୋ ଧର୍ତ୍ତା ଚେଦ୍ଧରିତ୍ର୍ୟାଃସ୍ତଦନ୍ୟ—**
**ସ୍ତସ୍ୟାପ୍ୟନ୍ୟୋଽସ୍ୟୈବମତ୍ରାନବସ୍ଥା ।**
**ଅନ୍ତ୍ୟେ କଳ୍ପ୍ୟା ଚେତ୍ସ୍ୱଶକ୍ତିଃ କିମାଦ୍ୟେ**
**କିଂ ନୋ ଭୂମିଃ ସାଷ୍ଟମୂର୍ତ୍ତେଶ୍ଚମୂର୍ତ୍ତି ।ଇତି। ।୭।**

ପୃଥିବୀର ଧାରକ ମାନିଲେ ସେହି ଧାରକର ପୁଣି ଧାରକ ଏବଂ ତାର ଧାରକ ଏପରି ଅନନ୍ତ ଧାରକ ମାନିବାକୁ ହେବ । ଫଳରେ ଅନବସ୍ଥା ବା ଅପରିସମାପ୍ତି ଦୋଷ ହେବ । ଏଣୁ ଶେଷରେ କୌଣସି ଶକ୍ତି ବିଶେଷକୁ ମାନିବାକୁ ହିଁ ପଡ଼ିବ । ତା' ହେଲେ ଏହି ଶକ୍ତିକୁ ପ୍ରଥମରୁ ମାନିନେଲେ କ୍ଷତି କ'ଣ ? ପୃଥିବୀ କ'ଣ ଅଷ୍ଟମୂର୍ତ୍ତିଧାରୀ ଜଗତ୍ପତି ମୂର୍ତ୍ତି ନୁହେଁ ?

**କୂର୍ମାଦୀନାମତୋ ଭୂମେର୍ଯଦ୍ କ୍ୱଚିତ୍‌ଖଣ୍ଡଧାରଣାତ୍**
**ସଂଗଚ୍ଛତେ ଧାରକତ୍ୱଂ ନ ତୁ କୃତ୍ସ୍ନମହୀଧୃତେଃ ।୮।**

**ଭୂଧୃତାଃ ପର୍ବତା ଯଦ୍ୱତ୍ ଭୂଧରା ଇତି କୀର୍ତ୍ତିତାଃ**
**ତଥାଧାରତ୍ୱମେତେଷାମୁକ୍ତଂ ଭୂସ୍ଥାୟିନାମପି ।୯।**

କୂର୍ମାଦି ଅବତାର ପୃଥିବୀକୁ ଧରି ରଖିଥିଲେ । ଏହାର ଅର୍ଥ ପୃଥିବୀର କିଛି ଅଂଶ ସେମାନେ ଧରିଥିଲେ; ମାତ୍ର ସମଗ୍ର ପୃଥିବୀକୁ ଧରି ନ ଥିଲେ । ଅଥବା ପୃଥିବୀ ନିଜେ ଧରି ରଖିଥିବାରୁ ଯେପରି ପର୍ବତର ନାମ ପୃଥିବୀଧର ବା ଭୂଧର ଠିକ୍ ସେହିପରି ଭୂ (ପୃଥିବୀ) ଏହି କୂର୍ମାଦି ଅବତାରକୁ ଧରି ରଖିଥିବାରୁ ଏହାର ନାମ କୂର୍ମାଦିଧର ହୋଇପାରେ ।

**ଭୂଭରଖିନ୍ନନାଗେନ୍ଦ୍ରଶୀର୍ଷବିଶ୍ରାମସମ୍ଭବଃ**
**ଭୂକଂପ ଇତି ଯଦ୍ୱାକ୍ୟଂ ତତ୍ କ୍ୱଚିତ୍ ଖଣ୍ଡଧାରଣେ ।୧୦।**
**ସମାଧେୟଂ ହି ଭୂଗୋଳେ ଲୋକାଦୃଷ୍ଟବଶାତ୍ କ୍ୱଚିତ୍**
**ଅଙ୍ଗସ୍ଫୁରଣବତ୍ କମ୍ପୋ ଜାତୋଽଙ୍ଗେନ୍ୟୁପଚର୍ଯ୍ୟତେ ।୧୧।**

ଭୂ-କୁ ଧରି ମୁଣ୍ଡବିଥାଇବାରୁ ବାସୁକି ତାର ମୁଣ୍ଡ ଲେଇଁଥାଇଲା । ଏଥିରୁ ଭୂ ବା ପୃଥିବୀର କମ୍ପନ ହେଲା । ଏହି କଥାରେ ଥିବା ଭୂର ଅର୍ଥ ସମଗ୍ର ପୃଥିବୀ ନୁହେଁ । ପୃଥିବୀର ଅଂଶ ବିଶେଷ ମାତ୍ର ।

କୌଣସି ଅଙ୍ଗର ସ୍ଫୁରଣ (ତେଇଁବା) ହେଲେ ତାହା ସମଗ୍ର ଶରୀରକୁ ହଲାଇଦିଏ । ସେହିପରି ଭୂର କୌଣସି ସ୍ଥାନରେ ସାମାନ୍ୟ କମ୍ପନ ହେଲେ ସମଗ୍ର ପୃଥିବୀରେ ତାହାର ପ୍ରଭାବ ପଡ଼ିବାର କଥା । ଏଣୁ ସମସ୍ତ ପୃଥିବୀରେ କଂପନ ହୁଏ । ଏହି ଭୂମିକମ୍ପର ଫଳ ମଧ୍ୟ ନାନାଭାବରେ ବର୍ଣ୍ଣିତ ଅଛି । ଭୂକଂପର ସମାଧାନ ଏହିପରି କରାଯାଇପାରେ । କୌଣସି ସ୍ଥାନରେ କୌଣସି କାରଣରୁ ଭୂକଂପ ହେଲେ ତାହା ସମଗ୍ର ପୃଥିବୀକୁ ପ୍ରଭାବିତ କରିଥାଏ ।

**ଯସ୍ୟାସ୍ତ୍ୱମଧଂ ପ୍ରତଃ ସନ୍ନିକୃଷ୍ଟ—**
**ମାକୃଷ୍ୟମାଣଂ ପରମାଣୁଭୂନ୍ନଃ ।**
**କ୍ରମେଣ ବେଗାଦ୍ ପତତୀବ ଭାତି**
**ଦ୍ରବ୍ୟଂ ଧରାଯୌ କ୍ୱ ପତତ୍ୱନନ୍ତେ ।୧୨।**

ଦ୍ରବ୍ୟ ପରମାଣୁର ସମଷ୍ଟି । ତାହାକୁ ପୃଥିବୀ ନିଜଆଡ଼କୁ ଟାଣିଆଣେ । ଏତେବେଳେ ଏହି ଦ୍ରବ୍ୟ ପୃଥିବୀରେ ପଡ଼ିଗଲାପରି ଦେଖାଯାଏ । ପୃଥିବୀ ତ ଦ୍ରବ୍ୟକୁ ଟାଣେ ନିଜ ଶକ୍ତି ବଳରେ, ସେ ପୁଣି ଆକାଶରେ ଯାଇ ପଡ଼ିବ କେଉଁଠାରେ ? ସେ କେଉଁଠି ପଡ଼ୁ ନାହିଁ । ସେହିପରି ନିଶ୍ଚଳ ହୋଇ ରହିଛି ।

ବ୍ରହ୍ମସିଦ୍ଧାନ୍ତେ— ପଞ୍ଚାଶତ୍‌କୋଟିବିସ୍ତୀର୍ଣ୍ଣା କେବଳଂ କଳ୍ପିତା ମହୀ
ଅଳ୍ପରାଜ୍ୟମଦାନ୍ଧାନାଂ ବିଷାଦାୟ ବିରକ୍ତୟେ ।୧୩।

ସା କଳ୍ପନା ନ ଚ ବୃଥା ସତାଂ ପୀଠାଦିପୂଜନେ ।ଇତି ।
ସର୍ବତ୍ର ବିଷୟାରୋପାଦେବ ସିଦ୍ଧେୟଦୁପାସନା ।୧୪।

ବ୍ରହ୍ମାଣ୍ଡତ୍ୱଂ ଯଥା ଦେହେ ଧମାନ୍ୟାମାଦିଶକ୍ତିତା
ଆତ୍ମନୀଶସ୍ୟ ଦାସୀତ୍ୱଂ ତଥୈବ ସ୍ଥୂଳତା କ୍ଷିତେଃ ।୧୫।

ମଣ୍ଡୂକାଦିକମପ୍ୟେବ ସର୍ବମାରୋପିତଂ ବୁଧୈଃ
ଧ୍ୟାନପୂଜାଜପାଦୀନାଂ ସ୍ୟାତ୍‌ପୁଷ୍ଟିସ୍ତତ୍‌କ୍ରମାଦ୍ଧ୍ରୁତଃ ।୧୬।

ସୂ :—ଅଳ୍ପକାୟତୟା ଲୋକାଃ ସ୍ୱସ୍ଥାନାତ୍‌ସର୍ବତୋ ଦଶଂ
ପଶ୍ୟନ୍ତି ବୃତ୍ତାମପ୍ୟେତାଂ ଚକ୍ରାକାରାଂ ବସୁନ୍ଧରାଂ
।ଇତି। ୧୭।

ପୃଥିବୀ ୫୦ କୋଟି ଯୋଜନ ବିସ୍ତୃତ ବୋଲି କଳ୍ପନା କରି କୁହାଯାଇଛି । ସାମାନ୍ୟ ଟିକିଏ ରାଜ୍ୟର ଶାସକ ହୋଇ ରାଜାମାନେ ମଦମତ୍ତ ହୋଇ ପଡ଼ନ୍ତି । ପୃଥିବୀ ତାଙ୍କଠାରୁ ଏତେ ବଡ଼ ବୋଲି ଜାଣିଲେ ସେମାନଙ୍କର ମୋହ ଛୁଟିଯିବ ଏବଂ ସେମାନେ ନିଜ ରାଜ୍ୟପ୍ରତି ମଧ୍ୟ ବିଷର୍ଣ୍ଣ ଓ ବିରକ୍ତ ହେବେ - ଆଉ ଗର୍ବ କରିବେ ନାହିଁ ।

ସଜ୍ଜନମାନେ ପୀଠାଦି ପୂଜା କଲାବେଳେ ସବୁସ୍ଥାନରେ ବିଷୟ ଆରୋପ କରନ୍ତି । ଏଣୁ ଏତେବଡ଼ ପୃଥିବୀ କଳ୍ପନା କରିବାରେ ମଧ୍ୟ ଯଥାର୍ଥତା ଅଛି ।

ପିଣ୍ଡରେ ବ୍ରହ୍ମାଣ୍ଡର କଳ୍ପନା, ଶିରରେ ଆଦିଶକ୍ତିର ବିଗ୍ରହ, ଆତ୍ମାରେ ଈଶ୍ୱରଙ୍କ ଦାସୀତ୍ୱପରି ପୃଥିବୀର ସ୍ଥୂଳତା ଗୃହୀତ ହୋଇଛି । ମଣ୍ଡୂକ ଆଦିର କ୍ରମ ମଧ୍ୟ ପୂଜା ପାଠାଦିରେ ଯାହା ଅଛି ତାହା ମଧ୍ୟ ଏହିପରି ଆରୋପିତ । ଏହି ଆରୋପକୁ ମଧ୍ୟ ଆମ୍ଭେମାନେ ମାନୁଅଛୁ । କାରଣ ଏ ସବୁ ସ୍ୱୀକାର କରିବାଦ୍ୱାରା ପୂଜା ଧ୍ୟାନ ଆଦି ପୁଷ୍ଟ ହୁଏ—ସେଥିରୁ ଭଲ ଫଳ ମଧ୍ୟ ମିଳିଥାଏ । ମନୁଷ୍ୟ ଅତି ଛୋଟ— ପୃଥିବୀ ଅତି ବଡ଼—ତା ତୁଳନାରେ ସେ ପୃଥିବୀର ଅତି ନଗଣ୍ୟ ଅଂଶ ଦେଖେ । ଏଣୁ ତାହା ତାକୁ ଚକ୍ର (ଗୋଲ) ପରି ଦିଶେ । ପୃଥିବୀ ଗୋଲର ବକ୍ରତା ତାକୁ ଦେଖାପଡ଼େ ନାହିଁ ।

**ଶି—ଯଦି ସମା ମୁକୁରୋଦରସନ୍ନିଭା—**
**ଭଗବତୀ ଧରଣୀ ତରଣିଃ କ୍ଷିତେଃ ।**
**ଉପରି ଦୂରଗତୋଽପି ପରିଭ୍ରମନ୍**
**କିମୁ ନରୈରମରୈରିବ ନେକ୍ଷ୍ୟତେ ।୧୮।**

ଐଶ୍ୱର୍ଯ୍ୟଶାଳୀ ପୃଥିବୀ ଯଦି ଦର୍ପଣ ପରି ସମାନ, ଗୋଲ ନୁହେଁ (ଥାଳପରି ସମାନ) ତା ହେଲେ ପୃଥିବୀଠାରୁ ବହୁଦୂରରେ ଥିବା ସୂର୍ଯ୍ୟଙ୍କୁ ଯେପରି ଦେବତାମାନେ ମେରୁରେ ଥାଇ ଦେଖି ପାରୁଛନ୍ତି, ପୃଥିବୀସ୍ଥ ସମସ୍ତ ଲୋକେ କାହିଁକି ତାହା କରିପାରୁ ନାହାନ୍ତି ? ଅର୍ଥାତ୍ ଉତ୍ତର ମେରୁରେ ଥିବା ଦେବତାମାନେ ଯେପରି ଲଗ ଲଗ ପୃଥିବୀକୁ ଛ ମାସ ଯାଏ ଦେଖି ପାରୁଛନ୍ତି; ମନୁଷ୍ୟମାନେ ତାହା କାହିଁ କରିପାରୁ ନାହାନ୍ତି ?

**ଯଦି ନିଶାଜନକଃ କନକାଚଳଃ**
**କିମୁ ତଦନ୍ତରଗଃ ସ ନ ଦୃଶ୍ୟତେ ।**
**ଉଦଗୟନ୍ନନୁ ମେରୁରଥାଂଶୁମାନ୍**
**କଥମୁଦେତି ଚ ଦକ୍ଷିଣଭାଗକେ ।୧୯।**

କନକଗିରି ଯଦି ରାତ୍ରି ର କାରଣ ହୁଏ, ତା'ହେଲେ ସେ ରାତ୍ରିରେ କାହିଁକି ଦେଖା ନ ଯାଉଛି ? ଗୋଟିଏ ପାଖରେ ସୂର୍ଯ୍ୟ ରହିଥିବାରୁ ତାହା ଚକ୍ ଚକ୍ ନିଶ୍ଚୟ ଦେଖା ଯାଇଥାନ୍ତା । ଉତ୍ତରରେ ମେରୁ ଅଛି ଏବଂ ସୂର୍ଯ୍ୟ ମଧ୍ୟ ଉତ୍ତରରେ ହିଁ ଉଦୟ ନେଉଥାନ୍ତେ । ସେ ପୁଣି ଦକ୍ଷିଣରୁ କାହିଁକି ଉଦିତ ହେଉଅଛନ୍ତି ?

**ସମୋ ଯତଃ ସ୍ୟାତ୍ପରିଧେଃ ଶତାଂଶଃ**
**ପୃଥ୍ୱୀ ଚ ପୃଥ୍ୱୀ ନିତରାଂ ତନୀୟାନ୍ ।**
**ନରଶ୍ଚ ତତ୍ପୃଷ୍ଠଗତସ୍ୟ କୃତ୍ସ୍ନା**
**ସମେବ ତସ୍ୟ ପ୍ରତିଭାତ୍ୟତଃ ସା ।୨୦।**

ବୃତ୍ତ ପରିଧିର ଶତାଂଶ ମଧ୍ୟ ବକ୍ର ନୁହେଁ, ସରଳ । ଆମର ପୃଥିବୀ ଅତି ବିଶାଳ । ମନୁଷ୍ୟ ତା' ତୁଳନାରେ ଅତି କ୍ଷୁଦ୍ର । ଏଣୁ ପୃଥିବୀର ପୃଷ୍ଠ ଉପରେ ଥିବା ନର ପକ୍ଷରେ ପୃଥିବୀ ଗୋଲ ନ ହୋଇ ସମତଳ ପରି ପ୍ରତିଭାତ ହୁଏ । ମାତ୍ର ପୃଥିବୀ କେବେହେଲେ ସରଳ (ଅବକ୍ର) ନୁହେଁ ।

ପୁରାନ୍ତରଂ ଚେଦଦମୁତ୍ତରଂ ସ୍ୟାତ୍
ତଦକ୍ଷ ବିଶ୍ଳେଷଲବୈସ୍ତଦା କିମ୍ ।
ଚକ୍ରାଂଶକୈରତ୍ୟନୁପାତଯୁକ୍ତ୍ୟା
ଯୁକ୍ତଂ ନିରୁକ୍ତଂ ପରିଧେଃ ପ୍ରମାଣମ୍ ।୨୧।

(ବିଷୁବିରୁ) ଉତ୍ତରସ୍ଥ ଦୁଇଟି ନଗରର ଅକ୍ଷାଂଶାନ୍ତର ବାହାର କରିବ । ଉଭୟଙ୍କ ମଧ୍ୟରେ ଉଫାତୁ କେତେଯୋଜନ ତାହା ମଧ୍ୟ ଦେଖିବ । ତାପରେ ଅନୁପାତ କରିବ ଯେ, ଉଭୟଙ୍କ ଅକ୍ଷାଂଶାନ୍ତରରେ ଯଦି ଉଭୟର ଉଫାତୁ ଯୋଜନ ହୁଏ; ତାହାହେଲେ ଚକ୍ରାଂଶରେ ୩୬୦°ରେ ତାହା କେତେ ଯୋଜନ । ଫଳ ପୃଥିବୀ ପରିଧିର ପରିମାଣ ହେବ । ଏହି ଅନୁପାତ ଅତି ଯୁକ୍ତିଯୁକ୍ତ ।

ନିରକ୍ଷଦେଶାତ୍ କ୍ଷିତଷୋଡ଼ଶାଂଶେ
ଭବେଦବନ୍ତୀ ଗଣିତେନ ଯସ୍ମାତ୍ ।
ତଦନ୍ତରଂ ଷୋଡ଼ଶସଂଗୁଣଂ ସ୍ୟାତ୍
ଭୂମାନମସ୍ମାଦ୍ ବହୁକିଂ ତଦୁକ୍ତମ୍ । ଇତି । ୨୨ ।

ଅବନ୍ତୀ ନଗରୀ ବିଷୁବଠାରୁ ଉତ୍ତରରେ ପୃଥିବୀର $\frac{୧}{୧୬}$ ଯୋଜନରେ ଅବସ୍ଥିତ । ଏଣୁ ଏହି ଅନ୍ତରକୁ ୧୬ରେ ଗୁଣିଲେ ପୃଥିବୀ ପରିଧି ପରିମାଣ ଆସିଯାଏ । ଏଥିରୁ ଅଧିକ ସୁବିଧାଜନକ କଥା ଆଉ କ'ଣ ହୋଇପାରେ ।

ଭୂମୌ ସମାୟାମତଦୂରଗସ୍ୟ
ପ୍ରାଚ୍ୟାଂ ଭବେଃ ସ୍ୟାଚ୍ଚ ଗତର୍ନ ଦୃଶ୍ୟା ।
ତତୋଽଲ୍ପଦୂରସ୍ୟ ବିଲମ୍ବିତା ସା
ଶୀଘ୍ରଂ ଖମଧ୍ୟେ ଜଳଦସ୍ୟ ଯଦ୍ବତ୍ । ୨୩ ।

ଅସଙ୍ଗତେୟଂ ଯଦହସ୍କରାଦେ—
ର୍ଗତଃ ପୁରଃପଶ୍ଚିମବିଗତୟୋଃ ସା ।
ପାନୀୟଯନ୍ତ୍ରଦ୍ରୁତଶାତକୁମ୍ଭ—
କୁମ୍ଭଭ୍ରମାଭେକ୍ଷତ ଏବ ସାକ୍ଷାତ୍ । ୨୪ ।

ପୃଥିବୀ ଯଦି ଗୋଲକାର ନ ହୋଇ ( ବକ୍ର ନ ହୋଇ ) ସରଳ ହୋଇଥାନ୍ତା ତା'ହେଲେ ପୂର୍ବରେ ଅତି ଦୂରରେ ଥିବା ମେଘର ଗତି ପରି ସୂର୍ଯ୍ୟର ଗତି ମଧ୍ୟ ସେଠାରେ ଜଣାଯାଇ ନ ଥାନ୍ତା । ମଧ୍ୟାହ୍ନରେ ଅତି ନିକଟରେ ଥିବାରୁ ପୁଣି ମେଘର ଗତିପରି ସୂର୍ଯ୍ୟର

ଗତ ଅତିଶୀଘ୍ର ଜଣାଯାଉଥାନ୍ତା । କିନ୍ତୁ ତାହା ଅସଙ୍ଗତ, ଅର୍ଥାତ୍ ହୁଏ ନାହିଁ । ମେରୁପର ସେ (ସୂର୍ଯ୍ୟ) ମଧ୍ୟାହ୍ନରେ ଲମ୍ବି ପଡ଼େ ନାହିଁ । ଅଧିକନ୍ତୁ (ମଧ୍ୟାହ୍ନ କଥା କ'ଣ କହିବା) ପୂର୍ବରେ ଓ ପଶ୍ଚିମରେ ମଧ୍ୟ ରବିର ଗତି ପାଣି ଯନ୍ତ୍ରରେ ଥିବା ସୂନା କଳସର ଗତିପରି ଜଣାଯାଏ । ( କୂଅରେ ଜଳଯନ୍ତ୍ର ବସାଇ ସେଥିରେ କଳସ ଦେଇ ଏହି ସୂକ୍ତର ଉପଯୋଗ କରାଯାଇପାରେ) । ଏ କଳସଗୁଡ଼ିକର ଗତି ବାସ୍ତବିକ୍ ରମଣୀୟ ଦେଖାପଡ଼େ ।

**ସମୁଦ୍ରମଧ୍ୟାଦବଟତସ୍ତଟାନ୍ତଂ**
**ସ୍ଥୂଣାଗ୍ରମାଦୌ ତଟଗେନ ଦୃଷ୍ଟମ୍ ।**
**ନରେଣ ପୋତସ୍ୟ ତତସ୍ତଦର୍ଦ୍ଧଂ**
**ସର୍ବଂ କ୍ରମାଦନ୍ତିକବର୍ତ୍ତିନଃ ସ୍ୟାତ୍ । ୨୫ ।**

**ବୃତ୍ତା ନ ଚେତ୍ କ୍ଷ୍ମା ସମବାରିମଧ୍ୟେ**
**ଦୃକ୍‌ପୋତୟୋସ୍ତଦ୍‌ବ୍ୟବଧାପି ନ ସ୍ୟାତ୍ ।**
**ଚନ୍ଦ୍ରଗ୍ରହେ ତଦ୍ଗତ ଭୂପ୍ରଭାୟା**
**ନ ବୃତ୍ତତା ସ୍ୟାତ୍ ସମୟେଽଖିଳେଽପି । ୨୬ ।**

ସମୁଦ୍ର ଭିତରୁ କୂଳଆଡ଼କୁ ଆସୁଥିବା ଜାହାଜ-ମାସ୍ତୁଲର ଅଗ୍ରଭାଗ କୂଳରେ ଥିବା ଲୋକକୁ ପ୍ରଥମେ ଦେଖାଯାଇଥାଏ । ପରେ ମାସ୍ତୁଲର ଅଧେ ଏବଂ ଜାହାଜଟି ନିକଟକୁ ଆସିଗଲେ ପରେ ପରେ ଜାହାଜର ସବୁ ଅଂଶ ଦେଖାପଡ଼େ ପୃଥିବୀ ଗୋଲ ହୋଇ ନ ଥିଲେ ସରଳାକାର ପାଣିଭିତରେ ଏପରି ଦୃଷ୍ଟି ବ୍ୟବଧାନ ରହିପାରନ୍ତା ନାହିଁ । ଅର୍ଥାତ୍ ପ୍ରଥମେ ଅଗ୍ରଭାଗ, ତାପରେ ମଧ୍ୟ ଓ ଶେଷରେ ସର୍ବାଂଶ ଦେଖାଯାନ୍ତା ନାହିଁ । ଚନ୍ଦ୍ରଗ୍ରହଣ ବେଳେ ସବୁ ପ୍ରକାର ଗ୍ରାସରେ ମଧ୍ୟ ଚନ୍ଦ୍ରକୁ ଆଚ୍ଛାଦିତ କରୁଥିବା ପୃଥିବୀ ଛାୟା ଗୋଲାକାର ହୋଇ ପାରନ୍ତା ନାହିଁ । ଅର୍ଥାତ୍ ପୃଥିବୀ ଗୋଲ ହୋଇଥିବାରୁ ତାହାର ଛାୟା ମଧ୍ୟ ବୃତ୍ତାକାର ହୋଇଥାଏ ।

**ନ ସ୍ୟାଚ୍ଚ ଦେଶାନ୍ତରନାଡିକାଦ୍ୟଂ**
**ଅଥ କ୍ଷୟବୃଦ୍ଧୀକ୍ଷଣତଃ ସୁଧାଂଶୋଃ ।**
**ଗୋଳତ୍ୱମାୟାତି ଭଭାନୁମୁଖ୍ୟା**
**ଗୋଳାଃ ପୁରୋକ୍ତାଃ ଶ୍ରୁତଦୃଷ୍ଟିମଦ୍ଭିଃ ।୨୭।**

ପୃଥିବୀ ଗୋଲ ହୋଇ ନ ଥିଲେ ପୂର୍ବ ପଶ୍ଚିମ ଦେଶମାନଙ୍କରେ ସମୟର ବ୍ୟବଧାନ ଆସନ୍ତା ନାହିଁ । ଅର୍ଥାତ୍ ସବୁଦିନ ସୂର୍ଯ୍ୟର ଉଦୟାଦି ବେଳ ସମାନ ରହନ୍ତା । ଚନ୍ଦ୍ରର

ଶୁକ୍ଳ ବୃଦ୍ଧି ଓ କ୍ଷୟ ବୃତ୍ତାକାର ହେବାରୁ ଚନ୍ଦ୍ର ଯେ ଗୋଲ ଏହା ସ୍ପଷ୍ଟ ହେଉଅଛି । ଏଣୁ ପ୍ରାଚୀନମାନେ ନକ୍ଷତ୍ର, ସୂର୍ଯ୍ୟ ପ୍ରଭୃତିଙ୍କୁ ଶାସ୍ତ୍ର ଦୃଷ୍ଟିରୁ ଗୋଲ ବୋଲି କହିଛନ୍ତି । (ଏଣୁ ପୃଥିବୀ ମଧ୍ୟ ଗୋଲ) ।

**ବଦନ୍ତ୍ୟନନ୍ତେତ ଧରାଂ ନରା ଯେ**
**ମୃଷା ଚ ତେଷାମମୃଷାମତା ମେ**
**ପରାର୍ଦ୍ଧବାସାନ୍ ଭ୍ରମତାମରେଣ**
**ଯଦ୍‌ଗୋଲ-ପୃଷ୍ଠସ୍ୟ ନ ଲଭ୍ୟତେଽନ୍ତଃ ।୨୮।**

ପୃଥିବୀ ଅନନ୍ତ ବୋଲି ଯେଉଁମାନେ କହନ୍ତି, ସେମାନଙ୍କର କଥା ମୋ ମତରେ ସତ । କାରଣ କୌଣସି ମନୁଷ୍ୟ ପରାର୍ଦ୍ଧବାର ବୁଲି ଦେଖିଲେ ମଧ୍ୟ ପୃଥିବୀର ଅନ୍ତ ପାଇବା ମୁସ୍କିଲ୍ ।

**ସୂର୍ଯ୍ୟୋପରୀନ୍ଦୋଃ ସ୍ଥିତିରନ୍ୟଖେଟ—**
**ସ୍ଥାନଂ ଭଚକ୍ରୋପରି ଯା ପୁରୋକ୍ତଃ ।**
**ସ୍ୱର୍ଗସ୍ଥତତ୍ତତ୍ପୁରପେକ୍ଷୟା ସା**
**ନ ତୁ ଭ୍ରମଜ୍ୟୋତିରପେକ୍ଷୟୈବ ।୨୯।**

ସୂର୍ଯ୍ୟ ଉପରେ ଚନ୍ଦ୍ରର ଅବସ୍ଥିତି ଏବଂ ନକ୍ଷତ୍ର ମଣ୍ଡଳ ଉପରେ ଗ୍ରହମାନେ ଅଛନ୍ତି ବୋଲି ପ୍ରାଚୀନମାନେ ଯାହା କହିଛନ୍ତି ତାହା ସ୍ୱର୍ଗ ଆଡ଼ୁ ଦେଖିବାରେ ହୁଏ । ବୁଲୁଥିବା ଜ୍ୟୋତିଷ୍କ ପଦାର୍ଥ ଦୃଷ୍ଟିରୁ ତାହା କଦାପି କୁହାଯାଇ ପାରେ ନାହିଁ ।

**କିଂବା କୁରୁକ୍ଷେତ୍ର ଉପେନ୍ଦ୍ର ଇନ୍ଦ୍ର—**
**ପୁତ୍ରାୟ ସଂଦର୍ଶିତବିଶ୍ୱରୂପଃ**
**ଏକାର୍ଣ୍ଣବୀ-ଭୂତମହୀତଳେ ଚ**
**ମୃକୁଣ୍ଡପୁତ୍ରାୟ ଜଠୋଦରସ୍ଥମ୍ ।୩୦।**

**ଅଦର୍ଶୟଦ୍ୱିଶ୍ୱମସୌ ସଭାୟାଂ**
**ସ୍ୱ ବିଶ୍ୱରୂପଂ ଧୃତରାଷ୍ଟ୍ରରାଜ୍ଞେ ।**
**ଯଦ୍ଭୂମି ପୃଷ୍ଠେ ଘଟବତ୍ସୁଦୃଷ୍ଟଂ**
**କ୍ୱଚିତ୍ ପ୍ରଦେଶେ କିଳ ବିଶ୍ୱରୂପମ୍ ।୩୧।**

ତଦସ୍ମଦାବାସ-ଭୂବସ୍ତୁଦେବ
ପ୍ରଭିଦ୍ୟତେ ତତ୍ର ପୁରାଣସିଦ୍ଧାଃ
ଭୂଭୂଧରାମ୍ଭୋନିଧିରନୁରୂଦ୍ୟା-
ସ୍ତିଷ୍ଠନ୍ତୁ ସିଦ୍ଧାନ୍ତଭୁବଃ କ୍ଷତଃ କା ।୩୨।

ଶି—ଭୂଃ ଚଖେଽଧଃ ଖଳୁ ଯାତୀତି ବୁଦ୍ଧିର୍ବୌଦ୍ଧ ମୁଧା କଥଂ
ଯାତାଯାତନ୍ତୁ ଦୃଷ୍ଟ୍ୱାପି ଖେ ଯତ୍କ୍ଷିପ୍ତଂ ଗୁରୁ କ୍ଷିତଂ ।୩୩।

କଂ ଚ୍ଚନ୍ୟତ୍ତ୍ୱ ବୈଗୁଣ୍ୟଂ ଦ୍ୱୈଗୁଣ୍ୟଂ ଯୋ ବୃଥା କୃଥାଃ
ଭାର୍କେନ୍ଦୂନାଂ ବଲୋକ୍ୟାହ୍ନା ଧ୍ରୁବମସ୍ୟପରିଭ୍ରମମ୍ । ଇତି ।୩୪।

ସୌମ୍ୟେ ମୀନାକୃତର୍ଭାନାଂ ଧ୍ରୁବମସ୍ୟ ଇତି ଶ୍ରୁତା
ଧ୍ରୁବସ୍ତନ୍ମୁଖଦେଶସ୍ଥଃ ପୁଚ୍ଛେ ତାରା ତତୋଽପରା ।୩୫।

ବଶାଖା ସମସୂତ୍ରେ ସା ତଷ୍ଟ୍ୟତ୍ୟର୍କେନ୍ଦୁ-ଭାଗକେ
ମୁଖ ପୁଚ୍ଛାନ୍ତରେ ବହ୍ୱସ୍ତାରାଃ ପଂକ୍ତିଦ୍ୱୟେ ସ୍ଥିତାଃ ।୩୬ ।

ବଶାଖାସ୍ଥୋଽସ୍ତମେତ୍ୟର୍କୋ ଯଦା ତତ୍ପୁଚ୍ଛଗା ତଦା
ତାରକା ପଶ୍ଚିମସ୍ଥା ସ୍ୟାନ୍ନଶାର୍ଦ୍ଧେଽଧୋ ଗତା ଧ୍ରୁବାତ୍ ।୩୭।

ପ୍ରାତରୁଦ୍ୟଦ୍ରବେଃ ସୂତ୍ରେ ପ୍ରାଚ୍ୟାଂ ତଷ୍ଟତ ସା ଯତଃ
ତଦର୍କଦ୍ୱିତୟଂ କୁତ୍ର ସମ୍ଭବେଦ୍ଭ୍ରାତ ରୁଚ୍ୟତାମ୍ ।୩୮।

ଭୂପୃଷ୍ଠରେ ଥିବା କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ପ୍ରଳୟପୟୋଧି ଜଳରେ ମାର୍କଣ୍ଡଙ୍କୁ ଏବଂ କୁରୁସଭାରେ ଧୃତରାଷ୍ଟ୍ରଙ୍କୁ ଯେଉଁ ବିରାଟ ବିଶ୍ୱରୂପ ଦେଖାଇଥିଲେ ସେହି ଗୋଲ ପୃଷ୍ଠ ଆମ୍ଭମାନଙ୍କର ଆବାସଭୂମି ପୃଥିବୀ ଠାରୁ ଭିନ୍ନ । ସେ ବିଶ୍ୱ ଓ ଏ ପୃଥିବୀ ଏକ ନୁହେଁ ।

ଏଣୁ ସେହିସବୁ ପୁରାଣମାନଙ୍କରେ ଯେଉଁ ଭୂ, ପର୍ବତ, ସମୁଦ୍ର, ସୂର୍ଯ୍ୟ ଓ ନକ୍ଷତ୍ରାଦିର ବର୍ଣ୍ଣନା ଅଛି ତାହା ସେହିପରି ଥାଉ ! ସେଥିରେ ଆମର କିଛି ଯାଏ ଆସେ ନାହିଁ ! ଅର୍ଥାତ୍ ଗଣିତସିଦ୍ଧ ପୃଥିବୀ ଏ ସବୁରେ ବର୍ଣ୍ଣିତ ପୃଥିବୀଠାରୁ ଭିନ୍ନ ହେଲେ ମଧ୍ୟ କୌଣସି ଅସୁବିଧା ନାହିଁ ।

ଆକାଶରେ ଫିଙ୍ଗାଯାଉଥିବା କୌଣସି ଗୁରୁଦ୍ରବ୍ୟ ପୃଥିବୀକୁ ଆସିଯାଉଥିବା ଦେଖି ମଧ୍ୟ ହେ ବୌଦ୍ଧ, ନିରାଧାର ଭାବରେ ପୃଥିବୀ ତଳକୁ ତଳକୁ ଯାଉଛି ବୋଲି ତୁମେ କପରି କହୁଅଛ ? ତୁମର ବୁଦ୍ଧି ବାସ୍ତବରେ ଦୁର୍ବଳ ।

ଗୋଟିଏ ଦିନରେ ନକ୍ଷତ୍ର, ସୂର୍ଯ୍ୟ ଓ ଚନ୍ଦ୍ର ଯେ ଧ୍ରୁବମତ୍ସ୍ୟରେ ଥରେ ପରିଭ୍ରମଣ କରି ଯାଉଛନ୍ତି; ତାହା ଦେଖି ମଧ୍ୟ ତୁମେ ଯେ ବୃଥାରେ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ରର ଦ୍ୱିଗୁଣତା ସ୍ୱୀକାର କରୁଅଛ, ସେଥିରୁ ତୁମେ ଯେ ଅତ୍ୟନ୍ତ ଗୁଣହୀନ ସେ କଥା ଆଉ କଣ କହିବା ?

ଉତ୍ତର ଆକାଶରେ କେତେକ ତାରା ଯେଉଁ ମୀନାକୃତି ଗଢ଼ିଛନ୍ତି ତାହାକୁ ଧ୍ରୁବମତ୍ସ୍ୟ କହନ୍ତି । ଏହି ଧ୍ରୁବମତ୍ସ୍ୟର ମୁଖ ଦେଶରେ ଧ୍ରୁବତାରା ଅଛି । ପୁଚ୍ଛ ଦେଶରେ ତାହାଠାରୁ ଟିକିଏ ଶ୍ରେଷ୍ଠ ଗୋଟିଏ ତାରା ଅଛି । ଏହି ପୁଚ୍ଛତାରା ବିଶାଖା ଉପର ଦେଇ ଯାଇଥିବା ସମସୂତ୍ରରେ ବିଶାଖା ଠାରୁ ୧୯° ଅଂଶରେ ଅଛି । ଏହି ମୁଖ ଓ ପୁଚ୍ଛ ଦୁଇଟି ତାରାକୁ ଧରି ଦୁଇଧାଡ଼ିରେ ଅନେକ ଗୁଡ଼ିଏ ତାରା ଅଛନ୍ତି । ବିଶାଖା ନକ୍ଷତ୍ରରେ ଥାଇ ସୂର୍ଯ୍ୟ ଅସ୍ତ ହେବାବେଳେ ଏହି ପୁଚ୍ଛତାରା ପଶ୍ଚିମ କ୍ଷିତିଜରେ ଲାଗେ । ରାତ୍ରାର୍ଦ୍ଧରେ ଏହି ତାରା ଧ୍ରୁବର ତଳକୁ ଯାଏ, ଅର୍ଥାତ୍ ଦକ୍ଷିଣୋତ୍ତର ବୃତ୍ତରେ ଲାଗେ । ହେ ଭ୍ରାତଃ ! ସକାଳେ ପୁଣି ସୂର୍ଯ୍ୟ ଉଦୟ ହେଲବେଳେ ଏହି ପୁଚ୍ଛ ତାରା ପୂର୍ବ କ୍ଷିତିଜରେ ଲାଗେ । ଏଥିରୁ ସୂର୍ଯ୍ୟ ଗୋଟିଏ ବୋଲି କଣ ଜଣାଯାଉ ନାହିଁ ଯେ ତୁମେ ଦୁଇ ସୂର୍ଯ୍ୟ କଳ୍ପନା କରୁଛ ?

ଅଥ ସୂର୍ଯ୍ୟମତେ ଯଦି ତେଽସ୍ତି ମତେ
ସ୍ଥିରତା ତରଣେଶ୍ଚଲତା ଧରଣେଃ
ନିଜବାଙ୍ମୟ ଖଣ୍ଡିତ ପଣ୍ଡିତ ! ତତ୍
ଶୃଣୁ ମଦ୍ବଚନୋକ୍ତିଶୃଣୁ ଗୃହ୍ଣବଚଃ ।୩୯।

ତୁମେ ଅତି ବୁଦ୍ଧିମାନ୍ । ତୁମ ମତରେ ଯଦି ସୂର୍ଯ୍ୟର ଗତି ନାହିଁ କିନ୍ତୁ ପୃଥିବୀର ଗତି ଅଛି, ତାହେଲେ ତୁମେ ତୁମ ନିଜ କଥାରେହିଁ ପରାସ୍ତ ହେବ । ମୋର କଥା ଶୁଣ ଏବଂ ତୁମର ଯୁକ୍ତିହୀନ କଥାକୁ ଘୋଡ଼ାଇ ପକାଅ ବା ଭଲ ଭାବରେ ପ୍ରକାଶ କର ।

ଇୟଂ ଭୂର୍ନିଶ୍ଚଲା ସାକ୍ଷାଦ୍‌ଲକ୍ଷ୍ୟତେ ନିଖିଳୈର୍ଜନୈଃ ।
ଭ୍ରାନ୍ତିଶ୍ଚ ରବିବିମ୍ବସ୍ୟ କିଂ ଫଳଂ ତେ ବିପର୍ଯ୍ୟୟାତ୍ । ୪୦ ।

ସମସ୍ତ ଲୋକ ସମସ୍ତେ ଏହି ପୃଥିବୀକୁ ଗତିହୀନ ଦେଖୁଛନ୍ତି । ଏହା ପୁଣି ପ୍ରତ୍ୟକ୍ଷ କଥା । ରବି ବୁଲୁଥିବା କଥା ମଧ୍ୟ ସେହିପରି ପ୍ରତ୍ୟକ୍ଷରେ ଦେଖା ପଡ଼ୁଅଛି । ବଦଳାଇବାରେ ଅର୍ଥାତ୍ ସୂର୍ଯ୍ୟକୁ ଗତିହୀନ କରି ପୃଥିବୀକୁ ଗତିଶୀଳ ବୋଲି କହିବାରେ ତୁମର କି ଫଳ ସାଧିତ ହେବ କହିତ ?

ଚଳତ୍ତରଣିଗୋ ଜନଃ ସ୍ୱବସତଂ ସ୍ଥିରଂ ମନ୍ୟତେ
ତଟସ୍ଥବିଟପି-ବ୍ରଜଂ ସ ବିପରବ୍ରଜନ୍ତଂ ପୁନଃ ।
ଉଦସ୍ତ ମପିହସ୍ତଗଂ ଗଗନତଃ ପତତ୍କନ୍ଦୁକଂ
ପ୍ରପଶ୍ୟତି ଯଥା ତଥା କ୍ଷିତିଗତା ଇତୀକ୍ଷାସ୍ତି ଚେତ୍ । ୪୧ ।

ତଦାହର-ହରିନ୍ମୁଖ-ପ୍ରଜବନା ବିନା ଚେତ୍ କରେ
ବିଭର୍ତ୍ତ୍ୟୁପର ଯଷ୍ଟିକାଂଶିଖରକୁଷ୍ଟଚୀନାଂଶୁକାମ୍ ।
ପୁରଃ-ପ୍ରବହଦାଶୁଗପ୍ରଚଳିତଂ ତଦାଲୋକ୍ୟତେ
ସଦାବରୁଣଦିଙ୍ମୁଖଂ କ୍ୱମବନୌ ପରାଶାମରୁତ୍ । ୪୨ ।

ଯଦି ପ୍ରବହକର୍ଷଣାଦ୍ବ୍ରଜତି ପଶ୍ଚିମାଶାଂ ଗ୍ରହଃ—
ସଦାକଥମସୌ ପୁରୋଗତିମବାପ୍ତୁମୀଷ୍ଟେ ତତଃ ।
ଇଦଂ ବଦସି ଚେଦ୍ଧରାଭ୍ରମଣପୂର୍ବକୃଷ୍ଟା ଘନାଃ
ଖଗାଶ୍ଚ କଥମୀଶତେ ପ୍ରଚଳିତୁଂ ପ୍ରତୀଚୀଂପ୍ରତି । ୪୩ ।

ନୌକାରେ ସ୍ରୋତର ଅନୁକୂଳରେ ଯାଉଥିବା ଲୋକ ନିଜେ ଥିବା ନୌକାକୁ ସ୍ଥିର ମନେ କରି ତଟରେ ଥିବା ଗଛଗୁଡ଼ିକୁ ନୌକାର ବିପରୀତ ଦିଗକୁ ଯାଉଥିବାର ଦେଖେ । ଉପରକୁ ଫୋପଡ଼ା ଯାଇଥିବା ପେଣ୍ଡୁକୁ ପୁଣି ହାତକୁ ଆସିବା ମଧ୍ୟ ଦେଖେ । ପୃଥିବୀରେ ଏ ଦୁଇ କ୍ରିୟା ହୁଏ ବୋଲି ଯଦି ପୃଥିବୀ ବୁଲୁଥିବା ସ୍ଥିର କରାଯାଏ ! (ଗୋଟିଏ କ୍ରିୟାରେ ଗ୍ରହ ନକ୍ଷତ୍ର ବୁଲିବା ଓ ଅନ୍ୟଟିରେ ଉର୍ଦ୍ଧ୍ୱକୁ ଯାଇଥିବା ବସ୍ତୁ ପୁଣି ପୃଥିବୀ ପୃଷ୍ଠକୁ ଫେରିବା) ତାହା ହେଲେ ବାୟୁ ଜୋରରେ ପୂର୍ବକୁ ବହୁ ନ ଥିବାବେଳେ କୌଣସି ଲୋକ ପତଳା କନାର ପତାକା ବନ୍ଧାଯାଇଥିବା ଗୋଟିଏ ଯଷ୍ଟିକୁ ଟେକି ଧରିଲେ ସେହି ପତାକା ପୂର୍ବରୁ ବହୁଥିବା ପବନଦ୍ୱାରା ସର୍ବଦା କ'ଣ ପଶ୍ଚିମ ଦିଗକୁ ଉଡ଼ିବ ? ପୃଥିବୀର ପବନ କଣ ସର୍ବଦା ପଶ୍ଚିମାଭିମୁଖ ( ଯେହେତୁ ସେ ପଶ୍ଚିମରୁ ପୂର୍ବକୁ ତା' ନିଜଅକ୍ଷରେ ଘୂରେ ?·) ହୋଇ ରହୁଛି କି ? ଜ୍ୟୋତିଷ ମତରେ ପ୍ରବହବାୟୁ ଗ୍ରହ ଓ ନକ୍ଷତ୍ର ଚକ୍ରକୁ ପୂର୍ବରୁ ପଶ୍ଚିମକୁ ବୁଲାଏ—ଦିନକେ ଥରେ ମାତ୍ର । ଏପରି ସ୍ଥଳେ ଯଦି ତୁମର ପ୍ରଶ୍ନ ହୁଏ ଯେ ଗ୍ରହ ପୁଣି କିପରି ପୂର୍ବକୁ ଗତି କରେ, ତା'ହେଲେ ଆମେ କହିବୁ ଯେ ପୃଥିବୀର ଗତି ବେଗରେ ଆକୃଷ୍ଟ ମେଘଗୁଡ଼ିକ ଏବଂ ପକ୍ଷିଗୁଡ଼ିକ କିପରି ପୂର୍ବକୁ ନ ଯାଇ ପଶ୍ଚିମକୁ ଯାଉ ଅଛନ୍ତି ? ଅର୍ଥାତ୍ ପୃଥିବୀର ଗତି ବେଗରେ ପୂର୍ବକୁ ଚଳିତ ମେଘ ଓ ପକ୍ଷୀମାନେ ଯେପରି ପୁଣି ସ୍ୱ ଶକ୍ତିବଶତଃ ପଶ୍ଚିମକୁ ଯାଇ ପାରୁଛନ୍ତି ଠିକ୍ ସେହିପରି ପ୍ରବହ ବାୟୁଦ୍ୱାରା ପଶ୍ଚିମକୁ ଚାଳିତ ଗ୍ରହମାନେ ମଧ୍ୟ ସ୍ୱ ଶକ୍ତି ବଳରେ ପୂର୍ବକୁ ଗତି କରିଥାନ୍ତି ।

ପୁରାଣସିଦ୍ଧାନ୍ତଭିରାପ୍ତ-ପୂରୁଷୈଃ
ସ୍ଥିରେତ ଶବ୍ଦୋ ଧରଣୀବୁରୀକୃତଃ ।
ନ ଚେତ୍ପ୍ରମାଣୀକ୍ରିୟତେ ତ୍ୱୟାପ୍ତବାକ୍
କଥଂ ପ୍ରବୃତ୍ତିର୍ଭବତ ତ୍ୱକର୍ମସୁ । ୪୪ ।

ପ୍ରତକ୍ଷଣଂ ଗଚ୍ଛତ ଯତ୍ତତୋ ଜଗତ୍
ଜଗାଦ ଚେଦତ୍ଥମଦୋଽର୍ଥବଦ୍‌ଭବାନ୍ ।
ଚତୁର୍ବିଧଂ ଯାତ ଲୟଂ ଜଗତ୍‌ତ୍ରୟଂ
ତତୋଽପି କ୍ୱଂ ନାର୍ଥ-ସମନ୍ୱୟଂ ବ୍ରଜେତ୍ । ୪୫ ।

ଇତୋଽନ୍ୟଥାର୍ଥଃ କ୍ରିୟତେ ଯଦା ତଦା
ସ୍ଥିରେତ କ୍ୱଂ ଭୂରଚଳେତ କଥ୍ୟତେ ।
ଚରାଚରା ବାସତୟାଥବା ଧରା
ଜଗତ୍‌ସ୍ଥିରେତ୍ୟେବ ସମୀରତା ବୁଧୈଃ । ୪୬ ।

ନ ଶବ୍ଦମର୍ଗୀକୁରୁତେଽନୁ ମାନବା
ନମାନବାତ୍ୱରଲବାତ୍ ଭବାନ୍ ଯଦ ।
ତଦା ତଦାବସ୍ଥ୍ୟୁୟା ମୟାରୟାତ୍
ପ୍ରମା ସମାଧାନ-କୃତେ ପ୍ରତାୟତେ । ୪୭ ।

ପ୍ରାଚୀନ ସିଦ୍ଧାନ୍ତୀ ତଥା ଆପ୍ତ (ଧାର୍ମିକ) ଜନମାନେ ପୃଥିବୀ ସ୍ଥିର ବୋଲି କହିଅଛନ୍ତି । ଏହା ତୁମେ ସ୍ୱୀକାର ନ କଲେ କୃତ୍ୟ କର୍ମରେ ତୁମର କିପରି ପ୍ରବୃତ୍ତି ହେବ ।

ଆପଣ ଅର୍ଥକୁ ନେଇ "ପ୍ରତିକ୍ଷଣରେ ଯାଉଥିବାରୁ ଏହାର ନାମ ଜଗତ୍" (ଗଚ୍ଛତୀତି ଜଗତ୍ ଗମ୍+କ୍ୱିପ୍) ଦିଆଯାଇଛି ବୋଲି କହି ପାରନ୍ତି । ମାତ୍ର ତ୍ରିଜଗତ ଅର୍ଥାତ୍ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ ଚାରି ପ୍ରକାର ପ୍ରଳୟ ହୋଇ ଯେ ଲୋକ ନାଶଯାଏ, ସେଥିରୁ ପୃଥିବୀକୁ ଜଗତ୍ ବୋଲି କହିଲେ କ'ଣ ଅର୍ଥ ସଂଗତ ହେବନି ?

ଏଥିରୁ ଭିନ୍ନ ଅର୍ଥ ଆପଣ କଲେ ଅର୍ଥାତ୍ କେବଳ (ଗଚ୍ଛତୀତି ଜଗତ୍) ଯାଉଥିବାରୁ ଜଗତ ଅର୍ଥ କଲେ ପୃଥିବୀର ସ୍ଥିରା ଓ ଅଚଳା ନାମ କାହିଁକି ରହିଲା, କହନ୍ତୁ ? ଆହୁରି ମଧ୍ୟ ସ୍ଥାବର ଜଙ୍ଗମାଦି ସମସ୍ତଙ୍କୁ ଧରି ରଖିଥିବାରୁ ଏହାର ନାମ ସ୍ଥିରା ବୋଲି ମଧ୍ୟ ବିଦ୍ୱାନ୍‌ମାନେ କହିଅଛନ୍ତି । (ଏସବୁ ମାନିବା ଉଚିତ) । ଆପଣ ନିଜର କେତେକ ଅମାନବିକ ଆଗ୍ରହ ଯୋଗୁଁ

ଯଦି ଶବ୍ଦ ପ୍ରମାଣ (ଆପ୍ତବଚନ) କୁ ନ ମାନି ଅନୁମାନ ପ୍ରମାଣ ଉପରେ ଜୋର ଦିଅନ୍ତି ତାହା ହେଲେ ଅନୁମାନଦ୍ୱାରା ଭୂ ସ୍ଥିର ମତରେ ସମାଧାନ ନିମନ୍ତେ ମୁଁ ଶୀଘ୍ର ଚେଷ୍ଟା କରୁଅଛି ! (ଅର୍ଥାତ୍ ଏଠାରେ ଅନୁମାନ କପରି ଲଗା ଯାଇପାରିବ ତାହା ଆବିଷ୍କାର କରୁଅଛି ।)

ଯଥାର୍ଯ୍ୟମାକୃଷ୍ଟବୁଧାଦୟୋ ଗ୍ରହା
ଭ୍ରମନ୍ତ୍-ସ୍ୱଦେହାଃ ପରିଯାନ୍ତି ସନ୍ତତମ୍ ।
ସ୍ୱକକ୍ଷୟାପକ୍ରମଯୁକ୍ତୟା ତଥା
ପଥାମ୍ନନଃ କ୍ଷ୍ମା ଭ୍ରମତୀତି ତେ ପ୍ରଥା । ୪୮ ।

ନସ୍ୟାଦ୍ଗତଃ ଶକ୍ତିମୃତେଽଖିଳସ୍ୟ
ସାକର୍ଷ ବିକ୍ଷେପବଶା ଦ୍ୱିଧା ଚେତ୍ ।
କେନ୍ଦ୍ରାଭିକର୍ଷିଣ୍ୟଭିଧା ତଦାଦ୍ୟା
କେନ୍ଦ୍ରାପସାରଣ୍ୟ ପ୍ରଚେଚ୍ୟତେ ସା । ୪୯ ।

ପରାଣୁ ବାହୁଲ୍ୟ ସମୁଦ୍ଭବାଦ୍ୟା
ଦୃଷ୍ଟା ଗୁରୁତ୍ୱାବଗମାଦ୍ଧରିତ୍ର୍ୟାମ୍ ।
ତତ୍ରାପତତ୍‌ଗୋଲକ ପିଣ୍ଡଶଶ୍ୱତ୍
ପରିଭ୍ରମୋଽସ୍ମାଭିରଲକ୍ଷି ନୈବ । ୫୦ ।

ପ୍ରକ୍ଷିପ୍ତଲୋଷ୍ଟେ, କ୍ଷଣତୋଽପରସ୍ୟାଂ
ଶକ୍ତୌ ଚ ଗୋଲ ଭ୍ରମସମ୍ଭବୋ ନ ।
ସମକ୍ଷିତୌ କ୍ଷେପବଲେନ ଗୋଲଃ
ଜନ୍ତ୍ୱୀକ୍ଷ୍ୟତେ ଯାନ୍ ପରିବର୍ତ୍ତମାନଃ । ୫୧ ।

ସୂର୍ଯ୍ୟଦ୍ୱାରା ଆକୃଷ୍ଟ ହୋଇ ବୁଧ ଆଦି ଗ୍ରହମାନେ ଯେପରି ସ୍ୱଅକ୍ଷରେ ଘୂରିବା ସଙ୍ଗେ ସଙ୍ଗେ ଉତ୍ତର ଦକ୍ଷିଣ କ୍ରାନ୍ତି ଅନ୍ତରରେ ଥିବା ନିଜ ନିଜ କକ୍ଷାରେ ମଧ୍ୟ ନିଜ ଗତିରେ ଯାଉଅଛନ୍ତି, ଠିକ୍ ସେହିପରି ପୃଥିବୀ ମଧ୍ୟ ସ୍ୱାକ୍ଷ ଭ୍ରମ କରିବା ସଙ୍ଗେ ସଙ୍ଗେ ସ୍ୱକକ୍ଷାରେ ଗତି କରୁଅଛି । ଏହା ଯଦି ତୁମର ପ୍ରଥା ହୁଏ ଏବଂ ତୁମେ ଯଦି କହ ଯେ ବଳ ନ ଥିଲେ କୌଣସି ବସ୍ତୁର ଗତି ହୋଇପାରେନା—ଶକ୍ତି ବା ବଳହିଁ ଗତିର କାରଣ । ପୁଣି ସେ ଶକ୍ତି ଦୁଇ ପ୍ରକାର ଆକର୍ଷ ଓ ବିକ୍ଷେପ ଗତି । ପ୍ରଥମଟି କେନ୍ଦ୍ରାକର୍ଷିଣୀ ଏବଂ ଦ୍ୱିତୀୟଟି କେନ୍ଦ୍ରାପକର୍ଷିଣୀ । ତାହାହେଲେ ପରମାଣୁ ବାହୁଲ୍ୟରେ ପ୍ରଥମର ଉତ୍ପତ୍ତି ହେଉଥିବାରୁ ଅତ୍ୟନ୍ତ ଗୁରୁ

(ପରମାଣୁ ପୃଷ୍ଠେ) ପୃଥିବୀରେ ତାହା ରହିବା ସ୍ୱାଭାବିକ । ମାତ୍ର ପୃଥିବୀରେ ବିକ୍ଷେପ ଶକ୍ତି ଥିବା ଆମ୍ଭେମାନେ ଦେଖି ପାରୁନାହିଁ । କାରଣ ପୃଥିବୀ ପୃଷ୍ଠରେ ପଡ଼ିଥିବା ଗୋଲାକାର କୌଣସି ଦ୍ରବ୍ୟର ସର୍ବଦା ଭ୍ରମଣ (ସ୍ୱାକ୍ଷ ଭ୍ରମଣ) ତ ହେଉନାହିଁ । ଢେଙ୍କାଟିଏ ପୃଥିବୀ ଉପରକୁ ଫିଙ୍ଗି ଦେଲେ ତ କ୍ଷଣକ ପାଇଁ ମଧ୍ୟ ସେ ଅନ୍ୟ ଶକ୍ତି ଦ୍ୱାରା ବୁଲିଯିବ । ଆମ୍ଭେମାନେ ଦେଖି ପାରୁନାହିଁ, ପକ୍ଷାନ୍ତରେ ସମଧରାତଳରେ ଗୋଟିଏ ଗୋଲ ବସ୍ତୁକୁ ଆମ୍ଭେମାନେ ଗଡ଼ାଇ ଦେବାଦ୍ୱାରା ଅବଶ୍ୟ ସେହି ଗଡ଼ାଇ ଦେବା ଶକ୍ତିବଳରେ ତାହା ବୁଲି ବୁଲି ଯିବା ଦେଖା ଯାଇଥାଏ ।

ଯଚେଦ୍ଦୃଢବାଗ୍ରଥିତଃ କରେଣ
କ୍ଷିପ୍ୟେତ ଶଶ୍ୱଦ୍ଭ୍ରମତା ତଦଦ୍ଭେ ।
ଶକ୍ତିଦ୍ୱୟାକର୍ଷବଶାନ୍ନ କେନ୍ଦ୍ରେ
ଲଗେନ୍ନ ନର୍ଯାତ ପରଭ୍ରମେତ୍ତୁ । ୫୬ ।

ଇତ୍ଥଂ ସ୍ୱକେନ୍ଦ୍ରାର୍ଯ୍ୟମଶକ୍ତି ଯୁଗ୍ମ—
ନଦ୍ଧା ପରଭ୍ରାମ୍ୟତ ଚେଦ୍ଧରଣୀ ।
ସୂର୍ଯ୍ୟାଭିମୁଖ୍ୟେନ ବିନା ତଦାସ୍ୟା ।
ନ ସ୍ୟାତ୍ କଦାଚିଦ୍ଗତ ରନ୍ୟଥୈବ । ୫୭ ।

ଏହି ଗୋଲ ଦ୍ରବ୍ୟକୁ ଚମଡ଼ା ଦଉଡ଼ିରେ ବାନ୍ଧି ହାତରେ ଜୋରରେ ବୁଲାଇଦେଲେ ତାହା ତାହାର ଶକ୍ତି ବଳରେ ଦଉଡ଼ି ଗୁଡ଼ି କୁଆଡ଼େ ଯାଏନି । କେବଳ ଏହି ଦୁଇ ଶକ୍ତି-ଦ୍ୱାରା ଆକୃଷ୍ଟ ଓ ବିକ୍ଷିପ୍ତ ହୋଇ ଆକାଶରେ ବୁଲିବା ହିଁ ଦେଖାଯାଉଛି । ସ୍ୱାକ୍ଷ ଭ୍ରମ କରିପାରୁନି କି ଆକର୍ଷଣ ଓ ବିକ୍ଷେପଣକେନ୍ଦ୍ର ହାତ ମୁଠାକୁ ଆଉ ଆସିପାରୁନାହିଁ । ଠିକ୍ ଏହିପରି ସ୍ୱ (ପୃଥିବୀ) କେନ୍ଦ୍ରରେ ସୂର୍ଯ୍ୟଙ୍କର ଆକ୍ଷେପ ଓ ଆକର୍ଷଣ ଶକ୍ତି (ଦୁଇ) ଦ୍ୱାରା ପ୍ରଭାବିତ ହୋଇ ପୃଥିବୀ ବୁଲୁଅଛି, ଏହା ଯଦି ସ୍ୱୀକାର କରାଯାଏ ତାହାହେଲେ ସୂର୍ଯ୍ୟର ଅଭିମୁଖରେ ହିଁ ପୃଥିବୀର ଗତି ହୁଅନ୍ତା । (ଫଳରେ ଗୋଟିଏ ପାଖ ସର୍ବଦା ଆଲୁଅ ଓ ଅନ୍ୟ ପାଖ ସର୍ବଦା ଅନ୍ଧାରରେ ରହନ୍ତା) ।

ଆସ୍ତାଂ ତଦତଥ୍ୟାତ୍ଥ ଯଦି ଭ୍ରମସ୍ୟା
ବକ୍ଷ୍ୟୈକ ଦେଶେ ରବି ସମ୍ମୁଖସ୍ଥେ ।
ଯଦାହରବାପି ଭବେନ୍ନ ରାତ୍ରିଃ
ଯା ଯତ୍ର ତତ୍ରୈବ ତଥମହଃ କଦାଚିତ୍ । ୫୪ ।

ନିରକ୍ଷ ଦେଶର କୌଣସି ପ୍ରଦେଶରେ ପୃଥିବୀ ରବି ସମ୍ମୁଖରେ ଏପରି ଘୂର୍ଣ୍ଣାବାଦୀର ଯେଉଁଠି ଦିନ ହୁଅନ୍ତା ସେଠି ଆଉ ରାତ୍ରି ହୁଅନ୍ତା ନାହିଁ । ପୁଣି ଯେଉଁଠାରେ ରାତ୍ରି ସେଠାରେ ଆଉ ଦିନ ହୁଅନ୍ତାନାହିଁ । (କିନ୍ତୁ ଏହା ହୁଏ ନାହିଁ) ।

କିମ୍ବା ସମସ୍ତା ପରିବର୍ତ୍ତିମାନ
ସଦ୍ବୃତ୍ତପିଣ୍ଡୋପମୟା ପୃଥିବ୍ୟାଃ ।
ସ୍ୱଭ୍ରାନ୍ତିବାଦସ୍ତବ ଚେଦୟଂ ତତ୍
ପ୍ରାପ୍ନୋତୁ ଚକ୍ରଭ୍ରମିମନ୍ତରୀକ୍ଷେ । ୫୫ ।

ସ୍ୱବେଷ୍ଟନଂ ଯାବଦୟଂ ହି ତାବତ୍
ଦିନେ ଦିନେ ଯାତୁ ପୁରଃପ୍ରଦେଶମ୍ ।
ସ୍ୟାତ୍ତ୍ୱନ୍ମତେ ସ୍ୱଭ୍ରମଣଂ ଦିନେଽଭ୍ର—
ଖାଭ୍ରାକ୍ଷିଭୂ—କ୍ରୋଶ ପରିଧବନ୍ୟାଃ । ୫୬ ।

ସମସ୍ତରାତଳରେ ଗୋଲପିଣ୍ଡ ଗଡ଼ି ଗଡ଼ି ଗଲାଭଳି ଯଦି ପୃଥିବୀର ଗତି ଧରାଯାନ୍ତା, ତାହାହେଲେ ଆକାଶରେ ପୂର୍ବକୁ ପୂର୍ବକୁ ତାହାର ଦୈନିକ ଗତି ନିଜର ପରିଧି ମୁତାବକହିଁ ହୁଅନ୍ତା । ମାତ୍ର ଭ୍ରମ ମତରେ ପୃଥିବୀର ଦୈନିକ ଗତି ଯାହା ପୃଥିବୀ ପରିଧି ତାହା ନୁହେଁ । ପୃଥିବୀର ପୂର୍ବଗତି ଭ୍ରମ ମତରେ ଆଠ ଲକ୍ଷ କୋଶ, ଏବଂ ପୃଥିବୀ ପରିଧି ବାର ହଜାର କୋଶ ମାତ୍ର । ଏହା ଅଯୁକ୍ତିକର ନୁହେଁ କି ?

ପୂର୍ବୋଗତିଶ୍ଚାଷ୍ଟ ବିନିଘ୍ନଲକ୍ଷ
କ୍ରୋଶପ୍ରମା ସା କଥମେବ ଯୁକ୍ତା ।
ସା ବାସ୍ତୁ ତସ୍ୟାଃ ସମପୂର୍ବଦେହ—
ଭ୍ରାନ୍ତୌ କଥଂ କ୍ରାନ୍ତିପଥେ ଗତଃସ୍ୟାତ୍ ।୫୭।

ଈଶାନଦିଙ୍ମୁଖେ ମାର୍ଗେ ଗଚ୍ଛତଃ ପୁରୁଷସ୍ୟ ହି ।
ପୂର୍ବାଭିମୁଖତା ଭ୍ରାତଃ କଥଂ ସଙ୍ଗଚ୍ଛତେ ବଦ ।୫୮।

କିମ୍ବା ପାର୍ଶ୍ୱଗତଂ ଭୂମେଃ କର୍କଟସ୍ୟୈବ ମନ୍ୟସେ
ଉପପନ୍ନା ନ ସା ଯୁକ୍ତିର୍ନିସର୍ଗୋ-ପାଧିଭେଦତଃ ।୫୯।

ନୈସର୍ଗିକୀ କୁଳୀରସ୍ୟ ସାର୍କାକର୍ଷଣଜା ଭୁବଃ
ତଦ୍ଧୃତେ କ୍ରାନ୍ତିସାମ୍ମୁଖ୍ୟାଦ୍ଗତିରନ୍ୟା ନ ସମ୍ଭବେତ୍ ।୭୦।

ପୃଥିବୀର ଆଠଲକ୍ଷ କୋଶଗତି ମାନିଲେ ମଧ୍ୟ ବିଷୁବ ବୃତ୍ତ ଧରାତଳରେହିଁ ତାହାର ସ୍ୱାକ୍ଷଭ୍ରମ ହୋଇ ପୂର୍ବାଭିମୁଖ ଗତି ହେଉଥିବାଠାରେ ତାହା ପୁଣି କ୍ରାନ୍ତିବୃତ୍ତରେ କିପରି ହେବ ? ତୁମେ ଯଦି କଙ୍କଡ଼ାର ଗତିପରି ପୃଥିବୀର ପାର୍ଶ୍ୱଗତି ହୁଏ ବୋଲି କହ ତାହାହେଲେ ଆମେ କହିବୁ ଯେ ନିସର୍ଗ ଓ ଉପାଧି ପାର୍ଥକ୍ୟରୁ ଏହାମଧ୍ୟ ହୋଇପାରିବ ନାହିଁ । ନିସର୍ଗ ଉପାଧି ହେଲା ପ୍ରାକୃତିକ ଓ କୃତ୍ରିମ ଅର୍ଥାତ୍ ଦୃଷ୍ଟାନ୍ତ ଦାର୍ଷ୍ଟାନ୍ତିକ । କଙ୍କଡ଼ାର ପାର୍ଶ୍ୱଗତି ପ୍ରାକୃତିକ, ଅର୍ଥାତ୍ କାହାରି ପ୍ରଭାବରେ ସେ ସେପରି ଯାଏ ନାହିଁ । ପୃଥିବୀର ଏ ଗତି କିନ୍ତୁ ଆପଣମାନଙ୍କ ମତରେ ସୂର୍ଯ୍ୟର ଆକର୍ଷଣ ଜନିତ, ଆଦୌ ସ୍ୱାଭାବିକ ନୁହେଁ । ତେଣୁ ଖାପ ଖାଉ ନାହିଁ । ଏଣୁ ପୃଥିବୀର ଗତି କ୍ରାନ୍ତି ସମ୍ମୁଖ ନୁହେଁବୋଲି ମଧ୍ୟ ମାନି ହେଉନାହିଁ ।

ବିଷୁବଦ୍ବଳୟସ୍ଥେନ୍ଦୁକଳଙ୍କୋ ଦକ୍ଷିଣେଽୟନେ ।
ଆଗ୍ନେୟଦିଙ୍ମୁଖୋ ଦୃଷ୍ଟଃ ସୌମ୍ୟେ ତ୍ୱୈଶାନ୍ୟଦିଙ୍ମୁଖଃ ।୭୧।

ତତ୍କକ୍ଷାନ୍ତର୍ଗତକ୍ଷ୍ମାୟା ଗ୍ରହବଦ୍ଭ୍ରାନ୍ତିରସ୍ତି ଚେତ୍ ।
ତଦା ସ୍ୱାୟ-ନସାମ୍ମୁଖ୍ୟଂ ଧ୍ରୁବଂ ଭବିତୁମର୍ହତି ।୭୨।

ସ୍ୱାୟନବ୍ୟସ୍ତବିକ୍ଷେପବୃଦ୍ଧାବପି ନ ଚେଦ୍ବିଧୁଃ ।
ଜହାତି କ୍ରାନ୍ତିସାମ୍ମୁଖ୍ୟଂ କ୍ଷ୍ମାବିଷୁସ୍ତତ୍କଥଂ ତ୍ୟଜେତ୍ ।୭୩।

ବିଷୁବବୃତ୍ତ ଧରାତଳରେ ଥିବା ଚନ୍ଦ୍ରର କଳଙ୍କ ଦକ୍ଷିଣ ଅୟନରେ ଆଗ୍ନେୟ ଦିଗକୁ ଓ ଉତ୍ତରାୟଣରେ ଐଶାନ୍ୟ ଦିଗକୁ ଦିଶେ । ଗ୍ରହମାନଙ୍କ ପରି ପୃଥିବୀର ଗତି ଯଦି କକ୍ଷାନ୍ତର୍ଗତ (ବିଷୁବ କକ୍ଷାନ୍ତର୍ଗତ) ହୋଇଥାନ୍ତା, ତାହାହେଲେ ଚନ୍ଦ୍ରର କଳଙ୍କ ଅୟନାଭିମୁଖ ନିଶ୍ଚୟ ହୋଇଥାନ୍ତା । ଏଥିରେ ସନ୍ଦେହ ନାହିଁ । (କାରଣ ଚନ୍ଦ୍ର ତଥା ପୃଥିବୀର ତେତେ-ବେଳେ ସମପୂର୍ବାଭିମୁଖରେ ଅବସ୍ଥାନ ହେଉଅଛି ।)

ଯାମ୍ୟାୟନରେ ସୌମ୍ୟଶର ଓ ସୌମ୍ୟାୟନରେ ଦକ୍ଷିଣଶର ବୃଦ୍ଧିରେ ମଧ୍ୟ ଯେତେବେଳେ ଚନ୍ଦ୍ର କ୍ରାନ୍ତିମାର୍ଗକୁ ଛାଡ଼ିପାରି ନାହିଁ ଶର ଆଦୌ ନ ଥିବା ପୃଥିବୀ ଉକ୍ତ କ୍ରାନ୍ତି ମାର୍ଗକୁ ବା ଛାଡ଼ିବ କିପରି ? ଅର୍ଥାତ୍ ପୃଥିବୀର ବିଷୁବାଭିମୁଖ ଗତି କିପରି ହେବ ? (ଉଭୟ ଗତି ଉତ୍ପନ୍ନ ହୋଇପାରୁ ନାହିଁ । ପାଶ୍ଚାତ୍ୟ ମତରେ ବିଷୁବମଣ୍ଡଳୀୟ ବା କ୍ରାନ୍ତି ମଣ୍ଡଳୀୟ କୌଣସି ଗତି ଉତ୍ପନ୍ନ ହୋଇପାରୁ ନାହିଁ ।)

ଖେ ବା କ୍ଷିପ୍ତଂ ବ୍ରଜତୁ କୁଶଳୈର୍ଘୂର୍ଣ୍ଣମାନଂ ଦଧିତ୍ଥଂ
ଚକ୍ରଂ ଚ ଭ୍ରାମ୍ୟତୁ ଭୁବି ଦବ ସ୍ୟନ୍ଦନସ୍ଥଂ କରସ୍ଥମ୍ ।
ପୃଥ୍ୱୀପୃଷ୍ଠେ ଲୁଠତୁ କଠିନୀଗୋଲକଃ ଖେଳୟା ବା
ଦେହଭ୍ରାନ୍ତିର୍ନ ଭବତି ବିନା ସ୍ୱସ୍ୱମାର୍ଗାଭିମୁଖ୍ୟାତ୍ । ୭୪ ।

ଘୂରୁଥିବା କଇଥକୁ ଆକାଶକୁ ଫୋପାଡ଼ି ଦେଲେ, ରଥ ଚକକୁ ତଳେ ବା ଆକାଶରେ ଗଡ଼ାଇ ଦେଲେ, କୌତୁକରେ ବା ଖଡ଼ି ଗୋଟିଲାକୁ ଭୂପୃଷ୍ଠରେ ପେଲି ଦେଲେ ସେମାନଙ୍କର ଯେ ସ୍ୱାଙ୍ଗଭ୍ରମ ହୁଏ, ତାହା ସେମାନଙ୍କ ଭ୍ରମଣ ମାର୍ଗରେ ହିଁ ହୋଇଥାଏ । ପୃଥିବୀର ତାହା (ବିଷୁବମାର୍ଗାଭିମୁଖୀ) ନ ହୋଇ ଅନ୍ୟ ମାର୍ଗରେ କାହିଁକି (କ୍ରାନ୍ତିମାର୍ଗରେ) ହେବ ?

ଯଦି ଭ୍ରାମଂ ଭ୍ରାମଂ ଭ୍ରମତି ଧରଣୀ କ୍ରାନ୍ତିପଥଗା
ତରଣ୍ଡୀନା ଭୂନାଂ ପତିରିବ ତଦା ବାସିପୁରୁଷୈଃ ।
ସ୍ୱପୂର୍ବାଦ୍ୟାଶାସ୍ଥଦ୍ରୁମଧରଣୀଭୃତ୍ କୋଣଗମନେ
ସୁଲକ୍ଷ୍ୟା ଦିଗ୍‌ଭେଦଃ ପ୍ରତିଦିନମୁଡୂନାଂ ତଦୁଦୟେ ।୭୫।

ଚନ୍ଦ୍ରପରି (ଚନ୍ଦ୍ର ବିଷୁବର ଉର୍ଦ୍ଧ୍ୱକ୍ ରହି ସ୍ୱାଙ୍ଗଭ୍ରମ ପୂର୍ବକ ବିମଣ୍ଡଳରେ ଯାଏ ।) ପୃଥିବୀ ମଧ୍ୟ ବିଷୁବମାର୍ଗରୁ ଯାଇ କ୍ରାନ୍ତି ମାର୍ଗରେ ଗତି କରୁଥିଲେ ପୃଥିବୀସ୍ଥ ଲୋକେ ପୃଥିବୀର ପୂର୍ବାଦି ଦିଗରେ ଥିବା ବୃକ୍ଷ ଓ ପର୍ବତର କୋଣ ଗତି ଦେଖୁଥାନ୍ତେ । ଏପରିକି ସେମାନେ ନକ୍ଷତ୍ର ଓ ସେମାନଙ୍କର ଉଦୟରେ ମଧ୍ୟ ଦିଗଭେଦ ହେବାର ଲକ୍ଷ୍ୟ କରି ପାରୁଥାନ୍ତେ । ଏହା ଅତି ସ୍ପଷ୍ଟ କଥା ।

ସ୍ୱକକ୍ଷାବୃତ୍ତତ୍ୱେ ଭବତୁ ସବିତୁର୍ଭୂରଭିମୁଖୀ
ମୟ୍ୟାସ୍ୟାଃ କ୍ରାନ୍ତ୍ୟୁଦ୍ଧାବପବଲୟଦୈର୍ଘ୍ୟାତ୍ ଗତିପଥଃ ।
ଦିଶୋର୍ଯାମ୍ୟୋଦୀଚ୍ୟୋର୍ଗୁଣବଦଜୁରଷ୍ଟୋ ବଦସି ଚେତ୍
ଇତି କ୍ଷ୍ମାୟାଂ ଦୃଶ୍ୟସ୍ତନୁରୟନସନ୍ଧୌ ଦିନକରଃ ।୭୬।

ବିଦୂରେଽଥ ସ୍ଥୂଲୋ ବିଷୁବତି ଭୁବଃ ସନ୍ନିଧିବଶାତ୍
ନିଶାନାଥସ୍ୟେତ୍ଥଂ ଶରସୁସରଳେଽପକ୍ରମପଥେ ।
କ୍ୱ ସାମ୍ମୁଖ୍ୟାଲ୍ଲକ୍ଷ୍ୟଂ ପ୍ରତିରଜନି ଲକ୍ଷ୍ମ କ୍ଷିତିଗତୈ—
ର୍ବିଭିନ୍ନାକାରଂ ଯତ୍ତଦବନିଗତିର୍ନାତ୍ର ଘଟତେ । ୭୭ ।

ନିଜ କକ୍ଷାବୃତ୍ତରେ ରହି ପୃଥିବୀ ସୂର୍ଯ୍ୟର ଅଭିମୁଖୀ ହେଉ । ମାତ୍ର କ୍ରାନ୍ତି ବୃଦ୍ଧିରେ (କ୍ରାନ୍ତି ବୃତ୍ତ ଦୀର୍ଘ ବୃତ୍ତାକାର ହେତୁ) କ୍ରାନ୍ତି ବୃତ୍ତର ଦୈର୍ଘ୍ୟ ବୃଦ୍ଧି ହେତୁ ତାହାର ଦକ୍ଷିଣ ଓ ଉତ୍ତର ଗତିପଥ ଜ୍ୟାପରି ସରଳ ହୋଇଯାଏ । ଏହା ମୋର ମତ ବୋଲି ଯଦି ତୁମେ କହ, ଅର୍ଥାତ୍ ଏହି କାରଣରୁ ବୃକ୍ଷାଦିର ଦିଗ୍ ଭେଦ ଧରି ହୁଏ ନାହିଁ, ତାହାହେଲେ ମୁଁ କହିବି ଯେ ପୃଥିବୀର ସାୟନ କର୍କଟ ଓ ମକରାଦିରେ ଅବସ୍ଥାନ ବେଳେ ରବି ଅତ୍ୟନ୍ତ ଦୂରରେ ଥିବାରୁ ଅତି ଛୋଟ ଓ ସାୟନ ବିଷୁବରେ ଅର୍ଥାତ୍ ମେଷାଦି ଓ ତୁଳାଦିରେ ରହିବା ବେଳେ ଅତି ନିକଟରେ ଥିବାରୁ ଅତିସ୍ଥୂଳ ଦେଖାଯିବା ଉଚିତ । ଠିକ୍ ଏହିପରି ଚନ୍ଦ୍ରର କ୍ରାନ୍ତି (ବିମଣ୍ଡଳ) ମାର୍ଗ ଅତି ସରଳ ହେତୁ ଚନ୍ଦ୍ରର କଳଙ୍କ ମଧ୍ୟ ଭୂପୃଷ୍ଠବାସୀଙ୍କୁ ସରଳ ଭାବରେ ଦେଖାଯିବା କଥା । କିନ୍ତୁ ଏ ଉଭୟ କଥା ହୁଏ ନାହିଁ । ଅଧିକନ୍ତୁ ଚନ୍ଦ୍ରକଳଙ୍କ ଭିନ୍ନ ଭିନ୍ନ ଆକାରରେ ପୃଥିବୀକୁ ଦେଖାଯାଏ ।

କେନ୍ଦ୍ରାଭିମୁଖ୍ୟଘଟନାକୃଷ୍ଟସ୍ୟାସ୍ତାଂ ତଥାପି ଭୂର୍ଭ୍ରମତି ।
ଅଦନକରଭିମୁଖ୍ୟତୟାସ୍ରଷ୍ଟୁଃ ସ୍ୱେଚ୍ଛାବଶାତ୍ କ୍ରାନ୍ତୌ ।୭୮।

କେନ୍ଦ୍ରଶକ୍ତିଦ୍ୱାରା ଆକୃଷ୍ଟ ଦ୍ରବ୍ୟର କେନ୍ଦ୍ର ସମ୍ମୁଖ ସ୍ଥିତି ହେଉ । ମାତ୍ର ପୃଥିବୀ ସୂର୍ଯ୍ୟ ସମ୍ମୁଖରେ ନ ବୁଲି ସୃଷ୍ଟିକର୍ତ୍ତାଙ୍କ ଇଚ୍ଛାବଶତଃ କ୍ରାନ୍ତି ବୃତ୍ତରେ ବୁଲୁଅଛି, ଏହା ଯଦି କହ ତାହାହେଲେ ମୁଁ କହିବି ଯେ ସେହି ସୃଷ୍ଟିକର୍ତ୍ତାଙ୍କର ଇଚ୍ଛାରୁ ପୃଥିବୀ ସ୍ଥିର ରହୁ, ହଲଚଲ ନ ହେଉ ।

ଇତି ଯଦି ବଦସି ତଦିଚ୍ଛାପ୍ରାମାଣ୍ୟେ ମନ୍ୟତାଂ ମହୀ ସ୍ଥାସ୍ନୁଃ ।
ଆକର୍ଷଣମୁରୁ ଭାନୋଃ ସ୍ୟାଚ୍ଚେତ୍ କିଂ ନାସ୍ତି ତତ୍ କ୍ଷ୍ମାୟାଃ ।୭୯।
ସ୍ଥିରଶ୍ମକାନ୍ତେନ କୃଶେନ ଯସ୍ମାଦାକୃଷ୍ୟତେ ତତ୍ ପୃଥୁର୍ଲୌହପିଣ୍ଡଃ ।
ଆକର୍ଷଣେ କାରଣମେବ ଶକ୍ତିର୍ନିସର୍ଗଜାନୋ ପୃଥୁତା ନ ତେଜଃ ।୮୦।

ଗୁରୁବସ୍ତୁ ସୂର୍ଯ୍ୟର ଆକର୍ଷଣ ଅଛି ବୋଲି କହିଲେ ପୃଥିବୀର ମଧ୍ୟ ତାହା କାହିଁକି ନ ହେବ ? ସ୍ଥିର ଲଘୁ ଲୌହ ଚୁମ୍ବକଦ୍ୱାରା ବଡ଼ ବଡ଼ ଲୌହପିଣ୍ଡ ଆକୃଷ୍ଟ ହୁଏ । ଏଥିରୁ ଜଣାଯାଏ ଆକର୍ଷଣ ନିମନ୍ତେ ଛୋଟ ବଡ଼ର ଅପେକ୍ଷା ନାହିଁ । ସେଥିନିମନ୍ତେ ସ୍ୱାଭାବିକ ଶକ୍ତି ଆବଶ୍ୟକ (କେତେବେଳେ ବଡ଼ ଛୋଟକୁ ଟାଣୁଛି ତ କେତେବେଳେ ଛୋଟ ବଡ଼କୁ ଟାଣୁଛି ।) ତେଜ ମଧ୍ୟ ଟାଣିବା ନିମନ୍ତେ କାରଣ ନୁହେଁ କିବା ଆକର୍ଷଣର କାରଣ ନୁହେଁ ।

ଯଦି କ୍ଷୁଦ୍ରଦ୍ରବ୍ୟଂ ଭ୍ରମତି ବୃହଦାକର୍ଷଣବଲା—
ନ୍ନ ତୁ କ୍ଷୁଦ୍ରଂ ସ୍ଥୂଳଭ୍ରମଣକୃଦୟଂ ବାକ୍ତିବ ତଦା ।
ସ୍ୱତନ୍ତ୍ରତ୍ୱେ ସା ସମ୍ଭବତି ନ ପରାଧୀନବଲୟୋ—
ର୍ଯତଃ ସର୍ବାକର୍ଷଣ୍ୟପି ଭଗବଦିଚ୍ଛା ବଲବତୀ ।୮୧।

ଏହା କହିବା ସତ୍ତ୍ୱେ ତୁମେ ଯଦି କହ ଯେ ବଡ଼ ବସ୍ତୁ ଛୋଟ ବସ୍ତୁକୁ ଟାଣେ ଅଥଚ ଛୋଟ ବସ୍ତୁ ବଡ଼ ବସ୍ତୁକୁ ଟାଣିପାରେ ନାହିଁ, ତାହାହେଲେ ଆମେ କହିବୁ ଯେ ସ୍ୱତନ୍ତ୍ର ଜଡ଼ (ବସ୍ତୁ) ପକ୍ଷରେ ଏକଥା ସତ ହୋଇପାରେ । ମାତ୍ର ଯେଉଁ ଦ୍ରବ୍ୟର (ଛୋଟ ଓ ବଡ଼) ସ୍ୱାଧୀନତା ବା ସ୍ୱାଧୀନ ବଳ ନାହିଁ ତା' ପକ୍ଷରେ ଏହା କହିବା ଠିକ୍ ନୁହେଁ । ନିଖିଳ ବସ୍ତୁ ଆକର୍ଷଣକାରଣୀ ଭଗବତ୍ତ ଶକ୍ତି କିନ୍ତୁ ସବୁବେଳେ ସବୁଠାରେ ସ୍ୱତନ୍ତ୍ର ଓ ସ୍ୱାଧୀନ ।

**ତଡ଼ାଗାନ୍ତର୍ଯଷ୍ଟିଂ କୃଶତନୁମନୁଙ୍କାମତ ଯଥା**
**ମହାନୌଃ କୈବର୍ତ୍ତାଚରଣପରତନ୍ତ୍ରା ଜଗଦଦମ୍ ।**
**ତଥା ପର୍ଯ୍ୟେତ୍ୟର୍କଃ ପୃଥ୍ୱୀରପି ମହେଶାଶୟବଶାତ୍**
**ତ୍ରୈଲୋକୀଲୋକାନାମବନବଧୟେ ସଗ୍ରହଗଣଃ ।୭୨।**

ଯେପରି ପୋଖରୀ ମଝିରେ ଥିବା ଯୂପ ଦଣ୍ଡକୁ ନାଉରିର ଇଚ୍ଛାରେ ବଡ଼ ବଡ଼ ନୌକା ପ୍ରଦକ୍ଷିଣ କରନ୍ତି, ଈଶ୍ୱରେଚ୍ଛାରେ ସେହିପରି ମହାତନୁ ସୂର୍ଯ୍ୟ ଅନ୍ୟ ଗ୍ରହମାନଙ୍କ ସହିତ ତ୍ରିଭୁବନ—ଲୋକରକ୍ଷାର୍ଥେ ପୃଥିବୀକୁ ପ୍ରଦକ୍ଷିଣ କରୁଅଛନ୍ତି ।

**ସୂର୍ଯ୍ୟୋ ବାନ୍ୟୋ ଗ୍ରହୋ ବା ନିଜତନୁପରିତୋ ଭ୍ରାନ୍ତିମାପ୍ନୋତୁ ତସ୍ୟାଃ**
**କା ହାନିର୍ଭୂସ୍ଥିରତ୍ୱେ ଭବତି ବଦ ସଖେ ଯସ୍ୟ ଯୋଽସ୍ତି ସ୍ୱଭାବଃ ।**
**ଯୋଽନ୍ୟେଷାଂ ଦର୍ଶନାଦ୍‌କ୍ୱାଂ ବ୍ୟଭିଚରତି ଭବାନ୍ ଯନ୍ତ୍ରସାହାଯ୍ୟବତ୍ତ୍ୱାତ୍**
**ସର୍ବେଷାଂ ଭ୍ରାନ୍ତିଦର୍ଶୀ ନ କିମୁଡୁପତନେଃ ପଶ୍ୟତି ଭ୍ରାନ୍ତିମାରାତ୍ ।୭୩।**

ସୂର୍ଯ୍ୟ ବା ଅନ୍ୟ ଗ୍ରହ (ମାନେ) ସ୍ୱାଙ୍ଗଭ୍ରମ କରନ୍ତୁ । ଏକଥା ସହ ପୃଥିବୀ ସ୍ଥିର ରହିବାରେ ଅସାମଞ୍ଜସ୍ୟ କ'ଣ ? କିଏ ବୁଲିଲା, କିଏ ନ ବୁଲିଲା ଯାଏ, ଆସେ ନାହିଁ । ଯାହାର ସ୍ୱଭାବ ଯାହା, ତାହା ହୁଏ । କାହାକୁ ଦେଖି ସେ ସ୍ୱଭାବ ବଦଳିଯାଏ ନାହିଁ । ଆପଣ ଯନ୍ତ୍ର ସାହାଯ୍ୟରେ ସବୁ ଗ୍ରହମାନଙ୍କର ଗତି ଦେଖିପାରିଲେ । ପାଖରେଥିବା ଚନ୍ଦ୍ରଗତି ତ ଦେଖିପାରୁନାହାନ୍ତି । ଏହାର କାରଣ କ'ଣ ?

**ଭ୍ରାନ୍ତିର୍ନୋପଗ୍ରହାଣାଂ ପ୍ରଭବତି ମହତାଂ ଖେଚରାଣାମିବେତି**
**ବ୍ରୂତେ ଚେଦ୍‌ଭୂମୁଖାନାମିହ ଦବସକୃତା ଯୋଽସ୍ତି ସମ୍ବନ୍ଧ ଏଷଃ ।**
**ଚନ୍ଦ୍ରାଦୀନାଂ ସ ଏବ ସ୍ଫୁରତି ସମତୟା କ୍ଷୁଦ୍ରନା କିନ୍ତୁ ତେଷା—**
**ମର୍ଯ୍ୟମ୍ନା କୋଽପି ନାସ୍ତେ ଭ୍ରମଣକରଣମାଲୋକତାପଦ୍ୟାନ୍ୟଃ ।୭୪।**

ବୃହତ୍ତ ଗ୍ରହମାନଙ୍କ ପରି ଉପଗ୍ରହମାନଙ୍କର ଭ୍ରମଣ ହୁଏ ନାହିଁ, ଏହା ଆପଣ କହିଲେ ଆମେ କହିବୁ ଯେ ପୃଥିବୀ ପ୍ରଭୃତି ଗ୍ରହମାନଙ୍କର ସୂର୍ଯ୍ୟ ସହିତ ଯେଉଁ ସମ୍ବନ୍ଧ, ଚନ୍ଦ୍ରାଦି ଉପଗ୍ରହମାନଙ୍କର ମଧ୍ୟ ଭୂ ପ୍ରଭୃତି ଗ୍ରହମାନଙ୍କ ସହ ସେହି ସମ୍ବନ୍ଧ । ଚନ୍ଦ୍ରାଦି

ଉପଗ୍ରହମାନେ ସୂର୍ଯ୍ୟଠାରୁ ଆଲୋକ ଓ ଉତ୍ତାପ ଛଡ଼ା ଭ୍ରମଣ ଜନକ କୌଣସି ସମ୍ବନ୍ଧ ରଖି ନାହାନ୍ତି । (ଗ୍ରହମାନେ ସୂର୍ଯ୍ୟଠାରୁ ଆଲୋକ ଓ ଉତ୍ତାପ ଗ୍ରହଣ କରନ୍ତି । ଚନ୍ଦ୍ର ମଧ୍ୟ ସୂର୍ଯ୍ୟଠାରୁ ସେ ଦୁଇଟି ଗ୍ରହଣ କରେ । ମାତ୍ର ଏ ଦୁଇଟି ସମ୍ବନ୍ଧ ରଖି ଗ୍ରହମାନେ କପର ବୁଲନ୍ତି ଓ ଚନ୍ଦ୍ର ବୁଲେ ନାହିଁ କାହିଁକ ? ଅନ୍ୟ ଇତର ସମ୍ବନ୍ଧ ତ ନାହିଁ । କଥା କ'ଣ ?)

**କିଂଚ୍ୟା ବଣ୍ୟଧାତ୍ୟା ରବସବଧଃକୃଷଃ କ୍ଷୁଦ୍ରମୂର୍ତ୍ତିଃ ସ୍ୱଦେହାଦ୍ଭ୍ରାନ୍ତଃ ଷଷ୍ଟ୍ୟାଘଟିଭିର୍ବିଶିଖରସଗୁଣୈର୍ବାସରୈଃ ପର୍ଯ୍ୟୟଶ୍ଚେତ୍ । ତଦ୍ କିଂ ଭନୋର୍ବବୀୟାନ୍ କୁତୂଅଥ୍ଲନ ଶରତ୍ ପର୍ଯ୍ୟୟସ୍ତତ୍ତ୍ୱଦଣ୍ଡୈଃ ସ୍ୱାଙ୍ଗଂ ପର୍ଯ୍ୟେତ ଜୀବସ୍ତଦହ ମମ ମତଃ ସ୍ରଷ୍ଟୃଦତ୍ତଃ ସ୍ୱଭାବଃ ।୭୪।**

ପୃଥିବୀ ସୂର୍ଯ୍ୟଠାରୁ ଛୋଟ ଏବଂ ସୂର୍ଯ୍ୟର ନିକଟବର୍ତ୍ତୀ । ୬୦ ଦଣ୍ଡରେ ସେ ସ୍ୱାଙ୍ଗ ଭ୍ରମଣ ଥରେ କରେ ଏବଂ ୩୬୫ ଦିନରେ ଗୋଟିଏ ଭ ଗଣ ପୂର୍ତ୍ତିକରେ । ବୃହସ୍ପତି ରବଠାରୁ ବହୁ ଦୂରରେ ପୃଥିବୀଠାରୁ ଅତି ବଡ଼ ହୋଇ ରହିଛି । ସେ ଦ୨୫ଣ୍ଡରେ ସ୍ୱାଙ୍ଗ ଭ୍ରମଣ ଓ ୧୨ ବର୍ଷରେ ଭ ଗଣ ପୂର୍ତ୍ତି କରେ । ଏଥିରୁ ଜଣାଯାଉଛି ଯେ ଏ ସବୁ କୌଣସି ନିୟମ ଉପରେ ନାହିଁ । ଏଥି ନିମନ୍ତେ ଭଗବାନଙ୍କ ଇଚ୍ଛା ହିଁ ପ୍ରମାଣ ।

**ବୃହଦ୍‌ଗ୍ରହସ୍ୱାବୟବଭ୍ରମକ୍ରମୋ**
**ଭବେଲ୍ଲବେନାଲ୍ପତନୋଃ ସ ନୋ ଇତ ।**
**ବ୍ରବୀଷି-ଚେତ୍ତତ୍ତ୍ୱଦନୈଃ କଥଂ ଶନୈଃ**
**ରବଃ ସ୍ୱବମ୍ୱଭ୍ରମଭୃନ୍ମହାନହୋ ।୭୬।**

ବଡ଼ ଗ୍ରହର ସ୍ୱାଙ୍ଗ ଭ୍ରମଣ ଶୀଘ୍ର ହୁଏ କନ୍ତୁ ଛୋଟ ଗ୍ରହର ସ୍ୱାଙ୍ଗ ଭ୍ରମଣ ଡେରିରେ ହୁଏ, ଏହା ଯଦ କହ, ତାହାହେଲେ ମହାବମ୍ବ ରବ କପର ମାତ୍ର ୨୫ ଦିନରେ ସ୍ୱାଙ୍ଗଭ୍ରମ ସମ୍ପାଦନ କରେ ? (ରବ ବୃହସ୍ପତିଠାରୁ ବଡ଼ । ତଥାପି କପର ବୃହସ୍ପତି ଠାରୁ ଅଳ୍ପ ସମୟରେ (ମାତ୍ର ୨୫ ଦିନରେ) ସ୍ୱାଙ୍ଗ ଭ୍ରମ କରୁଅଛି ।

**ଟି—ଯଥୋଷ୍ଣତାର୍କାନଳୟୋଶ୍ଚ ଶୀତତା**
**ବଧୌ ଦ୍ରୁତଃ କେ କଠିନତ୍ୱମଶ୍ମନ ।**
**ମରୁଚ୍ଚଳୋ ଭୂରଚଳା ସ୍ୱଭାବତୋ—**
**ଯତୋ ବଚିତ୍ରା ବତ ବସ୍ତୁଶକ୍ତୟଃ ।ଇତ ।୭୭।**

ଯେପର ରବ ଓ ଅଗ୍ନି ସ୍ୱଭାବତଃ ଉଷ୍ଣ, ଚନ୍ଦ୍ର ଶୀତଳ, ଜଳ ତରଳ, ପଥର କଠିନ ଓ ବାୟୁ ଚଳ ଠିକ୍ ସେହିପର ପୃଥିବୀ ସ୍ୱଭାବତଃ ଅଚଳ । ବସ୍ତୁ ଶକ୍ତି ବଡ଼ ବଚିତ୍ର । ଏହା ସବୁ ଦେଖି ଆଶ୍ଚର୍ଯ୍ୟ ହୋଇଯିବାକୁ ପଡ଼େ ।

ଜଲେ ଯଥା ମୃତ୍‌କଣ ଏବ ମଜ୍ଜନଂ
ମହାବହଵଂ ପ୍ଲବତେ ହ ଦାରବମ୍ ।
ସ୍ଥିରେଽନଲେ ସ୍ଥାସ୍ନୁରୟଂ ତଥା ସ୍ଥିର
ନସର୍ଗଲଘ୍ୱର୍କ-ମୁଖାଃ ଖଗାଶ୍ଚରାଃ ।୭୮।

ପାଣିରେ ଟିକଏ ମାଟି ପକାଇଦେଲେ ତାହା ବୁଡ଼ିଯାଏ; କିନ୍ତୁ କାଠରେ ତିଆରି ମହାପୋତ ଭାସିଥାଏ । ଠିକ୍ ସେହିପରି ପବନରେ (ଆକାଶରେ) ସ୍ଥିତ ଶୀଳ ଗୁରୁ ଏହି ପୃଥିବୀ ସ୍ଥିର ରହି ଆସିଛି ଏବଂ ସ୍ୱତଃ ଲଘୁ ସୂର୍ଯ୍ୟାଦି ଗ୍ରହମାନେ ଗତିଶୀଳ ହୋଇ ରହିଛନ୍ତି ।

କିମ ମୂଳଃ ସମୂଳୋ ବା ଗ୍ରହାଣାଂ ଭଗଣକ୍ରମଃ
ସୃଷ୍ଟ୍ୟାଦମୂଳକୋଽସ୍ମାଭିରୁକ୍ତୋ ଯୁଷ୍ମନ୍ମତଃ ସ ଚେତ୍ ।୭୯।
ସ୍ଥାନେ ନିର୍ମୂଳକସ୍ତ୍ୱେଷ ମନ୍ୟତେ ବା ତଥାପି ଯା
ଚକ୍ରଭୋଗାଦ୍ଦିନଗତଃ ସିଦ୍ଧା ସୋଭୟଥା ସମା ।୮୦।

ଗ୍ରହମାନଙ୍କର ଯେଉଁ ଭ ଗଣ ସବୁ ଦିଆଯାଇଛି ତାହାର ଆରମ୍ଭ କେଉଁଠାରୁ ? ନା ତାହାର ଆରମ୍ଭ କୌଣସି ନିର୍ଦ୍ଦିଷ୍ଟ ସମୟରୁ ନୁହେଁ ? ସୃଷ୍ଟି ଆରମ୍ଭରୁ ଭ ଗଣର ଆରମ୍ଭ ଏହା ଆମର ମତ । ଏଥିରେ କ'ଣ ଆପଣ ଏକମତ ନା ନୁହନ୍ତି ?

ସେ ଯାହା ହେଉ, ଆପଣ ଯାହା ମାନନ୍ତୁ ନା କାହିଁକି ଗୋଟିଏ ଚକ୍ରଭୋଗରୁ ଯେଉଁ ଦିନ-ଗତି ଅଣାଯାଏ (ନିର୍ଦ୍ଦିଷ୍ଟ ଦିନରେ ଚକ୍ରଭୋଗ ହେଲେ ଏକ ଦିନରେ କେତେ) ଏଥିରୁ ଯେଉଁ ଦିନ-ଗତି ବାହାରେ (କଳ୍ପଦିନ (ସାବନ ଦିନ)ରେକଳ୍ପ ଭ ଗଣ ହେଲେ ଏକ ଦିନରେ କେତେ) ଏଥିରୁ ଯେ ଦିନଗତି ବାହାରେ ତାହା ସମାନ ।

ସର୍ବଖେଚରକକ୍ଷାଣାଂ କେନ୍ଦ୍ରଂ ଚେତ୍ ସୂର୍ଯ୍ୟମଣ୍ଡଳମ୍ ।
ତଦା ତସ୍ୟ ଜ୍ଞସିତୟୋଃ କୁଜେଜ୍ୟାର୍କଭୁବାଂ କ୍ରମାତ୍ ।୮୧।
ମଧ୍ୟତା ଶୀଘ୍ରତାପାତଃ ସୋଽସ୍ତି ଧ୍ରୁବଂ ବ୍ରବୀଷି ଚେତ୍ ।
ତଦା ପରଧିଭିଃ ସ୍ୱୀୟୈର୍ଦୃକ୍‌ସିଦ୍ଧୈଃ ଶୀଘ୍ରମନ୍ଦଜୈଃ ।୮୨।

ସର୍ବସଂସ୍କାରଶାଳିନ୍ୟାଂ ବହୁତାୟାଂ ସ୍ଫୁଟୀକୃତୌ
କନ୍ୟାମୀନସ୍ଥିତେ ଭାନୌ କେନ୍ଦ୍ରଚକ୍ରାନ୍ତକସ୍ଥୟୋଃ ।୮୩।
ଭୌମଭାର୍ଗବୟୋର୍ଦୃଶ୍ୟଃ ପ୍ରଭେଦଃ ସ୍ୱ ସ୍ଥିତେଃ କ୍ରମାତ୍
କଳାଭିର୍ଦ୍ୱିଂଶଦ୍ୱୈ ରବ୍ଧିଯାଯ୍ୟୈ ପୁନରେତୟୋଃ ।୮୪।

ଚନ୍ଦ୍ରାର୍କସ୍ଥିତୟୋର୍ଦ୍ଧ୍ୱୟଙ୍ଗବାହ୍ୱଭି ର୍ବିଶିଖାମରୈଃ
ପ୍ରଭେଦଶ୍ଚେତ୍ ଅମନ୍ୟେଷାଂ ଦୃଶ୍ୟେତ ପରଧିକମାତ୍ । ୮୫ ।

ତତ୍କଥଂ ସୂର୍ଯ୍ୟବମ୍ବସ୍ୟ ସମ୍ଭବେନ୍ମଧଶୀଘ୍ରତା ।
ତମୁରୀକୁର୍ବତଃ ସର୍ବମଧ୍ୟସ୍ଥତ୍ୱେନ ଯନ୍ତଃ । ୮୬ ।

କାକତାଲୀୟବତ୍ କ୍ୱାପି ଦୃକ୍‌ସିଦ୍ଧାବପି ତେ ମତଂ ।
ନାସ୍ମାଭିର୍ମନ୍ୟତେ ସାଧୁ କଦାଚତ୍କଂ ପ୍ରମାତୃଭିଃ । ୮୭ ।

ସମସ୍ତ ଗ୍ରହକକ୍ଷାର କେନ୍ଦ୍ରସ୍ଥଳରେ ସୂର୍ଯ୍ୟବିମ୍ବର ଅବସ୍ଥିତିହେଲେ ସ୍ଫୁଟ ରବି ତୁଲ୍ୟ ମଧ୍ୟମ ବୁଧ ଓ ଶୁକ୍ର ହେବେ । ପୁଣି ସ୍ଫୁଟ ରବିର ମାନ ମଙ୍ଗଳ ଗୁରୁ ଓ ଶନି ଏ ତିନିଙ୍କର ଶୀଘ୍ରୋଚ୍ଚ ହେବ । ତାହା ହେଉ, ଏହା ଯଦି ତୁମେ କହ ତାହାହେଲେ ସ୍ୱ ପ୍ରତ୍ୟକ୍ଷୋପଲବ୍ଧ ଶୀଘ୍ର, ମନ୍ଦ ପରଧି ଆଦିଦ୍ୱାରା ଗ୍ରହ ସ୍ପଷ୍ଟୀକରଣରେ—ଅର୍ଥାତ୍ ସମସ୍ତ ସଂସ୍କାର ଦେଇ ଗ୍ରହ ସ୍ପଷ୍ଟ କଲାବେଳେ ସ୍ପଷ୍ଟ ସୂର୍ଯ୍ୟ ଯେତେବେଳେ କନ୍ୟା ଅଥବା ମୀନ ରାଶିରେ ଥାଆନ୍ତି, ସେତେବେଳେ ଉକ୍ତ ନିକଟରେ ଥିବା ଦୃକ୍‌ସିଦ୍ଧ ସ୍ଫୁଟ ମଙ୍ଗଳ ଓ ଶୁକ୍ରର ରାଶ୍ୟାଦି ଗଣିତାଗତ ସ୍ଫୁଟ ରାଶ୍ୟାଦିରୁ ଯଥାକ୍ରମେ ୫୨ ଓ ୫୪ କଳା ପ୍ରଭେଦ ଆସିବା ଦେଖାପଡ଼ୁଛି । ପୁଣି ଏ ଦୁହେଁ ନୀଚ ନିକଟରେ ଥିବାବେଳେ ୨୭୨ ଓ ୩୩୫ କଳା ତଫାତ ହେବା ଦେଖାଯାଉଛି । ଏହି କ୍ରମରେ ଅନ୍ୟ ଗ୍ରହମାନଙ୍କର ମଧ୍ୟ ପ୍ରଭେଦ ଦେଖା ପଡ଼ିବ । ଏଥିରୁ ସ୍ଫୁଟ ସୂର୍ଯ୍ୟ ଯେ ମଧ୍ୟମ ବୁଧ, ଶୁକ୍ର ଏବଂ ମଙ୍ଗଳ, ବୃହସ୍ପତି ଓ ଶନିର ଶୀଘ୍ରୋଚ୍ଚ ସହିତ ସମାନ ଏହା କପରି କୁହାଯାଇ ପାରିବ ? ସୂର୍ଯ୍ୟକୁ ସବୁ ଗ୍ରହର କକ୍ଷା କେନ୍ଦ୍ର ବୋଲି ମାନୁଥିବା ଯତ୍ନଶୀଳ ଆପଣଙ୍କର ମତ କାକତାଳୀୟ ନ୍ୟାୟରେ କେଉଁଠାରେ ଦୃକ୍‌ସିଦ୍ଧ ହେଲେ ମଧ୍ୟ ତାହା ସାର୍ବଦିକ ନୁହେ କାଦାଚକ୍ର । ଏଣୁ ଏହି ମତକୁ ଆମେ ଯୁକ୍ତିଯୁକ୍ତ ବୋଲି ଗ୍ରହଣ କରିନପାରୁ ।

ସର୍ବଗ୍ରହାଣାଂ ଭ୍ରମିକୃତ୍ କେନ୍ଦ୍ରସ୍ଥୋ ମଧ୍ୟମୋ ରବିଃ ।
ସ୍ୱୀକାର୍ଯ୍ୟଶ୍ଚେତ୍ତଦୈବ ସ୍ୟାଦୃକ୍‌ସିଦ୍ଧିଃ ସାର୍ବକାଳକୀ । ୮୮ ।

ସ୍ଫୁଟାର୍କସ୍ୟେତ କେନ୍ଦ୍ରତ୍ୱାସିଦ୍ଧାବାକୃଷ୍ଟ୍ୟ ଭବତଃ ।
ନଜୋଚ୍ଚଦେବତାକୃଷ୍ଟଶ୍ଚନ୍ଦ୍ରବତ୍ ଭ୍ରାନ୍ତମେତ ଯଃ । ୮୯ ।

ଚନ୍ଦ୍ରାର୍ଦ୍ଧ ବେଗାତ୍ ଭୃଗୁଜସ୍ୟ ମନ୍ଦେ
ଫଳାଲ୍ପ ଭାବାଦଥ ଭୂମିଜସ୍ୟ ।
ପରୋଚ୍ଚମନ୍ଦୋଚ୍ଚଫଳାଲ୍ପଭେଦା—
ତ୍ତୌଦୃକ୍‌ସମୌ ବା ଭବଦୁକ୍ତିତଃ ସ୍ତାମ୍ । ୯୦ ।

ସ୍ଥିତ୍ୱା ଖମଧ୍ୟେଽପମମଣ୍ଡଳାନ୍
ସାବିତ୍ରନ୍ ଭ୍ରାନ୍ତମତା ସବତ୍ରା ।
ଆକୃଷ୍ଟକକ୍ଷାଃ ସୁତରାଂ ପ୍ରୟାନ୍ତୁ
ବୁଧାଦୟଃ କ୍ରାନ୍ତ ପଥେନ ଖେଟାଃ । ୯୨ ।
ତୟାର୍ଯ୍ୟମାକର୍ଷିତକକ୍ଷୟା ଭୁବା
ବଧୁଃ ସମାକୃଷ୍ଟତନୁଃ ପ୍ରୟାତ ଚେତ୍ ।
ତଦା କୁଗୋଳଭ୍ରମିସିଦ୍ଧୟା ଦଶା
ପ୍ରୟାତୁ ମେ ବାର୍ହିତ ନାନ୍ୟଥା କ୍ୱଚତ୍ । ୯୬ ।
କ୍ଷିତେସ୍ତଥା କ୍ରାନ୍ତପଥାଭିମୁଖ୍ୟତୋ
ବଦଣ୍ୟପି ସ୍ୟାଦ୍ ବଷ୍ଟବେ ଧ୍ରୁବେକ୍ଷଣମ୍ ।
ନ ଚୈପମସ୍ତଦ୍-ଧ୍ରୁବପାର୍ଶ୍ୱକ ଭ୍ରମେ
ଭବେଦ୍‌ଧ୍ରୁବୋରତ୍ୟଚଳା ଚଳା କଥମ୍ । ୯୩ ।

ମଧ୍ୟମ ରବିଙ୍କୁ ସବୁ ଗ୍ରହ କକ୍ଷା କେନ୍ଦ୍ରରେ ଥିବା ମାନଲେ ସାବଦ୍ଧକ ଦୃକ୍‌ସିଦ୍ଧ ହେଉଛି ଓ ହେବ । ଏଥିରୁ ସ୍ଫୁଟ ରବି, ଗ୍ରହ କକ୍ଷାକେନ୍ଦ୍ରରେ ରହୁନାହିଁ ଏହା ସିଦ୍ଧ ହେବାରୁ ତାହାର ଆକର୍ଷଣ ମଧ୍ୟ ନାହିଁ ଏବଂ ସେ ନିଜର ଉଚ୍ଚାକୃଷ୍ଟ ହୋଇ ଚନ୍ଦ୍ରପରି ନିଜେ ବୁଲୁଛି, ଏହା ଯୁକ୍ତି ଯୁକ୍ତ ବୋଲି ଜଣାପଡ଼ ଯାଉଛି । ଚନ୍ଦ୍ରପରି ରବି ମଧ୍ୟ ମନ୍ଦୋଚ୍ଚଦ୍ୱାରା ଆକୃଷ୍ଟ ହୋଇ ବୁଲୁଛି ।

ଶୁକ୍ର ଚନ୍ଦ୍ରାର୍ଦ୍ଧରେ ଅବାସ୍ଥାନ କଲାବେଳେ ମନ୍ଦଫଳ ଅତ୍ୟଳ୍ପ ହେବାରୁ ଏବଂ ମଙ୍ଗଳର ପରୋଚ ଓ ମନ୍ଦୋଚ ଉଭୟ ଫଳର ଅନ୍ତ କମ୍ ତଫାର୍ ହେତୁ ଆପଣଙ୍କ କହିବା ଅନୁସାରେ ସେ ଦିହେଁ ଦୃକ୍‌ସିଦ୍ଧ ହୋଇ ପାରନ୍ତି । କିନ୍ତୁ ଆକାଶରେ କ୍ରାନ୍ତି ବୃତ୍ତ ଧରାତଳରେ ଥିବା ସ୍ୱବ୍ୟାସ ରୂପକ ଅକ୍ଷରେ ସ୍ୱାଙ୍ଗ ଭ୍ରମଣ କରୁଥିବା ସୂର୍ଯ୍ୟର ଆକର୍ଷଣ ଯୋଗେ ନିଜର କକ୍ଷା ସହିତ ଟାଣି ହୋଇ ବୁଧ ଶୁକ୍ର ଆଦି ଗ୍ରହମାନେ କ୍ରାନ୍ତିମାର୍ଗରେ ହିଁ (ନିଜ ନିଜ ମଣ୍ଡଳ ହିଁ ସେମାନଙ୍କ କ୍ରାନ୍ତିବୃତ୍ତ) ଗତି କରି ପାରନ୍ତି । ସୂର୍ଯ୍ୟ ଦ୍ୱାରା ଆକୃଷ୍ଟ ହୋଇ ପୃଥିବୀ ବୁଲୁଛି ଏବଂ ପୃଥିବୀଦ୍ୱାରା ଆକୃଷ୍ଟହୋଇ ଚନ୍ଦ୍ର ବୁଲୁଛି—ଏହା ଯଦି ହୁଏ, ତାହାହେଲେ ଚନ୍ଦ୍ର ପୃଥିବୀର ସ୍ୱାଙ୍ଗ ଭ୍ରମ ଦିଗରେ ଯିବାକୁ ବାଧ୍ୟ । ଅନ୍ୟ ଦିଗରେ ସେ କଦାପି ଯାଇପାରିବ ନାହିଁ । ଆହୁରି ମଧ୍ୟ, ସୂର୍ଯ୍ୟାକର୍ଷଣ ଜନିତ ପୃଥିବୀର କ୍ରାନ୍ତି-ବୃତ୍ତରେ ଗତି ବେଳେ ବିଷୁବ ଦିବସରେ (ସମଦିବସରେ) ଗୋଟିଏ କୋଣରେ ଧ୍ରୁବ ଦେଖାଯିବାର କଥା । ପୁଣି ପୃଥିବୀର କ୍ରାନ୍ତିବୃତ୍ତ ଗତିରେ ପୃଥିବୀଦ୍ୱାରା ଆକୃଷ୍ଟ ଚନ୍ଦ୍ରର ସ୍ପଷ୍ଟ କ୍ରାନ୍ତି କେଉଁଠାରୁ ହେବ ? (ଚନ୍ଦ୍ର ମଧ୍ୟ କ୍ରାନ୍ତିବୃତ୍ତର ଅଭିମୁଖରେ ବୁଲିବ) ଏହି ସବୁ ଯୁକ୍ତିରୁ ପୃଥିବୀ ସ୍ଥିର ଓ କଦାପି ଚଳ ନୁହେଁ ବୋଲି ଜଣାଯାଉଛି ।

ମନ୍ଦୋଚ୍ଚପାତପ୍ରଭବା ଧରଣ୍ୟର୍ଦ୍ଧ୍ୱ—
ଯାମ୍ୟୋତ୍ତରାବସ୍ଥିତଦୃଷ୍ଟିହେତୋଃ ।
ପ୍ରତ୍ୟପାଦଭ୍ରମମଣ୍ଡଳାନାଂ
ଯୋଗାଦ୍ ଯଦ୍ଭୂତ୍-ପଦ୍ୟତ ଏବ ବୃତ୍ତମ୍ । ୯୪ ।

ଦ୍ୱୟା ତଦେବୋଦ୍ଦତମତ୍ର ବୃତ୍ତା—
ଭାସୋ ଗ୍ରହାଣାଂ ସରଣିର୍ଯଦେତତ୍ ।
ଯୁକ୍ତଂଚ ପାତୋଚ୍ଚ ଗତୀକ୍ଷଣାତ୍ତେ
କ୍ଷେପାଭିକର୍ଷାତ୍ମସୁରାଃ ପ୍ରବଷ୍ଟାଃ । ୯୫ ।

ମନ୍ଦ, ଶୀଘ୍ରୋଚ୍ଚ ଓ ପାତ ଇତ୍ୟାଦିର ପ୍ରଭାବରୁ ଗ୍ରହର ଉପର, ତଳ, ଦକ୍ଷିଣ ଓ ଉତ୍ତର ଅବସ୍ଥିତି । ତେଣୁ ପ୍ରତି ମଣ୍ଡଳ, ବିମଣ୍ଡଳ ଓ ଅପମଣ୍ଡଳ (କ୍ରାନ୍ତିବୃତ୍ତ) ପ୍ରଭୃତି ଯେ ନିଖୁଣ ବୃତ୍ତ ନୁହନ୍ତି ଅଥଚ ବୃତ୍ତାଭାସ ବା ଦୀର୍ଘବୃତ୍ତ ଏଥିରେ ସଂଦେହ ନାହିଁ । ପୁଣି ଏଗୁଡ଼ିକ ହିଁ ଗ୍ରହର ସରଣି ବା କକ୍ଷା, ଏ ଉକ୍ତି ତୁମର ଯଥାର୍ଥ । ଆମ୍ଭେମାନେ ମଧ୍ୟ ପାତ ଓ ଉଚ୍ଚ ଗତି ଦେଖି ସ୍ଥିର କରୁଛୁ ଯେ ଏମାନେ ଆକର୍ଷକ ଓ ବିକ୍ଷେପ ଶକ୍ତି ବିଶିଷ୍ଟ ଦେବତା ମାତ୍ର ।

ପାଶ୍ଚାତ୍ୟମାନେ ମାନିଲେ ପରି ଏହି ଉଚ୍ଚ ଓ ପାତ ଆଦି ଆକର୍ଷକ ଓ ବିକ୍ଷେପ ଶକ୍ତି ବିଶିଷ୍ଟ ପଦାର୍ଥ ମାତ୍ର । ହିନ୍ଦୁମାନେ ଏଗୁଡ଼ିକୁ ଦେବତା ବୋଲି ମନେ କରନ୍ତି ଏହାହିଁ ବିଶେଷତ୍ୱ ।

ଭବନ୍ମତେ ଭୂମିରିୟଂ ଗ୍ରହେଭ୍ୟୋ
ନ ଭିଦ୍ୟତେ ତୁଲ୍ୟଗୁଣାଶ୍ରିତତ୍ୱାତ୍ ।
ତଥା ସତି ସ୍ଥୂଳତରାଃ ପୃଥିବ୍ୟାଃ
ଜୀବାଦୟଃ ପାତବଶାଦ୍ୱିଦୂରମ୍ । ୯୬ ।

ବିକ୍ଷେପ ମୃଚ୍ଛନ୍ତି କଥଂ କ୍ଷମା କିଂ
ନ କ୍ଷିପ୍ୟତେ ଶୁକ୍ରସମା ତ୍ୱଦୁକ୍ତ୍ୟା ।
ବିମ୍ବାନପେକ୍ଷୋ ଯଦକ୍ଷୁସ୍ତଦସ୍ୟା
ଗୁରୋରପି କ୍ଷୁଦ୍ର ଇତୀର୍ଯ୍ୟତେ ଚେତ୍ । ୯୭ ।

କ୍ଷିତ୍ୟା ତଦାପି ହିକଳେଷୁ ମତ୍ୟାଂ
କ୍ରାନ୍ତି ପ୍ରଭେଦାତ୍ ବିଷୁବାୟନେଷୁ
ଦୃକ୍ ସିଦ୍ଧ୍ୟ-ଲ୍ଲବାନ୍ତରଣେର୍ନ ହି ସ୍ୟାତ୍
ଗ୍ରହପ୍ରଭାକାଳବଲତ୍ୱସିଦ୍ଧିଃ । ୯୮ ।

ଅତଃ ଶର୍‌ଭ୍ରବତ ଏବ ସାକ୍ଷା—
ନ୍ନିଶ୍ଚୀୟତେ ଜଣ୍ଡଳତାଚଳାୟାଃ ।
ଯଦ୍ ଗୋଳୟୋଃ ସାୟନଭାଗଭାନୋ—
ର୍ନ କ୍ରାନ୍ତ ଭେଦୋଽପି ତନ୍ନଭ୍ରୂଜୈକ୍ୟେ । ୯୯ ।

ସମାନ ଗୁଣାଧାଯକ ହେତୁ ପୃଥିବୀ ଗ୍ରହମାନଙ୍କଠାରୁ ଆଦୌ ଭିନ୍ନ ନୁହେଁ । ଯଦି ଏହା ହୁଏ, ପୃଥିବୀଠାରୁ ଅତି ସ୍ଥୂଳ ବୃହତ୍ତ୍ତ ଆଦି ଗ୍ରହବିମ୍ବ ପାତ ହେତୁ ବହୁଦୂରକୁ ଗୁଲିଯିବାର କାରଣ କ'ଣ ? ତୁମର କଥନାନୁସାରେ ସେଗୁଡ଼ିକ (ଗ୍ରହ ବିମ୍ବ) ଶୁଦ୍ଧପାଶ ପୃଥିବୀ ନିକଟରେ ବିକ୍ଷିପ୍ତ ନ ହେବାର ପୁଣି କାରଣ କ'ଣ ? ଶର ବା ପାତ-ଗତିବିମ୍ବର ଲଘୁତ୍ୱ ବା ମହତ୍ତ୍ୱକୁ ଅପେକ୍ଷା କରେ ନାହିଁ । ଏଣୁ ଗୁରୁଙ୍କଠାରୁ ପୃଥିବୀର ଶର ଅଳ୍ପ ହେବାରେ ଆପତ୍ତି ନାହିଁ ଏହା ଯଦି କହ, ତା' ହେଲେ ଆମେ କହିବୁ ଯେ ତିନି କଳାମାତ୍ର ଶରଥିବା ପୃଥିବୀର ବିଷୁବସ୍ଥିତି ଓ ଅୟନ ସ୍ଥିତିରେ (ବେଶି) ଅତ୍ୟନ୍ତ ହେଲେ ମଧ୍ୟ (କମ) କ୍ରାନ୍ତି ଭେଦ ହେତୁ ସୂର୍ଯ୍ୟ ଦୃକ୍‌ସିଦ୍ଧ ହେଉ ନାହିଁ—ଗଣିତରେ ଆସିଥିବା ସୂର୍ଯ୍ୟର ଓ ପ୍ରତ୍ୟକ୍ଷୋପଲବ୍ଧ ସୂର୍ଯ୍ୟର ସମତା ରହୁନାହିଁ । ଫଳରେ ଗ୍ରହଣ, ଛାୟା, ସମୟ ଓ ଲଗ୍ନ ଆଦି ସିଦ୍ଧ ହୋଇପାରିବ ନାହିଁ । ପୃଥିବୀର ଆଦୌ ଶର ନ ଥିବାର ମାନିଲେ ହିଁ ଏସବୁ ସିଦ୍ଧ ହେବ । ଏଥିରୁ ପୃଥିବୀକୁ ସ୍ଥିର ମାନିବା ହିଁ ସିଦ୍ଧାନ୍ତ । ଉଭୟ ଗୋଳରେ ସାୟନ ସୂର୍ଯ୍ୟର ଭୁଜ ସମାନ ହେବାବେଳେ ଠିକ୍ଏ ହେଲେ କ୍ରାନ୍ତି ଭେଦ ହୁଏ ନାହିଁ । ଏଥିରୁ ମଧ୍ୟ ପୃଥିବୀ ସ୍ଥିର ପ୍ରତିପନ୍ନ ହେଉଛି । ପୃଥିବୀର ଗତି ମାନିଲେ ଶର ମାନିବାକୁ ପଡ଼ିବାଦ୍ୱାରା ଏ ସବୁ ଗୋଳମାଳ ଆସି ପହଞ୍ଚୁଅଛି ।

ଯଥା ରବେର୍ନାସ୍ତି ଶରୋ ମତେ ତେ
ତଥା ଭୁବୋ ମନ୍ମତ ଏବମାତ୍ଥ ।
ଚେଦ୍ ଖେଟକକ୍ଷୋଦରପାର୍ଶ୍ୱକେନ୍ଦ୍ର—
ସ୍ଥିତେର୍ମହତ୍ତ୍ୱାଦତିଭାସ୍ୱରତ୍ୱାତ୍ ।୧୦୦।
ଭାନୋର୍ଗ୍ରହେଭ୍ୟୋ ବହୁଭେଦଲାଭାତ୍
ପ୍ରତ୍ୟକ୍ଷତୋଽ ମାନ ମଯୋକ୍ଷ୍ୟଭବଃ ।
ବୁଧାଦିସାଧର୍ମ୍ମ୍ୟଜୁଷଃ ପୃଥିବ୍ୟାଃ
ସ ଚେନ୍ନ ସର୍ଗାଦିଚଳୈବ ସାସ୍ତାମ୍ ।୧୦୧।

ତୁମ ମତରେ ସୂର୍ଯ୍ୟର ଶର ନାହିଁ, ଆମ ମତରେ ପୃଥିବୀର ଶର ନାହିଁ, ଏହା ଯଦି କହ, ତାହାହେଲେ ଶୁଣ—ସୂର୍ଯ୍ୟ (ବିମ୍ବ) ମଧ୍ୟମ ରବିର ପାର୍ଶ୍ୱରେ ରହିଛି ଅର୍ଥାତ୍ ସୂର୍ଯ୍ୟବିମ୍ବ

ଗ୍ରହକକ୍ଷାମାନଙ୍କର କେନ୍ଦ୍ରରେ ନାହିଁ । ତାର ଅବସ୍ଥିତି ଅନ୍ୟତ୍ର । ସବୁ ଗ୍ରହଠାରୁ ସେ ପରିମାଣରେ ବଡ଼ ଏବଂ ତାହାର ପ୍ରକୋପ ଅତି ବେଶି ! ଏହି ସବୁ ବୈଧର୍ମ୍ୟ ଦୃଷ୍ଟିରୁ ଏବଂ ପ୍ରତ୍ୟକ୍ଷରେ ଉପଲବ୍ଧ ନ ହେଉଥିବାରୁ ମୁଁ ସୂର୍ଯ୍ୟର ଶର ଅଛି ବୋଲି ମନେକରୁ ନାହିଁ । (ତୁମର ଯୁକ୍ତି କ'ଣ କହ ?)

ତୁମେ ଯଦି କହ ଯେ ପୃଥିବୀ ବୁଧ ଆଦି ଗ୍ରହପରି ସମାନ ଧର୍ମାବଲମ୍ବୀ ହେଲେ ମଧ୍ୟ ଶରର ଅଭାବ ରୂପକ ବୈଧର୍ମ୍ୟ ରହିଛି (ତାର) ଅର୍ଥାତ୍ ସବୁ ବିଷୟରେ ସେ ଅନ୍ୟ ଗ୍ରହମାନଙ୍କର ସମକକ୍ଷ ହେଲେହେଁ ତାର ଶର ନାହିଁ । ତାହାହେଲେ ଆମେ କହିବୁ ଯେ ସବୁ ଗ୍ରହ ବୁଲୁଥିଲେ ମଧ୍ୟ ସେ ନ ବୁଲୁ ଅର୍ଥାତ୍ ଏହି ଗୋଟିଏ ବୈଷମ୍ୟ ତାହାର ରହିବାରେ ଆପଣ କାହିଁକି ଆପତ୍ତି କରୁଛନ୍ତି ? ପୃଥିବୀ ଅଚଳ, ଏହା ନୈସର୍ଗିକ ।

ଭୂଧର୍ମିଣୋ ଭୌମମୁଖା ଯଦି ସ୍ୟୁଃ
ସର୍ବର୍ତ୍ତୁମନ୍ତସ୍ତଦମୀ କମନ୍ତଃ ।
ଧ୍ରୁବାଶ୍ଚବାଷ୍ପୋଦ୍ଭବ ମେଘସଂଘା
ନାଚ୍ଛାଦୟନ୍ତ୍ୟର୍କମମାଶଶୀବ ।୧୦୨।

ମୃଣ୍ମଯ୍ୟସୌ ଭୂର୍ମହତୀ ଗ୍ରହାସ୍ତେ
ତୋୟାତ୍ମକାଃ କ୍ଷୁଦ୍ରନିଜପ୍ରମାଣାଃ ।
ବିରୁଦ୍ଧଧର୍ମା ବତ ଏବ ପୃଥ୍ୱୀ—
ତାରାଗ୍ରହୌ ସ୍ଥାସ୍ନୁଚଲୌ କମାତ୍ ସ୍ତଃ ।୧୦୩।

ଖପୃଷ୍ଠକରୋତ୍ତପ୍ତତନୁଦଗନ୍ତକସ୍ମା—
ଦୁଦ୍ଗତ୍ୟ ବାଷ୍ପାଣି ଜଳାଦ୍‌ଘନାଃ ସ୍ୟୁଃ ।
ନ କେବଳାତ୍ତୋୟମୟ-ଗ୍ରହେଷୁ
ତତ୍‌ସମ୍ଭବୋ ବସ୍ତୁତ ଏବ ନାସ୍ତେ ।୧୦୪।

ଯଦି ମଙ୍ଗଳ ଆଦି ଗ୍ରହମାନେ ପୃଥିବୀର ସମାନଗୁଣୀ ଏବଂ ଏଗୁଡ଼ିକରେ ମଧ୍ୟ ପୃଥିବୀରେ ହେଲାପରି ଛ ଋତୁ ହେଉଥାଏ, ତାହାହେଲେ ଅମାବାସ୍ୟାର ଚନ୍ଦ୍ର ସୂର୍ଯ୍ୟକୁ ଘୋଡ଼ାଇ ପକାଇଲା ପରି ଏମାନଙ୍କ ଦେହରୁ ଉଦ୍‌ଗତ ବାଷ୍ପ ଆଦିଦ୍ୱାରା ଉତ୍ପନ୍ନ ମେଘମାଳା ପୃଥିବୀ ଓ ଗ୍ରହ ମଧ୍ୟରେ ଆବରକ (ଆଚ୍ଛାଦକ)ର କାର୍ଯ୍ୟ କରୁଥାନ୍ତେ ତ ? କାହିଁ ତାହାତ ହୁଏନାହିଁ ।

ମୃଣ୍ମୟୀ ପୃଥିବୀର ବିମ୍ବ ବିଶାଳ ଏବଂ ଅନ୍ୟଗ୍ରହମାନଙ୍କର (ବୁଧ ଆଦିର) ବିମ୍ବ ଜଳମୟ ଓ ଛୋଟ । ଏଥିରୁ ହିଁ ସ୍ପଷ୍ଟ ହୁଏ ଯେ ପୃଥିବୀ ଗ୍ରହମାନଙ୍କର ସମଧର୍ମୀ ନୁହେଁ । ଏଣୁ ପୃଥିବୀକୁ ସ୍ଥିର ଓ ବୁଧାଦିଗ୍ରହଗୁଡ଼ିକୁ ଚଳମାନ (ଅସ୍ଥିର) ବୈଷମ୍ୟ ବତାଇବାରେ ଅସଙ୍ଗତ ନାହିଁ ।

ମାଟି ନିକଟରେ ଥିବା ପାଣି ସୂର୍ଯ୍ୟ ଉତ୍ତାପରେ ବାଷ୍ପରେ ପରିଣତ ହୋଇ ଉପରକୁ ଗଲେ ମେଘ ହୁଏ । ଜଳମୟ ବିମ୍ବ ଅନ୍ୟ ଗ୍ରହମାନଙ୍କରେ ସେ କଥା ହୁଏ । ନାହିଁ ।

ଯଷ୍ଟ୍ୟଗ୍ରଯୁଗ୍ମଗ୍ରଥିତାଲମ୍ବଭୂର—
ମୃତ୍ପିଣ୍ଡୟୋର୍ଯଦ୍ ଧୃତୋ ତୁଲାସ୍ୟାତ୍ ।
ତଦ୍ଭାରକେନ୍ଦ୍ରାଖ୍ୟମୁଦୀର୍ଯ୍ୟତେଽସ୍ୟାଂ
ସ୍ଥାନଭ୍ରମେ ତଦ୍ଗ୍ରହଣାତ୍ ପ୍ରବୃତ୍ତେ ।୧୦୫।

କ୍ଷୁଦ୍ରସ୍ୟ ପିଣ୍ଡସ୍ୟ ବୃହଦ୍ ପ୍ରମାଣଂ
ସ୍ୟାନ୍ମଣ୍ଡଳଂ ଭ୍ରାନ୍ତଭବଂ ଗୁରୋସ୍ତୁ ।
ଅଲ୍ପାୟତଂ ତଦ୍ଧରଣୀତରଣ୍ୟୋ
ରସ୍ୟାଂ କ୍ରିୟାୟାଂ ପରକଳ୍ପିତାୟାମ୍ ।୧୦୬।

ତଦ୍ଭାରକେନ୍ଦ୍ରଂ ରବି ବିମ୍ବମଧ୍ୟେ
ପତତ୍ୟତସ୍ତେଷୁତ ତତ୍ ଖମଧ୍ୟେ ।
କ୍ଷ୍ମା ଦୂରଗା ଭ୍ରାମ୍ୟତ ଯୁକ୍ତିରେଷା
ତବାସ୍ତି ଚେଦ୍ ସପି ଭବେତ୍ ସଦୋଷା ।୧୦୭।

ଯଦ୍ଭୂଚ୍ୟତେ ଘନଫଳେନ ଗୁରୋର୍ବିଭକ୍ତାଦ୍
ଭାସ୍ୱଦ୍ ଘନାତ୍ ଫଳମଭୂଦ୍ ସଗୋଽଷ୍ଟସଂଖ୍ୟା ।
ସୈକୈତଦା ପ୍ରମୁଭୟାନ୍ତର ବର୍ମ୍ମ-ଲବ୍ଧଂ
କ୍ରୋଶାତ୍ମକଂ ଧୃତନଖାଚଳବାହୁସଂଖ୍ୟମ୍ ।୧୦୮।

ଯନ୍ମଧ୍ୟତୋ ରବିତନୋରୟୁତାନ୍ତରେଣ
ସ୍ୟାଦ୍ଭାରକେନ୍ଦ୍ରମଧିକଂ ରବିମଣ୍ଡଳାର୍ଦ୍ଧାତ୍ ।
ସାର୍ଦ୍ଧେନ୍ଦୁ ଭୂପଭୁଜଦୃଗ୍ଭୁଜ ସମ୍ମିତାଦ୍—
ବାହ୍ୟେ ପତତ୍ୟତ ଇନସ୍ୟ କଥଂ ସ୍ଥିରତ୍ୱମ୍ ।୧୦୯।

ଖଣ୍ଡେ ଏ ଯଷ୍ଟିର ଦୁଇ ପ୍ରାନ୍ତରେ ଯଥାକ୍ରମେ ବଡ଼ ଓ ଛୋଟ ମାଟିପିଣ୍ଡୁଳା ଗୁନ୍ଥ ସେହି ଯଷ୍ଟିର ଯେଉଁଠାରେ ଧରିଲେ ଉଭୟ ମାଟି ପିଣ୍ଡୁଳାର ଭାର ସମତା ରହିବ ସେହି ସ୍ଥାନକୁ ଭାରକେନ୍ଦ୍ର କହନ୍ତି । ସେହି ଭାରକେନ୍ଦ୍ରକୁ (ସୂତ୍ରାଦିଦ୍ୱାରା) ଧରି ବୁଲାଇଲେ ଛୋଟ ପିଣ୍ଡୁଳାର ଭ୍ରମଣବୃତ୍ତ ବଡ଼ ହେବ ଓ ବଡ଼ ପିଣ୍ଡର ଭ୍ରମଣବୃତ୍ତ ଛୋଟ ହେବ ।

ପୃଥିବୀ ଓ ସୂର୍ଯ୍ୟଙ୍କୁ ଏହିପରି ଛୋଟ ଓ ବଡ଼ ପିଣ୍ଡ ସ୍ଥାନରେ ନିଆଯାଇ ଉଭୟର ଭାର କେନ୍ଦ୍ର ଖୋଜିବାରେ ଜଣାଯାଉଛି ଯେ ତାହା ରବିବିମ୍ବ ଭିତରେ ପଡ଼ ଯାଉଛି । ଏଣୁ ସୂର୍ଯ୍ୟବିମ୍ବକୁ ଆକାଶ ମଧ୍ୟରେ ଧରାଯାଇଛି ଏବଂ ଏହା ସ୍ଥିର ରହିଛି । ଅଥଚ ଦୂରରେ ଥିବା ପୃଥିବୀ ବିଶାଳ ଗତିବୃତ୍ତ ରଚନା କରି ବୁଲାଇବାରେ ଲାଗିଛି । ଏହାହିଁ ପୃଥିବୀ ଚଳ ଓ ସୂର୍ଯ୍ୟ ସ୍ଥିର ରହିବାର କାରଣ ବୋଲି ଯଦି ଆପଣ କହନ୍ତି, ତାହାହେଲେ ମୁଁ କହିବି ଯେ ତାହା ମଧ୍ୟ ଦୋଷପୂର୍ଣ୍ଣ—ନିର୍ଦ୍ଦୋଷ ନୁହେଁ । କାରଣ ଶୁଣନ୍ତୁ—

ଆପଣଙ୍କ ମତରେ ବୃହସ୍ପତିଙ୍କର ଓଜନଆ ଘନଫଳଦ୍ୱାରା ସୂର୍ଯ୍ୟର ଘନଫଳକୁ ହରିବାରେ "୪୫୯୨୨୪୨୨୯୧୩୩୫୩୮୮ / ୫୧୨୩୪୨୦୦୪୨୨୨୮୨" ଫଳହୁଏ ୮୯୬ । ଏହାକୁ ସୈକ (?) କଲେ ଫଳହୁଏ ୮୯୭ । ଏଥିରେ ସୂର୍ଯ୍ୟ ଓ ଗୁରୁଙ୍କର ଅନ୍ତର ମାନକୁ ହରିଲେ ଫଳ ହେବ ୨୭୨୦୧୮ । ସୂର୍ଯ୍ୟ ବିମ୍ବଠାରୁ ୨୭୨୦୧୮ ଦୂରରେ ଉଭୟଙ୍କର ଭାରକେନ୍ଦ୍ର ହେବ । ରବି ବ୍ୟାସାର୍ଦ୍ଧ ୨୨୨୧୬୧½ । ଏଣୁ ୨୭୨୧୦୮ରେ ଯେଉଁ ଭାର କେନ୍ଦ୍ର ହେବା କଥା ତାହା ମଧ୍ୟ ସୂର୍ଯ୍ୟବିମ୍ବ ଭିତରେ ନପଡ଼ି ବାହାରେ (ବିମ୍ବ ବାହାରେ) ପଡ଼ୁଛି । ଅର୍ଥାତ୍ ଭାରକେନ୍ଦ୍ରର କୌଣସି ସମ୍ପର୍କରେ ସୂର୍ଯ୍ୟବିମ୍ବ ଆସୁନାହିଁ । ଏଣୁ ସୂର୍ଯ୍ୟର ସ୍ଥିରତା ପାଇଁ ଯେଉଁ କାରଣ ଆପଣ ଦେଉଛନ୍ତି ତାହା ଯଥାର୍ଥ ନୁହେଁ । ଅର୍ଥାତ୍ ସୂର୍ଯ୍ୟ ସ୍ଥିର ରହିବା ଯୁକ୍ତିସିଦ୍ଧ ହେଉନାହିଁ ।

ଅତ୍ରାପି ସୂର୍ଯ୍ୟାଭିମୁଖତ୍ୱସିଦ୍ଧିଃ
ସର୍ବଗ୍ରହାଣାଂ ସମକାଳତା ଚ ।
କକ୍ଷାଭ୍ରମେ ସମ୍ଭବତୀତ୍ୟସିଦ୍ଧା
ତତ୍କଳ୍ପନା ନା ଲଘୁ ମତେକ୍ୟତା କମ୍ ।୧୧୦।

ନ ବାସ୍ତବୀ ତଦ୍ଘଟନା ଗ୍ରହେଷୁ
ଭବେଦ୍ଗତ୍ୟ ରୁଦ୍ଧଂ ଯଦମୀଷୁ ନାସ୍ତେ ।
କେନ୍ଦ୍ରାଭିକୃଷ୍ଟେ ଗୁରୁତୈବ ବସ୍ତୁ—
ନ୍ୟୁକ୍ତଂ ପ୍ରସଙ୍ଗାତ୍ପଠତାଂ ହିତାୟ ।୧୧୧।

ଏହି ଭାରକେନ୍ଦ୍ର କଳ୍ପନାରେ ସୂର୍ଯ୍ୟାଭିମୁଖରେ ସବୁ ଗ୍ରହର କକ୍ଷାଭ୍ରମ ହେବା କଥା ସିଦ୍ଧ ହେଉଅଛି ଏବଂ ଗ୍ରହମାନଙ୍କର ଭଗଣଭୋଗ କାଳର ସମତା ମଧ୍ୟ ଏହାଦ୍ୱାରା ସିଦ୍ଧ

ହେଉଅଛୁ ବୋଲି ଆପଣ କହୁ ଅଛନ୍ତି । ମାତ୍ର ତାହା ତ ହେଉନାହିଁ । ଏଣୁ ବହୁ ବୁଦ୍ଧିଶାଳୀ ଆପଣ ଏ ସ୍ଥିରକେନ୍ଦ୍ର କଳ୍ପନା କାହିଁକି କରୁଛନ୍ତି କହନ୍ତୁ । ଏହା ତ ଯୁକ୍ତିସିଦ୍ଧ ହେଉନାହିଁ ।

ଗ୍ରହମାନଙ୍କର ସ୍ଥିର ନ ଥିବାରୁ ସେମାନଙ୍କ ପକ୍ଷେ ସ୍ଥିରକେନ୍ଦ୍ର କଳ୍ପନାର ଦ୍ୱାହି ଦେବା ଦରକାର ନାହିଁ । ପଢ଼ୁଥିବା ଏବଂ ପଢ଼ାଉଥିବା ଲୋକମାନଙ୍କର ହିତ ନିମନ୍ତେ ପ୍ରସଙ୍ଗତଃ କେନ୍ଦ୍ର ଆଡ଼କୁ ଆକୃଷ୍ଟ ଦ୍ରବ୍ୟରେ ସ୍ଥିରବସ୍ତୁକୁ କାରଣରୂପେ ଦର୍ଶାଇଦିଆଗଲା । ମାତ୍ର—

ଭ୍ରାମ୍ୟଦ୍ଧରାପୃଷ୍ଠଗତୁଙ୍ଗବେଶ୍ମ
ଶୃଙ୍ଗସ୍ୟ ରେଖାଭ୍ରମିମଣ୍ଡଳୋତ୍ଥା ।
ମହତ୍ୟତସ୍ତତ୍ପତଦଶ୍ମଖଣ୍ଡ—
ଭୂସଙ୍ଗତଃ ସ୍ୟାତ୍ ପୁରତଶ୍ଚ କିଂ ତତ୍ ।୧୧୨।

ଭୂଭ୍ରାନ୍ତ୍ୟଭାବେ ପତନଂ ନ ହୀତ୍ଥଂ
ସ୍ୟାଦତ୍ୟବାଦୀର୍ଯଦି ତନ୍ନ ଯୁକ୍ତମ୍ ।
ଭୂବାୟୁରଣ୍ୱାବହନାମଧେୟଃ
ପ୍ରତ୍ୟଗ୍‌ଦିଶୋ ବାତି ସଦୈବ ଧୀରଃ ।୧୧୩।

ଯତ୍ପ୍ରେର୍ଯ୍ୟମାଣାସ୍ତୃଣରାଜବୃକ୍ଷାଃ
ପ୍ରାୟେଣପୂର୍ବାନତଭାବଲକ୍ଷ୍ୟାଃ ।
ପୁନର୍ମହୀମଧ୍ୟଗରେଖିକାୟାଃ
ପ୍ରାୟୋ ନତଃ ପ୍ରାଗ୍ଗତ ଭୂମିଭାଗଃ ।୧୧୪।

ଅତଃ କ୍ୱଚତ୍ପ୍ରାଚି ପତେତ୍କଦାଚତ୍—
ଅଶ୍ମାଦିକଂ ନ ତ୍ୱବନିଭ୍ରମେଣ ।
ସମେସ୍ଥଳେ ସାବରଣେ ତୁ ସର୍ବ—
ସ୍ୟାଧୋଗତଃ ସ୍ୟାଦୃଜୁରେଖୟୈବ ।୧୧୫।

ପୃଥିବୀ ବୁଲୁ ନ ଥିବାରୁ ତାହାର ପୃଷ୍ଠଦେଶରେ ଥିବା ବହୁ ଉଚ୍ଚ ଘରର ଶିଖର-ଭ୍ରମଣ ରେଖା ଖୁବ୍ ବଡ଼ ଓ ବୃତ୍ତାକାର ହୁଏ । ଏଣୁ ଏହି ଶିଖର ପ୍ରଦେଶରୁ ପଡ଼ିତ ଗୋଟିଏ ପଥର ଖଣ୍ଡ ଶିଖରର ଠିକ୍ ଅଧଃ ପ୍ରଦେଶରେ (ତଳେ) ନ ଲାଗି ଟିକିଏ ପୂର୍ବରେ ଲାଗେ ।

ପୃଥିବୀ ବୁଲୁ ନ ଥିଲେ ଏପରି ହୁଅନ୍ତା ନାହିଁ, ଏହା ଯଦି ତୁମେ କହ ତାହାହେଲେ ତାହା ମଧ୍ୟ ଯୁକ୍ତିଯୁକ୍ତ କାରଣ ନୁହେଁ । କାରଣ, ଆମ ମତରେ ଆବହ ନାମକ ଭୂବାୟୁ ଧୀର ଭାବରେ ପଶ୍ଚିମରୁ ପୂର୍ବକୁ ବରାବର ବହୁଅଛି । ଏ ବାୟୁଦ୍ୱାରା ପ୍ରଭାବିତ ହୋଇ ଗଛ ଘାସ ଆଦି ପ୍ରାୟ ପୂର୍ବ ଆଡ଼କୁ ନଇଁଥିବା ଦେଖାଯାନ୍ତି । ପୁଣି ପୃଥିବୀ ମଧ୍ୟଗତ ରେଖାର ପୂର୍ବଭାଗ ଟିକଏ ପୂର୍ବ ଆଡ଼କୁ ନୁଆଁଣିଆଁ ଥିବାରୁ ଉକ୍ତ ତୁଙ୍ଗ ପ୍ରାସାଦ ଶିଖରରୁ ପତିତ ପ୍ରସ୍ତର ଖଣ୍ଡ ଶିଖରର ଠିକ୍ ତଳେ ନ ପଡ଼ି ଟିକଏ ପୂର୍ବ ଆଡ଼କୁ ପଡ଼ିଯାଇପାରେ । ପୃଥିବୀ ଭ୍ରମଣ ତାହାର କାରଣ କାହିଁକି ହେବ ? ଅର୍ଥାତ୍ ଏହି ଘଟଣାରୁ ପୃଥିବୀକୁ ଭ୍ରମଣଶୀଳ ବୋଲି ମାନିବା ଦରକାର ମନେ ହେଉନାହିଁ । ଅଧିକନ୍ତୁ ସମାନ ସ୍ଥଳରେ ଏବଂ ଉପରେ ଆବରଣ ଥିଲେ (ପବନ ପଶୁ ନଥିଲେ) ସରଳରେଖାରେ ହିଁ ସବୁ ଦ୍ରବ୍ୟ ତଳେ ପଡ଼ିବା ଦେଖାଯାଇ ଥାଏ ।

ଯାବଦ୍ଦୂରେ ଯସ୍ୟ ଯସ୍ୟ ଗ୍ରହସ୍ୟ
ବ୍ରଧ୍ନାନ୍ମଧ୍ୟସ୍ଥାନମାସ୍ତେ ତଥୈବ ।
କାଲେନ ସ୍ୟାଦ୍‌ଯାବତା ଯସ୍ୟ ପୂର୍ଣ୍ଣୋ—
ଭାସ୍ୱଦ୍‌ବମ୍ୱାଭିଭ୍ରମଃ ପର୍ଯ୍ୟୟାଖ୍ୟଃ ।୧୧୬।

ତତ୍‌ଖେଟାର୍କାନ୍ତଃସ୍ଫୁରଦ୍‌ଯୋଜନାନାଂ
ଯେ ସୂର୍ଯ୍ୟାତଦ୍ୱନ୍ଦ୍ୱଜାତା ଘନାଙ୍କାଃ ।
ତତ୍ ତତ୍‌କାଲସ୍ୟାପି ବର୍ଗାଙ୍କକା ଯେ
ବର୍ଗସ୍ୟ ସ୍ୟାଦ୍ୱା ଘନେନାନୁପାତଃ ।୧୧୭।

ଅନ୍ୟୋଽନ୍ୟଂ ସ୍ୟାତ୍ ସର୍ବଖେଟସ୍ୟ ତୁଲ୍ୟଃ
ସୋଽୟଂ ଯଦ୍ୱଦ୍‌ଭୂଃ ଶରାଙ୍ଗାଗ୍ନି ଘସ୍ରୈଃ ।
ସପ୍ତାଷ୍ଟାଙ୍ଗୈର୍ମଙ୍ଗଲୋଽଭିଭ୍ରମେତ୍ ତଦ୍—
ବର୍ଗ ଦ୍ୱନ୍ଦ୍ୱସ୍ୟାଭବଦ୍‌ଯୋଽନୁପାତଃ ।୧୧୮।

ସୋଽୟଂ ଲକ୍ଷ କ୍ଷୁଣ୍ଣପଞ୍ଚାଦ୍ରିବେଦ
କ୍ରୋଶକ୍ଷୋଣୀପଙ୍କତେର୍ମଧ୍ୟମାୟୁଃ ।
ଖାଭ୍ରବେଦାମାକାଶତତ୍ତ୍ୱାକ୍ଷିଶୈଳ
କ୍ରୋଶକ୍ଷୋଣୀ ପୁଦମାର୍ଗସ୍ୟ ଗ୍ୟପି ।୧୧୯।

ସମ୍ବନ୍ଧଃ ସ୍ୟାତ୍ କେନ୍ଦ୍ର ସୂର୍ଯ୍ୟାଦ୍ଘନାଙ୍କ—
ଦ୍ବନ୍ଦ୍ବ ସେ୍ୟତ୍ ଥଂ ତଥ୍ୟବଦ୍ ଯତ୍ତ୍ରମାଦ୍ ଥ ।
ବ୍ୟର୍ଥୀକର୍ତ୍ତୁଂ କଥ୍ୟତେ ତନ୍ମନୀଷା—
ଦୋଷାଭାସାଦୁଚ୍ୟତେ କାପି ଭାଷା ।୯୨୦।

କେନ୍ଦ୍ରରୂପୀ ସୂର୍ଯ୍ୟଠାରୁ ଯେତେଦୂରରେ ଯେଉଁ ଗ୍ରହର ମଧ୍ୟସ୍ଥାନ ଏବଂ ସେଥିରେ ଯେଉଁ ଗ୍ରହର ଯେତେକାଳରେ ସୂର୍ଯ୍ୟବମ୍ବର ଚାରିପାଖରେ ଥରେ ଭ୍ରମଣ ହୁଏ ତାହାହିଁ ତାହାର ପର୍ଯ୍ୟ୍ୟ ବା ଭଗଣ । ଉକ୍ତଗ୍ରହ ଓ ସୂର୍ଯ୍ୟ ମଧ୍ୟରେ ଥିବା ଦୂରତା (ଯୋଜନ)ର ଘନ ଏବଂ ସେହି ଗ୍ରହର ଭଗଣ ପୂର୍ତ୍ତି କାଳର ବର୍ଗର ଯେ ଅନୁପାତ ତାହା ସମସ୍ତ ଗ୍ରହ ପକ୍ଷରେ ସମାନ । ପୃଥିବୀ ୩୬୫ ଦିନରେ ଓ ମଙ୍ଗଳ ୬୮୭ ଦିନରେ ସୂର୍ଯ୍ୟଙ୍କୁ ଥରେ ପ୍ରଦକ୍ଷିଣ କରନ୍ତି । ଏ ଉଭୟ ସଂଖ୍ୟା ବର୍ଗର ଅନୁପାତ $\frac{(୬୮୭)^୨}{(୩୬୫)^୨}$ = ୩.୫୪୨... । ପୁଣି ପୁଣି ମଙ୍ଗଳକକ୍ଷା ପରିମାଣ ୧୪୧୫୦୦୦୦ । ପୃଥିବୀକକ୍ଷା ପରିମାଣ ୯୨୫୦୦୦୦ । ଏ ଉଭୟଙ୍କର ଘନାଙ୍କର ଅନୁପାତ $\frac{(୧୪୧୫୦୦୦୦)^୩}{(୯୨୫୦୦୦୦)^୩}$ = ୩.୫୧୯... । ଏହିପରି ଅନ୍ୟ ଗ୍ରହ ଓ ପୃଥିବୀ ସମ୍ବନ୍ଧେ ମଧ୍ୟ ଆଲୋଚନା କରାଯାଇପାରେ । ଏହା ସବୁ ସମାନୁପାତକ । ଏଥିରୁ ଭୂଭ୍ରମଣ ସିଦ୍ଧ ହେଲା । ଏହା ତଥ୍ୟ ବୋଲି ଆପଣ ଯଦି କହୁଥାନ୍ତି, ତାହେଲେ ତାକୁ (ସେ ଧାରଣାକୁ) ବୃଥା କରିବା ନିମନ୍ତେ ମୋତେ ମୋର ବୁଦ୍ଧି ଅସ୍ଥିର କରିଦେଉଛି । ଏଣୁ କେତେକ କଥା କହୁଛି ।

ନ କାର୍ଯ୍ୟମୁନ୍ମୀଳତି କାରଣାଦୃତେ
ରବିଭ୍ରମାଦେବ ଖଗା ଭ୍ରମନ୍ତି ତେ ।
ଅତୋଽନୁପାତଃ କିଲ କାଲମାର୍ଗୟୋ—
ର୍ଗ୍ରହୈଃ ସମଂ କର୍ତ୍ତୁମିନସ୍ୟ ଯୁଜ୍ୟତେ ।୯୨୧।

ଯଦୀନବିମ୍ବାନ୍ତ-ସମୀପଗୋ ଗ୍ରହଃ
ପ୍ରକଳ୍ପ୍ୟତେ କଶ୍ଚିଦସୌ ଭୁବୋଽଭୁବଦ୍ ।
ସ ଯନ୍ତ୍ରଦୃକ୍‌ସିଦ୍ଧଖରାଂଶୁମଣ୍ଡଳ—
ଭ୍ରମନ୍ନମାଓତ୍ତ୍ୱଦନୈର୍ଭ୍ରମେଦ୍ଧ୍ରୁବମ୍ ।୯୨୨।

ତଦନ୍ତରଂ ଭାସ୍କରମଧ୍ୟକେନ୍ଦ୍ରତଃ
ତଦୀୟବିମ୍ବାର୍ଦ୍ଧମିତଂ ଭବେଦ୍ୟତଃ ।
ତତୋଽସ୍ୟ କେନ୍ଦ୍ରଂ ସବିତେତି କଳ୍ପିତଂ
ସ୍ୱଗୋଳପୃଷ୍ଠଂ ଗ୍ରହକକ୍ଷିକେତ୍ୟପି ।୧୨୩।

ତଦନ୍ତରାଳସ୍ୟ ଘନାଙ୍କ ଭାଜିତା—
ଦ୍ଧ୍ରୁବାଦ ମାର୍ଗସ୍ୟ ଘନାଙ୍କତଃ ଫଳମ୍ ।
ଯଦେବ ତେନ ଜ୍ଞପିତାଦକାଳଜା
କୃତହୃତା ତତ୍ଫଳତଃ ପଦଂ ହି ଯତ୍ ।୧୨୪।

ଭବେଦ୍ରବେଃ ସ୍ୱଭ୍ରମକାଳ ଏବ ତଦ୍
ଯପକ୍ଷନାଗଚପଲାଙ୍ଗନାଙ୍କକମ୍ ।
ତଦେକଘସ୍ରେ ନବବାରବେଷ୍ଟନଂ
ବପାତକଂ ଦୃଷ୍ଟିବିରୁଦ୍ଧମାପତେତ୍ ।୧୨୫।

କାରଣ ନଥାଇ କାର୍ଯ୍ୟ ନାହିଁ । ରବି ବୁଲୁଥିବାରୁ ତାକୁ କେନ୍ଦ୍ର କରି ଅନ୍ୟ ଗ୍ରହମାନେ ବୁଲୁଅଛନ୍ତି । ଅର୍ଥାତ୍ ରବିର ସ୍ୱାଙ୍ଗଭ୍ରମ ସଙ୍ଗେ ସଙ୍ଗେ ଗ୍ରହମାନଙ୍କର ଭ୍ରମଣ । ଏହାହିଁ ମୋର ମତ ।

ଏଥିରୁ ସ୍ପଷ୍ଟ ହେଉଛି ଯେ ଗ୍ରହମାନଙ୍କ ସହିତ ସୂର୍ଯ୍ୟର ଏସବୁ କଥା କରିବା ଉଚିତ । ଅର୍ଥାତ୍ ସୂର୍ଯ୍ୟଠାରୁ ଗ୍ରହର ଦୂରତା ଓ ସ୍ୱ ସ୍ୱ କକ୍ଷାରେ ଭଗଣ ଭୋଗକାଳ ଏ ଦୁଇଟିର ଆନୁପାତିକ ସମ୍ବନ୍ଧ କରିଯିବା ଉଚିତ୍ ।

ଯଦି ସୂର୍ଯ୍ୟର ଅତି ନିକଟରେ କୌଣସି ଗ୍ରହ ରଖାଯାଇ ସୂର୍ଯ୍ୟଭ୍ରମ (ସ୍ୱାଙ୍ଗଭ୍ରମ) ସହିତ ତାକୁ ବୁଲାଯାଏ ତାହାହେଲେ ମେଘ ପୃଥିବୀକୁ ପରିଭ୍ରମଣ କଲାପରି (ଏକଦିନରେ) ଉକ୍ତ ଗ୍ରହ ସୂର୍ଯ୍ୟକୁ ୨୫ ଦିନରେ ଥରେ ପ୍ରଦକ୍ଷିଣ କରିଯିବ । (ସୂର୍ଯ୍ୟର ଗୋଟିଏ ସ୍ୱାଙ୍ଗଭ୍ରମ ୨୫ ଦିନରେ ହୋଇଥାଏ) । ସୂର୍ଯ୍ୟ ଯେ ୨୫ ଦିନରେ ସ୍ୱାଙ୍ଗଭ୍ରମ କରୁଛି ତାହା ଯନ୍ତ୍ରଦୃଷ୍ଟ ସିଦ୍ଧ । ସୂର୍ଯ୍ୟର ଅତି ନିକଟରେ ଥିବା ଗ୍ରହର କକ୍ଷା ସୂର୍ଯ୍ୟ ଓ ସେହି କକ୍ଷାର ବ୍ୟାସାର୍ଦ୍ଧ ମଧ୍ୟ ରବିବ୍ୟାସାର୍ଦ୍ଧ । ଅତଏବ ଏହି ଅତି ନିକଟସ୍ଥ (ସୂର୍ଯ୍ୟର ଅତି ନିକଟସ୍ଥ) ଗ୍ରହର କେନ୍ଦ୍ରକୁ ସୂର୍ଯ୍ୟ ବୋଲି କଳ୍ପନା କରାଯାଇଛି ଏବଂ ସୂର୍ଯ୍ୟପୃଷ୍ଠ ହିଁ ସେହି ଗ୍ରହର କକ୍ଷା ବୋଲି କଳ୍ପିତ ହୋଇଅଛି ।

କିନ୍ତୁ ତ ଗ୍ରହ ଦୂରତା ଦିନରେ ବୁଧାଦି ଗ୍ରହର କକ୍ଷାମାର୍ଗ କ୍ଷୋଣ-ଘନକୁ ହରିଲେ ଯାହା ଫଳ ଆସିବ, ସେଥିରେ ବୁଧାଦି ଗ୍ରହଙ୍କର ଭଗଣ ପୂର୍ତ୍ତି କାଳକୁ ହରିଲେ ପୁଣି ଯାହା ଫଳ ହେବ ତାହାର ବର୍ଗମୂଳ ନିଅ । ଏହାହିଁ ସୂର୍ଯ୍ୟଙ୍କର ସ୍ୱାଙ୍ଗଭ୍ରମ କାଳ ଏବଂ ଏହା ଦି ୬।୫୨ ମାତ୍ର । ଏଥିରୁ ସ୍ପଷ୍ଟ ହେବ ଯେ ଦିନକରେ ରବି ପାଦେ ଜଣା ୯ ଥର ସ୍ୱାଙ୍ଗଭ୍ରମ କରିପାରିବ । ଏହା କିନ୍ତୁ ଦୃଷ୍ଟି ବିରୁଦ୍ଧ ।

ଅଥୈଷୁପକ୍ଷା ଭ୍ରମଣସ୍ୟ ବାସରାଃ
ସମକ୍ଷଭିବାତ୍ ଯଦି ତେ ମତାଃ ସ୍ଥିରାଃ ।
ତଦାନ୍ୟଖେଟଭ୍ରମିକାଳବର୍ଗତୋ—
ରବିଭ୍ରମୀବାସରବର୍ଗଭଜିତାତ୍ । ୧୬୭ ।

ଫଳେନ ଖେଟାନ୍ତରଦୂରତାଘନେ
ହୃତେ ଫଳାତ୍ ଯଦ୍‌ଘନମୂଳମାଗତଂ ।
ତଦର୍କବିମ୍ବାର୍ଦ୍ଧମତୋଽର୍କବିସ୍ତୃତଃ
ସ୍ୱମାନ-ତୋଽଙ୍ଗାଗ୍ନିଗୁଣାଧିକା ପତେତ୍ । ୧୬୭ ।

ସ୍ୱମାନସିଦ୍ଧୌ ଭ୍ରମଣଂ ବିରୁଦ୍ଧ୍ୟତେ
ଭ୍ରମସ୍ୟ ସିଦ୍ଧୌ ଚ ବିରୁଦ୍ଧ୍ୟତେମିତଃ ।
ସ୍ୱକାରଣସ୍ୟୋଭୟଥୈତ୍ୟ ସିଦ୍ଧିତଃ
କ୍ୱମନ୍ୟ-କାର୍ଯ୍ୟ-ଭ୍ରମାଣାନୁପାତତଃ । ୧୬୮ ।

ପୁଣି ଯଦି ରବିସ୍ୱାଙ୍ଗ ଭ୍ରମ ନିମନ୍ତେ ୨୫ ଦିନ ହିଁ ନେଉଥିବା ଠିକ୍ ହୁଏ ଏବଂ ଏହା ଏକବାରକେ ସ୍ଥିର, ତାହାହେଲେ ମଙ୍ଗଳ ଆଦିଙ୍କର ଭଗଣ ଭୋଗ କାଳକୁ ସୂର୍ଯ୍ୟଙ୍କ ଭ୍ରମ ଦିବସ ବର୍ଗରେ ହରିଲେ ଯାହା ଫଳ ହେବ, ସେଥିରେ ମଙ୍ଗଳ ଆଦିଙ୍କର ଦୂରତାର ଘନକୁ ହରିଲେ ଯାହାଫଳ ହେବ, ସେଥିରୁ ଯେଉଁ ଘନମୂଳ ମିଳିବ ତାହା ସୂର୍ଯ୍ୟର ବିମ୍ବାର୍ଦ୍ଧ ହେବାକୁ ବାଧ୍ୟ । ଏପରି କରିବାରେ ଦେଖାଯାଇଛି ଯେ ସୂର୍ଯ୍ୟ-ବିମ୍ବ-ବ୍ୟାସ ନିଜ ମାନରୁ ୩୬ଗୁଣ ଅଧିକା ହୋଇ ପଡ଼ୁଛି ।

ଏଥିରୁ ଜଣାଯାଉଅଛି ଯେ ରବିର ବିମ୍ବ ପରିମାଣ ସିଦ୍ଧ ହେଲାବେଳେ ସ୍ୱାଙ୍ଗ ଭ୍ରମକାଳ ଠିକ୍ ରହୁନି । କିମ୍ବା ଭ୍ରମଣକାଳ ଠିକ୍ ରହିଲେ ବିମ୍ବମାନ ଠିକ୍ ରହିପାରୁନି । ଏଥିରେ ଉଭୟଥା ସୂର୍ଯ୍ୟବିମ୍ବର ଭ୍ରମଣ ସିଦ୍ଧ ହେଉ ନ ଥିବାରୁ ମଙ୍ଗଳ ଆଦିର ଭ୍ରମଣକାଳ ସହିତ ସମ୍ବନ୍ଧରେ ଆଉ କ'ଣ ଆବଶ୍ୟକତା ଅଛି ? ଏ ଯୁକ୍ତି ଅଗ୍ରାହ୍ୟ ହେଲା । ଏ ଯୁକ୍ତି ପରସ୍ପର ବିରୁଦ୍ଧଭାବାପନ୍ନ ହୋଇଥିବାରୁ ସର୍ବଥା ଅଗ୍ରାହ୍ୟ ହୋଇପଡ଼ୁଛି ।

ମଧ୍ୟଂ ରବିଂ ପର୍ଯ୍ୟୟତାଂ ଗ୍ରହାଣାଂ
କ୍ଷ୍ମାତଃ କ୍ରମାଦନ୍ତିକ ଦୂରବୃତ୍ତୀ ।
ଚକ୍ରାର୍ଦ୍ଧଚକ୍ରେ ଚଳକେନ୍ଦ୍ର ଉକ୍ତେ
ତେ ମନ୍ଦକେନ୍ଦ୍ରେ ରବିତସ୍ତଥୈବ । ୧୨୯ ।

ସ୍ୱାଦୌ ମୈରେକବଧୈଃ ସଦା ପରଧିଭିର୍ଭୀମାଦିକାନାଂ ଫଳଂ
ଶୈଘ୍ର୍ୟଂ ମନ୍ଦଭବଂ ସୁସିଦ୍ଧମବନୌ ଦୃକ୍ତୁଲ୍ୟତାଂ ଯାତି ଚେତ୍ ।
ତନ୍ନୋ ଭ୍ରାନ୍ତମତା ସହ ଗ୍ରହଗଣୈଃ ପର୍ଯ୍ୟେତୁ ସବଂସହାଂ
ଭୂସୂର୍ଯ୍ୟଂ ଦ୍ୱୟଦଗ୍‌ବିଶେଷବଶତେ ଦ୍ରାକ୍‌କେନ୍ଦ୍ରତାନଶ୍ୱୟାତ୍ । ୧୩୦।

ନିଜ ନିଜ କକ୍ଷାରେ ଥାଇ ମଧ୍ୟମ ସୂର୍ଯ୍ୟଙ୍କୁ ପରିଭ୍ରମଣ କରୁ କରୁ ମଙ୍ଗଳ ଆଦି ଗ୍ରହମାନଙ୍କର ନିକଟ ଓ ଦୂରରେ ଯଥାକ୍ରମେ ଚକ୍ରାର୍ଦ୍ଧରେ ଏବଂ ଚକ୍ର ପୂର୍ତ୍ତିରେ ଶୀଘ୍ର କେନ୍ଦ୍ର ହୁଏ । ଭୂଗର୍ଭ ଦେଇ ଯେଉଁ ରେଖା ତୁଳାଦି ଓ ମେଷାଦିରେ ପ୍ରତିବୃତ୍ତକୁ କାଟେ, ସେହି ଦୁଇଟି ସ୍ଥାନ ଯଥାକ୍ରମେ ତୁଳାଦି ଓ ମେଷାଦି ଶୀଘ୍ରକେନ୍ଦ୍ର ।

ଠିକ୍ ସେହିପରି ମଧ୍ୟମ ସୂର୍ଯ୍ୟଠାରୁ ମନ୍ଦ ପ୍ରତି ବୃତ୍ତରେ ନିକଟତମ ଓ ଅତି ଦୂରରେ ସ୍ଥିତ ତୁଳାଦି ଓ ମେଷାଦିରେ ମନ୍ଦକେନ୍ଦ୍ର ହୁଏ ।

ମଙ୍ଗଳ ଆଦି ସବୁ ଗ୍ରହର ଶୀଘ୍ର ବା ମନ୍ଦ ଫଳ ଏକ ପ୍ରକାରର ହେଉଥିଲେ ଏବଂ ତାହା ପୁଣି ପୃଥିବୀକୁ ଦୃକ୍‌ସିଦ୍ଧ ହେଉଥିଲେ ପୃଥିବୀ ଏବଂ ସୂର୍ଯ୍ୟର ଦିଗ ବିପର୍ଯ୍ୟୟରେ ଅବସ୍ଥିତି ହେତୁ ଏବଂ ସେଥିରୁହିଁ ଶୀଘ୍ର କେନ୍ଦ୍ର ସ୍ଥିର କରାଯାଉଥିବାରୁ ସୂର୍ଯ୍ୟ ଗ୍ରହମାନଙ୍କ ସହିତ ପୃଥିବୀକୁ ପ୍ରଦକ୍ଷିଣ କରୁ (କହିବା ଠିକ ହେବ) ।

ଓଜାଂଘ୍ର୍ୟନ୍ତଜୁଷଃ କୁଜସ୍ୟ ପରଧିସ୍ତ୍ର୍ୟଂଶାଧିକୋ ଦୃଶ୍ୟତେ
ସୂର୍ଯ୍ୟାଦ୍ଭୂବଣି ତତ୍ପରେଷ୍ଟତ ଇଦଂ ମନ୍ଦଃ ସମାକୃଷ୍ୟତେ ।
ତେନାକର୍ଷିତ ବମ୍ବତୋ ମୃଦୁଫଳଂ କୌଜଂ ସ୍ଫୁଟଂ ଦୃକ୍‌ସମଂ
ଶୀଘ୍ରୋତ୍‌ଥେନ ଫଳେନ କଂଶଦଧିକଂଯନ୍ମନ୍ଦକେନ୍ଦ୍ରାଚ୍ଚ ତତ୍ । ୧୩୧।

ଶୈକ୍ତୀଜନ୍ମନଶ୍ଚଳଫଳୋପଚୟାତ୍‌ଫଳସ୍ୟ
ମାନ୍ଦ୍ୟସ୍ୟଚ୍ଚୋପଚୟନଶ୍ଚୟତଃଚଳସ୍ୟ ।
ମନ୍ଦୋତ୍‌ଥକେନ୍ଦ୍ରବଶତୋ ବହୁତାଲ୍ପତା ଯତ୍
ତତ୍ ସବମର୍କକୁଯୁଗାନ୍ନ ତୁ କେବଳାର୍କାତ୍ । ୧୩୨।

**ଇତି କ୍ଷିତଜ ସୌମ୍ୟୟୋଃ କ୍ଷିତରବେର୍ଦ୍ୱୟୋର୍ନୁଭ୍ରମେ**
**ସ୍ଫୁଟେଽଲ୍ପଫଲଭେଦତୋ ଭବତି ହି ଧ୍ରୁବୋଽନ୍ୟଭ୍ରମଃ ।**
**ତଥାରବିରତଃ ପରିଭ୍ରମତି ସର୍ବଦକ୍ଷୁ କ୍ଷିତେ—**
**ର୍ଦିଧତ୍ ଖଚରକକ୍ଷିକା ନ ଘଟତେଽନ୍ୟଥା ଦୃକ୍‌ଫଲମ୍ ।୧୩୩।**

ବିଷମ ପଦାନ୍ତରେ ଥିବାବେଳେ ମଙ୍ଗଳର ମନ୍ଦପରିଧି ଛଅ ଅଂଶରୁ ଅଧିକ ଦେଖାଯାଏ । ଏହି ମନ୍ଦ ପରିଧି (ମନ୍ଦୋଚ୍ଚ) ପୃଥିବୀ ସୂର୍ଯ୍ୟର ଯେଉଁ ଆଡ଼େ ଥାଏ, ସେହି ଆଡ଼କୁ ପରୋଚ୍ଚ ଦ୍ୱାରା ଆକୃଷ୍ଟ ହୁଏ । ଏଣୁ ପରୋଚ୍ଚାକୃଷ୍ଟ, ମନ୍ଦୋଚ୍ଚାକୃଷ୍ଟ ମଙ୍ଗଳ ବିମ୍ବରୁ ଯେଉଁ ଦୃକ୍‌ସିଦ୍ଧ ମନ୍ଦଫଳ ହୁଏ, ତାହା ଶୀଘ୍ରଫଳ ଦୃଷ୍ଟିରୁ କିଛି ଅଧିକ ହୁଏ । ମଙ୍ଗଳ ମନ୍ଦକେନ୍ଦ୍ର ବଶତଃ ଏହା ହୋଇଥାଏ ।

ବୁଧର ଶୀଘ୍ରଫଳର ବୃଦ୍ଧି ଓ ମନ୍ଦଫଳର ହ୍ରାସ ତଥା ମନ୍ଦକେନ୍ଦ୍ର ବଶତଃ ଶୀଘ୍ରର ବହୁତା ଓ ଅଳ୍ପତା ଯେତେ, ଏ ସବୁ ସୂର୍ଯ୍ୟ ଓ ପୃଥିବୀକୁ ନେଇ ହୁଏ । କେବଳ ସୂର୍ଯ୍ୟ ହୋଗୁଁ ଏ ସବୁ ହୁଏ ନାହିଁ (ଏଥି ନିମନ୍ତେ ଉଭୟେ କାରଣ) ।

ମଙ୍ଗଳ ଏବଂ ବୁଧର ଏପରି ଭାବରେ ସୂର୍ଯ୍ୟ ଓ ପୃଥିବୀକୁ ଭ୍ରମଣ କରିବା ସିଦ୍ଧ ହେଉଥିବାବେଳେ, ଅଳ୍ପ ଫଳ ଦେଖାଯାଉ ଥିବାରୁ ସୂର୍ଯ୍ୟ ଓ ପୃଥିବୀ ମଧ୍ୟରୁ କେହି ଜଣେ ଭ୍ରମଣ କରିବା ନିଶ୍ଚିତ ଭାବରେ ଜଣାଯାଉଛି । ତାହାହେଲେ ସୂର୍ଯ୍ୟ ଅନ୍ୟ ଗ୍ରହମାନଙ୍କ କକ୍ଷାକୁ ଧରି (ଅନ୍ୟ ଗ୍ରହମାନେ ସୂର୍ଯ୍ୟକୁ ବୁଲୁଥିବାବେଳେ) ପୃଥିବୀର ଚତୁର୍ଦିଗରେ ବୁଲୁଅଛି— ଏହା ସ୍ଥିର । ପକ୍ଷାନ୍ତରେ ରବି ସ୍ଥିର ରହିଲେ ଏବଂ ରବିକୁ ପୃଥିବୀ ପରିଭ୍ରମଣ କଲେ ଦୃକ୍‌ସିଦ୍ଧ ମନ୍ଦ ଓ ଶୀଘ୍ର ଫଳ ଆସି ପାରିବ ନାହିଁ ।

**ଅତିଦୂରଗମୃକ୍ଷମଣ୍ଡଳଂ**
**ତଦବସ୍ଥାଃ ଖଲୁ ତାରକାଃ ସ୍ଥିରାଃ ।**
**ଅପମୋର୍ଦ୍ଧ୍ୱନଭସ୍ୟବସ୍ଥିତାଃ**
**ରବୟଶ୍ଚେତି ବୁଧୈ ସୁନିଶ୍ଚିତାଃ ।୧୩୪।**

**ସ୍ୱଗଣୈଃ ପରିବାରିତାସ୍ତତ୍—**
**ସ୍ଥଳଗାଯାସ୍ତୁ ଦନାତ୍ତଦନ୍ତରମ୍ ।**
**କ୍ଷିତଲ୍ପସ୍କର ମଧ୍ୟମାର୍ଗତଃ**
**ଖଖଖାଭ୍ରାଷ୍ଟ ଗୁଣାଧିକଂ ଭବେଦ୍ ।୧୩୫।**

ରବିତୋଽପି ବୃହତ୍ତନୂଧରା
କଥମେତା ମଣ୍ଡଳରୂପିଣୀଂ ଭୁବମ୍ ।
ଉଡ଼ବଃ ପରିଯାନ୍ତୁ ତତ୍‌କ୍ଷମା—
ଭ୍ରମତଃ ତଦ୍‌ଗତିରୀକ୍ଷ୍ୟତେ ଜନୈଃ ।୧୩୬।

ଇତିଚେତ୍ ଶୃଣୁ ମନ୍ମତେ ତୁ ତା—
ସ୍ତରଗା ଦସ୍ରମୁଖାଃ କ୍ରମାଧ୍ୱତଃ ।
ଖରସାଗ୍ନି ଗୁଣାର୍କ ମଧ୍ୟମ
ଶ୍ରୁତିତୁଲ୍ୟ ପଥି ଯାନ୍ତି ନିତ୍ୟଶଃ ।୧୩୭।

ନକ୍ଷତ୍ର କକ୍ଷା ଅତି ଦୂରରେ । ଏଣୁ ସେଥିରେ ଅବସ୍ଥିତ ତାରା ଗୁଡ଼ିକ ମଧ୍ୟ ସ୍ଥିର ଭାବରେ ରହିଛନ୍ତି । ସୂର୍ଯ୍ୟ ଗୁଡ଼ିକ କିନ୍ତୁ ଆକାଶରେ ଅସମାନ ଧାରାଚଳରେ ଅଛନ୍ତି । ଏହା ପଣ୍ଡିତ ମାନଙ୍କର ମତ । (ପାଶ୍ଚାତ୍ୟ ପଣ୍ଡିତମାନଙ୍କର ମତ) ।

ସେହି ସୂର୍ଯ୍ୟମାନଙ୍କଠାରୁ ତଳକୁ ନିଜ ଗଣଦ୍ୱାରା ପରିବାହିତ ହୋଇ ପୁଣି ଯେଉଁ ସୂର୍ଯ୍ୟମାନେ ଅଛନ୍ତି, ସେମାନଙ୍କଠାରୁ ଆମର ଏହି ସୂର୍ଯ୍ୟଙ୍କର ଦୂରତା, ପୃଥିବୀ ଓ ସୂର୍ଯ୍ୟ-ମଧ୍ୟରେ ଥିବା ଦୂରତାରୁ ୮୦୦୦ ଗୁଣରୁ ବେଶି ହେବ ।

କେତେକ ତାରା ସୂର୍ଯ୍ୟଠାରୁ ମଧ୍ୟ ବଡ଼ । ସେମାନେ ଶ୍ରେଷ୍ଠ ପୃଥିବୀକୁ କପରି ବା ଭ୍ରମଣ କରିବେ ? ଏଣୁ ପୃଥିବୀର ଭ୍ରମଣ ଫଳରେ ସେ ଗୁଡ଼ିକର ଗତି ହେବା ଦେଖାଯାଏ ।

ଏହା ଯଦି କୁହାଯାଏ, ତାହାହେଲେ ଶୁଣନ୍ତୁ—ଅଶ୍ୱିନୀ ଆଦି ନକ୍ଷତ୍ରଗୁଡ଼ିକ ପୃଥିବୀ କେନ୍ଦ୍ରଠାରୁ ୩୬୦ × ରମକ = ୩୬୦ × ୭୬୦୮୨୪୪ = ୨୮୪୭୪୭୪୬୦ ଯୋଜନ ଦୂରରେ ଉତ୍ତର ତଳେ ରହି ପୃଥିବୀକୁ ପ୍ରଦକ୍ଷିଣ କରୁଛନ୍ତି । ଏହା ପ୍ରତିଦିନ ହେଉଛି ।

ଯଦ୍ ଯୁଗ୍ମୌଜପଦାନ୍ତଶୀଘ୍ରପରଧେର୍ଭାଗାନ୍ତରଂ ଦୃଶ୍ୟତେ
ସାକ୍ଷାତ୍ ଶୀଘ୍ରଫଳେ ତତୋଽସ୍ମଦୁଦିତାସିଦ୍ଧାଭଚକ୍ରଶ୍ରୁତଃ ।
ଭୂମେଃକର୍କଟବଦ୍‌ଗମାତ୍ତ୍ୱଦୁଦିତାତ୍ ସା ପ୍ରାଙ୍ମୁଖୀ ଚେଦ୍ ଭ୍ରମ—
ତ୍ୟେବାପି ପ୍ରଭବତ୍ୟସଙ୍ଗତିରତଃ କାନ୍ତ୍ୟନ୍ତୟୋସ୍ତର୍କତଃ ।୧୩୮।

ଭୂବନ୍ମେ ଧନୁରନ୍ତଗେ ଯଦୁଦୟଦ୍ୱତ୍ସରର୍କ୍ଷ ମାଲକ୍ଷ୍ୟତେ
ତସ୍ମାଦ୍ ସପ୍ତଚତୁର୍ଲବାନ୍ତରଗତେ ଯୁଗ୍ମାନ୍ତଗେଽସ୍ମିନ୍ନଦମ୍ ।
ଦୃଶ୍ୟେତାଷ୍ଟକଳାନ୍ତରେ ଯମଦଶି ସ୍ଥାନାଦ୍ ତତସ୍ତୁଲ୍ୟତା
ଲୋକାଦପ୍ୟବନେଃ ସ୍ଥିରେତି ମଯୁକା କଣ୍ଠୀୟତେ ସର୍ବତଃ ।୧୩୯।

ଶୀଘ୍ରଫଳ ଆଣିବାବେଳେ ସମ ଓ ବିଷମ ପଦାନ୍ତ ଶୀଘ୍ର ପରିଧି ଦ୍ୱୟର ଅନ୍ତର ୧° (ଏକ ଅଂଶ ) ଦେଖାଯାଏ । ଏଣୁ ମୋ ମତରେ ଦିଆଯାଇ ଥିବା ଶୀଘ୍ରକର୍ଣ୍ଣ ଠିକ୍ ହେବ ନିଶ୍ଚୟ ।

କଙ୍କଡ଼ାପରି ପୃଥିବୀ ପୂର୍ବ ଆଡ଼କୁ ଗତି କରୁଥିବା କହିଲେ ମଧ୍ୟ ଅସଙ୍ଗତ ହେବ । ଏ ଅସଙ୍ଗତି କ୍ରାନ୍ତି ଶେଷର ଆଲୋଚନାରୁ ଧରା ପଡ଼ିବ ।

ପୃଥିବୀ ସାୟନ ମକରାଦିରେ (ଧନୁର ଶେଷରେ, ମକରର ପ୍ରାରମ୍ଭରେ) ଥିବାବେଳେ ଗୋଟିଏ ନକ୍ଷତ୍ର ଉଦିତ ହୋଇ ଭ ଚକ୍ର (ନକ୍ଷତ୍ରକକ୍ଷା) ର ଯେଉଁଠାରେ ଦେଖାଯାଏ ପୁଣି ପୃଥିବୀକୁ ସେଠାରୁ ୮୭ ଅଂଶ ଅତିକ୍ରମ କରି (୮୭° କ୍ରାନ୍ତି) ମିଥୁନାନ୍ତରେ (କର୍କଟ ପ୍ରାରମ୍ଭରେ) ଥିବାବେଳେ ଏହି ନକ୍ଷତ୍ର ତାର ପୂର୍ବୋଦିତ ସ୍ଥାନରୁ ଆଠ କଳା ବ୍ୟବଧାନରେ ଦେଖାଯିବା କଥା; ଏ ବ୍ୟବଧାନ ପୁଣି ଉକ୍ତ ଉଦିତ ସ୍ଥାନରୁ ଦକ୍ଷିଣକୁ । କିନ୍ତୁ ବାସ୍ତବରେ ଏ ବ୍ୟବଧାନ ଆଦୌ ଦେଖାଯାଉ ନ ଥିବାରୁ ମୁଁ ପୃଥିବୀକୁ ସ୍ଥିର ବୋଲି ପ୍ରମାଣ କରୁଛି ।

> **ଭୂମିନାଂ ଚକ୍ରଂ ଚଳନରହିତଂ ଚେତ୍ତଦା କ୍ୱଂ ଚଳାଂଶାଃ**
> **ସାକ୍ଷାଦଗଚ୍ଛତ୍ୟନୁଭବମୁଦଗ୍‌ଦକ୍ଷିଣକ୍ରାନ୍ତିସାମ୍ୟାତ୍ ।**
> **ତ୍ୱଂ ଚେଦ୍‌ବ୍ରୂଷେ ତଦପି ଚଳନଂ କ୍ରାନ୍ତିବୃତ୍ତସ୍ୟ ସିଦ୍ଧଂ**
> **ନକ୍ଷତ୍ରାଣାମିତି ଶୃଣୁ ତଦା ତସ୍ୟ ସିଦ୍ଧାନ୍ତମସ୍ମତ୍ । ୧୪୦ ।**

'ଭଚକ୍ର ସ୍ଥିର ଓ ତାହାର ଚଳନ ନାହିଁ' ଏହି କଥା ମଧ୍ୟ କହି ନ ପାର । କାରଣ ଅୟନ ଗତି ବା ଅୟନାଂଶ ତ ହେଉଛି । ଉତ୍ତର ଓ ଦକ୍ଷିଣ କ୍ରାନ୍ତିର ଅସମାନତା ହେତୁ ଭଚକ୍ର ଯେ ଚଳୁଛି ଏହି କଥା ପ୍ରତ୍ୟକ୍ଷରେ ମଧ୍ୟ ସିଦ୍ଧ ହେଉଅଛି । ଯଦି ତୁମେ କହିବ ଯେ ଅୟନ ଚଳନ ହେଉ ବା କ୍ରାନ୍ତିବୃତ୍ତର ଚଳନ ହେଉ ସେଥିରେ କିଛି ଯାଏ ଆସେ ନାହିଁ । କିନ୍ତୁ ନକ୍ଷତ୍ରର ଚଳନ ନାହିଁ, ତାହାହେଲେ ଏ ବିଷୟରେ ମୋର ସିଦ୍ଧାନ୍ତ ଶୁଣ ।

> **ପୂର୍ବାଚାର୍ଯ୍ୟୈର୍ଧ୍ରୁବଶରଲବା ଦୃଷ୍ଟିସିଦ୍ଧା ଯ ଉକ୍ତା—**
> **ସ୍ତତ୍ତଦ୍ ସାମ୍ୟଂ ତ୍ୱପମଚଳନାଦ୍ ଭସ୍ଥିରତ୍ୱେନ ସିଦ୍ଧ୍ୟେଦ୍ ।**
> **ପ୍ରାକ୍‌କାଳୋକ୍ତା ଯ ଇହ ବିଶିଖାଃ ସଂପ୍ରତୀକ୍ଷ୍ୟନ୍ତ ଏତେ**
> **ତସ୍ମାଦ୍ ଚକ୍ରଂ ପ୍ରଚଳଦ ଭିତୋ ଭାତ ସକ୍ରାନ୍ତିବୃତ୍ତମ୍ । ୧୪୧ ।**

ପୂର୍ବାଚାର୍ଯ୍ୟମାନେ ଦୃକ୍ ସିଦ୍ଧ କରି ନକ୍ଷତ୍ରମାନଙ୍କର ଧ୍ରୁବାଂଶ ଓ ଶରାଂଶ ଯେ କହିଛନ୍ତି ତାର ସମାନତା (ଏବେ ମଧ୍ୟ ତାହା ଠିକ୍ ସେତିକି ଅଛି) କ୍ରାନ୍ତିବୃତ୍ତର ଚଳନ ଓ ନକ୍ଷତ୍ରମାନଙ୍କର ସ୍ଥିରତା ମାନିଲେ ହେବନାହିଁ । ପୂର୍ବକାଳରେ କଥିତ ଶରାଂଶ ଏବେ ମଧ୍ୟ ଦେଖାଯାଉଅଛି । ଏଣୁ କ୍ରାନ୍ତିବୃତ୍ତ ସହିତ ନକ୍ଷତ୍ର ସମୂହ ଆମର ଆଗରେ ଚଳିଲା ପରି ଦେଖାଯାଉଛି ।

ଇତ୍ଥଂ ଭାନାମୟନଚଳନେ ନଶ୍ଚିତେ ସିଦ୍ଧମେବ
ପ୍ରତ୍ୟଗ୍ୟାନଂ ପ୍ରତଦନମତୋ ନଶ୍ଚଳୈଷା ଧରିତ୍ରୀ ।
ଦବ୍ୟଜ୍ୟୋତିର୍ଯଦ ଭବଲୟେ ସୂର୍ଯ୍ୟବଦ୍ୟୋତମାନଂ
ତତ୍କଂ ଧ୍ୱାନ୍ତଂ କଣି ନ ବଳୟଂ ଯାତ୍ୟ ସଂଖ୍ୟୋତ୍ଥ ସତ୍ତ୍ୱେ ।୧୪୨

ଯତ୍ନେ ଯସ୍ମିନ୍ ଶତଗୁଣବୃହଦ୍ଦୃଶ୍ୟତେ ବମ୍ବମାସାତ୍
ତସ୍ମିନ୍ ଦୃଷ୍ଟାକ୍ଷସୁକଳମିତେର୍ଲୁବ୍ଧକାତ୍ ତୈକ୍ଷ୍ଣ୍ୟଭାଜଃ ।
ଦ୍ରଷ୍ଟୁର୍ଦୃଷ୍ଟିପ୍ରତିହତିରପି ସ୍ୟାଦବ ସ୍ୱାଂଘ୍ରିମାନାଦ
ଭାନୋର୍ଯନ୍ତ୍ରାନ୍ତରଗତନକୋର୍ଯଦ୍ୱୟୋଃ ସାମ୍ୟଲାଭଃ । ୧୪୩ ।

ଅୟନ ଚଳନ ଏହି ପ୍ରକାରେ ନଶ୍ଚିତ ହୋଇଯାଇ ଥିବାରୁ ପ୍ରତଦନ ଯେ ନକ୍ଷତ୍ରମାନେ ପୂର୍ବରୁ ପଶ୍ଚିମକୁ ଗମନ କରୁଅଛନ୍ତି ତାହା ମଧ୍ୟ ସିଦ୍ଧ ହେଲା । ଏଥିରୁ ମଧ୍ୟ ଜଣାଗଲା ପୃଥିବୀ ସ୍ଥିର ।

ଭଗୋଲରେ ସୂର୍ଯ୍ୟପରିପ୍ରକାଶମାନ ଅନ୍ୟ ଦବ୍ୟ ଜ୍ୟୋତି ଥିଲେ ଅସଂଖ୍ୟ ନକ୍ଷତ୍ର ଯୋଗୁଁ ନୈଶତମ ନଶ୍ଚୟ ନଷ୍ଟ ହୋଇ ଯାଉଥାନ୍ତା (ଏଥିରେ ସନ୍ଦେହ ନାହିଁ) ।

ଯେଉଁ ଯନ୍ତ୍ରରେ (ଦୂରବୀକ୍ଷଣ ଯନ୍ତ୍ରରେ) ଦୂରର ବମ୍ବ ଅତି ଗୁଣିତ ହୋଇ ଦେଖାପଡ଼େ, ସେଥିରେ ଆଠକଳା ଦୂରରେ ଥିବା (ସୂର୍ଯ୍ୟଠାରୁ ?) ଲୁବ୍ଧକଠାରୁ ମଧ୍ୟ ଲୋକର ଦୃଷ୍ଟି ପ୍ରତିଘାତ ହେବ । କାରଣ ଯନ୍ତ୍ରରେ ଦେଖୁଥିବାବେଳେ ମଧ୍ୟ, ସୂର୍ଯ୍ୟ ଆଠକଳା ଭିତରେ ଥିବାବେଳେ ଦ୍ରଷ୍ଟାର ଦୃଷ୍ଟି ପ୍ରତିଘାତ ହେବ । (ସୂର୍ଯ୍ୟର ବମ୍ବମାନ ୩୨ କଳା—ଏଣୁ ତାହାର ଚତୁର୍ଥାଂଶ ହେବ ଆଠ କଳା) । ବର୍ତ୍ତମାନ ପରିସ୍ଥିତିରେ ସୂର୍ଯ୍ୟର ତୀକ୍ଷ୍ଣତା ଓ ସୂର୍ଯ୍ୟର ଆଠକଳା ମଧ୍ୟରେ ଥିବାରୁ ଲୁବ୍ଧକର ତେଜ ଏକାଠି ମିଶି ଉଭୟଙ୍କର ଭାବରେ ଦୃଷ୍ଟି ପ୍ରତିଘାତ କରିବେ । ଉଭୟଙ୍କ ସମତା ଅତି ଉଜ୍ଜ୍ୱଳ ହେତୁ ଦୃଷ୍ଟି ପ୍ରତିଘାତ କାରକ । (ଏହାଦ୍ୱାରା ଆମର ଏହି ପରିଚିତ ସୂର୍ଯ୍ୟପରି ଅସଂଖ୍ୟ ସୂର୍ଯ୍ୟ ଆକାଶରେ ଅଛନ୍ତି ବୋଲି ଯାହା କୁହାଯାଏ ତାହା ଭୁଲ ବୋଲି ପ୍ରମାଣିତ ହେଲା ।)

ଦୂରାଧିକ୍ୟାଦ୍ୟଦ ହିମରଜୋ ବାଷ୍ପସଂଘାତଜାତା
ତାଦୃଗ୍ ଜ୍ୟୋତଃ କ୍ଷତରତମତର୍ଭାତ ଭାନାଂ ତତସ୍ତେ ।
ତଦ୍ ଖେଟାନାଂ ବବଧସରଣିଭ୍ରାଜତାଂ ବମ୍ବତୁଲ୍ୟା—
ସ୍ତାରାଃ କଂ ତଦ୍ୟମରୁଚଭୃତୋ ଭ୍ରାନ୍ତକୃତ୍ତଂ ହିମାଦ୍ୟଂ । ୧୪୪ ।

ମୋର ଏ ଉତ୍ତର ପାଇବାପରେ ତୁମେ ଯଦି କହ ଯେ ଅତ୍ୟନ୍ତ ଦୂରରେ ଥିବାରୁ ଅନେକ ହିମକଣା ଓ ବାଷ୍ପ ଭିତରେ ପଡ଼ି ନକ୍ଷତ୍ରମାନଙ୍କର ତେଜ ଅତି ମାତ୍ରାରେ ନଷ୍ଟ

ହୋଇ ଯାଇଛି । ଏଣୁ ସେଗୁଡ଼ିକ ଆଉ ସୂର୍ଯ୍ୟପରି କିରଣ ଦେଇ ପାରୁ ନାହାନ୍ତି । ତୁମେ ଏହା କହିଲେ ଶୁଣ—ନାନା ସ୍ତରରେ ଗତି କରୁଥିବା ଗ୍ରହମାନଙ୍କ ବାମ୍ପରି ଉଜ୍ଜ୍ୱଳ କ'ଣ ତାରାଗୁଡ଼ିକ ? ତାରାଗୁଡ଼ିକ କ'ଣ ଗ୍ରହପରି ଦୀପ୍ତିଶାଳୀ । ଏହି ତୁଷାର ଆଦି କଳ୍ପନା କ'ଣ ବୃଥା ଭ୍ରମରେ ପଡ଼ି କରାଯାଇନାହିଁ ?

ନେଦୀୟସ୍ତ୍ୱାଦ୍ ଯଦି କୁଜମୁଖାଃ ସୁସ୍ଥିରାଲୋକବନ୍ତ
ସ୍ତାରା ଦ୍ୱାରଶ୍ଚଲହମମୁଖୈରାବୃତାଃ କିଂପରତ୍ୟଃ ।
ଦୃଶ୍ୟନ୍ତେ ତତ୍ କୃଶଦତିଘନୈଶ୍ଚାଦିତାଃ ସନ୍ତୁ କ୍ଲୃପ୍ତାଃ
ସ୍ୱଜ୍ୱାଲାନାଂ ସ୍ଫୁରଣକରଣଂ ସିଦ୍ଧମଗ୍ନେରବାତଃ । ୧୪୫ ।
ବ୍ୟକ୍ଷେସ୍ଥୀତଶ୍ଚିପିଟ ଉଭୟୋଃ କେନ୍ଦ୍ରୟୋର୍ଭାନ୍ତଭୂମ୍ନା
ଗୋଲଶ୍ଚୈତେ ସ୍ଫୁରତି ତବ ଚେଦାର୍ଦ୍ରମୃତ୍ ପିଣ୍ଡତୁଲ୍ୟଃ ।
ତଦ୍ୟେନାୟଂ* ସଦୃଗିତି ମତସ୍ତତ୍ଫଳଂ କିଂ ତଥାଭୂତ୍
ସ୍ରଷ୍ଟୁଃ ସୃଷ୍ଟିର୍ବିସଦୃଶଗୁଣା କିଂ ମୃଷାଭ୍ରାନ୍ତକ୍ଲୃପ୍ତିଃ । ୧୪୬ ।
ଭୂଭ୍ରାନ୍ତ୍ୟୈବ ଭଚକ୍ର ପଶ୍ଚିମଗମେ ସିଦ୍ଧେ କମାୟାସତୋ—
ଭଭ୍ରାନ୍ତ୍ୟ ପ୍ରବହାଖ୍ୟମାରୁତକୃତର୍ବିଷ୍ଣୋରଦଂ ବକ୍ଷି ଚେତ୍ ।
ଇଶଃ ସର୍ଷପପର୍ବତୌ ସ୍ଥିରଚଲୌ କର୍ତ୍ତୁଂ ସମର୍ଥୋଂ ନକାମ୍
ଶକ୍ତଂ ବ୍ୟକ୍ତୁମିମାଂକ୍ଷମାମଚଳୟତ୍ୟଦ୍ରାସ୍ତି କିଂ ଦୂଷଣମ୍ । ୧୪୭ ।

ନିକଟରେ ଥିବାରୁ ମଙ୍ଗଳାଦି ଗ୍ରହମାନଙ୍କ ଆଲୋକ ଅତି ଉଜ୍ଜ୍ୱଳରେ ସ୍ଥିର । ତାରାଗୁଡ଼ିକ କିନ୍ତୁ ଦୂରରେ ଅଛନ୍ତି ଏବଂ ସେଗୁଡ଼ିକ ଉପରେ ହିମପାତ ହେତୁ ସେଗୁଡ଼ିକ ଆବୃତ ଏବଂ ଥରିଲା ପରି (twinkle) ଦେଖାଯାଉ ଅଛନ୍ତି । ତାହାହେଲେ ନିଆଁ ପରି ଏମାନଙ୍କର ସ୍ଫୁରଣ ହେବାର ସ୍ୱାଭାବିକତା ଅଛି । ତେଣୁ ଅତି ସାନ୍ଦ୍ର ତୁଷାରାଦିଦ୍ୱାରା ଏଗୁଡ଼ିକ ଲିଭି ନ ଯାଇପାରନ୍ତି, (ଏହା କ'ଣ ସତ୍ୟ ?)

କଞ୍ଚା ମାଟିପିଣ୍ଡକୁ ଉକ୍ତ ପିଣ୍ଡ ବ୍ୟାସର ଦୁଇ ଅଗ୍ର ବିନ୍ଦୁରେ ଧରି ବୁଲାଇଲେ ଉକ୍ତ ଦୁଇ ବ୍ୟାସାଗ୍ର ବିନ୍ଦୁ ଚପି ହୋଇଯାଏ ଏବଂ ଉଭୟ ବ୍ୟାସାଗ୍ର ବିନ୍ଦୁର ମଧ୍ୟବର୍ତ୍ତୀ ସ୍ଥାନ ସ୍ଫୀତ ହୋଇପଡ଼େ । ଠିକ୍ ଏହି ଦୃଷ୍ଟାନ୍ତ ପରି ପୃଥିବୀର ଦୁଇ ମେରୁସ୍ଥଳ ଚେପ୍ଟା ଏବଂ ଉଭୟ ଧ୍ରୁବର ମଧ୍ୟବର୍ତ୍ତୀ ବିଷୁବ ବୃତ୍ତ ସ୍ଥଳ ସ୍ଫୀତ ହୋଇଅଛି । ଏଥିରୁ ଭୂ ଭ୍ରମଣ କରିବା ସିଦ୍ଧ ହେଉଅଛି । ଏହା ଯଦି ତୁମର ଆଉ ଏକ ଯୁକ୍ତି ହୁଏ, ତାହାହେଲେ ମୁଁ କହିବି ସେ ଉଭୟ କଥାର ଫଳ କ'ଣ ସମାନହେଲା ? ନୁହେଁ । ଏଣୁ ଜାଣିରଖ ଯେ ବିଧାତାଙ୍କ ସୃଷ୍ଟିରେ ଅନେକ ବିସଦୃଶ କଥା ଅଛି । ତାହା ପ୍ରମାଣ କରିବା ପାଇଁ ପୃଥିବୀ ଭ୍ରମଣ କରିବା

* ଯେନ ଲଲଦମୃଦ୍ ବିଶେଷ ଫଳ ଲକ୍ଷ ।

କଳ୍ପନା ଦରକାର ନାହିଁ ( ଯେଉଁ ପାଣି ଝରିବା ଯୋଗେ ଧ୍ରୁବ ପାଖ ଚେପ୍ଟା ହେଲା ସେହି ପାଣି ଯୋଗ ସମଗ୍ର ଭୂପିଣ୍ଡରେ ଅଛିତ ? ତେବେ ବିଷୁବ ପାଖରେ ସ୍ଫୀତ କାହିଁକି ହେବ ?) ପୃଥିବୀର ପୂର୍ବଗତି ହେଲେ ତ ନକ୍ଷତ୍ରମାନଙ୍କର ପଶ୍ଚିମ ଗମନ ସିଦ୍ଧ ହୋଇଅଛି । ପୁଣି ଅତି ଆୟାସରେ ଭଗବାନ କାହିଁକି ପ୍ରବହ ବାୟୁ କଳ୍ପନା କରି ତାକୁ ନକ୍ଷତ୍ର ରାଶିର ପଶ୍ଚାତ୍ଭ ଗତି ନିମନ୍ତେ ଛାଡ଼ିଲେ, ଏହା ଯଦି ତୁମର ଯୁକ୍ତି ହୁଏ ତାହାହେଲେ ମୁଁ କହିବି ଯେ ଭଗବାନ ଗୋଳକକୁ ସ୍ଥିର ଓ ପର୍ବତକୁ ଚଳ କରି ପାରନ୍ତି । ତାଙ୍କର ସେ ସାମର୍ଥ୍ୟ ଦେଖାଇବା ନିମନ୍ତେ ସେ ପୃଥିବୀକୁ ସ୍ଥିର କରିଦେଇ ଅଛନ୍ତି । ଏହା କହିଲେ କୌଣସି ଦୋଷ ହେବ ନାହିଁ ।

> ଧର୍ମାଧର୍ମଫଳପ୍ରଦାନବିଷୟେ ନୃଣାଂ ବିଲୋକେଶ ତୁ—
> ର୍ଦୁର୍ଘଟନା ନ ତୂପକରଣୈଃ ଖେଳାସୁ ଲୀଳାମ୍ବୁଧେଃ ।
> ଲୋକସ୍ୟ କ୍ଷଣଭଙ୍ଗୁରାଙ୍ଗତନବେ ପାଷାଣରତ୍ନାଦିଭିଃ
> ପ୍ରାଜ୍ୟାୟା ସକୃତାଳୟେଷ୍ୱପି ଯତୋ ଦୃଷ୍ଟା ପ୍ରବୃତ୍ତିର୍ମୁହୁଃ ।୧୪୮।

ଭଗବାନ ଅତ୍ୟନ୍ତ କ୍ରୀଡ଼ା ପ୍ରିୟ । ସେ ତିନ ଲୋକର ପତି । ଲୋକମାନଙ୍କର ଧର୍ମ ଓ ଅଧର୍ମ ବୃତ୍ତି ଫଳ ଦେବାରେ ସେ ଅନେକ ସ୍ଥଳରେ ନିଦାରୁଣ ଅଘଟନା ଘଟାଇଥାନ୍ତି । କିନ୍ତୁ ପାର୍ଥିବ ଉପକରଣରେ ତାଙ୍କର ନିଦାକର କୌଣସି ଅଘଟନା ନାହିଁ । ଲୋକଙ୍କୁ ଦଣ୍ଡ ଦେବାରେ ସେ ସେ ନିଦାକର ଘଟଣା ସୃଷ୍ଟି କରନ୍ତି ତାହାର ମଧ୍ୟ କାରଣ ଅଛି । ଲୋକର ଶରୀର କ୍ଷଣସ୍ଥାୟୀ । ତଥାପି ସେ ଅତି କଠିନ ଚେଷ୍ଟାରେ ପଥର ଓ ରତ୍ନ ଆଦିରେ ଘରକରି ରହିବାର ପ୍ରବୃତ୍ତି ବରାବର ଦେଖାଉଅଛି । (ଏଥି ନିମନ୍ତେ ତାକୁ ଦଣ୍ଡ ଦେବା କ'ଣ ଉଚିତ୍ ନୁହେଁ ? ) । ସେ ପ୍ରାଣୀକୁ ସିନା ଦଣ୍ଡ ଦିଅନ୍ତି, ସୃଷ୍ଟିଜାତ ବସ୍ତୁକୁ ଇତଃସ୍ତତଃ କରନ୍ତି ନାହିଁ । ମନୁଷ୍ୟ ତା ସ୍ୱଭାବ ଛାଡ଼ୁନାହିଁ । ଏଣୁ ଭଗବାନ ମଧ୍ୟ ତାଙ୍କ କାମ କରିବାରେ ଲାଗି ରହି ଅଛନ୍ତି ।

> ଅଜ୍ଞାନାନ୍ନନ ଜାତ୍ୱଥା ବଦଧରୁ ଜ୍ଞାନୀ ତୁ ସର୍ବେଶ୍ୱରୋ—
> ଯୁକ୍ତ୍ୟା କ୍ରୀଡ଼ିତୁମର୍ହତୀତି ତବ ଚେଦୁକ୍ତିର୍ମୟାନ୍ୟୋଚ୍ୟତେ ।
> ଦ୍ରାଙ୍ଗମର୍ତ୍ତ୍ୟାଶ୍ୱଗଜାଦିକଶ୍ୱରତୟା ସୃଷ୍ଟ୍ୱାଃ କ୍ରମାସ୍ତେ ଫଳଂ
> ତେଭ୍ୟଃ କାକଶୃଗାଳକାଦି ସୁଚରସ୍ଥିତ୍ୟାସ୍ତି କାର୍ଯ୍ୟଂଚ କିଂ ।୧୪୯।

> ଯାସ୍ତେ ଧରେଶବହିରଙ୍ଗତଟସ୍ଥଶକ୍ତ—
> ଯୁଗ୍ମାଦ୍ୱିରା କଖିଳସଦ୍‌ଗୁଣଜୀବସଦ୍ମ ।
> ସ ଚ୍ଛିକ୍ତିସନ୍ତିରତନୁଃ ପରମେଶ୍ୱରସ୍ୟ
> ସାଂଶୈର୍ଗ୍ରହୈଃ ପରବୃତାସ୍ତି କିମତ୍ର ଚିତ୍ରମ୍ ।୧୫୦।

ଅଜ୍ଞାନ ଲୋକସମାଜ ସେପରି ଘରଦ୍ୱାର କରି ରହିବା ଚେଷ୍ଟାରେ ଯେ ଥାଆନ୍ତି— ଥାଆନ୍ତୁ । ମାତ୍ର ଈଶ୍ୱର ଜ୍ଞାନୀ । ତାହା ସେ କରନ୍ତି ନାହିଁ । ସେ କେବଳ ନ୍ୟାୟକୁନେଇ କ୍ରୀଡ଼ା କରନ୍ତି । ଏହା ତୁମର ଉକ୍ତି ହେଲେ ମୁଁ କହିବି ଯେ, ସେ ମନୁଷ୍ୟ, ଘୋଡ଼ା ଓ ହାତୀଙ୍କୁ ଅଳ୍ପ ଆୟୁ ଦେଇ କୁଆ, ଶୃଗାଳ ପ୍ରଭୃତିଙ୍କୁ ସେମାନଙ୍କଠାରୁ ବେଶି ଆୟୁ ଦେବାରେ କି ଫଳ ପାଉଛନ୍ତି ? ତାଙ୍କର କେଉଁ କାର୍ଯ୍ୟ ବା ଏପରି ବିସଦୃଶ ଘଟଣା କରିବାରେ ସାଧିତ ହେଉଛି ? (ମୋଟ ଉପରେ ତାଙ୍କର ଇଚ୍ଛା ମାତ୍ର) । ଭଗବାନଙ୍କ ବହିରଙ୍ଗ ଓ ଅନ୍ତରଙ୍ଗ [ତଟସ୍ଥ] ଦୁଇଟି ଶକ୍ତିରୁ ଶ୍ରେଷ୍ଠ, ପରମେଶ୍ୱରଙ୍କ ଆଭ୍ୟନ୍ତର ମୂର୍ତ୍ତି ଏହି ପୃଥିବୀ ସବୁ ପ୍ରକାର ଗୁଣଶାଳୀ ମନୁଷ୍ୟମାନଙ୍କର ଆବାସ ସ୍ଥଳ ହୋଇ ରହିଛି । ପରମେଶ୍ୱରଙ୍କର ଅଂଶରୂପୀ ଅନ୍ୟଗ୍ରହମାନେ ତାକୁ ବେଢ଼ି ରହିଛନ୍ତି । ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଦନାବ୍‌ଦ୍ୱାନ୍ତ୍ୟତ୍‌ଆ ତ୍ରିବଧଗତରତ୍ୟାଭିରଚନ
ରସୋଦ୍ଧା ସିଦ୍ଧାନ୍ତଦ୍ରୁମଫଳକଣ୍ଠଭିର୍ଣିତଭିଃ ।
ରସାସ୍ୱାଦାଦାସାଂ ଭବତୁ ଭବତାଂ ତୁଷ୍ଟମନସାଂ
ରସାଭ୍ରାନ୍ତକାନ୍ତକ୍ଷତରନ୍ଧତରାମାରତଙ୍ଗିରାମ୍ । ୧୫୧ ।

ତୁଲ୍ୟକ୍ଷୋଦୟଦର୍ଶନାଜ୍‌ଜ୍ଞକୁଜମାନ୍ଦ୍ୟଦ୍ରାକ୍ ଫଳପ୍ରେକ୍ଷଣା
ଚନ୍ଦ୍ରାଙ୍କସ୍ଥିତଦର୍ଶନାତ୍ ଗୁରୁଲଘୁଦ୍ରବ୍ୟ ସ୍ୱଭାବେକ୍ଷଣାତ୍ ।
ଆକୃଷ୍ଟସ୍ୟ ଚ କର୍ଷକାଭିମୁଖତାସିଦ୍ଧେଃ ଶରାଦର୍ଶନା
ଦୁଷ୍ଟାଂଶୋରିତି ସାଧିତଂ ବହୁବଧୈର୍ଲଙ୍ଗୈଃ ସ୍ଥିରତ୍ୱଂ କ୍ଷିତୌ
। ୧୫୨ ।

ସିଦ୍ଧାନ୍ତ ବୃକ୍ଷର ଫଳ ସଦୃଶ ଅନେକ ଉକ୍ତିଦ୍ୱାରା ପୃଥିବୀର ଦୈନିକ, ବାର୍ଷିକ ଓ ଭ୍ରାନ୍ତି ଏପରି ତିନି ଗତି ଖଣ୍ଡିତ ହେଲା । [ଅସିଦ୍ଧ ହେଲା] ଏହି ଉକ୍ତି ଗୁଡ଼ିକର ରସ ଆସ୍ୱାଦନ କରି ଆପଣମାନେ ହୃଷ୍ଟ ହୁଅନ୍ତୁ ଏବଂ ଆପଣମାନଙ୍କ ଧରାଭ୍ରମଜନିତ ଭ୍ରାନ୍ତି ଦୂର ହେଉ । ଯେଉଁମାନେ ପୃଥିବୀ ଭ୍ରମଣ କରୁଛି ବୋଲି ଯୁକ୍ତି କରି କ୍ଲାନ୍ତ ହୋଇ ପଡ଼ିଛନ୍ତି, ସେମାନଙ୍କର ସେ କଥା ଆଉ ନ ହେଉ । ସେମାନେ ମଧ୍ୟ କ୍ଲାନ୍ତି ଅପନୋଦନ କରନ୍ତୁ ।

ନକ୍ଷତ୍ର ଗୋଳର ଗୋଟିଏ ସ୍ଥାନରେ ଏହି ନକ୍ଷତ୍ରର ବରାବର ଉଦୟ ହେଉଥିବା ଦେଖା ଯାଉଥିବାରୁ ବୁଧ ଓ ମଙ୍ଗଳର ମନ୍ଦ ତଥା ଶୀଘ୍ର ଫଳରେ ମନ୍ଦ କେନ୍ଦ୍ର ଜନିତ ହ୍ରାସ ଓ ବୃଦ୍ଧି ଘଟୁ ଥିବାରୁ ଚନ୍ଦ୍ର କଳଙ୍କ ବରାବର ପୃଥିବୀକୁ ଦେଖା ଯାଉଥିବାରୁ, ଗୁରୁ ଲଘୁ ଦ୍ରବ୍ୟର ସ୍ୱଭାବ ପର୍ଯ୍ୟବେକ୍ଷଣରୁ ଆକୃଷ୍ଟ ବସ୍ତୁ ଆକର୍ଷକ ଆଡ଼କୁ ଯାଉଥିବାର ଅନୁଭବରୁ, ସୂର୍ଯ୍ୟର ଶର ନଥିବା ଜଣାଯିବାରୁ, ଅର୍ଥାତ୍ ଏହିପରି ଅନେକ ଯୁକ୍ତିରୁ ପୃଥିବୀର ସ୍ଥିରତା ସାଧିତ ହେଲା । ଉକ୍ତ ସମସ୍ତ ଯୁକ୍ତି ଆଗରୁ ଦିଆଯାଇଛି । ଏଠାରେ ତାର ଉପସଂହାର ମାତ୍ର ହେଲା ।

ସିଦ୍ଧାନ୍ତ ଶେଖରେ :—

**ନଭସ୍ୟୟସ୍କାନ୍ତମହାମଣୀନାଂ**
**ମଧ୍ୟସ୍ଥିତୋ ଲୋହଗୁଡ଼ୋ ଯଥାସ୍ତେ ।**
**ଆଧାରଶୂନ୍ୟୋଽପି ତଥୈବ ସର୍ବା-**
**ଧାରୋ ଧରିତ୍ର୍ୟା ଧ୍ରୁବ ଏଷ ଗୋଲଃ ।ଇତି ୧୪୩ ।**

(ଚୁମ୍ବକ) ଅୟସ୍କାନ୍ତ ମଣି ମଧ୍ୟରେ ଲୌହ ଗୋଲ ଯେପରି ଥାଏ, ଠିକ୍ ସେହିପରି କୌଣସି ଆଧାର ନ ଥାଇ ସମସ୍ତଙ୍କର ଆଶ୍ରୟ ସ୍ଥଳ ଏହି ଭୂଗୋଲ ନିଶ୍ଚିତ ଭାବରେ ରହିଛି । (ସିଦ୍ଧାନ୍ତ ଶେଖର) ।

ବାରାହୋଽପି—

**ପଞ୍ଚମହାଭୂତମୟସ୍ତାରାଗଣପଞ୍ଜରେ ମହୀଗୋଲଃ**
**ଖେଽୟସ୍କାନ୍ତାନ୍ତଃସ୍ଥୋ ଲୋହ ଇବାବସ୍ଥିତୋ ବୃତ୍ତଃ । ଇତି ।୧୪୪।**

ପୃଥିବୀ ପଞ୍ଚ ମହାଭୂତରେ ପରିପୂର୍ଣ୍ଣ ଏବଂ ବୃତ୍ତାକାର । ସେ ଅୟସ୍କାନ୍ତ ମଣି ଭିତରେ ଲୌହ ରହିଲାପରି ତାରାପୁଞ୍ଜ ମଧ୍ୟରେ ଆକାଶରେ ରହିଅଛି (ବରାହମିହିର) ।

**ତସ୍ମାତ୍ତିଷ୍ଠତି ଭୂଃ ପ୍ରୟାତି ସବିତା ମୂର୍ତ୍ୟା ସ୍ୱମଧ୍ୟାକ୍ଷୟା**
**ବଭ୍ରଂ ତ୍ଖେଚରଚକ୍ରମକ୍ରମଗତୀର୍ବୈତତ୍ କ୍ଷିତାବୀକ୍ଷ୍ୟତେ ।**
**ମତ୍ସିଦ୍ଧାନ୍ତମିମଂ ବିଚାର୍ୟ ସକଳଂ ସନ୍ତଃ ପ୍ରଶଂସନ୍ତୁ ବା**
**ନିନ୍ଦନ୍ତୁ ଶ୍ରମବେଦନୋ ହ୍ୟୁଭୟଥା ମଂସେ୍ୟ କୃତାର୍ଥାଂ କୃତିଂ ।୧୪୫।**

ପୂର୍ବୋକ୍ତ ସମସ୍ତ ଯୁକ୍ତିରୁ ମୋର ମତ ଯେ ପୃଥିବୀ ସ୍ଥିର । ସୂର୍ଯ୍ୟ ନିଜର ମଧ୍ୟମ ମୂର୍ତ୍ତି ଦ୍ୱାରା (ମଧ୍ୟମ ସୂର୍ଯ୍ୟ) ଅନ୍ୟାନ୍ୟ ଗ୍ରହମାନଙ୍କୁ ଧରି ବୁଲୁଅଛି ଏବଂ ଗ୍ରହ ସମୂହର କୌଣସି କ୍ରମ ଗମନ ନାହିଁ (ଯେଉଁ ବାଟରେ ଯେ ବୁଲୁଛନ୍ତି) ଏହି କଥା ପୃଥିବୀରେ ବେଶ୍ ଦେଖା ପଡ଼ୁଥାଉଛି । ପରିଶ୍ରମର ମୂଲ୍ୟ ଯେଉଁମାନେ ଜାଣନ୍ତି ସେପରି ସଜ୍ଜନମାନେ ମୋତେ ଏଥିପାଇଁ ପ୍ରଶଂସା ବା ନିନ୍ଦା କରନ୍ତୁ, ସେଥିରେ କିଛି ଯାଏଆସେ ନାହିଁ । ମୋର ସିଦ୍ଧାନ୍ତକୁ ସେମାନେ ବିଚାର କରନ୍ତୁ । (ଏହାହିଁ ପ୍ରାର୍ଥନା) । ଉଭୟ କଥା ହେଲେ ମଧ୍ୟ ମୁଁ ମୋର ଏ ସାମାନ୍ୟ କାର୍ଯ୍ୟ ପାଇଁ କୃତାର୍ଥ ହେବି ।

**ହେ ଧୀରା ଗଣକାଃ ସମସ୍ତସୁହୃଦୋ ବଦ୍ଧାଞ୍ଜଳିର୍ବଚ୍ମ୍ୟହଂ**
**ଯା ମେଽସ୍ମିନ୍ ଜନିଷ୍ଟ ଧାର୍ଷ୍ଟ୍ୟପଟୁତା ତାଂ ମାର୍ଷ୍ଟୁମିଚ୍ଛାସ୍ତୁ ବଃ ।**
**ବାଳାନାଂ ପ୍ରତିପତ୍ତୟେ କଳ ମୟା ସମ୍ପାଦଦମ୍ପାଦୟଂ**
**ଭୂନିଷ୍ଠା ଗଦତା ଯଥାମତି ଭବତ୍ତୋଷାଦ୍ ସଦୋଷା ନ କେ ।୧୪୬।**

ହେ ପଣ୍ଡିତ ଗଣକମାନେ, ଆପଣମାନେ ସମସ୍ତଙ୍କର ବନ୍ଧୁ । ଏ ଭୂ ସ୍ଥିରବାଦରେ ମୋର ଯେଉଁ ଧୃଷ୍ଟତା ହୋଇଛୁ ତାହା ମାର୍ଜନା କରିବା ନିମନ୍ତେ ଆପଣମାନଙ୍କର ଇଚ୍ଛାହେଉ । ସାଧାରଣ (ଅଳ୍ପଜ୍ଞ ଗଣକ) ପିଲାମାନଙ୍କର ବୋଧ ନିମନ୍ତେ ଭୂ ଭ୍ରମବାଦ ଛଳରେ ପୃଥିବୀର ସ୍ଥିରତା ଆପଣମାନଙ୍କର ସନ୍ତୋଷ ପାଇଁ, ମୋତେ ଯାହା ଦେଖାଗଲା କହିଗଲି । ଜଗତରେ ଦୋଷ କାହାର ନାହିଁ ? ସମସ୍ତଙ୍କର ତ୍ରୁଟି ଅଛି ଏଣୁ ମୋର ମଧ୍ୟ ଏ ଯୁକ୍ତିରେ ଥାଇପାରେ ।

**ଆମ୍ଭୋତ୍କର୍ଷଃ ପୂରୁଷୈଃ ସର୍ବଥେଷ୍ଟୋ—**
**ଦେବାକାରେ କେନଚିଦ୍ ଘଟ୍ୟମାନେ ।**
**ତସ୍ୟ ସ୍ୟାଚ୍ଚେନ୍ନୈର୍କଟାକାର ସିଦ୍ଧି—**
**ର୍ଦୈବାଧୀନୋ ନାସ୍ତି ଦୋଷସ୍ତଦେଷଃ । ୧୬୭ ।**

ମନୁଷ୍ୟ ମାନଙ୍କେ ଉତ୍କର୍ଷ ଚାହେଁ । ଦିଅଁ ଗଢ଼ୁ ଗଢ଼ୁ ମାଙ୍କଡ଼ ହେଲେ ଆଉ କ'ଣ କରିପିବ ? ତାହା ଦୈବାଧୀନ ବୋଲିବାକୁ ହେବ ଏବଂ ଏଥିରେ ଦୈବର ଦୋଷ ବିନା ମଣିଷର ଦୋଷ କ'ଣ ?

**ବ୍ରହ୍ମାଣ୍ଡଂକାରଣାବ୍ଧୌ ଚଳତୁ ଜଳବଳାଦ୍ବା ମହାବାତବେଗାତ୍**
**କମ୍ପାସ୍ତାମମ୍ବରସ୍ଥଂ ତଦୁପରି ପରତସ୍ତତ୍ ପୁରାଣାଦସିଦ୍ଧମ୍ ।**
**ସପ୍ତାବ୍ଧିଦ୍ୱୀପଭୂଭୃତ୍ପ୍ରଭୃତିସୁବିତତଂ ନାସ୍ତି ତତ୍ରାସ୍ମଦୁକ୍ତିଃ**
**ବ୍ୟକ୍ତୀଭୂତୈତଦଣ୍ଡୋଦରଗତଧରଣୀନାଦ୍ୟମୁଦ୍ଦିଶ୍ୟ ଦୃଶ୍ୟମ୍ ।୧୬୮ ।**

ବିଶ୍ୱବ୍ରହ୍ମାଣ୍ଡ କାରଣ—ସମୁଦ୍ରରେ ଥାଇ ଜଳବଶତଃ ଚାଳିତ ହେଉ, ମହାବାତ୍ୟା ଜୋରରେ ଅବା ତାର ଚଳନ ହେଉ, ଅଥବା ତାର ଚଳନ ନ ହୋଇ ସେ ଆକାଶରେ ସେହିପରି ଥାଉ ଏବଂ ତାହାର ଚାରିପଟେ ପୁରାଣ ଆଦି ବର୍ଣ୍ଣିତ ସାତ ସମୁଦ୍ର, ଦ୍ୱୀପ, ପର୍ବତ ପ୍ରଭୃତି ବିସ୍ତୃତ ଭାବରେ ଥାଆନ୍ତୁ —ଏଥିରେ ମୋର କିଛି କହିବାରେ ନାହିଁ । ମାତ୍ର ସେହି ବ୍ରହ୍ମାଣ୍ଡର ପେଟରେ ପ୍ରକାଶିତ ଏହି ପୃଥିବୀ ଓ ସୂର୍ଯ୍ୟ ଇତ୍ୟାଦିକୁ ଉଦ୍ଦେଶ୍ୟ କରି ଦେଖିବା କଥା । (ବ୍ରହ୍ମାଣ୍ଡର କଥା, ଏଠାରେ ମୁଁ କହୁ ନାହିଁ, କେବଳ ତାହାର ଆଧାରଗତ ପୃଥିବୀ ସୂର୍ଯ୍ୟ ଆଦି ବିଷୟରେ ହିଁ ମୁଁ ଏସବୁ କହୁଛି ମାତ୍ର)

**ଭୂଗୋଲଭ୍ରାନ୍ତିବାଦୋ ଗତଚରସମୟେ ନ ଶ୍ରୁତୋଽସ୍ମାଦ୍ ଯୁଗାଂଘ୍ରେଃ**
**ସ୍ୱାବ୍ଦୀଦ୍ୱାଂଶେ ବ୍ୟତୀତେ ସୁବିରଳ ଉଦିତଃ ସୌଗତାସ୍ୟାବଟାଦ୍ଧିଃ ।**
**ତସ୍ୟ ପ୍ରତ୍ୟୁକ୍ତିମାର୍ଯ୍ୟାଃ ପ୍ରତନୁ ବିଦଧିରେ ଯୁକ୍ତିଭିର୍ବିସ୍କାରିଦ୍ୟାଃ**
**ସଂପ୍ରତ୍ୟସ୍ୟାତନୁତ୍ୱାଦ୍ ପ୍ରଚୁରମକରବଂ ବାଙ୍ମୟଂ ତତ୍ପ୍ରଶାନ୍ତ୍ୟୈ**
**। ୧୬୯ ।**

ପୃଥିବୀ ଚଳୁଥିବା କଥା ଅଜ୍ଞାତରେ ଶୁଣା ନ ଥିଲା । ଆମ ଯୁଗର (କଳି ଯୁଗର) [illegible] ଘଗରେ ଅର୍ଥାତ୍ କଳିଗତାବ୍ଦ ୩୦୦୦ ଠାରେ (ସାମନ୍ତଙ୍କର ରଚନା କାଳରୁ ପ୍ରାୟ ୨୦୦୦ ବର୍ଷ ପୂର୍ବେ) ବୌଦ୍ଧମାନଙ୍କ ମୁଖରୁ ଭୂ ଭ୍ରମବାଦ ସାମାନ୍ୟ ଭାବରେ ପ୍ରକାଶ ପାଇଲା । ଭାସ୍କର ଆଦି ବଶିଷ୍ଟ ପଣ୍ଡିତମାନେ ତାର ଉତ୍ତର ମଧ୍ୟ ସାମାନ୍ୟ ଭାବରେ ଦେଇଛନ୍ତି । ବର୍ତ୍ତମାନ ଏହି ମତବାଦ ପ୍ରବଳ ଭାବରେ ମାଡ଼ି ଯାଉ ଥିବାରୁ ମୋତେ ଏହାର ନିରାକରଣ ନିମନ୍ତେ ବହୁକଥା କହିବାକୁ ପଡ଼ିଲା ।

ସୂର୍ଯ୍ୟଚନ୍ଦ୍ରୈର୍ଯ୍ୟୋକ୍ତସୂତୈଃ କ୍ଷିତଗତକୃତନାଂ ବ୍ୟାଜରାଜତ୍ୱମାପ୍ତଃ
ସିଦ୍ଧାନ୍ତସ୍ୱର୍ଣ୍ଣଶୈଳଃ ପ୍ରକୃତମୁପଗତୋ ଯତ୍କୃପାସ୍ପର୍ଶନୋତ୍‌ଥୈଃ
ଅସ୍ମଦ୍ଧିଦ୍ୱାଗ୍ରଜାଗ୍ରଜ୍ଜ୍ୱଳନନିଧିବସନାସ୍ଥୈମ ସଦ୍‌ଯୁକ୍ତି ବହ୍ନି—
ଜ୍ୱାଳୈର୍ଭୂୟୋଽପି ସୋଽୟଂ କଳୟତୁ କୁଶଳଂ ଶ୍ରୀଲନୀଳାଚଳେନ୍ଦୁଃ
। ୧୭୦

ସୂର୍ଯ୍ୟର ସ୍ଥିରତା ଉକ୍ତ ପ୍ରବନ୍ଧ (ସୂତ୍ର) ଦ୍ୱାରା ପୃଥିବୀକୁ ଚଳ ବୋଲି କହି ଆସୁଥିବା ଲୋକଙ୍କର ସିଦ୍ଧାନ୍ତ ରୂପକ ସ୍ୱର୍ଣ୍ଣ ପର୍ବତ ବୃଥାରେ ଶ୍ରେଷ୍ଠତାକୁ ପ୍ରାପ୍ତ ହୋଇଥିଲା । (ଭୂଚଳବାଦୀମାନେ ଜୟୀ ହୋଇଥିଲେ) କିନ୍ତୁ ଯାହାର କୃପା ସ୍ପର୍ଶରେ ମୋର ଜିଭରୁ ସାଗର ବସନା ପୃଥିବୀର ସ୍ଥିରତା ନିମନ୍ତେ ଅନେକ ଯୁକ୍ତି ବାହାରି ପଡ଼ିଲା ଏବଂ ଏ ଯୁକ୍ତି ଗୁଡ଼ିକ ଅଗ୍ନି ପରି ପ୍ରଜ୍ୱଳିତ ହୋଇ ସେହି (ଭୂଚଳ ରୂପକ ସ୍ୱର୍ଣ୍ଣ ପର୍ବତକୁ) ସିଦ୍ଧାନ୍ତକୁ ପୁଣି ଦବାଇ ଦେଲା । (ଅଗ୍ନି ତାପରେ ସ୍ୱର୍ଣ୍ଣ ଦ୍ରବିଯାଏ) ସେହି ଶ୍ରୀ ନୀଳାଚଳର ଚନ୍ଦ୍ର ଶ୍ରୀ ଜଗନ୍ନାଥ (ସମସ୍ତଙ୍କର) କୁଶଳ ବିଧାନ କରନ୍ତୁ ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳପ୍ରସୂତ—
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
କ୍ଷ୍ମାଭୃସ୍ଥିତବର୍ଣ୍ଣରତ ସପ୍ତଦଶଃପ୍ରକାଶଃ ।୧୭୧।

ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ ଗୋଲାଧିକାରେ ଭୂଗୋଳସ୍ଥିତି-ବର୍ଣ୍ଣନୋ ନାମ ସପ୍ତଦଶଃପ୍ରକାଶଃ ।

ବର୍ତ୍ତମାନ ସପ୍ତଦଶ ପ୍ରକାଶ ରଚନା ଶେଷ ହେଲା । ଏଥିରେ ପୃଥିବୀ ଆକାଶରେ କପରି ସ୍ଥିର ରହିଛି ତାହା ବର୍ଣ୍ଣିତ ହୋଇଅଛି ।

## ଅଷ୍ଟାଦଶଃ ପ୍ରକାଶଃ

### । ଭୂଗୋଳ ବିବରଣମ୍ ।

ଯତ୍‌ପ୍ରୋଚୁର୍ଭଗବାନିତି ଶ୍ରିତ ଜନାଃ ସାଂଖ୍ୟାଶ୍ଚ ପାତଞ୍ଜଳା
ନିର୍ଲେପଃ ପୁରୁଷଃ ପରଃ ଶିବ ଇତି ବ୍ରହ୍ମେତି ବେଦାନ୍ତିନଃ ।
ନ୍ୟାୟଜ୍ଞାଃ ପରମାତ୍ମଶବ୍ଦିତମୃତଂ କର୍ମେତି ମୀମାଂସକାଃ
ସୌରାଦ୍ୟାଃ କୁଳଦୈବତଂ କିମପି ତତ୍‌କୃଷ୍ଣାଖ୍ୟତତ୍ତ୍ୱଂ ଭଜେ ।୧।

ଆଶ୍ରିତ ଲୋକମାନେ ଯାହାଙ୍କୁ ଐଶ୍ୱର୍ଯ୍ୟଶାଳୀ [ଭଗ = ଐଶ୍ୱର୍ଯ୍ୟ] କହନ୍ତି; ସାଂଖ୍ୟ ଓ ଯୋଗଶାସ୍ତ୍ରରେ ଯାହାଙ୍କର ନାମ ନିର୍ଲିପ୍ତ ପୁରୁଷ ଓ ପରମଶିବ, ବେଦାନ୍ତ ଶାସ୍ତ୍ର ଯାହାଙ୍କୁ ବ୍ରହ୍ମ ବୋଲି କହେ; ନ୍ୟାୟ ଶାସ୍ତ୍ରରେ ପରମାତ୍ମା ବୋଲି ଯାହାଙ୍କର ଚର୍ଚ୍ଚା କରାଯାଇଅଛି; ମୀମାଂସା ଶାସ୍ତ୍ର ଯାହାଙ୍କୁ କର୍ମ ବୋଲି ମାନେ ଏବଂ ସୂର୍ଯ୍ୟ ପୂଜକାଦି ମାନେ ଯାହାଙ୍କୁ କୁଳଦେବତା ବୋଲି ପୂଜା କରନ୍ତି ଶ୍ରୀକୃଷ୍ଣରୂପୀ ସେହି କୌଣସି ତତ୍ତ୍ୱକୁ ମୁଁ ନମସ୍କାର କରୁଅଛି (ଶ୍ରୀ ଜଗନ୍ନାଥଙ୍କୁ)

ସୃଷ୍ଟି ପ୍ରାଗ୍‌ବହୁଧୋଦିତା ମୁନିବରୈସ୍ତତ୍‌ସାରଭୂତାଂ ତଦା
ବକ୍ଷ୍ୟେଽନ୍ୟତ୍ର କୃତୌ ଭବିଷ୍ୟତି ଯଦା ସୃଷ୍ଟିଂ ତଦୀୟା ଦୟା ।
ସିଦ୍ଧାନ୍ତ ଗ୍ରଥନୋଚିତାମିହ ପୁନଃ ସୌରୋକ୍ତରୀତ୍ୟାବ୍ରୁବେ
ପୂର୍ବପ୍ରଶ୍ନଗଣାନ ବାଦିବିଧିନା ସଂସ୍ଥାନମାନାଦି ଚ ।୨।

ମହର୍ଷିମାନେ ସୃଷ୍ଟି ବିଷୟରେ ନାନା କଥା କହିଛନ୍ତି । ସେ ସବୁ ସୃଷ୍ଟି ତତ୍ତ୍ୱର ସାରକଥା ଭଗବାନଙ୍କ ଦୟା ହେଲେ ମୁଁ ଅନ୍ୟ ଗ୍ରନ୍ଥରେ କହିବି । ଏଠାରେ ପୁଣି ସୂର୍ଯ୍ୟ ସିଦ୍ଧାନ୍ତ ରୀତିରେ ସିଦ୍ଧାନ୍ତ ଗ୍ରନ୍ଥୋପଯୋଗୀ ସୃଷ୍ଟି କଥା କହୁଛି । ଆଗରୁ ହୋଇଥିବା ପ୍ରଶ୍ନର ଉତ୍ତର ରୂପରେ ସୃଷ୍ଟିର ସ୍ଥିତି ଓ ପରିମାଣ ବିଷୟରେ କହିବି ।

ସୂର୍ଯ୍ୟସିଦ୍ଧାନ୍ତେ—

ଶୃଣୁଷ୍ୱୈକମନାସ୍ତତ୍ତ୍ୱଂ ଗୁହ୍ୟମଧ୍ୟାତ୍ମସଂଜ୍ଞିତମ୍ ।
ପ୍ରବକ୍ଷ୍ୟାମ୍ୟେବ ଭକ୍ତାନାଂ ନାଦେୟଂ ବିଦ୍ୟତେ ମମ ।୩।

ସୂର୍ଯ୍ୟସିଦ୍ଧାନ୍ତରେ ଅଛି—ହେ ମୟ !

ଅବହିତ ହୋଇ ଶୁଣ । ଏହି ତତ୍ତ୍ୱ ଆତ୍ମତତ୍ତ୍ୱ ସହିତ ସମ୍ପୃକ୍ତ ଥିବାରୁ ଅତି ଗୋପନୀୟ । ଭକ୍ତମାନଙ୍କୁ ନଦେଇ ରଖି ହେବ ଏପରି କିଛି ଜିନିଷ ମୋ ପାଖରେ ନାହିଁ । ଏଣୁ କହିବି ଶୁଣ ।

**ବାସୁଦେବଃ ପରଂ ବ୍ରହ୍ମ ତନ୍ମୂର୍ତ୍ତିଃ ପୁରୁଷଃ ପରଃ ।**
**ଅବ୍ୟକ୍ତୋ ନିର୍ଗୁଣଃ ଶାନ୍ତଃ ପଞ୍ଚବିଂଶାତ୍ ପରୋଽବ୍ୟୟଃ । ୪ ।**

ପରବ୍ରହ୍ମଙ୍କର ମୂର୍ତ୍ତି ପରମ ପୁରୁଷ ଅଟନ୍ତି । ତାଙ୍କର ଅପର ନାମହିଁ ବାସୁଦେବ । ସେ ନିର୍ଗୁଣ, ଶାନ୍ତ, ଅବ୍ୟୟ ଏବଂ ପଞ୍ଚବିଂଶତି ତତ୍ତ୍ୱାତିରିକ୍ତ ଅଟନ୍ତି ।

**ପ୍ରକୃତ୍ୟନ୍ତର୍ଗତୋ ଦେହୀ ବୋଧମାନସ୍ତୁ ସର୍ବଗଃ ।**
**ସଂକର୍ଷଣୋଽପଃ ସୃଷ୍ଟ୍ୱାଦୌ ତାସୁ ବୀଜମଥାସୃଜତ୍ ।୫ ।**

ପରମ ବ୍ରହ୍ମଙ୍କର ଅଂଶ ବିଶେଷ ସଂକର୍ଷଣ ଏବଂ ସେ ଦେହଧାରୀ ହୋଇ [ବା ଆତ୍ମରୂପୀ] ପ୍ରକୃତି ଭିତରେ ପ୍ରବେଶ ହେଲେ ସର୍ବଗାମୀ ଓ ବୋଧ । ଏହି ସଂକର୍ଷଣରୂପୀ ପରମବ୍ରହ୍ମାଂଶ ସର୍ବପ୍ରଥମେ ପାଣି ସୃଷ୍ଟି କରି ସେଥିରେ ବୀଜ ନିକ୍ଷେପ କଲେ ।

**ତଦଣ୍ଡମଭବଦ୍ ହୈମଂ ସର୍ବମନ୍ତସ୍ତମୋବୃତମ୍**
**ତତ୍ରାନିରୁଦ୍ଧଃ ପ୍ରଥମଂ ବ୍ୟକ୍ତୀଭୂତଃ ସନାତନଃ ।୬।**

ସେହି ବୀଜ ସୁବର୍ଣ୍ଣ ଅଣ୍ଡରେ ପରିଣତ ହେଲା । ତାହାର ଭିତରେ ଖାଲି ଅନ୍ଧାର ରହିଥିଲା । ସେହି ଅନ୍ଧାର ଭିତରେ ଅନିରୁଦ୍ଧ ପ୍ରକାଶିତ ହେଲେ ।

**ହିରଣ୍ୟଗର୍ଭୋ ଭଗବାନେଷ ଛନ୍ଦସି ପଠ୍ୟତେ ।**
**ଆଦିତ୍ୟୋ ହ୍ୟାଦିଭୂତତ୍ତ୍ୱାତ୍ ପ୍ରସୂତ୍ୟା ସୂର୍ଯ୍ୟ ଉଚ୍ୟତେ ।୭।**

ବେଦରେ ଏହି ଅନିରୁଦ୍ଧଙ୍କୁ ପୂଜ୍ୟ ହିରଣ୍ୟଗର୍ଭ କହନ୍ତି । (ହିରଣ୍ୟଗର୍ଭର ଅର୍ଥ ଅଗ୍ନି) ଏହି ହିରଣ୍ୟଗର୍ଭ ପ୍ରଥମଭୂତ ହେତୁ ଆଦିତ୍ୟ ଏବଂ ଓ ଜନ୍ମ ଦେଉଥିବାରୁ ସୂର୍ଯ୍ୟ ନାମରେ ପରିଚିତ ହେଲେ ।

**ପରଂ ଜ୍ୟୋତିସ୍ତମଃ ପାରେ ସୂର୍ଯ୍ୟୋଽୟଂ ସବିତେତି ଚ ।**
**ପର୍ଯ୍ୟେତି ଭୁବନାନ୍ୟେଷ ଭାବୟନ୍ ଭୂତଭାବନଃ ।୮।**

ଅନ୍ଧାରର ଶେଷରେ ଏହି ହେଲେ ପରମ ଜ୍ୟୋତି । ଏହାଙ୍କର ନାମହିଁ ସବିତା । ପ୍ରାଣୀ ନିର୍ମାତା ଏହି ସୂର୍ଯ୍ୟ ପ୍ରାଣୀ ତିଆରି କରିବା ସଙ୍ଗେ ସଙ୍ଗେ ସବୁ ଭୁବନକୁ (ତିନି ଭୁବନ ବା ଚତୁର୍ଦ୍ଦଶ ଭୁବନ) ପରିଭ୍ରମଣ କରୁଅଛନ୍ତି ।

ପ୍ରକାଶାତ୍ମା ତମୋହନ୍ତା ମହାନିତ୍ୟେଷ ବିଶ୍ରୁତଃ ।
ଋଚୋଽସ୍ୟ ମଣ୍ଡଳଂ ସାମାନ୍ୟସ୍ୟ ମୂର୍ତ୍ତିର୍ଯଜୁଂଷି ଚ ।୯।

ତ୍ରୟୀମୟୋଽୟଂ ଭଗବାନ୍ କାଳାତ୍ମା କାଳକୃଦ୍ବିଭୁଃ ।
ସର୍ବାତ୍ମା ସର୍ବଗଃ ସୂକ୍ଷ୍ମଃ ସର୍ବମସ୍ମିନ୍ ପ୍ରତିଷ୍ଠିତମ୍ ।୧୦।

ଅନ୍ଧକାରକୁ ନଷ୍ଟ କରି ଏହି ସୂର୍ଯ୍ୟ ମହାନ୍ ରୂପରେ ଖ୍ୟାତି ଲାଭ କରିଅଛନ୍ତି । ଋଗ୍ ବେଦର ମନ୍ତ୍ରଗୁଡ଼ିକ ଏହାଙ୍କର ମଣ୍ଡଳ । ସାମବେଦ ମନ୍ତ୍ର ଏହାଙ୍କର କିରଣ ଏବଂ ଯଜୁର୍ବେଦ ମନ୍ତ୍ର ଏହାଙ୍କର ଶରୀର ରୂପରେ ପ୍ରତିପାଦିତ ହୋଇଅଛନ୍ତି ।

ଏଣୁ ସୂର୍ଯ୍ୟ ତିନି ବେଦାତ୍ମ ଓ ଐଶ୍ୱର୍ଯ୍ୟଶାଳୀ । ସେ କାଳର ଆତ୍ମା ଅର୍ଥାତ୍ ସମସ୍ତ ତାଙ୍କଠାରୁହିଁ ପ୍ରବର୍ତ୍ତି ଅଛି । ସେ କାଳର କର୍ତ୍ତା ଏବଂ ସର୍ବବ୍ୟାପୀ । ସେ ସମସ୍ତଙ୍କର ଆତ୍ମାରୂପୀ । ସବୁଠାରେ ତାଙ୍କର ପ୍ରବେଶ ଅଛି । ସେ ସୂକ୍ଷ୍ମ ଏବଂ ସବୁ ତାଙ୍କଠାରେ ରହିଅଛି ।

ରଥେ ବିଶ୍ୱମୟେ ଚକ୍ରଂ କୃତ୍ୱା ସଂବତ୍ସରାତ୍ମକମ୍ ।
ଛନ୍ଦାଂସ୍ୟଶ୍ୱାଃ ସପ୍ତଯୁକ୍ତାଃ ପର୍ଯ୍ୟଟେତ୍ୟେଷ ବଶୀ ସଦା ।୧୧।

ସଚରାଚର ବିଶ୍ୱ ତାଙ୍କର ରଥ । ବର୍ଷଗୁଡ଼ିକ ତାର ଚକ, ଛନ୍ଦଗୁଡ଼ିକ ତାର ଘୋଡ଼ା ଏବଂ ଏମାନେ ରଜ୍ଜୁବଦ୍ଧ ହୋଇ ତାଙ୍କୁ ପରିଭ୍ରମଣ କରିବାରେ ସାହାଯ୍ୟ କରୁଅଛନ୍ତି । ସେ ସମସ୍ତଙ୍କୁ ବଶରେ ରଖନ୍ତି ।

ତ୍ରିପାଦମମୃତଂ ଗୁହ୍ୟଂ ପାଦୋଽୟଂ ପ୍ରକଟୋଽଭବତ୍
ସୋଽହଂକାରଂ ଜଗତ୍ ସୃଷ୍ଟ୍ୱା ବ୍ରହ୍ମାଣମସୃଜତ୍ ପ୍ରଭୁଃ ।୧୨।

ତସ୍ମୈ ବେଦାନ୍ ବରାନ୍ ଦତ୍ତ୍ୱା ସର୍ବଲୋକପିତାମହମ୍ ।
ପ୍ରତିଷ୍ଠାପ୍ୟାଣ୍ଡମଧ୍ୟେଽଥ ସ୍ୱୟଂ ପର୍ଯ୍ୟେତି ଭାସୟନ୍ ।୧୩।

ଏହି ସୂର୍ଯ୍ୟ ଏକପାଦରେ ମାତ୍ର ପ୍ରକାଶିତ ହେଉଅଛନ୍ତି । ଏହାଙ୍କର ତିନିପାଦ ଏ ପର୍ଯ୍ୟନ୍ତ ଅମୃତ ରୂପରେ ଗୋପନରେ ଅଛନ୍ତି । ଏହି ସୂର୍ଯ୍ୟ ଅହଂକାରକୁ ସୃଷ୍ଟି କରି

ଜଗତ୍ର ସର୍ଜ୍ଜନା ନିମନ୍ତେ ବ୍ରହ୍ମାଙ୍କୁ ସୃଷ୍ଟି କଲେ ଏବଂ ତାଙ୍କୁ ବେଦ ରୂପକ ବର ଦେଇ ପୁଣି ଅଣ୍ଡ ମଧ୍ୟରେ ସ୍ଥାପନ କଲେ । ଜଗତର ପିତାମହ ବ୍ରହ୍ମା ଉକ୍ତ ଅଣ୍ଡ ମଧ୍ୟରେ ରହିଲେ । ସୂର୍ଯ୍ୟ କଳ୍ପ କରଣ ବିକାରଣ ପୂର୍ବକ ପୃଥିବୀ ପରିଭ୍ରମଣ କରିବାକୁ ଲାଗିଲେ ।

ଅଥ ସୃଷ୍ଟ୍ୟୈ ମନଶ୍ଚକ୍ରେ ବ୍ରହ୍ମାହଂକାରମୂର୍ତ୍ତିମାନ୍ ।
ମନସଶ୍ଚନ୍ଦ୍ରମା ଜଜ୍ଞେ ସୂର୍ଯ୍ୟୋଽକ୍ଷ୍ଣୋସ୍ତେଜସାଂ ନିଧିଃ ।୧୪।

ମନସଃ ଖଂ ତତୋ ବାୟୁରଗ୍ନିରାପୋ ଧରା କ୍ରମାତ୍ ।
ଗୁଣୈକବୃଦ୍ଧ୍ୟା ପଞ୍ଚୈବ ମହାଭୂତାନି ଜଜ୍ଞିରେ ।୧୫।

ଅଗ୍ନିରାପୋ ଭାନୁଚନ୍ଦ୍ରୌ ତତସ୍ତ୍ୱଙ୍ଗାରକାଦୟଃ ।
ତେଜୋଭୂଖାମ୍ବୁବାତେଭ୍ୟଃ କ୍ରମଶଃ ପଞ୍ଚ ଜଜ୍ଞିରେ ।୧୬।

ପୁନର୍ଦ୍ୱାଦଶଧାତ୍ମାନଂ ବିଦଧେ ରାଶି ସଂଜ୍ଞକମ୍ ।
ନକ୍ଷତ୍ରରୂପିଣଂ ଭୂୟଃ ସପ୍ତବିଂଶାତ୍ମକଂ ବଶୀ ।୧୭।

ଅହଙ୍କାର ମୂର୍ତ୍ତିରୂପୀ ବ୍ରହ୍ମା ସୃଷ୍ଟି ନିମନ୍ତେ ମନବଳାଇଲେ । ତାଙ୍କ ମନରୁ ଚନ୍ଦ୍ରଜାତ ହେଲେ ଏବଂ ଆଖିରୁ ସୂର୍ଯ୍ୟ ଜନ୍ମ ହେଲେ, ସୂର୍ଯ୍ୟ ସବୁ ତେଜସ୍କର ପଦାର୍ଥଠାରୁ ଉତ୍ତମ ।

ମନରୁ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ ଯଥାକ୍ରମେ ହୋଇ ପଡ଼ିଲେ । ଏହିପରି ଏକ ଏକ ଗୁଣ ବୃଦ୍ଧି ନେଇ ପଞ୍ଚ ମହାଭୂତ ଜନ୍ମଲାଭ କଲେ ।

ଅଗ୍ନି, ଜଳ, ସୂର୍ଯ୍ୟ, ଚନ୍ଦ୍ର ଏବଂ ପରେ ପରେ ମଙ୍ଗଳ ଆଦି ଜନ୍ମ ହେଲେ । ତେଜ, ପୃଥିବୀ, ଆକାଶ, ଜଳ ଓ ପବନରୁ ମଙ୍ଗଳ ଆଦି ପଞ୍ଚ ତାରା ଗ୍ରହ ଜନ୍ମ ନେଲେ । ବ୍ରହ୍ମା ପୁଣି ନିଜକୁ ବାର ଭାଗରେ ବାଣ୍ଟି ୧୨ଟି ରାଶିରୂପ ନେଲେ । ପୁଣି ଏହି ବାର ରାଶିକୁ ୨୭ ନକ୍ଷତ୍ର ରୂପରେ ବାଣ୍ଟିଦେଲେ ।

ତତଶ୍ଚରାଚରଂ ବିଶ୍ୱଂ ନିର୍ମମେ ଦେବପୂର୍ବକମ୍ ।
ଊର୍ଦ୍ଧ୍ୱମଧ୍ୟାଧରେ ଭୂଶ୍ଚ ସ୍ରୋତୋଭୂଃ ପ୍ରକୃତିଂ ସୃଜତ୍ ।୧୮।

ତାପରେ ଦେବତା ଓ ତଦନନ୍ତର ସଚରାଚର ଏହି ବିଶ୍ୱ ବ୍ରହ୍ମାଣ୍ଡକୁ ସେ ରଚନା କରିନେଲେ । ସେ ଉପରେ ତଳେ ଓ ମର୍ତ୍ତ୍ୟରେ ପ୍ରକୃତି କ୍ରମରେ ସୃଷ୍ଟି କରିଗଲେ ।

ଗୁଣକର୍ମବିଭାଗେନ ସୃଷ୍ଟ୍ୱା ପ୍ରାଗ୍ୱଦନୁକ୍ରମାତ୍ ।
ବିଭାଗଂ କଳ୍ପୟାମାସ ଯଥାସ୍ୱଂ ବେଦଦର୍ଶନାତ୍ ।୧୯।

ଗ୍ରହନକ୍ଷତ୍ର-ତାରାଣାଂ ଭୂମେର୍ବିଶ୍ୱସ୍ୟ ବା ବିଭୁଃ ।
ଦେବାସୁରମନୁଷ୍ୟାଣାଂ ସିଦ୍ଧାନାଂ ଚ ଯଥାକ୍ରମମ୍ ।୨୦।

ବ୍ରହ୍ମାଣ୍ଡମନ୍ତଃଶୁଷିରଂ ଯଦେଦଂ ଭୂର୍ଭୁବାଦିକମ୍ ।
କଟାହ ଦ୍ୱିତୟସ୍ୟୈବ ସଂପୁଟଂ ଗୋଲକାକୃତ ।୨୧।

ବ୍ରହ୍ମାଣ୍ଡମଧ୍ୟେ ପରିଧିର୍ବ୍ୟୋମକକ୍ଷାଭିଧୀୟତେ ।
ତନ୍ମଧ୍ୟେ ଭ୍ରମଣଂ ଭାନାଂ କ୍ରମଶୋଽଧଃ କ୍ରମାଦଧଃ ।ଇତ ।୨୨।

ବେଦ ଉପରେ ସେ ଦୃଷ୍ଟି ରଖି ଗୁଣ ଓ କର୍ମର ବିଭାଗାନୁସାରେ ପୁଣି ପୂର୍ବପର ନିଜର ଅଭିରୁଚି ଅନୁସାୟୀ ବିଭାଗ କଳ୍ପନା କରିଗଲେ । ଏ ବିଭାଗ ଭିତରେ ଆସିଲେ ଗ୍ରହ, କ୍ରାନ୍ତି ବୃତ୍ତୀୟ ନକ୍ଷତ୍ର ଓ ତାରା । ପରେ ପୁଣି ପୃଥିବୀ, ବିଶ୍ୱବ୍ରହ୍ମାଣ୍ଡ, ଦେବ ଅସୁର ମାନବ ଓ ସିଦ୍ଧ ତାହାର ମଧ୍ୟରେ ଆସି ରଚିତ ହେଲେ ।

ବ୍ରହ୍ମାଣ୍ଡ ଭିତରଟା ଫମ୍ପା । ଏହି ଫମ୍ପା ଭିତରେ ଭୂ, ଭୁବ ଓ ସ୍ୱ ଆଦି ଲୋକ ବରାବର ରହୁଅଛନ୍ତି । ଏହି ବ୍ରହ୍ମାଣ୍ଡଟା ଗୋଲ ଯେପରି ଦୁଇଟି କଡେ଼ଇ ଧାରରେ ମିଶିଗଲେ ହୁଏ ।

ବ୍ରହ୍ମାଣ୍ଡ ଭିତରେ ଯେଉଁ ପରିଧି ତାହାକୁ ବ୍ୟୋମ କକ୍ଷା କହନ୍ତି । ସେଥିରେ ଉର୍ଦ୍ଧ୍ୱାଧିର କ୍ରମରେ ନକ୍ଷତ୍ରମାନଙ୍କର (ଗ୍ରହମାନଙ୍କର) ଭ୍ରମଣ ହୁଏ ।

ଇତ ସୌରୋକ୍ତପଦ୍ୟାନାଂ ବିଂଶତ୍ୟା ସୂଚିତଃ କ୍ରମଃ ।
ଅଥୈତଦୁକ୍ତସୂର୍ଯ୍ୟାଦସ୍ୱରୂପଂ ପ୍ରବିବିଚ୍ୟତେ । ୨୩ ।

ଚତୁର୍ବ୍ୟୂହ-ପ୍ରକାରେଣ କୃତଃ ସର୍ବତ୍ର ସର୍ବଦା । ଇତ ।
ଇତ ଶ୍ରୀନାରଦୀୟୋକ୍ତେଃ ପ୍ରଦ୍ୟୁମ୍ନୋଽଦ୍ୱୈବ ପଦ୍ମଭୂଃ । ୨୪ ।

ତତ୍କାରଣଂ ମହତ୍ତତ୍ତ୍ୱରୂପୀ ଯଃ ସୂର୍ଯ୍ୟ ଉଚ୍ୟତେ ।
ତତୋଽନ୍ୟଃ କଥ୍ୟତେ ଭୂୟଃ କାର୍ଯ୍ୟ ରୂପୀ ସ୍ୱୟଂଭୁବଃ । ୨୫ ।

ଅତୋ ଦ୍ୱୈରୂପ୍ୟମର୍କସ୍ୟ ବ୍ରହ୍ମାଣ୍ଡାନ୍ତଃ ପ୍ରତୀୟତେ ।
ତତ୍ରାଦ୍ୟସ୍ୟାମୃଭୂଧସ୍ତ୍ରକର୍ତ୍ତୃତ୍ୱଂ ସମ୍ଭବତ୍ୟତଃ । ୨୬ ।

ଦ୍ୱିତୀୟସ୍ୟାସୁରମର୍ତ୍ତ୍ୟପିତୃମର୍ତ୍ତ୍ୟଦନେଶ ତା ।
ବମ୍ବଦେବାତ୍ମକତ୍ୱାଚ ସୂର୍ଯ୍ୟାଦୀନାଂ ଦ୍ୱିରୂପତା । ୨୭ ।

ଗତ ୨୦ ଶ୍ଳୋକଦ୍ୱାରା ସୂର୍ଯ୍ୟ ସିଦ୍ଧାନ୍ତ ସୃଷ୍ଟି ପ୍ରକାଶର କ୍ରମ ଦେଖାଇ ଦିଆଗଲା । ଏଗୁଡ଼ିକର ବର୍ତ୍ତମାନ ବିଚାର କରାଯାଉଅଛି । ପୃଥ ସ୍ତରରେ ସବୁବେଳେ କାର୍ଯ୍ୟ ସମ୍ପାଦିତ ହୋଇଥାଏ । ଏ କଥା ନାରଦୀୟ ପୁରାଣରେ ଅଛି । (ଯଥା ବାସୁଦେବ ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ) ପ୍ରଦ୍ୟୁମ୍ନହିଁ ପଦ୍ମଭୂ ବ୍ରହ୍ମା । ଏହାଙ୍କର କାରଣ ମହତ୍ତ୍ୱର ରୂପୀ ସୂର୍ଯ୍ୟ ବୋଲି କଥିତ ଅଛି । ସ୍ୱୟମ୍ଭୂଙ୍କର କାର୍ଯ୍ୟ ରୂପୀ ସୂର୍ଯ୍ୟ ପୁଣି ଅଛନ୍ତି । କାରଣ ସୂର୍ଯ୍ୟରୁ ବ୍ରହ୍ମା ଓ ବ୍ରହ୍ମାଠାରୁ କାର୍ଯ୍ୟରୂପୀ ଏହି ସୂର୍ଯ୍ୟର ଉତ୍ପତ୍ତି । ଏଥିରୁ ସିଦ୍ଧ ହେଲା ଯେ ସୂର୍ଯ୍ୟ ଦୁଇଟି । ପ୍ରଥମ ସୂର୍ଯ୍ୟ ଆଦିଦେବ (ବ୍ରହ୍ମା) ଙ୍କର ଆତ୍ମା, ଭୂମିର ମାଲିକ । ୨ୟ ସୂର୍ଯ୍ୟଟି ଅସୁର, ମାନବ, ଦେବ ଓ ପିତୃ ଏମାନଙ୍କର କର୍ତ୍ତା ଅଟନ୍ତି । ବିମ୍ବ ଓ ଅନ୍ୟ (ଦେବ ଭାବରେ) ଦେବତା ଭାବରେ ସୂର୍ଯ୍ୟର ଦ୍ୱିରୂପତା ଗ୍ରହଣ କରିବା ଉଚିତ୍ ।

ତୈଜସଂ ଭାସ୍ୱତୋ ବମ୍ବମୁଦ୍ଭୂତଂ ସ୍ୱର୍ଣ୍ଣରୂପକମ୍ ।
ପାଞ୍ଚଭୌତିକମପ୍ୟେତଦ୍ ଭାସ୍ୱରତ୍ୱାତ୍ ପ୍ରଦୀପବତ୍ । ୨୮ ।

ଅପ୍ୟାଷ୍ଟୌ ଭାନୁବମ୍ବସ୍ୟାରମ୍ଭକା ଭୂତଭାଗକାଃ
ଚତ୍ୱାରସ୍ତୈଜସୋଽନ୍ୟେଷାମେକୈକୋଽଂଶଃ ପ୍ରକୀର୍ତ୍ତିତଃ ।୨୯।

ତେଜଃ ପ୍ରାଧାନ୍ୟତଃ ସୂର୍ଯ୍ୟସ୍ତୈଜସଃ ପ୍ରୋଚ୍ୟତେଽଖିଳୈଃ ।
କିନ୍ତୁ ଦିବ୍ୟଂ ରବେସ୍ତେଜୋ ଭୌମାଚ୍ଛତଗୁଣାଧିକମ୍ । ୩୦ ।

ସୂର୍ଯ୍ୟଙ୍କର ବିମ୍ବ ତେଜଃ ପୂର୍ଣ୍ଣ । ତେଜ ସ୍ୱର୍ଣ୍ଣରୁ ଜାଣି ହେବ । ଏହା ପଞ୍ଚଭୂତରେ ଗଢ଼ା ହେଲେ ମଧ୍ୟ ଏଥିରେ ଅସରନ୍ତି ତେଜଃପୁଞ୍ଜ ଥିବାରୁ ପ୍ରଦୀପପରି ଆଲୋକ ପ୍ରଦାନ କରୁଅଛି । ଏହି ସୂର୍ଯ୍ୟ ବିମ୍ବର ଆଠଟି ଭୂତ ବିଭାଗ ଅଛି । ଏଥିରୁ ୪ଟି ତେଜୋ ଜାତ ଓ ଅନ୍ୟ ଚାରୋଟି ଅନ୍ୟ ଚାରି ଭୂତର ଅଧିନାୟକତ୍ୱ କରନ୍ତି । ତେଜର ପ୍ରଧାନତାକୁ ନେଇ ସୂର୍ଯ୍ୟଙ୍କୁ ସମସ୍ତେ ତୈଜସ କହନ୍ତି । କିନ୍ତୁ ଦିବ୍ୟ ରବିର ତେଜ ଏହି ଭୌମ ଅଗ୍ନି ଆଦି ତେଜଠାରୁ ଶହେ ଗୁଣ ଅଧିକ ।

ଶୀତସ୍ପର୍ଶାଧିକରଣଂ ବମ୍ବମାପ୍ୟଂ ହିମଦ୍ୟୁତେଃ ।
କରକାବଦ୍ ତଦାରବ୍ଧଂ ଚତୁର୍ଭିର୍ଜଳ ଭାଗକୈଃ । ୩୧ ।

ଏକୈକଭାଗୈରନ୍ୟେଷାଂ ଭୂତାନାଂ ତଦ୍ଯତ୍ ପୁନଃ ।
ପରପ୍ରକାଶକତ୍ୱଂ ତଦ୍ଭାନୁମଦ୍ଭାନ୍ ସଂକ୍ରମାତ୍ । ୩୨ ।

**ପ୍ରଥମାଂ ପ୍ରବଦତେ ବହ୍ନେଃ କଳାମିତ୍ୟାଦ ଯତ୍ ସ୍ମୃତେଃ ।**
**ବାକ୍ୟଂ ଶୌକ୍ଲ୍ୟାପଚୟତୋ ନୈବେଦଂ ପାରମାର୍ଥିକମ୍ । ୩୩ ।**

ସୂର୍ଯ୍ୟବିମ୍ବ ତୈଜସ ହେଲେ ମଧ୍ୟ ସେଥିରେ ଗୁରୁଭାଗ ତେଜ ଓ ଅନ୍ୟ ମହାଭୂତରୁ ପ୍ରତ୍ୟେକ ଏକ ଏକ ଭାଗ ମିଶିଅଛନ୍ତି ।

ଠିକ୍ ଏହିପରି ଚନ୍ଦ୍ରବିମ୍ବ ଜଳମୟ ହେଲେ ମଧ୍ୟ ଏଥିରେ ଗୁରୁଭାଗ ଜଳ ଓ ଅନ୍ୟ ଭୂତରୁ (ପ୍ରତ୍ୟେକରୁ) ଏକଭାଗ କରି ଅଛି । ଚନ୍ଦ୍ରବିମ୍ବରେ ଶୈତ୍ୟ ମଧ୍ୟ ଅଛି । ଏହା କୁଆ-ପଥର ପରି ଥଣ୍ଡା । ସୂର୍ଯ୍ୟଙ୍କ ସମ୍ପର୍କରୁ ତାହା କିରଣଶାଳୀ ହୁଏ । ଚନ୍ଦ୍ରଙ୍କର ପ୍ରଥମ କିରଣକୁ ପ୍ରଥମେ ଅଗ୍ନି ଖାଏ । ତା ପରେ ଅନ୍ୟମାନେ ଖାନ୍ତି । ସ୍ମୃତିରେ ଏପରି ଯେଉଁ ବ୍ୟବସ୍ଥା ସବୁ ଅଛି ତାହା ବାସ୍ତବରେ ଯଥାର୍ଥ ନୁହେଁ । ଚନ୍ଦ୍ରର ଶୁକ୍ଳତା କମିଯିବାରୁ ଏପରି କୁହାଯାଇଥାଏ ମାତ୍ର ।

**ତେଜସଃ ସ୍ୟାତ୍ କଥଂ ପାନଂ ଦୃଷ୍ଟିଭୋଗୋଽବ କେବଳଃ ।**
**ଦେବଦତ୍ତେନ ଭୁଜ୍ୟନ୍ତେ ଗ୍ରାମାଃ ସ ଇତବନ୍ମତଃ । ୩୪ ।**

**କଳାଶବ୍ଦେନ ତଦ୍‌ବୃଦ୍ଧିକ୍ଷୟାଭ୍ୟାମୁପଲକ୍ଷିତଃ ।**
**କାଳ ଏବୋଚ୍ୟତେ ନୋ ଚେଦ୍‌ପତେଦ୍ଦର୍ଶେଽଖିଳକ୍ଷତଃ । ୩୫ ।**

**ଭୂୟସାଲ୍ପସ୍ୟ ବାଧଃ ସ୍ୟାଦତ ନ୍ୟାୟେନ ଶୀତଗୋଃ ।**
**ଶୈତ୍ୟେନାସ୍ତ୍ୟୋଷ୍ଣତାନୁଷ୍ଣା ଶୀତସ୍ପର୍ଶୋଽନ୍ୟଥା ଭବେତ୍ । ୩୬ ।**

ତେଜଦ୍ରବ୍ୟର ପାନ ହୋଇ ନ ପାରେ । ଏହାକୁ ଆଖି ହିଁ ଦେଖିପାରେ ବା ଭୋଗ କରିପାରେ । ଦେବଦତ୍ତ ଗାଁ ଭୋଗ କରୁଛି ଯେପରି ବ୍ୟବହାର ଅଛି, ଠିକ୍ ସେହିପରି ତେଜଃପାନର ବ୍ୟବହାର ବୋଲି ବୁଝିବାକୁ ପଡ଼ିବ ।

କଳା ଶବ୍ଦର ପ୍ରୟୋଗରୁ ବୁଝାପଡ଼ୁଛି ଯେ ଚନ୍ଦ୍ରକିରଣର ହ୍ରାସ ବୃଦ୍ଧି ସମୟକୁ ନେଇ ଏହି କଥା କୁହାଯାଇଛି, ତା' ନ ହେଲେ ଅମାବାସ୍ୟାରେ ସବୁ ଚନ୍ଦ୍ରକିରଣର କ୍ଷୟ ହେଉଥାନ୍ତା ଏବଂ ଆଉ କଳାବୃଦ୍ଧିର କଥା ଉଠନ୍ତା ନାହିଁ । ବହୁରେ ଅଳ୍ପର ବାଧା ହୋଇ-ଥାଏ, ଏହା ଗୋଟିଏ ଯୁକ୍ତିଯୁକ୍ତ କଥା । ଚନ୍ଦ୍ରର ଶୈତ୍ୟ ବାହୁଲ୍ୟରୁ ଉଷ୍ଣତା ବୋଧ ହୁଏ ନାହିଁ । କିନ୍ତୁ ଚନ୍ଦ୍ରରେ ଆଦୌ ଉଷ୍ଣତା ନାହିଁ, ଏପରି ନୁହେଁ । ଉଷ୍ଣତା ଆଦୌ ନ ଥାଇ ଶୀତସ୍ପର୍ଶ ଅନ୍ୟପ୍ରକାରର ହୋଇଥାଏ ।

**ଜଳପ୍ରାୟୈରବଧୋଃ ପୃଷ୍ଟେ କଷ୍ଟାବୃକ୍ଷାଦୟୋ ଜନୈଃ ।**
**କଳଙ୍କତ୍ୱେନ ବର୍ଣ୍ଣ୍ୟନ୍ତେ ନାନାପ୍ରାଚୀନବାଙ୍‌ମୟୈଃ । ୩୭ ।**

ଚନ୍ଦ୍ରବନ୍ମଙ୍ଗଳାଦ୍ୟାସ୍ତେ ପ୍ରାଗୁକ୍ତା ଭନ୍ତ ତୁ ସ୍ୱତଃ ।
ତୈଜସାନୀତ୍ୟହଂ ବଚ୍ମି ଜଗୁର୍ଯପ୍ୟାନ୍ତ କେଚନ । ୩୮ ।

ଆପ୍ୟତ୍ୱେ ତୁ ଭକକ୍ଷାୟାଂ ଦୃଶ୍ୟତେଽର୍କସ୍ୟ ବସ୍ତୃତଃ ।
ଵିକଳାପଞ୍ଚକଂଯସ୍ମାତ୍ତସ୍ତତ୍କରସଂକ୍ରମାତ୍ । ୩୯ ।

ତାଦୃଗୁଜ୍ଜ୍ୱଳତା ଭାନାଂ ନ ସମ୍ଭବତ ତାନ୍ୟଥ ।
ଯଦ୍ୟର୍କସମତେଜାଂସି ତଦା ନ ସ୍ୟାତ୍ତମୋ ନିଶି । ୪୦ ।

ଚନ୍ଦ୍ରବିମ୍ବ ଜଳମୟ । ସେଥିରେ ବୃକ୍ଷ, ପର୍ବତାଦି ଅଛି । ସେଗୁଡ଼ିକ କଳଙ୍କ ରୂପରେ ବର୍ଣ୍ଣିତ ହୋଇଅଛି । ସେଥି ସମ୍ପର୍କରେ ନାନା ପ୍ରାଚୀନ କଥା ମଧ୍ୟ ଅଛି ।

ଚନ୍ଦ୍ର ପରି ମଙ୍ଗଳ ଆଦି ତାରାଗ୍ରହଗୁଡ଼ିକ ମଧ୍ୟ ସ୍ୱତଃ ତୈଜସ ବୋଲି ମୋର ମତ । କେହି କେହି ଏଗୁଡ଼ିକୁ ଜଳବିମ୍ବ ବୋଲି ମଧ୍ୟ କହି ଅଛନ୍ତି । ଏ କଥା ଅର୍ଥାତ୍ ଏହି ମତ ମତାନ୍ତର ବହୁ ଆଗରୁ ଅଛି ।

ନକ୍ଷତ୍ର ଗୋଲରେ ରବିର ବିସ୍ତାର ଅର୍ଥାତ୍ ବ୍ୟାସ ୫ ବିକଳା ମାତ୍ର । ତେଣୁ ସେଗୁଡ଼ିକ ଖାଣ୍ଟି ଜଳ ଗୋଲ ହୋଇଥିଲେ (ଭଗୋଳରେ ଏତିକ ଶ୍ଳୋକ) ରବିର କିରଣ ଯୋଗେ ସେମାନଙ୍କର ଏତେ ବେଶି ଉଜ୍ଜ୍ୱଳତା ହୁଅନ୍ତା ନାହିଁ । ପକ୍ଷାନ୍ତରେ ସେଗୁଡ଼ିକ ସୂର୍ଯ୍ୟ ପରି ତୈଜସ ହୋଇଥିଲେ ରାତିରେ ଆଉ ଅନ୍ଧକାର ରହିପାରନ୍ତା ନାହିଁ । (ଅର୍ଥାତ୍ ସେଗୁଡ଼ିକ ସୂର୍ଯ୍ୟ ପରି ତୈଜସ ବା ଚନ୍ଦ୍ର ପରି ଜଳମୟ ନୁହନ୍ତି ।)

ତତସ୍ତ୍ୱଙ୍ଗୀକୃତଂ ଭୌମଜ୍ୟୋତଶ୍ଚୌପାଧିକୋପମଂ ।
ସୂର୍ଯ୍ୟାଂଶୂପାଧିଜଂ ତେଜୋ ଯଦ୍‌ଗ୍ରହେଷୁ ତଥେକ୍ଷ୍ୟତେ । ୪୧ ।

ବର୍ଣ୍ଣଭେଦୋ ଯଥା ବହ୍ନେଃ ସ୍ୟାଦାଧାର ବିଶେଷତଃ ।
ତଥା ଭେଷୁ ଗ୍ରହେଷୁ ସ୍ୟାଦ୍‌ଭିନ୍ନା ସ୍ୱୌପାଧିକୀ ଦ୍ୟୁତଃ । ୪୨ ।

ତେଣୁ ସେଗୁଡ଼ିକର ଔପାଧିକ ପାର୍ଥିବ ଜ୍ୟୋତି ଅଛି ବୋଲି ସ୍ୱୀକାର କରାଯାଇଅଛି । ସର୍ଯ୍ୟର ଔପାଧିକ ତେଜ-ଯାହା, ଗ୍ରହ ଉପରେ ପଡ଼େ ତାହା ଦେଖାଯାଇଥାଏ ମାତ୍ର । ଆଧାରକୁ ନେଇ ଅଗ୍ନିର ଯେପରି ବର୍ଣ୍ଣଭିନ୍ନତା ଦେଖାଯାଇଥାଏ, ଠିକ୍ ସେହିପରି ସୂର୍ଯ୍ୟର ଗୋଟିଏ ବର୍ଣ୍ଣର କିରଣ ଭିନ୍ନ ଭିନ୍ନ ଗ୍ରହରେ ଭିନ୍ନ ଭିନ୍ନ ବର୍ଣ୍ଣ ଧାରଣ କରେ ।

ପିତରଶ୍ଚନ୍ଦ୍ରବିମ୍ବସ୍ୟ ଶ୍ରୂୟନ୍ତେ ପୃଷ୍ଠବାସିନଃ ।
ଯଥାତଥାନ୍ୟଗ୍ରହଭେଷ୍ୱପି ସ୍ଥାନଂ ପ୍ରତୀୟତେ । ୪୩ ।

ଯଦ୍ୟଯଦ୍ଭୂତମୟ୍ୟା ଲୋକାସ୍ତତ୍ର ତନ୍ମୟଦେହିନଃ ।
ବର୍ତ୍ତନ୍ତେ ପାର୍ଥିବାଂଶସ୍ୟ ସଂପର୍କାଦ୍‌ବ୍ୟବହାରଣଃ । ୪୪ ।

ବ୍ରହ୍ମାଣ୍ଡମଧ୍ୟସଂସ୍ଥାନୋ ଭୂଗୋଲଃ ପାଞ୍ଚଭୌତିକଃ ।
ତଦାରମ୍ଭକତାମାପ୍ତଂ ଭୂମିଭାଗ-ଚତୁଷ୍ଟୟମ୍ । ୪୫ ।

ଜଳାଦ୍ୟଭୂତଭାଗାନାଂ ଚତୁଷ୍କଂ ପୂର୍ବବନ୍ମତମ୍ ।
ପୃଷ୍ଠମସ୍ୟାବ୍ଧିଭାଗଂସଜ୍‌ଜଳଭାଗବୟାନ୍ୱିତମ୍ । ୪୬ ।

ଏକେନ ସ୍ଥଳଭାଗେନ ଲକ୍ଷ୍ୟତେ ପ୍ରାୟଶୋ ଜନୈଃ ।
ଗୋଳପୃଷ୍ଠ-ଚତୁର୍ଥାଂଶସ୍ଥଳେଽଖିଳଜନସ୍ଥିତିଃ । ୪୭ ।

ଚନ୍ଦ୍ରର ପୃଷ୍ଠଦେଶରେ ପିତୃଲୋକ ରହନ୍ତି ବୋଲି (ଶାସ୍ତ୍ରରୁ) ଶୁଣା ଯାଇଥାଏ । ଠିକ୍ ସେହିପରି ଅନ୍ୟାନ୍ୟ ଗ୍ରହରେ ଅନ୍ୟାନ୍ୟ ପ୍ରାଣୀ ବାସ କରୁଥିବା ଜଣାଯାଏ ।

ଯେଉଁ ମହାଭୂତର ପ୍ରାଚୁର୍ଯ୍ୟରେ ଯେଉଁ ଲୋକ ବା ଭୁବନ (ଗ୍ରହ ?) ତିଆରି କରାଯାଇଅଛି ସେଥିରେ ସେହି ମହାଭୂତର ପ୍ରାଣୀ ବେଶି ରହିବା କଥା । ଯେଉଁ ପ୍ରାଣୀମାନେ ପୃଥିବୀ ଭାଗର ସମ୍ପର୍କରେ ବେଶି ଆସକ୍ତ ସେହିମାନେହିଁ ସେହି ପୃଥିବୀରେ ବେଶି ବ୍ୟବହାରରେ ଲାଗନ୍ତି ।

ବ୍ରହ୍ମାଣ୍ଡ ମଧ୍ୟରେ ଥିବା ଏହି ପୃଥିବୀ ଗୋଲଟି ପଞ୍ଚଭୂତମୟ । ଏହାର ଆରମ୍ଭରେ ୪ ଭାଗ ମାଟି ଥିଲା । ଜଳ, ବାୟୁ, ଅଗ୍ନି, ଆକାଶ, ଏହି ଚାରୋଟି ମହାଭୂତ ପ୍ରତ୍ୟେକ ଏକ ଏକ ଭାଗ ଏଥିରେ ଥିଲେ । ପୃଥିବୀ ପୃଷ୍ଠର ଚାରିଭାଗରୁ ଏକଭାଗ ମାତ୍ର ସ୍ଥଳ । ବାକୀ ତିନିଭାଗ ଜଳରେ ପରିପୂର୍ଣ୍ଣ, ଏହା ଲୋକେ ଦେଖୁଅଛନ୍ତି । ଏହି ଚାରି ଭାଗରୁ ଭାଗେ ସ୍ଥଳ—ପୃଷ୍ଠରେ ଜନମାନବ ରହି ଅଛନ୍ତି ।

ଲବଣୋଦଧିମଧ୍ୟସ୍ଥଂ ମହାଦ୍ୱୀପଦ୍ୱୟଂ ପୃଥକ୍ ।
ଉର୍ଦ୍ଧାଧଃବିଭାଗଂ ତତ୍ର ମହାନୂର୍ଦ୍ଧ୍ୱେଽଧରସ୍ତନୁଃ । ୪୮ ।

ଅଧଃସ୍ଥସ୍ୟୋତ୍ତରାର୍ଦ୍ଧେନ ସହୋର୍ଦ୍ଧ୍ୱଃ କଥିତୋ ବୁଧୈଃ ।
ଜମ୍ବୁଦ୍ୱୀପାଖ୍ୟୟାଧଃସ୍ଥ-ଦ୍ୱୀପସ୍ୟାର୍ଦ୍ଧନ୍ତୁ ଦକ୍ଷିଣମ୍ । ୪୯ ।

କଥ୍ୟତେ ହ୍ୟାସୁରୀ ଭୂମିର୍ଭାଗୌର୍ଦ୍ଧ୍ୱାଦେଶଭିର୍ଯୁତମ୍
ତତ୍ରଃ ଷଟ୍ ସାଗରା ଦ୍ୱୀପା ହ୍ରଦଦେଶୋପମାଃ ସ୍ଥିତାଃ । ୫୦ ।

ଜମ୍ବୁଦ୍ୱୀପସ୍ତୁ ବହୁଧା ବିଭକ୍ତୋ ବର୍ଷପର୍ବତୈଃ ।
ତତ୍ତନ୍ମାନାନି នୋକ୍ତାନି ବ୍ରହ୍ମସୂର୍ଯ୍ୟାଂଶ ଭାସ୍କରୈଃ । ୫୧ ।

ଯତ୍ତୁ ବିସ୍ତୃତ-ଗୋଲାଦୌ ବର୍ଣ୍ଣିତଂ ଭୂଧରାଦିକମ୍ ।
ତତ୍ତଦ୍ଦୃଷ୍ଟିବିରୁଦ୍ଧତ୍ୱାତ୍ ନାମୈନ୍ନବ ଗଦିତଂ ବୁଧୈଃ । ୫୨ ।

ତତ୍ତତ୍ ଶାସ୍ତ୍ରୋଦିତୋ ମେରୁଃ କୃତାଷ୍ଟ-ଯୋଜନୋଚ୍ଛ୍ରିତଃ ।
କଳାକୃତମିତୋ ମୂଳ ଊର୍ଦ୍ଧ୍ୱସ୍ଥଳ୍ୟାଂ ନ ଖାଗ୍ନିଭିଃ । ୫୩ ।

ବର୍ଷାଚଳା ହିମାଦ୍ର୍ୟାଦ୍ୟାଃ ପଞ୍ଚାଶଦ୍ ଯୋଜନୋଚ୍ଛ୍ରିତାଃ ।
ତାବତ୍ପ୍ରସ୍ଥାଶ୍ଚ ତତ୍ରାୟଂ କ୍ରିୟତେ ଗଣିତକ୍ରମଃ । ୫୪ ।

ଯସ୍ମାଦ୍‌ଗୋଲସ୍ଥଶୈଳାଦଶଂକୂନାଂ ଦୂରବର୍ତ୍ତୀନାମ୍ ।
ବ୍ୟବଧା ଦୃଶ୍ୟତା ମାନଂ ଦୃଷ୍ଟିସୀମା ଚ ବୋଧ୍ୟତେ । ୫୫ ।

ଲବଣ ସମୁଦ୍ର ମଧ୍ୟରେ ଯୋଡ଼ିଏ ମହାଦ୍ୱୀପ ଅଛି । ଗୋଟିଏ ଊର୍ଦ୍ଧ୍ୱ ଓ ଅନ୍ୟଟି ଅଧ ମହାଦ୍ୱୀପ । ଏ ଦୁଇଟି ମଧ୍ୟରୁ ପ୍ରଥମଟି ବେଶି ବଡ଼; କିନ୍ତୁ ଅଧୋ ମହାଦ୍ୱୀପଟି ସାନ । ତଳେ ଥିବା ଅଧୋ ମହାଦ୍ୱୀପର ଉତ୍ତରାଂଶକୁ ନେଇ ଊର୍ଦ୍ଧ୍ୱ ମହାଦ୍ୱୀପ ଗଠିତ ହୋଇଅଛି । ଏହାର ନାମ ଜମ୍ବୁଦ୍ୱୀପ । ତଳେ ଥିବା ଦ୍ୱୀପର ୧/୧୨ ଅଂଶ ସହିତ ଦକ୍ଷିଣାର୍ଦ୍ଧ ଅସୁର ଭୂମି ନାମରେ ଖ୍ୟାତ । ଏହି ଦକ୍ଷିଣାର୍ଦ୍ଧ—ଅସୁର ଭୂମିରେ ହ୍ରଦ ଓ ଜନପଦ ସଦୃଶ ଛ'ଟି ସାଗର ଓ ଅନେକ ଦ୍ୱୀପ ଅଛନ୍ତି । ଜମ୍ବୁଦ୍ୱୀପ ବର୍ଷ [ ଦେଶ ] ପର୍ବତ ମାନଙ୍କଦ୍ୱାରା ବହୁ ଭାଗରେ ବିଭକ୍ତ ହୋଇ ରହିଛି । ବ୍ରହ୍ମଗୁପ୍ତ, ସୂର୍ଯ୍ୟାଂଶ ପୁରୁଷ ବା ଭାସ୍କର କେହିହେଲେ ଏ ଗୁଡ଼ିକର ପରିମାଣ କହିନାହାନ୍ତି ।

ବିସ୍ତର ଭାବରେ ବର୍ଣ୍ଣିତ ଭୂଗୋଳ ଆଦିରେ ଯେଉଁ ପର୍ବତ ଆଦିର ବର୍ଣ୍ଣନା ଅଛି, ଦୃଷ୍ଟି ବିରୋଧ ହେତୁ ସେ ଗୁଡ଼ିକର ବର୍ଣ୍ଣନା ନାମମାତ୍ରରେହିଁ ପଣ୍ଡିତମାନେ ରଖିଛନ୍ତି (ଏ ବର୍ଣ୍ଣନା ବାସ୍ତବ ନୁହେଁ) । ମେରୁ ପର୍ବତର ଉଚ୍ଚତା ୮୪ ଯୋଜନ ବୋଲି ସେହିସବୁ ଶାସ୍ତ୍ରରେ ଅଛି । ମୂଳ ଦେଶରେ ଏହାର ବିସ୍ତୃତ ୧୫୬ ଯୋଜନ, ଊର୍ଦ୍ଧ୍ୱରେ ଥିବା ଏହାର ଭୂମି ୩୨୦ ଯୋଜନ ବିସ୍ତୃତ ।

ହିମାଦ୍ରି ପ୍ରଭୃତି ବର୍ଷ ପର୍ବତ ଗୁଡ଼ିକର (ପ୍ରତ୍ୟେକର) ଉଚ୍ଚତା ୫୦ ଯୋଜନ ମାତ୍ର । ଏମାନଙ୍କର ପ୍ରସ୍ଥ ମଧ୍ୟ ୫୦ ଯୋଜନ । ବର୍ତ୍ତମାନ ଏ ବିଷୟରେ ଗୋଟିଏ ଗଣିତ ପ୍ରକାର ଦେଖାଇ ଦିଆଯାଉଅଛି । ଯେଉଁଥିରୁ ଦୂରରେ ଥିବା ପର୍ବତ, ଶଙ୍କୁ ଇତ୍ୟାଦିର ବ୍ୟବଧାନ ଦୃଶ୍ୟାଦୃଶ୍ୟମାନ ଓ ଦୃଷ୍ଟି ସୀମା ଜାଣିହୋଇପାରିବ । ଅବଶ୍ୟ ଏ ସବୁ ପୃଥିବୀ ଗୋଲ ଉପରେ ଥିବା ସବୁ ବସ୍ତୁର ହିଁ ହେବ ।

ଅଭୀଷ୍ଟମାନକେ ଗୋଲେ ଭଚକ୍ରତେ୍ୱନ କଳ୍ପିତେ ।
ସ୍ଥାପ୍ୟଃ ସ୍ୱେଚ୍ଛାମିତଃ ଶଙ୍କୁଃ ସଚକ୍ରକଳକାହୃତଃ । ୫୬ ।

ଗୋଲବେଷ୍ଟନମାନେନ ହୃତଃ ସଂସ୍କୃତନାମକଃ ।
ସଦ୍ୱିଧୋଦ୍ଧ୍ୱ ସ୍ତ୍ରିଜୀବାଘ୍ନସ୍ତ୍ରିଜ୍ୟାଯୁକ୍ତାଧରୋଦ୍ଧୃତଃ । ୫୭ ।

ଫଳମୁତ କ୍ରମଜୀବା ତତ୍ଚାପଂ ଦୃଙ୍ମାର୍ଗଲିପ୍ତିକାଃ ।
ତା ଗୋଲପରଧିକ୍ଷୁଣ୍ଣା ଭଚକ୍ରକଳକୋ-ଦ୍ଧୃତାଃ । ୫୮ ।

ଶଙ୍କୁଦର୍ଶନସୀମା ସ୍ୟୁସ୍ତତୋ ଦୂରେ ସ ନେକ୍ଷ୍ୟତେ ।

ଇଷ୍ଟ ପରିମାଣର ଗୋଲ କଳ୍ପନାକର । ଏଠାରେ ଭୂଗୋଲକୁ ନଆଯାଉ ଏବଂ ଏହାକୁ ରାଶିଚକ୍ର ଭାବରେ ଧରି ନିଆଯାଉ । ତାହାର ଉପରେ ଇଷ୍ଟ ପରିମାଣର ଶଙ୍କୁ ସ୍ଥାପନା କର । ତାହାକୁ ରାଶିଚକ୍ର କଳା ( ୩୬୦ × ୬୦ = ୨୧୬୦୦୦ କଳା ) ରେ ଗୁଣି ଭୂଗୋଳ ପରିଧି ପରିମାଣ ( ଯୋଜନ ) ରେ ହରି । ଫଳ ସଂସ୍କୃତ ନାମକ ଶଙ୍କୁ ହେବ । ଏହି ଶଙ୍କୁକୁ ଉପର ତଳ ଭାବରେ ଦୁଇ ଯାଗାରେ ରଖ । ଉପରେ ଥିବା ଶଙ୍କୁକୁ (ଶଙ୍କୁମାନ) ତ୍ରିଜ୍ୟା ୩୪୩୮ ରେ ଗୁଣି ତଳଶଙ୍କୁ ପରିମାଣଯୁକ୍ତ—ତ୍ରିଜ୍ୟାରେ ହରିଲେ ଫଳ ଉତ୍କ୍ରମଜ୍ୟା ହେବ । ତାହାର ଚାପ ଦୃଷ୍ଟିମାର୍ଗ କଳା ହେବ । ସେହି କଳାକୁ ଭୂଗୋଳ ପରିଧିରେ ଗୁଣି ଭଚକ୍ର କଳା ୨୧୬୦୦୦ ରେ ହରିଲେ ଶଙ୍କୁ ଦର୍ଶନ ସୀମା (ପରିମାଣ) ହେବ । (ଏହା ଦ୍ରଷ୍ଟା ଓ ଦ୍ରଷ୍ଟବ୍ୟ ବସ୍ତୁର ମଧ୍ୟବର୍ତ୍ତୀ ପରମାନ୍ତର ହେବ) ସେଥିରୁ ଦୂରରେ ଥିଲେ ଶଙ୍କୁ ଆଉ ଦେଖାଯିବ ନାହିଁ ।

ଉତ୍କ୍ରମଜ୍ୟା ନଗୋନା ଚେତ୍ତଦୂନତ୍ରିଜ୍ୟକାକୃତମ୍ ।୫୯।

ଉତ୍କ୍ରମଜ୍ୟା ୭ରୁ କମ୍ ହେଲେ ପ୍ରସିଦ୍ଧ ଖଣ୍ଡରେ ଚର ଚାପ କର ହେବ ନାହିଁ) ତାହାକୁ ତ୍ରିଜ୍ୟାରୁ ଫେଡ଼ ଫଳର ବର୍ଗକୁ ପୁଣି ତ୍ରିଜ୍ୟା ବର୍ଗରୁ ଫେଡ଼ିବ । ଅବଶେଷର ବର୍ଗମୂଳ ନେବ । ତାହା ଉକ୍ତ (ସପ୍ତୋନ) ଉତ୍କ୍ରମଜ୍ୟାର ଚାପ ହେବ ।

ତ୍ରିଜ୍ୟାକୃତେର୍ବିଶୋଧ୍ୟାତଃ ପଦମୁତ୍କ୍ରମକାର୍ମୁକଂ ।
ପଞ୍ଚମତ୍ୱୋତ୍କ୍ରମଜ୍ୟାୟା ଧନୁର୍ଯତ୍କଳିପ୍ତିକାଧିକମ୍ । ୬୦ ।

କିନ୍ତୁ ଏହି ସ୍ଥଳରେ ଉତ୍କ୍ରମଜ୍ୟାର ଯେ ଚାପ ଆସିବ ତାହା ପଞ୍ଚ କଳାଧିକ ହୋଇଥିବ ତାହାହେଲେ ଉତ୍କ୍ରମଜ୍ୟା ଅତ୍ୟନ୍ତ କମ୍ ହେବା ଦୃଷ୍ଟିରୁ ତାହାକୁ ବଳପ୍ରା ପର୍ଯ୍ୟନ୍ତ (ବିକଳା) ମିଶାଇ ଗ୍ରହଣ କରିବା ଉଚିତ ।

ଗ୍ରାହ୍ୟାତ୍ୟଲ୍ପୋତ୍କ୍ରମଜ୍ୟାବ ତଦ୍ବଲପ୍ତାଦଭିଃ ସମଂ ।
ହ୍ରମାଦ୍ରିଃ କଲ୍ପିତଃ ଶଙ୍କୁଃ ପଞ୍ଚାଶଦ୍‌ଯୋଜନୋଚ୍ଛ୍ରିତଃ । ୭୧ ।

ଷଡ୍‌ଭୁଜାଭ୍ରେଷୁ ମାନେଽସ୍ମିନ୍ ଭୂଗୋଲପରିଧୌ ସ୍ଥିତଃ ।
ସ ପ୍ରାଗ୍ବତ୍‌ସଂସ୍କୃତଃ ଶଙ୍କୁ ସ୍ତିଥିଦ୍ରୁକ୍ କଳକୋଽଭବତ୍ । ୭୨ ।

ଦ୍ୱିଃସ୍ଥାଦସ୍ମାଦୁତ୍କ୍ରମଜ୍ୟା ଦୃଙ୍‌ନଖାସ୍ତଦ୍ଧନୁଃକଲାଃ ।
ଦୃଙ୍‌ନାଗେଶା ଦୃଷ୍ଟିସୀମାଶରଭୈର୍ଯୋଜନୈର୍ମିତାଃ । ୭୩ ।

୫୦ ଯୋଜନ ଉଚ୍ଚ ହ୍ରମାଦ୍ରିକୁ ଶଙ୍କୁ ଧରାଗଲା । ଏହି ଶଙ୍କୁ ପୁଣି ୫୦୨୭ ଯୋଜନ ପରିମିତ ଭୂଗୋଲ ପରିଧି ଉପରେ ରହିଛି । ଏଣୁ ଏହି ଶଙ୍କୁର ସଂସ୍କୃତ ଶଙ୍କୁମାନ ହେଲା ୨୧୫ (ଏ ଶଙ୍କୁ ଆଣିବାର ସୂତ୍ର ଆଗରୁ କୁହାଯାଇଛି) । ଏହାକୁ ଦୁଇ ଯାଗାରେ ରଖି ଗୋଟିଏ ସ୍ଥାନରେ ତାହାର ଉତ୍କ୍ରମଜ୍ୟା ୨୦୨ ବାହାର କରାଗଲା । ଏହାର ଧନୁକଳା ହେଲା ୧୧୮୨ । ଏହାହିଁ ଦୃଷ୍ଟି ସୀମା କଳା ଆକାରରେ । ଏହାକୁ ଯୋଜନ କଲେ ହେବ ୨୭୫ । (ଏତିକି ଯୋଜନ ବ୍ୟବଧାନ ମଧ୍ୟରେ ଥିବା ଦ୍ରଷ୍ଟାର ୫୦ ଯୋଜନୋଚ୍ଚ ହ୍ରମାଦ୍ରି ଦର୍ଶନ ହୋଇ ପାରିବ ।)

ଦ୍ରଷ୍ଟୃଶଙ୍କ୍ୱନ୍ତରଧରାମାନଂ ଚନ୍ଦ୍ରକଳା ହତଂ ।
ହୃତଂ ପରିଧିମାନେନ ଲବ୍ଧା ଭୁଜକଳା ସ୍ମୃତଃ । ୭୪ ।

ଦ୍ରଷ୍ଟୃଦୃଶ୍ୟାନ୍ତରେ ରାଶିଏକ୍ୟୋନେ ଦୃଷ୍ଟିସମ୍ଭବଃ ।
ଭୁଜଲପ୍ତାଜ୍ୟକାବର୍ଗହୀନତ୍ରିଜ୍ୟାକୃତେଃ ପଦମ୍ । ୭୫ ।

କୋଟୀଜ୍ୟାତ୍ରିଗୁଣାଚ୍ଛୋଧ୍ୟାଶେଷଃ ସ୍ୟାଦୁତ୍କ୍ରମଜ୍ୟକା ।
ଅଥ କୋଟିଜ୍ୟୟାଭ୍ୟସ୍ତତ୍ରିଜ୍ୟାପ୍ତଃ ସଂସ୍କୃତୋ ନରଃ । ୭୬ ।

ସ୍ଫୁଟଶଙ୍କୁଃ ସ ଚେଦଲ୍ପ ଉତ୍କ୍ରମଜ୍ୟା ପ୍ରମାଣତଃ ।
ତଦା ନ ଦୃଶ୍ୟତେ ଭୂୟାନ୍ ଦୃଶ୍ୟତେ ବ୍ୟବଧାନଭିତ୍ । ୭୭ ।

ଉତ୍କ୍ରମଜ୍ୟୋନ୍ମିତଃ ସ୍ପଷ୍ଟଶଙ୍କୁର୍ଦୃଶ୍ୟଜ୍ୟକା ଭବେତ୍ ।
ଯା ତ୍ରିଜ୍ୟାଘ୍ନ୍ୟନ୍ତରଚ୍ଛେଦାତ୍‌ଥ ଭୁଜଜ୍ୟାପ୍ତୋନ୍ନତଜ୍ୟକା । ୭୮ ।

ତଦ୍ଧନୁର୍ଦୃଶ୍ୟଲପ୍ତାଃ ସ୍ୟୁସ୍ତଚ୍ଛଙ୍କୋଃ କ୍ଷିତଜୋପରି ।
ଦଶ୍ୟଜ୍ୟାପରିଧିଘ୍ନା ଚନ୍ଦ୍ରଲପ୍ତୋଦ୍ଧୃତା ଫଳମ୍ । ୭୯ ।

ଶଙ୍କୋର୍ଦୃଶ୍ୟାନ୍ନତଃ ସୋଽଥ ତ୍ରିଜ୍ୟାଘ୍ନୀ କୋଟିଭଜିତା ।
ଦୃଶ୍ୟଭଗଃ ସ୍ଫୁଟଃ ଶଙ୍କୋଃ ସ୍ୟାଦ୍‌ଯୋଜନକଲାଦକଃ ।୭୦।

ପରମ୍ୟଘ୍ନୋତ୍‌କ୍ରମଜ୍ୟାଥ ଭଚକ୍ରକଲକୋଦ୍ଧୃତା ।
ତ୍ରିଜ୍ୟାଘ୍ନୀ କୋଟିଜୀବାପ୍ତା ଲୁପ୍ତାଂଶପ୍ରମିତୈର୍ଭବେତ୍ ।୭୧।

ଦ୍ରଷ୍ଟା ଓ ଦୃଶ୍ୟ (ଦ୍ରଷ୍ଟବ୍ୟ) ବସ୍ତୁର ଅନ୍ତର୍ଗତ ଦୂରତାକୁ ୨୧୬୦୦ରେ ଗୁଣି ଭୂପରିଧିରେ ହରିଲେ ଭୁଜକଳା ହୁଏ । ଏହି ଭୁଜକଳାର ପରିମାଣ ତିନ ରାଶିରୁ କମ ହେଲେ ଦ୍ରଷ୍ଟା ଦୃଶ୍ୟବସ୍ତୁକୁ ଦେଖି ପାରିବ । ଭୁଜଲିପ୍ତାର ବର୍ଗକୁ ତ୍ରିଜ୍ୟାବର୍ଗରୁ ଅନ୍ତର କରି ଅନ୍ତର ଫଳର ବର୍ଗମୂଳ ନେଲେ କୋଟିଜ୍ୟା ହୁଏ । ସେହି କୋଟିଜ୍ୟାକୁ ତ୍ରିଜ୍ୟାରୁ ବାଦ ଦେଲେ ଅନ୍ତରଫଳ ଉତ୍କ୍ରମଜ୍ୟା ହୁଏ ।

ଏହାପରେ ସଂସ୍କୃତ ଶଙ୍କୁକୁ କୋଟିଜ୍ୟାରେ ଗୁଣି ତ୍ରିଜ୍ୟାରେ ଭାଗ ଦେଲେ ସ୍ଫୁଟ ଶଙ୍କୁ ହୁଏ । ଏହି ସ୍ଫୁଟ ଶଙ୍କୁ ଉତ୍କ୍ରମଜ୍ୟାରୁ କମ ହେଲେ ଦେଖାଯାଏ ନାହିଁ । ଯଦି ସ୍ଫୁଟ ଶଙ୍କୁ ଉତ୍କ୍ରମଜ୍ୟାରୁ ବେଶି ହୁଏ ତାହାହେଲେ ସେ ଏହି ବ୍ୟବଧାନକୁ ଭେଦ କରେ ଏବଂ ଦୃଶ୍ୟ ମଧ୍ୟ ହୁଏ । ସ୍ଫୁଟ ଶଙ୍କୁରୁ ଉତ୍କ୍ରମଜ୍ୟା ବାଦ ଦେଲେ ଦୃଶ୍ୟ ଜ୍ୟା ହୁଏ । ଏହି ଦୃଶ୍ୟଜ୍ୟାକୁ ତ୍ରିଜ୍ୟାରେ ଗୁଣି ଦ୍ରଷ୍ଟା ଓ ଦୃଶ୍ୟାନ୍ତର ଜ୍ୟାରେ ହରିଲେ ଉନ୍ନତ ଜ୍ୟା ହୁଏ । ଏହି ଉନ୍ନତ ଜ୍ୟାର ଭୂପ ପୃଷ୍ଠକ୍ଷିତିଜ ଉପରେ ସେହି ସଂସ୍କୃତ ଶଙ୍କୁର ଦୃଶ୍ୟ କଳା ହୁଏ । ଦୃଶ୍ୟକଳାର ଜ୍ୟା କରି ତାକୁ ଭୂପରିଧିରେ ଗୁଣି ଚକ୍ରକଳା ୨୧୬୦୦ରେ ହରିଲେ ଫଳ ଶଙ୍କୁର ଦୃଶ୍ୟୋନ୍ନତି ହୁଏ । ଏହି ଦୃଶ୍ୟୋନ୍ନତିକୁ ତ୍ରିଜ୍ୟାରେ ଗୁଣି କୋଟିଜ୍ୟାରେ ହରିଲେ ଫଳ ଶଙ୍କୁର ଯୋଜନାତ୍ମକ ସ୍ଫୁଟ ଦୃଶ୍ୟଭାଗ ହୋଇଥାଏ ॥ ପୁଣି ଉତ୍କ୍ରମ ଜ୍ୟାକୁ ଭୂପରିଧିରେ ଗୁଣି ଚକ୍ରକଳାରେ ଭାଗ କଲେ ଏବଂ ଏହି ଫଳକୁ ପୁଣି ତ୍ରିଜ୍ୟାରେ ଗୁଣି କୋଟିଜ୍ୟାରେ ଭାଗ କଲେ ଫଳ, ଶଙ୍କୁର ଅଦୃଶ୍ୟ ଭାଗର ପରିମାଣ ହୋଇଥାଏ ।

ହିମାଦ୍ରିଶୃଙ୍ଗତଳତଃ କୁନୃପୈର୍ଯୋଜନୈଃ ସ୍ଥିତେ ।
ଦକ୍ଷିଣେ ନୀଳଶୈଳେଽଏ ଦ୍ରଷ୍ଟୁଃ ସ୍ଥାନଂ ପ୍ରକଳ୍ପ୍ୟତେ । ୭୨ ।

ତଦନ୍ତରେଽଥଦୋର୍ଲିପ୍ତାଦ୍ୱଙ୍କାଙ୍ଗାନ୍ୟୁତ୍କ୍ରମଜ୍ୟକା ।
ସପ୍ତତଃ କୋଟିଜୀବାଷ୍ଟରସାଗ୍ନ୍ୟଗ୍ନିମିତା ଭବଦ୍ । ୭୩ ।

ପୂର୍ବୋକ୍ତଃ ସଂସ୍କୃତଃ ଶଙ୍କୁଃ ସ୍ଫୁଟୋ ରୁଦ୍ରାକ୍ଷି ସମ୍ମିତଃ ।
ଦୃଶ୍ୟଜ୍ୟା ଧରଣୀଶକ୍ରା ଉନ୍ନତଜ୍ୟେଷୁଖାଦ୍ରୟଃ । ୭୪ ।

ଦଗଶ୍ଚା ଉନ୍ନତକଳା ଦେବା ଦୃଶ୍ୟୋନ୍ନତସ୍ତଥା ।
ସ୍ଫୁଟଦୃଶ୍ୟୋନ୍ନତବେଦଗୁଣଯୋଜନସମ୍ମିତା । ୭୫ ।

ଷୋଡ଼ଶାଦୃଶ୍ୟମାନାନ ଯୋଜନାନ ଗିରେର୍ଯତଃ ।
କ୍ଷିତଜାଦ୍ୱାଦଶାଂଶୋଚ୍ଚସ୍ତବ ଦୃଶ୍ୟୋ ହିମାଳୟଃ । ୭୬ ।

ଧୂମଧୂଳିହିମଘନୈରଦୃଷ୍ଟୋଽପିହ ଦୂରଗେ ।
ଛଦନାଦ୍ ଧ୍ରୁବମତ୍ସ୍ୟସ୍ଥଭାନାଂ ସ୍ୟାତ୍ ତତ୍ସମକ୍ଷତା । ୭୭ ।

ଅତୋ ନ ତାବଦୌନ୍ନତ୍ୟଂ ସିଦ୍ଧଂ ନାୟାମବସ୍ତୃତୀ ।
ପ୍ରତ୍ୟକ୍ଷେ ତସ୍ୟ ଦୃଚ୍ଛତ୍ୱଂ ଖାର୍ଣ୍ଣବାଂଶମିତଂ ତତଃ । ୭୮ ।

ହିମାଚଳର ଶୃଙ୍ଗ ତଳରୁ ଦକ୍ଷିଣକୁ ୧୬୧ ଯୋଜନରେ ନୀଳାଚଳକୁ (ଜଗନ୍ନାଥଙ୍କ ମନ୍ଦିର ଯେଉଁ ପର୍ବତ ଉପରେ ଅଛି) ଦ୍ରଷ୍ଟାର ସ୍ଥାନ କଳ୍ପନା କରାଗଲା । ଏହାର ଅର୍ଥାତ୍ ୧୬୧ର ଭୂଜକଳା ହେଲା ୬୯୨ । ଉତ୍କ୍ରମଜ୍ୟା ୭୦ । କୋଟିଜ୍ୟା ପୁଣି ୩୩୬୮, ସଂସ୍କୃତ ଶଙ୍କୁ ହେଲା ୨୧୫, ସ୍ଫୁଟ ଶଙ୍କୁ ୨୧୧, ଦୃଶ୍ୟଜ୍ୟା ୧୪୧, ଉନ୍ନତ ଜ୍ୟା ୭୦୫ । ଏହାର ଚାପ କଲେ ହେଲା ୭୧୦ । ଦୃଶ୍ୟର ଉନ୍ନତ ହେଲା ୩୩ । ସ୍ଫୁଟ ଦୃଶ୍ୟୋନ୍ନତ ୩୪ । ଦୃଶ୍ୟମାନ ୧୬ । ପୃଷ୍ଠ କ୍ଷିତଜ ଠାରୁ ୧୨ ଭାଗ ପର୍ଯ୍ୟନ୍ତ ଉଚ୍ଚ ହିମାଳୟ ନୀଳାଦ୍ରିକୁ ଦୃଶ୍ୟ ହେବ । ଧୂମ, ଧୂଳି, ହିମ ଓ ମେଘ ଦ୍ୱାରା ଆଚ୍ଛାଦିତ ଓ ଦୂରଗତ ଏହି ପର୍ବତ ଅଦୃଶ୍ୟ ହେଲେ ମଧ୍ୟ ଧ୍ରୁବମତ୍ସ୍ୟର କେତେକ ନକ୍ଷତ୍ରକୁ ସେ ଘୋଡ଼ାଇ ରଖିଥିବାରୁ ସେ ଗୁଡ଼ିକ ମଧ୍ୟ ଅଦୃଶ୍ୟ ହୁଅନ୍ତି । ଏହି ଘଟଣାରୁ ହିଁ ହିମାଦ୍ରି ଥିବା ପ୍ରତ୍ୟକ୍ଷତଃ ପ୍ରମାଣିତ ହେଉଥିଲେ ମଧ୍ୟ ଏହିକ ଉନ୍ନତ, ଦୀର୍ଘତା ଓ ବିସ୍ତାର ବାସ୍ତବରେ ଏହାର ସିଦ୍ଧ ହେଉ ନାହିଁ ।

ଯୋଽୟୁତଦ୍ୱୟହସ୍ତୋଚ୍ଚଃ ଶଙ୍କୁଶ୍ଚେତ୍ ସଂସ୍କୃତଃ ପୁନଃ ।
ଦୃଗ୍ଲମ୍ବକଳସ୍ତାବତ୍ୟୁତ୍କ୍ରମଜ୍ୟାଥ ତଦ୍ଧନୁଃ । ୭୯ ।

ଦ୍ୱିନବେନ୍ଦୁ କଳାଦୃଷ୍ଟିସୀମା କ୍ରୋଶା ନବଦ୍ୱୀପାଃ ।
ସ୍ୱକୃଟତଳତସ୍ତାବଦ୍ ରେ ଦୃଶ୍ୟୋଽଧିକେ ନ ଯଃ । ୮୦ ।

ହିମାଳୟାଷ୍ଟମାଂଶୋଚ୍ଚୋ ମହେନ୍ଦ୍ରାଖ୍ୟଃ କୁଳାଚଳଃ
ସ୍ୱମୂଳତୋ ହି ଭୂକଷ୍ଟୈର୍ବିଂଶତ୍ କ୍ରୋଶମୀକ୍ଷତେ । ୮୧ ।

କିନ୍ତୁ ବାସ୍ତବରେ ହିମାଳୟର ଉଚ୍ଚତା ୪° ଅଂଶ । ସେଥିରୁ ହିମାଳୟକୁ ଯଦି ୨୦୦୦୦ (ଅୟୁତ ଦ୍ୱୟ) ହସ୍ତ ଉଚ୍ଚ ଶଙ୍କୁ ଧରାଯାଏ ତାହାହେଲେ ସଂସ୍କୃତ ଶଙ୍କୁ ହେବ ୩୨୨ ବିକଳା । ଏହି ବିକଳାର ଉତ୍କ୍ରମଜ୍ୟା ମଧ୍ୟ ୩୨୨" । ଏହାର ଗୃପ ହେବ ୧୯୨ କଳା, ଦୃଷ୍ଟି ସୀମା ହେବ ୮୯ କୋଶ । ନିଜର ଶୃଙ୍ଗ ଠାରୁ ୮୯ କୋଶ ଦୂରରେ ସେହି ହିମାଳୟ ଦୃଶ୍ୟ ହୋଇଥାଏ । ଏଥିରୁ ଅଧିକ ଦୂରରେ ତାହା ଦୃଶ୍ୟ ହୁଏ ନାହିଁ । ହିମାଳୟର ୮ ଭାଗରୁ ଭାଗେ କୁଳାଚଳ ମହେନ୍ଦ୍ରର ଉଚ୍ଚତା । ଏହାର ମୂଳଠାରୁ ୩୦ କୋଶ ଦୂରରେ ଥିବା ଲୋକେ ଦେଖି ପାରନ୍ତି ।

ଯଦି ଚମେରୋସ୍ତଥୋଚ୍ଛ୍ରାୟ*ବିସ୍ତାରୌ ଭବତସ୍ତଦା ।
ପ୍ରାକ୍ ସ୍ଥାନମମରାବତ୍ୟା ଯାମ୍ୟଗୋଳଃ କଥଂ ନଣା । ୮୨ ।

ସାର୍ଦ୍ଧୈଶାସ୍ତବ ଲମ୍ବାଂଶାଦୃଷ୍ଟ୍ୟଂଶାଃ ପଞ୍ଚବିଂଶତିଃ ।
ତଚ୍ଛାପାନ୍ତର୍ଗତଃ ସୂର୍ଯ୍ୟକ୍ଷିତିଜାଦ୍ବିଶ୍ୱ ଭାଗକୈଃ । ୮୩ ।

ମେରୁ (ଉତ୍ତର ମେରୁରେ ଥିବା ପର୍ବତ)ର ୮୪ ଯୋଜନ ଉଚ୍ଚତା ଓ ୨୫୬ ଯୋଜନ ବିସ୍ତାର ହୋଇଥିଲେ ଅମରାବତୀର ପୂର୍ବରେ ଥିବା ଦେବତାମାନଙ୍କର, ରବି ଦକ୍ଷିଣ ଗୋଲରେ ଥିବାବେଳେ ରାତ୍ରି କିପରି ହେବ ? କାରଣ ସେଠାର ଲମ୍ବାଂଶ ୧୧°। ୩୦ ( ଅକ୍ଷାଂଶ ୭୮ । ୩୦ ) ଦୃଷ୍ଟ୍ୟଂଶ ୨୫ । ଏହାର ଗୃପର ମଧ୍ୟରେ ଥିବା ସୂର୍ଯ୍ୟ କ୍ଷିତିଜରୁ (ଦିଗ୍ବଳୟରୁ) ୧୩ ଉଚ୍ଚରେ ଥାଇ ଦେବତାମାନଙ୍କଦ୍ୱାରା ଦେଖାଯାଇ ପାରିବ । ତା ହେଲେ ଦେବତାମାନେ ୬ ମାସ ଯାଏ ସୂର୍ଯ୍ୟଙ୍କୁ ଦେଖନ୍ତି ନାହିଁ ବୋଲି କାହିଁକି କୁହାଯାଏ ? ଏହାର ମର୍ମ କ'ଣ ?

ଉଚ୍ଚସ୍ଥୋ ଦୃଷ୍ୟତେ ଦେବୈଃ ଷଣ୍ମାସାସ୍ତମୟଃ କଥଂ ।
ବିଷୁବତ୍ କାଳକେ ଖଣ୍ଡଗ୍ରହଣେ ଶୀତଗୋସ୍ତଥା । ୮୪ ।

ଅଦୃଷ୍ୟତ କୁଭାନ୍ତଃସ୍ଥା ମେରୁଚ୍ଛାୟା ଚତୁଃକଳା ।
ଅତୋ ମେରୁନ୍ନତନ୍ୟୂନା ମନ୍ୟତାଂ ହିମବନ୍ନତେଃ । ୮୫ ।

ବିଷୁବ ଦିନରେ (ସମଦିନରେ) ଚନ୍ଦ୍ରର ଅର୍ଦ୍ଧ ଗ୍ରାସରେ ଭୂଚ୍ଛାୟାନ୍ତର୍ଗତ ମେରୁର ଛାୟା ଭୂଚ୍ଛାୟା ଠାରୁ ୪ ଅଙ୍ଗୁଳ ପରିମାଣ ବେଶି ହେବା ଦେଖା ଯାଇଛି । ଏଣୁ ହିମାଳୟର ଉଚ୍ଚତା ଠାରୁ ମେରୁର ଉଚ୍ଚତା ଅଳ୍ପ ବୋଲି ଜଣାଯାଉଛି ।

ପଶ୍ୟଦ୍ଭିର୍ନାବିକୈଃ ସିନ୍ଧୌ ମସ୍ତକୋର୍ଦ୍ଧ୍ୱଗତଂ ଧ୍ରୁବଂ ।
ହିମାଦ୍ରିର୍ନୈକ୍ଷିତୋଽପ୍ୟସ୍ୟ ସ୍ଥିତବାଚ୍ୟା ମୃଚେଷିତ ନୋ । ୮୬ ।

---

*ଚଥେଦ୍ଧ ବିସ୍ତୃତ ଗୋଳାଦୂ୍ୟକ୍ତ ପ୍ରକାରେଣ ।

ସମୁଦ୍ରରେ ଥିବା ନାବକମାନେ ନଜର ମଥା ଉପରେ ଥିବା ଧ୍ରୁବ ନକ୍ଷତ୍ରକୁ ଦେଖନ୍ତି; ମାତ୍ର ମେରୁକୁ ଦେଖନ୍ତି ନାହିଁ । ଏହା ବୋଲି ମେରୁ ନାହିଁ, ବୋଲିବା ଠିକ୍ ନୁହେଁ ।

ଲକ୍ଷ୍ୟା ତନ୍ମାୟୟ୍ୟା ସାକ୍ଷ୍ୟାଦ୍ ନ ଦେବାସୁରଭୂମ୍ଭିଃ ।
ଅନ୍ତର୍ଦ୍ଧିଦ୍ୟପି ମର୍ତ୍ତ୍ୟାନାଂ ଯଦୁପାସନୟେକ୍ଷ୍ୟତେ । ୮୭ ।

ଦେବ ଓ ଅସୁରମାନେ ରହିବା ଭୂମି ( ସୁମେରୁ ଓ କୁମେରୁ ) ସେହି ଦେବ ଓ ଅସୁରମାନଙ୍କ ମାୟା ଯୋଗୁଁ ମାନବମାନଙ୍କୁ ଦେଖାଯାଏ ନାହିଁ । ସେମାନଙ୍କର ସେବା ଓ ପୂଜା ଯୋଗେ ସେମାନଙ୍କର ଅନ୍ତର୍ଦ୍ଧାନ ମଧ୍ୟ ମାନବ ଦେଖିପାରେ ।

ଖାଦ୍ରୁଦ୍ଧକ୍ ଯୋଜନବ୍ୟାସବାର୍ଦ୍ଧିମଧ୍ୟାନ୍ନିରକ୍ଷତଃ ।
ଜମ୍ବୁଦ୍ୱୀପାନ୍ତରଂ ତୁଲ୍ୟଂ ନ ସର୍ବତ୍ରୋପଲଭ୍ୟତେ । ୮୮ ।

ନୀଳାଦ୍ରେର୍ନୈର୍ଋତାଶାୟାଂ କୁମାର୍ଯ୍ୟସ୍ୟା ମରୁଦ୍ଦିଶି ।
ଦ୍ୱାରକାସ୍ୟାଶ୍ଚ ନୀଳାଦ୍ରିଃ ପ୍ରାଚ୍ୟାଂ ବେଳାସ୍ଥିତଂ ତ୍ରୟମ୍ । ୮୯ ।

ଅତୋ ଭାରତବର୍ଷସ୍ୟ ଯାମ୍ୟଭାଗେ ତ୍ରିକୋଣତା ।
ପ୍ରାକ୍ପଶ୍ଚାନ୍ମଧ୍ୟଦେଶାନାମନ୍ତରଜ୍ଞାନତୋଽପି ଚ । ୯୦ ।

ବିଷୁବ ବୃତ୍ତଠାରୁ ୨୬° ଯୋଜନ ବ୍ୟାସ ଦୂରରେ ଥିବା ସମୁଦ୍ରର ମଧ୍ୟଦେଶରୁ ଜମ୍ବୁଦ୍ୱୀପର ଦୂରତା ସବୁଠାରେ ସମାନ ନୁହେ । ନୀଳାଚଳ (ପୁରୀ)ର ନୈର୍ଋତ ଦିଗରେ କୁମାରୀ (କନ୍ୟା କୁମାରୀ Cape Comorim ) ଅଛି । କୁମାରୀର ବାୟବ୍ୟ କୋଣରେ ଦ୍ୱାରକା କ୍ଷେତ୍ର ବର୍ତ୍ତମାନ । ପୁଣି ଦ୍ୱାରକାର ପୂର୍ବ ଦିଗରେ ନୀଳାଚଳ । ଏହି ତିନୋଟି ଯାକ ସ୍ଥାନ ସମୁଦ୍ର କୂଳରେ ଅବସ୍ଥିତ । ଏଣୁ ଭାରତବର୍ଷର ଦକ୍ଷିଣ ଦିଗରେ ତ୍ରିକୋଣାକାର ରହିଛି । ପୁଣି ଭାରତବର୍ଷର ପୂର୍ବ, ପଶ୍ଚିମ ତଥା ମଧ୍ୟଦେଶମାନଙ୍କର ପ୍ରଭେଦ ଦେଖିଲେ ଭାରତ ଦେଶ ଯେ ଶଙ୍ଖର ଅଗ୍ରଭାଗ ପରି ତାହା ମଧ୍ୟ ସ୍ପଷ୍ଟ ହୋଇଯାଏ । ଏହିସବୁ କାରଣରୁ ଜମ୍ବୁଦ୍ୱୀପ ଆଦୌ ବୃତ୍ତାକାର ନୁହେଁ, ତାହା ସ୍ପଷ୍ଟ ହେଉଅଛି ।

ଶଂଖାଗ୍ରାକାରତା ସିଦ୍ଧିସ୍ତଦ୍ଦ୍ୱୀପେଽସ୍ମିନ୍ନ ବୃତ୍ତତା ।
ତନ୍ମାନତା ନ ଚୈବାବ୍ଧୌ ନ ଗ୍ରହେ ବଲୟାକୃତଃ । ୯୧ ।

ତତ୍ତତୋଽଧିକମାନୋଽସୌ ଯାଗରେ ବନ୍ଧାକୃତଃ ।
ପ୍ରାକ୍ ପଶ୍ଚାଦ୍ ଯାମ୍ୟସୌମ୍ୟାଖ୍ୟା ନାନାଖ୍ୟଃ ସ୍ଥାନଭେଦତଃ ।୯୨

ଲବଣାର୍ଣ୍ଣବମଧ୍ୟସ୍ଥା ଦ୍ୱୀପଭେଦାଃ ପଟଃଶତାଃ ।
ଦଶାବ୍ଦ୍ୟୁଦ୍ଧାଧିକା ସଂଖ୍ୟା ମନୁଷ୍ୟାଣାଂ ଭୁବ ଶ୍ରୁତା ।୯୩।

ବର୍ତ୍ତମାନ ସମୁଦ୍ରରେ ମଧ୍ୟ ପୁରାଣ ବର୍ଣ୍ଣିତ ପରିମାଣ ଠିକ୍ ଠିକ୍ ନାହିଁ । ସମୁଦ୍ର ବଳୟାକାର ମଧ୍ୟ ନୁହେଁ । ପୂର୍ବ ପଶ୍ଚିମ, ଦକ୍ଷିଣ ଓ ଉତ୍ତର ନାମରେ ଏହି ସମୁଦ୍ରର ନାମକରଣ ହୋଇଛି । ସ୍ଥାନ ଭେଦରେ ଏହାର ନାମ ଭେଦ ମଧ୍ୟ ହୋଇଅଛି । ପୁରାଣରେ ଉଲ୍ଲିଖିତ ପରିମାଣରୁ ଏ ଗୁଡ଼ିକର ପରିମାଣ ବଢ଼ିଅଛି । ଏ ସମୁଦ୍ର ଗୁଡ଼ିକର ଆକାର ମଧ୍ୟ ବହୁ ପ୍ରକାରର । ଲବଣ ସମୁଦ୍ର ମଧ୍ୟରେ ଭିନ୍ନ ଭିନ୍ନ ଶତାଧିକ ଦ୍ୱୀପ ଅଛନ୍ତି । ପୃଥିବୀରେ ୧୦୦ କୋଟି ଲୋକ ଅଛନ୍ତି ବୋଲି ଶୁଣିବାକୁ ମିଳେ ।

ସମନ୍ତାଦ୍ ଯୋଜନଂ କଲ୍ପେ ଭୂଗୋଲଃ କିଲ ବର୍ଦ୍ଧତେ ।
ଇତ ସିଦ୍ଧାନ୍ତତୋ ବୃଦ୍ଧେ ର୍ବୈଷମ୍ୟାଦ୍ଦେଶଭେଦତଃ ।୯୪।

ବହୁଦକ୍ ପ୍ରସରଦ ବାତକ୍ଷୁବ୍ଧାମ୍ଭୋଧିକଳାହତେଃ ।
ବର୍ଷୌଘଦ୍ରେକାନ୍ନଦୀ-ବେଗାନ୍ମୃଦାଂ ନାନାବଧସ୍ଥିତେଃ ।୯୫।

ଉନ୍ମଜ୍ଜନ୍ତି ନିମଜ୍ଜନ୍ତି କେଚଦ୍ କେଚଦ୍ କଦା କଦା
କ୍ଷୁଦ୍ରା ଦ୍ୱୀପା ମହାନ୍ତସ୍ତୁ ଭିନ୍ନାକାରା ଭବନ୍ତି ହ ।୯୬।

ତଥାପି ବୃତ୍ତତା ଭୂମେ ର୍ମୃଦ୍ଭିସ୍ତୋୟୈର୍ନ ଭିଦ୍ୟତେ ।
ମୃଦାପମାଂଚ ସଂସ୍ଥାନାନ୍ୟାପ୍ନୁବନ୍ତି ସଦା ଭିଦାମ୍ ।୯୭।

ଲବଣୋଦେନ ସଂପୃକ୍ତାଃ କ୍ଷୀରେଦାଦ୍ୟା କ୍ୱଚେଦ୍ କ୍ୱଚଦ୍ ।
ଦଧିତ କ୍ଷୀରଦଧ୍ୟାଦ ନ ସ୍ୱରୂପନ୍ତୁ କାର୍ସ୍ନ୍ୟତଃ ।୯୮।

ତତ ପ୍ରାକ୍‌ସିଦ୍ଧାନ୍ତ ସଂପ୍ରୋକ୍ତସୃଷ୍ଟିକାଳକୁସଂସ୍ଥିତେଃ ।
ବର୍ତ୍ତତେ ବର୍ତ୍ତମାନଷ୍ମା ସଂସ୍ଥିତେଶ୍ଚାନ୍ତରଂ ମହତ୍ ।୯୯।

ଗୋଟିଏ କଲ୍ପରେ ପୃଥିବୀ ଗୋଲର ବୃଦ୍ଧି ଚାରିପାଖ ଚାରି କୋଶ ହୁଏ ବୋଲି ସିଦ୍ଧାନ୍ତ ହୋଇ ସାରିଛି ଅବଶ୍ୟ ସ୍ଥାନ ଭେଦରେ ଏ ବୃଦ୍ଧି କମ ବେଶି ମଧ୍ୟ ହୋଇଥାଏ । ଦୂର ପ୍ରବାହି ବାୟୁର ଘାତରେ କ୍ଷୁବ୍ଧ ସମୁଦ୍ର ଜଳର ପ୍ରତିଘାତରୁ ବୃଷ୍ଟି ପ୍ରବାହ ଯୋଗେ ନଦୀଗୁଡ଼ିକ ଅତଡ଼ା ଖାଇବାରୁ ଏବଂ ସବୁ ଯାଗାରେ ମାଟି ସମାନ ପ୍ରକାରର ନ ହେବାରୁ ବେଳେବେଳେ କେଉଁଠି କପରି ଛୋଟ ଛୋଟ ଦ୍ୱୀପ ଦବିଯାଏ, ବଡ଼ ବଡ଼ ଦ୍ୱୀପ ଉପରକୁ ଉଠିଆସେ । ପୁଣି ବଡ଼ ବଡ଼ ଦ୍ୱୀପ ଦବିଯାଇ ଛୋଟ ଛୋଟ ଦ୍ୱୀପ ଉପରକୁ ଉଠି ଆସେ । ଏଗୁଡ଼ିକର ଆକାର ମଧ୍ୟ ବେଳେ ବେଳେ ବଦଳ

ଯାଏ । ତଥାପି ମାଟି ବା ପାଣି ପୃଥିବୀର ବୃତ୍ତକୁ ଏକାବେଳକେ ବଦଳାଇ ଦେଇ ପାରନ୍ତି ନାହିଁ । ମାଟି ଓ ପାଣିର ସ୍ଥାନ କିନ୍ତୁ ବରାବର ବଦଳିବାରେ ହିଁ ଲାଗିଛି । ଲୁଣପାଣି ମିଶା କ୍ଷୀର ଦଧି ଆଦି ସମୁଦ୍ରର ସତ୍ତା କୌଣସି କୌଣସି ସ୍ଥାନରେ ଅଛି । ଏ ସବୁ ସମୁଦ୍ରରେ ଖାଣ୍ଟି ଦୁଧ କି ଦହି ପୂରାପୂରି ରହିଛି ବୋଲି କେହି ଯେପରି ମନେ ନ କରନ୍ତି । ଅବଶ୍ୟ ପୂର୍ବ ପୂର୍ବ ସିଦ୍ଧାନ୍ତ ଗ୍ରନ୍ଥରେ ସୃଷ୍ଟି କାଳ ଓ ପୃଥିବୀର ସଂସ୍ଥାନ ସମ୍ବନ୍ଧେ ଯାହା କୁହାଯାଇଛି ସେ ସବୁ ବର୍ତ୍ତମାନ ବର୍ଣ୍ଣିତ ସୃଷ୍ଟି କାଳ ଓ ଭୂସ୍ଥିତିଠାରୁ ଅଲଗା ।

ଆଦିଯାମଳେ—

ଯସ୍ୟ ଶୃଙ୍ଗୈକଦେଶସ୍ଥା ଦେବାସ୍ତ୍ରିଂଶତ୍ କୋଟୟଃ ।
ସ ମେରୁଃ ପୃଥିବୀ ମଧ୍ୟେ ଶ୍ରୂୟତେ ନ ଚ ଦୃଶ୍ୟତେ ।ଇତି ।୧୦୦।

ଆଦିଯାମଳରେ ଅଛି ଯେ ଯାହାର ଶୃଙ୍ଗର ଏକ ସ୍ଥାନରେ ତେତିଶ କୋଟି ଦେବତା ରହି ଅଛନ୍ତି, ସେହି ମେରୁ ପର୍ବତ ପୃଥିବୀ ମଧ୍ୟରେ ଅଛି । ଏହା ଶୁଣିବାକୁ ମିଳୁଛି ସିନା ଦେଖିବାକୁ ମିଳୁନାହିଁ ।

ସୂର୍ଯ୍ୟ ସିଦ୍ଧାନ୍ତେ—

ଅନେକରତ୍ନନିଚୟୋ ଜାମ୍ବୂନଦମୟୋ ଗିରିଃ ।
ଭୂଗୋଲମଧ୍ୟ ଗୋ ମେରୁରୁଭୟତ୍ର ବିନିର୍ଗତଃ ।୧୦୧।

ଉପରିଷ୍ଟାତ୍ ସ୍ଥିତାସ୍ତସ୍ୟ ସେନ୍ଦ୍ରା ଦେବାମହର୍ଷୟଃ ।
ଅଧସ୍ତାଦସୁରାସ୍ତଦ୍ ବଦ୍ ଦ୍ୱିଷନ୍ତୋଽନ୍ୟୋଽନ୍ୟ-ମାଶ୍ରିତାଃ ।୧୦୨।

ତତଃ ସମନ୍ତାତ୍ ପରିଧିକ୍ରମେଣାୟଂ ମହାର୍ଣ୍ଣବଃ ।
ମେଖଳେଽବସ୍ଥିତୋ ଧାତ୍ର୍ୟା ଦେବାସୁରବିଭାଗକୃତ୍ ।ଇତି ।୧୦୩।

ସୂର୍ଯ୍ୟ ସିଦ୍ଧାନ୍ତରେ ଅଛି—ଭୂମିର ମଧ୍ୟଭାଗରେ ଉଭୟଦିଗରେ (ଫୁଟାଇ) ଦୁଇଟି ମେରୁ ରହିଅଛି । ଏହା ସୁବର୍ଣ୍ଣମୟ ଏବଂ ଏଥିରେ ଅନେକ ମଣିମାଣିକ୍ୟ ରହିଅଛି ।

ତାହାର ଉପରେ ଇନ୍ଦ୍ର ସହିତ ଦେବତା ଓ ମହର୍ଷିମାନେ ବାସ କରୁଅଛନ୍ତି । ତଳେ ଥିବା (ଏହାର ତଳେ) ମେରୁରେ ଅସୁରମାନେ ଦେବତାମାନଙ୍କ ଠାରେ ଦ୍ୱେଷ କରି ବାସ କରୁଅଛନ୍ତି । ଏହି ଉଭୟ ମେରୁକୁ ଘେରି ପାଖରୁ ପୃଥିବୀ-ପରିଧି ଆକାରରେ ମହାସମୁଦ୍ର ଘେରି ରହିଅଛି । ଏହି ମହାସମୁଦ୍ର ପୃଥିବୀର ମେଖଳା ସଦୃଶ ରହିଅଛି ଏବଂ ଏହା ଦ୍ୱାରା ଦେବ ଓ ଅସୁରମାନଙ୍କର ବିଭାଗ ସ୍ପଷ୍ଟ ଭାବରେ ଜଣା ପଡ଼ୁଯାଏ ।

ଦେବାବାସଃ ସୁମେର୍ବାଖ୍ୟଃ କୁମେରୁରସୁରାଶ୍ରୟଃ ।
ତତ୍ସମାନ୍ତରଗା ରେଖା ବ୍ୟକ୍ଷ୍ୟାଖ୍ୟା ପରଧିର୍ମହାନ୍ ।୧୦୪।

ଅକ୍ଷାଂଶା ମେରୁପର୍ଯ୍ୟନ୍ତଂ କ୍ରମୋନା ବୃତ୍ତରେଖିକାଃ ।
ତଦ୍ଭେଦା ମେରୁଯୁକ୍ସକ୍ତା ଦ୍ରାଘିମାଖ୍ୟାଃ ସମା ମତାଃ ।୧୦୫।

ଇତ୍ଥମାକାଶବଦ୍ଭୂମାବପି ସର୍ବଂ ପ୍ରକଲ୍ପ୍ୟତେ ।
ଭୂମଧ୍ୟାତ୍ ଖସ୍ଥିତର୍ଯସ୍ମାତ୍ ପୃଷ୍ଠେ ସୂତ୍ରସମା ଭବେତ୍ ।୧୦୬।

ସୁମେରୁରେ ଦେବତାମାନେ ଓ କୁମେରୁରେ ଅସୁରମାନେ ବାସ କରନ୍ତି । ଏ ଉଭୟ ସ୍ଥାନର ସମଦୂରରେ ବର୍ତ୍ତମାନ ମହାପରିଧି (ମହଦ୍ ବୃତ୍ତ ପରିଧି)କୁ ବ୍ୟକ୍ଷ, ଓ ନିରକ୍ଷ ଅର୍ଥାତ୍ ବିଷୁବ ବୃତ୍ତ କୁହାଯାଏ । ଏହି ବିଷୁବବୃତ୍ତଠାରୁ କ୍ରମରେ ଛୋଟ ଛୋଟ ବୃତ୍ତଗୁଡ଼ିକ ମେରୁ ପର୍ଯ୍ୟନ୍ତ ଥିବା ଦେଖାଯାନ୍ତି । ଏ ଗୁଡ଼ିକ ଅକ୍ଷାଂଶ ରେଖା । ଏହିପରି ଆକାଶରେ ଯେଉଁ ସବୁ ରେଖା କଳ୍ପନା କରାଯାଏ, ତଦନୁସାରେ ପୃଥିବୀରେ ମଧ୍ୟ କଳ୍ପନା କରାଯାଇ ଥାଏ । କାରଣ ଆକାଶ ଗୋଳରୁ ଭୂଗର୍ଭ ବିନ୍ଦୁ ଗାମୀ ସୂତ୍ର ଭୂପୃଷ୍ଠରେ ଯେଉଁଠାରେ ସ୍ପର୍ଶ କରିବ, ସେହି ସ୍ଥାନରେହିଁ ଆକାଶ ଗୋଳର ସେହି କଥା ଭୂପୃଷ୍ଠରେ ହେବାର କଥା । (ଉଦାହରଣ ସ୍ୱରୂପ — ଆକାଶରେ କଳ୍ପିତ ବିଷୁବ ରେଖାର ପ୍ରତ୍ୟେକ ବିନ୍ଦୁରୁ ଭୂଗର୍ଭ କେନ୍ଦ୍ରଗାମୀ ରେଖା ସବୁ କରି ଦେଲେ ଏହି ରେଖାଗୁଡ଼ିକ ଭୂପୃଷ୍ଠକୁ ଯେଉଁ ଯେଉଁ ସ୍ଥାନରେ କାଟିବେ ତାହା ମିଳାଇ ଦେଖିଲେ ବୃତ୍ତାକାର ହେବ ଏବଂ ଏହି ବୃତ୍ତ (ବୃତ୍ତାକାର) ପୃଥିବୀ ବିଷୁବ ହେବ ।)

ବ୍ରହ୍ମାଣ୍ଡାମ୍ବବଗତ୍ ଦେହମେରୁଦଣ୍ଡାଯ଼ିତେ ସ୍ଥିରେ ।
ବାଯ଼ୌ ଭୂରାଦୟଃ ସୂତ୍ୟତାଶ୍ଚକ୍ରାଣୀବ ତନୌ ନୃଣାଂ ।୧୦୭।

ଖମେରୁଃ ସମରୁତ୍ ପ୍ରୋକ୍ତୋ ଲୋକାଧାରତୟାଗମୈଃ ।
ଗର୍ଭୋଦସିନ୍ଧୁଯୁଙ୍ମୂଳଃ ଷୋଡ଼ଶାଧାରଭୃତ୍ ଶିଖଃ ।୧୦୮।

ଲୋକାଲୋକତୟା ପ୍ରୋକ୍ତା କଟାହ ପ୍ରଥମାବୃତିଃ ।
ହିରଣ୍ମୟୀ ଭୂମିସଂଜ୍ଞା ତତୋଦଶ ଗୁଣୋତ୍ତରାଃ ।୧୦୯।

କ୍ରମାଜ୍ଜୁଳାଦୟଃ ପ୍ରୋକ୍ତାଃ ପ୍ରକ୍ୟତ୍ୟନ୍ତାଃ ପ୍ରସଙ୍ଗତଃ ।
ଯତ୍ ସାଧାରଣଭୂଗୋଳଶାସ୍ତ୍ରେ ଦେଶାଦିବର୍ଣ୍ଣନା ।୧୧୦।

କର୍ତ୍ତୁମର୍ହା ତଦେତସ୍ମିନ୍ ଗଣିତେ ଦିକ୍ ପ୍ରଦର୍ଶିତା ।
ପଶ୍ଚାତ୍ ବ୍ୟାସାଦିଗୋଳସ୍ୟ ବାଚ୍ୟଂ ଦୃକ୍ ଶାସ୍ତ୍ରସମ୍ମତମ୍ ।୧୧୧।

ଅଥ ଭୂଭାଗସଂସ୍ଥାନ ପରିଚୟେ କୁତୂହଳାତ୍ ।
ଲିଖ୍ୟନ୍ତେକତିଚିତ୍ ଶ୍ଳୋକାଃ ଯତ୍ ସିଦ୍ଧାନ୍ତ ଶିରୋମଣେଃ ।୧୧୨।

ମନୁଷ୍ୟ ଦେହ ଭିତରେ ଯେପରି ଆଧାର ଚକ୍ର ପରି ଚକ୍ରଗୁଡ଼ିକ ଗ୍ରଥିତ ହୋଇ ଅଛନ୍ତି ଠିକ ସେହିପରି ପରମାତ୍ମାଙ୍କ ବିରାଟ ଦେହ ସ୍ୱରୂପୀ ଏହି ବ୍ରହ୍ମାଣ୍ଡ ମଧ୍ୟରେ ମେରୁଦଣ୍ଡ ପରି ଯେଉଁ ଅଚଳ ବାୟୁ ଅଛି ସେଥିରେ ଭୂ ଭୁବ ଓ ସ୍ୱ ପ୍ରଭୃତି ଲୋକ ଗୁନ୍ଥାହୋଇ-ଅଛନ୍ତି ।

ଆକାଶ ମେରୁକୁ ଶାସ୍ତ୍ରମାନେ ସର୍ବ ଲୋକର ଆଧାର ବୋଲି କହିଛନ୍ତି । ସେଠାରେ ଖୁବ୍ ପବନ ହୁଏ ବୋଲି ପ୍ରବାଦ ଅଛି । ଏହାର ଶୃଙ୍ଗ ଷୋଡ଼ଶାଧାର ଧରି ରହିଅଛି । ଏହାର ମୂଳ ପୁଣି ଉଦକ ସିନ୍ଧୁ ମଧ୍ୟରେ ପ୍ରବେଶ କରିଅଛି ।

ପୃଥିବୀର ନାମ ହିରଣ୍ମୟୀ । ଲୋକ ଦୃଷ୍ଟିରେ ଏହା କଡ଼େଇର ଗୋଲେଇ ପରି ଦେଖାଯାଏ । ଜଳ ଆଦି ଏହାଠାରୁ ଦଶଗୁଣ ଅଧିକ । ଏଗୁଡ଼ିକ ଆଗକୁ ବଢି ବଢି ପ୍ରକୃତି ପର୍ଯ୍ୟନ୍ତ ଯାଇ ଅଛନ୍ତି । ପ୍ରସଙ୍ଗକ୍ରମେ ଏ ସବୁ ଶାସ୍ତ୍ରରେ ବର୍ଣ୍ଣିତ ହୋଇ ରହିଛି ।

ସାଧାରଣ ଭୂଗୋଲ ଶାସ୍ତ୍ରରେ ଦେଶ, ନଗର; ସାଗର ଆଦିର ବର୍ଣ୍ଣନା କରାଯାଇ ଥାଏ । ସେଥି ନିମନ୍ତେ ଏହି ଗଣିତ ଶାସ୍ତ୍ରରେ ତାହାର ଦିଗ୍ଦର୍ଶନ ମାତ୍ର ଦିଆଗଲା । ପରେ ଗୋଲର ବ୍ୟାସ ଆଦି କଥା ଯାହା ଦୃକ୍‌ସିଦ୍ଧ, ତାହା କୁହାଯିବ ।

ଭୂ ଭାଗରେ କେଉଁଠି କ'ଣ ଅଛି, କାହାର ପରିଚୟ କ'ଣ ଏହି କୌତୂହଳ ନିବୃତ୍ତି ନିମନ୍ତେ ସିଦ୍ଧାନ୍ତ ଶିରୋମଣିରୁ କେତେକ ଶ୍ଳୋକ ଏଠାରେ ଉଦ୍ଧାର କରାଯାଉଅଛି । ଶିରୋମଣି ଗୋଟିଏ ଅତି ପ୍ରାମାଣିକ ଗ୍ରନ୍ଥ ।

ଣି—

**ଲଙ୍କା କୁମଧ୍ୟେ ଯବକୋଟିରସ୍ୟାଃ**
**ପ୍ରାକ୍‌ପଶ୍ଚିମେରୋମକପତ୍ତନଂ ଚ ।**
**ଅଧସ୍ତତଃ ସିଦ୍ଧପୁରଂ ସୁମେରୁଃ**
**ସୌମ୍ୟେଽଥ ଯାମ୍ୟେ ବଡ଼ବାନଳଶ୍ଚ ।୧୨୩।**

ସିଦ୍ଧାନ୍ତ ଶିରୋମଣିରେ ଅଛି.—ପୃଥିବୀ ମଧ୍ୟରେ (ବିଷୁବ ରେଖାରେ) ଲଙ୍କା ନଗରୀ ରହିଅଛି । ଏହାର ପୂର୍ବକୁ (୯୦° ଅଂଶ ଅନ୍ତରରେ ସେହି ବିଷୁବ ରେଖା ଉପରେ) ଯମ କୋଟି ପତ୍ତନ, ଲଙ୍କାର ପଶ୍ଚିମକୁ ଠିକ୍ ସେହିପରି ରୋମକ ପତ୍ତନ ଏବଂ ଲଙ୍କାର ଠିକ୍ ତଳେ ସେହି ବିଷୁବରେଖା ଉପରେ ପୁଣି ସିଦ୍ଧପୁର ରହିଅଛି । ଏ ସବୁ ନଗରୀର ଠିକ୍ ଉତ୍ତରକୁ (୯୦° ଅଂଶ ଅନ୍ତରରେ) ସୁମେରୁ ଓ ଦକ୍ଷିଣକୁ କୁମେରୁ ବା ବଡ଼ବାନଳ ରହିଛି ।

**କୁବୃତ୍ତପାଦାନ୍ତରତାନି ଯାନି**
**ସ୍ଥାନାନି ଷଡ୍‌ଗୋଲବିଦୋ ବଦନ୍ତି ।**
**ବସନ୍ତି ମେରୌ ସୁରସିଦ୍ଧ-ସଂଘା**
**ଅର୍ବେ ଚ ସର୍ବେ ନରକାଃ ସ ଦୈତ୍ୟାଃ ।୧୨୪।**

ଏହି ୬ଟି ସ୍ଥାନ ମଧ୍ୟରୁ ପ୍ରତ୍ୟେକ ପ୍ରତ୍ୟେକଠାରୁ ୯୦° ଅନ୍ତରରେ । ଅବଶ୍ୟ ଉଭୟ ମେରୁର ଅନ୍ତର ୧୮୦° । ମେରୁରେ ସୁର ଓ ସିଦ୍ଧମାନେ ବାସ କରୁଥିବାବେଳେ ବଡ଼ବାନଳ (ଓର୍ବ) ବା କୁମେରୁରେ ନରକଗୁଡ଼ିକ ଅଛି ଏବଂ ଏଗୁଡ଼ିକରେ ଅସୁରମାନେ ରହିଅଛନ୍ତି ।

**ଯୋ ଯତ୍ର ତିଷ୍ଠତ୍ୟବନୀଂ ତଳସ୍ଥା-**
**ମାତ୍ମାନମସ୍ୟା ଉପରିସ୍ଥିତଂ ଚ ।**
**ସ ମନ୍ୟତେଽତଃ କୁଚତୁର୍ଥସଂସ୍ଥା**
**ଅଧଶ୍ଚ ତେ ତର୍ଯ୍ୟଗିବାମନନ୍ତି ।୧୨୫।**

ପୃଥିବୀର ଯେଉଁଠି ଯେ ଅଛି ସେ ପୃଥିବୀକୁ ନିଜର ତଳେ ଓ ନିଜକୁ ପୃଥିବୀ ଉପରେ ଥିବା ମନେ କରନ୍ତି । ଏଣୁ ଯେଉଁମାନେ ପରସ୍ପର ୯୦° ତଫାତ୍‌ରେ ଅଛନ୍ତି ସେମାନେ ପରସ୍ପରକୁ ତର୍ଯ୍ୟକ୍ ଥିବା ଦେଖନ୍ତି (ଜଣେ ଅନ୍ୟ ଉପରେ ଲମ୍ବପରି । )

ଅଧଃଶିରସ୍କାଃ କୁଦଳାନ୍ତରସ୍ଥା—
ଶ୍ଛାୟାମନୁଷ୍ୟା ଇବ ନୀରତୀରେ ।
ଅନାକୁଳାସ୍ତିର୍ଯ୍ୟଗଧଃସ୍ଥିତାଶ୍ଚ
ତିଷ୍ଠନ୍ତି ତେ ତତ୍ର ବୟଂ ଯଥାତ୍ର ।୧୧୭।

ଭୂ ପରିଧିର ଅର୍ଦ୍ଧରେ (୧୮୦° ରେ) ବାସ କରୁଥିବା ଲୋକେ ପରସ୍ପରକୁ ଅଧୋ-ମସ୍ତକ ହୋଇଥିବା ଦେଖନ୍ତି । ପାଣି କୂଳରେ ଠିଆ ହୋଇ ନିଶ୍ଚଳ ପାଣିକୁ ଚାହିଁଲେ ନିଜର ଆକୃତି (ପ୍ରତିବିମ୍ବ) ଅଧଃ ଶିରସ୍କ ଥିବା ଦେଖାଯାଇଥାଏ । ଏହାହିଁ ତାହାର ଯଥାର୍ଥ ଦୃଷ୍ଟାନ୍ତ । ଏହିପରି ଭାବରେ ୯୦° ତଫାତ୍‌ରେ ଥିବା ଲୋକେ ପରସ୍ପରକୁ ତିର୍ଯ୍ୟକ୍ ଦେଖନ୍ତି ଏବଂ ୧୮୦° ତଫାତ୍‌ରେ ଥିବା ଲୋକମାନେ ପୁଣି ପରସ୍ପରକୁ ସେହିପରି ଅଧଃସ୍ଥିତ ଦେଖନ୍ତି । ପରସ୍ପର ଏହିପରି ଦେଖାଯାଉ ଥିଲେ ମଧ୍ୟ ଆମ୍ଭେମାନେ ଏଠାରେ ଯେପରି ନିରାପଦ ଅଛୁ (ଅନ୍ୟମାନେ) ସେମାନେ ମଧ୍ୟ ସେମାନଙ୍କ ସ୍ଥାନରେ ନିରାପଦ ଅଛନ୍ତି ।

ଭୂମେରର୍ଦ୍ଧଂ କ୍ଷାରସିନ୍ଧୋରୁଦକ୍‌ସ୍ଥଂ
ଜମ୍ବୁଦ୍ୱୀପଂ ପ୍ରାହୁରାଚାର୍ଯ୍ୟବର୍ଯ୍ୟାଃ ।
ଅର୍ଦ୍ଧେଽନ୍ୟସ୍ମିନ୍ ଦ୍ୱୀପଷଟ୍କସ୍ୟ ଯାମ୍ୟେ
କ୍ଷାରକ୍ଷୀରାଦ୍ୟମ୍ବୁଧୀନାଂ ନିବେଶଃ ।୧୧୭।

ଲବଣ ସମୁଦ୍ରର ଉତ୍ତରକୁ ଥିବା ଅଧା ପୃଥିବୀକୁ ଶ୍ରେଷ୍ଠ ଆଚାର୍ଯ୍ୟମାନେ ଜମ୍ବୁଦ୍ୱୀପ ବୋଲି କହିଛନ୍ତି । ଏହାର ବିପରୀତ ପୃଥିବୀର ଦକ୍ଷିଣାର୍ଦ୍ଧରେ ୬ଟି ଦ୍ୱୀପ ଓ ଲବଣ, କ୍ଷୀର ଆଦି ସମୁଦ୍ରଗୁଡ଼ିକ ରହିଅଛନ୍ତି ।

ଲବଣ ଜଳଧିରାଦୌ ଦୁଗ୍ଧସିନ୍ଧୁଶ୍ଚ ତସ୍ମା
ଦମୃତମମୃତରଶ୍ମିଃ ଶ୍ରୀଶ୍ଚ ଯସ୍ମାଦ୍‌ବଭୂବ ।
ମହିତଚରଣପଦ୍ମଃ ପଦ୍ମଜନ୍ମାଦିଦେବୈ—
ର୍ବସତି ସକଳବାସୋ ବାସୁଦେବଶ୍ଚ ଯତ୍ର ।୧୧୮।

ପ୍ରଥମେ ଲବଣ ଓ ତାପରେ କ୍ଷୀର ସମୁଦ୍ରର ଅବସ୍ଥିତି । ଏହି କ୍ଷୀର ସମୁଦ୍ରରୁ ଚନ୍ଦ୍ର ଓ ଲକ୍ଷ୍ମୀ ଜନ୍ମ ନେଇଥିଲେ । ଏଥିରେ ସମସ୍ତ ବ୍ରହ୍ମାଣ୍ଡକୁ ଦେହ ରୂପରେ ଧରି ସ୍ୱୟଂ ବାସୁଦେବ ବାସ କରୁଅଛନ୍ତି । ବ୍ରହ୍ମାଙ୍କଠାରୁ ଆରମ୍ଭ କରି ସବୁ ଦେବତାମାନେ ଏହାଙ୍କର ଚରଣ ସେବା କରୁଅଛନ୍ତି ।

ଦଧ୍ନୋଘୃତସ୍ୟେକ୍ଷୁରସସ୍ୟ ତସ୍ମା—
ନ୍ମଦ୍ୟସ୍ୟ ଚ ସ୍ୱାଦୁଜଳସ୍ୟ ଚାନ୍ତ୍ୟଃ ।
ସ୍ୱାଦୂଦକାନ୍ତର୍ବଡ଼ବାନଳୋଽସୌ
ପାତାଳଲୋକାଃ ପୃଥିବୀପୁଟାନି ।୧୯।

କ୍ଷୀର ପରେ ଦଧି, ଘୃତ, ଗୁଡ଼, ମଦ୍ୟ ଓ ସର୍ବଶେଷରେ ପାଣି ସମୁଦ୍ର କ୍ରମାନ୍ୱୟେ ଦୂରେଇ ଦୂରେଇ ଅଛନ୍ତି । ଏହି ସ୍ୱାଦୁ ଜଳ ସମୁଦ୍ରର ମଧ୍ୟ ଦେଶରେ ବଡ଼ବାନଳ ଅଛି । ପୃଥିବୀରେ ଥିବା ଗହ୍ୱର ବା ଗାତ ଗୁଡ଼ିକୁ ହିଁ ପାତାଳ କୁହାଯାଇ ଥାଏ ।

ତଂଚତ୍ଫଣାମଣିଗଣାଂଶୁକୃତପ୍ରକାଶା
ଏତେଷୁ ସାସୁରଗଣାଃ ଫଣିନୋ ବସନ୍ତି ।
ଦୀବ୍ୟନ୍ତି ଦବ୍ୟରମଣୀରମଣୀୟଦେହୈଃ
ସିଦ୍ଧାଶ୍ଚ ତତ୍ର ଚଲସତ୍ କନକାବଦ୍ଧସେଃ ।୨୦।

ପାତାଳ ଲୋକରେ ଅସୁର ଓ ସର୍ପମାନେ ବାସ କରନ୍ତି । ସର୍ପମାନଙ୍କ ମଥାରେ ଥିବା ମଣିର ଆଲୋକରେ ଏହି ଗହ୍ୱର ଆଲୋକିତ । ସିଦ୍ଧମାନେ ସେମାନଙ୍କର ରୂପବତୀ ରମଣୀଙ୍କ ସହିତ ଏଠାରେ ବରାବର କ୍ରୀଡ଼ାରତ । ଏମାନଙ୍କ ଦେହରେ ଗହଣା ରୂପେ ବ୍ୟବହୃତ ସ୍ୱର୍ଣ୍ଣ ଏହି କ୍ରୀଡ଼ା ବେଳେ ବରାବର ଚକ୍ ଚକ୍ କରୁଥାଏ । ସିଦ୍ଧ ଓ ସିଦ୍ଧାଙ୍ଗନାମାନଙ୍କ କ୍ରୀଡ଼ାରତ ଦେହ ସୁନା ଗହଣାର କାନ୍ତିରେ ଉଜଳ ଉଠୁଥାଏ ।

ଶାକଂ ତତଃଶାଲ୍ମଳମତ୍ର କୌଶଂ
କ୍ରୌଞ୍ଚଂ ଚ ଗୋ ମେଦକ* ପୁଷ୍କରେ ଚ ।
ଦ୍ୱୟୋର୍ଦ୍ୱୟୋରନ୍ତର ମେକ ମେକଂ
ସମୁଦ୍ରୟୋର୍ଦ୍ୱୀପମୁଦାହରନ୍ତି ।୨୧।

ଏ ଯେଉଁ ସାତଟି ସମୁଦ୍ର କଥା କୁହାଗଲା, ଏ ପ୍ରତ୍ୟେକେ ବଳୟାକାର । ଏଣୁ ସାତ ସମୁଦ୍ର ମଧ୍ୟରେ ୬ଟି ଦ୍ୱୀପ ଅଛି । ଏମାନଙ୍କର ନାମ ଯଥାକ୍ରମେ ଶାକ, ଶାଲ୍ମଳ, କୌଶ କ୍ରୌଞ୍ଚ, ଗୋମେଦକ ଓ ପୁଷ୍କର । (ଗୋମେଦକର ଅନ୍ୟନାମ ପ୍ଲକ୍ଷ ।)

ଲଙ୍କାଦେଶାଦ୍ଧିମଗିରିରୁଦଗ୍ ହେମକୂଟୋଽଥ ତସ୍ମାତ୍
ତସ୍ମାଚାନ୍ୟୋ ନିଷଧ ଇତ ତେ ସିନ୍ଧୁପର୍ଯ୍ୟନ୍ତଦୈର୍ଘ୍ୟାଃ ।
ଏବଂ ସିଦ୍ଧାଦୁଦଗପି ପୁରାତ୍ ଶୃଙ୍ଗବତ୍ ଶୁକ୍ଲନୀଳା-
ବର୍ଷାଣ୍ୟେଷାଂ ଜଗୁରହ ବୁଧା ଅନ୍ତରେ ଦ୍ରୋଣିଦେଶାନ୍ ।୨୨।

---

* ପ୍ଲକ୍ଷଦ୍ୱୀପସ୍ୟ ଗୋମେଦକ ମିତି ନାମାନ୍ତରଂ

ଲଙ୍କାଠାରୁ ହିମଗିରି ଉତ୍ତରରେ ଅଛି । ତା'ଠାରୁ ଉତ୍ତରକୁ ହେମକୂଟ ପର୍ବତ । ଏହାଠାରୁ ଉତ୍ତରକୁ ପୁଣି ନିଷଧ ପର୍ବତର ଅବସ୍ଥିତି । ଏମାନେ ପ୍ରତ୍ୟେକେ ସମୁଦ୍ର ପର୍ଯ୍ୟନ୍ତ ପ୍ରସାରିତ ।

ପୁଣି ସିଦ୍ଧପୁରର ଉତ୍ତରରେ ଯଥାକ୍ରମେ ଶୃଙ୍ଗବାନ୍, ଶୁକ୍ଳ ଓ ନୀଳ ପର୍ବତ ରହିଅଛି । ଦୁଇ ଦୁଇ ପର୍ବତର ମଧ୍ୟରେ ଦେଶ ସବୁ ରହି ଅଛନ୍ତି ଏବଂ ଏମାନଙ୍କୁ ଦ୍ରୋଣୀ ଦେଶ କୁହାଯାଉଅଛି ।

ଭାରବର୍ଷମିଦଂ ହ୍ୟୁଦଗସ୍ମାତ୍
କିନ୍ନରବର୍ଷମତୋ ହରିବର୍ଷମ୍ ।
ସିଦ୍ଧପୁରାଚ ତଥା କୁରୁ ତସ୍ମାତ୍
ଚଛି ହିରଣ୍ମୟ ରମ୍ୟକବର୍ଷେ ।୧୬୩।

ପ୍ରଥମେ ଲଙ୍କାଠାରୁ ଭାରତ ବର୍ଷର ଆରମ୍ଭ । ଏହାର ଉତ୍ତରକୁ କିନ୍ନର ଦେଶ ଓ ପୁଣି ଏହାର ଉତ୍ତରକୁ ହରିଦେଶ । ସିଦ୍ଧପୁର ଠାରୁ ଉତ୍ତର ଆଡ଼କୁ ଏହି କ୍ରମରେ କୁରୁ, ହିରଣ୍ମୟ ଓ ରମ୍ୟକ ଦେଶ ରହିଅଛି ।

ମାଲ୍ୟବାଂଶ୍ଚ ଯବକୋଟିପତ୍ତନା—
ଦ୍ରୋମକାଚ କିଲ ଗନ୍ଧ—ମାଦନଃ ।
ନୀଳଶୈଳନିଷଧାବଧୀ ଚ ତା—
ବନ୍ତରାଳମନୟୋରିଳା ବୃତମ୍ ।୧୬୪।

ଯମ କୋଟି ପତ୍ତନ ଠାରୁ ଉତ୍ତରକୁ ମାଲ୍ୟବାନ୍ ଓ ରୋମକର ଉତ୍ତରକୁ ଗନ୍ଧମାଦନ ପର୍ବତ ରହିଅଛି । ଏ ଦୁଇଟି ପର୍ବତ ଯଥାକ୍ରମେ ନୀଳ ଓ ନିଷଧ ପର୍ବତ ପର୍ଯ୍ୟନ୍ତ ପ୍ରସାରିତ ହୋଇ ରହିଛନ୍ତି । ଏ ଦୁଇ ପର୍ବତର ମଧ୍ୟବର୍ତ୍ତୀ ଦେଶକୁ ଇଳାବୃତ କୁହାଯାଇ ଥାଏ ।

ମାଲ୍ୟବଜ୍ଜଳଧିମଧ୍ୟବର୍ତ୍ତି ଯ—
ତ୍ତଦ୍ଧି ଭଦ୍ରତୁରଗଂ ଜଗୁର୍ବୁଧାଃ ।
ଗନ୍ଧଶୈଳଜଲରାଶିମଧ୍ୟଗଂ
କେତୁମାଲକମିଳାକଳାବିଦଃ । ୧୬୫ ।

ମାଲ୍ୟବାନ୍ ପର୍ବତ ଓ ସମୁଦ୍ର ମଧ୍ୟରେ ଥିବା ଭୂଭାଗର ନାମ ଭଦ୍ର ତୁରଗ । ଗନ୍ଧମାଦନ ଓ ସମୁଦ୍ର ମଧ୍ୟରେ ସେହିପରି କେତୁମାଳକ ଦେଶ ଅଛି ବୋଲି ଭୂତତ୍ତ୍ୱଜ୍ଞ ଲୋକେ କହନ୍ତି ।

ନିଷଧନୀଲ ସୁଗନ୍ଧସୁମାଲ୍ୟକୈ—
ରଳମିଳାବୃତମାବୃତମାବଭୌ ।
ଅମରକେଳକୁଳାୟସମାକୁଳଂ
ରୁଚିରକାଞ୍ଚନଚିତ୍ରମହୀତଳମ୍ ।୧୬।

ନିଷଧ, ନୀଳ, ଗନ୍ଧମାଦନ ଓ ମାଲ୍ୟବାନ୍ ଏହି ଚାରି ପର୍ବତରେ ଚାରି ଦିଗରୁ ଆବୃତ ହୋଇ ବିସ୍ତୃତ ଇଳାବୃତ ଦେଶ ରହିଅଛି । ଏଥିରେ ଦେବତାମାନେ ଘର କରି ଆନନ୍ଦରେ ରହିଅଛନ୍ତି । ଏ ଦେଶର ମାଟି ମଧ୍ୟ ସୁନ୍ଦର ଓ ବିଚିତ୍ର । ଏଥିରେ ଅନେକ ସୁନା ମଧ୍ୟ ରହିଅଛି ।

ଇହ ହି ମେରୁଗିରିଃ କିଳମଧ୍ୟଗଃ
କନକରତ୍ନମୟସ୍ତ୍ରିଦଶାଳୟଃ ।
ଦ୍ରୁହିଣଜନ୍ମକୁପଦ୍ମକକର୍ଣ୍ଣିକେ—
ତି ଚ ପୁରାଣବିଦୋଽମୁମବର୍ଣ୍ଣୟନ୍ ।୧୭।

ଏହାର ମଧ୍ୟ ଦେଶରେ ମେରୁ ପର୍ବତ ରହିଅଛି । ଏହି ମାଟି ସ୍ୱର୍ଣ୍ଣମୟ ଓ ଏଥିରେ ଦେବତାମାନେ ବାସକରନ୍ତି । ପୁରାଣଜ୍ଞମାନେ କହନ୍ତି—ଏହି ପର୍ବତଟି ଭୂପଦ୍ମର କର୍ଣ୍ଣିକାପରି ଓ ଏଥିରୁ ବ୍ରହ୍ମା ଜନ୍ମିଥିଲେ ।

ବିଷ୍କମ୍ଭଶୈଳାଃ ଖଳୁ ମନ୍ଦରୋଽସ୍ୟ
ସୁଗନ୍ଧଶୈଳୋ ବିପୁଳଃ ସୁପାର୍ଶ୍ୱଃ ।
ତେଷୁ କ୍ରମାତ୍ ସନ୍ତି ଚ କେତୁ ବୃକ୍ଷାଃ
କଦମ୍ବଜମ୍ବୁବଟପିପ୍ପଳାଖ୍ୟାଃ ।୧୮।

ଏହି ମେରୁ ପର୍ବତର ଚାରୋଟି ବିଷ୍କମ୍ଭ ପର୍ବତ ଅଛନ୍ତି । ଏମାନେ ହେଲେ ମନ୍ଦର, ସୁଗନ୍ଧ (ଗନ୍ଧମାଦନ) ବିପୁଳ ଓ ସୁପାର୍ଶ୍ୱ । ଏହି ଚାରି ପର୍ବତରେ ଯଥାକ୍ରମେ କଦମ୍ବ, ଜମ୍ବୁ (ଜାମୁ), ବଟ ଓ ପିପ୍ପଳ (ଅଶ୍ୱତ୍ଥ) ଗଛ ବିଶେଷ ମାତ୍ରାରେ ଅଛି । ଏଗୁଡ଼ିକ ଏମାନଙ୍କର ବିଶେଷ ଚିହ୍ନ ।

ଜମ୍ବୂଫଳାମଳଗଳଦ୍‌ରସତଃ ପ୍ରବୃତ୍ତା
ଜମ୍ବୂନଦୀରସଯୁତେ ମୃଦଭୂତ୍ ସୁବର୍ଣ୍ଣମ୍ ।
ଜାମ୍ବୂନଦଂ ହି ତଦପଃ ସୁରସିଦ୍ଧ ସଂଘାଃ
ଶଶ୍ୱତ୍‌ପିବନ୍ତ୍ୟମୃତପାନପରାଙ୍‌ମୁଖାସ୍ତେ ।୧୯।

ଜାମ୍ବୁ ଫଳର ରସ ବହିଗଲା ଓ ଜାମ୍ବୁ ରସରୁ ଗୋଟିଏ ନଦୀ ସୃଷ୍ଟି ହେଲା । ଏହି ରସ ମାଟିରେ ଲାଗି ତାକୁ ସ୍ୱର୍ଣ୍ଣରେ ପରିଣତ କଲା । ଏହି ଜମ୍ବୁ ନଦୀର ପାଣି ପିଇବା ନିମନ୍ତେ ଦେବତା ଓ ସିଦ୍ଧମାନେ ଏପରି ଆଗ୍ରହ ପ୍ରକାଶକଲେ ଯେ ସେମାନେ ତା' ତୁଳନାରେ ଅମୃତକୁ ମଧ୍ୟ ଫିଙ୍ଗି ଦେଇଥିଲେ ।

ବନଂ ତଥା ଚୈତ୍ରରଥଂ ବରିଷ୍ଠଂ
ତେଷ୍ୱପ୍ସରୋନନ୍ଦନନନ୍ଦନଂ ଚ ।
ଧୃତ୍ୟାହ୍ୱୟଂ ଯଦ୍ଧୃତକୃତ୍ ସୁରାଣାଂ
ଭ୍ରାଜିଷ୍ଣୁ ବୈଭ୍ରାଜମିତି ପ୍ରସିଦ୍ଧମ୍ ।୧୩୦।

ଉକ୍ତ ଚାରୋଟି ପର୍ବତର ପାଦଦେଶରେ ଯଥାକ୍ରମେ ଚୈତ୍ରରଥ, ନନ୍ଦନ, ଧୃତି ଓ ବୈଭ୍ରାଜ ନାମରେ ଚାରି ନାମାନୁରୂପ ବନ ଅଛି । ଚୈତ୍ରରଥ ଅତି ବରିଷ୍ଠ; ନନ୍ଦନରେ ଅପ୍ସରମାନେ କ୍ରୀଡ଼ା କରନ୍ତି । ଧୃତି ଦେବତାମାନଙ୍କୁ ଧୈର୍ଯ୍ୟ ଦିଏ ଏବଂ ବୈଭ୍ରାଜ ଅତି ରୁଚିକର । ଏହି ବନଗୁଡ଼ିକ ଅତି ପ୍ରସିଦ୍ଧ ମଧ୍ୟ ।

ସର୍ବାଂସ୍ୟଥୈତେଷ୍ୱରୁଣଂ ଚ ମାନସଂ
ମହାହ୍ରଦଂ ଶ୍ୱେତଜଳଂ ଯଥାକ୍ରମମ୍ ।
ସରସ୍ସୁ ରାମାରମଣଶ୍ରମାଳସାଃ
ସୁରା ରମନ୍ତେ ଜଳକେଳି-ଲାଳସାଃ ।୧୩୧।

ଏହି ଚାରୋଟି ବନ ମଧ୍ୟରେ ଯଥାକ୍ରମେ ଅରୁଣ, ମାନସ, ମହାହ୍ରଦ ଓ ଶ୍ୱେତଜଳ ନାମରେ ଚାରୋଟି ହ୍ରଦ ଅଛି । ଦେବତାମାନେ ସ୍ତ୍ରୀ ରମଣରେ କ୍ଳାନ୍ତ ହୋଇ ଏହି ହ୍ରଦ-ମାନଙ୍କରେ ଜଳକେଳି କରୁଥିବା ବର୍ଣ୍ଣିତ ଅଛି ।

ସଦ୍ରତ୍ନକାଞ୍ଚନମୟଂ ଶିଖରତ୍ରୟଂ ଚ
ମେରୌ ମୁରାରିକପୁରାରିପୁରାଣି ତେଷୁ ।
ତେଷାମଧଃ ଶତମଖଜ୍ୱଳନାନ୍ତକାଖ୍ୟ—
ରକ୍ଷୋଽମ୍ବୁପାନିଲଧନେଶପୁରାଣି ଚାଷ୍ଟୌ ।୧୩୨।

ମେରୁ ପର୍ବତରେ ତିନୋଟି ଶୃଙ୍ଗ ଅଛି—ପ୍ରତ୍ୟେକ ରତ୍ନ ଓ ସ୍ୱର୍ଣ୍ଣ ନିର୍ମିତ । ଗୋଟିକରେ ବିଷ୍ଣୁ, ଦ୍ୱିତୀୟଟିରେ ବ୍ରହ୍ମା ଓ ତୃତୀୟଟିରେ ଶିବ ନିଜେ ପୁର ନିର୍ମାଣ କରି ରହିଅଛନ୍ତି । ଏହି ଶୃଙ୍ଗଗୁଡ଼ିକର ପାଦଦେଶରେ ଇନ୍ଦ୍ର, ଅଗ୍ନି ଯମ, ରାକ୍ଷସ, ବରୁଣ, ପବନ, କୁବେର ଓ ଶିବଙ୍କର ପୁର ରହିଅଛି ।

**ବିଷ୍ଣୁପଦୀ ବିଷ୍ଣୁପଦାତ୍‌ପତତା ମେରୌ ଚତୁର୍ଦ୍ଧାସ୍ମାତ୍‌।**
**ବିଷ୍କମ୍ଭାଚଳମସ୍ତକଶସ୍ତଶରଃସଙ୍ଗତା ବିୟୁତା ।୧୩୩ ।**

ବିଷ୍ଣୁ ପାଦରୁ ବାହାରି ଗଙ୍ଗା ଏହି ମେରୁରେ ପ୍ରଥମେ ପଡ଼ିଥିଲେ । ଏଠାରୁ ସେ ଚାରି ଭାଗରେ ବିଭକ୍ତ ହୋଇ ଚାରୋଟି ବିଷ୍କମ୍ଭ ପର୍ବତରେ ଥିବା ପ୍ରସିଦ୍ଧ ହ୍ରଦରେ ମିଳିତ ହେଲେ ଏବଂ କ୍ରମଶଃ ଆଗକୁ ବଢ଼ି ଚାଲିଲେ ।

**ଶୀତାଖ୍ୟାଭଦ୍ରାଶ୍ବଂ ସାଲକନନ୍ଦା ଚ ଭାରତଂ ବର୍ଷମ୍‌ ।**
**ଚକ୍ଷୁଶ୍ଚ କେତୁମାଳଂ ଭଦ୍ରାଖ୍ୟା ଚୋତ୍ତରାନ୍ କୁରୁନ୍ ଯାତା ।୧୩୪।**

ଶୀତା ଗଙ୍ଗା ଭଦ୍ରାଶ୍ବ ଦେଶରେ, ଅଳକାନନ୍ଦା ଗଙ୍ଗା ଭାରତବର୍ଷରେ, ଚକ୍ଷୁ ଗଙ୍ଗା କେତୁମାଳରେ ଓ ଭଦ୍ରା ଗଙ୍ଗା ଉତ୍ତର କୁରୁ ବର୍ଷରେ ପ୍ରବାହିତ ହେଲେ ।

**ଯାକର୍ଣ୍ଣିତାଭିଳଷିତା ଦୃଷ୍ଟାସ୍ପୃଷ୍ଟା ବଗାହିତା ପୀତା ।**
**ଉକ୍ତା ସ୍ମୃତା ସ୍ତୁତା ବା ପୁନାତି ବହୁଧାପି ପାପିନଃ ପୁରୁଷାନ୍‌ ।୧୩୫।**

ଗଙ୍ଗାର ନାମ ଶୁଣିଲେ, ତାଙ୍କୁ ପାଇବାକୁ ଇଚ୍ଛା କଲେ, ତାଙ୍କୁ ସ୍ପର୍ଶ କଲେ, ତାଙ୍କର ଜଳପାନ କଲେ, ତାଙ୍କର ନାମ ଉଚ୍ଚାରଣ କଲେ, ସ୍ମରଣ କଲେ ବା ତାଙ୍କର ସ୍ତୁତି କଲେ ବହୁ ପ୍ରକାର ପାପୀ ମୁକ୍ତ ହୋଇଯାନ୍ତି ।

**ଯାଂ ଚଳତେ ଦଳତାଖିଳବନ୍ଧୋ—**
**ଗଚ୍ଛତି ବଲ୍ଗତି ତତ୍‌ପିତୃସଂଘଃ ।**
**ପ୍ରାପ୍ତତଟେ ବଜିତାନ୍ତକଦୂତୋ**
**ଯାତି ନରୋ ନରୟାତ୍‌ ସୁରଲୋକମ୍‌ ।୧୩୬।**

ଲୋକ ଗଙ୍ଗାକୁ ଯିବା ଉଦ୍ୟମ କଲେ ତାର ପିତୃଲୋକଙ୍କର ସକଳ ବନ୍ଧନ ଛୁଟିଯାଏ । ସେ ଗଙ୍ଗାକୁ ପାଇବା ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କରି ଦେଲେ ସେମାନେ ଆନନ୍ଦରେ ନାଚି ଉଠନ୍ତି । ସେ ଗଙ୍ଗାକୂଳରେ ପହଞ୍ଚିଲେ ସେମାନେ ଯମଦୂତମାନଙ୍କୁ ପରାଜିତ କରନ୍ତି । ସେ ଗଙ୍ଗାଜଳରେ ପ୍ରବେଶ କଲା ମାତ୍ରେ ସେମାନେ ନରକରୁ ମୁକ୍ତ ପାଇ ସ୍ୱର୍ଗକୁ ଯାତ୍ରା କରନ୍ତି ।

**ଐନ୍ଦ୍ରଂ କଶେରୁଶକଳଂ କିଲ ତାମ୍ରପର୍ଣ୍ଣ—**
**ମନ୍ୟଦ୍‌ଗଭସ୍ତିମଦତଶ୍ଚ କୁମାରକାଖ୍ୟମ୍‌ ।**
**ନାଗଂ ଚ ସୌମ୍ୟମିହ ବାରୁଣମନ୍ତ୍ୟଖଣ୍ଡଂ**
**ଗାନ୍ଧର୍ବସଂଜ୍ଞମିତି ଭାରତବର୍ଷମଧ୍ୟେ ।୧୩୭।**

ଭାରତ ମଧ୍ୟ ବର୍ଷରେ ଏଇ କେତୋଟି ଖଣ୍ଡ ବା ପ୍ରାନ୍ତ ଅଛି । ଏ ଗୁଡ଼ିକର ନାମ ଏଣ୍ଟପର ଇନ୍ଦ୍ର, କଶେରୁ, ତାମ୍ରପର୍ଣ୍ଣ, ଗଭସ୍ତି ମାନ୍, କୁମାରିକା, ନାଗ, ସୌମ୍ୟ, ବାରୁଣ ଓ ଗାନ୍ଧର୍ବ ।

ବର୍ଣ୍ଣବ୍ୟବସ୍ଥିତିରତ୍ରୈବ କୁମାରିକାଖ୍ୟେ
ଶେଷେଷୁ ଚାନ୍ତ୍ୟଜଜନା ନିବସନ୍ତି ସର୍ବେ ।
ମାହେନ୍ଦ୍ରଶୁକ୍ତିମଳୟର୍କ୍ଷକପାରିଯାତ୍ରାଃ
ସହ୍ୟଃ ସବିନ୍ଧ୍ୟ ଇହ ସପ୍ତ କୁଳାଚଳାଖ୍ୟାଃ ।୧୩୮।

କୁମାରିକା ଖଣ୍ଡରେହିଁ ବର୍ଣ୍ଣ ବ୍ୟବସ୍ଥା ଅଛି । ଅନ୍ୟ ଖଣ୍ଡଗୁଡ଼ିକରେ ଅନ୍ତ୍ୟଜ (ଚଣ୍ଡାଳ) ଲୋକେ ସାଧାରଣତଃ ବାସ କରନ୍ତି । ଏହି ଭାରତବର୍ଷରେ ସାତଟି କୁଳାଚଳ (ପ୍ରାଚୀନ ଶ୍ରେଷ୍ଠ ଓ ବିଖ୍ୟାତ ପର୍ବତ ) ଅଛି । ଏଗୁଡ଼ିକର ନାମ ହେଲା—ମହେନ୍ଦ୍ର, ଶୁକ୍ତି, ମଳୟ, ଋକ୍ଷ (ଋକ୍ଷକ), ପାରିଯାତ୍ର, ସହ୍ୟ ଓ ବିନ୍ଧ୍ୟ (ଏଣୁ ପର୍ବତ ବା ତାର ନାମାନ୍ତର କହିଲେ ଜ୍ୟୋତିଷରେ ୭ ସଂଖ୍ୟାକୁ ବୁଝାଇଥାଏ । )

ଭୂର୍ଲୋକାଖ୍ୟୋ ଦକ୍ଷିଣେ ବ୍ୟକ୍ଷଦେଶାତ୍
ତସ୍ମାତ୍ ସୌମ୍ୟୋଽୟଂ ଭୁବଃ ସ୍ୱଶ୍ଚ ମେରୁଃ ।
ଲଭ୍ୟଃ ପୁଣ୍ୟୈ ସ୍ୱୈର୍ମହୋଽସ୍ମାତ୍ ଜନୋଽତୋ
ଲଭ୍ୟୋଽନଲ୍ପୈସ୍ତୈସ୍ତପଃ ସତ୍ୟମନ୍ତ୍ୟଃ ।୧୩୯।

ଯେଉଁଠାରେ ଅକ୍ଷାଂଶର ଅଭାବ ତାହା ବ୍ୟକ୍ଷଦେଶ । ସାଧାରଣତଃ ବିଷୁବରେଖା ଦେଶହିଁ ବ୍ୟକ୍ଷ ଦେଶ ଅଟେ । ଏହି ଦେଶର ଦକ୍ଷିଣକୁ ଭୂଲୋକ ଓ ଉତ୍ତରକୁ ଭୁବ ଲୋକ । ମେରୁ (ସୁମେରୁ) ହିଁ ସ୍ୱର୍ଲୋକ । ଏହାର ଉପରକୁ ମହଲୋକ, ଜନଲୋକ, ତପଲୋକ ଓ ଶେଷରେ ସତ୍ୟଲୋକ ରହିଅଛି । ପୁଣ୍ୟ ବଳରେ ଏହି ଲୋକ ସବୁ ମିଳିଥାଏ ।

ଲଙ୍କାପୁରେଽର୍କସ୍ୟ ଯଦୋଦୟଃ ସ୍ୟା—
ତ୍ତଦା ଦିନାର୍ଦ୍ଧଂ ଯମକୋଟି ପୁର୍ଯ୍ୟାମ୍ ।
ଅଧସ୍ତଦା ସିଦ୍ଧ ପୁରେଽସ୍ତକାଳଃ
ସ୍ୟା ଦ୍ରୋମକେ ରାତ୍ରିଦଳଂ ତଦୈବ ।୧୪୦।

ଲଙ୍କା ନଗରରେ ଯେତେବେଳେ ସୂର୍ଯ୍ୟର ଉଦୟ ହୁଏ, ଠିକ୍ ସେତିକିବେଳେ ଯମ କୋଟି ପୁରୀରେ ଦିନାର୍ଦ୍ଧ ହୁଏ । ଲଙ୍କାର ଠିକ୍ ତଳେ (୧୮୦° ରେ) ଥିବା ସିଦ୍ଧପୁରରେ ସେତେବେଳେ ସୂର୍ଯ୍ୟାସ୍ତ ଓ ରୋମକ ପତ୍ତନରେ ନିଶାର୍ଦ୍ଧ ହୋଇଥାଏ । (ଏହି ରୋମକ ପତ୍ତନ ଇଟାଲିର ରୋମ ନୁହେଁ ।)

ଯତ୍ରୋଦିତୋଽର୍କଃ କିଲ ତତ୍ର ପୂର୍ବା
ତତ୍ରାପରା ଯତ୍ର ଗତଃ ପ୍ରତିଷ୍ଠାମ୍ ।
ତନ୍ମଧ୍ୟତୋଽନ୍ୟେ ଚ ତତୋଽଖିଳାନା—
ମୁଦକ୍ ସ୍ଥିତୋ ମେରୁରିତ ପ୍ରସିଦ୍ଧିଃ । ୨୪୧ ।

ସୂର୍ଯ୍ୟ ଯେଉଁଠି ଉଦିତ ହୁଅନ୍ତି ତାହାହିଁ ପୂର୍ବ । ଯେଉଁଠି ପୁଣି ସେ ଅସ୍ତ ହୁଅନ୍ତି ତାହା ପଶ୍ଚିମ । ପୂର୍ବ ଓ ପଶ୍ଚିମ ମଧ୍ୟରେ ଉଭୟତ୍ର ଉତ୍ତର ଓ ଦକ୍ଷିଣ ଦିଗ । ଏହି ଚାରି ଦିଗରୁ ଅନ୍ୟ ସମସ୍ତ ବିଦିଗ ନିର୍ଣ୍ଣୟ କରିହେବ । ମେରୁ [ସୁମେରୁ] ସମସ୍ତଙ୍କର ଉତ୍ତରରେ ଅବସ୍ଥିତ ।

ଅଥୋଜ୍ଜୟିନ୍ୟାଃ କୁଚତୁର୍ଥଭାଗେ
ପ୍ରାଚ୍ୟାଂ ଦିଶି ସ୍ୟାଦ୍ ଯମକୋଟିରେବ ।
ତତଶ୍ଚ ପଶ୍ଚାତ୍ ନଭବେଦବନ୍ତୀ—
ଲଙ୍କୈବ ତସ୍ୟାଃ କକୁଭିଃ ପ୍ରତୀଚ୍ୟାମ୍ ।୨୪୨।

ଉଜ୍ଜୟିନୀର ପୂର୍ବରେ ୯୦°ରେ (ପୃଥିବୀର ୧/୪ ଅଂଶରେ) ଯମକୋଟି ପତ୍ତନ ରହିଅଛି । ମାତ୍ର ଏହି ଯମ କୋଟି ପତ୍ତନର ଠିକ୍ ପଶ୍ଚାତ୍ ଦେଶରେ (ପଶ୍ଚିମରେ) ଅବନ୍ତୀ ବା ଉଜ୍ଜୟିନୀ ନାହିଁ । ପରନ୍ତୁ ଯମକୋଟିର ଠିକ୍ ପଶ୍ଚିମରେ ଲଙ୍କାହିଁ ରହିଅଛି ।

ତଥୈବ ସର୍ବତ୍ର ଯତୋ ହି ଯତ୍ ସ୍ୟାତ୍
ପ୍ରାଚ୍ୟାଂ ତତସ୍ତନ୍ନ ଭବେତ ପ୍ରତୀଚ୍ୟାମ୍ ।
ନିରକ୍ଷଦେଶାଦିତରତ୍ର ତସ୍ମାତ୍
ପ୍ରାଚୀ ପ୍ରତୀଚ୍ୟୌ ଚ ଚରେ ସଂସ୍ଥେ ।୨୪୩।

ଏଥିରୁ ଜଣାଯାଉଛି—ଯେଉଁ ସ୍ଥାନଠାରୁ ପୂର୍ବରେ ଯେଉଁ ସ୍ଥାନରହିଅଛି, ସେହି ସ୍ଥାନଠାରୁ ଉକ୍ତସ୍ଥାନ ପଶ୍ଚିମରେ ନାହିଁ । ଅବଶ୍ୟ ଏ ଚରତ୍ର ବ୍ୟବସ୍ଥା ବିଷୁବ ବୃତ୍ତଠାରୁ ଅନ୍ୟତ୍ର ଦେଖା ଯାଇଥାଏ । ମାତ୍ର ବିଷୁବ ବୃତ୍ତରେ ଏ ଚରତ୍ର ବ୍ୟବସ୍ଥା ହୋଇ ନ ଥାଏ ।

ନିରକ୍ଷଦେଶେ କ୍ଷିତିମଣ୍ଡଳୋପଗୌ
ଧ୍ରୁବୌ ନରଃ ପଶ୍ୟତି ଦକ୍ଷିଣୋତ୍ତରୌ ।
ତଦାଶ୍ରିତଂ ଖେ ଜଳଯନ୍ତ୍ରବତ୍ତଥା
ଭ୍ରମଦ୍ ଭଚକ୍ରଂ ନିଜମସ୍ତକୋପରି ।୨୪୪।

ବିଷୁବ ବୃତ୍ତରେ ଥିବା ଲୋକ ଉଭୟ ଧ୍ରୁବକୁ (ସୁମେରୁ ଓ କୁମେରୁ) ନିଜ ଦିଗ୍‌ବଳୟରେ ଯଥାକ୍ରମେ ଉତ୍ତର ଓ ଦକ୍ଷିଣକୁ ଦେଖେ । ବିଷୁବକୁ ଆଶ୍ରୟ କରି ରହିଥିବା କ୍ରାନ୍ତି ବୃତ୍ତକୁ (ଆକାଶ ବୃତ୍ତ) ସେ ନିଜ ମୁଣ୍ଡ ଉପରେ ଆକାଶରେ ଦେଖେ । କ୍ରାନ୍ତି ବୃତ୍ତ ତାକୁ ଭ୍ରମଣ ଶୀଳ ଜଳଯନ୍ତ୍ର ପରି ଦେଖାଯାଏ ।

ଉଦଗ୍‌ଦିଶଂ ଯାତି ଯଥା ଯଥା ନର—
ସ୍ତଥା ତଥା ସ୍ୟାନ୍ନତମୃକ୍ଷମଣ୍ଡଳମ୍ ।
ଉଦଗ ଧ୍ରୁବଂ ପଶ୍ୟତି ଚୋନ୍ନତଂ କ୍ଷିତେ—
ସ୍ତଦନ୍ତରେ ଯୋଜନଜାଃ ପଳାଂଶକାଂ ।୧୪୪।

ବିଷୁବ ବୃତ୍ତରୁ ଉତ୍ତରକୁ ଯେପରି ଲୋକ ଯିବାକୁ ଆରମ୍ଭ କରେ, ସେପରି ତାକୁ କ୍ରାନ୍ତି ବୃତ୍ତଟି ତଳକୁ (ଦକ୍ଷିଣ ଆଡ଼କୁ) ନଇଁ ନଇଁ ଗଲାପରି ଦେଖାଯାଏ । ଉତ୍ତର ଧ୍ରୁବଟି ଏଣେ ପୃଥିବୀର (ଉତ୍ତର ଆଡ଼କୁ) ଉପରକୁ ଦେଖାପଡ଼େ । ବିଷୁବଠାରୁ ଲୋକ ଯେତିକ ଉତ୍ତରକୁ ଯାଉଥାଏ, ସେହି ସ୍ଥାନରୁ ବିଷୁବ ମଧ୍ୟରେ ଯେତିକ ଯୋଜନ ତାହାହିଁ ଅକ୍ଷାଂଶ ସମ୍ବନ୍ଧୀ ଯୋଜନ ବୋଲି ଜାଣିବାକୁ ହେବ ।

ଯୋଜନସଂଖ୍ୟାଭାଂଶୈର୍ଗୁଣିତା ସ୍ୱପରିଧିହୃତା ଭବନ୍ତ୍ୟଂଶାଃ ।
ଭୂମୌକକ୍ଷାୟାଂ ବା ଭଗେଭ୍ୟୋ ଯୋଜନାନି ଚ ବ୍ୟସ୍ତମ୍ ।୧୪୬।

ଏହି ଦେଶାନ୍ତର ଯୋଜନକୁ ୩୬୦°ରେ ଗୁଣି ଭୂ ପରିଧି ଯୋଜନରେ ହରିଦେଲେ ଉକ୍ତ ସ୍ଥାନର ଅକ୍ଷାଂଶ ଆସିଯିବ । ଏହି କଥା ପୃଥିବୀରେ ଯେପରି ଆସି ଯାଉଛି, ଗ୍ରହ କକ୍ଷାରେ ମଧ୍ୟ ସେପରି ଆସିଯାଇପାରିବ । ଠିକ୍ ଏହିପରି ଭାବରେ ଅକ୍ଷାଂଶ ଜଣାଥିଲେ ବିଷୁବାନ୍ତର ଯୋଜନ ମଧ୍ୟ ଜାଣି ହେବ । ଅବଶ୍ୟ ଏଥିନିମନ୍ତେ ଅନୁପାତକୁ ବଦଳାଇବାକୁ ପଡ଼ିବ ।

ସୌମ୍ୟଂ ଧ୍ରୁବଂ ମେରୁଗତାଃ ଖମଧ୍ୟେ
ଯାମ୍ୟଂ ଚ ଦୈତ୍ୟା ନିଜମସ୍ତକୋର୍ଦ୍ଧ୍ୱେ ।
ସବ୍ୟାପସବ୍ୟଂ ଭ୍ରମଦୃକ୍ଷ—ଚକ୍ରଂ
ବିଲୋକୟନ୍ତି କ୍ଷିତିଜ—ପ୍ରସକ୍ତମ୍ ।୧୪୭।

ସୁମେରୁବାସୀ ନିଜ ମୁଣ୍ଡ ଉପରେ ଉତ୍ତର ଧ୍ରୁବକୁ ଯେପରି ଦେଖନ୍ତି, କୁମେରୁବାସୀ ଅସୁରମାନେ ଦକ୍ଷିଣ ଧ୍ରୁବକୁ ଠିକ୍ ସେହିପରି ସେମାନଙ୍କ ମୁଣ୍ଡ ଉପରେ ଦେଖିଥାନ୍ତି । ଉଭୟେ ନକ୍ଷତ୍ର ଚକ୍ରକୁ (ଏଠାରେ କ୍ରାନ୍ତି ବୃତ୍ତକୁ) ନିଜ ନିଜର ଯଥାକ୍ରମେ ସବ୍ୟ ଓ ଅପସବ୍ୟ ଭାବରେ ଦିଗ୍‌ବଳୟ ନିକଟରେ ଘୂରୁଥିବାର ଦେଖନ୍ତି ।

ବୃଦ୍ଧିର୍ବିଧେରହ୍ନି ଭୁବଃ ସମନ୍ତାତ୍
ସ୍ୟାଦ୍‌ଯୋଜନଂ ଭୂତବଭୂତପୂର୍ବୈଃ ।
ବ୍ରାହ୍ମେ ଲୟେ ଯୋଜନ ମାତ୍ର ବୃଦ୍ଧେ—
ର୍ନାଶୋ ଭୁବଃ ପ୍ରାକୃତକେଽଖିଳାୟାଃ ।୧୪୮।

ବ୍ରହ୍ମ ଦିନରେ ପୃଥିବୀର ପୃଥୁତା ବୃତ୍ତ ପାଖରେ ଯୋଜନ (ପ୍ରାୟ ୪ ମାଇଲ) ମାତ୍ର ବଢ଼ିଯାଇଥାଏ । କାରଣ, ଏ ସମୟ ଭିତରେ ପୃଥିବୀର ଉଦ୍‌ଗତ ଭୌତିକ ପଦାର୍ଥଜାତ ହୋଇ ଏହିପରି ହୋଇଥାଏ । ଏଣୁ ବ୍ରାହ୍ମଲୟରେ ଏହି ଗୋଟିଏ ଯୋଜନ ବୃଦ୍ଧିର ନାଶ ହୋଇଥାଏ । ମାତ୍ର ପ୍ରାକୃତିକ ପ୍ରଳୟରେ ସମଗ୍ର ପୃଥିବୀ ନଷ୍ଟ ହୋଇଯାଏ ।

ଦିନେ ଦିନେ ଯନ୍ମ୍ରିୟତେ ହି ଭୂତୈ—
ର୍ଦୈନନ୍ଦିନଂ ତଂ ପ୍ରଳୟଂ ବଦନ୍ତି ।
ବ୍ରାହ୍ମଂ ଲୟଂ ବ୍ରହ୍ମଦିନାନ୍ତକାଳେ
ଭୂତାନି ଯଦ୍ ବ୍ରହ୍ମତନୁଂ ବିଶନ୍ତି ।୧୪୯।

ପ୍ରତ୍ୟହ ପ୍ରାଣୀ ଯେ ମରନ୍ତି ତାହାକୁ ଦୈନନ୍ଦିନ ପ୍ରଳୟ କୁହାଯାଇଥାଏ । ବ୍ରହ୍ମାଙ୍କ ଦିବସାବସାନରେ ସମଗ୍ର ଭୂତସୃଷ୍ଟି ବ୍ରହ୍ମାଙ୍କ ଦେହରେ ଲୀନ ହୋଇଥାଏ । ଏଣୁ ତାକୁ ବ୍ରାହ୍ମ ପ୍ରଳୟ କହନ୍ତି ।

ବ୍ରହ୍ମାତ୍ୟୟେ ଯତ୍ ପ୍ରକୃତିଂ ପ୍ରୟାନ୍ତି
ସର୍ବାଣ୍ୟତଃ ପ୍ରାକୃତକଂ କୃତୀନ୍ଦ୍ରାଃ ।
ଲୀନାନ୍ୟତଃ କର୍ମପୁଟାନ୍ତରତ୍ୱାତ୍
ପୃଥକ୍‌କ୍ରିୟନ୍ତେ ପ୍ରକୃତେର୍ବିକାରୈଃ ।୧୫୦।

ବ୍ରହ୍ମାଙ୍କ ନାଶବେଳେ ସବୁ ଭୂତସୃଷ୍ଟି ପ୍ରକୃତି କୋଳରେ ପ୍ରବିଷ୍ଟ ହେଉଥିବାରୁ କର୍ମୀମାନେ ତାକୁ ପ୍ରାକୃତିକ ପ୍ରଳୟ କହନ୍ତି । ପ୍ରକୃତିର ବିକାର-କର୍ମକୁ ନେଇ ଏସବୁକୁ ଅଲଗା ଅଲଗା କରି ଦେଇଥାଏ । ପୁଣି ସୃଷ୍ଟି ହୁଏ ।

ଜ୍ଞାନାଗ୍ନିଦଗ୍ଧାଖିଳପୁଣ୍ୟପାପା
ମନଃ ସମାଧାୟ ହରୌ ପରେଶେ ।
ଯଦ୍‌ଯୋଗିନୋଯାନ୍ତ୍ୟନିବୃତ୍ତି ମସ୍ମାତ୍
ଆତ୍ୟନ୍ତିକଂ ଚେତି ଲୟଶ୍ଚତୁର୍ଦ୍ଧା ।୧୫୧।

ଯୋଗୀମାନେ ନିଜର ଜ୍ଞାନରୂପକ ଅଗ୍ନିରେ ପୁଣ୍ୟ ଓ ପାପ ଉଭୟଙ୍କୁ ନଷ୍ଟ କରିଦେଇ ପରମ୍ପୁର ହରିଙ୍କଠାରେ ମନକୁ ନିବଦ୍ଧ କରି ଦେଇଥାନ୍ତି । ଫଳରେ ସେମାନେ ଆଉ ଏ ଜଗତକୁ ଆସିବାର ଇଚ୍ଛା କରନ୍ତିନାହିଁ । ଏହାକୁ ଆତ୍ୟନ୍ତିକ ପ୍ରଳୟ କୁହାଯାଏ । ଫଳରେ ନୈମିତ୍ତିକ, ବ୍ରାହ୍ମ, ପ୍ରାକୃତିକ ଓ ଆତ୍ୟନ୍ତିକ ଭେଦରେ ପ୍ରଳୟ ୪ ପ୍ରକାର ।

ଭୂ ଭୂଧରତ୍ରିଦଶଦାନବମାନବାଦ୍ୟା
ଯେ ଯାଶ୍ଚ ଧିଷ୍ଣ୍ୟଗଗନେଚରଚକ୍ରକକ୍ଷାଃ ।
ଲୋକବ୍ୟବସ୍ଥିତ ରୁପର୍ଯ୍ୟୁପରି ପ୍ରଦଷ୍ଟା
ବ୍ରହ୍ମାଣ୍ଡଭାଣ୍ଡଜଠରେ ତଦିଦଂ ସମସ୍ତମ୍ ।ଇତି ୧୫୨ ।

ପୃଥିବୀ, ପର୍ବତ, ଦେବ, ଦାନବ, ମାନବ, ନକ୍ଷତ୍ର, ଗ୍ରହ ଓ ସେମାନଙ୍କର କକ୍ଷା ତଥା ମହ, ଜନ, ତପ ଆଦି ଉପରେ ଉପରକୁ ଯେଉଁ ଲୋକ ବ୍ୟବସ୍ଥା ଏହି ସବୁ ଶ୍ଳୋକରେ ଦିଆଗଲା ସେ ସବୁ ଏକାଧାରରେ ଏହି ବ୍ରହ୍ମାଣ୍ଡର ଉଦର ରୂପକ ଭାଣ୍ଡରେ ରହିଅଛି । ବ୍ରହ୍ମାଣ୍ଡ ମଧ୍ୟରେ ହିଁ ଏ ସବୁ ଜିନିଷ ରହିଅଛି ଏଥିରେ କୌଣସି ସନ୍ଦେହ ନାହିଁ । ଇତି ।

ଭୂବ୍ୟାସଃ ଖଖଭୂପ ଯୋଜନମିତଂ ଯୋଽଦ୍ର୍ୟକ୍ଷିନନ୍ଦାଗ୍ନିଭିଃ
କ୍ଷୁଣ୍ଣଃ ଖାଶ୍ୱୁଗସୂର୍ଯ୍ୟହୃତ୍ ସ୍ପୁପରିଧିଃ ସୂକ୍ଷ୍ମୋଽପି କକ୍ଷାବଲୌ ।
ଖେଟାନାଂ ଭୁବ ଲପ୍ତିକାଂଶଘଟନା-ସୌକର୍ଯ୍ୟହେତୋରହ
ବ୍ୟାସଃ ଖାଭ୍ରରସାହତଃ କୁନବଭୂଭକ୍ତୋ ମତୋ ବେଷ୍ଟନମ୍ ।୧୫୩।

ତସ୍ମାଦ୍ୟୋଜନସଂଖ୍ୟୟା କୁପରିଧିଃ ଷଟ୍ପକ୍ଷଶୂନ୍ୟାଶ୍ୱୁଗାଃ
ଷଷ୍ଟ୍ୟଂଶୈର୍ଦ୍ଦଶଭିସ୍ତତଃ କ୍ଷିତ କୃତୈଃ ଯାର୍ଦ୍ଧଂମୟାବୋଦିତାଃ ।
ବ୍ୟାସଘ୍ନଃ ପରିଧିଃ କୁପୃଷ୍ଠଜଫଳଂ ବାଣାଷ୍ଟନାଗାବନୀ—
ବେଦାଭ୍ରଦ୍ୱିରଦା ସ୍ତତୋ ଘନଫଳଂ ବ୍ୟାସାଙ୍ଗଭାଗାହତେଃ ।୧୫୪।

ଭୂପୃଷ୍ଠସ୍ୟ ନିରକ୍ଷଦେଶତ ଉଦଗ୍ଭାଗେ ସ୍ଥଳଂ ଯୋଜନୈ—
ର୍ବାଣାଦ୍ରୀନ୍ଦୁଶରୈଷ୍ଟବାଣବସୁଭିସ୍ତୋୟଂ ମିତଂଜ୍ୟମ୍ବୁଧେଃ ।
ଶୂନ୍ୟଦ୍ୱ୍ୟଗ୍ନିରସେଷୁସାଗରଭୁଜୈ ର୍ଯାମ୍ୟେ ଦଳେ ଶୂନ୍ୟତୋ
ସମାଷ୍ଟାକ୍ଷିଷୁଶରୈସ୍ତୁଳଂ ଚ ଖଖଖାଷ୍ଟାଦ୍ର୍ୟବ୍ଧିସମୈର୍ଜଳଂ ।୧୫୫।

ପୃଥିବୀର ବ୍ୟାସ ୧୬୦୦ ଯୋଜନ ଅଟେ । ଏହି ବ୍ୟାସକୁ ୩୯୨୭ରେ ଗୁଣି ୧୨୫୦ରେ ହରିଲେ ଫଳ ପୃଥିବୀର ସୂକ୍ଷ୍ମ ପରିଧି ହେବ । ପୃଥିବୀର ବ୍ୟାସ ୧୬୦୦ଯୋଜନକୁ ୬୦୦ରେ ଗୁଣି ୧୯୧ ରେ ଭାଗଦେଲେ ମଧ୍ୟ ପୃଥିବୀ ବେଷ୍ଟନ ବା ପରିଧି ୫୦୨୬।୧୦।୪୧

ଯୋଜନ ହେବ । ପୃଥିବୀ ପରିଧିକୁ ବ୍ୟାସରେ ଗୁଣିଲେ ପୃଥିବୀ ପୃଷ୍ଠର କ୍ଷେତ୍ରଫଳ ହେବ ୮୦୪୧୮୮୪।୫୩।୨୦ ସ୍ୱଳ୍ପାନ୍ତରରୁ ୮୦୪୧୮୮୫ ଯୋଜନ ପୃଷ୍ଠ ଫଳକୁ ବ୍ୟାସରେ ଗୁଣି ୬ରେ ଭାଗ ଦେଲେ ପୃଥିବୀ ଗୋଲର ଘନଫଳହେବ ୨୧୮୪୫୦୨୭୭୬।୪୦ ଘନ ଯୋଜନ ।

ବିଷୁବ ବୃତ୍ତର ଉତ୍ତରକୁ ପୃଥିବୀରେ ୧୪୫୧୭୫ ଯୋଜନର ସ୍ଥଳଭାଗ ଅଛି ଏବଂ ୨୪୫୬୩୨୦ ଯୋଜନର ଜଳଭାଗ ଅଛି । ଦକ୍ଷିଣ ଗୋଲାର୍ଦ୍ଧରେ ୫୫୨୩୯୦ ଯୋଜନର ସ୍ଥଳଭାଗ ଏବଂ ୩୪୭୮୦୦ ଯୋଜନର ଜଳଭାଗ ଅଛି ।

ସିଃ ଶିଃ—ବୃତ୍ତକ୍ଷେତ୍ରେ ପରିଧିଗୁଣିତ ବ୍ୟାସ ପାଦଃ ଫଳଂ ତତ୍
କ୍ଷୁଣ୍ଣଂ ବେଦୈରୁପରି ପରିତଃ କନ୍ଦୁକସ୍ୟେବ ଜାଳଂ ।
ଗୋଲସ୍ୟୈବଂ ତଦପି ଚ ଫଳଂ ପୃଷ୍ଠଜଂ ବ୍ୟାସନିଘ୍ନଂ
ଷଡ୍‌ଭିର୍ଭକ୍ତଂ ଭବତି ନିୟତଂ ଗୋଲଗର୍ଭେ

ଘନାଖ୍ୟମ୍ ।ଇତି ।୧୫୭।

ପରିଧିକୁ ବ୍ୟାସରେ ଗୁଣି ଗୁଣଫଳର ୧/୪ ଅଂଶ ନେଲେ ତାହା ବୃତ୍ତକ୍ଷେତ୍ରର ଫଳ ହୋଇଥାଏ । ଏହି ବୃତ୍ତକ୍ଷେତ୍ରର ଫଳକୁ ୪ରେ ଗୁଣିଲେ ତାହା ଉକ୍ତ ବ୍ୟାସ ନିର୍ମିତ ଗୋଲ ପୃଷ୍ଠର କ୍ଷେତ୍ରଫଳ ହୋଇଥାଏ । ଗୋଲପୃଷ୍ଠ ଉପରେ ବର୍ଗାକୃତି କ୍ଷେତ୍ର ବିଶିଷ୍ଟ ଜାଲପରି ଏହା ଦେଖାଯାଇଥାଏ । ଗୋଟିଏ କନ୍ଦୁକ (ପେଣ୍ଡୁ) ଉପରେ ଗୁଡ଼ାଏ ବର୍ଗାକୃତି (କ୍ଷେତ୍ରଫଳ ପରିମାଣରେ) ଛୋଟ ଛୋଟ କ୍ଷେତ୍ର ଲେଖିଦେଲେ ସେ ପେଣ୍ଡୁଟି ଜାଲଘେରା ହୋଇଥିବାପରି ବାସ୍ତବରେ ଦେଖାଯାଇଥାଏ । କ୍ଷେତ୍ରଫଳକୁ (ପୃଷ୍ଠଫଳ) ବ୍ୟାସରେ ଗୁଣି ୬ରେ ହରିଦେଲେ ଗୋଲର ଘନଫଳ ହୋଇଥାଏ । ପ୍ରତି ଘନ ପଦାର୍ଥର ଦୈର୍ଘ୍ୟ, ବିସ୍ତୃତି ଓ ବେଧ (ପୃଥୁତା) ଅଛି । ଗୋଟିଏ ଗୋଲ (Globe)ରେ କେତେ ଏପରି ଘନପଦାର୍ଥ ରହିଛି ତାହାର ହିସାବ ଏହାଦ୍ୱାରା ଆସିଯାଇଥାଏ ।

କେଚିଦ୍‌ବଦନ୍ତ୍ୟତ୍ର ତୁ ବେଷ୍ଟନାର୍ଦ୍ଧଂ
ବ୍ୟାସଂ ପ୍ରକଳ୍ପ୍ୟାସ୍ୟ ଭୁଜାକ୍ଷିଘାତାତ୍ ।
ନଗୋଦ୍ଧୃତାତ୍ ତତ୍‌ପରିଧିର୍ବିଧେୟ—
ସ୍ତଦ୍‌ଯୁଗ୍ମ—ଘାତସ୍ୟ ଚତୁର୍ଥଭାଗଃ ।୧୫୭।

କ୍ଷେତ୍ରସ୍ୟ ବୃତ୍ତସ୍ୟ ଫଳଂ ଯଦେତତ୍
ଗୋଲାର୍ଦ୍ଧ—ତୁଲ୍ୟସ୍ୟ ତତୋଦ୍ୱିକଘ୍ନମ୍ ।
ତଦ୍‌ଗୋଲପୃଷ୍ଠସ୍ୟ ଫଳଂ ପୁରୋକ୍ତା
ତ୍ପାଦାଧିକଂ ସମ୍ଭବତୀତି ତନ୍ନ ।୧୫୮।

କେହି କେହି କହନ୍ତି (ଭାସ୍କର ପ୍ରଭୃତି) ପରିଧିର ଅଧାକୁ ବ୍ୟାସ ଧରି ତାକୁ ୨୨ରେ ଗୁଣି ୭ରେ ହରଲେ ସେହି ବ୍ୟାସର ପରିଧି ହୁଏ । ପରିଧି ଓ ବ୍ୟାସର୍ ଗୁଣନ କରି ତାହାର ୧/୪ ନେଲେ ବୃତ୍ତର କ୍ଷେତ୍ରଫଳ ହୁଏ । ଏହା ବାସ୍ତବରେ ଗୋଲାର୍ଦ୍ଧ ବ୍ୟାସ ତୁଲ୍ୟ କୌଣସି ବୃତ୍ତ କ୍ଷେତ୍ରର ଫଳ ସହ ସମାନ । ତାହାକୁ ୨ରେ ଗୁଣିଲେ ଗୋଲପୃଷ୍ଠ ଫଳ ହୁଏ । ଏହି ପୃଷ୍ଠ ଫଳ କିନ୍ତୁ ପୂର୍ବ କଥିତ ପୃଷ୍ଠ ଫଳଠାରୁ ଚତୁର୍ଥାଂଶ ଅଧିକ ହେଉଅଛି ।

**ବକ୍ଷ୍ୟେ ସ୍ଫୁଟଂ ସାଧନମିଷ୍ଟଗୋଲଂ**
**ଭଚକ୍ରଲପ୍ତା ସମମାଚରେଦ୍ୟ ।**
**ତ୍ରିଜ୍ୟାମିତଂ ବ୍ୟାସଦଳଂ ପ୍ରକଳ୍ପ୍ୟ**
**ଦଦ୍ୟାତ୍ତଦୂର୍ଦ୍ଧ୍ୱାଧରକେନ୍ଦ୍ରବିନ୍ଦୂ ।୧୫୯।**

**ନିରକ୍ଷବୃତ୍ତଂ ବଳୟେତ୍ତଦନ୍ତ—**
**ସ୍ତଦୂର୍ଦ୍ଧ୍ୱକେନ୍ଦ୍ରାବଧି ଗୋଲକାର୍ଦ୍ଧେ ।**
**ତତ୍ତ୍ୱାଶ୍ୱି ଲିପ୍ତା ପ୍ରମିତାନ ବୃତ୍ତା—**
**ନ୍ୟବଧ୍ୟକ୍ଷି ସଂଖ୍ୟାନ ବଳୟେତାନ ।୧୬୦।**

**ଭବନ୍ତି ତସ୍ମିନ୍ ବଳୟାଭିଧାନ**
**କ୍ଷେତ୍ରାଣି ତେଷାଂ କ୍ରମତୋ ନିରକ୍ଷାତ୍ ।**
**ବ୍ୟାସଃ ସମାନଃ ପରିଧିଃ କ୍ରମୋନଃ**
**ପ୍ରତ୍ୟେକ ମଧ୍ୟଂ ପ୍ରତିଲମ୍ବଜୀବାଃ ।୧୬୧।**

ବର୍ତ୍ତମାନ ସ୍ଫୁଟ ପୃଷ୍ଠଫଳ ଓ ଘନଫଳ କିପରି ଜଣାଯିବ ତାହା କୁହାଯାଉଛି— ଇଷ୍ଟ ବ୍ୟାସାର୍ଦ୍ଧରେ ଗୋଟିଏ ଗୋଲ (Globe) ତିଆରି କରିବ । ତାହାର ଗୋଟିଏ ପରିଧି ନେଇ ତାହାକୁ ୨୧୬୦୦ କଳାରେ ବିଭକ୍ତ କରିବ । ତାହାର ବ୍ୟାସକୁ ତ୍ରିଜ୍ୟା ୩୪୩୮ କଳା ବୋଲି ଧରିନେବ । ଏହାପରେ ଏହି ଗୋଲରେ ଊର୍ଦ୍ଧ୍ୱାଧର ଚିହ୍ନ ଦେବ । ସେହି ଗୋଲର ମଧ୍ୟଭାଗରେ ବିଷୁବ ବୃତ୍ତ ଲେଖିବ । ଯେଉଁ ଊର୍ଦ୍ଧ୍ୱାଧର ବିନ୍ଦୁ ଲେଖାଗଲା ସେ ଉଭୟଙ୍କର ମଧ୍ୟଭାଗରେ ବିଷୁବ ବୃତ୍ତ ରହିବ । ଊର୍ଦ୍ଧ୍ୱବିନ୍ଦୁରୁ ବିଷୁବ ପର୍ଯ୍ୟନ୍ତ ବୃତ୍ତ ପାଦରେ (୯୦°) ପ୍ରତି ୨୨୫ କଳା ବ୍ୟବଧାନରେ ୨୪ ଗୋଟି ବିଷୁବ ବୃତ୍ତ ସମାନାନ୍ତର ବୃତ୍ତ କରିବ । (ବିଷୁବ ବୃତ୍ତକୁ ନେଇ ୨୪ଟି ମାତ୍ର) ୧ମ ଟିକୁ ବାଦଦେଲେ ବାକି ଗୁଡ଼ିକ ୨୨୫ କଳା ଅନ୍ତରରେ ବପ୍ର କ୍ଷେତ୍ର ହେବେ । ପ୍ରତିବପ୍ର କ୍ଷେତ୍ର ମଧ୍ୟରେ ୨୨୫ କଳା ପ୍ରମାଣ (ବ୍ୟାସ) ସମାନ । ବିଷୁବଠାରୁ ଉପରକୁ ପରିଧିଗୁଡ଼ିକ କ୍ରମରେ ଛୋଟ ହେବ । ୨୨୫ କଳାର ଚାପ ପ୍ରତି ବପ୍ର କ୍ଷେତ୍ରର ଭୂମି ଓ ମୁଖ ଉପରେ ଲମ୍ବ ରୂପରେ ରହିଅଛି ।

ସ୍ୱସ୍ୱାକ୍ଷଲପ୍ତାଃ କ୍ରମତଃ ପ୍ରସାଧ୍ୟା
ପୁନଃ ପୁନସ୍ତତ୍ କୃତ ବର୍ଜିତାୟାଃ ।
ତଜ୍ୟାକୃତେ ମୂର୍ଲତୟା ଗୃହୀତାଃ
ସ୍ଥିରୀକୃତାଃ ସ୍ୟୁଶ୍ଚ ପରସ୍ପରଂ ତାଃ । ୧୬୨ ।

ତାସାଂଯୁତର୍ଦ୍ଦଳନ୍ତ ଶରାକ୍ଷିବାଣାଃ
ଷଷ୍ଟ୍ୟଂଶକୈରଷ୍ଟଗୁଣୈଶ୍ଚ ସିଦ୍ଧୈଃ ।
ସମଂ ଭବେୟୁଃ ପୁନରକ୍ଷପକ୍ଷ—
ପକ୍ଷା ହୃତାଶ୍ଚନ୍ଦ୍ରକଳାନରକ୍ଷେ । ୧୬୩ ।

ଫଳଂ ବୃହତ୍ କ୍ଷେତ୍ରଭବଂ ଭବନ୍ତି
ଖଖାଭ୍ରଶୂନ୍ୟାଙ୍ଗଗଜାବ୍ଧି ସଂଖ୍ୟାଃ ।
ତତ୍ ସଂଗୁଣାଲ୍ଲମ୍ବଗୁଣୈକ୍ୟତୋ ଯତ୍
ତ୍ରିଜ୍ୟା ବିଭକ୍ତାତ୍ ଫଳମେତଦେବ । ୧୬୪ ।

ଖଖାଷ୍ଟଷଷ୍ଟ୍ୟାକ୍ଷିକୃତାଦ୍ରି ତୁଲ୍ୟଂ
ସ୍ୟାଦ୍‌ଗୋଲପୃଷ୍ଠାର୍ଦ୍ଧଫଳଂ କଳାତ୍ମ ।
ଦ୍ୱିନଘ୍ନମେତତ୍ ସକଳଂ ଫଳଂ ସ୍ୟାତ୍
ପୃଷ୍ଠୋଦ୍ଭବଂ ଚନ୍ଦ୍ରକଳାଖ୍ୟଗୋଳେ । ୧୬୫ ।

ଦ୍ୱିଘ୍ନତ୍ରିଜୀବା ଗୁଣିତର୍କ ଚନ୍ଦ୍ର—
ଲିପ୍ତାସମଂ ତଦ୍‌ଭବତୀହ ଯସ୍ମାତ୍ ।
ତଦ୍‌ବେଷ୍ଟନବ୍ୟାସହତେଃ ପ୍ରସିଦ୍ଧଂ
ପୃଷ୍ଠେ ଫଳଂ ତଚ୍ଚତୁରସ୍ର ରୂପମ୍ । ୧୬୬ ।

ପ୍ରତ୍ୟେକମେଷାଂ ବଳୟାଭିଧାନା°
ଫଳାନି ତଦ୍ବତ୍ ବୃହତଃ ଫଳେନ ।
ନିଘ୍ନା ଚ ଲମ୍ବାତ୍ ତ୍ରିଗୁଣୋଦ୍ଧୃତାତ୍ ସ୍ୟୁ—
ସ୍ତଦ୍ ଯୋଗତଃ ପୃଷ୍ଠଫଳଂ ତଦେବ । ୧୬୭ ।

କୃତ୍ୱା ମୃତ୍ତିକୟା ସୁବର୍ତ୍ତୁଲ ଚତୁଷ୍କୋଣୌ ପୃଥକ୍ପିଣ୍ଡକୌ
ତୁଲ୍ୟବ୍ୟାସତୟା ତୟୋର୍ଗୁରୁତୟୋଃ ସ୍ୟାଦ୍ଯୋଽନୁପାତଃ ପୁନଃ ।
ତତ୍ପୃଷ୍ଠଚ୍ଛଦନାଂଶୁକଦ୍ୱୟତୁଲାଜ୍ଞାତୋଽନୁପାତଶ୍ଚ ଯଃ
ତାଭ୍ୟାମୁକ୍ତଘନାଖ୍ୟପୃଷ୍ଠଜଫଲେ ବୋଧେ ହି ବାଲୈରପି । ୧୬୮ ।

ପ୍ରତି ସ୍ଥାନର ଅକ୍ଷଜ୍ୟା ସାଧନ କରିବା ପୁଣି ତ୍ରିଜ୍ୟା ବର୍ଗରୁ ଅକ୍ଷଜ୍ୟା ବର୍ଗ ଫେଡ଼ି ତାହାର ମୂଳ ନେଲେ ଲମ୍ବଜ୍ୟା ହେବ । ଏହି ଲମ୍ବଜ୍ୟାମାନଙ୍କର ଯୋଗ ୫୨୫୩୨।୩୮।୨୪ ହେବ । ୨୧୬୦୦କୁ ୨୨୫ରେ ଗୁଣିଲେ ନିରକ୍ଷ ବୃତ୍ତରେ ଫଳ ହେବ । ତାହା ହେବ ୨୧୬୦୦ × ୨୨୫ = ୪୮୬୦୦୦୦ । ଏହାକୁ ଆଗତ ଲମ୍ବଜ୍ୟାଗୁଡ଼ିକର ଯୋଗରେ ୫୨୫୩୨।୩୮।୨୪ ଗୁଣି ତ୍ରିଜ୍ୟାରେ ଭାଗଦେଲେ ଫଳ ହେବ ୭୪୨୬୦୮୦୦ । ଏହା ଗୋଲାର୍ଦ୍ଧର କଳାତ୍ମକ ପୃଷ୍ଠ ଫଳ । ଏଣୁ ଏହାକୁ ୨ରେ ଗୁଣି ଦେଲେ ଚକ୍ରକଳା (୨୧୬୦୦) ପରିଧି ଗୋଲରେ ପୂର୍ଣ୍ଣ ଗୋଲ ପୃଷ୍ଠଫଳ ୭୪୨୬୦୮୦୦ × ୨ = ୧୪୮୫୨୧୬୦୦ କଳାତ୍ମକ ହେବ । ୨ × ୩୪୩୮ × ୨୧୬୦୦ = ୧୪୮୫୨୧୬୦୦ ଅର୍ଥାତ୍ ଦ୍ୱିଗୁଣିତ ତ୍ରିଜ୍ୟାକୁ ଚକ୍ରକଳାରେ ଗୁଣିଲେ ଏହି ଫଳହେଉଥିବାରୁ (୨୧୬୦୦ × ବ୍ୟାସ (୩୪୩୮) ହେଉଥିବାରୁ) ଏହାହିଁ ଚତୁର୍ଭୁଜର ଫଳପରି ଏଥିରେ ମଧ୍ୟ ଫଳ ହେଲା ।

ବୃହତ୍ ବୃତ୍ତଫଳକୁ ଲମ୍ବରେ (୨୨୫) ଗୁଣି ତ୍ରିଜ୍ୟାରେ ୩୪୩୮ରେ ହରିଲେ ପ୍ରତ୍ୟେକ ବପ୍ର କ୍ଷେତ୍ରର ଫଳ ହୁଏ । ଏହି ୨୪ଟି କ୍ଷେତ୍ରର ଫଳ ଆଣି ଯୋଗକଲେ ମଧ୍ୟ ଫଳ ଆଗତ ଫଳ ସମାନ ହୋଇଯାଏ ।

ସମାନ ବ୍ୟାସ ନେଇ ଗୋଟିଏ ଗୋଲ ଓ ଗୋଟିଏ ଚତୁରସ୍ର ମାଟିରେ ଗଢ଼ । ଉଭୟଙ୍କ ଓଜନର ଯେ ଅନୁପାତ ଏବଂ ଏ ଉଭୟଙ୍କୁ ଘୋଡ଼ାଇବାରେ ଯେଉଁ କନା ଲାଗିବ ତାହାର ଯେ ଅନୁପାତ ସେଥିରୁ ପୃଷ୍ଠଫଳ ଓ ଘନଫଳ କେତେ ତାହା ସାମାନ୍ୟ ପିଲାଟିଏ ମଧ୍ୟ ଜାଣିପାରିବ । ଏଠାରେ ବାଳର ଅର୍ଥ ଅଛି ସାମାନ୍ୟ ପଢ଼ ଥିବା ପିଲା ।

ମାନାଙ୍ଗୁଳଂ ବସୁଯବୋଦରସମ୍ମିତଂ ତୈ—
ର୍ମୁଷ୍ଟିଃ କୃତୈଶ୍ଚ ରସମୁଷ୍ଟିଭିରେବ ହସ୍ତଃ ।
ହସ୍ତୈଶ୍ଚତୁର୍ଭିରିହ ଦଣ୍ଡ ଉଦୀରତସ୍ତୈଃ
କ୍ରୋଶଃ ଖଖାଭ୍ରନୟନୈ ରଥ ତଦ୍ୟୁଗେନ । ୧୬୯ ।

ଗବ୍ୟୂତରେତ ଦ୍ଭୁୟଂ କିଲ ଯୋଜନଂ ସ୍ୟାତ୍
କେଶତ୍ ଖଭୂପଗଜଲୋଚନ ହସ୍ତମୂଢ଼ଃ ।
ଗଚ୍ଛତ୍ ସମାଙ୍ଗକନ୍ଣାଂ ଖଖତର୍କବାଣୈଃ
କ୍ରୋଶଃ ପଦୈର୍ଭବତ ବେଗବଳମ୍ବହୀନୈଃ । ୧୭୦ ।

ଆଠଟି ଯବକୁ ନେଇ ପେଟେଇ କରି ରଖିଲେ ଯେତେ ସ୍ଥାନ ଲଗିବ ତାକୁ ମାତ୍ରାଙ୍ଗୁଳ ଅର୍ଥାତ୍ ଏକ ଆଙ୍ଗୁଳ କହନ୍ତି । ଏପରି ୪ଟି ମାତ୍ରାଙ୍ଗୁଳରେ ଗୋଟିଏ ମୁଷ୍ଟି । ୬ ମୁଷ୍ଟିରେ ଗୋଟିଏ ହାତ, ୪ ହାତରେ ଗୋଟିଏ ଦଣ୍ଡ । ୨୦୦୦ ଦଣ୍ଡରେ ଗୋଟିଏ କୋଶ । ୨ କୋଶରେ ଗୋଟିଏ ଗବ୍ୟୂତଃ । ୨ଟି ଗବ୍ୟୂତରେ ଗୋଟିଏ ଯୋଜନ ହୁଏ । କେହି କେହି ପଣ୍ଡିତ ୨୮୧୬୦ ହାତରେ ଏକ ଯୋଜନ ହୁଏ ବୋଲି କହନ୍ତି । ସାଧାରଣ ଉଚ୍ଚତା ବଶିଷ୍ଟ (Standard) ଲୋକର ସମାନ ଭାବରେ ଗତି ବେଳେ ୫୬୦୦ ପାଦଗଣ୍ଡରେ ଗୋଟିଏ କୋଶ ହୁଏ ।

ଜ୍ୟାର୍ଦ୍ଧଂ କେଂଯତ ଯଥାଶ୍ରୁତେଷ୍ୱଭିହତଂ ଲୋକେଶସୂର୍ଯ୍ୟାଦଭିଃ
ଗବ୍ୟୂତର୍ଗଦତାବ ଯୋଜନମିତ ସ୍ମାର୍କାଦମାନେ ତଥା ।
ତସ୍ମାତ୍‌ବାସ୍ତବଭୂମିବସ୍ତୃତରସୌ ଖାଭ୍ରାଷ୍ଟଭିଃ ସମ୍ମିତା
ସେନ୍ଦୋର୍ଦ୍ୱିଦ୍ୱିଭୁଜୈ ରବେଃ ଖଖନଭଃଷଡ୍‌ବହ୍ନିଭିର୍ଯୋଜନୈଃ ।୧୭୧।

ଶଙ୍କୁଃ ସୂର୍ଯ୍ୟମିତାଙ୍ଗୁଳସ୍ତଦ୍ଭୁୟଂ ହସ୍ତଶ୍ଚତୁର୍ଭିର୍ଦ୍ଧନୁଃ
ସ୍ତୈଃ କ୍ରୋଶୋ ଧନୁଷାଂ ସହସ୍ରମିତ ବା ସ୍ୟାଦ୍‌ବିଷ୍ଣୁଧର୍ମୋତ୍ତରାତ୍ ।
ତସ୍ମାଦ୍ଦେଶବଶେଷସିଦ୍ଧମିତଭିସ୍ତଦ୍‌ଯୋଜନୈଃ ସମ୍ମିତାଃ
ପୂର୍ବୋକ୍ତାରବ ଚନ୍ଦ୍ରଭୂପ୍ରଭୃତୟଃ ସିଦ୍ଧାସ୍ତୁ ବା ବସ୍ତୁତଃ । ୧୭୨ ।

ବ୍ରହ୍ମ ସୂର୍ଯ୍ୟ ପ୍ରଭୃତି ସିଦ୍ଧାନ୍ତୀମାନେ ପୂର୍ଣ୍ଣଜ୍ୟାର ଅଧାକୁ ଜ୍ୟା ବୋଲି ଶାସ୍ତ୍ରରେ କହିଅଛନ୍ତି । ପୃଥିବୀ ଓ ସୂର୍ଯ୍ୟର ବମ୍ବମାନ କହିଲାବେଳେ ଗବ୍ୟୂତ (୨ କୋଶ)କୁ ଯୋଜନ ବୋଲି ମଧ୍ୟ କହିଅଛନ୍ତି । ଅର୍ଥାତ୍ ଯୋଜନର ଅର୍ଦ୍ଧକୁ ଯୋଜନ ବୋଲି ଗ୍ରହଣ କରାଯାଇଛି । ସେହି ହିସାବରେ ପୃଥିବୀର ବ୍ୟାସ ହେଲା—୮୦୦ ଯୋଜନ=($\frac{୧୬୦୦}{୨}$) ଯୋଜନ ଚନ୍ଦ୍ରର ସେହିପରି ବ୍ୟାସ=୨୨୨ ଯୋଜନ=($\frac{୪୪୪}{୨}$) ଯୋଜନ ଏବଂ ସୂର୍ଯ୍ୟର ବ୍ୟାସ ୩୬୦୦ ଯୋଜନ=($\frac{୭୨୦୦}{୨}$) ଯୋଜନ ।

ବିଷ୍ଣୁ ଧର୍ମୋତ୍ତର ପୁରାଣରୁ ଜଣାଯାଏ—ଶଙ୍କୁର ପରିମାଣ ୧୨ ଆଙ୍ଗୁଳ । ୨ ଶଙ୍କୁରେ ୧ ହାତ । ୪ ହାତରେ ଏକ ଧନୁ । ୧୦୦୦ ଧନୁରେ ଏକ କୋଶ । ଦେଶ ବଶେଷରେ ପରିମାଣ ଭିନ୍ନ ହେଉଥିବାରୁ ସେହି ଦେଶର ଯୋଜନରେ ଏହି ପରିମାଣକୁ

ଧରନେବାକୁ ହେବ । ଏହି ଯୋଜନ ପରିମାଣରେ ମଧ୍ୟ ରବି ଚନ୍ଦ୍ର ଓ ପୃଥିବୀ ଆଦିର ପରିମାଣ ବାସ୍ତବ ରୂପରେ ଧରନେବାକୁ ହେବ ।

| | | | |
|---|---|---|---|
| ବାସ୍ତବରେ | ରବି ବ୍ୟାସ | ୭୨୦୦୦ | ଯୋଜନ |
| ,, | ଚନ୍ଦ୍ର ,, | ୪୪୪ | ,, |
| ,, | ପୃଥିବୀ ,, | ୧୬୦୦ | ,, |

ବିଷ୍ଣୁ ଧର୍ମୋତ୍ତରେ—

**ଦ୍ୱାଦଶାଙ୍ଗୁଳକଃ ଶଙ୍କୁସ୍ତଦ୍‌ଧ୍ୟଂ ଚ ଶୟଃ ସ୍ମୃତଃ ।**
**ତଚ୍ଚତୁଷ୍କଂ ଧନୁଃ ପ୍ରୋକ୍ତଂ କ୍ରୋଶୋ ଧନୁଃ ସହସ୍ରକମ୍ ।ଇତି ।୧୭୩।**

୧୭୩ ଶ୍ଳୋକଟି ବିଷ୍ଣୁ ଧର୍ମୋତ୍ତର ପୁରାଣରୁ ଉଦ୍ଧୃତ ହୋଇଅଛି । ଅର୍ଥ ସୁସ୍ପଷ୍ଟ । ଅର୍ଥ ହାତ ।

**ଉଦ୍‌ବାହୋଃ ପ୍ରପଦୋତ୍‌ଥିତସ୍ୟ ପୁରୁଷସ୍ୟାର୍ଥାଂଶ—ହସ୍ତୈଃ ଖଷଡ଼୍**
**ଭୂନାଗାକ୍ଷି ମିତୈର୍ମିତଂ ସୁମତଭିର୍ଯଦ୍‌ଯୋଜନଂ ତୈଃ ପୁନଃ ।**
**ବ୍ୟଂଷୋଡନୈଃ କୃତନନ୍ଦଖାଗ୍ନି ଭିରଳା—ଗୋଲସ୍ୟ ଚେଦେବ୍‌ଷ୍ଟନଂ**
**ବ୍ୟାସୋ ବ୍ୟଂଘ୍ନି ଶରାଷ୍ଟଗୋଭିରୁଭୟାଘାତାତ୍ ଫଳଂ ପୃଷ୍ଠକମ୍ ।୧୭୪।**

**ନାଗାଷ୍ଟାବ୍ଧିରସାବ୍ଧି ଖାନଳମିତଂ ପଞ୍ଚାଶତା କୋଟିଭିଃ**
**ସ୍ୟାଦଲ୍ପାଭ୍ୟଧିକୈର୍ଘନାଭିଧଫଳଂ ଗର୍ଭେଽସ୍ୟ ତଦ୍‌ଯୋଜନୈଃ ।**
**ତୁଲ୍ୟଂ ଖାଶୁଗ କୋଟିଭିଶ୍ଚ ବିକଳାଦ୍ୟାନାଂ ବିଯୋଗାଭବେ—**
**ଦତ୍‌ଥଂ ଭୂବିବୃତଃ କୃତାଥ ନଭସି ଜ୍ୟୋତଃକ୍ରମୋ ବକ୍ଷ୍ୟତେ ।୧୭୫।**

ଉପରକୁ ହାତଟେକି ପାଦ ଆଙ୍ଗୁଳ ଉପରେ ଠିଆ ହୋଇଥିବା ପୁରୁଷର ପଞ୍ଚମାଂଶକୁ ଏକହାତ ପରିମାଣ ମାନିଲେ ୨୮୧୬୦ ହାତରେ ଏକ ଯୋଜନ ହେବା ପଣ୍ଡିତମାନେ କହନ୍ତି । ପୁଣି ୩୦୯୩।୪୦ ଯୋଜନରେ ପୃଥିବୀର ବ୍ୟାସ ହୁଏ ଏହାହେଲେ ଉଭୟ [ପ × ବ୍ୟା]ର ଗୁଣନ ଫଳରୁ ୩୦୪୬୪୮୮ ଯୋଜନ ପୃଥିବୀର ପୃଷ୍ଠଫଳ ହେବ । ଘନଫଳ ପୁଣି ୫୦୦୦୦୪୮୮୪ ଯୋଜନ ହେବ । ଏଥିରୁ ୪୮୮୪କୁ ବାଦଦେଲେ ୫୦୦୦୦୦୦୦୦ [୫୦ କୋଟି] ପୃଥିବୀର ଘନଫଳ ହେବ । ଏହିପରି ପୃଥିବୀର ବିବରଣ ଶେଷକରି ବର୍ତ୍ତମାନ ଆକାଶରେ ଜ୍ୟୋତିଷ ପଦାର୍ଥମାନଙ୍କର [ଗ୍ରହ ନକ୍ଷତ୍ର] ସ୍ଥିତି ସମ୍ବନ୍ଧରେ କହିବ ।

ନୀଳାରବିନ୍ଦସୁମିଳିନ୍ଦକଳିନ୍ଦଜେନ୍ଦ୍ର—
ନୀଳାମ୍ବୁଦାଳି—ଦଳିତାଞ୍ଜନ ପୁଞ୍ଜମଞ୍ଜୁମ୍ ।
ନୀଳାଚଳାଧରଣି ବେମୁକୁଟାୟମାନଂ
ନୀଳାମ୍ବରାନୁଜମଜଂ ଶରଣଂ ବ୍ରଜାମଃ ।୧୭୭।

ନୀଳକମଳ, ଶ୍ରେଷ୍ଠ ଭ୍ରମର, ଯମୁନା ଇନ୍ଦ୍ରନୀଳମଣି, ମେଘ ପଟଳ ଓ କଳା କଜ୍ଜ୍ୱଳ ରାଶିର ମିଶ୍ରିତ କଳାପରି ସୁନ୍ଦର [ଚିକଣିଆ କଳା] ନୀଳଗିରିର ମସ୍ତକରେ ମୁକୁଟପରି-ଶୋଭିତ, ବଳଦେବଙ୍କ ସାନଭାଇ ଏବଂ ନିତ୍ୟ ଅଜନ୍ମା ଯେ ଦାରୁବ୍ରହ୍ମରୂପୀ ଶ୍ରୀ ଜଗନ୍ନାଥ ତାଙ୍କଠାରେ ଆମ୍ଭେମାନେ ଶରଣ ଯାଉଅଛୁଁ ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳପ୍ରସୂତ
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ହ୍ୟଷ୍ଟାଦଶୋ ଗତ ଇଳାବୃତଃ ପ୍ରକାଶଃ ।୧୭୭।

ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ ଗୋଳାଧିକାରେ ଭୂଗୋଳବିବରଣୋ-
ନାମାଷ୍ଟାଦଶଃ ପ୍ରକାଶଃ ।

ଏଠାରେ ଭୂ ବିବରଣମୂଳକ ଅଷ୍ଟାଦଶ ପ୍ରକାଶ ଶେଷ ହେଲା ।

# ଊନବିଂଶଃ ପ୍ରକାଶଃ

## ଭଗୋଳଖଗୋଳବର୍ଣ୍ଣନମ୍

ସ୍ରଷ୍ଟୁର୍ଯାଃ ଶରୀରେନ୍ଦ୍ରିୟବିଷୟମୟୀ ଭୂତସୃଷ୍ଟିଃ ପୁରାସୀ—
ତତ୍ତଦ୍ବୀଜଂ ଦ୍ୱିଧାନ୍ତର୍ବହିରଭବଦତଃ ପଞ୍ଚକଂ ମଣ୍ଡଳାନାମ୍ ।
ବାହ୍ୟଂ ବ୍ରହ୍ମାଣ୍ଡଭାଣ୍ଡାବୃତିରୁଦରସମାକାରମନ୍ତଃ ଖବାୟ୍ୱୋ—
ର୍ବିମ୍ବଦ୍ୱନ୍ଦ୍ୱଂ ରବୀନ୍ଦ୍ୱୋ କ୍ଷିତିରପି ଇହ ମହସ୍ତୋୟଭୂମଣ୍ଡଳାନି । ୧ ।

ସ୍ରଷ୍ଟାଙ୍କର ଶରୀର, ଇନ୍ଦ୍ରିୟ ଓ ବିଷୟ ରୂପକ ଯେଉଁ ସବୁ ପ୍ରାଣୀସୃଷ୍ଟି ପୂର୍ବେ ଥିଲା, ସେଗୁଡ଼ିକର ମୂଳକାରଣ ପ୍ରଥମେ ଦୁଇ ଭାଗରେ ବିଭକ୍ତ । ଯଥା—୧ ଅନ୍ତର୍ବୀଜ ୨—ବହିର୍ବୀଜ । ଏହି ଅନ୍ତର୍ବୀଜ ଓ ବହିର୍ବୀଜରୁ ୫ଟି ମଣ୍ଡଳଜାତ ହେଲେ । ବାହ୍ୟ ଭାଗହିଁ ହେଲା ବ୍ରହ୍ମାଣ୍ଡ ଭାଣ୍ଡର ଆବରଣ । ଅନ୍ତର୍ବୀଜଟି ପୁଣି ଉଦର ପରି ବ୍ରହ୍ମାଣ୍ଡର ମଧ୍ୟଭାଗ । ସେଥିରୁ ଆକାଶ ଓ ବାୟୁ ମଣ୍ଡଳର ଉତ୍ପତ୍ତି ହେଲା । ରବି ତେଜ ମଣ୍ଡଳ, ଚନ୍ଦ୍ର ତୋୟମଣ୍ଡଳ ଓ ପୃଥିବୀ ଭୂମଣ୍ଡଳ । ଅର୍ଥାତ୍ ପୃଥିବୀ ଅପ୍, ବାୟୁ, ତେଜ ଓ ଆକାଶ ଏହି ୫ଟି ମହାଭୂତ ସୃଷ୍ଟିର କାରଣ ।

ଯୋଽଯାବକାଶମେରୁର୍ମରୁଦିତି ଗଦିତୋ ବୃତ୍ତଯଷ୍ଟିସ୍ୱରୂପ—
ସ୍ତତ୍ପ୍ରୋତସ୍ଥାସ୍ନୁଲୋକପ୍ରକରବିଟପିନୋ ମୂଳତୁଲ୍ୟାତ୍ କୁଗୋଳାତ୍ ।
ବାୟୁସ୍କନ୍ଧାଃ ସମନ୍ତାଦ୍ବହିରୁପରୟିନଃ ସନ୍ତି ସପ୍ତାବହାଦ୍ୟା
ଆବ୍ରହ୍ମାଣ୍ଡାଦହାସ୍ତେ ସ୍ଥିରଚରମଖିଳଂ ଭଗ୍ରହାମ୍ଭୋଧରାଦ୍ୟମ୍ । ୨ ।

ଆକାଶ ମେରୁକୁ ମରୁତ୍ ବୋଲି କୁହାଯାଇଅଛି । ଆକାଶ ବୃତ୍ତର ଏହା ଯଷ୍ଟି ସ୍ୱରୂପ ଅଟେ । (ଉଭୟ ଆକାଶ ମେରୁ ଅବଗାହି ସ୍ଥିତହିଁ ଏଠାରେ ମେରୁ ବା ମରୁତ୍ ନାମରେ କଥିତ) ଏହି ମେରୁ ଦଣ୍ଡରେ ଗୁମ୍ଫିତ ହୋଇ ଭୁବନଗୁଡ଼ିକ ରହି ଅଛନ୍ତି । ଏହି ଭୁବନରୂପୀ ବୃକ୍ଷର ମୂଳ ସଦୃଶ ପୃଥିବୀ ଗୋଲରୁ ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ଚାରି ତରଫରେ ଆବହ ଆଦି ସପ୍ତବାୟୁ—ସ୍କନ୍ଧ ବାହାରକୁ ବଢ଼ି ବଢ଼ି ରହିଅଛନ୍ତି । ଏହି ସପ୍ତବାୟୁ—ସ୍କନ୍ଧ ଭିତରେ ସମସ୍ତ ସ୍ଥିର ତଥା ଚଳତାରା, ଗ୍ରହ, ମେଘ ଆଦି ରହିଅଛି ।

ଶିରମଣୌ—ଭୂବାୟୁରାବହ ଇହ ପ୍ରବହସ୍ତଦୂର୍ଦ୍ଧ୍ୱଃ
ସ୍ୟାଦୁଦ୍ୱହ-ସ୍ତଦନୁ ସଂବହସଜ୍ଞକଶ୍ଚ ।
ଅନ୍ୟସ୍ତତୋଽପି ସୁବହଃ ପରପୂର୍ବକୋଽସ୍ମାତ୍
ବାହ୍ୟଃ ପରାବହ ଇମେ ପବନାଃ ପ୍ରସିଦ୍ଧାଃ । ୩ ।

ଭୂମେର୍ବହି ର୍ଦ୍ୱାଦଶଯୋଜନାନି
ଭୂବାୟୁରତ୍ରାମ୍ବୁଦବିଦ୍ୟୁଦାଦ୍ୟମ୍ ।
ତଦୂର୍ଦ୍ଧ୍ୱଗୋ ଯଃ ପ୍ରବହଃ ସ ନିତ୍ୟଂ
ପ୍ରତ୍ୟଗ୍ଗତସ୍ତସ୍ୟ ତୁ ମଧ୍ୟସଂସ୍ଥା । ୪ ।

ନକ୍ଷତ୍ରକକ୍ଷା ଖଚରୈଃ ସମେତୋ—
ଯସ୍ମାଦତସ୍ତେନ ସମାହତୋଽୟମ୍ ।
ଭପଞ୍ଜରଃ ଖେଚରଚକ୍ରଯୁକ୍ତୋ—
ଭ୍ରମତ୍ୟଜସ୍ରଂ ପ୍ରବହାନିଳେନ । ୫ ।

ଯାନ୍ତୋ ଭଚକ୍ରେ ଲଘୁପୂର୍ବଗତ୍ୟା
ଖେଟାସ୍ତୁ ତସ୍ୟାପରଶୀଘ୍ରଗତ୍ୟା ।
କୁଲାଳଚକ୍ରେ ଭ୍ରମିବାମଗତ୍ୟା
ଯାନ୍ତୋ ନ କୀଟା ଇବ ଭାନ୍ତି ଯାନ୍ତଃ । ଇତ । ୬ ।

ସିଦ୍ଧାନ୍ତ ଶିରୋମଣିରେ ଅଛି—

ଭୂବାୟୁକୁ ଆବହ କହନ୍ତି । ତାହାର ପରସ୍ତରରେ ପ୍ରବହ । ତାର ଉପର ଉପରକୁ ଉଦ୍‌ବହ, ସଂବହ, ସୁବହ, ପରିବହ ଓ ପରାବହ ଏପରି ବାୟୁ ବିଭାଗ ଅଛି ।

ପୃଥିବୀରେ ୧୨ ଯୋଜନ ପର୍ଯ୍ୟନ୍ତ ଭୂ ବାୟୁର ସ୍ଥାନ । ଏହାର ଭିତରେ ମେଘ ଓ ବିଦ୍ୟୁତ୍ ଆଦି ରହିଛନ୍ତି । ଏହାର ଉପରକୁ ପ୍ରବହ ବାୟୁ । ଏହାର ଗତି ପୂର୍ବରୁ ପଶ୍ଚିମକୁ । ଏହି ବାୟୁର ମଧ୍ୟଭାଗରେ ନକ୍ଷତ୍ର କକ୍ଷାବୃତ୍ତ ରହିଅଛି । ଏଥିରେ ଗ୍ରହମାନେ ଅଛନ୍ତି । ସେଥିପାଇଁ ପ୍ରବହ ଆଘାତରେ ସଗ୍ରହ ଭକକ୍ଷା ସର୍ବଦା ଚଳନଶୀଳ ରହିଅଛି । ପୂର୍ବରୁ ପଶ୍ଚିମକୁ ଦିନକୁ ଥରେ ଘୂରୁଛି ।

କୁମ୍ଭାର ଚକ ଯେଉଁ ଆଡ଼କୁ ଘୂରୁଥାଏ ସେଥିରେ ତାହାର ବିପରୀତ ଦିଗରେ ଗତି କରୁଥିବା ଗୋଟିଏ କୀଟକୁ ବସାଇ ଦେଲେ, ଚକର ଗତି ଆଡ଼କୁ ସେହି କୀଟ ସ୍ୱତଃ ଗତି କରୁଥିଲେ ମଧ୍ୟ ତାହାର ସ୍ୱ ଗତି ଚକରେ ଚକଗତି ବିପରୀତରେ ହୋଇ ରହିଥିବ । ଏହି କଥା କିନ୍ତୁ ଅତି ସାବଧାନତା ସହ ପରୀକ୍ଷା ନ କଲେ ଜଣାଯିବ ନାହିଁ ।

ପ୍ରାଗ୍ ଯାୟିମଧ୍ୟମରବେଃ ପରତୋ ଭସୂବେ
ମନ୍ଦୋଚ୍ଚକୃଷ୍ଟତନବଃ ଖଚରାଭ୍ରମନ୍ତଃ
ତତ୍ପୁନ୍ତ ଯାବତ ଭୁବୋଽନ୍ତର ଏବ ତସ୍ମାତ୍
ପଶ୍ଚାଦଗତାଂ ବହୁବଧା ଭବତ ସ୍ୱକକ୍ଷା । ୭ ।

ଅଥାବନୀବେଷ୍ଟନକୃଦ୍ରବୀନ୍ଦ୍ୱୋ—
ନ୍ୟୂନାଧିକାକର୍ଷଣତୋ ମୃଦୂତ୍ଥାତ୍ ।
କକ୍ଷା ନଜା ସ୍ୟାତ୍ ଅତଏବ ମଧ୍ୟା
ଲେଖ୍ୟାଗ୍ରତଃ କର୍ମ ତତଃ ସ୍ଫୁଟାନାମ୍ । ୮ ।

ଭୂସୂର୍ଯ୍ୟବାହ୍ୟାମ୍ବରସଞ୍ଚରାଣାଂ
ଦବୀୟସାଂ ଜୀବକୁଜାର୍କ-ଜାନାମ୍ ।
ଗତ୍ୟଲ୍ପଭାବାନ୍ନିଜମଧ୍ୟକକ୍ଷା—
ମଧ୍ୟାର୍କତୋ ମଧ୍ୟରବେସ୍ତୁ କକ୍ଷା । ୯ ।

ତେଷାଂ ଚଳାଖ୍ୟା ଭବତକ୍ଷିତୀନ—
ମଧ୍ୟାଭ୍ରସଞ୍ଚାରସିତଜ୍ଞୟୋଶ୍ଚ ।
ଅନଲ୍ପଗତ୍ୟୋ ରବମଧ୍ୟକକ୍ଷା
ମଧ୍ୟାଭିଧା ସ୍ୱା ରବତଶ୍ଚଳାଖ୍ୟା । ୧୦ ।

ସାପ୍ୟର୍କତସ୍ତଦ୍ ମୃଦୁକର୍ଣ୍ଣସିଦ୍ଧୌ
ମଧ୍ୟୋଚ୍ୟତେ କୋରବ ଚନ୍ଦ୍ରଭାନ୍ୱୋଃ ।
ସୂର୍ଯ୍ୟାତ୍ କୁଜାଦ୍ୟନ୍ତର ଏବ ମନ୍ଦ—
କର୍ଣ୍ଣଃ ସ୍ଫୁଟୋ ଦ୍ରାକ୍ ଭୁଜଃକୁଚଗୋଲତ୍ । ୧୧ ।

ମଧ୍ୟମ ରବ ପୂର୍ବକୁ ଯାଏ । ଏହାର ଗୁରୁ ପାଖରେ ନକ୍ଷତ୍ର ଓ ଗ୍ରହ ସଙ୍ଗତ ସୂତ୍ରରେ ମନ୍ଦୋଚ୍ଚ ଦ୍ୱାରା ଆକୃଷ୍ଟ ହୋଇ ତନୁବମ୍ବ ବଶିଷ୍ଟ ଗ୍ରହମାନେ ପୃଥିବୀଠାରୁ ପଶ୍ଚିମାଭମୁଖରେ ଚଳନ୍ତି । ଏଣୁ ସେମାନଙ୍କର ଏହି ସବୁ କକ୍ଷା ମଧ୍ୟସ୍ଥିତି ଭେଦରେ ଅନେକ ପ୍ରକାର ।

ପୃଥିବୀ ଗୃହପାଖରେ ରବି ଓ ଚନ୍ଦ୍ର ଭ୍ରମଣ କରନ୍ତି । ଏ ଦୁହିଁଙ୍କର ମନ୍ଦୋଚ୍ଚ ଏ ଦୁହିଁଙ୍କୁ ଅଳ୍ପ ଓ ବହୁତ ଆକର୍ଷଣ କରନ୍ତି ବୋଲି ଏମାନଙ୍କର ଭ୍ରମଣ ମାର୍ଗ ମଧ୍ୟ ଚନ୍ଦ୍ରାନୁଯାୟୀ ହୋଇଥାଏ । ଏଣୁ ପ୍ରଥମେ ମଧ୍ୟକକ୍ଷା ଲେଖିବାକୁ ହେବ । ଏହାପରେ ସ୍ଫୁଟ ସାଧନ ନିମନ୍ତେ କକ୍ଷା ଲେଖାଯିବ ।

ପୃଥିବୀ ଓ ସୂର୍ଯ୍ୟର ବାହାରେ ଅତି ଦୂରରେ ଥିବା ବୃହସ୍ପତି, ମଙ୍ଗଳ ଓ ଶନିର ଗତି ଅତ୍ୟନ୍ତ ଅଳ୍ପ ହେଉଥିବାରୁ ଏବଂ ରବିର ଗତି ମଧ୍ୟ ଅଳ୍ପ ହେଉଥିବାରୁ ମଧ୍ୟମ ସୂର୍ଯ୍ୟ କେନ୍ଦ୍ରରୁହିଁ ନିଜ ନିଜର କକ୍ଷା ହେବ । ଉକ୍ତ ଗୁରୁ ମଙ୍ଗଳ ଓ ଶନିର ଶୀଘ୍ର କେନ୍ଦ୍ର କକ୍ଷା ମଧ୍ୟ ରବିର କକ୍ଷାହିଁ ହେବ ।

ସୂର୍ଯ୍ୟ ଏବଂ ପୃଥିବୀ ମଧ୍ୟରେ ଥିବା ରବିଠାରୁ ଅଧିକ ଗତିଶୀଳ ବୁଧ ଓ ଶୁକ୍ରର ମଧ୍ୟକକ୍ଷା ମଧ୍ୟ ରବି ମଧ୍ୟକକ୍ଷା ବୋଲି ବୁଝିବାକୁ ହେବ ।

ଯେଉଁ ଚଳ କକ୍ଷା କଥା କୁହାହେଲା ରବିଠାରୁ ଉଭୟ ବୁଧ ଓ ଶୁକ୍ରଙ୍କର ମନ୍ଦ କର୍ଣ୍ଣ ସାଧନ କରିବା ନିମନ୍ତେ ତାହାକୁ ମଧ୍ୟକକ୍ଷା ବି କୁହାଯାଇପାରେ, ଯେପରି ଭୂମି (ପୃଥିବୀ) ଠାରୁ ଚନ୍ଦ୍ର ଓ ସୂର୍ଯ୍ୟର ମନ୍ଦକର୍ଣ୍ଣ ସାଧନ ନିମନ୍ତେ ମଧ୍ୟକକ୍ଷା ହୋଇଥାଏ । ସୂର୍ଯ୍ୟଠାରୁ ମଙ୍ଗଳ ଆଦି ଗ୍ରହର ଦୂରତାହିଁ ମନ୍ଦକର୍ଣ୍ଣ । ଏହାକୁ ସ୍ଫୁଟ ମନ୍ଦକର୍ଣ୍ଣ ବି କୁହାଯାଏ । ଏହି ଦୂରତା ସୂର୍ଯ୍ୟଠାରୁ ମଙ୍ଗଳ ଆଦିର ଅନ୍ତରରେ ହିଁ ହୋଇଥାଏ । ପୃଥିବୀଠାରୁ ମଙ୍ଗଳଆଦି ଗ୍ରହର ଶୀଘ୍ର କର୍ଣ୍ଣ ଓ ରବି ଚନ୍ଦ୍ରର ମନ୍ଦକର୍ଣ୍ଣ ହୋଇଥାଏ ।

ସୂର୍ଯ୍ୟଙ୍କାସ୍ତୁ ଜିତାଂ ମଧ୍ୟକକ୍ଷାଯୋଜନସଂଖ୍ୟୟା
ଶତାହତାଷ୍ଟଶୂନ୍ୟାଭ୍ରନାଗସୈନ୍ଧବସିନ୍ଧବଃ । ୧୨ ।

ଶୀଘ୍ରକକ୍ଷେୟମେବୋକ୍ତା କୁଜଜୀବାର୍କି-ଜନ୍ମନାଂ
ବୁଧସ୍ୟ ନଖବେଦାଙ୍ଗବାଣାବ୍ଧିଧୃତୟୋ ନିଜା । ୧୩ ।

ଶୁକ୍ରସ୍ୟାଭ୍ରାଷ୍ଟପଞ୍ଚେଷୁଶରାଙ୍ଗାବ୍ଧିଗୁଣାଃ ସ୍ମୃତା
ମଧ୍ୟାକୁଜସ୍ୟ ଖଷଡ୍‌ଗୁଣାଭ୍ରଗୁଣଦୃଙ୍‌ନଗାଃ । ୧୪ ।

ଗୀଷ୍ପତେର୍ନଖବାମାଷ୍ଟଶରସିଦ୍ଧାଃ ଶତାହତାଃ
ଶନେଃ ଖଖରସାଦ୍ର୍ୟଗ୍ନିପକ୍ଷଚନ୍ଦ୍ରାବ୍ଧିସିନ୍ଧବଃ । ୧୫ ।

ଶୀଘ୍ରକକ୍ଷା ଭଚକ୍ରାଂଶ ଗୁଣିତା ମଧ୍ୟୟୋଦ୍ଧୃତା
ଲବ୍ଧାଃ ଶୀଘ୍ର ପରିଧ୍ୟଂଶାଃ ଚନ୍ଦ୍ର ଚନ୍ଦ୍ରାର୍କଜା ମତାଃ । ୧୬ ।

ଶତଘ୍ନାମ୍ବରଷଟ୍‌ପୂର୍ଣ୍ଣରାମା ମନ୍ଦୋଚ୍ଚକକ୍ଷିକା
ଭାନାଂ ଖଖାଭ୍ରନାଗାଷ୍ଟଦୃଙ୍‌ନାଗନଖନୀରଦାଃ । ୧୭ ।

୧—ସୂର୍ଯ୍ୟ, ବୁଧ, ଶୁକ୍ର ଏମାନଙ୍କର କକ୍ଷାଯୋଜନ—୪୭୮୦୦୮୦୦

୨—ମଙ୍ଗଳ, ବୃହସ୍ପତି ଓ ଶନିର ଚଳକକ୍ଷାଯୋଜନ—୪୭୮୦୦୮୦୦

୩—ବୁଧ „ „ „ —୧୮୪୫୭୪୨୦

ଶୁକ୍ର „ „ „ —୩୪୭୫୫୫୮୦

୪—ମଙ୍ଗଳ „ „ „ —୭୨୩୦୩୬୦୦

୫—ବୃହସ୍ପତି „ „ „ —୨୪୫୮୩୨୦୦୦

ଶନି „ „ „ —୪୪୧୨୩୭୬୦୦

ଗ୍ରହର ଶୀଘ୍ର କକ୍ଷା (ଚଳକକ୍ଷା)କୁ ୩୬୦ରେ ଗୁଣି ଗ୍ରହର ମଧ୍ୟକକ୍ଷାରେ ଭାଗଦେଲେ ଯୁଗ୍ମ ପଦାନ୍ତରେ ଶୀଘ୍ର ପରିଧିର ଅଂଶାଦି ହେବ । ଅନୁପାତ—ଶୀଘ୍ର ପରିଧି ଅଂଶ

$$= \frac{\text{ଭଚକ୍ରାଂଶ} \times \text{ଶୀ. କ.କ୍ଷୋ}}{\text{ମ. କ. କ୍ଷୋ}}$$

ଚନ୍ଦ୍ରକକ୍ଷା ଯୋଜନ—୩୦୬୦୦୦

ନକ୍ଷତ୍ରକକ୍ଷା ଯୋଜନ—୧୭୨୦୮୨୮୮୦୦୦

ସ୍ୱସ୍ୱ କକ୍ଷେନ୍ଦୁଗୋଭୂଘ୍ନୀ ଖଖସୂର୍ଯ୍ୟହୃତା ଶ୍ରୁତଃ ।
ମଧ୍ୟା ସୂର୍ଯ୍ୟାଦ୍‌ବୁଧାଦୀନାଂ ଭୂମେଶ୍ଚ ର୍ଯ୍ୟେନ୍ଦୁଭସ୍ୱତାମ୍ ।୧୮।
ମନ୍ଦଶ୍ରୁତକଳାବଘ୍ନୀ ମଧ୍ୟା ତ୍ରିଜ୍ୟୋଦ୍ଧୃତା ସ୍ଫୁଟା
ମଧ୍ୟବନ୍ମନ୍ଦସଂସ୍କାରଃ ସୂର୍ଯ୍ୟାଜ୍‌ଜ୍ଞସିତ ଶୀଘ୍ରୟୋଃ ।୧୯।

ଭୂମଧ୍ୟାତ୍ ସ୍ଫୁଟଭୌମାଦକର୍ଣ୍ଣଜ୍ଞାନାୟ ମଧ୍ୟମଃ
କର୍ଣ୍ଣସ୍ତୃତୀୟକର୍ଣ୍ଣଘ୍ନସ୍ତ୍ରିଜ୍ୟାଭକ୍ତୋଽଥ ତୁର୍ଯ୍ୟୟା ।୨୦।

ଶ୍ରୁତ୍ୟାଭ୍ୟସ୍ତସ୍ତ୍ରିଜୀବାପ୍ତଃ କାର୍ଯ୍ୟଃ କକ୍ଷାପି କର୍ଣ୍ଣତଃ ।
ସାଧ୍ୟାଖଖାର୍କ ଗୁଣିତାତ୍ ଲୁନବେଦ୍ଧଭିରୁଦ୍ଧୃତାତ୍ ।୨୧।

ମନ୍ଦୋଚ୍ଚାନାଂ ଚ ପାତାନାଂ ଭଗଣାତ୍ରିତଭସ୍ୱବତଃ
କକ୍ଷାନକ୍ଷତ୍ର-କକ୍ଷୈବ ଜ୍ଞେୟା ଦୃଶ୍ୟେତରତ୍ୱିଷାଂ ।୨୨।

ଗ୍ରହର ନିଜ ନିଜ କକ୍ଷାକୁ ୧୯୧ରେ ଗୁଣି ୧୨୦୦ରେ ହରିଲେ ଲବ୍ଧି ବୁଧ, ଶୁକ୍ର, ମଙ୍ଗଳ, ଗୁରୁ ଓ ଶନିର ସୂର୍ଯ୍ୟଠାରୁ ଏବଂ ନକ୍ଷତ୍ର ତଥା ଚନ୍ଦ୍ରର ପୃଥିବୀଠାରୁ ମଧ୍ୟକର୍ଣ୍ଣ ହୁଏ ।

ମଧ୍ୟକର୍ଣ୍ଣକୁ ସ୍ଫୁଟ ମନ୍ଦକର୍ଣ୍ଣ କଳାରେ ଗୁଣି ତ୍ରିଜ୍ୟାରେ ହରିଲେ ଫଳ ସୂର୍ଯ୍ୟଠାରୁ ଯୋଜନାତ୍ମକ ସ୍ଫୁଟ ମନ୍ଦକର୍ଣ୍ଣ ହୁଏ । ମଧ୍ୟଗ୍ରହରେ ମନ୍ଦଫଳ ସଂସ୍କାର ଯେପରି କରାହୁଏ, ଠିକ୍ ସେହିପରି ବୁଧ ଓ ଶୁକ୍ରର ଶୀଘ୍ରୋଚ୍ଚରେ ମନ୍ଦଫଳ ସଂସ୍କାର କରିବାକୁ ହେବ ।

ପୃଥିବୀ କେନ୍ଦ୍ରରୁ ମଙ୍ଗଳ ଆଦି ଗ୍ରହର ଯୋଜନାତ୍ମକ ଶୀଘ୍ରକର୍ଣ୍ଣ ଜାଣିବାକୁ ହେଲେ ମଧ୍ୟମ କର୍ଣ୍ଣକୁ ତତ୍ତତ୍ସ୍ଥ କଳାତ୍ମକ ମନ୍ଦକର୍ଣ୍ଣରେ ଗୁଣି ତ୍ରିଜ୍ୟାରେ ଭାଗଦେବ । ପୁଣି ଏହି ଫଳକୁ ଚତୁର୍ଥ ଶୀଘ୍ରକର୍ଣ୍ଣରେ ଗୁଣି ତ୍ରିଜ୍ୟାରେ ହରିଲେ ମଙ୍ଗଳ ଆଦି ଗ୍ରହର ଯୋଜନାତ୍ମକ ସ୍ଫୁଟ ଶୀଘ୍ରକର୍ଣ୍ଣ ହେବ ।

କର୍ଣ୍ଣ ଜାଣିବାପରେ ୧୨୦୦ରେ ଗୁଣି ୧୯୧ରେ ହରିଦେଲେ କକ୍ଷା ଆସିଯିବ ।

**ସ୍ୱସ୍ୱକକ୍ଷାଃ ସ୍ୱଭଗଣୈରଭ୍ୟସ୍ତାଃ କୁଦିନୋଦ୍ଧୃତାଃ**
**ଫଳଂ ସ୍ୱଗତିମାନଂ ସ୍ୟାତ୍ ଖେଚରାଣାଂ ଦିନେ ଦିନେ ।୨୩।**

**ସ୍ୱସ୍ୱପୂର୍ବଗତିଃ ସ୍ୱସ୍ୱକକ୍ଷାୟାଂ ଯୋଜନାତ୍ମିକା**
**କଥ୍ୟତେଽତ୍ରୈକଦିବସେ ରବିମଧ୍ୟମସାଧନେ ।୨୪।**

**ଭୂଗୋଳଂପରିତୋଽର୍କସ୍ୟ ଗଜାଙ୍ଗାଷ୍ଟାଭ୍ରବଶ୍ୱକେ**
**ଖନଖେଶାବ୍ଧୋର୍ବୀନାଂ ପ୍ରାକ୍ ପଶ୍ଚାତ୍ କୃତଗୋନଖାଃ ।୨୫।**

**ଜ୍ଞଶୁକ୍ରୟୋସ୍ତୁ ମଧ୍ୟାର୍କଂ କ୍ରମାତ୍ତ୍ୟଭ୍ରାଷ୍ଟଗୋନଖାଃ**
**ଗୋଽକ୍ଷିଦସ୍ରବେଦତଥୟଃ ପରିତୋଽଥ ମହୀଭୁବଃ ।୨୬।**

**ବସୁସିଦ୍ଧାର୍ଥକକୁଭେ ଗୁରୋର୍ଦେବାବ୍ଧିଷଟ୍ଶରାଃ**
**ଶନୈଶ୍ଚରସ୍ୟ ନାଗାଭ୍ରପୂର୍ଣ୍ଣଚନ୍ଦ୍ରପୟୋଧୟଃ ।୨୭।**

ଗ୍ରହର କକ୍ଷା ଯୋଜନକୁ ଗ୍ରହର କଳ୍ପଭଗଣରେ ଗୁଣି କଳ୍ପ ସାବନ ଦିନରେ ହରିଲେ ଗ୍ରହର ଦୈନିକ ଯୋଜନ ଗତି ହୁଏ ।

ନିଜ ନିଜ କକ୍ଷାରେ ଏକ ସାବନ ଦିନରେ ଯୋଜନାତ୍ମିକା ପୂର୍ବଗତି ଯଥାକ୍ରମେ ଏହିପରି—

ରବିର — ୧୩୦୮୭୮
ଚନ୍ଦ୍ରର—୧୧୨୦୦
ଭଚକ୍ରର (ଅୟନ)—୨୦୪୯

ମଧ୍ୟମ ରବିର ଚତୁଃପାର୍ଶ୍ୱରେ ଭ୍ରମଣ କରୁଥିବା ବୁଧ ଓ ଶୁକ୍ରର ସ୍ୱକକ୍ଷାରେ ଏକ ଦିନରେ ଗତି ଏହିପରି—

ବୁଧର—୨୦୯୮୦୩
ଶୁକ୍ରର—୧୫୪୨୨୯
ମଙ୍ଗଳର—୧୦୫୨୪୮
ବୃହସ୍ପତିର—୫୬୭୩୩
ଶନିର—୪୧୦୦୮

**ଗତଶ୍ଚକ୍ରକଳାନିଘ୍ନୀ ସ୍ୱକକ୍ଷାପ୍ତା କଳାତ୍ମିକା ।**
**ଭବତ ପ୍ରାୟଶସ୍ତେଷାଂ, ଅଥୋକ୍ତା ଯୋଜନାତ୍ମିକା ।୨୮।**

**ଭଗଣର୍ଗ୍ରହକକ୍ଷାଘ୍ନୀ ଭକକ୍ଷାପ୍ତା ଫଳୋନଯୁକ୍**
**ପଶ୍ଚାତ୍ ପ୍ରାକ୍‌ଚକ୍ରଚଳନେ ଭବେତ୍ ଖେଟଗତିଃ ସ୍ଫୁଟା । ୨୯ ।**

ଯୋଜନାତ୍ମିକା ଅୟନ ଗତିକୁ ଗ୍ରହର କକ୍ଷା ଯୋଜନରେ ଗୁଣି ଭକକ୍ଷା ଯୋଜନରେ ହରିଲେ ଯେଉଁ ଫଳହେବ, ତାହାକୁ ଭ ଚକ୍ର ପଶ୍ଚିମକୁ ଗଲାବେଳେ ଗ୍ରହଗତିରୁ କମ୍ ଓ ଭ ଚକ୍ର ପୂର୍ବକୁ ଗଲାବେଳେ ଗ୍ରହଗତିରେ ଯୋଗ କଲେ ସାୟନ ମେଷାଦିରୁ ଗ୍ରହର ଯୋଜନାତ୍ମକ ସ୍ଫୁଟଗତି ହେବ ।

**ସ୍ୱତୁଙ୍ଗାକର୍ଷଣବଶାତ୍ କକ୍ଷା କେନ୍ଦ୍ରାନ୍ନତଃ ସଦାଂ**
**କର୍ଣ୍ଣସ୍ୟୋନାଧିକତ୍ୱେଽପି ସମୈବ ପ୍ରାଗ୍ଗତିର୍ଭବେତ୍ । ୩୦ ।**

ଉଚ୍ଚାକର୍ଷଣ ଜନିତ ଗ୍ରହ ନିଜ କକ୍ଷାରୁ ତଳ ଉପରକୁ ହେଉଥିଲେ ମଧ୍ୟ ତାହାର ଯୋଜନାତ୍ମକ ପୂର୍ବ ଗତି ସମାନ ହିଁ ରହେ । ଅନୁପାତାଗତ କଳାତ୍ମକ ମଧ୍ୟମଗତି ଯେପରି ସବୁବେଳେ ସମାନ ରହେ ସେହିପରି କକ୍ଷା ଯୋଜନାନୁପାତ ଜନିତ ଗତି ମଧ୍ୟ ସର୍ବଦା ସମାନ ରହେ ।

**ବିକ୍ଷିପ୍ତାନାଂ ସ୍ୱକୈଃ ପାତୈଃ ସୌମ୍ୟଯାମ୍ୟ-ଗତିଃ ପୁନଃ ।**
**ନ୍ୟୂନାଧିକା ଭବତ୍ୟେଷାଂ ମନ୍ଦକର୍ଣ୍ଣାନୁସାରତଃ । ୩୧ ।**

ନିଜ ନିଜ ପାତଦ୍ୱାରା କ୍ରାନ୍ତିବୃତ୍ତର ଦକ୍ଷିଣ ଓ ଉତ୍ତରକୁ ଯାଉଥିବା ଗ୍ରହମାନଙ୍କର ପୁଣି ଦକ୍ଷିଣ ଓ ଉତ୍ତର (ଶର) ଗତି ସେହିପରି ଗ୍ରହମାନଙ୍କର ମନ୍ଦକର୍ଣ୍ଣ ଅନୁପାତରେ ହିଁ ହୋଇଥାଏ ।

**ଭୂରିନ୍ଦୁସୌମ୍ୟଶୁକ୍ରାର୍କକୁଜେଜ୍ୟାର୍କିଭବୃତ୍ତକୈଃ**
**କ୍ରମାଦ୍ୱୃତୈର୍ବୃତେତ୍ୟୁକ୍ତଃ ପ୍ରାଗ୍ଭଂ ଦୃଷ୍ଟିବିରୋଧିନୀ । ୩୨ ।**

ଚନ୍ଦ୍ର, ବୁଧ, ଶୁକ୍ର, ରବି, ମଙ୍ଗଳ; ବୃହସ୍ପତି ଓ ଶନିର କ୍ରମରେ ବିସ୍ତୃତ କକ୍ଷାବୃତ୍ତଦ୍ୱାରା ଆବୃତ ହୋଇ ପୃଥିବୀ ରହିଅଛି ବୋଲି ପ୍ରାଚୀନମାନେ ଯାହା କହି ଅଛନ୍ତି ତାହା ଦୃକ୍‌ସିଦ୍ଧ ନୁହେଁ ।

**ଯତ୍ତଦୁକ୍ତାଃ ନଭଃକକ୍ଷା ସ୍ୱକଳ୍ପଭଗଣୋଦ୍ଧୃତା**
**ଲବ୍ଧାଭିର୍ଗ୍ରହକକ୍ଷାଭିଃ ସୈଦ୍ଧାଭିରନୁପାତତଃ । ୩୩ ।**

**ବେଷ୍ଟିତେ ଲିଖିତେ ବିନ୍ଦୌ ଭୂମିନାମ୍ନି ବିପଶ୍ଚିତା**
**ସ୍ୱସ୍ୱକକ୍ଷାସୁ ତୁଲ୍ୟାୟାଂ ନ୍ୟସ୍ତାୟାଂ ପ୍ରାଗ୍‌ଗତୌ ପୁନଃ । ୩୪ ।**

**ଶୀଘ୍ରୋଚ୍ଚାକର୍ଷଣୋଦ୍‌ଭୂତଦୋଃଫଳାଗ୍ରସ୍ଥିତଗ୍ରହ**
**ଭୂତାରସୂତ୍ରସୂତ୍ରସ୍ଥଶୁକ୍ରାର୍କୈନୈବ ବକ୍ରିତାମ୍ । ୩୫ ।**

ପ୍ରାଚୀନମାନେ ଆକାଶ କକ୍ଷାର ଯେଉଁ ପରିମାଣ କହିଅଛନ୍ତି, ତାହାକୁ ଗ୍ରହର କଳ୍ପ ଭଗଣରେ ହରିବାକୁ ହେବ ।

ଗ୍ରହ ଗୋଟିଏ କଳ୍ପରେଖକକ୍ଷା **ପରିମାଣ** (ଯୋଜନ) ଏବଂ କଳ୍ପଭଗଣ ପରିମାଣ **ଅତିକ୍ରମ** କରିପାରେ । ଗୋଟିଏ ଭଗଣ (୩୬୦°) ଭୋଗ କଲେ ସେ ସ୍ୱକକ୍ଷା ଯୋଜନ ତୁଲ୍ୟ ଯୋଜନ $\left(\frac{\text{ଖ କକ୍ଷା}}{\text{କଳ୍ପଭଗଣ}}\right)$ ଅତିକ୍ରମ କରେ ଏହା ମଧ୍ୟ ଏଥିରୁ ବାହାରିବ । ଏପରି ଭାବରେ ଯେଉଁ ଗ୍ରହକକ୍ଷା ସବୁ ବାହାରିବ, ଗୋଟିଏ ବିନ୍ଦୁକୁ ଭୂନାମ ଦେଇ ତାକୁ ଏହି କକ୍ଷାବୃତ୍ତ-ମାନଙ୍କରେ ପରିବେଷ୍ଟିତ କରି ରଖିବ । ଏହି କକ୍ଷାବୃତ୍ତରେ ଗ୍ରହକୁ ଲେଖିବ ଏବଂ ଗ୍ରହର ପୂର୍ବଗତି ମଧ୍ୟ ଲେଖିବ । ଏଥିରେ ଶୀଘ୍ରୋଚ୍ଚ ଆକର୍ଷଣରୁ ଗ୍ରହର ଯେଉଁ ଭୁଜଫଳ (ଶୀଘ୍ରଫଳ) ଉତ୍ପନ୍ନ ହେବ ତାହାର ଆଗରେ ଗ୍ରହକୁ ଲେଖିବ । ପୃଥିବୀ, ଗୋଟିଏ ତାର ଓ ଗ୍ରହ ଏ ତିନିକୁ ଗୋଟିଏ ସୂତ୍ରରେ ଦେଖିବ । ଏପରି ଦେଖି, ଲକ୍ଷ୍ୟ କରିବ ଯେ ଚନ୍ଦ୍ରାର୍ଦ୍ଧରେ ଅର୍ଥାତ୍ ଉଚ୍ଚ ଠାରୁ ୧୮୦°ରେ ବା ନୀଚ ସ୍ଥାନରେ ସେହି ଗ୍ରହ ବକ୍ର ହେବାର ଦେଖାଯାଉ ନାହିଁ । (ସାଧାରଣତଃ ନୀଚ ସ୍ଥାନରେ ବକ୍ର ହେବାର କଥା—ଏହା ଦେଖାଯାଉ ନ ଥିବାରୁ ପ୍ରାଚୀନମାନଙ୍କ "ଭୂମେଃ ପିଣ୍ଡଃ ଶଶାଙ୍କ" ଆଦି ଗ୍ରହସ୍ଥିତି ଦୃକ୍‌ସିଦ୍ଧ ବିରୁଦ୍ଧ ଅଟେ ।

**ତଦସ୍ମଦୁକ୍ତମାର୍ଗସ୍ଥାଃ କ୍ରମାଲ୍ଲଗତୟୋଽର୍କତଃ**
**ସୂର୍ଯ୍ୟର୍କ୍ଷସୂତ୍ରଗାଃକ୍ଷ୍ମର୍କ୍ଷସୂତ୍ରାଦ୍ ସୁର୍ଯ୍ୟବ୍ଦିଣଃ ଖଗାଃ । ୩୬ ।**

ରବିଠାରୁ କ୍ରମରେ ଅଳ୍ପଗତିକ ଗ୍ରହମାନେ (ମଙ୍ଗଳ, ଗୁରୁ ଓ ଶନି) ଭୂ ତାରାଗତ ସୂତ୍ରରୁ ସୂର୍ଯ୍ୟତାରାଗତ ସୂତ୍ରରେ ବର୍ତ୍ତୀ ହୁଅନ୍ତି ।

ଚଳକର୍ଣ୍ଣୋତ୍କ୍ରମାତ୍‌ବମ୍ବବକ୍ଷେପାଲ୍ପମହତ୍ତ୍ୱତଃ
ତାରଗ୍ରହାଣାମାୟାତ ମଧ୍ୟାର୍କାଭିଭ୍ରମଃ ସ୍ଫୁଟଃ । ୩୭ ।

ଶୀଘ୍ରକର୍ଣ୍ଣର ଆଧିକ୍ୟ ଓ ନ୍ୟୂନତା ବଶତଃ କ୍ରମରେ ବିମ୍ବ ଏବଂ ଶରର ଅଳ୍ପତ୍ୱ ଓ ମହତ୍ତ୍ୱ ହେତୁ ମଙ୍ଗଳ ପ୍ରଭୃତି ଗ୍ରହର ମଧ୍ୟମ ରବି ପରିଭ୍ରମଣ ସ୍ପଷ୍ଟ ହୋଇଥାଏ ।

ଯଦସ୍ୟାଦ୍‌ଭିସ୍ୱତଃ କକ୍ଷା ସୌରଭାସ୍କର ସମ୍ମତା
ତଦା ସ୍ୱଭୁକ୍ତତଥ୍ୟାଂଶେ ସିଦ୍ଧେ ପ୍ରାକ୍‌ପରଲମ୍ବନେ । ୩୮ ।

ମଧ୍ୟମଂ ଲମ୍ବନଂ କୌଜଂ ପ୍ରାୟଶଃ କଳକାଦ୍ୱୟଂ
ତ୍ରିଜ୍ୟାଘ୍ନଂ ଶୀଘ୍ରକର୍ଣ୍ଣାପ୍ତଂ ଭବେତ୍ ସ୍ୟାଦ୍ରସକଲିକମ୍ । ୩୯ ।

ସୂର୍ଯ୍ୟର କକ୍ଷା (ସୂର୍ଯ୍ୟଙ୍କଠାରୁ ଆରମ୍ଭ କରି ମଙ୍ଗଳ ଆଦି ଅନ୍ୟଗ୍ରହମାନଙ୍କର କକ୍ଷା) ଯଦି ସୂର୍ଯ୍ୟସିଦ୍ଧାନ୍ତ ଓ ଭାସ୍କରାଚାର୍ଯ୍ୟଙ୍କ ସମ୍ମତ ହୋଇଥାନ୍ତା ତା'ହେଲେ ଗତିର ପଞ୍ଚଦଶାଂଶ ପୂର୍ବ ବା ପର ଲମ୍ବନ ହେଉଥିବାରୁ ମଙ୍ଗଳର ମଧ୍ୟମ ଲମ୍ବନ ପ୍ରାୟ ୨ କଳା ହୁଅନ୍ତା । ମଙ୍ଗଳର ମଧ୍ୟଗତି $= ୩୧'।୨୬ = \frac{୩୧।୨୬}{୧୫} = ୨'$ (ସ୍ୱଳ୍ପାନ୍ତରରେ) । ମଙ୍ଗଳର ଏହି ଲମ୍ବନକୁ ୨' ତ୍ରିଜ୍ୟାରେ ଗୁଣି ଶୀଘ୍ରକର୍ଣ୍ଣରେ ହରିଲେ ରସାର୍ଦ୍ଧରେ ୬' କଳା ହୁଏ ।

ଯତସ୍ୟାଂ ବକ୍ରଗତୌ ସିଦ୍ଧ କଳକାୟାଂ କୁଜନ୍ମନଃ
ସାୟମୁଦୟନ୍ ଯୟା ସାକଂ ତାରୟାବମ୍ବ ଇକ୍ଷତେ । ୪୦ ।

ତତଃ ସିଦ୍ଧକଳା ପଶ୍ଚାଦସ୍ତକାଲେ ସ ଦୃଶ୍ୟତେ
ଯୟାପ୍ୟସ୍ତମୟେ ତୁଲ୍ୟଃ ପରେଽହନ୍ୟୁଦୟକ୍ଷଣେ । ୪୧ ।

ତୟା ସମୋ ହ ଦୃଶ୍ୟେତ ସ୍ୱଳ୍ପକକ୍ଷୋତ୍‌ଥଲମ୍ବନାତ୍
ମୟା ନ ଲକ୍ଷିତଂ ଭବେତ୍ କଦାଚତ୍‌କଳକାପି ଯତ୍ । ୪୨ ।

କୁଜସ୍ୟ ଲମ୍ବନଂ ତ ସ୍ମାଦୁକ୍ତା କକ୍ଷା ମହତ୍ତରା
ସୂର୍ଯ୍ୟସ୍ୟାନୁକ୍ରମାଦସ୍ୟାସ୍ତାରାଖ୍ୟଦ୍ୟୁଷଦାମପି । ୪୩ ।

ବକ୍ରଗତି କାଳରେ ମଙ୍ଗଳ ୨୪ କଳା ହେବାବେଳେ ସନ୍ଧ୍ୟାରେ ଯେଉଁ ତାରାସହ ସେ ଉଦୟ ହେବାର ଦେଖାଯାଏ, ଅସ୍ତବେଳେ ସେହି ତାରାଠାରୁ ୨୪ କଳା ପରେ ପଶ୍ଚିମଦିଗରେ ପୁଣି ମଙ୍ଗଳ ଦିଶେ । ଅସ୍ତବେଳେ ଯେଉଁ ତାରା ସମାନ ମଙ୍ଗଳ ଯାମ୍ୟ ହୁଏ, ତା ପରଦିନ ଉଦୟବେଳେ ଲମ୍ବନ ସମସ୍ତ ଅତି କମ ହେତୁ ପୁଣି ସେହି ତାରା ସହ ସେ (ମଙ୍ଗଳ ଯାମ୍ୟ) ଦେଖାଯିବାର କଥା । ମାତ୍ର ତାହା ହୁଏ ନାହିଁ । ମାତ ସ୍ଥାନରେ ମଙ୍ଗଳର ଲମ୍ବନ ଏକ କଳା ମଧ୍ୟ ମୁଁ ଦେଖିନାହିଁ । ଏଣୁ ଏହି ପାଞ୍ଚ ତାରା ଗ୍ରହର କକ୍ଷ । ସୂର୍ଯ୍ୟାନୁକ୍ରମରେ ମର୍ଦ୍ଧୋତ୍ତର ବୋଲି ମୋର ମତ । (ସୂର୍ଯ୍ୟସିଦ୍ଧାନ୍ତ ଓ ସିଦ୍ଧାନ୍ତଶିରୋମଣିର ଏହି ପାଞ୍ଚ ତାରାଗ୍ରହ କକ୍ଷାଠାରୁ ମୋ ଗ୍ରନ୍ଥର ପଞ୍ଚତାରାଗ୍ରହକକ୍ଷ ଅଧିକ ବଡ଼—ଏହା ମୋର ମତ ।)

ବ୍ୟର୍କସୂକ୍ଷ୍ମେନ୍ଦୁବାହୁଜ୍ୟା ଚନ୍ଦ୍ରକର୍ଣ୍ଣେନ ତାଡ଼ିତା
ସୌରଦ୍ୟୁକ୍ତାର୍କକର୍ଣ୍ଣାପ୍ତା ଫଳକଳ୍ପା ଯୁତେନତଃ । ୪୪ ।

ପକ୍ଷୟୋଃ ଶୁଭ୍ରଭିନ୍ନଶ୍ଚେତ୍ ଶୁକ୍ଲାଷ୍ଟମ୍ୟାଦ୍ୟପାଦକେ
କୃଷ୍ଣାଷ୍ଟମ୍ୟନ୍ତପାଦେ ଚ ପୂର୍ଣ୍ଣାର୍ଦ୍ଧଃ ସ୍ୟାନ୍ନ ଦୃକ୍ସମ । ୪୫ ।

ଯତ୍ତଦ୍ଦ୍ୱିତୀୟପାଦାନ୍ତତୃତୀୟାଂଘ୍ରିପ୍ରବେଶୟୋଃ
ଚନ୍ଦ୍ରାର୍ଦ୍ଧଂ ଲକ୍ଷ୍ୟତେ ସାକ୍ଷାତ୍ ସୂର୍ଯ୍ୟ କର୍ଣ୍ଣୋଽଧିକସ୍ତତଃ । ୪୬ ।

ଚନ୍ଦ୍ରରୁ ରବିକୁ ଅନ୍ତର କରି ତାହାର ଭୁଜଜ୍ୟା କର । ତାକୁ ଚନ୍ଦ୍ରକର୍ଣ୍ଣରେ ଗୁଣି ସୂର୍ଯ୍ୟ ସିଦ୍ଧାନ୍ତ ଓ ଭାସ୍କରଙ୍କ ଶିରୋମଣି ଆଦିରେ ଥିବା ରବି କର୍ଣ୍ଣରେ ହରିଲେ ଯେଉଁ ଫଳ ହେବ ତାହାକୁ ଶୁକ୍ଳ ପକ୍ଷରେ ଚନ୍ଦ୍ର ସହିତ ଯୋଗ କରିବ କିନ୍ତୁ କୃଷ୍ଣ ପକ୍ଷରେ ଚନ୍ଦ୍ରରୁ ସେହି ଫଳକୁ ଅନ୍ତର କରିବ । ତାହାହେଲେ ଶୁକ୍ଳାଷ୍ଟମୀର ୧ମ ପାଦରେ ଅର୍ଥାତ୍ ରବି ଓ ସୂକ୍ଷ୍ମ ଚନ୍ଦ୍ରର ଅନ୍ତର ୮୪ରୁ ୮୭° ମଧ୍ୟରେ ହେଲେ ଏବଂ କୃଷ୍ଣ ଅଷ୍ଟମୀର ଶେଷପାଦରେ ଅର୍ଥାତ୍ ରବି ଚନ୍ଦ୍ରାନ୍ତର ୨୭୪° ଠାରୁ ୨୭୭° ମଧ୍ୟରେ ହେଲେ ପୂର୍ଣ୍ଣଚନ୍ଦ୍ରମଣ୍ଡଳର ଅଧାଶୁକ୍ଳ ହୋଇପାରୁ ନାହିଁ (ଅର୍ଦ୍ଧ ଶୁକ୍ଳ ଦୃକ୍ସିଦ୍ଧ ହେଉ ନାହିଁ) । ଏତେବେଳେ ବୃତ୍ତାର୍ଦ୍ଧ ଶୁକ୍ଳ ଦେଖାଯିବାର କଥା । ସୂର୍ଯ୍ୟ ସିଦ୍ଧାନ୍ତ ଓ ଶିରୋମଣିରେ ଅଛି । କିନ୍ତୁ ଶୁକ୍ଳ ଅଷ୍ଟମୀର ୨ୟ ପାଦାନ୍ତରେ ଅର୍ଥାତ୍ ରବି ଓ ଚନ୍ଦ୍ରର ଅନ୍ତର ୯୦° ହେବାବେଳେ ପୁଣି କୃଷ୍ଣ ଅଷ୍ଟମୀର ତୃତୀୟପାଦ ପ୍ରବେଶରେ ଅର୍ଥାତ୍ ରବି ଚନ୍ଦ୍ରାନ୍ତର ୨୭୦° ହେବାବେଳେ (ଉଭୟତ୍ର) ବିମ୍ବାର୍ଦ୍ଧ ଶୁକ୍ଳ ହେବା ଦେଖାଯାଉଅଛି । ଏଣୁ ମୁଁ ସୂର୍ଯ୍ୟକର୍ଣ୍ଣ ଅଧିକ କରି ଅଛି ।

ମହତ୍ତ୍ୱା ଭବତାତ୍ କକ୍ଷାବିମ୍ବୟୋର୍ଯୁକ୍ତିଭୀ ରବେଃ
ଇୟତ୍ତା କଥମାନୀତା ପ୍ରଶ୍ନଶ୍ଚେଦତ କଥ୍ୟତେ । ୪୭ ।

ସୂର୍ଯ୍ୟଙ୍କ ଠାରୁ ଆରମ୍ଭ କରି ସବୁ ଗ୍ରହମାନଙ୍କ କକ୍ଷା ଓ ବିମ୍ବର ମହତ୍ତ୍ୱ ଯୁକ୍ତିଦ୍ୱାରା ସିଦ୍ଧ ହେବା ଉଚିତ୍ । ଏ ସବୁର ପରିମାଣ କିପରି ଏତେ ଥିଲା ପ୍ରଶ୍ନ କଲେ ଏହି ଉତ୍ତର ଦିଆଯିବ ।

ନ ହି ଶବ୍ଦାଖିଲତ୍ୟାଗାଦନୁମାନଂ ପ୍ରଶସ୍ୟତେ
ବସ୍ତାରେଽଙ୍ଗୀକୃତୋ ଭାନୋସ୍ତନ୍ମୟ୍ୟା ଶ୍ରୁତିସମ୍ମତଃ । ୪୮ ।

ବ୍ରହ୍ମବଦ୍ୟୋପନିଷଦି ପ୍ରଣବାର୍ଥନିରୂପଣେ
ଦ୍ୱାସପ୍ତତିସହସ୍ରାଣି ଯୋଜନାନୀତି ଭାସ୍ୱତଃ । ୪୯ ।

ଶ୍ରୀମହାପୁରୁଷେଣୋକ୍ତା ବସ୍ତୃତର୍ଯାନ୍ତମଶ୍ରୁତୌ
ଦୃକ୍‌ସିଦ୍ଧା ସାର୍କସିଦ୍ଧାନ୍ତଭୂବ୍ୟାସଶ୍ଚ ତଥା ମତଃ । ୫୦ ।

ସମସ୍ତ ଶାବ୍ଦ ପ୍ରମାଣ (ବେଦ ପ୍ରମାଣ) ଛାଡ଼ିଦେଲେ ଅନୁମାନର ପ୍ରଶସ୍ତି ରହି ନ ପାରେ । ତେଣୁ ମୁଁ ସୂର୍ଯ୍ୟଙ୍କର ବେଦୋକ୍ତ ବ୍ୟାସ ସ୍ୱୀକାର କରିଅଛି । ବ୍ରହ୍ମ ଉପନିଷଦରେ ପ୍ରଣବାର୍ଥ ନିରୂପଣ କଲାବେଳେ ମହାପୁରୁଷମାନେ ଅଥବା ବେଦରେ ସୂର୍ଯ୍ୟର ବ୍ୟାସ ୭୨୦୦୦ ଯୋଜନ ବୋଲି କହି ଅଛନ୍ତି । ଏହି ବ୍ୟାସ ପ୍ରମାଣ ଦୃକ୍‌ସିଦ୍ଧ ଅଟେ । ସୂର୍ଯ୍ୟସିଦ୍ଧାନ୍ତରେ ପୃଥିବୀର ଯେଉଁ ବ୍ୟାସ ପ୍ରମାଣ ଦିଆଯାଇଛି ତାହା ମଧ୍ୟ ଦୃକ୍‌ସିଦ୍ଧ ।

ମଧ୍ୟବିମ୍ବକଳାଭାନୋର୍ଯନ୍ତ୍ରବେଧେନ ଲକ୍ଷିତାଃ
ଭାସ୍କରେଣୋଦିତା ଦନ୍ତାଃ ସଦନ୍ତବକଳା ଯତଃ । ୫୧ ।

ତାବଦ୍ଦୃଷ୍ଟ୍ୟନୁପାତେନ କର୍ଣ୍ଣମାର୍ଗୌ ମୟୋଦିତଃ
ତତଃ କକ୍ଷା ପରେଷାନ୍ତୁ ସ୍ୱଶୀଘ୍ରଫଳଦର୍ଶନାତ୍ ।୫୨।

ଶୈଘ୍ରାଃ ପରିଧୟଃ ସିଦ୍ଧାସ୍ତଦ୍‌ଗୁଣାଦ୍‌ଭାଂଶଭାଜିତାତ୍ ।
କକ୍ଷାବୃତ୍ତାଦ୍ରବେଃ ସିଦ୍ଧେ ସ୍ୱସ୍ୱକକ୍ଷେ ଜ୍ଞଶୁକ୍ରୟୋଃ ।୫୩।

ଭକକ୍ଷାୟା ବିଭକ୍ତାୟାଃ ଶୈଘ୍ରୈଃ ପରିଧିଭାଗକୈଃ ।
କୁଜଜୀବମନ୍ଦକକ୍ଷାଃ ସ୍ୟୁରିତି ସର୍ବଂ ସମଞ୍ଜସମ୍ ।୫୪।

ଯନ୍ତ୍ରବେଧ ବଳରେ ଭାସ୍କରାଚାର୍ଯ୍ୟ ସୂର୍ଯ୍ୟର ମଧ୍ୟବିମ୍ବକଳା ୩୨′ ୩୨″ (ସଦନ୍ତ ବିକଳା) ବୋଲି ସ୍ୱୀକାର କରିଅଛନ୍ତି । ମୁଁ ମଧ୍ୟ ଦୃଷ୍ଟିରେ ଦେଖି ଅନୁପାତ ବଳରେ ରବିକର୍ଣ୍ଣ ପ୍ରମାଣ କହିଅଛି । ତାପରେ ରବି କକ୍ଷାମଧ୍ୟ କହିଛି । ସ୍ୱ ସ୍ୱ ଶୀଘ୍ର ଫଳ ଜାଣିବାପରେ ଅନ୍ୟ ଗ୍ରହମାନଙ୍କର ପରିଧିଭାଗ ସିଦ୍ଧ ହୁଏ । ରବିର କକ୍ଷା ବୃତ୍ତକୁ (ବୁଧ ଓ ଶୁକ୍ରର) ଶୀଘ୍ର

ପରିଧି ଭାଗରେ ଗୁଣି ୩୬୦ରେ ହରଲେ କ୍ରମରେ ବୁଧ ଓ ଶୁକ୍ରର ନିଜ ନିଜ କକ୍ଷାପ୍ରମାଣ ସିଦ୍ଧ ହୁଏ । ନିଜ ନିଜ ଶୀଘ୍ର ପରିଧିରେ (ଅଂଶରେ) ଭ କକ୍ଷାକୁ ହରଲେ ଲବ୍ଧି ମଙ୍ଗଳ, ଗୁରୁ ଓ ଶନିଙ୍କର କକ୍ଷାହେବ । ଏଥିରେ ସାମଞ୍ଜସ୍ୟ ବରାବର ରହୁଅଛି ।

ନତଲମ୍ବନଭୂୟସ୍ତ୍ୱବିମ୍ବମାନୋ ନତେକ୍ଷଣାତ୍ ।
ଭୂଚ୍ଛାୟାଲେକତଶ୍ଚନ୍ଦ୍ରକକ୍ଷାବିମ୍ବାଲ୍ପତା କୃତା ।୫୫।

ନତି ଓ ଲମ୍ବନର ଆଧିକ୍ୟତଥା ବିମ୍ବମାନର ଊନତା ଦେଖାପଡ଼ିବାରୁ ଏବଂ ଭୂଚ୍ଛାୟା ଦୃଷ୍ଟିରୁ, ଚନ୍ଦ୍ରକକ୍ଷା ଓ ତାହାର ବିମ୍ବ ପରିମାଣ କମ କରାଯାଇଅଛି ।

ସୂର୍ଯ୍ୟାନ୍ନକ୍ଷତ୍ରସୂତ୍ରସ୍ଥଗ୍ରହାଣାମନ୍ତ୍ୟଦୋଃଫଳଂ
ଶୈଘ୍ରଂ ଭୂଚମେରୁଭୂଗତାତ୍ ସୂତ୍ରାଦ୍‌ଯଦ୍‌ବୁଧଶୁକ୍ରୟୋଃ । ୫୬ ।

ଅଧିକଂ ଦୃଶ୍ୟତେ ଯାବଦ୍‌ଭୌମେଜ୍ୟରବିଜନ୍ମନାଂ
ଯାବନ୍ନ୍ୟୂନଂ ଚ ତଦ୍ବାହୁ ଫଳାନ୍ତରକଳା ଯତଃ । ୫୭ ।

ଫଳଖାଙ୍ଗାଗ୍ନ୍ୟଂଶତୁଲ୍ୟା ଭକକ୍ଷା ତାଦୃଶୀ ତତଃ
ଦସ୍ରାଦେ୍ୟତରଭାନାନ୍ତୁ ନ ସୀମା ନିଶ୍ଚିତା ସ୍ଥିତେଃ । ୫୮ ।

ସୂର୍ଯ୍ୟଠାରୁ ନକ୍ଷତ୍ର ସୂତ୍ରରେ ଥିବା ଗ୍ରହମାନଙ୍କର ପରମ ଶୀଘ୍ର ଭୁଜଫଳ, ପୃଥିବୀଠାରୁ ନକ୍ଷତ୍ର ସୂତ୍ରରେ ଥିବା ବୁଧ ଓ ଶୁକ୍ରର ଶୀଘ୍ର ଭୁଜଫଳଠାରୁ ଯେତେବେଳଯାଏ ଅଧିକ ଦେଖାଯାଉଥିବ, ଉଭୟ ଭୁଜ ଫଳାନ୍ତର କଳା ୩୬୦ ସହିତ ସମାନ ହେଉଥିବାରୁ ୩୬୦ ଗୁଣିତ ରବି କକ୍ଷାତୁଲ୍ୟ ଭକକ୍ଷା ସ୍ୱୀକାର କରାଯାଇଅଛି । ଅଶ୍ୱିନୀ ଆଦିରୁ ଇତର ନକ୍ଷତ୍ର ମାନଙ୍କର ସ୍ଥିତିସୀମା ଏ ପର୍ଯ୍ୟନ୍ତ ନିଶ୍ଚିତ ହୋଇପାରି ନାହିଁ ।

ବିମ୍ବଜ୍ଞାନାଦ୍‌ଗ୍ରୁଷ୍ଟବତୋଃ ସ୍ୱକର୍ଣ୍ଣଃ ପରିଚୀୟତେ
ସ୍ୱକର୍ଣ୍ଣାବଗତେର୍ଭାନାଂ ଜ୍ଞାୟନ୍ତେ ମଣ୍ଡଳାନ୍ୟପି । ୫୯ ।

ବିମ୍ବାମ୍ବଚକ୍ଷୁଷୋର୍ମଧ୍ୟସ୍ଥିତା ଛିଦ୍ରନପଟ୍ଟିକା
ବିମ୍ବବ୍ୟାସସମା ଯତ୍ର ଦୃଶ୍ୟାନ୍ୟସ୍ୟାବ ନିଶ୍ଚଳା । ୬୦ ।

ପଟ୍ଟିକାକ୍ଷ୍ୟନ୍ତରଂ ବିମ୍ବବ୍ୟାସନିଘ୍ନଂ ତୟୋର୍ଦ୍ଧୃତଂ
ରବୀନ୍ଦୁକର୍ଣ୍ଣମାନଂ ସ୍ୟାତ୍ କର୍ଣ୍ଣାଦ୍‌ବିମ୍ବୋଽପି ସିଦ୍ଧ୍ୟତି । ୬୧ ।

ସୂର୍ଯ୍ୟ ଏବଂ ଚନ୍ଦ୍ରର ବିମ୍ବଜ୍ଞାନ ହୋଇଗଲେ କର୍ଣ୍ଣଜ୍ଞାନ କରିହୁଏ । ନକ୍ଷତ୍ରମାନଙ୍କର ନିଜ ନିଜର କର୍ଣ୍ଣଜ୍ଞାନ ହେଲାପରେ ସେମାନଙ୍କର ବିମ୍ବଜ୍ଞାନ ହୋଇଥାଏ ।

ନକ୍ଷତ୍ର ବିମ୍ବ ଓ ନଳର ଚକ୍ଷୁର ଅନ୍ତରାଳରେ ଥିବା ଆବରଣ ଘଟିକା ଯେପରି ରଖିଲେ ବିମ୍ବବ୍ୟାସ ସମାନ ଦେଖାଯାଏ ସେହିପରି ନଷ୍ଟଳ ରଖିବାକୁ ହେବ । ଘଟିକା ଓ ଆଖିର ଅନ୍ତରକୁ ବିମ୍ବବ୍ୟାସରେ ଗୁଣି ଘଟିକାରେ ହରିଲେ ରବି ଓ ଚନ୍ଦ୍ରର କର୍ଣ୍ଣମାନ ଆସିଯିବ । କର୍ଣ୍ଣରୁ ବିମ୍ବସାଧନ ମଧ୍ୟ ଏହାର ବିପରୀତ ରୀତିରେ କରାଯାଇପାରିବ ।

**ବିମ୍ବୋଦୟାସ୍ତମୟୟୋଃ ପ୍ରାକ୍ ପଶ୍ଚାତ୍ କୁଡ୍ୟୟୋର୍ଗୃହେ**
**ତଦ୍ବାତାୟନମାଚ୍ଛାଦ୍ୟ ତାଳପର୍ଣ୍ଣେନ ତତ୍ର ଚ । ୭୨ ।**

**ବିଧାୟ ବର୍ତ୍ତୁଳଂ ସୂକ୍ଷ୍ମଂ ଛିଦ୍ରଂ ତେନାଧୁନା ଗତଃ**
**ଆତପୋଽପରଭିତ୍ତିସ୍ଥୋ ଯୋ ବିମ୍ବାକାର ଇକ୍ଷ୍ୟତେ । ୭୩ ।**

**ତଦ୍ବ୍ୟାସଚ୍ଛିଦ୍ରମାନୋ ନୋ ହାରଃ କୁଡ୍ୟ ବିଳାନ୍ତରଂ**
**ବିମ୍ବମାନାହତଂ ହାରଭକ୍ତଂ କର୍ଣ୍ଣଃ ସ୍ଫୁଟୋ ଭବେତ୍ । ୭୪ ।**

ଉଦୟ ଓ ଅସ୍ତବେଳେ ଘରରେ ପୂର୍ବ ଓ ପଶ୍ଚିମ କାନ୍ଥରେ ତାଳପତ୍ର ରଖି ତା'ଭିତରେ ଗୋଟିଏ କଣା କରିବ । ସେହି ଛିଦ୍ରରେ ଖରାଯାଇ ଅପର କାନ୍ଥରେ ବୃତ୍ତା-କାରରେ ପଡ଼ିବ । ତାହାର (ଖରାର) ବ୍ୟାସରୁ ଛିଦ୍ରର ବ୍ୟାସ ବାଦ ଦେବ । ସେ ହେବ ହାର । ସେହି କାନ୍ଥ ଓ ଛିଦ୍ରର ଅନ୍ତରକୁ ବିମ୍ବପ୍ରମାଣରେ ଗୁଣି ହାରରେ ଭାଗଦେବ । ଫଳ ସ୍ଫୁଟକର୍ଣ୍ଣ ହେବ ।

**ଯସ୍ୟ ଭସ୍ୟ ଗ୍ରହସ୍ୟାପି ଚନ୍ଦ୍ରେଣାସ୍ତମୟୋଦୟୌ**
**ବିଲୋକ୍ୟେତେ ସମଂ ତସ୍ୟ ମଣ୍ଡଳଂ ଜ୍ଞାତୁମିଷ୍ୟତେ । ୭୫ ।**

**ଷଟ୍ତ୍ରିଂଶଦ୍ଧସ୍ତତୋ ଦୂରେ ଚନ୍ଦ୍ରବିମ୍ବପିଧାୟକଂ**
**ଅତାରାଚ୍ଛାଦକଂ ନ୍ୟସ୍ୟ କୃଷ୍ଣଚତ୍ତାଳବୃନ୍ତକମ୍ । ୭୬ ।**

**ଚନ୍ଦ୍ରବିମ୍ବୈକଦେଶୋଽପି ଯଥାତତ୍ତାରକାସମଃ**
**ଦୃଶ୍ୟେତ ଶୁଷିରଂ ତାବତ୍ କାର୍ଯ୍ୟଂ ତତ୍ପାଦସଂଗୁଣାତ୍ । ୭୭ ।**

**ତାରକାକର୍ଣ୍ଣତସ୍ତାଳବୃନ୍ତନେତ୍ରାନ୍ତରୋଦ୍ଧୃତାତ୍**
**ଫଳଂ ତାରାଗ୍ରହବ୍ୟାସୋ ନାନ୍ୟଥାୟାତ ସୌକ୍ଷ୍ମ୍ୟତଃ । ୭୮ ।**

**ତଥ୍ୟାଂଶୋଽଙ୍ଗୁଳମଂଶସ୍ୟ ଖ ମଧ୍ୟେ ଦୃଶ୍ୟତେ ଯତଃ**
**ତ୍ରିକ୍ୟାଂଘ୍ର୍ୟଙ୍ଗୁଳତୋ ଦୂରଂ ତନ୍ନେତ୍ର ବ୍ୟଜନାନ୍ତରମ୍ । ୭୯ ।**

ଯେଉଁ ତାରା ଗ୍ରହର ଚନ୍ଦ୍ର ସହିତ ଅସ୍ତ ହୁଏ ସେମାନଙ୍କର ମଣ୍ଡଳ (ମାନ) ଜାଣିବାକୁ ଇଚ୍ଛା କଲେ, ନିଜ ଦୃଷ୍ଟି ସ୍ଥାନରୁ ୩୭ ହାତ ଦୂରରେ (ତାରା ଘୋଡ଼ାଇ ଗଲା ପରି ନ ରଖି) ଗୋଟିଏ ତାଳପତ୍ର ଯନ୍ତ୍ର ସହକାରେ ରଖିବ ଯେପରି ଚନ୍ଦ୍ରବିମ୍ବ ସେଥିରେ ଘୋଡ଼ାଇ ହୋଇଯାଏ । ପରେ ସେହି ତାରା ଗ୍ରହ ସମାନ ଚନ୍ଦ୍ରବିମ୍ବର ଗୋଟିଏ ବିଭାଗକୁ ଦେଖିବା ଭଳି ସେଥିରେ ଗୋଟିଏ ଛିଦ୍ର କରି ଦେବ । ସେହି ରନ୍ଧ୍ରର ଚତୁର୍ଥାଂଶରେ ତାରା-କର୍ଣ୍ଣକୁ ଗୁଣି ତାଳପତ୍ର ଓ ଚକ୍ଷୁର ଅନ୍ତର ମାନରେ ହରିଲେ ଫଳ ତାରା ଗ୍ରହ ବିମ୍ବମାନ ହେବ । ଏଥିରୁ ଅନ୍ୟ ସୂକ୍ଷ୍ମସାଧନରେ ତାରା ଗ୍ରହର ବିମ୍ବମାନ ବାହାର କରାଯାଇ ନ ପାରେ । ଗୋଟିଏ ଅଂଶର ୧୫ ଅଂଶ ଗୋଟିଏ ଆଙ୍ଗୁଳ ପରି ଆକାଶରେ ଦେଖାଯାଇଥାଏ । ଏଣୁ ଆଖି ଓ ତାଳପତ୍ରର ଅନ୍ତର ୮୫୯ ୧/୨ (୩୪୩୮/୪) ଅର୍ଥାତ୍ ୩୭ ହାତ ଦୂରରେ ଅଛି ବୋଲି କଳ୍ପନା କରାଯାଇଅଛି ।

ଅଥ ଦୀପସ୍ତ୍ର ମାଦ୍ର୍ୟାଦେର୍ଦୂରତୌଚ୍ଚ୍ୟତ୍ୟୟୋର୍ମତଂ ।
ପ୍ରସଙ୍ଗାତ୍ କୌତୁକାଦ୍‌ବକ୍ଷ୍ୟେ ଶଂକୁଚ୍ଛାୟାବଲୋକଜାମ୍ । ୭୦ ।

ଶଙ୍କୁର ଛାୟା ଦେଖି ଦୀପ ଓ ପର୍ବତ ଆଦିର ଉଚ୍ଚତା ଓ ଦୂରତା କପରି ଜାଣି ହେବ ତାହା ପ୍ରସଙ୍ଗତଃ କୁହାଯାଉଅଛି । ଏହି ବିଷୟ ବଡ଼ କୌତୂହଳଜନକ ।

ଉଚ୍ଚସ୍ଥଦୀପତୋଽଭୀଷ୍ଟକାଷ୍ଠାୟାଂ ସମଭୂତଳେ
ସମଶଂକୋର୍ନିବିଷ୍ଟସ୍ୟ ଛାୟାଗ୍ରଦର୍ଶି ତଦ୍‌ସମନ୍ । ୭୧ ।

ଶଙ୍କୁମନ୍ୟଂ କିୟଦ୍‌ଦୂରେ ନିବେଶ୍ୟାନ୍ତରମେତୟୋଃ
ଦ୍ୱିତୀୟଶଂକୁଭାଯୁକ୍ତଂ ପ୍ରଥମପ୍ରଭୟୋଜ୍‌ଝିତମ୍ । ୭୨ ।

ପୁନସ୍ତୟୋର୍ଘ୍ନଂ ବିଭଜେଚ୍ଛାୟୟୋରନ୍ତରାଙ୍ଗୁଳୈଃ
ଲବ୍ଧଂ ପ୍ରାକ୍ ଶଂକୁଭାହୀନଂ ଭବେଦ୍ଦୀପତଳସ୍ଥଳାତ୍ । ୭୩ ।

ଆପୂର୍ବଶଙ୍କୁଭୂମାନମଥ ଲବ୍ଧଂ ପୁରୋଦିତମ୍
ଶଙ୍କୁଘ୍ନଂ ପ୍ରଥମଚ୍ଛାୟାଭକ୍ତଂ ଦୀପୋଚ୍ଚ୍ୟତର୍ଭବେତ୍ । ୭୪ ।

ଉଚ୍ଚ ସ୍ଥାନରେ ଥିବା ଦୀପଠାରୁ କୌଣସି ଗୋଟିଏ ଦିଗରେ ସମଧରାତଳରେ ଅଗ୍ରମୂଳ ସମାନ ଗୋଟିଏ ଶଙ୍କୁ ସ୍ଥାପନ କରି ତାର ଛାୟା ମାପି ନେବ । ପୁଣି ସେହି ଦିଗରେ ସେତିକି ଉଚ୍ଚ ଆଉ ଗୋଟିଏ ଶଙ୍କୁ ଥୋଇ ତାହାର ମଧ୍ୟଛାୟା ମାପି ନେବ । ଉଭୟ ଶଙ୍କୁର ଅନ୍ତର ମଧ୍ୟ ମାପି ନେବାକୁ ହେବ । ଉଭୟ ଶଙ୍କୁର ଅନ୍ତରରେ ଦ୍ୱିତୀୟ ଶଙ୍କୁର

ଚ୍ଛାୟା ମିଶାଇ ସେଥିରୁ ପ୍ରଥମ ଶଙ୍କୁ ଚ୍ଛାୟାକୁ ଫେଡ଼ିବ । ଫଳକୁ ପ୍ରଥମ ଶଙ୍କୁ ଚ୍ଛାୟାରେ ଗୁଣି ତାହାକୁ ଉଭୟ ଶଙ୍କୁର ଚ୍ଛାୟାନ୍ତରରେ ହରିବ । ଲବ୍ଧିରୁ ପ୍ରଥମ ଚ୍ଛାୟାବାଦଦେଲେ ଦୀପମୂଳର ପ୍ରଥମ ଶଙ୍କୁ ପର୍ଯ୍ୟନ୍ତ ଅନ୍ତର ଜଣାଯିବ । ଆଣିଥିବା ଲବ୍ଧିକୁ ଶଙ୍କୁରେ ଗୁଣି ପ୍ରଥମ ଶଙ୍କୁ ଚ୍ଛାୟାରେ ହରିଲେ ଦୀପର ଉଚ୍ଚତା ହେବ ।

**ଶଙ୍କୁଦୀପାନ୍ତରଂ ଶଙ୍କୁଗୁଣିତଂ ଚ୍ଛାୟୟୋଦ୍ଧୃତଂ**
**ଶଙ୍କୁମାନଯୁତଂ ଦୀପୋନ୍ନତଃ ସ୍ୟାଦେକଶଙ୍କୁତଃ । ୭୫ ।**

ଶଙ୍କୁ ଓ ଦୀପର ବ୍ୟବଧାନକୁ ଶଙ୍କୁରେ ଗୁଣି ଚ୍ଛାୟାରେ ହରିବ । ସେଥିରେ ଶଙ୍କୁମାନ ମିଶାଇଲେ ଦୀପର ଉଚ୍ଚତା ବାହାରିବ ।

**ଆକ୍ରୋଶଂ ପର୍ବତାତ୍ ଯତ୍ର ଶୃଙ୍ଗଂ ତସ୍ୟ ବିଲୋକ୍ୟତେ**
**ତତ୍ର ତତ୍ସମସୂତ୍ରସ୍ଥୌ ଶତଦଣ୍ଡାଧିକାନ୍ତରୌ । ୭୬ ।**

**ପଞ୍ଚହସ୍ତୋଚ୍ଛ୍ରିତୌ ଶଂକୂ ନିବେଶ୍ୟାବକ୍ରିତୌ ଦୃଢ଼ଂ**
**ନଗଶଂକ୍ୱଗ୍ରୟୋଃ ସାମ୍ୟଂ ଦୃଷ୍ଟ୍ୱାଦର୍ଶେ ଭୁବି ସ୍ଥିତେ । ୭୭ ।**

**ତଦ୍ଭାଗ୍ରେ ତତ୍ର କଣ୍ଟିତ୍ୟ ବଦ୍ୟାନ୍ମାର୍ଗୌଚ୍ଛ୍ରୟୌ ତଥା**
**ଦବୀୟସି ଗିରୌ ମାର୍ଗେଽନୁମିତେତ୍ୟେକଶଂକୁନା । ୭୮ ।**

ଯେଉଁଠାରେ (କ୍ରୋଶପର୍ଯ୍ୟନ୍ତ) ପର୍ବତର ଶୃଙ୍ଗ ଦେଖାଯାଉଥିବ ସେଠାରେ ଗୋଟିଏ ସମାନ ସୂତ୍ରରେ ୧୦ ଦଣ୍ଡ ଅନ୍ତର (ବ୍ୟବଧାନ)ରେ ୫ ହାତ ଉଚ୍ଚା ସରଳ ଓ ଦୃଢ଼ ଦୁଇଟି ଶଙ୍କୁ ସ୍ଥାପନ କରିବ । ଅନନ୍ତର ପୃଥିବୀ ପୃଷ୍ଠରେ ସମସୂତ୍ରରେ ଗୋଟିଏ ଦର୍ପଣ ଏପରି ରଖିବ, ଯେପରି ଉକ୍ତ ଦର୍ପଣରେ ପର୍ବତ ଓ ଶଙ୍କୁର ଅଗ୍ରଭାଗ ଏକ ବିନ୍ଦୁରେ ଦେଖାଯିବ । ଉଭୟ ଶଙ୍କୁର ଚ୍ଛାୟାଗ୍ରଭାଗ ସ୍ଥିରକରି ଦୀପୋନ୍ନତି ଓ ଦୀପର ଉଚ୍ଚତା ଆଣିବା ପରି ଏଠାରେ ମଧ୍ୟ ପର୍ବତ ଶୃଙ୍ଗର ଉଚ୍ଚତା ଓ ଶଙ୍କୁଠାରୁ ଦୂରତା ଜଣାଯାଇପାରିବ । ପର୍ବତ ବହୁ ଦୂରରେ ଥିଲେ ମଧ୍ୟ ସମସୂତ୍ର ମାର୍ଗରେ ଗୋଟିଏ ଶଙ୍କୁଦ୍ୱାରା ପର୍ବତର ଉଚ୍ଚତା ଜଣାଯାଇ ପାରେ ।

**ମାତୁମଧ୍ୟରେଖାନ୍ତ୍ୟା ସହଦୃଶ୍ୟାଂଶମସ୍ୟ ହ**
**ତର୍ଯ୍ୟକ୍ ବସ୍ତୀର୍ଣ୍ଣତାଂ ତର୍ଯ୍ୟକ୍ ଶଙ୍କୁନୈବାବଗଚ୍ଛତୁ ।୭୯ ।**

ଏହି ପର୍ବତର ଭୂ ପୃଷ୍ଠାସନ୍ନ ଅଦୃଶ୍ୟ (?) ଭାଗ ସହିତ ଦୃଶ୍ୟାଂଶ ମାପିବାକୁ ହେଲେ ଗୋଟିଏ ତିର୍ଯ୍ୟକ୍ ଶଙ୍କୁଦ୍ୱାରା ଜାଣିବାକୁ ହେବ ।

କ୍ରମାଦାଶତହସ୍ତନ୍ତୁ ଦଶହସ୍ତାଧିକାନ୍ତରୌ
ତାବନ୍ତୌ ବାର୍ଦ୍ଧମାନୌ ବା ସ୍ଥାପେ୍ୟୗ ତନ୍ନିତଯ୍ୟେ ନରୌ । ୮୦ ।

ପ୍ରାମେୟାର୍କେନ୍ଦୁଜାଂ ଶଂକୁପ୍ରମେୟଚ୍ଛାୟୟୋର୍ଗତଂ
ତୁଲ୍ୟକାଳଭବାଂ ଶଙ୍କୁର୍ମେୟଭଗତତାଡ଼ିତଃ । ୮୧ ।

ସ୍ୱଭଗତ୍ୟାପ୍ତ ଉଚ୍ଛ୍ରାୟୋ ଜ୍ଞେୟଃ ଶଙ୍କ୍ୱୋଭୟା ତୁ ସଃ
କ୍ଷୁଣ୍ଣଃ ଶଙ୍କୁ ହୃତଚ୍ଛାୟାମାନଂ ତତ୍ତଳତୋ ଭବେତ୍ । ୮୨ ।

ଶତହ ହାତ ଯାଏ ଉଚ୍ଚ କୌଣସି ଗଛର ଉଚ୍ଚତା ଜାଣିବା ନିମନ୍ତେ ଦଶ ହାତରୁ ଅଧିକ ବ୍ୟବଧାନରେ ଦୁଇଟି ଶଙ୍କୁ ସ୍ଥାପନା କରିବ । ଏହାର ଅଧା ଅର୍ଥାତ୍ ୫ ହାତ ବ୍ୟବଧାନରେ ମଧ୍ୟ ଏ ଶଙ୍କୁ ସ୍ଥାପନା କରାଯାଇପାରେ । ଏ ଦୁଇଟି ଶଙ୍କୁର ଉଚ୍ଚତା ମଧ୍ୟ ୧୦ ହାତ ବା ୫ ହାତ ହୋଇପାରେ । ତାପରେ ସେହି ସମୟରେ ଶଙ୍କୁ ଓ ବୃକ୍ଷର ସୂର୍ଯ୍ୟ ଓ ଚନ୍ଦ୍ର ଜନିତ ଯେ ଛାୟା ତାର ଗତି ଜାଣି ଶଙ୍କୁକୁ ମେୟ ଛାୟା ଗତିରେ ଗୁଣି ନିଜ ଛାୟା ଗତିରେ ହରିଲେ ଫଳ ବୃକ୍ଷର ଉନ୍ନତି ହେବ । ସେହି ବୃକ୍ଷର ଉନ୍ନତିକୁ ଶଙ୍କୁ ଛାୟାରେ ଗୁଣି ଶଙ୍କୁରେ ହରିଲେ ତାହା ବୃକ୍ଷ ମୂଳରୁ ଛାୟାଗ୍ର ପର୍ଯ୍ୟନ୍ତ ଭୂମିମାନ ହେବ ।

ଅବ୍ୟଗ୍ରସ୍ୟା ଭ୍ରଖଣ୍ଡସ୍ୟ ଦୃଶ୍ୟାର୍କାନ୍ତରଲିପ୍ତିକାଃ
ପ୍ରମାୟ ତତ୍କ୍ଷଣଂ ତଭାସ୍ୱସ୍ଥାନାନ୍ତରହସ୍ତକାନ୍ । ୮୩ ।

ତ୍ରିଜ୍ୟାହତାନ୍ ଭଜେତ୍ତାଭିସ୍ତାୟାତୋଽଭ୍ରସ୍ତ୍ରତଃ ଫଳଂ
ସା ତତ୍କାଳନୃ(ପ୍ର)ଭଘ୍ନ୍ୟାପ୍ତା ତତ୍ ଶ୍ରୁତ୍ୟା ଦନକୃଦିଣି । ୮୪ ।

ଆମେଘତଳଭୂମାନଂ ସ୍ୟାତ୍ତନ୍ମୃଘ୍ନଂ ପ୍ରଭାହୃତଂ
ଘନୌନ୍ନତ୍ୟମିତ ଜ୍ଞେୟମନ୍ୟତ୍ତୈରାଶିକକ୍ରମାତ୍ । ୮୫ ।

ମେଘର ଗତି ନ ଥିଲା ବେଳେ ଅର୍ଥାତ୍ ମେଘ ପ୍ରାୟ ସ୍ଥିରଥିବାବେଳେ ତାହାର ଓ ସୂର୍ଯ୍ୟ ମଧ୍ୟରେ ଥିବା ବ୍ୟବଧାନ କଳାକୁ ମାପି (ଭୁଗାପୁ ଯନ୍ତ୍ରରେ— $\frac{\text{Protractar}}{2}$ ) ସେତିକବେଳେ ସେହି ମେଘ ଖଣ୍ଡର ପୃଥିବୀ ପୃଷ୍ଠରେ ଯେଉଁ ଛାୟା ସେଠାରୁ ନିଜ (ଦର୍ଶକ) ମଧ୍ୟରେ ଥିବା ବ୍ୟବଧାନ-ହସ୍ତ ପରିମାଣ ସ୍ଥିର କରି ନେବ । ତାହାକୁ ତ୍ରିଜ୍ୟା ୩୪୩୮ରେ ଗୁଣି ସୂର୍ଯ୍ୟ ଓ ମେଘ ମଧ୍ୟରେ ଦେଖି ଥିବା କଳାରେ ହରିବ । ଫଳ ମେଘଛାୟାମଧ୍ୟରୁ

ମେଘ ପର୍ଯ୍ୟନ୍ତ କର୍ଣ୍ଣର ପରିମାଣ ହେବ । ସେହି କର୍ଣ୍ଣକୁ ସେହି କାଳର ଶଙ୍କୁ ଗୁଣ୍ୟାରେ ଗୁଣି ଗୁଣ୍ୟାକର୍ଣ୍ଣରେ ହରିଲେ ଫଳ ସୂର୍ଯ୍ୟଥିବା ଦିଗରେ ମେଘ କର୍ଣ୍ଣଠାରୁ ମେଘତଳପର୍ଯ୍ୟନ୍ତ ଭୂମି ପରିମାଣହେବ । ଏହି ଭୂମି ପରିମାଣକୁ ଶଙ୍କୁରେ ଗୁଣି ଶଙ୍କୁ ଗୁଣ୍ୟାରେ ହରିଲେ ଭୂମି ପୃଷ୍ଠଠାରୁ ମେଘର ଉନ୍ନତ ହେବ । ଏହିପରି ତ୍ରୈରାଶିକ ଗଣିତଦ୍ୱାରା ପ୍ରାସାଦ, ଅଟ୍ଟାଳିକା ଆଦିର ମଧ୍ୟ ଉନ୍ନତ ଜଣାଯାଇପାରେ ।

**ଅଷ୍ଟାଦଶପ୍ରକାଶୋକ୍ତ ଦୃଷ୍ଟିସୀମାଦିବସ୍ତୁଗତ୍**
**ବିଶେଷଃ କଥ୍ୟତେ କଶ୍ଚିତ୍ ଗୋଲତାଜ୍ଞାପକଃ କ୍ଷିତେଃ । ୮୬ ।**

୧୮ଶ ପ୍ରକାଶରେ ଦୃଷ୍ଟିସୀମା ଆଦିର ବସ୍ତୁର ବର୍ଣ୍ଣନା କରାଯାଇଅଛି । ଏଠାରେ ସେଥିରୁ ଆହୁରି କିଛି ବିଶେଷ କଥା କୁହାଯାଉଛି । ଏହାଦ୍ୱାରା ପୃଥିବୀର ବର୍ତ୍ତୁଳତ୍ୱ ସିଦ୍ଧି ଭଲରୂପେ ହୋଇପାରିବ ।

**ଶଙ୍କୁଦର୍ଶନସୀମା ଯା ପରିତୋ ମଣ୍ଡଳାକୃତିଃ**
**ଭୂପୃଷ୍ଠେ ସାଧିତା ସୈବ ନଜକ୍ଷିତଜମଣ୍ଡଳମ୍ । ୮୭ ।**

ଭୂପୃଷ୍ଠରେ ଚାରିପାଖେ ମଣ୍ଡଳାକାରରେ ଯେଉଁ ଶଙ୍କୁ ଦର୍ଶନସୀମା ଆଗରୁ ସାଧିତ ହୋଇ ରହିଛି, ତାହାକୁ ହିଁ ଶଙ୍କୁର ଦୃଶ୍ୟ କ୍ଷିତିଜ ମଣ୍ଡଳ କୁହାଯାଏ ।

**ତଷ୍ଟୁତା ଭୁବି ଦୂରତ୍ୱାଦ୍ଯଃ ପୁଂସା ନୈବ ଦୃଶ୍ୟତେ**
**ଉଚ୍ଚସ୍ଥାନାଧିରୂଢେ଼ନ ସ ପୁନର୍ଦୃଶ୍ୟତେ ନଗଃ । ୮୮ ।**

ଯେଉଁ ପର୍ବତ ଭୂପୃଷ୍ଠସ୍ଥିତ ଲୋକକୁ ଦୂରତାହେତୁ ଦେଖାଯାଏ ନାହିଁ, ସେହି ପର୍ବତକୁ ପୁଣି ସେହି ପୁରୁଷ କୌଣସି ଉଚ୍ଚ ସ୍ଥାନରେ ଚଢ଼ିଲେ ଦେଖିପାରେ ।

**ଅନ୍ୟୋଽନ୍ୟବିପ୍ରକୃଷ୍ଟାଗଦ୍ୱୟକ୍ଷିତିଜବୃତ୍ତୟୋଃ**
**ଯାବତ୍ସ୍ୟାନ୍ମେଳନଂ ତାବଦ୍ଦୃଶ୍ୟତେ ଭୁବି ତଦ୍ଦ୍ୱୟଂ । ୮୯ ।**

**ଯଦ୍ ଶଙ୍କୋଃ କ୍ଷିତିଜସ୍ଥେନ ଯାବାନଂଶୋଽନ୍ୟଶଂକୁତଃ**
**ପୁରତୋ ଦୃଶ୍ୟତେ ତାବାଂସ୍ତଦ୍ଭୁବି ଉଷ୍ଟୁତା ତତଃ । ୯୦ ।**

ଦୂରରେ ଥିବା ଦୁଇଟି ପର୍ବତର ଦୁଇଟି କ୍ଷିତିଜବୃତ୍ତ କରିବାକୁ ହେବ । ସେହି ଦୁଇଟି କ୍ଷିତିଜ ବୃତ୍ତର ଯେଉଁଠାରେ ମିଳନ ହେବ ସେହି ଉଭୟବୃତ୍ତ ମିଳନାନ୍ତର୍ଗତ ସ୍ଥଳରେ ଥିବା

ଲୋକକୁ ସେହି ଉଭୟ ପର୍ବତ ଦେଖାଯିବେ । ଯେଉଁ ଶଙ୍କୁର (ପର୍ବତର) କ୍ଷିତିଜରେ ରହିଲେ ଅନ୍ୟ ଶଙ୍କୁର ଯେତେଅଂଶ ଦେଖାଯାଇଥାଏ, ସେହି ପର୍ବତର ଅଗ୍ରରେ ରହିଲେ ତେତିକ ଅଂଶ ଅନ୍ୟ ପର୍ବତର ଦେଖାଯିବ ।

କ୍ଷିତଜେ ଦୃଶ୍ୟଲପ୍ତାଦ୍ୟାଃ କ୍ଷିତଜାନ୍ୟନଗାନ୍ତରା
ଗୁଣିତାଃ ଶଙ୍କୁଯୁଗ୍ମାନ୍ତର୍ମାର୍ଗାପ୍ତାଃ ସ୍ୟୁର୍ନଗେ ସ୍ଫୁଟାଃ । ୯୧ ।

କ୍ଷିତିଜରେ ଥିବା ଲୋକର ଆଖିକୁ ଶଙ୍କୁର ଯେଉଁ ଦୃଶ୍ୟ କଳାଦି ଦେଖାଯାଏ, ତାହାକୁ ଉଭୟ ଶଙ୍କୁର ଅନ୍ତର ଫଳରେ ଗୁଣି ଶଙ୍କୁ ଦ୍ୱୟର ବ୍ୟବଧାନରେ ହରିଲେ ଶଙ୍କୁ ଅଗ୍ରରେ ସ୍ଫୁଟ ଦୃଶ୍ୟ ଲିପ୍ତାଦି ହୋଇଯିବ ।

ଯୟୋରତ-ଦବୀୟସ୍ତ୍ୱାତ୍ ନ ଲଗେତ୍ କ୍ଷିତିଜଦ୍ୱୟଂ
ତୟୋରେକାଗ୍ରନଷ୍ଟେନ ନାନ୍ୟଃ ସଂଦୃଶ୍ୟତେ କ୍ୱଚତ୍ । ୯୨ ।

ମହାଦ୍ରି କ୍ଷିତଜସ୍ୟାନ୍ତଃ କ୍ଷୁଦ୍ରାଦ୍ରି କ୍ଷିତଜଂ ଯଦ
ଲୀୟତେ ତନ୍ମହାଗସ୍ଥଃ କ୍ଷୁଦ୍ରଂ କୌଳୀନମୀକ୍ଷତେ । ୯୩ ।

ଉଭୟକ୍ଷିତଜସ୍ପର୍ଶାତ୍ୟଦ ସ୍ୟାନ୍ମୂର୍ଦ୍ଧ୍ୟରେଖିକା
ତଦାପ୍ୟନ୍ତନୁଂ ପଶେତ୍‌ବ୍ୟୋମଗଂ କ୍ଷିତଜୋପରି । ୯୪ ।

ଭୂପୃଷ୍ଠଂ ଯଦ ତୁଲ୍ୟଂ ସ୍ୟାଦ୍ଦର୍ପଣୋଦରବତ୍ତଦା
ଉଚ୍ଚୈଽନୁଚ୍ଚୋଽପି ଦୂରସ୍ଥୋ ଦୃଶ୍ୟଃ କ୍ଷିତ୍ୟନ୍ତରେବ ସଃ । ୯୫ ।

ଯଦି ଅତିଦୂରରେ ଥିବାରୁ ପର୍ବତ ଦୁଇଟିର କ୍ଷିତିଜରେ ଆଦୌ ମିଳନ ହୁଏନାହିଁ, ତାହାହେଲେ ସେଥିରୁ ଗୋଟିକର ଅଗ୍ରଭାଗରେ ରହି ଦ୍ରଷ୍ଟା ଅନ୍ୟ ପର୍ବତକୁ ପ୍ରାପ୍ତ ଦେଖିପାରିବନାହିଁ ।

ବଡ଼ ପର୍ବତର କ୍ଷିତିଜ ମଧ୍ୟରେ ଯଦି ଛୋଟ ପର୍ବତର କ୍ଷିତିଜ ରହିଯାଏ, ତାହାହେଲେ ବଡ଼ପର୍ବତର ଅଗ୍ରରେ ରହି ଦେଖିଲେ ଛୋଟପର୍ବତଟି ପୃଥିବୀ ପୃଷ୍ଠରେ ଲୀନ ହେବାପରି ଦେଖାଯାଏ ।

ଉଭୟ ପର୍ବତର କ୍ଷିତିଜସ୍ପର୍ଶୀ କୌଣସି ସ୍ପର୍ଶରେଖାରେ ରହି ଦେଖିଲେ ବଡ଼ପର୍ବତକୁ ଉଚ୍ଚ ଆକାଶରେ ଥିଲାଭଳି ଦେଖିପାରିବ ।

ଭୂମିପୃଷ୍ଠକୁ ଦର୍ପଣ ପରି ସମତଳ ହୋଇଥିଲେ ଟିକିଏ ଉଚ୍ଚରେ ଥିବା ଲୋକ ଦୂରରେ ଥିବା ଶ୍ରେଷ୍ଠପର୍ବତକୁ ମଧ୍ୟ ପୃଥିବୀପୃଷ୍ଠରେ ଲାଗିଯାଇଥିବା ପରି ଦେଖିବାର କଥା ।

ତଦ୍‌ଗୋଲତା ସ୍ଫୁଟା ସାକ୍ଷାଦ୍ଦ୍ରେଃ କ୍ଷିତଜମଣ୍ଡଳ
ଯଥା ତଥୈବ ଶିଖରେ ଜ୍ୟୋତଶ୍ଚକ୍ରସ୍ୟ ଦର୍ଶନାତ୍ । ୯୬ ।

ପ୍ରାକ୍‌ପଶ୍ଚାଦ୍ଦୃଷ୍ଟି ସୀମୋତ୍‌ଥଦେଶାନ୍ତରପଳୈ ରବିଃ
ଉଦେତ ପୁରତଃ ପଶ୍ଚାଦସ୍ତମେତ ନଗୋପରି । ୯୭ ।

ତଷ୍ଟତଃ ସମଭୂସ୍ଥଲ୍ୟାଂ ସାଂଘ୍ରିହସ୍ତତୟୋନ୍ନତେଃ
ପଶ୍ୟତୋ ନବସାହସ୍ରହସ୍ତୈଃ କ୍ଷିତଜକଣ୍ଠସ୍ୟାତ୍ । ୯୮ ।

ତଦ୍‌ଦେଶାନ୍ତର-କାଳସ୍ତୁ ପଳୋନତ୍ୱାନ୍ନ ଗଣ୍ୟତେ
ନ ବ୍ୟବହ୍ରିୟତେ ଗ୍ରହେଦ୍ରୌ ଦୃକ୍ସିଦ୍ଧୋଽପି କ୍ଷଣାଧିକଃ । ୯୯ ।

ପର୍ବତର କ୍ଷିତଜ ବୃତ୍ତରେ ପୃଥିବୀର ଗୋଲାକାର ସ୍ପଷ୍ଟ ହୋଇଥାଏ । ପର୍ବତ ଶିଖରରେ ମଧ୍ୟ ରହି ଉପରକୁ ଅନାଇଲେ ଜ୍ୟୋତଶ୍ଚକ୍ରର ବର୍ତ୍ତୁଳତା ସ୍ପଷ୍ଟ ହୋଇଯାଏ । ପର୍ବତର ଉପରେଥିବା ଲୋକ ପର୍ବତର ତଳେଥିବା ଲୋକଠାରୁ ଦେଶାନ୍ତର ଜାତ୍ୟାଦ ପୂର୍ବରୁ ସୂର୍ଯ୍ୟୋଦୟ ଓ ପରେ ସୂର୍ଯ୍ୟାସ୍ତ ଦେଖିଥାଏ । ଏହି ଦେଶାନ୍ତର ପୂର୍ବାପର । ୩¼ ହାତ ଉଚ୍ଚା ଜଣେ ଲୋକ ସମତଳରେ ଯେଉଁ କ୍ଷିତଜ ଦେଖେ, ତାର ଦୂରତା ତାହାଠାରୁ ୯୦୦୦ ହାତ । ତାର କ୍ଷିତଜ ବ୍ୟାସାର୍ଦ୍ଧ ୯୦୦୦ ।

ପର୍ବତ ଉପର ଓ ତଳ କ୍ଷିତଜ ମଧ୍ୟରେ ସମୟର ବ୍ୟବଧାନ ଗୋଟିଏ ପଳରୁ ମଧ୍ୟ କମ ହୋଇଥିବାରୁ ତାର ଗଣନା ବା ବ୍ୟବହାରନାହିଁ । ଏହା ଦୃକ୍‌ସିଦ୍ଧ ହେଲେ ମଧ୍ୟ ଗ୍ରହଣର ଅଯୋଗ୍ୟ ।

ହସ୍ତୈରଭ୍ରସାଂକସିଦ୍ଧଜଳଧିବ୍ୟୋମାଶ୍ଚିଭିଃ ସଂମିତୋ
ଯନ୍ମଧ୍ୟେ ପରିଧିର୍ବଭୂବହ ମହୀପୃଷ୍ଠେ ସ୍ଥିତାନାଂ କ୍ରମାତ୍ ।
ଶଂକୂନା କିଳ ତତ୍ତଦର୍ଦ୍ଧବପୁଷାଂ କୋଣାଂଘ୍ରିସଂଖ୍ୟା ବ୍ରୁବେ
ଦୃକ୍‌ସୀମ୍ନାଂ ପ୍ରଥମୋଽବ ଷଣ୍ଣବନଭଃପାଥୋଧିହସ୍ତୋନ୍ନତଃ ।୧୦୦।

ଦୃଗ୍‌ଭୂପାଃ ଶରଶଂକରା କୁବସବଃ ସପ୍ତେଷବଃ ଖାବ୍ଧୟୋ
ଗୋନେତ୍ରାଣି ନଖାଶ୍ଚତୁର୍ଦ୍ଦଶଦଶୋଗୋବାଃ ଶରାଃ ପ୍ରାୟଶଃ ।
ଇଚ୍ଛାନୃଘ୍ନପରାପ୍ତଦୃଙ୍‌ନୃପକୃତେଃ ସୀମାପଦଂଗୋଃ ସ୍ୱନୁଃ
ସୀମାବର୍ଗହତଃ ପରାକୃତ ହୃତୋ ନାଦ୍ୟଃ ସ୍ୱନା ସୀମତଃ । ୧୦୯ ।

୮୦୪୨୪୯୬୦ ହସ୍ତର ପରିଧି ଯେଉଁ ଭୂଗୋଲ ପୃଷ୍ଠରେ ଅଛି, ସେହି ଭୂପୃଷ୍ଠରେ ଥିବା ୧୧ଟି ଶଙ୍କୁର ଦୃଷ୍ଟିସୀମା କୋଶ ଚତୁର୍ଥାଂଶ ସଂଖ୍ୟାରେ କହିବ । ୧୧ଟି ଶଙ୍କୁ ମଧ୍ୟରୁ

୧ମଟିର ପରିମାଣ—୪୦୯୬ ହାତ
୨ୟଟିର „ —୨୦୪୮ „
୩ୟଟିର „ —୧୦୨୪ „
୪ର୍ଥଟିର „ — ୫୧୨ „
୫ମଟିର „ — ୨୫୬ „
୬ଷ୍ଠଟିର „ — ୧୨୮ „
୭ମଟିର „ — ୬୪ „
୮ମଟିର „ — ୩୨ „
୯ମଟିର „ — ୧୬ „
୧୦ମଟିର „ — ୮ „
୧୧ଶଟିର „ — ୪ „

୧ମ ଶଙ୍କୁର ଦୃକ୍ ସୀମା—୧୬୧ କ୍ରୋଶାଂଘ୍ରି (କ୍ରୋ ¼)
୨ୟ „ „ —୧୧୫ „ „
୩ୟ „ „ — ୮୧ „ „
୪ର୍ଥ „ „ — ୪୭ „ „
୫ମ „ „ — ୪୦ „ „
୬ଷ୍ଠ „ „ — ୨୯ „ „
୭ମ „ „ — ୨୦ „ „
୮ମ „ „ — ୧୪ „ „
୯ମ „ „ — ୧୦ „ „
୧୦ମ „ „ — ୭ „ „
୧୧ଶ „ „ — ୫ „ „

**ଲକ୍ଷଦ୍ୱ୍ୟାଷ୍ଟଦନେନ ହସ୍ତମବନ ବ୍ୟାସାର୍ଦ୍ଧମେତତ୍ କୃତଂ**
**ସୈକବ୍ୟାସଦଳସ୍ୟ ବର୍ଗତରଣୀକୃତ୍ୟାବଶେଷାତ୍ ପଦଂ ।**
**ଦୃକସୀମୈକକରସ୍ୟ ନୁର୍ଭବତ ତଦ୍‌ବର୍ଗାଦ୍ଧତାଦଷ୍ଟନ୍—**
**ହ୍ୟ୍ସ୍ତୈର୍ମୂଳମଭୀଷ୍ଟନୃର୍ଦୃଗବଧିଶ୍ଚାହସ୍ତଲକ୍ଷାଷ୍ଟକାତ୍ ।୧୦୨।**

ପୃଥିବୀର ବ୍ୟାସାର୍ଦ୍ଧ ୧୨୮୦୦୦୦୦ ହାତ । ଏହାର ବର୍ଗରୁ ଏକ ଯୁକ୍ତ ପୃଥିବୀ ବ୍ୟାସାର୍ଦ୍ଧ ବର୍ଗରୁ (୧୨୮୦୦୦୦୦+୧)² ଫେଡ଼ି ଅନ୍ତର ଫଳର ବର୍ଗମୂଳ ନେବ । ଏହାହିଁ ଏକ ହସ୍ତ ବିଶିଷ୍ଟ ଶଙ୍କୁର ଦୃକ୍‌ସୀମା ହେବ । ସେହି ଏକ ହସ୍ତ ଶଙ୍କୁର ଦୃକ୍ ସୀମାର ବର୍ଗକୁ ଇଷ୍ଟ ଶଙ୍କୁ ହସ୍ତରେ ଗୁଣି ତାହାର ବର୍ଗମୂଳ ନେଲେ ଫଳ ଯାହା ହେବ, ତାହା ଆଠ ଲକ୍ଷ ହାତ ଦୃକ୍‌ସୀମା ପର୍ଯ୍ୟନ୍ତ ଠିକ୍ ।

**ଦନାବ୍‌ଦହୋରାମାସେଶଜ୍ଞାନାୟାନ୍ୟଗ୍ରହସ୍ଥିତଃ**
**ଇଷ୍ଟା ତନ୍ଦାଲ୍ପଗତକଃ ସ୍ଥାପ୍ୟ ଊର୍ଦ୍ଧ୍ୱେଽପ୍ୟଧଃ ପୁନଃ ।୧୦୩।**

**ବହ୍ବଭୂକ୍ତକଳଃ ଖେଟ ଇତ୍ୟଥମେଷ କ୍ରମୋ ଭବେତ୍**
**ସ୍ମୃ—ମନ୍ଦାମରେଜ୍ୟଭୂପୁତ୍ରସୂର୍ଯ୍ୟଶୁକ୍ରେନ୍ଦୁଜେନ୍ଦବଃ । ଇତ ।୧୦୪।**

ଦିନ, ବର୍ଷ, ହୋରା ଓ ମାସ ମାନଙ୍କର ଅଧିପତି ଜାଣିବା ନିମନ୍ତେ ଅନ୍ୟ ରକମର (ପ୍ରାଚୀନ) ଗ୍ରହସ୍ଥିତି ମାନିବାକୁ ହେବ । ଏଥିରେ ସବୁଠାରୁ କମ୍ ଗତିଶୀଳ ଗ୍ରହକୁ ସବୁଠାରୁ ଉପରେ ରଖି ତାଠାରୁ କ୍ରମେ କ୍ରମେ ବେଶି ବେଶି ଗତି କରୁଥିବା ଗ୍ରହମାନଙ୍କୁ ତଳକୁ ତଳ ରଖିବ । ଫଳରେ ଏହି କ୍ରମ ହୋଇଯିବ – ଶନି, ଗୁରୁ, ମଙ୍ଗଳ, ସୂର୍ଯ୍ୟ, ଶୁକ୍ର, ବୁଧ ଓ ଚନ୍ଦ୍ର । ଏଥିରେ ଶନିଠାରୁ ୪ର୍ଥ ବାରର ଅଧିପତି (ଦିନାଧି-ପତି) ହେବେ ।

**ଲେଖ୍ୟା ଅଧୋଽଧସ୍ତ ଦାଧୋ ମନ୍ଦାତ୍ତୁର୍ଯ୍ୟାଦନାଧିପାଃ**
**ଗୁରୋରଧସ୍ତୃତୀୟାଶ୍ଚ ସାବନାବ୍‌ଦାଧିପାଃ କ୍ରମାତ୍ ।୧୦୫।**

**କାଲହୋରାଧିପା ଭୌମାଦ୍‌ଦ୍ୱିତୀୟାଃ ପରକୀର୍ତ୍ତିତାଃ**
**ଲଙ୍କାର୍ଦ୍ଧରାତ୍ରତସ୍ତେଽହୋରାବେ ସ୍ୟୁଃ ସିଦ୍ଧସଂଖ୍ୟକାଃ ।୧୦୬।**

**ଊର୍ଦ୍ଧ୍ୱକ୍ରମାଦ୍‌ଦ୍ୱିତୀୟାଃ ସ୍ୟୁଃ ଶୁକ୍ରାତ୍ ସାବନମାସପାଃ**
**ସୃଷ୍ଟ୍ୟାଦୌ ଦନମାସାବ୍‌ଦହୋରେଶୋଽସ୍ମାଦ୍ରବିର୍ଯତଃ ।୧୦୭।**

**ବର୍ଷମାସଦନେଶାନାଂ ଭବେଦାରମ୍ଭକାଳତଃ**
**ମାସାହଃକାଳହୋରେଶପ୍ରବୃତ୍ତିର୍ଯୁଗପଦ୍ କ୍ଷିତୌ ।୧୦୮।**

ଏହି ସ୍ଥିତିରେ ଗୁରୁଠାରୁ ଆରମ୍ଭକରି କ୍ରମରେ ତଳକୁ ତଳ ୩ୟ ୩ୟ ଗ୍ରହ ସାବନ ବର୍ଷାଧିପତି ହେବେ । ସେହିପରି ମଙ୍ଗଳଠାରୁ ଆରମ୍ଭକରି କ୍ରମରେ ତଳକୁ ତଳକୁ ୨ୟ, ୨ୟ ଗ୍ରହକାଳ ହୋରାଧିପତି ହେବେ । କାଳହୋରା ୬୦ ଦଣ୍ଡ ମଧ୍ୟରେ ୨୪ଟି ଓ ଏହି ହୋରା ଲଙ୍କାର ଅର୍ଦ୍ଧରାତ୍ରଠାରୁହିଁ ପ୍ରାରବ୍ଧ ହୁଅନ୍ତି । ଶୁକ୍ରଠାରୁ ଆରମ୍ଭ କରି କ୍ରମରେ ଉପରକୁ ୨ୟ, ୨ୟ ଗ୍ରହ ସାବନ ମାସାଧିପତି ହେବେ । ସୃଷ୍ଟି ଆଦିକାଳରେ (ସୃଷ୍ଟି ପ୍ରାରମ୍ଭରେ) ରବିହିଁ ଦିନ, ମାସ, ବର୍ଷ ଓ ହୋରାର ଅଧିପତି ଥିଲେ । ସୌରାଦି ବର୍ଷର ଅଧିପତି, ମାସର ଅଧିପତି (ସୌର) ଓ ଚାନ୍ଦ୍ର ଦିନର ଅଧିପତି ବର୍ଷାରମ୍ଭ କାଳରୁ ହେବ ବୋଲି ଜାଣିବ ।

ପ୍ରୋକ୍ତଂ ଚନ୍ଦ୍ରାର୍କ୍ଷତଃ ସୂର୍ଯ୍ୟତେଜଃ ଶତଗୁଣାଧିକଂ
ଦିଗ୍‌ଗୁଣବ୍ୟାସତଃ କ୍ଷେତ୍ରଫଳଂ ଶତଗୁଣଂ ଭବେତ୍ ।୧୦୯।

ସ୍ୟାତ୍ତେଜଃପ୍ରସରଃ କ୍ଷେତ୍ରଫଳାନୁକ୍ରମତୋ ଯତଃ
ତଦ୍‌ବ୍ୟାସଦଶମାଂଶସ୍ୟ ଦୃଶ୍ୟସ୍ୟାଶାଗୁଣେ ପଥି ।୧୧୦।

ଶତାଂଶସ୍ତେଜସୋ ଲଭ୍ୟ ଇତ ତନ୍ନିର୍ଣ୍ଣୟେ ସ୍ଥିତେ
ଦ୍ୱିସହସ୍ରଗୁଣେ ଦୂରେ ସ୍ୱବ୍ୟାସାତ୍ତିଗ୍ମଦୀଧିତେଃ ।୧୧୧।

ଉଷ୍ଣସ୍ପର୍ଶସମାପ୍ତିଃ ସ୍ୟାତ୍ କରଣାନାଂ ନଭସ୍ତଲେ
ଅନ୍ୟଗ୍ରହାଣାମୃକ୍ଷାଣାଂ ଶତଦ୍ୱୟଗୁଣେ ପଥି ।୧୧୨।

ଶୀତୋଷ୍ଣସ୍ପର୍ଶନାଶଃ ସ୍ୟାତ୍ତଥା ଭୌମସ୍ୟ ତେଜସଃ
ସ୍ପର୍ଶାନ୍ତସ୍ଥାନତଃ ସ୍ୱାଂଶୁବ୍ୟାପ୍ତିଃ ପଞ୍ଚାଶତା ଗୁଣୈଃ ।୧୧୩।

ଅଧିକା କରଣବ୍ୟାପ୍ତେର୍ମାର୍ଗେ ତତ୍ତ୍ରିଗୁଣାଧିକେ
ଦୃଷ୍ଟିସୀମେତ୍ୟନମିତଂ ଦୀପାର୍କେନ୍ଦ୍ୱନୁଭୂତତଃ ।୧୧୪।

ସୂର୍ଯ୍ୟର ତେଜ ନକ୍ଷତ୍ର ଓ ଚନ୍ଦ୍ରର ତେଜଠାରୁ ଶତଗୁଣ ଅଧିକ ବୋଲି ଶାସ୍ତ୍ରରେ କଥିତ ଅଛି । ବ୍ୟାସକୁ ୧୦ରେ ଗୁଣିଲେ ଯାହା ହେବ ତାହାର ପୃଷ୍ଠ କ୍ଷେତ୍ରଫଳ କେବଳ ବ୍ୟାସର ପୃଷ୍ଠ ଫଳର ଶତଗୁଣ ହେବ ।

କ୍ଷେତ୍ରଫଳ ଅନୁସାରେ ହିଁ ତେଜ ବ୍ୟାପ୍ତ ହୁଏ । ତେଣୁ ବ୍ୟାସ ଦଶମାଂଶର ୧୦ ଗୁଣ ଅର୍ଥାତ୍ ବ୍ୟାସ ସମାନଦୂରରେ ତେଜର ଶତାଂଶ ଉପଲବ୍ଧ ହୁଏ । ଏହାହିଁ ସିଦ୍ଧାନ୍ତ ।

ତା ହେଲେ ସୂର୍ଯ୍ୟ ବ୍ୟାସଠାରୁ ୨୦୦ ଗୁଣ ଦୂରରେ ସୂର୍ଯ୍ୟଙ୍କର କରଣ ର ଉଷ୍ଣ-ସ୍ପର୍ଶ ଆଉ ହେବନାହିଁ । ଅନ୍ୟ ଗ୍ରହ ଓ ନକ୍ଷତ୍ରମାନଙ୍କର ମଧ୍ୟ ବ୍ୟାସର ୨୦୦ ଗୁଣ ଦୂରରେ

ଶୀତୋଷ୍ଣ ସ୍ପର୍ଶନାଶ ହେବ । ପାର୍ଥିବ ତେଜର ମଧ ଶୀତୋଷ୍ଣ ସ୍ପର୍ଶନାଶ ସେହିପରି ତାହାର ବ୍ୟାସର ୨୦୦ ଗୁଣ ଦୂରରେ ହେଉଛି ଓ ହେବ ।

ପୁଣି ଶୀତ ଉଷ୍ଣାଦି ସ୍ପର୍ଶର ଠିକ୍ ଅଭାବ ସ୍ଥାନାପ୍ତ ବ୍ୟାସର (୧) ୫୦ ଗୁଣ ଦୂର ଯାଏ କରଣ (ଉଜ୍ଜ୍ୱଳତା) ଯାଇପାରିବ । ପୁଣି କରଣ ବ୍ୟାପ୍ତିର ଶେଷ ସୀମା ବ୍ୟାସର (୨) ୨୫ ଗୁଣ ଦୂର ଯାଏ ସେହି ତୈଜସ୍ ଦ୍ରବ୍ୟର ଦୃଷ୍ଟି ସୀମା । ଏହି ସବୁକଥା ଦୀପ, ରବି ଓ ଚନ୍ଦ୍ରର ଅନୁଭବରୁ ମୁଁ ଜାଣିପାରି ଅଛି ଓ କହିଅଛି । (୧) ପ୍ରଥମଟିରେ ଦୂରତା ବ୍ୟାସର ୧ ଲକ୍ଷଗୁଣ ଓ ୨ୟଟିରେ ଦୂରତା, ବ୍ୟାସର ୨୫ ଲକ୍ଷ ଗୁଣ ହେଉଅଛି । )

**ବ୍ୟାସୋ ହି ସୂର୍ଯ୍ୟବିମ୍ବସ୍ୟ ଖଖଖାକ୍ଷ୍ୟଦ୍ରି ଯୋଜନଃ**
**ସ୍ପର୍ଶକର୍ଣ୍ଣସ୍ତଦୁସ୍ରାଣାଂ ପ୍ରୟୁତଘ୍ନାବ୍ଧି ବାସବାଃ ।୧୧୫।**

**କରଣବ୍ୟାପ୍ତିକର୍ଣ୍ଣୋଽସ୍ୟ କୋଟିଘ୍ନନଖଭୂଧରାଃ**
**ଖଖାଭ୍ରଧୃତୟଃ କୋଟିଗୁଣିତା ଦର୍ଶନଶ୍ରୁତଃ ।୧୧୬।**

**କାଳାଧ୍ୱନୋର୍ନୃମାନଂ ଯତ୍ତଦଭ୍ରାଙ୍ଗାଗ୍ନି ତାଡ଼ିତଂ**
**ଦିବ୍ୟମାନଂ ଭବେତ୍ତେନ ବ୍ୟାସୋଽସ୍ୟ ଶତକୋଟିଭିଃ ।୧୧୭।**

**ଯୋଜନୈଃ ସମ୍ମିତୋଽଣ୍ଡସ୍ୟ ନୃମାନେନାସ୍ୟକଃ ପୁନଃ**
**ଖଖଖାଭ୍ରାଭ୍ରଖାଭ୍ରାଭ୍ରଖାଭ୍ର ଷଡ଼୍ବହ୍ନିଭିର୍ମତଃ ।୧୧୮।**

ସୂର୍ଯ୍ୟ ବିମ୍ବର ବ୍ୟାସ ୭୨୦୦ ଯୋଜନ । ତାହାର କରଣର ଉଷ୍ଣସ୍ପର୍ଶ କର୍ଣ୍ଣ (ସୀମା) ୧୪୪୦୦୦୦୦୦୦ ଯୋଜନ । ତାହାର କରଣ ବ୍ୟାପ୍ତି ୭୨୦୦୦୦୦୦୦୦୦ ଯୋଜନ । କରଣର ଦର୍ଶନ କର୍ଣ୍ଣ (କରଣ ଦର୍ଶନ ବା ସୀମା) ୧୮୦୦୦୦୦୦୦୦୦୦୦ ଯୋଜନ ହେଉଅଛି ।

ମନୁଷ୍ୟର କାଳ ଓ ମାର୍ଗମାନକୁ ୩୬୦ରେ ଗୁଣିଲେ ଦିବ୍ୟ କାଳ ଓ ମାର୍ଗମାନ ହୁଏ । ଦିବ୍ୟମାନରେ ବ୍ରହ୍ମାଣ୍ଡ ବ୍ୟାସ ଶତ କୋଟି ଯୋଜନ । ଏଣୁ ମନୁଷ୍ୟମାନରେ ଏହି ବ୍ରହ୍ମାଣ୍ଡ ବ୍ୟାସ ୩୬୦୦୦୦୦୦୦୦୦୦୦ ଯୋଜନ ହେବ ।

**ବ୍ରହ୍ମାଣ୍ଡାନ୍ତଃ ଖକକ୍ଷାର୍କଭଗଣକରଣଧ୍ୱସ୍ତବକ୍ଷ୍ୱକ୍ରମିସ୍ରା-**
**ଲକ୍ଷଘ୍ନାଭ୍ରାଙ୍ଗଭୂଭୃନ୍ନବଖଗୁଣଶିବୈର୍ଯୋଜନୈଃ ସମ୍ମିତାସ୍ୟାତ୍ ।**
**ସେକ୍ଷା କକ୍ଷୈବ ଭତୋ ରବିତନ୍ତ୍ରକଳା ଦ୍ୱାଦଶାଂଶୋଽପି ଦୃଶ୍ୟୋଽ-**
**ନ୍ୟେଷାଂ ଲପ୍ତା ଦ୍ୱିସପ୍ତାଂଶକ ଇତରମତବ୍ୟଞ୍ଜକଂ**
**ବକ୍ତି କାଞ୍ଚିତ୍ ।୧୧୯।**

ଯେଉଁଠାରେ ସୂର୍ଯ୍ୟ ଓ ତାରକା ପ୍ରଭୃତଦ୍ୱାରା ଅନ୍ଧକାର ଆଉ ନଷ୍ଟ ହୋଇପାରୁ ନାହିଁ, ବ୍ରହ୍ମାଣ୍ଡ ର ସେହି ଆକାଶ କକ୍ଷାର ପରିମାଣ ୧୧୩୦୯୭୬୦୦୦୦୦୦ ଯୋଜନ । ଏହାକୁ ସୂର୍ଯ୍ୟର ବର୍ଣନ କକ୍ଷ ବ କୁହାଯାଇପାରେ । ସେଠାରେ ସୂର୍ଯ୍ୟ ବିମ୍ବ ବଳତାର ଦ୍ୱାଦଶାଂଶ ଅର୍ଥାତ୍ ୫ ପ୍ରତିବିକଳା ଦୃଶ୍ୟ ହୁଏ । ଏଠ ରେ ଅନ୍ୟ ଗ୍ରହମାନଙ୍କର ଲମ୍ବାର ୭୨ ଅଂଶ ଦୃଶ୍ୟ ହୋଇଥାଏ । ଏହାହିଁ ସିଦ୍ଧାନ୍ତ । ଏଥିରୁ ଭିନ୍ନ ଭିନ୍ନ ମତ କିଛି ମଧ୍ୟ ଏଠାରେ କହିବି ।

ଶ୍ରୀମନ୍ ଭାସ୍କର ଦୁଷ୍କରାଂକଘଟନାବିଷ୍କାରବାଚସ୍ପତେ
ତ୍ୱଂ ଚେତ୍ ପୁଷ୍କରମାତ୍ଥ ଭାସ୍କରକରାବିସ୍କନ୍ଦିତାନ୍ତସ୍ତମଃ ।
କଲ୍ପୋଦ୍ଧୃତନଭୋଗଭୁକ୍ତସରଣୀତୁଲ୍ୟାମ୍ବକକ୍ଷାଂ ତଦା
କିଂ ବ୍ରୂମୋ ଗୁରୁଗର୍ବଦୁର୍ଘଟନୟା କର୍ବିଣ୍ଣଶକ୍ତା ବୟଂ ।୧୬୦।

ଭାଗ୍ୟବାନ୍ ହେ ଆଚାର୍ଯ୍ୟ ଭାସ୍କର, ଦୁର୍ଘଟ ଅଙ୍କ କଳ୍ପନା ବିଷୟରେ ମହା ମହା ଆବିଷ୍କାର କରି ଆପଣ ବୃହସ୍ପତିଙ୍କପରି ସମ୍ମାନ ପାଇଅଛନ୍ତି । ସୂର୍ଯ୍ୟ କିରଣଦ୍ୱାରା ଅନ୍ଧକାର ଦୂର ହେବା-ପରେ କଳାହୋଇ ଯେଉଁ ଆକାଶ ସୀମା ଦେଖାଯାଏ ତାହାହିଁ ଆପଣଙ୍କ ମତରେ ଆକାଶ କକ୍ଷା । ଏତିକ ଯୋଜନହିଁ ଗୋଟିଏ କଳ୍ପରେ ଗ୍ରହ ଭ୍ରମଣ କରିପାରେ ବୋଲି ଆପଣ ଶିରୋମଣିରେ କହି ଅଛନ୍ତି । ଆପଣଙ୍କ ପରି ବଡ଼ ଲୋକ ଯଦି ଏହା କହନ୍ତି, ତାହାହେଲେ ଆମ୍ଭେମାନେ ବିଷାଦ ଗ୍ରସ୍ତ ମନରେ ଆଉ କ'ଣ କହିବୁ ?

ସ୍ୱକକ୍ଷାୟାଂ ଖେଟଭ୍ରମଣ ଗଣଭୁକ୍ତାଭ୍ରସରଣୀ
ଯଦି ସ୍ୟାଦ୍‌ବ୍ରହ୍ମାଣ୍ଡୋଦରପରିମିତାକାହନ ତଦା ।
ଶତାବ୍ଦ୍ୟା କଷ୍ଟାୟାଂ ପୁର ପରିବୃତାୟାଂ ପ୍ରତିଦନଂ
କୟାଶତ୍ ବ୍ୟକ୍ତ୍ୟାସ୍ୟାତ୍ କୁପରିଧିସମସ୍ତଦ୍‌ଗତପଥଃ ।୧୬୧।

ନିଜ କକ୍ଷାରେ ଗ୍ରହ ବୁଲି ବୁଲି ବ୍ରହ୍ମ ଦିନରେ ଯଦି ଆକାଶ କକ୍ଷା ପରିମିତ ଯୋଜନ ଭ୍ରମଣ କରେ, ଏହାହିଁ ତାହାର ଆକାଶ ସରଣୀ ଏବଂ ଏହାହିଁ ବ୍ରହ୍ମାଣ୍ଡର ପରିମାଣ । ତାହା-ହେଲେ ଆମେ କହିବୁ ଯେ କୌଣସି ଲୋକ ତାର ଘରେ ଶହେ ବର୍ଷଯାଏଁ ପ୍ରତିଦିନ ବୁଲି ବୁଲି ପୃଥିବୀର ପରିଧି ସମାନ ମାର୍ଗ ଅତିକ୍ରମ କରୁ ।

କୋଟିଘ୍ନୈର୍ନଖନନ୍ଦଷଟ୍କନଖଭୂଭୂଭୃଦ୍ଭୁଜଙ୍ଗେନ୍ଦୁଭି—
ସ୍ତ୍ୱତ୍ ପ୍ରୋକ୍ତସ୍ୟ ଚ ଯୋଜନୈଃ ଖପରିଧେସ୍ତସ୍ୟାପି ଲକ୍ଷାଂଶକେ ।
ନ ସ୍ୟାଦ୍ୱିଦ୍ୱିଶରର୍ତ୍ତୁ ଯୋଜନରବିବ୍ୟାସସ୍ୟ ଯଦ୍ଦର୍ଶନଂ
ଦ୍ୟୋତବ୍ୟାପ୍ତିତମଃ-କ୍ଷତିଃ କ୍ୱ ଘଟତେ ଖାନ୍ତେଽପି ତେ ତନ୍ମତେ ।୧୨୨

ଆପଣ ଆକାଶ ପରିଧିରମାନ ୧୮୭୧୨୦୬୯୨୦୦୦୦୦୦୦୦ ଯୋଜନ ବୋଲି କହି ଅଛନ୍ତି । ଏହାର ୧ ଲକ୍ଷ ଭାଗରୁ ଭାଗେ କଲେ ମଧ୍ୟ ସୂର୍ଯ୍ୟବ୍ୟାସ ୬୫୨୨ ଯୋଜନର ଦର୍ଶନ ପର୍ଯ୍ୟନ୍ତ ହୁଏ ନାହିଁ । ତାହାହେଲେ ଆକାଶ ଗୋଲ ପରିଧି ପର୍ଯ୍ୟନ୍ତ ଆକାଶର ଅନ୍ଧକାର ସୂର୍ଯ୍ୟ କିରଣ ନାଶ କରେବୋଲି ଆପଣ କିପରି କହୁଛନ୍ତି ? ଏଣୁ ଆପଣଙ୍କର ଏ ମତ ଠିକ୍ ନୁହେଁ ।(ସାମନ୍ତଙ୍କର ମତରେ ସୂର୍ଯ୍ୟବିମ୍ବବ୍ୟାସ ୭୨୦୦୦ ଯୋଜନ । ସୂର୍ଯ୍ୟ ଜ୍ୟୋତି ସ୍ଫୂର୍ତ୍ତି ଯୋଜନ ବ୍ୟାସ ୧୪୪୦୦୦୦୦୦ ହୋଇପାରେ । ପୁଣି ସୂର୍ଯ୍ୟର କିରଣ ବ୍ୟାପ୍ତି ବ୍ୟାସ ୭୨୦୦୦୦୦୦୦୦୦ ଯୋଜନ । ଏହାର ୨୫ ଗୁଣ ଅର୍ଥାତ୍ ୧୮୦୦୦୦୦୦୦୦୦୦୦ଯୋଜନକୁ ସୂର୍ଯ୍ୟ ଦେଖାଯାଇ ପାରନ୍ତି । ଏହାହିଁ ସୂର୍ଯ୍ୟର ଦୃଷ୍ଟି ସୀମାହେବ । ଏହାର ୨ଗୁଣ ୩୬୦୦-୦୦୦୦୦୦୦୦୦ । ଏଥିରୁ ଅଧିକ ସୂର୍ଯ୍ୟ କଦାପି ଦେଖାଯିବ ନାହିଁ । ୩୬୦୦୦୦୦୦୦୦୦୦୦ ଯୋଜନ ବ୍ୟାସର ପରିଧି ହେବ ୧୧୩୦୯୭୬୦୦୦୦୦୦ ଯୋଜନ । ଭାସ୍କରାଦିଙ୍କ ମତରେ ବିମ୍ବ ବ୍ୟାସଯୋଜନ ୬୫୨୨ ମାତ୍ର । ଏହି ସୂର୍ଯ୍ୟ ବିମ୍ବ ୧୧୩୦୯୭୬୦୦୦୦୦୦ ଯୋଜନ କକ୍ଷା-ପର୍ଯ୍ୟନ୍ତ ବି ଦେଖାଯିବ ନାହିଁ । ଭାସ୍କରାଦିଙ୍କର ଆକାଶ କକ୍ଷା ୧୮୭୧୨୦୬୯୨୦୦୦୦୦୦୦୦ ଯୋଜନର ଲକ୍ଷାଂଶରୁ ବି କମ୍ । ଏପରି ସ୍ଥଳେ ଭାସ୍କରାଦିଙ୍କ କକ୍ଷା ସାମନ୍ତେ ମାନି ପାରୁନାହାନ୍ତି ତାଙ୍କ ମତରେ ଆକାଶ କକ୍ଷା ୧୧୩୦୯୭୬୦୦୦୦୦୦ ଯୋଜନ ହୋଇପାରେ; କିନ୍ତୁ ୧୮୭୧-୨୦୬୯୨୦୦୦୦୦୦୦୦ କଦାପି ନୁହେଁ ।)

ସର୍ବାଶ୍ଚର୍ଯ୍ୟମହାମ୍ବୁଧେର୍ଭଗବତଃ ସ୍ଥୂଲେ ବିଭୌ ଧାମନି
କ୍ରୀଡ଼ାଣ୍ଡାଣୁଗଣାଃ ସ୍ଫୁରନ୍ତି କତିଧା ନୋ ବେତ୍ତି ବେଧା ଅପି ।
ତସ୍ମାଦ୍ବେଦପୁରାଣବର୍ଣ୍ଣିତଜଗନ୍ମାନାଦିକଂ ନୋ ମୃଷା
କିନ୍ତ୍ୱସ୍ମଦ୍ୱସତେର୍ଭୁବୋଽନ୍ତିକଜୁଷାମେଷା ସ୍ଥିତିର୍ଜ୍ୟୋତିଷାଂ ।୧୨୩।

ଭଗବାନ ଆଶ୍ଚର୍ଯ୍ୟର ଏକ ମହାସାଗର । ଆଶ୍ଚର୍ଯ୍ୟରେ ସେ ସମସ୍ତଙ୍କଠାରୁ ବଡ଼ । ତାଙ୍କର ବିରାଟରୂପୀ ପଦତଳେ ଅର୍ଥାତ୍ ଏହି ବିଶ୍ୱରେ ଖେଳିବା ନିମନ୍ତେ କେତେପ୍ରକାର ବିମ୍ବ, ଅଣୁ ଓ ଜୀବପୁଞ୍ଜ କ୍ରୀଡ଼ା କରୁଛନ୍ତି, ତାହା ସ୍ୱୟଂ ବ୍ରହ୍ମା ମଧ୍ୟ ଜାଣନ୍ତିନାହିଁ । ତେଣୁ ବେଦ ଓ ପୁରାଣାଦିରେ ବ୍ରହ୍ମାଣ୍ଡର ଯେଉଁ ସବୁ ପରିମାଣ ଦିଆଯାଇଛି ସେ ସବୁ ମିଥ୍ୟା ହୋଇ ନ ପାରେ । ମାତ୍ର ଆମର ଆବାସ ଭୂମି ଏହି ପୃଥିବୀ ନିକଟରେ ଏ ଯେଉଁ ଗ୍ରହମାନେ ଦେଖାଯାଉଅଛନ୍ତି ସେମାନଙ୍କର ହିଁ ସ୍ଥିତି ବିଷୟରେ ମୁଁ ଅନେକ କଥା କହିଛି ।

ଶଂଖାସୁରସ୍ୱହୃତ-ନନ୍ଦିତ ଦେବବୃନ୍ଦଃ
ଶଂଖାରସୁନ୍ଦରତରାଗ୍ରକରାରବିନ୍ଦଃ ।
ଶଂଖାଙ୍କକ୍ଷିତିପତିଃ ପ୍ରତନୋତୁ ନିତ୍ୟଂ
ଶଂଖାଦିଭୂତମୟକାୟନିକାୟଭାଜାମ୍ । ୧୬୪ ।

ଶଙ୍ଖାସୁରର ପ୍ରାଣ ନେବାଦ୍ୱାରା ଯେ ଦେବତାମାନଙ୍କୁ ଆନନ୍ଦ ଦେଇ ପାରିଲେ; ଯାହାର କରପଦ୍ମ ଶଙ୍ଖ ଏବଂ ତଦ୍ଦ୍ୱାରା ବେଶୀ ସୁନ୍ଦର ଦେଖାଯାଉଛି; ଶଙ୍ଖକ୍ଷେତ୍ର ପୁରୁଷୋତ୍ତମ ର ଯେ ଅଧିପତି ସେ ଆକାଶ ଆଦି ପଞ୍ଚଭୂତମୟ ଶରୀରଧାରୀମାନଙ୍କର (ଆମର) ଆନନ୍ଦବର୍ଦ୍ଧନ କରନ୍ତୁ—ମଙ୍ଗଳ କରନ୍ତୁ ।

ଇତ୍ୟୁତ୍କଳୋତ୍କଳନୃପାଳକୁଳପ୍ରସୂତ—
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ଯାତଃ ପ୍ରକାଶଃ ଇହ ଖଭ୍ରଭୃଦୃନବଂଶଃ । ୧୬୫ ।

ଇତି ଶ୍ରୀଚନ୍ଦ୍ରଶେଖରସିଂହ କୃତୌ ସିଦ୍ଧାନ୍ତ ଦର୍ପଣେ ଗୋଳାଧିକାରେ ଭଗୋଳଖଗୋଳବର୍ଣ୍ଣନୋ ନାମୈକୋନ ବିଂଶତିତମଃ ପ୍ରକାଶଃ ।

ନକ୍ଷତ୍ର ଏବଂ ଆକାଶଗୋଳର ଚର୍ଚ୍ଚା କରିଥିବା ଊନବିଂଶ ପ୍ରକାଶ ଏଠାରେ ଶେଷ ହେଲା ।

## ବିଂଶଃ ପ୍ରକାଶଃ

(ଗୋଲାଧିକାରେ ଗୋଲାଦି ଯନ୍ତ୍ର ବର୍ଣ୍ଣନମ୍)

**ଯନ୍ତ୍ରଂ ବିନା ଗ୍ରହଗତି ଗ୍ରହଣାଦିକାନାଂ**
**ସ୍ୟାଦ୍‌ବାସନା ନ ସୁଗମା ସମୟକ୍ରମଶ୍ଚ ।**
**ତଦ୍‌ଯନ୍ତ୍ରନିର୍ମିତିମୁପକ୍ରମତେଽଭିଧାତୁଂ**
**ଶ୍ରୀଚନ୍ଦ୍ରଶେଖରକୃତୀ ପ୍ରତିଭାନୁସାରାତ୍ । ୧ ।**

ଯନ୍ତ୍ର ବ୍ୟତୀତ ଗ୍ରହମାନଙ୍କର ଗତି ଓ ଗ୍ରହଣ ଆଦିର ଯୁକ୍ତି ସହଜରେ ଜଣାପଡ଼ିବନାହିଁ । କାଳଗତି ମଧ୍ୟ ଯନ୍ତ୍ର ବିନା ସୁବିଧାରେ ଜାଣିହେବନାହିଁ । ତେଣୁ ମୁଁ (ଚନ୍ଦ୍ରଶେଖରକୃତୀ) ନିଜର ପ୍ରତିଭାନୁଯାୟୀ ଯନ୍ତ୍ରନିର୍ମାଣକଥା କହିବାର ଉପକ୍ରମ କରୁଅଛି ।

**ଯନ୍ତ୍ରଂ ଦ୍ୱିଧା ଭବତି ଗୋଲକକାଳଭେଦାତ୍**
**ସନ୍ତ୍ୟେତୟୋଃ ପୁନରବାନ୍ତରଭୂରିଭେଦାଃ ।**
**ତେଭ୍ୟଃ କିୟନ୍ତି ସୁକରାଣି ସମାକଳଯ୍ୟ**
**ପ୍ରାଧାନ୍ୟତଃ ଶିଶୁମୁଦେ ବିଶଦୀକରୋମି । ୨ ।**

ପ୍ରଥମେ ଗୋଲ ଓ କାଳ ଭେଦରେ ଯନ୍ତ୍ର ଦୁଇଭାଗରେ ବିଭକ୍ତ । ଏ ଦୁଇ ଭେଦ ମଧ୍ୟରେ ମଧ୍ୟ ଅନେକ ପ୍ରଭେଦ ରହିଛି । ଅବଶ୍ୟ ସେ ସବୁ ଅବାନ୍ତର । ଏ ଯନ୍ତ୍ରମାନଙ୍କ ମଧ୍ୟରୁ କେତୋଟି ଏକାଠି କରି ଯନ୍ତ୍ରଜ୍ଞାନ ନ ଥିବା ଲୋକଙ୍କର ଆନନ୍ଦ ନିମନ୍ତେ କହୁଅଛି । ଯନ୍ତ୍ରଜ୍ଞାନ ନ ଥିବା ଲୋକଙ୍କ ଉଦ୍ଦେଶ୍ୟରେ ହିଁ ପ୍ରଧାନତଃ ଏସବୁ କୁହାଯାଇଛି । ସବୁ ଯନ୍ତ୍ରକଥା ଏଠାରେ କୁହାଯାଉନାହିଁ । କେବଳ ଯେଉଁଗୁଡ଼ିକ ସୁବିଧାରେ ନିର୍ମାଣ କରାଯାଇପାରେ ସେଗୁଡ଼ିକ ହିଁ ମୁଖ୍ୟତଃ କୁହାଯାଉଛି ।

**ଗୋଲକ୍ଷମେକକକ୍ଷଂ ବହୁକକ୍ଷମିତି ଦ୍ୱିଧୋଚ୍ୟତେ ଯନ୍ତ୍ରଂ**
**ତତ୍ରାଦ୍ୟମୁକ୍ତମାଦିଭିରପରଂ ମତ୍କଳ୍ପନାସିଦ୍ଧମ୍ । ୩ ।**

ଦୁଇପ୍ରକାର ଗୋଲଯନ୍ତ୍ର ଏଠାରେ କୁହାଯାଉଛି । ଗୋଟିଏ ଏକକକ୍ଷ ଓ ଅନ୍ୟଟି ବହୁକକ୍ଷ । ପ୍ରଥମଟି ପ୍ରାଚୀନାଚାର୍ଯ୍ୟମାନେ କହିଯାଇଛନ୍ତି । ୨ୟଟି ମୁଁ କହୁଛି ଏବଂ ଏହିଟି ମୋ ନିଜ କଳ୍ପନା ପ୍ରସୂତ ।

ଗୁପ୍ତସ୍ଥଳେ ସୁବିମଳେ ସୁସ୍ନାତୋଽଲଂକୃତଃ କୃତୀଗଣକଃ
ସଂପୂଜ୍ୟ ଭାସ୍କରମୁଖାନ୍ ଗ୍ରହାନ୍ ଭଚକ୍ରଂ ଚତୁର୍ବ୍ୟୂହମ୍ । ୪ ।

ଇନ୍ଦ୍ରାଦିଲୋକପାଳାନ୍ ଗୁହ୍ୟକବର୍ଗଂ ଗୁରୂନବିଘ୍ନାୟ
ବୋଧାର୍ଥଂ ଶିଷ୍ୟାଣାଂ ଗୋଲକଯନ୍ତ୍ରଂ ନିବଧ୍ନୀୟାତ୍ । ୫ ।

ସୁନ୍ଦର ଓ ଗୋପନ ସ୍ଥାନରେ କାର୍ଯ୍ୟଗ୍ରାହୀ ଗଣକ ସୁସ୍ନାତ ଓ ଅଳଂକୃତ ହୋଇ ସୂର୍ଯ୍ୟାଦି ଗ୍ରହମାନଙ୍କୁ ପୂଜା କରିବେ । ଇନ୍ଦ୍ରାଦି ଦିକ୍‌ପାଳ, ଗୁହ୍ୟକ (ଯକ୍ଷ), ନିଜର ଗୁରୁଗଣଙ୍କୁ ଓ ଚତୁରସ୍ର ଭଚକ୍ରଙ୍କୁ ମଧ୍ୟ ପୂଜା କରି ବିଘ୍ନ ଉଦ୍ଧାରଣ କରିବେ । ଏସବୁ କରିସାରିବା-ପରେ ଶିଷ୍ୟମାନଙ୍କର ଯନ୍ତ୍ରଜ୍ଞାନ ନିମନ୍ତେ ଗୋଲ ଯନ୍ତ୍ର ବାନ୍ଧିବାକୁ ଆରମ୍ଭ କରିବେ ।

ନିର୍ମାୟ କ୍ଷିତିଗୋଲଂ ଷଡ଼ଙ୍ଗୁଳମିତସୁବେଷ୍ଟନଂ ସମିଧା
ଦ୍ୱୀପାଦ୍ୟସାଗରାଦ୍ୟୈରଙ୍କିତମନ୍ତର୍ଗତସୁଭ୍ରମ୍ । ୬ ।

କାଠରେ ଗୋଟିଏ ପୃଥିବୀ ଗୋଲ କରିବେ ଯାହାର ପରିଧି ମୋଟେ ୬ ଅଙ୍ଗୁଳ ହେବ । ସେଥିରେ ଦ୍ୱୀପ, ସାଗର ଓ ପର୍ବତର ଚିହ୍ନ କରିଥିବେ । ଏହି ଗୋଲ ଭିତରେ ଗୋଟିଏ କଣା କରିବେ ।

ତନ୍ମଧ୍ୟେ ଧ୍ରୁବଯଷ୍ଟିର୍ବୃତ୍ତାବଷ୍ଟାୟତୋତ୍ତରାବାଚ୍ୟୋଃ
ସରଳା କରଷଟ୍କମିତା କୃଶା ଦୃଢ଼ାମେରୁ ଦଣ୍ଡାଖ୍ୟା । ୭ ।

ସେହି ରନ୍ଧ୍ରରେ ଧ୍ରୁବ ଯଷ୍ଟି ଗଳାଇବେ । ଏହି ଯଷ୍ଟି ଗୋଲାକାର, ଦୀର୍ଘ ଓ ସରଳ ହେବ । ଏହାର ଦୈର୍ଘ୍ୟ ୬ ହାତ । ଏହା ଦେଖିବାକୁ ସରୁ ଓ ଦୃଢ଼ ହେବ । ଖୁବ୍ ମଜ୍‌ଭୁତ କାଠରେ ଏହା ତିଆରି ହୋଇଥିବା ବାଞ୍ଛନୀୟ ।

କାର୍ଯ୍ୟା ତଦ୍ଧରଣାର୍ଥଂ ସପାଦକରପଞ୍ଚକାନ୍ତରଂ ସୌମ୍ୟେ
ଯାମ୍ୟେ ଚ ସ୍ଥୂଣଯୁଗଂ ପଞ୍ଚକରୋଚ୍ଚଂ ଦୃଢ଼ଂ ସ୍ଥାପ୍ୟମ୍ । ୮ ।

ଦାରୁଣ୍ୟଥବା ଭୂମୌ ହସ୍ତବିତୟୋନ୍ନତସ୍ଥଳେ ରନ୍ଧ୍ରେ
ନିର୍ମାୟ ସ୍ତମ୍ଭଯୁଗେ ଧ୍ରୁବଯଷ୍ଟ୍ୟଗ୍ରପ୍ରବେଶାୟ । ୯ ।

ଭୂୟୋ ଭୂଗୋଲଦଳାଦକ୍ଷାଂଶସମୋନ୍ନତାନତସ୍ଥଳୟୋଃ
ଭୂସମ୍ମୁଖୀନରନ୍ଧ୍ରେ ସୌମ୍ୟାନ୍ୟସ୍ତମ୍ଭୟୋଃ କାର୍ଯ୍ୟେ । ୧୦ ।

ଆଦୌ ତ୍ୱକ୍‌ସାରଜୟା ପଟ୍ଟିକୟାଧାରକକ୍ଷିକାଯୁଗ୍ମଂ
ବଦ୍ଧ୍ୱା ଭାଂଶାଙ୍ଗୁଳମିତମେକଂ କ୍ଷିତିଜାଭିଧଂ ବୃତ୍ତମ୍ । ୧୧ ।

ଧୃତ୍ୱା ତତ୍ର କରାଭ୍ୟାଂ ଉର୍ଦ୍ଧ୍ୱାଧରସୌମ୍ୟଯାମ୍ୟକକ୍ଷାଖ୍ୟଂ
ବୃତ୍ତଂ ନିଯୋଜ୍ୟମନ୍ୟଦ୍‌ଯୋଗସ୍ଥାନଦ୍ୱୟେ ଶୁଷିରେ । ୧୨ ।

କୃତ୍ୱାତ୍ର ଧ୍ରୁବଯଷ୍ଟିଃ ପ୍ରବେଶିତା ସ୍ତମ୍ଭରନ୍ଧ୍ରୟୋଃ ସ୍ଥାପ୍ୟା
ଶ୍ଳଥମଥ ବିଷୁବଦ୍‌କକ୍ଷାଗୋଲେ ବଦ୍ଧ୍ୱାଧରୋର୍ଦ୍ଧ୍ୱଗତା । ୧୩ ।

ଭୂମେର୍ନିରକ୍ଷରେଖୋପରି ଖରସୋଷବୃର୍ଧାଙ୍ଗୁଳପ୍ରମିତା
ନାଡ଼ୀମଣ୍ଡଳମେଷା ନାଡ଼ୀପଳଚିହ୍ନିତା କାର୍ଯ୍ୟା । ୧୪ ।

ତତ୍‌ପାର୍ଶ୍ୱୟୋର୍ଭୁଜୈକଦ୍ୱିତ୍ରିଭଜାପକ୍ରମସ୍ଥଳେଷୁ ପୁନଃ
ଷଡ୍‌ବଳୟାଃ କ୍ରମତୋଽଲ୍ପାଦ୍ଧ୍ରୁବାତ୍ର ବଲ୍ଲାକ୍ଷୟା ସ୍ଥାପ୍ୟାଃ । ୧୫ ।

ଏହି ମେରୁଦଣ୍ଡକୁ ଧରି ରଖିବା ପାଇଁ ୬ ୫।୧୫ (୫¼) ହାତ ତଫାତ୍‌ରେ ଦକ୍ଷିଣ ଓ ଉତ୍ତରରେ ଦୁଇଟି ପାଞ୍ଚ ହାତଆ ଖୁଣ୍ଟ ପୋତିବେ । ଦେଖିବେ ଏ ଖୁଣ୍ଟ ଯେପରି ଆଦୌ ହଲଚଲ ନ ହୁଏ । ଭୂମି ଉପରୁ ଖୁଣ୍ଟ ଦୁଇଟିର ଉଚ୍ଚତା ଯେପରି ୫ ହାତ ହୁଏ । ଖୁଣ୍ଟ ଦୁଇଟି ମାଟିରେ ପୋତାଯାଇ ପାରେ ଅଥବା କାଠରେ ଏ ଖୁଣ୍ଟ ଦୁଇଟିକୁ Set କରି ଦେବାକୁ ହେବ, ଯେପରି ନହଲେ । ଏ ଦୁଇଟି ଖୁଣ୍ଟର ୫ ହାତ ଉଚ୍ଚରେ ଗୋଟିଏ ଗୋଟିଏ ରନ୍ଧ୍ର କରିବେ । ପୁଣି ଉଭୟ ସ୍ତମ୍ଭର ସମାନ ଉଚ୍ଚ ସ୍ଥଳରୁ ଉତ୍ତର ଖୁଣ୍ଟରେ ଉପରକୁ ଏବଂ ଦକ୍ଷିଣ ଖୁଣ୍ଟ ତଳକୁ ଏପରି ଦୁଇଟି କଣା କରିବେ ଏବଂ ଏଥିରେ ଧ୍ରୁବଯଷ୍ଟି ପୂରାଇ ରଖିବେ ।

ଦୁଇଟି ବାଉଁଶ ପାତି ତିଆରି ବୃତ୍ତ ତିଆରି କରି ଏ ଦୁଇଟିକୁ ୧୮୦°ରେ ପରସ୍ପର ମିଳାଇ ସେହି ଦୁଇ ମିଳନ ସ୍ଥଳରେ ଉଭୟ ବୃତ୍ତରେ ରନ୍ଧ୍ର କରି ସେଥିରେ ଧ୍ରୁବଯଷ୍ଟି ପୂରାଇବେ । ଏ ଉଭୟ ବାଉଁଶ ବୃତ୍ତ ଯେପରି ପରସ୍ପର ଲମ୍ବ ଭାବରେ ରହିବେ ତାହା ଦେଖିବେ । ତାପରେ ଏହି ଦୁଇ ରନ୍ଧ୍ରରେ ଧ୍ରୁବଯଷ୍ଟି ପୂରାଇବା ଉଦ୍ଦେଶ୍ୟରେ ଥିବା ରନ୍ଧ୍ରରେ ଗଳାଇ ଦେବେ । ଏହି ଦୁଇଟି ବୃତ୍ତ ଆଧାର ବୃତ୍ତ । ଗୋଟିକର ନାମ କ୍ଷିତିଜ ଓ ଅନ୍ୟଟିର ନାମ ଉର୍ଦ୍ଧ୍ୱାଧର । ଏ ଦୁଇଟି ବୃତ୍ତ ପ୍ରତ୍ୟେକେ ୩୬୦ ଆଙ୍ଗୁଳ ପରିଧି ବିଶିଷ୍ଟ ହେବେ ଓ ଦୁଇଟି ବୃତ୍ତକୁ ଏପରି ରଖିବେ, ଯେପରି ତାହାର ମଧ୍ୟ ସ୍ଥଳରେ ପୃଥିବୀ ରହିବ ।

ଭୂଗୋଳର ଯେଉଁ ବିଷୁବରେଖା ଠିକ୍ ତାହାର ଉପରେ ରହିବ ଏପରି ଗୋଟିଏ ବାଉଁଶ ପାତିଆର ୩୬୦ ଆଙ୍ଗୁଳିଆ ବିଷୁବ ବୃତ୍ତ ବାନ୍ଧି ରଖିବେ । ବୋଧହୁଏ ଉକ୍ତ ଆଧାର ବୃତ୍ତଦ୍ୱୟ ମଧ୍ୟରେ ଏବଂ ସେ ଉଭୟର ଲମ୍ବ ଭାବରେ ଏ ବୃତ୍ତ ରହିବ । ଏ ବୃତ୍ତର ଅନ୍ୟ ନାମ ନାଡ଼ୀମଣ୍ଡଳ । ଏଣୁ ଏହାକୁ ନାଡ଼ୀ ପଳରେ ମଧ୍ୟ ଚିହ୍ନିତ କରିବେ ।

ଏହି ବିଷୁବ ବୃତ୍ତର ଦକ୍ଷିଣ ଉତ୍ତର ଉଭୟ ଦିଗରେ ୧, ୨, ୩ ରାଶିର କ୍ରାନ୍ତି ତୁଲ୍ୟ ଅଙ୍ଗୁଳ ତଫାତ୍‌ରେ ୩, ୩ କରି ୬ଟି ଅହୋରାତ୍ର ବୃତ୍ତ (କ୍ରମରେ ଛୋଟ) ଉକ୍ତ ଗୋଲରେ ସ୍ଥାପନା କରିନେବେ । ଏକରାଶି, ଦୁଇରାଶି, ତିନରାଶି ଭୁଜାଂଶର କ୍ରାନ୍ତି ସାଧିତ ହୋଇ ଆଗରୁ ରହିଛି ।

ଧ୍ରୁବଯଷ୍ଟିଶିଖାବଦ୍ଧସୁନାଭିଫଳକଦ୍ୱୟଂ ନ୍ୟସେଦଭିତଃ
ତନ୍ନେମୌ ଚ ଶଲାକାଃ ଖରସଗୁଣା ସନ୍ନିବେଶ୍ୟାସାମ୍ ।୧୬।

ବଳୟାର୍ଦ୍ଧାକାରାଣ୍ୟମତ୍ରାଣ୍ୟପି ବଜ୍ରଲେପସୁଦୃଢାନି
କୃତ୍ୱାନ୍ତରଜତୁଳାଦ୍ୟୋର୍ନ୍ୟସେଦ୍ଧ୍ରୁବୌ ସୌମ୍ୟଯାମ୍ୟୌ ଚ ।୧୭।

ଧ୍ରୁବଚହ୍ନାତ୍ ଫଳକାନ୍ତଂ ବଳୟୈରେକାଙ୍ଗୁଳାନ୍ତରୈ ରଂଶାଃ
ଲେଖ୍ୟାସ୍ତିର୍ଯ୍ୟଗ୍ଭାଂଶା ଅଥ ଗୋଳେ ବେଣୁଜୈର୍ବଳୟୈଃ ।୧୮।

ଆବିଷୁବଦ୍ବଳୟାନ୍ତାତ୍ କ୍ରମାଧିକୈର୍ଗାଢସୂତ୍ରସମ୍ବଦ୍ଧୈଃ
ଅକ୍ଷାଂଶା ରଚନୀୟା ଲତ୍ୟଭିତୋ ଭାଂଶ ସଂସ୍ଥାନେ ।୧୯।

ଧ୍ରୁବ ଯଷ୍ଟିର ଦୁଇ ମୁଣ୍ଡରେ ଦୁଇଟି ବୃତ୍ତାକାର ପଟା ଲଗାଇବ । ଏହି ପଟା ମଝିରେ କଣା ହେବ ଏବଂ ଏହାରି ଭିତରେ ଧ୍ରୁବ ଯଷ୍ଟିକୁ ପୂରାଇବ । ଏ ବୃତ୍ତ ଫଳକର ନେମି ବା ପରିଧିକୁ ୩୬୦ ଅଂଶରେ ବିଭକ୍ତ କରି ପ୍ରତ୍ୟେକ ଅଂଶରେ ପରିଧିକୁ ଅଗ୍ର କରି କାଠି ଦେବ । ଏକାଠି ସବୁ ଯେପରି ପଡ଼ି ନ ଯାଏ ସେପରି କରିବ ଅର୍ଥାତ୍ ବଜ୍ରଲେପ (ଅଠା) ଦେଇ ତାକୁ ସମାନ ଓ ଦୃଢ଼ କରି ନେବ । ଏହି ଫଳକର ମେଷାଦିରେ ଉତ୍ତର ଧ୍ରୁବ ଓ ତୁଳାଦିରେ ଦକ୍ଷିଣ ଧ୍ରୁବ ଚିହ୍ନ ଦେବ । ଧ୍ରୁବ ଚିହ୍ନରୁ ଆରମ୍ଭ କରି ଫଳକ ଶେଷଯାଏ ଏକ ଏକ ଆଙ୍ଗୁଳ ତଫାତ୍‌ରେ ଉକ୍ତ ଫଳକ ନେମିରେ ଅଂଶ ରଚନାକରିବ । ଏ ରେଖାଗୁଡ଼ିକ ଫଳକର ତିର୍ଯ୍ୟକ୍ ବା ବିପରୀତ ହେବ ।

ଏହାପରେ କାଠ ପୃଥିବୀ ଉପରେ ଯେଉଁ ଗୋଲ ରଚିତ ହୋଇଛି ସେଥିରେ ବାଉଁଶ ଗୋଲ (ବୃତ୍ତ) କରି ସେଗୁଡ଼ିକୁ ଧ୍ରୁବଠାରୁ ବିଷୁବ ଆଡ଼କୁ ବସାଇ ନେବ । ଏ ବୃତ୍ତଗୁଡ଼ିକ କ୍ରମେ ବିଷୁବ ଆଡ଼କୁ ଗାଢ଼ ହୋଇ ଯାଉଥିବ । ଯେପରି ସୁବିଧାରେ ଜାଣି ହେବ, ବିଷୁବର ଏମାନେ ସମାନାନ୍ତର । ବିଷୁବ କିନ୍ତୁ ସମସ୍ତଙ୍କ ଠାରୁ ଗାଢ଼ତମ ହେବ ।

କ୍ରାନ୍ତିତ୍ୟ·ରାଶିସନ୍ଧୀନପବୃତ୍ତଂ ତଡଦଂଗସଂଲଗ୍ନମ୍
ଅୟନାଂଶସଂସ୍କୃତତୁଳାମେଷାଦ୍ୟୋଃ ସଂସ୍ପୃଶଦ୍ବିଷୁବମ୍ ।୨୦।

ତତ୍‌କର୍କିନକ୍ରମୁଖୟୋଃ ସଦଳାଗ୍ନିଭୁଜାଂଶଦୂରେ ବିଷୁବାତ୍
କଳନୀୟଂ କୁଶଳଧିୟା ରବିଗତମାର୍ଗଂ ଯଦେବାହୁଃ ।୨୧।

ଊର୍ଦ୍ଧ୍ୱାଧଃ ପ୍ରାକ୍‌ପଶ୍ଚିମଯାମ୍ୟୋତ୍ତରବିନ୍ଦୁଷଟ୍‌କମତ୍ରୈବ
ପ୍ରତ୍ୟେକଂ ସ୍ୱସ୍ତିକମିତି ଗଦିତଂ ଖସ୍ୱସ୍ତିକଂ ତ୍ୱୌର୍ଦ୍ଧ୍ୱମ୍ । ୨୨ ।

ଏହି ଗୋଲରେ (ବାଉଁଶ ଗୋଲରେ) ରାଶି ସନ୍ଧି ଗୁଡ଼ିକୁ ଠିକ୍ ଠିକ୍ ଠଉରେଇ ନେବାକୁ ହେବ । ଅର୍ଥାତ୍ କ୍ରାନ୍ତି ବୃତ୍ତର ପ୍ରତ୍ୟେକ ରାଶିକୁ ସ୍ପଷ୍ଟ ଭାବରେ ଚିହ୍ନିତ କରିବାକୁ ପଡ଼ିବ । ଏହାପରେ ଅୟନ ସଂସ୍କୃତ ମେଷାଦିକୁ (କ୍ରାନ୍ତି ବୃତ୍ତର) ନେଇ ବିଷୁବରେ ଲଗାଇ ରଖିବାକୁ ହେବ । ଏହି କ୍ରାନ୍ତି ବିନ୍ଦୁରେ ପରମାନ୍ତର ଅର୍ଥାତ୍ ପରମକ୍ରାନ୍ତି ପୁଣି ୨୩½° ହେବ । ଏହି କ୍ରାନ୍ତି ବୃତ୍ତ (ମାର୍ଗ)କୁ ହିଁ ସୂର୍ଯ୍ୟର ଗତିମାର୍ଗ ବୋଲି କହିଥାନ୍ତି । ଏହି ବୃତ୍ତରେ ଊର୍ଦ୍ଧ୍ୱ, ଅଧଃ, ପୂର୍ବ ପଶ୍ଚିମ ଯାମ୍ୟୋତ୍ତର ଏପରି ଛଅଟି ବିନ୍ଦୁ ରହିବେ ! ପ୍ରତ୍ୟେକ ବିନ୍ଦୁକୁ ସ୍ୱସ୍ତିକ କୁହାଯାଏ । ଊର୍ଦ୍ଧ୍ୱରେ ଯେଉଁ ସ୍ୱସ୍ତିକ ରହିବ ତାହାକୁ ଊର୍ଦ୍ଧ୍ୱ ଖ ସ୍ୱସ୍ତିକ କହନ୍ତି ।

ଚନ୍ଦ୍ରାଦୀନାଂ ପାତାନପମଣ୍ଡଳଗାନ୍ ବିଧାୟ ତଦ୍‌ଭର୍ଦ୍ଧେ
ପାତସ୍ଥାନେ ଚ ଲଗତ୍‌କ୍ରାନ୍ତିକବୃତ୍ତେ ନିଭୃନ୍ତେ ତୁ ।୨୩।

ପାତାତ୍‌ପଶ୍ଚାତ୍‌ପୁରତୋ ଯାମ୍ୟୋତ୍ତରଗଂ ବିମଣ୍ଡଳଂ କ୍ରାନ୍ତେଃ
ପରମଶରାନ୍ତେ ଦେୟଂ ତେଷାଂମଧ୍ୟେଽନୁପାତେନ ।୨୪।

ଚନ୍ଦ୍ର ଆଦି ଗ୍ରହର ପାତ ଆଣି ତାର ରାଶ୍ୟାଦିକୁ କ୍ରାନ୍ତି ବୃତ୍ତରେ ଦେଇ ଚିହ୍ନ କରିବ ଓ ସେଠାରେ ଚନ୍ଦ୍ର ବିମଣ୍ଡଳର ଗୋଟିଏ ସ୍ଥାନରେ ଲଗାଇ ଛ ରାଶି ଅନ୍ତରରେ ବିମଣ୍ଡଳ ଓ କ୍ରାନ୍ତି ବୃତ୍ତର ଅନ୍ୟ ସମ୍ପାତ କରାଇବ । ଏ ଦୁଇ ବୃତ୍ତର ପରମାନ୍ତର ମଧ୍ୟ ଚନ୍ଦ୍ରର ପରମଶର ସଙ୍ଗେ ସମାନ ହେବ । ଏହି ପରମଶର ପାତ ଠାରୁ ୩ ରାଶି ଅନ୍ତରରେ ଯାମ୍ୟ ଓ ସୌମ୍ୟରେ ରହିବ । ପାତସ୍ଥାନ ଓ ତ୍ରିଭରାଶି ମଧ୍ୟରେ ଅନୁପାତ ଯୋଗେ ଚନ୍ଦ୍ରର ଶରମାନ ଆଣି ହେବ ।

କିନ୍ତୁ କୁଜାଦେଃ ପାତାଶ୍ଚଳଫଲଭିଚୈଃ ସୁସଂସ୍କୃତାଃ ସ୍ଥାପ୍ୟାଃ
ଶ୍ରୁତିସଂସ୍କୃତବିଶିଖାନ୍ତେ ତଦ୍‌ଗତମାର୍ଗୌ ବିବୃତ୍ତାଖ୍ୟଃ ।୨୫।

କ୍ଷିତିଜବଳୟଂ ନରକ୍ଷେଽପ୍ୟୁନ୍ମଣ୍ଡଳନାମକଂ ପରିକ୍ଷେୟଂ
ତଚ୍ଚରହେତୁସ୍ତସ୍ମାତ୍ ସ୍ୱକ୍ଷିତିଜାତ୍ ଖାର୍ଦ୍ଧଗାନ୍ତ୍ୟଜ୍ୟା ।୨୬।

ଆଧାରବିଷୁବକକ୍ଷାବ୍ୟପବୃତ୍ତକ୍ଷିତିଜନାମବୃତ୍ତାନାଂ
ଯାମ୍ୟେପି କିଂଚଦଧିକଂ କ୍ଷିତିଜଂ କାର୍ଯ୍ୟଂ ଚଳତ୍ୱାୟ ।୨୭।

ଭୂସହତଧ୍ରୁବଯଷ୍ଟେର୍ନିଶ୍ଚଳଭ୍ରବୋ ଭଗୋଳଚଳତା ଚ
ଭବତଯ ଥୈବଂ ନାଭେୟାଷ୍ଟୈଳଂ ଯୋଜ୍ୟଂ ସୁଖଭ୍ରାନ୍ତ୍ୟୈ ।୨୮।

ମଙ୍ଗଳ ଆଦି ଗ୍ରହମାନଙ୍କର ବିମଣ୍ଡଳ ମଧ୍ୟ ଏ ଗୋଳରେ ବନ୍ଧାଯିବ । ମାତ୍ର ସେମାନଙ୍କ ପାତକୁ ସେମାନଙ୍କ ଶୀଘ୍ର ଫଳରେ ସଂସ୍କାର କରାଇ ନେବାକୁ ପଡ଼ିବ । କର୍ଣ୍ଣାନୁପାତ ସିଦ୍ଧସ୍ଫୁଟ ପରମଶର ଆଣି ତେତିକ ଅନ୍ତରରେ କ୍ରାନ୍ତି ବୃତ୍ତର ଉତ୍ତର ଓ ଦକ୍ଷିଣକୁ ସେମାନଙ୍କର ବିମଣ୍ଡଳ ଦେବ । (ଚନ୍ଦ୍ର ବ୍ୟତୀତ ଅନ୍ୟ ଗ୍ରହମାନଙ୍କର ଏହି ଏହି ବିଶେଷ ଅତି ସାବଧାନତା ସହକାରେ ମନେ ରଖିବାକୁ ହେବ ।)

ନିରକ୍ଷ ଦେଶର ଯେ କ୍ଷିତିଜ ବୃତ୍ତ ନିରକ୍ଷ ଇତର ଦେଶରେ ତାହାର ନାମ ଉନ୍ମଣ୍ଡଳ । ଏହି ବୃତ୍ତଟିହିଁ ଚରୋତ୍ପତ୍ତିର କାରଣ । ସ୍ୱକ୍ଷିତିଜ ଓ ନିରକ୍ଷ କ୍ଷିତିଜ ମଧ୍ୟରେହିଁ ଚରକାଳ ରହେ । ଅହୋରାତ୍ର ବୃତ୍ତ ଓ ଯାମ୍ୟ ବୃତ୍ତ ସ ପାତକୁ ଖାଣ୍ଡ କହନ୍ତି । ସେହି ସ୍ଥାନରୁ ସ୍ୱକ୍ଷିତିଜ ଧରାତଳ ଗତ ସ୍ୱଦ୍ୟୁଜ୍ୟା ସୂତ୍ର ଉପରେ ଯେଉଁ ଲମ୍ବ ହୁଏ, ତାହାକୁ କୁଜ୍ୟା କହନ୍ତି । ଏହି କୁଜ୍ୟା ଅହୋରାତ୍ର ବୃତ୍ତ ଧରାତଳରେହିଁ ହୋଇଥାଏ ।

ଆଧାର ବୃତ୍ତ ଦ୍ୱୟ, ବିଷୁବ, କ୍ରାନ୍ତି ବୃତ୍ତ ଓ କ୍ଷିତିଜ ବୃତ୍ତ ଏ ସମସ୍ତଙ୍କ ପରିମାଣ ସମାନ ହେଲେ ମଧ୍ୟ କ୍ଷିତିଜ ବୃତ୍ତକୁ ଟିକିଏ ଅଧିକା କରିବାକୁ ହେବ । ତା ନ ହେଲେ ତାକୁ ଘୂରାଇ ହେବ ନାହିଁ । ପୃଥିବୀ ସହିତ ଧ୍ରୁବକୁ (ଧ୍ରୁବଯଷ୍ଟି) ନିଶ୍ଚଳ ରଖାଯିବ । ଭ ଗୋଳଟି ଏପରି କରିବ ଯେପରି ତାର ଚଳତା ରଖାଯାଇ ପାରିବ । ଭ ଗୋଳକୁ ବରାବର ଚଳାଇବାକୁହିଁ ପଡ଼ିବ । ବୃତ୍ତଗୁଡ଼ିକ ଯେଉଁଠି ଯୋଖା ଯାଇଛନ୍ତି ସେଠାରେ ଟିକିଏ ତେଲ ବି ଦିଆଯାଇପାରେ । ତାହାହେଲେ ବୃତ୍ତଗୁଡ଼ିକ ସୁଖରେ ବୁଲାଇ ହେବ ।

ଇତ୍ଥଂ ଭଗୋଳରଚନାଂ କୃତ୍ୱା ତତ୍ର ଗ୍ରହର୍କ୍ଷବିନ୍ୟାସଃ
ଗ୍ରହଲବକଳିକାକ୍ରାନ୍ତିକ୍ଷେପାନୁସୃତେଃ ସ୍ଫୁଟଃ କାର୍ଯ୍ୟଃ ।୨୯।

ନିଜନିଜମାର୍ଗାନୁଗତୈଃ ସୂତ୍ରୈଃଗ୍ରଥିତା ଗ୍ରହାଃ ଧ୍ରୁବଗ୍ରହବଶାତ୍
ନେୟା ଗ୍ରହଣାଦ୍ୟଂ ପ୍ରବହଗତର୍ଗୋଳଗ୍ରଚଳନତଃ ।୩୦।

ଲଂକାସ୍ଥିତ୍ୟନୁସାରାତ୍ ପ୍ରଥମଂ ସଂସ୍ଥାପ୍ୟ ଗୋଳମେବମଥୋ
ଧ୍ରୁବଯୁଗ ସମୋଚ୍ଚନଳକେ ନିର୍ମାୟାୟଃଶଳାକୟା ବନ୍ଧେ ।୩୧।

ତଦ୍ୱଦ୍ବହିରପି ଚ ଖଗୋଳଂ ଷଡ୍ବୃତ୍ତୈର୍ଦୃଢ଼ଂ ନିବଧ୍ନୀୟାତ୍
ତତ୍ର କ୍ଷିତିଜଂ ପୂର୍ବାପରାଭିଧଂ ଯାମ୍ୟସୌମ୍ୟାଖ୍ୟମ୍ ।୩୨।

କୋଣାଖ୍ୟବୃତ୍ତଯୁଗଳଂ ଦୃଙ୍‌ମଣ୍ଡଳ ନାମକଂଷଡ଼େତାନି
ନିଶ୍ଚଳଖଗୋଲମଧ୍ୟେ ଭଗୋଲଚଳନଂଭବେଦେବ ।୩୩।

ଭଗୋଲ ରଚନା କରିସାରିବା ପରେ ସେହି ଗୋଲରେ ଗ୍ରହ ଓ ତାରା ବିନ୍ୟାସ କରାଯିବ । କ୍ରାନ୍ତି (ରବିର) ଓ ଶର (ଅନ୍ୟ ଗ୍ରହମାନଙ୍କର) ଧରି ଗ୍ରହର ରାଶି ଅଂଶ କଳା ଆଦି ବାହାର କରିନେବ । ଏହି ଗ୍ରହ ରାଶିଗୁଡ଼ିକୁ ନିଜ ନିଜ ବିମଣ୍ଡଳରେ ନେଇ ଗ୍ରହ ସଂସ୍ଥାନକରି ନେବ । ଗ୍ରହଣାଦି ମଧ୍ୟ ଏଥିରେ ଦେଖାଇ ହେବ । ଗୋଲକୁ ଚଳାଇ ପ୍ରବହ ବାୟୁର ଗତିକୁ କଳ୍ପନା କରିନେବ ।

ଏହି ଯେଉଁ ଭଗୋଲ ରଚନା କରାଗଲା ତାହା ଲଙ୍କାସ୍ଥିତି ଅନୁସାରେ କରାଗଲା । ଏହାପରେ ଖ ଗୋଲ ରଚନା କରି ସେଥିରେ କପରି ଖଞ୍ଜାଯିବ ସେହିକଥା କୁହାଯାଉଛି ।

ଖୁଣ୍ଟ ଦୁଇଟିର ଯେତିକ ଉଚ୍ଚତାରେ ଧ୍ରୁବ ସ୍ଥାନ ଚିହ୍ନିତ ହୋଇଛି, ଧ୍ରୁବଯଷ୍ଟି ପ୍ରବେଶ ରନ୍ଧ୍ର ପର୍ଯ୍ୟନ୍ତ ସେତିକ ଉଚ୍ଚତା ବିଶିଷ୍ଟ ଦୁଇଟି ନଳିକା କରିବେ । ଏହି ଦୁଇ ନଳିକା ମଧ୍ୟରେ ଲୁହା ଖାଡ଼ି ବି ଦିଆଯିବ ।

ଏହାପରେ ଭଗୋଲର ବାହାରେ ଖ ଗୋଲ ରଚନା କରାଯିବ । ଏହି ଖ ଗୋଲରେ ଏହି ଛଟି ବୃତ୍ତ ରହିବ –ଯଥା କ୍ଷିତିଜ, ବୃତ୍ତ, ପୂର୍ବାପର ବୃତ୍ତ, ଯାମ୍ୟୋତ୍ତର ବୃତ୍ତ, ଦୁଇଟି କୋଣ ବୃତ୍ତ ଓ ଦୃଙ୍‌ମଣ୍ଡଳ ବୃତ୍ତ । ଏହି ଛଟି ବୃତ୍ତକୁ ନେଇ ପ୍ରଧାନତଃ ଯେଉଁ ଖ ଗୋଲ ବନ୍ଧାଯିବ ତାହା ଦୃଢ଼ ଓ ଅଚଳ ରହିବ । କିନ୍ତୁ ଏହା ଭିତରେ ଥିବା ଭ ଗୋଲଟି ଯେପରି ଘୂରାଇ ହେବ ସେପରି କରିବାକୁ ହେବ ।

ଅଥ ନିଜଦେଶେ ଭୁବନ ଉଦୟାସ୍ତମୟାଦି ବୀକ୍ଷିତୁଂ ସାକ୍ଷାତ୍
ସ୍ତମ୍ଭଯୁଗୋର୍ଦ୍ଧ୍ୱାଧରୟୋର୍ଧ୍ରୁବଯଷ୍ଟି ରନ୍ଧ୍ରୟୋଃ ସ୍ଥାପ୍ୟାଃ ।୩୪।

ଗୋଲଦ୍ୱୟେ ସ୍ୱଦେଶାନୁସାର ସମମଣ୍ଡଳଂ ତଥା କ୍ଷିତଜଂ
ବଦ୍ଧ୍ୱା ଖଗୋଲକାନ୍ତର୍ଯାମ୍ୟୋତ୍ତରମଣ୍ଡଳସ୍ୟ ପୁନଃ ।୩୫।

ସମମଣ୍ଡଳସ୍ୟ ଯୋଗସ୍ଥାନଯୁଗେ କୀଳକଦ୍ୱୟଂ ନ୍ୟସ୍ୟ
ଦୃଗ୍‌ଗୋଲଖ୍ୟଂ ବୃତ୍ତଂ ତତ୍ର ନିଯୋଜ୍ୟଂ ଶ୍ଲଥଂ ବିଦୁଷା ।୩୬।

ଊର୍ଦ୍ଧ୍ୱାଧଃ ପ୍ରାକ୍‌ପଶ୍ଚାଦାୟତସମବୃତ୍ତବଦ୍‌ଭଗୋଲବହିଃ
ତଦ୍ଭ୍ରମଣୀୟମିଚ୍ଛାବଶତୋ ଧ୍ରୁବଯଷ୍ଟି ପର୍ଯ୍ୟନ୍ତମ୍ ।୩୭।

ଅଭିତଶ୍ଚାଲ୍ୟଂ ଖେଟଃ ପ୍ରୟାତି ଯତ୍ରାପି ତତ୍ର ତନ୍ନେୟମ୍
ବିତ୍ରିଭଲଗ୍ନଂ ପ୍ରତି ଚେନ୍ନେୟଂ ଦୃକ୍‌କ୍ଷେପବୃତ୍ତଂ ସ୍ୟାତ୍ ।୩୮।

ବର୍ତ୍ତମାନ ନିଜ ଦେଶରେ ଦିନବେଳେ ଗ୍ରୁପ୍ତାଗୁଡ଼ିକୁ ଏବଂ ଗ୍ରହମାନଙ୍କର ଉଦୟ ଓ ଅସ୍ତାଦି ପ୍ରତ୍ୟକ୍ଷ ଭାବରେ ଦେଖିବା ନିମନ୍ତେ ଦୁଇଟି ସ୍ତମ୍ଭର ଉପର ଓ ତଳ ରନ୍ଧ୍ରରେ ଧ୍ରୁବଯଷ୍ଟିକୁ ସ୍ଥାପନ କରିବ । ଖ ଗୋଲ ଓ ଭ ଗୋଲ ଦୁଇଟି ଯାକରେ ନିଜ ଦେଶର ପୂର୍ବାପର ଓ କ୍ଷିତିଜ ବୃତ୍ତ ବାନ୍ଧି ଖ ଗୋଲର ସମମଣ୍ଡଳ ଓ ଯାମ୍ୟୋତ୍ତର ବୃତ୍ତଦ୍ୱୟ ଯୋଗ (ଊର୍ଦ୍ଧ୍ୱ ଖ ସ୍ୱସ୍ତିକ ଓ ଅଧଃ ଖ ସ୍ୱସ୍ତିକ) ସ୍ଥଳ ଦୁଇଟିରେ ଦୁଇଟି କଳା ଦେବ । ଏହି ଦୁଇଟି କଳାରେ ଦୃକ୍‌ଗୋଲ (ଦୃକ୍‌ମଣ୍ଡଳ) ଏପରି ଦୃଢ଼ାଇବ, ଯେପରି ବୃତ୍ତଟି ହୁଗୁଳା ରହିବ, ଏବଂ ଇଚ୍ଛାନୁସାରେ ତାକୁ ବୁଲାଇ ହେବ । ଦୃଙ୍‌ମଣ୍ଡଳଟିକୁ ପୂର୍ବାପର ପରି ଭଗୋଳର ବାହାରେ ରଖିବାକୁ ଚେଷ୍ଟା କରିବା ଇଚ୍ଛାନୁସାରେ ଏହାକୁ ଧ୍ରୁବଯଷ୍ଟି ପର୍ଯ୍ୟନ୍ତ ଚାରି ତରଫରେ ଘୂରାଇବ ଏବଂ ଦେଖିବ ତାହା ଠିକ୍ ଠିକ୍ ଚଳୁଛି କି ନାହିଁ । ଗ୍ରହ ଯେଉଁଠି ଥିବ ତାହାର ଉପର ଦେଇ ଗଲାପରି ଦୃଙ୍‌ମଣ୍ଡଳକୁ ରଖିବା ଏହି ଦୃଙ୍‌ମଣ୍ଡଳକୁ ବର୍ଣ୍ଣିତ ଉପରକୁ ନେଲେ ଏହା ଦୃକ୍‌କ୍ଷେପ ବୃତ୍ତ ଆପେ ହୋଇଯିବ। କାରଣ ବର୍ଣ୍ଣିତ ଦେଇ ଯାଇଥିବା ଦୃଙ୍‌ମଣ୍ଡଳର ଅନ୍ୟ ନାମହିଁ ଦୃକ୍‌କ୍ଷେପ ବୃତ୍ତ ।

ଗୋଲପୃଷ୍ଠନିବେଶି ତମପିଖଗଭଗଣଂ ମହୀସ୍ଥଯ୍ୟାଦୃଷ୍ଟ୍ୟା
ତଦ୍ଭୂଦରଗତମିବ ପଶ୍ୟେଦନ୍ତର୍ନରଗତ୍ୟସମ୍ଭବତଃ ।୩୯।

କୋଣେଷୁ ଦିକ୍ଷୁ ପରତଃ ପ୍ରୋତୈଃ କୀଳୈର୍ଧୃତଃ ସମିଦ୍ଧଳୟଃ
କ୍ଷିତିଜ ଯମୋନ୍ନତରଂଶୁକବେଷ୍ଟିତ ଇଦମର୍ଦ୍ଧଲୁପ୍ତଦେୟଃ ।୪୦।

କମ୍ବାର୍ଦ୍ଧମଗ୍ନ ବପୁଷଂ ଗୋଲଂ ଖାତେ ନିଧାୟ ତ ଦ୍ଭ୍ରମଣାତ୍
କ୍ଷିତିଜୋ ପରଗତଭାର୍ଦ୍ଧଂ ଭୂସ୍ଥିତ କ୍ଳୃପ୍ତ୍ୟା ବୁଧୈର୍ଦୃଶ୍ୟମ୍ ।୪୧।

ଏହି ଗୋଲ (ଦୁଇଟି ଗୋଲ) ଭିତରକୁ ତ ମନୁଷ୍ୟ ଯିବା ଅସମ୍ଭବ । ତେଣୁ ଭଗୋଲ ପୃଷ୍ଠରେ ଯେଉଁ ଗ୍ରହ ହିସାବ କରି ଦିଆଯାଇଥିବ ତାହାକୁ ପୃଥିବୀ ପୃଷ୍ଠ ଦୃଷ୍ଟିରେ (ଗ୍ରହକୁ) ଗୋଲ ଗର୍ଭରେ ଥିବା ପରି ଦେଖିପାରିବ । ଗୋଲକ୍ଷିତିଜର ଆଠ ଦିଗରେ ଘୋଟ ଘୋଟ କଳା ଖଞ୍ଜି ତଳ ଆଡ଼ୁ କ୍ଷିତିଜ ପର୍ଯ୍ୟନ୍ତ କନା ଘୋଡ଼ାଇ ଦେବ । କ୍ଷିତିଜ ଉପରେ ଟିକିଏ ଗୁଡ଼ି ଗୋଟିଏ କାଠ କ୍ଷିତିଜ କରି ତଳ ଆଡ଼ୁ ସେ ପର୍ଯ୍ୟନ୍ତ ଆଚ୍ଛାଦିତ ରଖିବ । ତାହାହେଲେ ଗୋଲର ଉପର ଅଧା ଦେଖାଯିବ । ଅଥବା ଗୋଲ ରଚନା ଶେଷ ହେବା ପରେ ତାହାକୁ ଗାତ ଭିତରେ ଏପରି ରଖିବ ଯେପରି କ୍ଷିତିଜର ତଳ ଅଂଶ ଖାତରେ ରହିବ ଏବଂ ଉପର ଅଂଶ ବାହାରେ ରହିପାରିବ । ଏତକ ହେବା ପରେ ଗୋଲକୁ ବୁଲାଇ ଭୂଗୋଲସ୍ଥିତି କଳ୍ପନାରେ କ୍ଷିତିଜର ଊର୍ଦ୍ଧ୍ୱଭାଗ ଚକ୍ରାର୍ଦ୍ଧକୁ ଦେଖିବାକୁ ହେବ । ଏହାହିଁ ଦୃଶ୍ୟ ଚକ୍ରାର୍ଦ୍ଧ । ଅନ୍ୟତଳ ଖଣ୍ଡକ ଆଚ୍ଛାଦିତ ଚକ୍ରାର୍ଦ୍ଧ ।

ଶିରୋମଣୀ :—

ବଦ୍ଧ୍ୱା ଭଗୋଲମେବଂ ଯଷ୍ଟ୍ୟାଂ ଯଷ୍ଟ୍ୟାଂ ଖଗୋଲ ନଳକାକ୍ରମ୍
ପ୍ରକ୍ଷିପ୍ୟ ଭ୍ରମୟେତ୍ତଂ ଯଷ୍ଟ୍ୟାଧାରଂ ସ୍ଥିରୌ ଖଦୃଗ୍ ଗୋଲୌ ।୪୨।

ଧରଣୀଗୋଲଭଗୋଲକଦୃଗ୍ଗୋଲ ଖଗୋଲସନ୍ନପାତେଽପି
ଯନ୍ତ୍ରମିଦମେକକକ୍ଷଂ ଜ୍ୟୋତଶ୍ଚକ୍ରଂ ଯତେଦକତ୍ର ।୪୩।

ଦ୍ରଷ୍ଟ୍ୟଂ ବଧ୍ୱକକ୍ଷାମ୍ରକଭଗୋଲା ଏବାଥ ବା କୁଶାଗ୍ରଧିୟା
ପୃଥୁଳତରଃ କ୍ଷୁଦ୍ରତରୋ ଗୋଲଃ କାର୍ଯ୍ୟଃ ସ୍ୱକଲ୍ପନୟା । ୪୪ ।

ଅଥାଭିଧାସ୍ୟେ ବହୁକକ୍ଷଯନ୍ତ୍ରଂ ଯତ୍ପ୍ରେକ୍ଷଣାଦେବ ନଭଶ୍ଚରାଣାଂ
ସଂଗ୍ରହବମ୍ୟାଶୁଗମାନବକ୍ରାବକ୍ରାଦ ସାକ୍ଷାଦ୍ ଭବତ କ୍ଷମାୟାମ୍ ।୪୫।

ଏହିପରି ଭଗୋଲକୁ ଧ୍ରୁବଯଷ୍ଟିରେ ବାନ୍ଧି ଯଷ୍ଟିକୁ ଖ ଗୋଲର ନଳୀ ଭିତରେ ପୂରାଇ ତାକୁ (ଭଗୋଲକୁ) ବୁଲାଇବ । ଯଷ୍ଟିର (ଧ୍ରୁବଯଷ୍ଟି) ଅଗ୍ର (ଦୁଇଟି ଅଗ୍ର) ପଶିଥିବା ଦୁଇ ନଳକାରେ ଖ ଗୋଲ ଓ ଦୃକ୍‌ଗୋଲ (ଦୃକ୍‌ମଣ୍ଡଳ) ସ୍ଥିର ଓ ଅଚଳ କରି ସ୍ଥାପନ କରିବାକୁ ହେବ ।

ଏକକକ୍ଷ ଯନ୍ତ୍ରର ବର୍ଣ୍ଣନା :—

ଭୂଗୋଲ, ଭଗୋଲ, ଦୃକ୍‌ଗୋଲ ଓ ଆକାଶ ଗୋଲ ମାନଙ୍କର ମିଶ୍ରଣରେ ମଧ୍ୟ ଏହି ଦ୍ୱିକକ୍ଷ ଗୋଲକୁ ଏକକକ୍ଷ କରାଯାଇପାରେ । ଚନ୍ଦ୍ର ଗୋଲରେ ଜ୍ୟୋତଶ୍ଚକ୍ର ଦେଖାପଡ଼ୁଥିବା କାରଣରୁ ଏକ ଭଗୋଲ (ଚନ୍ଦ୍ର ଭ ଗୋଲରେ) ଏ ସବୁ ଖଞ୍ଜା ଯାଇପାରେ ଏବଂ ଏହିପରି ସବୁ ଦେଖା ମଧ୍ୟ ଯାଇପାରେ । ଅଥବା ଅତି ବୁଦ୍ଧିମାନ ଲୋକେ ନିଜର କଳ୍ପନା ବଳରେ ବଡ଼ ବା ଛୋଟ ଗୋଲ ରଚନା କରି ନେଇପାରିବେ । ବୁଦ୍ଧିମାନ ଲୋକଙ୍କ ପକ୍ଷରେ ସବୁ ସମ୍ଭବ । ବର୍ଣ୍ଣିତ ଗୋଲ ରଚନାରେ ମଧ୍ୟ ବୁଦ୍ଧିମାନ ଲୋକଙ୍କର ହିଁ ଆବଶ୍ୟକତା ବେଶି ।

ମୁଁ ବର୍ତ୍ତମାନ ବହୁ କକ୍ଷ ଯନ୍ତ୍ର କଥା କହିବି ଯେଉଁ ଯନ୍ତ୍ରକୁ ଦେଖିବା ମାତ୍ରେ ଗ୍ରହ ମାନଙ୍କର ସଂଗ୍ରହ, ବମ୍ୟ, ଶରମାନ, ବକ୍ରତା ଓ ଅବକ୍ରତା ଆଦି ପୃଥିବୀରେ ରହି ପ୍ରତ୍ୟକ୍ଷ

ଭାବରେ ଦେଖିହେବ । ଏପରି କି ଗ୍ରହର ଉଦୟ, ଅସ୍ତ ଆଦି ସକଳ କଥା ଏହି ଯନ୍ତ୍ରଦ୍ୱାରା ସ୍ୱଚ୍ଛନ୍ଦରେ ଦେଖିପାରିହେବ ।

**କୃତ୍ୱୈଧସାଦୌ ଘନଚକ୍ରଯୁଗ୍ମଂ ହସ୍ତପ୍ରମାଣ୍‌ତଦ୍‌ବ୍ୟାସମୁଦଗ୍ୟବାଚ୍ୟୋଃ**
**ବହିଃସ୍ଥିତସ୍ତମ୍ଭଯୁଗପ୍ରଗାଢ଼ ପ୍ରୋତାକ୍ଷୟୁଗ୍ମାର୍ପିତନାଭିଦେଶମ୍ ।୪୬।**

କାଠରେ ଦୁଇଟି (ଅର ଲଗାଇବା ପାଇଁ ଚକ୍ରଭୂମ୍ୱୀ) ଘନଚକ୍ରକର, ଯାହାର ବ୍ୟାସ ଏକ ହାତ ହେବ । ଦୁଇଟି ଖୁଣ୍ଟ ପୋତି ତାହାର ବାହାରେ ଦକ୍ଷିଣ ଓ ଉତ୍ତରରେ ଏହି ଦୁଇଟି ଚକ ଲଗାଇ ରଖ । ଖୁଣ୍ଟ ଦୁଇଟି ଦକ୍ଷିଣ ଓ ଉତ୍ତରରେ ପୋତା ଯାଇଥିବ । ଖୁଣ୍ଟ ଉପରେ ଅକ୍ଷକୀଳକ ରଖି ସେହି କୀଳାର ଅଗ୍ରଭାଗ ଦୁଇଟିକୁ ଏ ଦୁଇ ଭୂମ୍ୱୀର ମଧ୍ୟଭାଗରେ (କେନ୍ଦ୍ରରେ) ପୂରାଇ ରଖିବାକୁ ହେବ ।

**ଧାରାଦୃଢ଼ପ୍ରୋତନଜାରବାର ପ୍ରାନ୍ତସ୍ଥୁରଦ୍‌ବର୍ତ୍ତୁଳନେମି ଯୁଗ୍ମଂ**
**ଖାଙ୍କାଙ୍ଗୁଳାକ୍ଷପ୍ରଧିକାନ୍ତରାଳଂ ସଂସ୍ଥାପ୍ୟ ହସ୍ତ ତ୍ରୟଦୃଢ଼ରଗଂ ତତ୍ ।୪୭।**

**ନେମିଦ୍ୱୟସ୍ୟୈତଦ୍ଦୃଢ଼ଃ ଶଳାକାଶ୍ଚକ୍ରଦ୍ୱୟଭ୍ରାନ୍ତକୃତେ ହ୍ୟବକ୍ରାଃ**
**ଦେୟାସ୍ତ୍ରିହସ୍ତାଭ୍ୟଧିକାସ୍ତଦନ୍ତଃ କ୍ଷ୍ମାଖେଟକକ୍ଷାଃ ପରିକଳ୍ପନୀୟାଃ ।୪୮।**

ଭୂମ୍ୱୀ ଦୁଇଟିରେ ଗାତ କରି ସେଥିରେ ଅରମାନଙ୍କୁ ପୋତିବ ଏବଂ ସବୁ ଅର ଅଗ୍ରକୁ ଲଗାଇ ଗୋଟିଏ ନେମି (ବୃତ୍ତ) ଯୋଖି ରଖିବ । ଏହି ନେମି ଓ ଅକ୍ଷର ଅନ୍ତରକୁ ୯୦ ଅଂଶରେ ରଖିବ ।ଏ ଭୂମ୍ୱୀ ସହିତ ଚକ୍ର (ନେମି) ଦୁଇଟିକୁ ଘୂରାଇବା ଉଦ୍ଦେଶ୍ୟରେ ତିନି ହାତରୁ ଅଧିକ ଲମ୍ବା ଗୋଟିଏ ଦୃଢ଼ କାଠ (କାଠି) ଏ ଦୁଇ ଭୂମ୍ୱୀ ଭିତରେ ପୂରାଇ ରଖିବ । ଏ ଦୁଇଟି ଚକ ମଧ୍ୟରେ (ତିନି ହାତ ମଧ୍ୟରେ) ପୃଥିବୀ ଓ ଗ୍ରହକକ୍ଷାଗୁଡ଼ିକ ରଖିବାକୁ ହେବ ।

**ଯାମ୍ୟୋତରଶ୍ଚାଙ୍ଗଗୁଣାଙ୍ଗୁଳାନ୍ତଦୀର୍ଘସ୍ୟ ସୌମ୍ୟାଭିମୁଖସ୍ୟସ୍ତେଷ୍ଣ**
**ଅକ୍ଷସ୍ୟ ମୂର୍ଦ୍ଧନ୍ୟନୁବେଶ୍ୟ ପୃଥ୍ୱୀଂ ତନ୍ୱୀଂ ବଧୋସ୍ତଦୁପରିତଶ୍ଚକକ୍ଷା ।୪୯।**

**ଷଡ଼ଙ୍ଗୁଳାର୍ଦ୍ଧାଙ୍ଗୁଳବର୍ତ୍ତିଯୁକ୍ତା କ୍ରାନ୍ତ୍ୟୈଚପାତାନୁଗତା ଦୃଢ଼ା ଚ**
**ଯାମ୍ୟୋରସଂସକ୍ତଚତୁଃଶଳାକା କାର୍ଯ୍ୟୋର୍ଦ୍ଧ୍ୱ ସୂତ୍ରଗ୍ରଥିତାଶୁଚନ୍ଦ୍ରା ।୫୦।**

**ଚକ୍ରାଙ୍କିତଦ୍ୱାଦଶରାଶିରେଖାନୁସାରତଶ୍ଚନ୍ଦ୍ରମୃଦୃଢପାତୌ**
**ସ୍ୱକାଳକୌଦକ୍ଷିଣଚକ୍ରମଧ୍ୟେ ଦେୟାବୁଦୀଚ୍ୟନ୍ୟନଭଶ୍ଚବୃତ୍ତଂ ।୫୧।**

ଦକ୍ଷିଣ ଚକ୍ର (ଭୂମ୍ୱୀ)ଠାରୁ ୩୬ ଆଙ୍ଗୁଳ ଦୂରରେ (ମଧ୍ୟ ଆଡ଼କୁ) ଉତ୍ତର ଆଡ଼କୁ ମୁଖ କରିଥିବା ଅକ୍ଷର ଅଗ୍ର [ଏଠାରେ ଅକ୍ଷ ବୋଲି ଯେତେ କୁହାଯାଇଛି ସେ ସବୁ

ଅକ୍ଷାଂଶ ନୁହେଁ । ଅନନ୍ତଃ ବଦ୍ଧ କକ୍ଷ ଯନ୍ତ୍ରର ମୂଣ୍ଡରେ] ମଧ୍ୟସ୍ଥଳରେ ଗୋଟିଆ ପୃଥିବୀଟିଏ ପୂରାଇ ଦେବାକୁ ହେବ । ଏ ପୃଥିବୀର ପୁଣି ଗୃରିପାଖରେ ଗୋଟିଏ ଚନ୍ଦ୍ରକକ୍ଷା କରିବ । ଏହି କକ୍ଷା ଶିଥିଳ ହୋଇଥିବ । ମାପରେ ୭ ଆଙ୍ଗୁଳ ହେବ ଏବଂ ଅଧ ଅଧ ଆଙ୍ଗୁଳରେ ଗାଣି ଚହ୍ନିତ ହୋଇଥିବ । ଏହି ଚନ୍ଦ୍ରକକ୍ଷାରେ କ୍ରାନ୍ତି, ମନ୍ଦୋଚ୍ଚ, ପାତ ଓ ଚନ୍ଦ୍ରକୁ ଯଥାସ୍ଥାନରେ ଚହ୍ନିତ କରି ଦକ୍ଷିଣ ଚକ୍ରରୁ ଏମାନଙ୍କ ଉପରକୁ (ଗୃରିଟି) ଦୃଢ଼କାଠି ଲଗାଇ ରଖିବ ।

ଦକ୍ଷିଣ ଚକ୍ରରେ ୧୨ ଗାଣି ଚହ୍ନିତ ହୋଇଥିବ । ସେହି କ୍ରମରେ ଅଗ୍ରାଷ୍ଟକାଳକ ଚନ୍ଦ୍ର ମନ୍ଦୋଚ୍ଚ ଓ ପୋତକୁ ଦକ୍ଷିଣ ଚକ୍ରରେ ଦେଇଦେବ । ଉତ୍ତର ଚକ୍ରରେ ଅନ୍ୟ ଗ୍ରହକକ୍ଷା ଦେବାକୁ ହେବ ।

**ତତୋ ବଧେୟା ଗ୍ରହଚକ୍ରଯଷ୍ଟିରୁଦୀଚ୍ୟଚକ୍ରୋଦରଭେଦଯୋଗ୍ୟା**
**ସୂକ୍ଷ୍ମାଗ୍ରକଷ୍ଠା ପୃଥୁମଧ୍ୟଭାନୁମୂଳେ ପୃଥୁଃ ଖେଚର ଚକ୍ରଧୃତ୍ୟୈ ।୫୨ ।**

**ତଦଗ୍ରଜାଗ୍ରନ୍ତକୀଳକାଗ୍ରେ ମଧ୍ୟାର୍କତଶ୍ଚାଙ୍ଗୁଳପାଦଦୂରେ**
**ନ୍ୟସେଯାରବସୁଙ୍ଗଦଶି ସ୍ଫୁଟାକ୍ଷଃ ପୃଥୁଃ ପୃଥିବ୍ୟା ବମଳଃ ସୁବୃତ୍ତଃ ।୫୩।**

**ଆଧାରଦାରୁଗ୍ରହଚକ୍ରଯଷ୍ଟ୍ୟାଂ ସପାଦହସ୍ତାନ୍ତରତୋତ୍ତରସ୍ଥମ୍**
**ବନ୍ୟସ୍ୟ ତତ୍ପ୍ରୋତଦୃଢ଼ାରକାଷ୍ଟେ ତ୍ରିହସ୍ତକୈର୍ଦ୍ଧ୍ୱାଦଶଭିର୍ବିଧେୟମ୍ ।୫୪।**

**ଆଧାରଚକ୍ରଂ ତଦରସ୍ଥରନ୍ଧ୍ର ପ୍ରସୂତତର୍ଦ୍ଦକ୍ ସମଦଣ୍ଡମୁଖସ୍ୟ**
**ଅଗ୍ରେଷୁ କୀଳପ୍ରଚୟସ୍ୟ ମଧ୍ୟପୂର୍ଯ୍ୟାଭିବେଷ୍ଟ ଗ୍ରହଚକ୍ରକକ୍ଷାଃ । ୫୫ ।**

**ଆମୋଚନୀୟା ବଳୟୈଃ ସ୍ୱବୃତ୍ତାଭାକ୍ଷାକ୍ଷୟୋଚ୍ଚାପମପାତଜାତୈଃ**
**ସର୍ଦ୍ଧାଂଶଚହ୍ନାଃ ସ୍ୱହୃୟାବ ନେୟା ତ ପୃଷ୍ଠସୂବଗ୍ରଥିତା ଗ୍ରହାଳଃ । ୫୭ ।**

**ମଧ୍ୟାର୍କସଂବେଷ୍ଟନକ୍ରଜ୍ଜକକ୍ଷାଧିତ୍ୟଙ୍ଗୁଳାସ୍ୟାଚିପିଟାତ୍ମ ପୃଷ୍ଠା**
**ତଦବଦ୍ଧସିତସ୍ୟାର୍ଥଗୁଣାଙ୍ଗୁଳା ସା ଦ୍ୱ୍ୟଗ୍ର୍ୟଙ୍ଗୁଳାମଙ୍ଗଳକକ୍ଷିକୈବ ।୫୭।**

**ଗୁରୋରସାମ୍ୟୋଧ୍ୱିଭୁଜାଙ୍ଗୁଳାଥ ରୂପାବ୍ଧିବେଦାଙ୍ଗୁଳକାର୍କସୂନୋଃ**
**ବମଣ୍ଡଳାକ୍ଷା ଇତ ଖେଟକକ୍ଷାଃ ପୂର୍ବୋକ୍ତକୀଳେଷ୍ୱସମେଷୁ**
**ଯୋଜ୍ୟାଃ । ୫୮ ।**

ଏହା କରି ସାରିବା ପରେ ଉତ୍ତର ଚକ୍ରରେ ଭେଦ କରୁଥିବା ଗ୍ରହଚକ୍ରଯଷ୍ଟି ତିଆରି କରିବାକୁ ହେବ । ଏହି ଯଷ୍ଟି ସୂକ୍ଷ୍ମ ହୋଇଥିବ ଏବଂ ଏହାର ଅଗ୍ରରେ ସୂର୍ଯ୍ୟ ରହିବେ । ଯଷ୍ଟିର ମୂଳ ଆଡ଼ଟା ନମଶ ମୋଟା ହୋଇଥିବ । କାରଣ ମୂଳରେ ମୋଟା ନ ହେଲେ ଅନ୍ୟ ଗ୍ରହ ସମୂହକୁ ଧରି ରଖିବା ତା ପକ୍ଷରେ ଅସାଧ୍ୟ ହୋଇପଡ଼ିବ ।

ଏହି ଗ୍ରହଚକ୍ରଯଷ୍ଟିର ଅଗ୍ରରେ ଗୋଟିଏ ସରୁ କିଲା ଥିବ ଏବଂ ତାହାର ଅଗ୍ରରେ ମଧ୍ୟମ ସୂର୍ଯ୍ୟ ଏବଂ ତାହାଠାରୁ (ଅଙ୍ଗୁଳ ପାଦ) ୧୫ କଳା ଅନ୍ତରରେ ଉଚ୍ଚ ଆଡ଼କୁ ସ୍ଫୁଟରବି ବିମ୍ବକୁ ନ୍ୟାସ କରିବ । ଏହା ପୃଥିବୀଠାରୁ ବଡ଼ ହେବ, ବିମଳ ଓ ବିଶୁଦ୍ଧ ହେବ ।

ଗ୍ରହ ଚକ୍ର ଯଷ୍ଟିରେ ୩୦ ଆଙ୍ଗୁଳ ଉତ୍ତରକୁ ଆଧାର କାଠ ରଖି ୩ ହାତ ପରିମାଣର ୧୨ଟି ଅର ଅତି ଦୃଢ଼ ଭାବରେ ଦେବାକୁ ହେବ । ତାହାର ଉପରେ ମଧ୍ୟମ ସୂର୍ଯ୍ୟକୁ ରଖି ତାହାକୁ କେନ୍ଦ୍ର କରି ଗ୍ରହମାନଙ୍କର କକ୍ଷା ରଚନା କରିବ । ଏହି ସବୁ ଗ୍ରହ କକ୍ଷା ଉଚ୍ଚ, ଅପମ, ପାତ ଇତ୍ୟାଦି ଦ୍ୱାରା ଚହ୍ନିତ ହୋଇଥିବେ । ଏ ଗ୍ରହ ଭିତରେ ମଙ୍ଗଳ ପ୍ରଭୃତି ୫ ଗ୍ରହହିଁ ଯିବେ । ଚନ୍ଦ୍ର ପାଇଁ ବ୍ୟବସ୍ଥା ଆଗରୁ ହୋଇସାରିଛି । ଇଚ୍ଛାନୁସାରୀ ଏଥିରେ ଗ୍ରହମାନଙ୍କୁ ଯଥାସ୍ଥିତରେ ରଖି ଘୂରାଇବାକୁ ପଡ଼ିବ ।

ମଧ୍ୟମ ସୂର୍ଯ୍ୟଙ୍କୁ ବେଷ୍ଟନ କରି ବୁଧର କକ୍ଷା ପ୍ରଥମେ ହେବ । ଏହା ଦୀର୍ଘ ବୃତ୍ତାକାର ହେବ ଏବଂ ଏହାର ପରିଧି ୧୮ ଆଙ୍ଗୁଳ ମାନ ହେବ । ଶୁକ୍ରର କକ୍ଷା ପରିମାଣ ୩୫ ଆଙ୍ଗୁଳ ହେବ । ମଙ୍ଗଳର କକ୍ଷା ୭୨ ଆଙ୍ଗୁଳ । ଏହି କକ୍ଷା ଗୁଡ଼ିକୁ ଅସମାନ କୀଳକରେ ଯୋଗକରି ରଖିବ । ଏ ଗୁଡ଼ିକର ଅନ୍ୟନାମ ବିମଣ୍ଡଳ ।

**କୀଳୋଚ୍ଚୟୋ ଦକ୍ଷିଣଦଙ୍ମୁଖୋ ଯଦ୍ଵିମଣ୍ଡଳାନନ୍ତମତୋ ନକୃତଃ ।**
**ସ୍ୟାଦ୍‌ଗୋଳସନ୍ଧୌ ସମମଣ୍ଡଳାଗ୍ରୋ ମଧ୍ୟାର୍କତୋଽବାଗୟନାନ୍ତସଂସ୍ଥଃ ।୬୯**
**ଦୀର୍ଘୋଽଥ ସୌମ୍ୟାୟନପୂର୍ତ୍ତିକଷ୍ଟଃ କ୍ଷୁଦ୍ରୋଽନ୍ୟବଶାବନ୍‌ପାତସିଦ୍ଧଃ ।**
**ପ୍ରତ୍ୟେକଭିନ୍ନେ ମୃଦୁପାତଭେଦାତ୍ କକ୍ଷାନୁସାରଦରମଣ୍ଡଳସ୍ଥଃ । ୭୦ ।**

ଦକ୍ଷିଣକୁ ମୁଖ କରିଥିବା କୀଳାଗୁଡ଼ିକ ଯେଉଁ ବିମଣ୍ଡଳ କ୍ରମରେ କଟାଯାଇଥିବାରୁ ସେ ଗୁଡ଼ିକ ମଧ୍ୟମ ସୂର୍ଯ୍ୟଠାରୁ ଗୋଲସନ୍ଧିରେ ସମବୃତ୍ତାଗ୍ର ବା ତୃତୀୟପର ବୃତ୍ତାଗ୍ର ହେବେ । ଦକ୍ଷିଣ ଅୟନାନ୍ତରେ ଏହି କୀଳକ ଗୁଡ଼ିକ ଦୀର୍ଘତର ହେବେ । କିନ୍ତୁ ଉତ୍ତର ଅୟନରେ ଏମାନେ କ୍ଷୁଦ୍ର ହେବେ । ଉତ୍ତର ଅୟନରୁ ଦକ୍ଷିଣ ଅୟନ ମଧ୍ୟରେ ଅନୁପାତ ବଶତଃ ଏମାନଙ୍କ ଦୈର୍ଘ୍ୟ ଆଣିବାକୁ ହେବ । ମନ୍ଦୋଚ୍ଚପାତ ଭେଦରୁ କକ୍ଷାନୁସାରେ ଆଉ ଗୁଡ଼ିକ ଭିନ୍ନ ଭିନ୍ନ ହେବା କଥା ।

**ଅଥାର୍କକକ୍ଷାଭ୍ରମଣାୟ ସୌମ୍ୟେ କଖାୟ ଚକ୍ରେ ପରତଃ ସ୍ୱମଧ୍ୟାତ୍ ।**
**ସାଷ୍ଟାଗ୍ନିଲପ୍ତାଦ୍ରିମିତାଙ୍ଗୁଳାନ୍ତେ ମଧ୍ୟଂ ଯଥା ସ୍ୟାତ୍ ପ୍ରବିଭିଦ୍ୟକାଷ୍ଠମ୍ ।୭୧**
**ତଥୈବ ଗର୍ତ୍ତଂ ବଳୟାୟମାନଂ ସୌମ୍ୟାୟନାନ୍ତେ ବିତତାବକାଶମ୍ ।**
**ଯାମ୍ୟାୟନାନ୍ତେଽଳ୍ପମିତାନ୍ତରାଳଂ ତସ୍ମିନ୍ ପ୍ରବେଶ୍ୟା ଗ୍ରହଚକ୍ର ଯଷ୍ଟିଃ ।୭୨**

ସୌମ୍ୟାରବାହ୍ୟସ୍ଥଜନେନ ସୈବ ପ୍ରକଳ୍ପ୍ୟତା ଚେଦ୍ବଳୟା ଭଗତୌ ।
ପ୍ରାଚୀଂ ପ୍ରତ ସ୍ୱେଷ୍ଟଗ୍ରହାଂଶକାଦୌ ସ୍ଥାପ୍ୟା ଦୃଢ଼ଂ କୀଲକପାତନାଦ୍ୟୈଃ ।୭୩

ସୂର୍ଯ୍ୟର କକ୍ଷାକୁ ଘୂରାଇବା ନିମନ୍ତେ ଉତ୍ତରରେ ଥିବା ଚକ୍ର ମଧ୍ୟରେ ୭।୩୮ ଅଙ୍ଗୁଳର ଗୋଲାକାର ଗୋଟିଏ ଗାତ ଖୋଳିବ । ଏହି ଗାତ ଉତ୍ତରଘୂଣ ଅର୍ଥାତ୍ ସାୟନ ମକରାଦିରେ ଟିକିଏ ବିସ୍ତୃତ ହେବ ଏବଂ ଦକ୍ଷିଣ ଅୟନାନ୍ତରେ ଅର୍ଥାତ୍ ସାୟନ କର୍କଟାଦିରେ ଟିକିଏ ଅଳ୍ପ ବିସ୍ତୃତ ହେବ । ଏ ଗାତରେ ଗ୍ରହଚକ୍ର ଯଷ୍ଟିକୁ ପୂରାଇ ଦେବାକୁ ପଡ଼ିବ । ଉତ୍ତର ଚକ୍ରର ବାହାରେ ରହି ଲୋକ ଗ୍ରହଯଷ୍ଟିକୁ ଉକ୍ତ ବଳୟାକାର ଗାତରେ ପୂର୍ବାଦିଗକୁ ଘୂରାଇଲେ ଗ୍ରହର ଇଷ୍ଟ ଅଂଶ କଳାଦିରେ କିଲା ବାଡ଼େଇ ଦୃଢ଼ ଓ ସ୍ଥିର କରିବ ।

ଯଥାତଦଗ୍ରସ୍ଥରବିର୍ଧ୍ୱରବ୍ୟା ସ୍ୟାଦ୍‌ଗୋଲସନ୍ଧୌ ସମମଣ୍ଡଳସ୍ଥଃ ।
ସିଦ୍ଧାଂଶଯୁକ୍ ବ୍ୟଙ୍ଗୁଳସୌମ୍ୟଭଗେ ଯୁଗାନ୍ତଗସ୍ତାବଦବାକ୍‌ପ୍ରଦେଶେ ।୭୪

ମୃଗାନ୍ତଗସ୍ତିଷ୍ଠତ ତଦ୍‌ବଦେଷ କାର୍ଯ୍ୟୋଽଳ୍ପଭୂରିର୍ବଳୟାବକାଶଃ ।
ଯାମ୍ୟାର୍ଯ୍ୟଚକ୍ରାନ୍ତର୍ବିଂଶତାନ୍ତରଂ ବା ଧୃତ୍ୱା ପ୍ରକଳ୍ପ୍ୟା ପୁରୁଷେଣ ଯଷ୍ଟିଃ । ୭୫ ।

ଯେପରି ଯଷ୍ଟି ଅଗ୍ରରେ ଥିବା ସୂର୍ଯ୍ୟ ପୂର୍ବାପର ବୃତ୍ତରେ ରହିବ ଏବଂ ପୃଥିବୀର ଗୋଲସନ୍ଧି ସାୟନ ମେଷାଦିରେ ରହିବ । ସାୟନ କର୍କଟାଦିରେ ରବି ରହି ଉତ୍ତରକୁ ଆ ୩।୨।୩୦ ଙ୍ଗୁଳ ଏବଂ ସାୟନମକରାଦିରେ ପୁଣି ଆ ୩।୨।୩୦ ଙ୍ଗୁଳ ଦକ୍ଷିଣକୁ ଆସିଯିବ । ବଳୟାକାର ଗାତଟି ଏହିପରି ବେଶି ଓ ଅଳ୍ପ ମୋଟ ହେବ ଅଥବା ଦକ୍ଷିଣ ଚକ୍ରର ଅରଗୁଡ଼ିକ ମଧ୍ୟରେ ପଶି ଲୋକ ଗ୍ରହଚକ୍ର ଯଷ୍ଟିକୁ ମଧ୍ୟ ଘୂରାଇ ପାରେ ।

ନକ୍ଷତ୍ରଚକ୍ରଂ ପ୍ରକୃତଂ ନଭସ୍ଥଂ ପ୍ରତ୍ୟର୍କମଧ୍ୟାହ୍ନିକକାଳଯାତାନ୍ ।
କୃତ୍ୱା ଗ୍ରହାଂସ୍ତତ୍ ସମୟାନୁସାରାଦ୍ ଭୂମଧ୍ୟତୋ ଭାନୁମପି ପ୍ରକଳ୍ପ୍ୟ ।୭୬।

ଭୂଖେଟସୂତ୍ରେକ୍ଷିତଭାଂଶକାଦୌ ଦୃଶ୍ୟଃ ସ୍ଫୁଟଃ ଖେଟ ଇତୀକ୍ଷୁବନ୍ତୌ ।
ତତୋ ବହିର୍ଭୂୟ ଜନେନ ତେନ ଯନ୍ତ୍ରସ୍ୟ ପଶ୍ଚାଦ୍‌ଭ୍ରମଣଂ ବିଧେୟମ୍ ।୭୭

ଯନ୍ତ୍ରସ୍ୟ ବା ସୂକ୍ଷ୍ମଧିୟା ସମନ୍ତାତ୍ କାର୍ଯ୍ୟା ଭକକ୍ଷା ଶରବେଦହସ୍ତା ।
ସ୍ଥାନେଽର୍ପିତା ଯୋଗ୍ୟତମେ ତତୋଽସ୍ୟାଂ ବକ୍ରାର୍କବାଦ୍ୟଂ ସକଳଂ ହି
ଲକ୍ଷ୍ୟମ୍ ।୭୮।

କ୍ରାଂବାର୍କତଃ ଖେଚରଚକ୍ରସୂତ୍ରେ କ୍ରତାବ୍ଧିସମାଙ୍ଗୁଳଦୂରମୁର୍ବ୍ୟାଃ ।
ସ୍ତମ୍ଭଦ୍ୱୟଂ ପ୍ରାକ୍‌ପରୟୋର୍ନିବେଶ୍ୟ ତଦ୍ଭାଂଶକାନଙ୍ଗୁଳ ଷଟ୍‌କତୁଲ୍ୟାନ୍
।୭୯।

ବଦ୍ଧ୍ୱୈଃ ପବୃତ୍ତୋପମୟାଙ୍କୟିତ୍ୱା କୃତ୍ୱାର୍କମଧ୍ୟଂ କ୍ଷିତପଶ୍ଚିମସ୍ଥମ୍ ।
ମଧ୍ୟାର୍ଯ୍ୟମାନ୍ନାନ୍ତଗୃହାଦହ୍ନେର୍ନବେଶ୍ୟ ଭୌମଂ ନଜକକ୍ଷିକାୟାମ୍ ।୭୦।

ତଦ୍ଭୂମିସଂସକ୍ତଗୁଣଂ ପ୍ରସାର୍ଯ୍ୟ ପ୍ରାକ୍ସ୍ତମ୍ଭପର୍ଯ୍ୟନ୍ତମୟଂ ଯମଂଶମ୍ ।
ତନ୍ତ୍ର ସ୍ପୃଶେଦଙ୍କମିହାର୍ପୟିତ୍ୱା ଗଜାମ୍ବୁରାଶ୍ୟଂଗୁଳକକ୍ଷିକାୟାମ୍ ।୭୧।

ମଧ୍ୟେ ରବାବଙ୍ଗୁଳମାନଭୁକ୍ତଂ ନକ୍ଷିପ୍ୟ ପକ୍ଷାର୍ଦ୍ଧଗତଂ କୁଜେଽର୍କାତ୍ ।
ପୂର୍ବାର୍ପିତାଙ୍କାତ୍କୁଜଭୂମିସୂତ୍ରମୂର୍ଦ୍ଧାଂଶଗଂ ବୀକ୍ଷ୍ୟମହୀସ୍ଥଦୃଷ୍ଟ୍ୟା ।୭୨।

ଦୃଶ୍ୟେତ ବକ୍ରା ଗତରେବମନ୍ୟନଭଶ୍ଚ ରାଣାମୃଜୁ ବକ୍ରତାପି ।
ଗତର୍ବିଧୋଶ୍ଚ ଗ୍ରହଣାଦ ସର୍ବଂ ପ୍ରେକ୍ଷ୍ୟଂ ନରକ୍ଷାନୁସୃତେ କ୍ଷଣେନ ।୭୩।

ସିତାରକକ୍ଷାନ୍ତରଗେନ୍ଦୁକକ୍ଷା ସଂଘଟ୍ୟମାନା ନ ଭବେଦ୍ୟଥାଭ୍ୟାମ୍ ।
ତଥା ବୁଧେନାବହୃତେନ ଖେଟଚକ୍ରଂ ପୃଥେ ନେୟମଭୀଷ୍ଟଭଦୌ ।୭୪।

ଇଦଂ ମଦୁକ୍ତଂ ବହୁକକ୍ଷିକାଖ୍ୟଂ ଯନ୍ତ୍ରଂ ଯଦବାଖିଲଖେଚରାଣାମ୍ ।
ପୃଥକ୍ ପୃଥକ୍ ସୂତ୍ରପରୀତବୃତ୍ତୈର୍ଦୃଶ୍ୟା ଗତର୍ନୈକବଧା ଦବୀବ ।୭୫।

(ଯନ୍ତ୍ର ବା ଯନ୍ତ୍ରର ଛବି କଲା ପର୍ଯ୍ୟନ୍ତ ଏହା ସେହିପରି ଅସ୍ପଷ୍ଟ ରହିଯାଉଥିବ)

ସୂର୍ଯ୍ୟର ମଧ୍ୟ ଦେଶରୁ ଆକାଶରେ ଥିବା ବାସ୍ତବ ନକ୍ଷତ୍ର ଚକ୍ରରେ ଅଭିଷ୍ଟ କାଳର ଗ୍ରହ ନେଇ [ମନ୍ଦସ୍ଫୁଟ ଗ୍ରହ ଅଭିଷ୍ଟକାଳରେ ସାଧନକରି ତାହାକୁ ଏଥିରେ ଦେବ] ସେହି ସମୟ ଅନୁସାରେ ଭୂମଧ୍ୟ ଦୃଷ୍ଟିରେ ସୂର୍ଯ୍ୟଙ୍କୁ ଦେଖି ଘୂରାଇବ । ପୃଥିବୀ ଓ ଗ୍ରହଗତ ସୂତ୍ରରେ ଦେଖିଲେ ସ୍ଫୁଟ ଗ୍ରହ (ମନ୍ଦସ୍ଫୁଟ) ରାଶି ଅଂଶାଦିରେ ଏହି ଗୋଲରେ ଦେଖାଯିବ । ଗ୍ରହର ଶର ଓ ବିମ୍ବମଧ୍ୟ ଗଣିତ ପ୍ରକାରେ ଦେଖାଯିବେ । ଏ ସବୁ ଦେଖୁଥିବା ଲୋକ ଯନ୍ତ୍ରର ବାହାରକୁ ଆସି ପୁଣି ଯନ୍ତ୍ରକୁ ପଶ୍ଚିମକୁ ଘୂରାଇ ନେବ ।

ଅଥବା ଅତି ବୁଦ୍ଧିମାନ୍ ଲୋକ ଯନ୍ତ୍ରର ଗୃହପାଖେ ୪୫ ହାତର ଗୋଟିଏ କକ୍ଷା ବୃତ୍ତ କରି ସେଥିରେ ଅଶ୍ୱିନୀ ଆଦି ୨୭ ନକ୍ଷତ୍ର ବସାଇବେ । ଏହାକୁ ଭ ଗୋଲରେ ଯଥା ସ୍ଥାନରେ (ବିଷୁବଠାରୁ ୨୩।୩୦ ପରମାନ୍ତରେ ଭ ଗୋଲୀୟ କ୍ରାନ୍ତି ବୃତ୍ତ ଧରାତଳରେ) ସ୍ଥାପନ କରିବେ । ତାହାପରେ ଏହି ଭ କକ୍ଷାରେ ଗ୍ରହର ବକ୍ରତା ସରଳତା ଆଦି ସବୁ ଦେଖିବେ ଓ ଦେଖାଇବେ ।

ଅଥବା ରବିର ଗ୍ରହ ଚକ୍ର ସୂତ୍ରରେ ପୃଥିବୀ ଠାରୁ ପୂର୍ବ ଓ ପଶ୍ଚିମକୁ ୩୪୪ ଆଙ୍ଗୁଳ ଦୂରରେ ଦୁଇଟି ସ୍ତମ୍ଭ ସ୍ଥାପନ କରିବା ପରେ ସ୍ତମ୍ଭ ଦୁଇଟିକୁ ବନ୍ଧାଇଦେବ । ସେଥିରେ କ୍ରାନ୍ତି ବୃତ୍ତ ଖଣ୍ଡରେ ୬ ଆଙ୍ଗୁଳ ତୁଲ୍ୟ ଅଂଶ (୬ଅଂଶ) ଅଙ୍କନ କରି ପୃଥିବୀର ପଶ୍ଚିମକୁ

ମଧ୍ୟମ ସୂର୍ଯ୍ୟଙ୍କୁ ଦେଇ, ମଧ୍ୟମ ସୂର୍ଯ୍ୟ ଯେତେ ରାଶି ଅଂଶାଦିରେ ହେଲା ସେଠାରୁ ୭ ରାଶି ଅନ୍ତରରେ (୧୮୦°) ମଙ୍ଗଳଙ୍କୁ ସ୍ଥାପନ କରିବ । ମଙ୍ଗଳ ଓ ପୃଥିବୀ ସଂଯୁକ୍ତ ରେଖାକୁ ପୂର୍ବଦିକ୍ ଚିହ୍ନ ପର୍ଯ୍ୟନ୍ତ ବଢ଼ାଇ (ପୂର୍ବ ସ୍ତମ୍ଭ ପର୍ଯ୍ୟନ୍ତ) ସେଥିରେ ଏହି ସୂତ୍ର (ରେଖା) ଯେଉଁ ଅଂଶାଦିକୁ ସ୍ପର୍ଶ କଲା ସେହି ଜାଗାରେ ଚିହ୍ନ କରି ୪୮ ଆଙ୍ଗୁଳ କକ୍ଷା ମଧ୍ୟରେ ମଧ୍ୟମ ରବିଙ୍କୁ ରଖିବ । ମାସ ରବିର ଗତି ଏକ ଆଙ୍ଗୁଳକୁ ୭°।୩° ଗତି, ମଙ୍ଗଳ ର ଏକ ଆଙ୍ଗୁଳ ଗତିକୁ ୭୫ ଦିନ ଗତି ଦେଇ ସାରି ସୂର୍ଯ୍ୟ ଠାରୁ ପୂର୍ବୋକ୍ତ ପୃଥିବୀ ଓ ମଙ୍ଗଳଗତ ସୂତ୍ର ସଂସକ୍ତ ସ୍ତମ୍ଭ ଦତ୍ତ ଚିହ୍ନରୁ ଊର୍ଦ୍ଧ୍ୱକୁ ପୃଥିବୀ ଓ ମଙ୍ଗଳ ସୂତ୍ର ରହିଥିବ । ପୃଥିବୀସ୍ଥିତ ଦୃଷ୍ଟିରେ ଏଥିରେ ଦେଖିଲେ ମଙ୍ଗଳର ବକ୍ରଗତି ଦେଖା ପଡ଼ିବ । ଏହି ପ୍ରକାରରେ ଅନ୍ୟ ଗ୍ରହମାନଙ୍କର ମାର୍ଗ ଓ ବକ୍ରଗତି ଦେଖିହେବ । ଚନ୍ଦ୍ର ଗ୍ରହଣାଦି ଓ ଗତି ବିଷୁବବୃତ୍ତ ଧରାତଳ ଦୃଷ୍ଟିରେ ଦେଖିବାକୁ ହେବ । ଶୁକ୍ର ଓ ମଙ୍ଗଳ କକ୍ଷାର ମଝିରେ ଚନ୍ଦ୍ରକକ୍ଷା ଯେପରି ଶୁକ୍ର ଓ ମଙ୍ଗଳ କକ୍ଷାରେ ନ ବାଜେ ସେପରି ରଖିବାକୁ ହେବ । ଗ୍ରହମଣ୍ଡଳକୁ ଇଷ୍ଟରାଶ୍ୟାଦିରେ ପୂର୍ବ ଓ ପଶ୍ଚିମକୁ ନେଲାବେଳେ ବଡ଼ ସାବଧାନ ହେବାକୁ ହେବ । ଏହି ହେଲା ମୋର ବହୁକକ୍ଷଯନ୍ତ୍ର । ଏଥିରେ ଆକାଶ ଦେଖାଗଲା ପରି ଗ୍ରହମାନଙ୍କର ଭିନ୍ନ ଭିନ୍ନ ଗତି ଦେଖି ପାରିବ । ଏହି ଗତି ଅଲଗା ଅଲଗା ଏବଂ ସୂତ୍ର ଯୋଗ କରି ହିଁ ଦେଖିହେବ ।

**ଗୋଲାଖ୍ୟଯନ୍ତ୍ରଦ୍ୱିତୟେ ନିଜାଂଶଚ୍ଛାୟାଭ୍ରମାଦ୍ୟନ୍ତ୍ରପରିଭ୍ରମାଚ୍ଚ ।**
**କାଲସ୍ୟ ବୋଧେ ସୁଗମେଽପି ବାଲବ୍ୟୁତ୍ପତ୍ତୟେ ବଚ୍ମି ପୃଥକ୍ କ୍ରିୟନ୍ତି ।୭୬**

**ଚକ୍ରେଣ ଯଷ୍ଟ୍ୟା ଧନୁଷା ନରେଣ ତୁର୍ଯ୍ୟେଣ ଘଟ୍ୟା ଫଳକାଦିନା ଚ ।**
**କାଚୈଃ ପୟୋଭିଃ ସିକତାଦିଭିଶ୍ଚ ସୂତ୍ରୈଃ ସ୍ମ କାଳଂ କଳୟନ୍ତି ତଜ୍ଜ୍ଞାଃ**
**।୭୭।**

ଏକକକ୍ଷ ଓ ବହୁକକ୍ଷ ଏପରି ଦୁଇପ୍ରକାର ଗୋଲଯନ୍ତ୍ର ବର୍ଣ୍ଣିତହେଲା । ନିଜଅକ୍ଷଯୁକ୍ତ-ଛାୟା ଭ୍ରମରୁ ଏବଂ ଯନ୍ତ୍ର ପରିଭ୍ରମଣରୁ ମଧ୍ୟ କାଳଜ୍ଞାନ ସୁବିଧାରେ କରିହେବ । ତଥାପି ଅଳ୍ପଜ୍ଞ ଲୋକଙ୍କର ଅତି ସୁବିଧାରେ କାଳଜ୍ଞାନ ହେବା ନିମନ୍ତେ କେତେକ କାଳଯନ୍ତ୍ର କଥା କହୁଛି । ଚକ୍ର ଯନ୍ତ୍ରରେ (ନାଡ଼ୀ ମଣ୍ଡଳରେ ଥିବା ଦୃଙ୍ମଣ୍ଡଳରେ) ଯଷ୍ଟି ଯନ୍ତ୍ରରେ, ବୃତ୍ତାର୍ଦ୍ଧ ରୂପ ଯନ୍ତ୍ରରେ, ଶଙ୍କୁରେ ବୃତ୍ତ ଚତୁର୍ଥାଂଶରେ, ଘଟୀଯନ୍ତ୍ରରେ ଭାସ୍କରୋକ୍ତ ଫଳକାଦିଯନ୍ତ୍ରରେ, କାଚରେ, ପାଣିରେ, ବାଲିରେ ଓ ସୂତ୍ରଯନ୍ତ୍ରରେ ମଧ୍ୟ କାଳଜ୍ଞାନ ହୋଇଥାଏ । ଯନ୍ତ୍ର ଜାଣିବା ଲୋକେ ବର୍ଣ୍ଣିତ ପ୍ରତ୍ୟେକ ଯନ୍ତ୍ରରୁ କାଳଜ୍ଞାନ କରି ନେଇପାରିବେ ।

**ଗୋଲାର୍ଦ୍ଧଯନ୍ତ୍ରଂ ସମୟାବଗତ୍ୟୈ କୃତ୍ୱା ମୃଦାକୁମ୍ଭଦଳସ୍ୱରୂପମ୍ ।**
**ଦିକ୍ସିଦ୍ଧମତ୍ୟାମବନୌ ନିଧାୟ ତଦୂର୍ଦ୍ଧ୍ୱବକ୍ତ୍ରଂ ଖଲୁ ଭାର୍ଦ୍ଧବୁଦ୍ଧ୍ୟା ।୭୮।**
**ଉଦଗ୍ଧ୍ରୁବଂ ଦକ୍ଷିଣଭିତ୍ତିମସ୍ତକାଦଧୋଽକ୍ଷଭାଗୈରୁଦରେ ନିବେଶ୍ୟ ଚ ।**
**ତତୋ ଧ୍ରୁବାର୍କାନ୍ତରଭାଗତୁଲ୍ୟୟା ଶଲାକୟୋଦଙ୍ମୁଖୟା ଧ୍ରୁବସ୍ଥୟା ।୭୯**

ବଲଖ୍ୟ ତଦ୍‌ପଶ୍ଚିମଭିତ୍ତିମୂର୍ଦ୍ଧ୍ୱତଃ ପୁରସ୍ତଭିତ୍ୟନ୍ତ୍ୱବସର୍ପିରେଖିକାମ୍ ।
ନିଧାୟ ତଦ୍‌ବ୍ୟାସଦଳପ୍ରମାଣକଂ ନରଂଚ ମଧ୍ୟେ ସରଳଂ ଦନାଦତଃ ।୮୦।

ସ୍ୱଘସ୍ରନାଡ଼ୀପଳଲକ୍ଷ୍ମଲକ୍ଷିତେ
ପୁର୍ବୋକ୍ତରେଖାବଳୟାର୍ଦ୍ଧକେଽନ୍ୟତାତ୍ ।
ନରପ୍ରଭାଗ୍ରାତ୍‌ସମୟଂ ପ୍ରତୀୟତାଂ
ଶିତାଂଶୁତୋଽନଶ୍ୟପି ସୂକ୍ଷ୍ମବୁଦ୍ଧିନା ।୮୧।

## ଗୋଳାର୍ଦ୍ଧଯନ୍ତ୍ର—

କଳଶର ତଳ-ଅର୍ଦ୍ଧାକାର ମାଟିର ଏକ ଗୋଳାର୍ଦ୍ଧ ଯନ୍ତ୍ର କରିବ । କୌଣସି ସ୍ଥାନର ପୂର୍ବ ପଶ୍ଚିମ ଆଦି ଦିଗ ସାଧନ କରି ସେଠାରେ ତାକୁ ଥୋଇବ । ଏହାକୁ ଉପର ମୁଖ କରି ରଖିବ । ଭୂମି ଉପରକୁ ଯେଉଁ କଳଶ ଅଧା ରହିଲା ତାକୁ ବୃତ୍ତାର୍ଦ୍ଧ ବୋଲି ଜ୍ଞାନ କରିବ । (ତାହା ବୃତ୍ତାର୍ଦ୍ଧ ବା ୧୮୦° ହେବ) । ସେହି କଳଶାର୍ଦ୍ଧରେ ପୂର୍ବାପର ଓ ଯାମ୍ୟୋ-ତ୍ତର ବୃତ୍ତ ବିନ୍ୟାସ କରିବ । ଦକ୍ଷିଣ ଉତ୍ତର ମସ୍ତକରୁ ତଳକୁ ଅକ୍ଷାଂଶ ଅନ୍ତରରେ ଉତ୍ତର-ଧ୍ରୁବକୁ ଦେଇ କଳଶ ପେଟରେ ଚିହ୍ନ ଦେବ । ଧ୍ରୁବ ଓ ସୂର୍ଯ୍ୟର ଅନ୍ତରରେଖା (ବ୍ୟାସା-ର୍ଦ୍ଧରେ) ଧ୍ରୁବକୁ କେନ୍ଦ୍ରକରି ଗୋଟିଏ ବୃତ୍ତ (ସେହି ସମୟର ଅହୋରାତ୍ର ବୃତ୍ତ) ଅଂକନ କରିବ । ଏହି ଅହୋରାତ୍ର ବୃତ୍ତର ବ୍ୟାସାର୍ଦ୍ଧ ପ୍ରମାଣରେ ଗୋଟିଏ ଶଙ୍କୁ ମଝିରେ ଦେଇ (ସରଳଶଙ୍କୁ) ରଖିବ । ଯେଉଁ ଅହୋରାତ୍ର ବୃତ୍ତ ହୋଇଛି ତାକୁ ନାଡ଼ୀ ପଳ ଆଦିଦ୍ୱାରା ଚିହ୍ନିତ କରି ଅହୋରାତ୍ର ବୃତ୍ତାର୍ଦ୍ଧରେ ଗୋଟିଏ ଶଙ୍କୁ ଯୋଗ କରି ତାହାର ଛାୟାଗ୍ରଦ୍ୱାରା ସମୟ ଜ୍ଞାନ କରିଯାଏ । ଅତି ବୁଦ୍ଧିମାନ୍ ଲୋକ ହେଲେ ରାତିରେ ଚନ୍ଦ୍ରରୁ ମଧ୍ୟ ଏହି ଯନ୍ତ୍ର ସାହାଯ୍ୟରେ ସମୟ ଜ୍ଞାନ କରି ପାରିବେ ।

ନଭସି ହିରବଲମ୍ବେ ଖେଚରାଣା ମୃଦୂନାଂ
ଗ୍ରହଲବଘଟିକାଦ୍ୟୈରନ୍ତରଂ ଯନ୍ତ୍ରବେଧୈଃ ।
ପରିକଳୟିତୁମିଷ୍ଟଂ ମାନଯନ୍ତ୍ରଂ ପ୍ରବକ୍ଷ୍ୟେ
ଧରଧରଣିରୁହାଦି ସ୍ୟାଦ୍ୟତୋଽପି ପ୍ରମେୟମ୍ ।୮୨।

ଘନରସସମଭୂମୌ ବୃତ୍ତମାଲଖ୍ୟ ଭାଂଶା-
ଙ୍କକପରିମିତମେତତ୍ ସ୍ୱାଂଶକୈରଂକୟିତ୍ୱା ।
ରଜୁଲଘୁମିହ ଦତ୍ତ୍ୱା ପଟ୍ଟିକାଂ ପୃଷ୍ଠଲଗ୍ନାଂ
ପରିଧିଲବଲବାଢ୍ୟଃ କେନ୍ଦ୍ରନିର୍ଯ୍ୟାତସୂତ୍ରୈଃ ।୮୩।

ବିରଚୟତୁ ବହୁସ୍ତେ ପଟ୍ଟିକାଚେନ୍ତ ଲବାଂଙ୍କାମ୍
ସ୍ତନ୍ନୁଲବନସମୁତ୍ଥାଂସ୍ତଏ ସୋପାନକଳ୍ପାନ୍ ।
ଲଗୟତୁ ପୁନରସ୍ୟା ମଧ୍ୟଭାଗେଽପି ଦଣ୍ଡଂ
ଦୃଢ଼ମୃଜୁମଥ ବୃତ୍ତବ୍ୟାସତୋଽର୍ଦ୍ଧପ୍ରମାଣମ୍ । ୮୪ ।

ସଦଳଗୃହସମା ବା ପଟ୍ଟିକାରାଶିତୁଲ୍ୟା
ତଥିଲବକଲତା ବା ବାଞ୍ଛିତାଂଶୈର୍ମିତା ସ୍ୟାତ୍ ।
ପୁନରିହ ଲବନାଙ୍କାଦ୍ ଦ୍ଵ୍ୟଂଶକାସ୍ତ୍ର୍ୟଂଶକା ବା
କୃତଶର ଲବକା ବା ସ୍ୱେଚ୍ଛୟା ନିର୍ମିତାଃ ସ୍ୟୁଃ । ୮୫ ।

ନିରାଧାର ଆକାଶରେ ଗ୍ରହ ତଥା ନକ୍ଷତ୍ରମାନଙ୍କର ବ୍ୟବଧାନ-ରାଶି, ଅଂଶ କଳା ଆଦିରେ କଳନା କରିବା ନିମନ୍ତେ ମାନଯନ୍ତ୍ର କଥା ଏଠାରେ କୁହାଯାଉଛି । ଏହି ଯନ୍ତ୍ର ସାହାଯ୍ୟରେ ପର୍ବତ ଓ ବୃକ୍ଷାଦିର ମଧ୍ୟ ପରିମାଣ ଜାଣିହେବ ।

ବାହାଲଆ କୌଣସି ରସରେ ଭୂମିର ସମତଳକୁ ଅତି ମସୃଣ କରିବ । ସେଥିରେ ୩୬୦ ଅଙ୍ଗୁଳର ଗୋଟିଏ ଗୋଲ ରଚନା କରିବ । ଏହି ସମୁଦାୟ ବୃତ୍ତକୁ ପୁଣି ୩୬ ଭାଗ କରି ପ୍ରତ୍ୟେକ ଭାଗରେ ଚିହ୍ନ ଦେବ । ଏହି ବୃତ୍ତକୁ ଠିକ୍ ଢ଼ାଙ୍କିଲା ପରି ଗୋଟିଏ କାଠପଟା ସେହି ବୃତ୍ତ ଆକାରରେ ଗଢ଼ିବ; ତଳେ ଲେଖିଥିବା ବୃତ୍ତର ପ୍ରତ୍ୟେକ ଅଂଶକୁ ସେହି ବୃତ୍ତର କେନ୍ଦ୍ରରୁ ଟାଣି ଆଣି କାଠପଟାର ପ୍ରତ୍ୟେକ ଅଂଶକୁ କାଟି ପାବଚ୍ଛ କରି ରଖିବ । ଏହି ପ୍ରତି ଅଂଶକୁ ପୁଣି କାଟି କଳା ଆଦି କଳ୍ପିଆଯାଇପାରେ । ପୁଣି ଏହି ପଟାର ମଧ୍ୟ ଭାଗରେ ଦୃଢ଼ ଓ ସରଳ ଗୋଟିଏ ଯଷ୍ଟି ଲଗାଇବ, ଯାହାର ପରିମାଣ ସେହି ବୃତ୍ତର ବ୍ୟାସାର୍ଦ୍ଧ ହେବ । ଏ ଯେଉଁ ପଟା କଥା କୁହାଗଲା ତାହାର ପରିମାଣ ୪୫°, ୩୦°, ୧୫° ବା ଇଷ୍ଟାଂଶ ହୋଇପାରେ ।

ନୟନତଲଗମୂଳଂ ପାଣିନାଦାୟ ଦଣ୍ଡଂ
ଦ୍ୟୁଚରବିବରମଭେ୍ରପଟ୍ଟିକାଂଶୈଃ ପ୍ରମାତାତ୍ ।
ଗ୍ରହଭବଯତଚହ୍ନାତ୍ପ୍ରତ୍ୟଗାଗାମି ତତ୍ତତ୍
ବିବରଲବକଷଟ୍କୈସ୍ତ୍ରିଜ୍ୟୟା ତାଡଟେସ୍ମୁ । ୮୬ ।

ନିଜନିଜଦନଜୀବାଭାଜିତୈର୍ନାଡ଼ିକାଃ ସ୍ୟୁ-
ର୍ଗିରିମୁଖନରମୂଳସ୍ୱାନ୍ତ ସହସ୍ରସଂଘାତ୍ ।
ସକଲଲବକଶଙ୍କୁଜ୍ୟାହତା ଦୃଗଜ୍ୟୟାପ୍ତା
ଭବତ ଫଳକସଦ୍ୟଂ ମାନମଦ୍ରଦ୍ରୁମାଦେଃ । ୮୭ ।

ଯଷ୍ଟି ଠିକ୍ ଦୃକ୍‌ସୂତ୍ର ଢଙ୍ଗରେ ଧରି ଆକାଶରେ ଗ୍ରହାନ୍ତର, ନକ୍ଷତ୍ରାନ୍ତର ବା ଗ୍ରହ-ନକ୍ଷତ୍ରାନ୍ତରକୁ ପଞ୍ଚାର ଅଂଶାଦିରେ ମାପିନିଅ । ଏହାକୁ ୬ ରେ ହରିବ ପୁଣି ତ୍ରିଜ୍ୟାରେ ଗୁଣି ସେହି ଦିନର ଅହୋରାତ୍ର ବୃତ୍ତ ବ୍ୟାସାର୍ଦ୍ଧରେ ହରିଲେ, ସେହି ଅନ୍ତର ର ନାଡ଼ୀ ହୋଇଯିବ ।

ପର୍ବତର ଅଗ୍ରଭାଗ ଓ ଶଙ୍କୁମୂଳର ହସ୍ତାଦି ବ୍ୟବଧାନକୁ ଶଙ୍କୁଜ୍ୟାରେ ଗୁଣି ଦୃଗ୍‌ଜ୍ୟାରେ ହରିଲେ ପର୍ବତ ର ଉଚ୍ଚତା (ହାତ) ଆସିଯିବ । ବୃକ୍ଷର ଉଚ୍ଚତା ମଧ୍ୟ ଏହିପରି ଭାବରେ ବାହାର କରିହେବ ।

ବହୁଳସଲିଳବର୍ଷଂ ବକ୍ଷ୍ୟ ତୟୋର୍ଦ୍ଧ୍ୱସୀମୋ-
ନ୍ନତନତଲବକେଭ୍ୟଃ ଶଙ୍କୁଦୃଗ୍‌ଜ୍ୟେ ବିଧାୟ ।
ଖଖଶରକର ହସ୍ତା ଦୃଗ୍‌ଜ୍ୟକାପ୍ତା ନରାପ୍ତାଃ
ସୃଜଳଦତଳଭୂମ୍ୟୋରନ୍ତରଂ ପ୍ରାୟଶଃ ସ୍ୟାତ୍ । ୮୮ ।

ନରଯୁଗଳ ସୁସାଧ୍ୟଂ ମାନମାନେତୁମସ୍ମା
ଦପି କଳୟତୁ ଶଙ୍କୁସ୍ଥାନୟୋଃ ସନ୍ନିବିଷ୍ଟଃ ।
ନଗମୁଖସମଦୃଶ୍ୟଂ ପଙ୍‌କ୍ତିକାନ୍ତଃପ୍ରଦେଶଂ
ନରମିତରତ ଦଣ୍ଡଂ ଭେତମେୟାନ୍ତକସ୍ଥମ୍ । ୮୯ ।

ଅନକଟଭୁବି ସିଦ୍ଧେ ଶଂକୁଭେ ସଂସ୍କୃତେସ୍ତଃ
ପ୍ରଥମନରବିନଘ୍ନୌ ଦୃରଶଂକୁ ପ୍ରଭକ୍ତେ ।
କଥିତମପରକର୍ମ୍ମ କ୍ଷ୍ମାସମାବାସ୍ତୁ ନୋ ବା
ଭବତ ସମମଗାଦେରୁର୍ଦ୍ଧ୍ୱ ତର୍ଯକ୍‌ପ୍ରମାଣମ୍ । ୯୦ ।

ସ୍ଫୁଟତରପରିମାଣସ୍ୟାବଗତ୍ୟୈ ତୁ ଦଣ୍ଡଃ
ଶର କରମିତଦୈର୍ଘ୍ୟଃ କାର୍ଯ୍ୟ ଏତଦ୍ ଶିଖାୟାମ୍ ।
ଚକଳୟେକ୍ଷିତସାମ୍ୟପ୍ରାପିତାକ୍ଷ୍ଣା ଶଳାକା
ନର ଇତ ଲଗନୀୟା ସଂସ୍କୃତଃ ସ୍ୟାତ୍ତଥୈବ । ୯୧ ।

ଖୁବ୍ ବର୍ଷା ହେଉଥିବା ମେଘ ଦେଖି ମାନଯନ୍ତ୍ରରେ ତାହାର ଉନ୍ନତାଂଶ ଓ ନତାଂଶ ଜାଣିବାକୁ ହେବ । ତାପରେ ୨୫୦୦ ହାତକୁ ଦୃଗ୍‌ଜ୍ୟାରେ ଗୁଣି ଶଙ୍କୁରେ ହରିଲେ ତାହା ତଳେ ଥିବା ତଳ ଓ ମେଘଥିବା ମଧ୍ୟବର୍ତ୍ତୀ ସ୍ଥାନର ଅନ୍ତର ହେବ ।

ଦୁଇଟି ଶଙ୍କୁଦ୍ୱାରା ପର୍ବତ ଓ ବୃକ୍ଷାଦିର ମାନ ଆଣିବା ନିମନ୍ତେ ଦୁଇଟି ସ୍ଥାନରେ ଶଙ୍କୁକୁ ରଖ । ଶଙ୍କୁ ଦୁଇଟିକୁ ବାହାର କରିଦେଇ ନିଜେ ଉଭୟସ୍ଥ ଶଙ୍କୁ ମୂଳରେ (ଶଙ୍କୁ ରୂପରେ ବସ) । ପର୍ବତକୁ ଦେଖିବାବେଳେ (ମାନଯନ୍ତ୍ରରେ) ଫଣା (ମାନଯନ୍ତ୍ରର ଫଣା) ଭିତରେ ଯେଉଁ ସ୍ଥାନ ହେବ ତାହାକୁ ହିଁ ଏଠାରେ ଶଙ୍କୁ ଭାବରେ ଧରା ଯାଇଛି । ସେଥି ପର୍ବତାଦିର ନିକଟସ୍ଥିତ ଯଷ୍ଟିକୁ ଛାୟା ବୋଲି ଧରିନିଅ । ଏହିପରି ଭାବରେ ଦୂର ସ୍ଥାନରେ ହେବା ଶଙ୍କୁ ଓ ତାହାର ଛାୟାକୁ ପ୍ରଥମ ଶଙ୍କୁରେ ଗୁଣି ୨ୟ ବା ଦୂରସ୍ଥ ଶଙ୍କୁରେ ହରିଲେ ଦୁଇଟି ଛାୟା ଆସିବ । ଅର୍ଥାତ୍ ଛାୟାଦ୍ୱୟରୁ ପର୍ବତର ଉଚ୍ଚତା ଆସିବ । ଏହାପରେ ଯାହା ଯାହା କରିବାକୁ ହେବ, ତାହା କୁହାଯାଇଛି । ଅର୍ଥାତ୍ ଛାୟାଦ୍ୱୟରୁ ପର୍ବତର ଉଚ୍ଚତା ଆଣିବ । (୧୯ଶ ପ୍ରକାଶର 'ଆବୋଶଂ ପର୍ବତାତ୍' ଆଗରୁ ବର୍ଣ୍ଣିତ ଅଛି । ଏତେବେଳେ ପୃଥିବୀ ସମତଳ ହେଉ ବା ନ ହେଉ ପର୍ବତାଦିର ଉଚ୍ଚତା ବିସ୍ତାର ଆସିଯିବ; ବୃକ୍ଷ ଓ ପର୍ବତାଦିର ଅତି ସ୍ପଷ୍ଟ ପରିମାଣ ଜାଣିବାକୁ ଚାହିଁଲେ ଯଷ୍ଟିକୁ ୫ ହାତ ଲମ୍ବା କରିଦେବ । ଏହି ଦଣ୍ଡର ଅଗ୍ରଭାଗରେ ପର୍ବତାଦିକୁ ଚାହିଁବ (ଯାହାର ଉଚ୍ଚତା ଦରକାର) । ଚାହିଁବା-ବେଳେ ଚକ୍ଷୁ ଓ ପର୍ବତାଦିର ମଧ୍ୟରେ ଗୋଟିଏ ଶଙ୍କୁକୁ ଏପରି ରଖିବ, ଯାହାର ଅଗ୍ରଭାଗ ମଧ୍ୟ ସେହି ପର୍ବତାଦିର ଅଗ୍ରଭାଗ ଦେଖାଯାଉଥିବା ସୂତ୍ରରେ ଲାଗିଯିବ । ଏହାପରେ 'ଅନନ୍ତ ଭୂବିଦ୍ଧେ ଶଙ୍କୁଭେ' ଏହି ପ୍ରକାର ଭାବରେ ସବୁ ସଂସ୍କାର କରି ଉଚ୍ଚାଦି ଆଣିଦେବ ।

ଧ୍ରୁବସମନଗଶୃଙ୍ଗଂ ବୀକ୍ଷ୍ୟ ତଦ୍ଦ୍ୱ୍ୟାକ୍ପ୍ରତୀଚ୍ୟୋଃ<br>
କୃଚଦୁଭବବରଜ୍ୟାଂ ଚୋନ୍ନତଜ୍ୟାଂ ତଥାଦ୍ରେଃ ।<br>
ସ୍ଥିତଯୁଗବବରଘ୍ନୀ ସୋନ୍ନତଜ୍ୟାଦ୍ୱୟାପ୍ତା<br>
ଭବତଶିଖରମାନଂ ଦୃରତା ଦୃକ୍ଜ୍ୟକାତଃ । ୯୨ ।

ଚକ୍ରଂ ବୃତ୍ତଂ ତଦ୍ଧଳଂ ଚୃପସଂଜ୍ଞଂ<br>
ଚୃପସ୍ୟାର୍ଦ୍ଧଂ ଯଷ୍ଟିନାମାସ୍ତି ଯନ୍ତ୍ରମ୍ ।<br>
ଚକ୍ରେଣାହୋରାତ୍ରକାଳ ସ୍ତଦର୍ଦ୍ଧଂ<br>
ଚୃପେନାଂଘ୍ରିର୍ଜ୍ଞାୟତେ ତସ୍ୟ ଯଷ୍ଟ୍ୟା । ୯୩ ।

ଧ୍ରୁବ ଦେଖିବା ଭାବରେ (ଯାମ୍ୟୋତ୍ତର ବୃତ୍ତରେ) ପର୍ବତ ଶୃଙ୍ଗକୁ ଦେଖିବ । ସେହି ପର୍ବତର ପୂର୍ବାପରାନ୍ତର ଜ୍ୟା ଓ ଉନ୍ନତ ଜ୍ୟା ବାହାର କରିବ । ସେହି ଉନ୍ନତ ଜ୍ୟାକୁ ପୂର୍ବାପରାନ୍ତର ଜ୍ୟାରେ ଗୁଣି ୨ରେ ଭାଗ ଦେଲେ ଫଳ ପର୍ବତାଦିର ଉଚ୍ଚତାମାନ ହେବ । (ପର୍ବତ କେତେ ହାତ ଉଚ୍ଚତା ଜଣା ପଡ଼ିବ) ଦୃଗ୍ ଜ୍ୟା (ନତଜ୍ୟା)ରୁ ଦୂରତା ଆସିବ । ଅର୍ଥାତ୍ ନତଜ୍ୟାକୁ ସେହି ପୂର୍ବାପରାନ୍ତରରେ ଗୁଣି ୨ରେ ଭାଗ ଦେଲେ ନିଜ ସ୍ଥାନରୁ ପର୍ବତାଦିର ଦୂରତା ଜଣାପଡ଼ିବ ।

ଚକ୍ର ଯନ୍ତ୍ରଟା ବୃତ୍ତାକାର; ତାହାର ଅଧା ବୃତ୍ତାର୍ଦ୍ଧକାର ଚାପଯନ୍ତ୍ର । ଚାପର ପୁଣି ଅଧାକୁ ଯଷ୍ଟି ବା ତୁରୀୟ (ଚତୁର୍ଥାଂଶ) ଯନ୍ତ୍ର କୁହାଯାଏ । ଚକ୍ର ଯନ୍ତ୍ରରେ ଦିନ ଓ ରାତ୍ରିର ସମୟ, ଚାପ ବା ବୃତ୍ତାର୍ଦ୍ଧ ଯନ୍ତ୍ରରେ ଦିନାର୍ଦ୍ଧ ରାତ୍ର୍ୟର୍ଦ୍ଧ ପୁଣି ଯଷ୍ଟି ଯନ୍ତ୍ରରେ (ତୁରୀୟ ଯନ୍ତ୍ରରେ) ଦିନର ଚତୁର୍ଥାଂଶ ବା ରାତ୍ରିର ଚତୁର୍ଥାଂଶ ଜାଣି ହେବ ।

କାଚପାତ୍ରଯୁଗଳଂ ପରସ୍ପରଂ
ସମ୍ମୁଖୀନମଣୁମଧ୍ୟ ରନ୍ଧ୍ରକମ୍ ।
ସଂବଧାୟ ଜଳପୂରତୈକତୋ
ନିଃସରେଦପରପାତ୍ରକେ ଜଳମ୍ । ୯୪ ।

ଯାବତାଥ ସମୟେନ ତାବତା
ବ୍ୟସ୍ତସଂସ୍ଥିତବଶାତ୍ ପୁନସ୍ତତଃ ।
ଊର୍ଦ୍ଧ୍ୱତସ୍ତଳଗତେଽପି ନିଃସରେ
ଦତ୍ଥମେବ ସିକତାଭି ନିଃସୃତଃ । ୯୫ ।

ଦୁଇଟି କାଚ ପାତ୍ର ଓଲଟା କରି ତଳ ଉପର କରି ଥୋଇବ । ଉଭୟର ମଧ୍ୟ-ଭାଗରେ ଗୋଟିଏ ଛୋଟ ଛିଦ୍ର କରିଥିବ ଯେଉଁଥିରେ କି ଉପର ପାତ୍ରର ଜଳ ତଳ କାଚ ପାତ୍ରକୁ ଗଡ଼ିଯାଇ ପାରିବ । ପ୍ରଥମ ପାତ୍ରରୁ ଯେତିକି ସମୟରେ ୨ୟ ପାତ୍ରକୁ ଜଳ ଗଳିଯାଇ ପାରିବ, ୨ୟ ପାତ୍ରରୁ ମଧ୍ୟ ସେତିକି ସମୟରେ ପୁଣି ୧ମ ପାତ୍ରକୁ ଗଳିଯାଇପାରିବ । ଜଳ ରଖି ଏ କାର୍ଯ୍ୟ କରାଯାଇପାରେ, ବାଲି ରଖି ମଧ୍ୟ ଏହିପରି କରାଯାଇପାରେ । ଏହି ସମୟକୁ ଧରି ଦିନର ସମୟ ମଧ୍ୟ ଜାଣି ହେବ ।

ମୟୂରନରବାନରାଃ କୁଶଳଶିଳ୍ପିନା କଳ୍ପିତାଃ
ସସୂତ୍ରନଳକୋଦରାଃ ସଲିଳଗାମିପାତ୍ରସ୍ଥିତୈଃ ।
ରସାଦଭିରନୁଦ୍ଧୃତଂ ନିଜମୁଖୈଶ୍ଚ ମଣ୍ୟାଦିକଂ
ଗିଳନ୍ତି ଗୁଣଗୁମ୍ଫିତଂ ପ୍ରତମୁହୂର୍ତ୍ତମିଚ୍ଛାବଶାତ୍ । ୯୬ ।

ଭଲ ଶିଳ୍ପୀ ହାତରେ ମୟୂର, ନର ବା ବାନର ଆକାରର ଯନ୍ତ୍ର କରି ତାହାର ପେଟରେ ନଳୀ ଖଞ୍ଜି ସେଥିରେ ଖଣ୍ଡେ ଲୁହା ତାର ଦେବ । ଏଣେ ଜଳପୂର୍ଣ୍ଣ ପାତ୍ରରେ ତାହାର ମୁହଁକୁ ରଖାଇ ପାରଦ ଆଦିର ଆକର୍ଷଣ ବଶତଃ ସେ ଯେପରି ଲୁହା ତାରରେ ଲାଗିଥିବା ମଣି ଆଦି ରୂପକ ଜଳକୁ ଟୋପା ଟୋପା କରି ଖାଏ ତାର ବ୍ୟବସ୍ଥା କରିବ ।

ଗୋଟାଏ ଟୋପା ଖାଇବାକୁ ସେ ଯେପରି ଦୁଇଦଣ୍ଡ ନିଏ ତାହାର ବ୍ୟବସ୍ଥା ନିଶ୍ଚୟ କରିବାକୁ ହେବ । (ଏ ଯନ୍ତ୍ର ଦେଖିବାକୁ ସୁନ୍ଦର ଏବଂ ପ୍ରତିମୁହୂର୍ତ୍ତ (ଦୁଇଦଣ୍ଡ)ରେ ମଣି-ରୂପକ ପାଣି ଟୋପା ଖାଇବା ଅତି କୌତୂହଳପ୍ରଦ ହେବ ।)

ଗୋଲାର୍ଦ୍ଧାକୃତଘଟିତଂ ସୁତାମ୍ରପାତ୍ରଂ
ଛିଦ୍ରେଣାପ୍ୟତତନୁନା ତଳେ ସମେତମ୍ ।
କୁଣ୍ଡାମ୍ଭସ୍ୟବହୁଲଭିତ୍ତିପାତତଂ ସଦ୍
ଘଟ୍ୟା ମଜ୍ଜତ ଯଦଦଂ କପାଳଯନ୍ତ୍ରମ୍ । ୯୭ ।

ଭାସ୍କରେଣୋଦତଂ ଯସ୍ମାତ୍ ଫଳକାଖ୍ୟଂ ସୁବସ୍ତୃତତ୍
ଯନ୍ତ୍ରଂ ତଦେବ ନ ମୟା ଗଦତଂ ବଦତଂ ପୁନଃ । ୯୮ ।

ତମ୍ବା ପାତ୍ରଟିଏ ଗୋଲାର୍ଦ୍ଧାକାରରେ କରିବ, ଜଳଣର ତଳ ଅଧା ପରି । ତାହାର ତଳ ଦେଶରେ ଗୋଟିଏ ଛୋଟ କଣା ଏପରି କରିବ ତାହାକୁ ପାଣି ଉପରେ ରଖି ଦେଲେ ସେହି କଣାରେ ପାଣି ଉଠି ଏକ ଘଡ଼ିକେ ପାତ୍ରଟି ଜଳପୂର୍ଣ୍ଣ ହୋଇଯିବ । ଏହାକୁ କପାଳ-ଯନ୍ତ୍ର କହନ୍ତି ।

'ଭାସ୍କର' ଫଳକ ନାମକ ଯନ୍ତ୍ର କଥା କହିଛନ୍ତି । ତାହା ପ୍ରସିଦ୍ଧ ଏବଂ ସୁବିସ୍ତୃତ । ତେଣୁ ତାକୁ ମୁଁ ଆଉ ଏଠାରେ କହିଲି ନାହିଁ ।

ଯନ୍ତ୍ରଂ ସ୍ୱୟଂବହମିହାଭିଦଧାମି ଚକ୍ରଂ
ଷଷ୍ଟ୍ୟଂଗୁଳାତ୍ମବଳୟାତତତୁଲ୍ୟନେମି ।
ନିର୍ମାୟ ଷଷ୍ଟିଘଟିକାତ୍ମକରେଖିକାଢ୍ୟଂ
ରେଖାନ୍ତରେଷ୍ୱିଷୁମିତେଷ୍ୱ ତମଂଶଚନ୍ଦ୍ରୈଃ । ୯୯ ।

ସ୍ୱୟଂବହ ଯନ୍ତ୍ର—

ସ୍ୱୟଂବହ ଯନ୍ତ୍ର କଥା ବର୍ତ୍ତମାନ କହୁଛି । ୬୦ ଆଙ୍ଗୁଳ ପରିଧିର ଗୋଟିଏ ଚକ କରିବ । ଏହାର ନେମିଟି ହିଁ ୬୦ ଆଙ୍ଗୁଳ ହେବ । ଏହି ପରିଧିକୁ ୬୦ ଭାଗରେ କାଣ୍ଟି ରେଖା ଦେବ ଏବଂ ପ୍ରତ୍ୟେକ ରେଖା ଗୋଟିଏ ଗୋଟିଏ ଘଟୀ ବୋଲି ମନେ କରିବ । ୫ ଅଂଶରେ (୧୫ ଆଙ୍ଗୁଳରେ) ଆଉ ଗୋଟିଏ ଗୋଟିଏ ଚିହ୍ନ ସେହି ନେମିରେ କରିବ ।

ହସ୍ତଦ୍ୱୟୋନ୍ନତମଦୁତ୍ତରଦକ୍ଷିଣସ୍ଥ
ସ୍ଥୂଲାଗ୍ରରନ୍ଧ୍ରଯୁଗନଶ୍ଳକସନ୍ନିବେଶେ ।
ଅକ୍ଷେ ସୁବୃତ୍ତମସୃଣେ ବିନିଯୋଜ୍ୟମାଭିଂ
ଚକ୍ରସ୍ୟ ତୁଲ୍ୟଲଘୁତାଖିଳବେଷ୍ଟନସ୍ୟ ।୧୦୦।

ଏ ଚକର ମଝିରେ ଗୋଟିଏ ରନ୍ଧ୍ର କରି ସେଥିରେ ଗୋଲ ଓ ଚିକ୍କଣ ଅଖଟିଏ ଦେଇଦେବ, ଯେପରି ଚକଟି ସ୍ୱଚ୍ଛନ୍ଦରେ ଘୂରି ପାରିବ । ଏହି ଚକଟିର ଅଖକୁ ଉତ୍ତର ଦକ୍ଷିଣରେ ପୋତା ହୋଇଥିବା ଦୁଇଟି ୩ ହାତିଆ ଖୁଣ୍ଟ ଅଗରେ କଣାକରି ସେଥିରେ ଥୋଇ ଦେଖିବ । ଚକଟିର ଓଜନ ସର୍ବାଂଶରେ ଯେପରି ସମାନ ହେବ । ଓଜନରେ ବୈଷମ୍ୟ ରହିଲେ ଘୂରିବାରେ ଅନେକ ଅସୁବିଧା ହୋଇପଡ଼ିବ ।

ପ୍ରାକ୍‌ପଶ୍ଚିମକ୍ଷିତିଜୟୋ ରବିଚନ୍ଦ୍ରଚିହ୍ନେ
ଦତ୍ତ୍ୱାସ୍ୟ ବାସରନିଶାପରିବର୍ତ୍ତିହେତୋଃ ।
ପ୍ରତ୍ୟଗ୍‌ଭ୍ରମାର୍ଥମପରକ୍ଷିତିଜାଧରସ୍ଥଂ
ତାମ୍ରାଦିନିର୍ମିତମୃଜୁଂ ନଳକଂ ନିଦଧ୍ୟାତ୍ ।୧୦୧।

ପୂର୍ବ ଓ ପଶ୍ଚିମ କ୍ଷିତିଜରେ ସୂର୍ଯ୍ୟ ଓ ଚନ୍ଦ୍ର ଚିହ୍ନ ଦେଇ ଏହା ଦିନରାତି ବୁଲିବା ନିମନ୍ତେ ପଶ୍ଚିମ କ୍ଷିତିଜ ତଳେ ତମ୍ବା ଆଦି ଧାତୁରେ ନିର୍ମିତ ସରଳ ନଳୀଟିଏ ସ୍ଥାପନ କରିବ ।

ଷଷ୍ଟ୍ୟଂଗୁଳପ୍ରମିତ-ତନ୍ନଳକୋଦରସ୍ଥ
ତୋୟଂ ଯଥା ସ୍ରବତି ଷଷ୍ଟିଘଟୀଭିରେବଂ ।
ଛିଦ୍ରଂ ତଳେ ବିରଚୟେତ୍ତଦଧଶ୍ଚ ଭାଣ୍ଡଂ
ସ୍ଥିତୌ ବିନିଃସୃତଜଳସ୍ୟ ନିଧାୟ ଭୂୟଃ ।୧୦୨।

ଚକ୍ରାପରକ୍ଷିତିଜବେଶିତସୂକ୍ଷ୍ମକୀଲେ
ବଦ୍ଧ୍ୱାଗ୍ରମେକମଥ ସୂତ୍ରମଧଃକ୍ରମେଣ ।
ପୂର୍ବୋର୍ଦ୍ଧ୍ୱପଶ୍ଚିମତୟା ପରିବେଷ୍ଟ୍ୟ ନେମିଂ
କୀଲାଧରସ୍ତମ୍ଭପରିଲମ୍ବିତମେବ କୁର୍ଯ୍ୟାତ୍ ।୧୦୩।

ବଦ୍ଧ୍ୱା ଗୁଣାଞ୍ଚଳ ଇହୈବ ହି ପାରଦାଢ୍ୟଂ
ଶୁଷ୍କଂନଳୋଦରଗଳତ୍ସ୍ୱଜଳାମ୍ବୁପାତମ୍ ।
ତୋୟେ ନିପାତୟତୁ ତେନ ତଳାଭିକୃଷ୍ଟ
ସୂତ୍ରଂ ଭ୍ରମତ୍ୟରସକୃଚ୍ଛନକୈର୍ଦ୍ଧ୍ରୁବସ୍ଥେ ।୧୦୪।

ପ୍ରାତଃ ପୁରଃସ୍ଥିତରବେଃ ସବଧେଶଳାକାଂ
ଚର୍ଯ୍ୟଗ୍ରଦଦତ୍ କ୍ଷଣଘଟୀରୁଦତାଃ ପ୍ରମାତୁମ୍ ।
ଅଙ୍କୈର୍ଦ୍ଧ୍ରୁବସ୍ୟବୟବାନ୍ କଳୟେତ୍ ପରେଦ୍ୟୁଃ
ପ୍ରାଗ୍ବନ୍ନିୟୋଜୟତୁ ଜୀବନପୂରଣାଦ୍ୟୈଃ ।୧୦୫।

ଚନ୍ଦ୍ରାର୍ଦ୍ଧତୋଽବନତଳାବଧି ଗୋପନୀୟଂ
ସର୍ବଂ ଭ୍ରମୋପକରଣଂ ଖଲୁ ଦର୍ଶକେଭ୍ୟଃ ।
ତେଷାଂ ଭବେନ୍ନ ହି ଚମତ୍କୃତିରନ୍ୟଥାତ୍ର
ସଦ୍ଭାବଟନେଽପତନାର୍ହମଦୋ ଯଦେବ ।୧୦୬।

ଅଥ ପୁରୋଦିତଗୋଳପରିଭ୍ରମୋ
ଭବତ ଚନ୍ଦ୍ରବଦସ୍ୟ ମତାନ୍ତରମ୍ ।
ଦ୍ରୁବଇହ ଧ୍ରୁବଚନ୍ଦ୍ରବଲାନ୍ତଗୌ
ସ୍ଥୂଳଦାରୁମୟୌ ବଳୟୌ ହିୟାଦ୍ ।୧୦୭।

ବିମଳତୈଳମିଳଦ୍ବିଳଯୁଗ୍ମକେ
ସମସୂତ୍ରଶିଖାଂ ଧ୍ରୁବଯଷ୍ଟିକାମ୍ ।
ଅଭିନିବେଶ୍ୟ ପୁନସ୍ତନୁକୀଳକୌ
ବଳୟ ପଶ୍ଚିମଗୌ ନଳକାବଧଃ ।୧୦୮।

ତଦନୁସାରରସାନ୍ୱିତତୁମ୍ବିକା
ଯୁଗଳକୃଷ୍ଟଗୁଣୌ ରଚୟେତ୍ତଥା ।
ଇତି କୃତେଽଖିଳକର୍ମଣି ଗୋଲକୌ
ଭ୍ରମତ ସଂସ୍ଥିତ ଏବ ନିରକ୍ଷକେ । ୧୦୯।

ଏହି ନଳଟିକୁ ୬୦ ଆଙ୍ଗୁଳ କରିବ । ଏ ନଳର ପାଣି ୬୦ ଘଣ୍ଟାରେ ଯେପରି ଠିକ୍ ଖାଲିସ ହୁଏ, ତାହା ଦେଖି ଏହି ନଳରେ ଗୋଟିଏ ଛିଦ୍ର କରିଥିବ, ଏହି ଛିଦ୍ର ତଳେ

ଗୋଟିଏ ପାତ୍ର ରଖିବ କାରଣ ଛିଦ୍ର ବାଟ ଦେଇ ପଡ଼ିବା ଜଳ ସେଥିରେ ପୁଣି ଜମା ହୋଇ ରହିବ ।

ତପୂରେ ଚକ୍ରର ଅପର ଭାଗରେ ଥିବା କ୍ଷିତିଜର ସୂକ୍ଷ୍ମ କୀଳରେ ଗୋଟିଏ ସୂତ୍ରର ଗୋଟିଏ ଅଗକୁ ବାନ୍ଧି ସେହି ସୂତାକୁ ତଳ ଆଡ଼କୁ ଗୁଡ଼ାଇ ଉପରକୁ ଆଣିବ । ଏହାପରେ ପୂର୍ବ ନେମିକୁ ବାନ୍ଧିଦେବ । ପୁଣି ସେହି ସୂତାକୁ ଚକ୍ରର ତଳେ ଝୁଲାଇ ସେଥିରେ ଗୋଟିଏ ଲାଉ ତୁମ୍ବୀ ବାନ୍ଧିଦେବ । ସୂତ୍ରର ପ୍ରାନ୍ତରେ ପାରଦ ଦେଇଥିବ । ତୁମ୍ବୀଟିକୁ ପାଣିରେ ପକାଇଦେବ । ଏ ତୁମ୍ବୀ ପାଣିରେ ପଡ଼ିବାମାତ୍ରେ ସେହି ଚକ୍ରକୁ ଅହୋରାତ୍ର ବୃତ୍ତରେ ଧୀରେ ଘୂରାଇ ଦେବ । ସକାଳେ ସୂର୍ଯ୍ୟୋଦୟ ବେଳେ ପୂର୍ବକ୍ଷିତିଜସ୍ଥିତ ରବି ଚିହ୍ନର ନିକଟରେ ସେହି ଚକ୍ରରେ ତିର୍ଯ୍ୟକ୍ ଦକ୍ଷିଣୋତ୍ତର ଭାବରେ କାଠି ଦେଇ ରଖିବ । ସୂର୍ଯ୍ୟୋଦୟରୁ ଆରମ୍ଭ କରି ଚକ୍ରର ପ୍ରତ୍ୟଗ୍ ଭ୍ରମଣ ବଶତଃ ମୁହୂର୍ତ୍ତ ଘଟୀ ଆଦି ଜାଣିବା ନିମନ୍ତେ ସେହି କାଠି ଓ ପୂର୍ବକ୍ଷିତିଜ ଅନ୍ତର୍ଗତ ଚକ୍ରର ଚିହ୍ନଦ୍ୱାରା ଅହୋରାତ୍ରର ଅବୟବ (ଘଟୀ ଲଗ୍ନ ଆଦି) ହିସାବ କରି ହେବ । ତା ପରଦିନ ପୁଣି ସେହି ଚକ୍ରକୁ ପାଣିରେ ପୂର୍ବଇ ପୂର୍ବପରି ସ୍ଥାପନ କରିବ । ଚକ୍ରାର୍ଦ୍ଧ ଭାଗରୁ ଭୂମି ତଳ ପର୍ଯ୍ୟନ୍ତ ଭ୍ରମଣ ନିମନ୍ତେ ଯାବତୀୟ ଉପକରଣ ଦର୍ଶକଙ୍କୁ ଦେଖାଇବ ନାହିଁ । ଏହାକୁ ଗୋପନରେ ରଖିବ । ତାହା ନ କଲେ ଦର୍ଶକଙ୍କ ଚମତ୍କାର ଦର୍ଶନ ସ୍ପୃହା ନଷ୍ଟ ହୋଇଯିବ । ସଚ୍ଛାତ୍ର ପାଇଲେ ଏ ସବୁ ଗୋପନ କଥା ଖୋଲି ଦେଖାଇବ । ପୂର୍ବେ କୁହା ଯାଇଥିବା ଗୋଲ ଯନ୍ତ୍ରର ଭ୍ରମଣ ସ୍ୱୟଂବହଯନ୍ତ୍ର ପରି ହେବ । ଏଥିରେ ଯେଉଁ ମତାନ୍ତର ଅଛି ତାହା କହୁଅଛି । ସାୟନ ମେଷାଦିଠାରୁ ଧ୍ରୁବମଣ୍ଡଳର ପ୍ରାନ୍ତଗତ ପୃଥୁଳ କାଷ୍ଠ ନିର୍ମିତ ଦୁଇଟି ବୃତ୍ତ କରିବ । ଧ୍ରୁବଚକ୍ରର ଦୁଇ ରନ୍ଧ୍ରରେ ଭଲ-ଭାବରେ ତେଲ ଦେଇ ସମଭାବରେ ଗୋଲ ଧ୍ରୁବ-ଯଷ୍ଟିକୁ ତହିଁରେ ପୂରାଇବ । ପୁଣି ବୃତ୍ତ ଗୋଲର ପଶ୍ଚିମରେ ସୂକ୍ଷ୍ମ ଦୁଇଟି କୀଳକ ଦେଇ କୀଳକର ତଳେ ଦୁଇଟି ନଳିକା ସଂସ୍ଥାପନ କରି ସେଥିରେ ଦୁଇଟି ଲାଉ ତୁମ୍ବୀ ଖଞ୍ଜିବ । ସେଥିରେ ପାରଦ ଦେଇଥିବ । ଏହି ଦୁଇଟି ତୁମ୍ବୀଦ୍ୱାରା ଆକୃଷ୍ଟ ହୋଇ ରହିଲା ପରି ଦୁଇଟି ସୂତ୍ର ରଖିବ । ଏପରି କଲେ ସବୁ କାର୍ଯ୍ୟ କରିବା ପାଇଁ ଯନ୍ତ୍ରଟି ବିଷୁବ ବୃତ୍ତରେ ପୂର୍ବାପର ବୃତ୍ତପରି ଘୂରିବ ।

ସୂ—

ଗ୍ରହନକ୍ଷତ୍ର ଚରିତଂ ଜ୍ଞାତ୍ୱା ଗୋଲଂ ଚ ତତ୍ତ୍ୱତଃ
ଗ୍ରହଲୋକମବାପ୍ନୋତି ପର୍ଯ୍ୟାୟେଣାତ୍ମବାନ୍ନରଃ ଇତି ।୧୨୦।

ଗ୍ରହ ନକ୍ଷତ୍ରମାନଙ୍କ କଥା ଜାଣି ଭଲଭାବରେ ଗୋଲର ତତ୍ତ୍ୱ ବୁଝିଗଲେ ଲୋକ ସଂଯତ ହୋଇଯାଏ । ସେ ଗ୍ରହ ଲୋକକୁ ମଧ୍ୟ ପ୍ରାପ୍ତ ହୁଏ । ଅବଶ୍ୟ ଅନ୍ୟ ଜନ୍ମରେ ।

ଶି—

ଦଦ୍ୟଂଜ୍ଞାନମତୀନ୍ଦ୍ରିୟଂ ଯଦୃଷିଭିର୍ବ୍ରହ୍ମ୍ୟଂ ବଶିଷ୍ଠାଦଭିଃ
ପାରଂପର୍ଯ୍ୟବଶାଦ୍ରହସ୍ୟମବନୀଂ ନୀତଂ ପ୍ରକାଶ୍ୟଂ ତତଃ ।
ନୈତଦ୍ଦ୍ୱେଷିକୃତଘ୍ନଦୁର୍ଜ୍ଜନଦୁରାଗ୍ରସ୍ତସଦାବାସିନାମ୍
ସ୍ୟାଦାୟୁଃସୁକୃତକ୍ଷୟୋ ମୁନିକୃତାଂ ସୀମାମିମାମୁଜ୍ଝତଃ ।୧୧।

ଉକ୍ତ ସମସ୍ତଜ୍ଞାନଦର୍ପ୍ୟ ଓ ଅତୀନ୍ଦ୍ରିୟ ଅର୍ଥାତ୍ ଏହି ଜ୍ଞାନକୁ କୌଣସି ଇନ୍ଦ୍ରିୟ ପାଇବାର ନୁହେଁ । ଏହା ବ୍ରହ୍ମା କହିଥିଲେ ଏବଂ ବଶିଷ୍ଠ ଆଦ ଋଷିମାନେ ପରଂପରା କଣତଃ ଏ ଜ୍ଞାନ ପୃଥିବୀକୁ ଆଣିଲେ । ଏଣୁ ଏହିପରି ଭଲ ଜିନିଷକୁ ହିଂସ୍ରକ, କୃତଘ୍ନ, ଦୁର୍ବୃତ୍ତ ଓ ବେଶିଦିନ ନିଜପାଖରେ ନ ରହୁଥିବା ଲୋକଙ୍କୁ ଦେବା ଉଚିତ ନୁହେଁ । ମୁନିଋଷିମାନେ ଏହା କହିରଖିଛନ୍ତି । ଏ କଥା ନ ମାନି ମୁନିଋଷିଙ୍କ ସୀମା ଟପିଗଲେ ଆୟୁ ଓ ପୁଣ୍ୟ କ୍ଷୟହେବ । ଏଥିନିମିତ୍ତ ସାବଧାନ ହେବା ବାଞ୍ଛନୀୟ ।

କୃତପ୍ରତନବୃତ୍ତୟୋ ମନୁଜବୀଥୟୋଯନ୍ମହା
ପ୍ରସାଦପରପୂରିତୋଦରକରାନନାଃ ପାବନାଃ ।
ପୁନନ୍ତି ପତିତାନ୍ ପଥି ସ୍ୱତନୁମାରୁତୈର୍ମାଦୃଶୋ
ଦୃଶୋର୍ବହତୁ ମେଽନ୍ୱହଂ ମହମଦୋ ମହାନ୍ତଂ ମହଃ ।୧୨।

ଯାହାର ମହାପ୍ରସାଦ ହାତ, ପାଟି ପେଟରେ ପୂରାଇ ଲୋକେ ପୁଣି ଜନ୍ମ ହେବାରୁ ରକ୍ଷାପାନ୍ତି (ଜନ୍ମାନ୍ତରରୁ ରକ୍ଷାପାନ୍ତି), ଏବଂ ସେମାନଙ୍କ ଶରୀର ପବନଦ୍ୱାରା ଆମ ଭଳି (ମୋ ଭଳି) ପତିତମାନଙ୍କର ଉଦ୍ଧାରହୁଏ, ସେହି ଜଗନ୍ନାଥଙ୍କ (ତେଜ) କାନ୍ତି ପ୍ରତ୍ୟହ ମୋର ଆନନ୍ଦ (ଉତ୍ସବ) ବା ସୁଖକୁ ମୋର ଆଖିଆଗରେ ରଖନ୍ତୁ । ମୋର ସର୍ବଦା ଆନନ୍ଦ ଓ ସୁଖ ହେଉ ।

ଇତ୍ଥ୍ୟତ୍କଳୋଦ୍ଭୂନନୃପାଳକୁଳପ୍ରସୂତ
ଶ୍ରୀ ଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ବଂଶୋଽଗମଦ୍ଘଟିତଯନ୍ତ୍ରକଥଃ ପ୍ରକାଶଃ ।୧୩।

ଇତି ଶ୍ରୀଚନ୍ଦ୍ରଶେଖର ସିଂହକୃତୌ ସିଦ୍ଧାନ୍ତଦର୍ପଣେ ଗୋଳାଧିକାରେ ଗୋଳାଦିଯନ୍ତ୍ର ବର୍ଣ୍ଣନୋ ନାମ ବଂଶତିତମଃ ପ୍ରକାଶଃ ।

ଯନ୍ତ୍ରକଥା ବର୍ଣ୍ଣିତ ବଂଶପ୍ରକାଶ ଏଠାରେ ଶେଷହେଲା ।

## —ଏକବିଂଶଃ ପ୍ରକାଶଃ—

॥ ବାସନା ଶେଷ ରହସ୍ୟ ବର୍ଣ୍ଣନମ୍ ॥

କୃତ୍ୱା ଗ୍ରହାଣାଂ ଗୋଳାନାଂ ଗଣିତକ୍ରମ ବର୍ଣ୍ଣନମ୍
ପ୍ରତ୍ୟୁକ୍ତିଶେଷମିଷତୋ ବାସନାଦିକ୍ ପ୍ରଦର୍ଶ୍ୟତେ ।୧।

ବ୍ୟକ୍ଷେ୍ୟ କ୍ଷିତିଜବୃତ୍ତଂ ଯତ୍ତଦୁନ୍ମଣ୍ଡଳମନ୍ୟତଃ
ସ୍ୱଦେଶକ୍ଷିତିଜେ ସୂର୍ଯ୍ୟୋଦୟୋଽସ୍ମାତ୍ ସ୍ୱକରକ୍ଷୟୋଃ ।୨।

ଦ୍ୟୁରାତ୍ରବୃତ୍ତାନ୍ୟସ୍ମତେଶ୍ଚରଂ ସୂର୍ଯ୍ୟୋଦୟାନ୍ତରମ୍
ଦ୍ୟୁରାତ୍ରମଣ୍ଡଳେ ଯସ୍ମାତ୍ କ୍ଷିତିଜା ଦୁପରସ୍ଥିତେ ।୩।

ଦିନଂ ଭବେଦଧଃସଂସ୍ଥେ ତତୋ ଭବତି ଯାମିନୀ
ତସ୍ମାତ୍ ସମତ୍ୱଂ ସତତଂ ଦ୍ୟୁନିଶୋର୍ବ୍ୟକ୍ଷ୍ୟଦେଶକେ ।୪।

ନିରକ୍ଷୋଦୟତଃ ପୂର୍ବଂ ସୌମ୍ୟଗୋଳେ ସ୍ୱଦେଶଜଃ
ଉଦୟୋଽସ୍ତମୟଃ ପଶ୍ଚାଦ୍ୟାମ୍ୟଗୋଳେ ବିପର୍ଯ୍ୟୟଃ ।୫।

କ୍ଷିତିଜୋର୍ଦ୍ଧ୍ୱାଧରଃସ୍ଥତ୍ୱାଦ୍ଦୁଦ୍ ବୃତ୍ତସ୍ୟ ଚ ଗୋଳୟୋଃ
ସୌମ୍ୟେ ମହଦ୍ଦିନଂ ରାତ୍ରିସ୍ତନୁର୍ଯ୍ୟାମ୍ୟେ ତୁ ବାମ୍ୟତଃ ।୬।

ଗ୍ରହ ଓ ଗୋଳର ଗଣିତକ୍ରମ ବର୍ଣ୍ଣନା କରିସାରିବାପରେ ଶେଷ ପ୍ରଶ୍ନୋତ୍ତର ଛଳରେ ଯୁକ୍ତିର ଦିଗ୍‌ଦର୍ଶନ କରାଇ ଦିଆଯାଉଛି ।

ଦିନରାତ୍ର ବଡ଼ ବା ଓ କମିବାର କାରଣ.—ନିରକ୍ଷ ଦେଶସ୍ଥ ର (ବିଷୁବ ବୃତ୍ତସ୍ଥ ଦେଶ- ମାନଙ୍କର) କ୍ଷିତିଜକୁ ଅନ୍ୟ ସ୍ଥାନର ଲୋକେ ଉନ୍ମଣ୍ଡଳ କହନ୍ତି । ନିଜ ନିଜ ଦେଶ କ୍ଷିତିଜରେ ସୂର୍ଯ୍ୟୋଦୟ ହୁଏ । ନିଜ ଦେଶର କ୍ଷିତିଜ ଏବଂ ନିରକ୍ଷ ଦେଶର କ୍ଷିତିଜ ମଧ୍ୟରେ ଅହୋରାତ୍ର ବୃତ୍ତ ଖଣ୍ଡିତ ହୁଏ । ଏହା ଉଭୟ ସୂର୍ଯ୍ୟୋଦୟର ତଫାତ୍ ସମୟ । ସ୍ୱକ୍ଷିତିଜ ଉପରକୁ ଅହୋରାତ୍ର ବୃତ୍ତରେ ସୂର୍ଯ୍ୟ ବୁଲୁଥିବାବେଳେ ଦିନ ଏବଂ ସେହି ବୃତ୍ତରେ କ୍ଷିତିଜ ତଳକୁ ରବି ଗଲେ ରାତ୍ରି ହୁଏ । ନିରକ୍ଷ ବୃତ୍ତ ମଧ୍ୟ ସର୍ବବୃହତ୍ ଅହୋରାତ୍ର ବୃତ୍ତ । ଏହାକୁ ଓ ଅନ୍ୟ ସମସ୍ତ ଅହୋରାତ୍ର ବୃତ୍ତକୁ ନିରକ୍ଷ ଦେଶର କ୍ଷିତିଜ ସମାନ ଦୁଇଭାଗରେ ବିଭକ୍ତ କରେ ବୋଲି ଏ ବୃତ୍ତମାନଙ୍କରେ ସୂର୍ଯ୍ୟ ଘୂରୁଥିବା ବେଳେ ଦିନ ରାତ୍ରି ସମାନ ଅର୍ଥାତ୍ ୩୦ ଦଣ୍ଡ । ଏହା ନିରକ୍ଷ

ଦେଶର କଥା, ବିଷୁବରେଖାରେ ସୂର୍ଯ୍ୟ ଘୂରୁଥିବାବେଳେ ଉନ୍ମଣ୍ଡଳ ଓ ନିଜ କ୍ଷିତିଜ ବୃତ୍ତର କିଛି ବ୍ୟବଧାନ ନ ଥିବାରୁ ଏକ ଉଦୟ ଓ ଅସ୍ତ ବିନ୍ଦୁରେ ପରସ୍ପର କଟାକଟି ହୋଇଥିବାରୁ ଅନ୍ୟ ଦେଶରେ ମଧ୍ୟ ସେହିଦିନ, ଦିନ ଓ ରାତ୍ରି ପ୍ରତ୍ୟେକେ ସମାନ ପ୍ରତ୍ୟେକେ ୩୦ ଦଣ୍ଡ । ବିଷୁବରେଖାଠାରୁ ଉତ୍ତରରେ ଥିବା ଦେଶର ସୂର୍ଯ୍ୟୋଦୟ ବିଷୁବର ଉଦୟଠାରୁ ପ୍ରଥମେ ହୁଏ, ଏବଂ ଅସ୍ତ ପରେ ହୁଏ । ଦକ୍ଷିଣ ଗୋଳରେ ଏହାର ବିପରୀତ ହୁଏ ।

ସାର୍ଦ୍ଧଷଟ୍‌ଷଷ୍ଟିଭାଗେଭ୍ୟା ଦେଶେ ଯଦ ପଳାଂଶକାଃ
ଭବନ୍ତ୍ୟଭ୍ୟଧିକାସ୍ତତ୍ର ବିଶେଷୋଽପର ଉଚ୍ୟତେ । ୭ ।

ଲମ୍ବାଧିକୋତ୍ତରକ୍ରାନ୍ତିର୍ଯାବତ୍ତାବତ୍‌ସଦା ଦିନମ୍
ଯାମ୍ୟକ୍ରାନ୍ତିସ୍ତଥା ଯାବତ୍ତାବତ୍ତତ୍ର ନିଶାନିଶମ୍ । ୮ ।

ଯେଉଁ ଦେଶର ଅକ୍ଷାଂଶ ୬୬½ ଅଂଶରୁ ବେଶୀ ସେହି ଦେଶରେ କେତେକ ବିଶେଷ ଘଟଣା ହୁଏ । ସେହିକଥା ଏଠାରେ କୁହାଯାଉଛି । ଉତ୍ତରକ୍ରାନ୍ତି ଯେତେଦିନ ପର୍ଯ୍ୟନ୍ତ ଲମ୍ବାଂଶରୁ ଅଧିକ ଥିବ ସେତେଦିନ ପର୍ଯ୍ୟନ୍ତ ସେହିଦେଶରେ ବରାବର ଦିନହିଁ ରହିବ, ରାତି ଆଦୌ ହେବ ନାହିଁ । ରୁଷିଆର କେତେକ ଉତ୍ତରାଞ୍ଚଳରେ ଏହା ହୁଏ । ସେହି ଦେଶରେ ପୁଣି ରବିର ଦକ୍ଷିଣକ୍ରାନ୍ତି ଯେତେ ଦିନ ପର୍ଯ୍ୟନ୍ତ ଲମ୍ବାଂଶରୁ ଅଧିକ ଥିବ ସେତେ-ଦିନ ଧରି ସେହି ଦେଶରେ ଅନବରତ ରାତିହିଁ ହେବ ।

ଦେବାସୁରାଣାଂ କ୍ଷିତିଜଂ ବିଷୁବଦ୍‌ବଳୟଂ ଯତଃ
ସୌମ୍ୟଯାମ୍ୟଧ୍ରୁବୌ ତେଷାଂ ମସ୍ତକୋର୍ଦ୍ଧ୍ୱସ୍ଥିତୌ ତତଃ । ୯ ।

ଉର୍ଦ୍ଧ୍ୱେ ଭ୍ରମନ୍ତଂ କ୍ଷିତିଜାଦୁଦଗ୍‌ଦକ୍ଷିଣ-ଗୋଳୟୋଃ
ସବ୍ୟଗଂ ସୂର୍ଯ୍ୟମୀକ୍ଷ୍ୟନ୍ତେ ଦେବା ଦୈତ୍ୟାସ୍ତ୍ୱସବ୍ୟଗମ୍ । ୧୦ ।

ଅସ୍ମାଦୁତ୍ତରଗୋଳସ୍ଥେ ଭାନୌ ଦିବଷଦାଂ ଦିନମ୍
ରବିରନ୍ୟତ୍ର ଦୈତ୍ୟାନାଂ ବୈପରୀତ୍ୟାଦହର୍ନିଶମ୍ । ୧୧ ।

ସୁରାଣାଂ ଦିନଯାମିନ୍ୟୌ ସୌମ୍ୟଯାମ୍ୟାୟନେ ଇତ
ସ୍ଫୁଟାର୍କେନୋନ୍ନତେ ରବ୍ୟୁନ୍ନତେ ଖେଽର୍କେ ସମତା ତୟୋଃ । ୧୨ ।

ନିଶାହର୍ଦଳୟୋର୍ଭାନୋର୍ଯଦାରୋହାବରୋହୟୋଃ
ସ୍ୟାଦାରମ୍ଭସ୍ତତଃ କତ୍ୟ ଦେବାନାଂ ସ୍ୟାଦ୍‌ଦ୍ୟୁସର୍ଜନମ୍ । ୧୩ ।

ଦେବ ଓ ଅସୁରମାନଙ୍କର କ୍ଷିତିଜ ବିଷୁବବୃତ୍ତ ଅଟେ । ଏଣୁ ଉତ୍ତର ଧ୍ରୁବ ଦେବତାଙ୍କ ଖସ୍ୱସ୍ତିକରେ ରହେ । ଫଳରେ ଉତ୍ତର ମେରୁରେ ଥିବା ଦେବତାମାନେ ଉତ୍ତରାୟଣରେ ସୂର୍ଯ୍ୟଙ୍କୁ ସେମାନଙ୍କ ଦକ୍ଷିଣରେ ବୁଲୁଥିବା ଦେଖନ୍ତି । ସାୟନ ମେଷ ଓ ସାୟନ ତୁଳାଦିକୁ ବିଷୁବବୃତ୍ତ କାଟୁଅଛି । ଏଣୁ ଦେବତାମାନେ ସେମାନଙ୍କ କ୍ଷିତିଜ ବିଷୁବବୃତ୍ତର ଉତ୍ତରକୁ ସୂର୍ଯ୍ୟଙ୍କୁ ଛ ମାସ ପର୍ଯ୍ୟନ୍ତ ଦେଖନ୍ତି । ସେତେବେଳେ ଅସୁରମାନେ ସୂର୍ଯ୍ୟଙ୍କୁ ଆଦୌ ଦେଖିପାରନ୍ତି ନାହିଁ । କାରଣ ସୂର୍ଯ୍ୟ ସେମାନଙ୍କ କ୍ଷିତିଜ ବିଷୁବର ତଳେ ରହିଯାଏ । ଫଳରେ ଦେବତାମାନଙ୍କର ମେଷାଦି ଛ ମାସ ଦିନ ଓ ଅସୁରମାନଙ୍କର ତୁଳାଦି ଛ ମାସ ଦିନ ହୁଏ । ଏହାର ବିପରୀତ ଭାବରେ ରାତ୍ରି ଚିନ୍ତା କରିବ । ଜଣକର ଦିନ ହେଲେ ଅନ୍ୟ ଜଣକର ରାତ୍ରି ହୋଇଥାଏ । ସୂର୍ଯ୍ୟଙ୍କ ଉତ୍ତରାୟଣ ଓ ଦକ୍ଷିଣାୟନ ଯଥାକ୍ରମେ ଦେବତା ଓ ଅସୁରମାନଙ୍କର ଦିନ ବୋଲି ମୂଳରେ କଥିତ ଅଛି । ଉତ୍ତରାୟଣ ମକର ଆଦି ଛ ମାସ ଓ ଦକ୍ଷିଣାୟନ କର୍କଟ ଆଦି ଛ ମାସ ଏବଂ ଏହାହିଁ ଯଥାକ୍ରମେ ଦେବ ଓ ଅସୁରମାନଙ୍କ ଦିନ ବୋଲି ଯାହା କୁହାଯାଇଛି ତାର କାରଣ ସ୍ୱରୂପ ଏହା କୁହାଯାଇପାରେ ଯେ ରାତ୍ରି ଅର୍ଦ୍ଧରୁ ସୂର୍ଯ୍ୟ ଦିନ ଆଡ଼କୁ ମୁହାଁନ୍ତି ଏବଂ ଦିନାର୍ଦ୍ଧରୁ ରାତ୍ରି ଆଡ଼କୁ ମୁହାଁନ୍ତି । ସେଥିପାଇଁ ରାତ୍ର୍ୟର୍ଦ୍ଧରୁ ଦିନର ଆରମ୍ଭ ଓ ଦିନାର୍ଦ୍ଧରୁ ରାତ୍ରିର ଆରମ୍ଭ କହିବା ଯୁକ୍ତିଯୁକ୍ତ । (ଏବେ ମଧ୍ୟ ମଧ୍ୟ-ରାତ୍ରରୁ ତାରିଖର ଆରମ୍ଭ ହୋଇଯାଉଛି) । ଫଳତଃ ଉତ୍ତରାୟଣ ଆରମ୍ଭରେ ଦେବତାମାନଙ୍କ ପାଇଁ ସୂର୍ଯ୍ୟଙ୍କ ଦିନୋନ୍ମୁଖତା ଏବଂ ଦକ୍ଷିଣାୟନ ପ୍ରାରମ୍ଭରେ ଅସୁରମାନଙ୍କ ପାଇଁ ସୂର୍ଯ୍ୟଙ୍କ ଦିନୋନ୍ମୁଖତା ଯୋଗେ (ଦେବତାମାନଙ୍କର ରାତ୍ରି-ଉନ୍ମୁଖତା) ଦିନକୃତ୍ୟ ହୋଇଥାଏ । ଏହି ହିସାବରେ ମନୁଷ୍ୟମାନେ ମଧ୍ୟ ଦେବକୃତ୍ୟାକୃତ୍ୟ କରିବାକୁ ବାଧ୍ୟ ହୋଇଥାନ୍ତି ।

କୁହ୍ୱାତଦୂରଗଂ ଭୂମେଃ ପଶ୍ୟେଦାପ୍ରଳୟଂ ରବିମ୍
ଦିନାଚନ୍ତେଽସ୍ତମିତେ ଶେଟେତ ତଦେବୁ୍ୟକ୍ତଃ ପୁରାବିଦାମ୍ । ୧୪ ।

ଅନ୍ୟସ୍ୟ ତଦହଃକର୍ତ୍ତୁର୍ମନନେ ଯତ ଭସ୍ୱତଃ
ଭ୍ରାନ୍ତିର୍ଯୁଗସହସ୍ରାଭ୍ୟାମେକା ତସ୍ୟାପିମନ୍ୟତାମ୍ । ୧୫ ।

ଦିନଂ ସ୍ୟାଦ୍ଦର୍ଶନେ ଭାନୋର୍ଯତୋ ରାତ୍ରିରଦର୍ଶନେ
ପିତୃଣାଂ ତଦ୍ଦିନଂ ମାସା ଶଶିପୃଷ୍ଠନିବାସିନାମ୍ । ୧୬ ।

ମଧ୍ୟଦିନଂ ସ୍ୟାଦ୍ଦର୍ଶାନ୍ତେ ପୂର୍ଣ୍ଣିମାନ୍ତେ ନିଶାଦଳମ୍
ସିତେତେଽସିତେ ପକ୍ଷଦଳେ ସାୟଂ ପ୍ରାତରତଃ କ୍ରମାତ୍ । ୧୭ ।

ବ୍ରହ୍ମା ପୃଥିବୀଠାରୁ ବହୁ ଦୂରରେ ଥିବାରୁ ପ୍ରଳୟ ପର୍ଯ୍ୟନ୍ତ ସବୁ ସମୟରେ ସୂର୍ଯ୍ୟଙ୍କୁ ଦେଖି ପାରୁଛନ୍ତି । ଦିନାବସାନରେ ସୂର୍ଯ୍ୟ ଅସ୍ତମିତ ହେଲେ ସେ ଶୁଅନ୍ତି । ଏହା ପୁରାଣରେ ଅଛି ।

ଆମର ଏହି ସୂର୍ଯ୍ୟ ଯେପରି ଦେବ ଦାନବ ଓ ମାନବ ଆଦିଙ୍କର ଦିନରାତ୍ର କରୁ-ଅଛନ୍ତି, ହଜାରେ ମହାଯୁଗରେ ଅନ୍ୟ ଗୋଟିଏ ସୂର୍ଯ୍ୟ ସେହିପରି ବ୍ରହ୍ମାଙ୍କ ଅହୋରାତ୍ର କରନ୍ତି, ଏହିପରି କଳ୍ପନା କଲେ ମଧ୍ୟ ହେବ ।

(ପିତୃଅହୋରାତ୍ର)—ରବି ଦର୍ଶନରେ ଦିନ ଓ ରବି ଅଦର୍ଶନରେ ରାତ୍ରି ହୁଏ । ଏହାହିଁ ଦିନ ରାତ୍ରିର ସ୍ପଷ୍ଟ ଲକ୍ଷଣ, ପିତୃଲୋକେ ଚନ୍ଦ୍ରର ପୃଷ୍ଠରେ ବାସକରୁଥିବାରୁ ଗୋଟିଏ ଚାନ୍ଦ୍ରମାସ ସେମାନଙ୍କର ଦିନରାତ୍ରି, ଅମାନ୍ତରେ ସେମାନଙ୍କର ଦିନାର୍ଦ୍ଧ ଓ ପୂର୍ଣ୍ଣାନ୍ତରେ ସେମାନଙ୍କର ରାତ୍ର୍ୟର୍ଦ୍ଧ ହୋଇଥାଏ । ଶୁକ୍ଳପକ୍ଷର ଅଷ୍ଟମୀ ଅର୍ଦ୍ଧରେ ସେମାନଙ୍କର ସନ୍ଧ୍ୟା ଏବଂ କୃଷ୍ଣ ପକ୍ଷର ଅଷ୍ଟମୀ ଅଧାରେ ସେମାନଙ୍କର ସକାଳ ହୁଏ ।

**ଯଦାପମଣ୍ଡଳଂ ପ୍ରାଚ୍ୟାଂ ଲଗତି କ୍ଷିତଜେ ଲବେ**
**ଲଗ୍ନସ୍ତଦ୍ରାଶିଭଗାଦ୍ୟଂ ଅସ୍ତଲଗ୍ନଂ ପରେ କୁଜେ ।୧୮।**

**କ୍ଷିତଜଦ୍ୱୟମଧ୍ୟସ୍ଥୌ ପ୍ରଦେଶାବଧରୋର୍ଦ୍ଧ୍ୱଗୌ**
**ପାତାଳମଧ୍ୟଲଗ୍ନାଖ୍ୟୌ ଜ୍ଞେୟୌ ବିପ୍ରଶ୍ନଦର୍ଶନାତ୍ ।୧୯।**

ପୂର୍ବକ୍ଷିତଜରେ କ୍ରାନ୍ତିବୃତ୍ତର ଯେଉଁ ଅଂଶ ଯେତେବେଳେ ଲାଗେ ତାହାହିଁ ସେହି ସମୟର ଲଗ୍ନ, ପଶ୍ଚିମ କ୍ଷିତଜରେ ଉକ୍ତ କ୍ରାନ୍ତି ବୃତ୍ତର ଯେଉଁ ଅଂଶ ଯେତେବେଳେ ଲାଗେ ତାହା ହିଁ ସେତେବେଳର ଅସ୍ତ ଲଗ୍ନ । ଏହି ପୂର୍ବ ଓ ପଶ୍ଚିମ କ୍ଷିତଜ ମଧ୍ୟରେ ଅଧ ଓ ଊର୍ଦ୍ଧ୍ୱ ଭାଗରେ କ୍ରାନ୍ତି ବୃତ୍ତର ଯେଉଁ ଅଂଶ ରହେ ତାହାହିଁ ଯଥାକ୍ରମେ ଚତୁର୍ଥ ଓ ଦଶମ ଲଗ୍ନ । ଏ କଥା ତ୍ରିପ୍ରଶ୍ନାଧିକାରରେ ବର୍ଣ୍ଣିତ ହୋଇ ରହିଛି ।

**ତରଣ୍ଡୀନୋଽପବୃତ୍ତସ୍ୟ ପ୍ରଦେଶୋଽସ୍ତମୟୋଦୟୌ**
**ଯାତ୍ୟଳ୍ପକାଳେନ ରଜୁର୍ବହୁନା ସମୟେନ ଯତ୍ ।୨୦।**

**ତତୋ ନ ତୁଲ୍ୟା ଉଦୟା ବ୍ୟକ୍ଷେ ଚକ୍ରାଂଘ୍ରୟଃ ପୃଥକ୍**
**ଉଦ୍ୟନ୍ତି ତଥିନାଡ଼ୀଭିର୍ଦ୍ଧୈର୍ଦ୍ଧେ ସବଂଶ ଖାଗ୍ନିଭିଃ ।୨୧।**

ଅଜାଦିଂ କ୍ଷିତଜେ କୃତ୍ୱା ଭ୍ରମୟନ୍ ଗୋଲକଂ ସୁଧୀଃ
ସର୍ବମୁକ୍ତଂ ଅନୁକ୍ତଂ ଚ ଶିଷ୍ୟବୋଧାୟ ଦର୍ଶୟେତ୍ ।୨୨।

କ୍ରାନ୍ତି ବୃତ୍ତର ଟେରଛସ୍ଥାନ ଅଳ୍ପ ସମୟରେ ଅସ୍ତ ଓ ଉଦୟ ହୁଏ । କିନ୍ତୁ ତାହାର ସରଳସ୍ଥାନ ଉଦୟ ଓ ଅସ୍ତ ହେବାକୁ ବେଶି ସମୟ ନିଏ । ଏଣୁ କ୍ରାନ୍ତି ବୃତ୍ତରେ ଥିବା ସବୁ ରାଶିର ଉଦୟ ସମାନ ନୁହେଁ । ନିରକ୍ଷ ଦେଶରେ ୯୦° (ନବେ ଅଂଶ) ୧୫ ଘଟୀରେ ଉଦୟ ନିଏ ଏବଂ ୧୮୦° (ଏକଶହ ଅଶୀ ଅଂଶ) ୩୦ ଘଟୀରେ ଉଦୟ ନିଏ । ସାୟନ ମେଷାଦିକୁ କ୍ଷିତିଜ ବୃତ୍ତରେ ଲଗାଇ ବଙ୍କ ଗୁରୁ ଭଗୋଳକୁ ବୁଲାଇବେ । ଆମେ ଏଠାରେ ଯାହା କହିଲୁ ଯାହା ନ କହିଲୁ ସବୁ କଥା ସତ୍ ଶିଷ୍ୟର ବୋଧ ନିମନ୍ତେ ଗୁରୁ ଗୋଲକୁ ଘୂରାଇ ଦେଖାଇବେ ।

ଅକ୍ଷାଂଶାଃ ପଞ୍ଚମାଂଶୋନାଃ ସପ୍ତତର୍ଯଦି ତଦ ହି
ନେକ୍ଷ୍ୟେତେ ନକ୍ରଧନୁଷୀ କର୍କଯୁଗ୍ମେ ସଦୋଦିତେ ।୨୩।

ସାର୍ଦ୍ଧାଷ୍ଟାଦ୍ରି ମିତା ଯଦି ତଦ୍ରାଶିଚତୁଷ୍ଟୟମ୍
ବୃଶ୍ଚିକାଦ୍ୟମଦୃଶ୍ୟଂ ସ୍ୟାଦ୍ ବୃଷଭାଦ୍ୟଂ ସଦୋଦିତମ୍ ।୨୪।

ପଳାଂଶା ନବତର୍ଯଦି ସୁମେବାଖ୍ୟେଽଦି କେନ୍ଦ୍ରକେ
ଭାର୍ଦ୍ଧଂ ତୁଲାଦ୍ୟଲକ୍ଷ୍ୟଂ ସ୍ୟାତ୍ ସଦୋଦିତମଜାଦିକମ୍ । ୨୫ ।

ଏବଂ ଦୈବେ ଭୁବୋ ଭାଗେଽଥାସୁରେଽକ୍ଷଲବକ୍ରମାତ୍
ବ୍ୟତ୍ୟୟାଦ୍ଦୃଷ୍ଟଲୁପ୍ତାଃ ସ୍ୟୁ ରାଶୟୋଽୟନସଂସ୍କୃତାଃ । ୨୬।

ଯେଉଁଠାରେ ଅକ୍ଷାଂଶ ୬୯।୪୮ ସେଠାରେ ଧନୁ ଓ ମକର ଦେଖାଯାନ୍ତି ନାହିଁ । (ଆଦୌ ଉଦୟ ହୁଅନ୍ତି ନାହିଁ ) । ପୁଣି ସେଠାରେ ମିଥୁନ ଓ କର୍କଡ଼ା ସର୍ବଦା ଉଦିତ (କ୍ଷିତିଜ ଉପରକୁ) ରହନ୍ତି ।

ଯେଉଁ ସ୍ଥାନର ଅକ୍ଷାଂଶ ପୁଣି ୭୮।୩୦ ସେଠାରେ ବୃଶ୍ଚିକ ଆଦି ଚାରି ରାଶି ସର୍ବଦା ଅଦୃଶ୍ୟ (କ୍ଷିତିଜର ତଳେ) ହୁଅନ୍ତି । ବୃଷ ଆଦି ଚାରି ରାଶି ପୁଣି ସର୍ବଦା ଉଦିତ ରହନ୍ତି । (କ୍ଷିତିଜ ଉପରେ ରହନ୍ତି )

ସୁମେରୁ ପାଖରେ ଅକ୍ଷାଂଶ ୯୦ । ଏଣୁ ଏଠାରେ ତୁଲା ଆଦି ୬ ରାଶି ଦେଖାଯାନ୍ତି ନାହିଁ (କ୍ଷିତିଜ ତଳେ ରହନ୍ତି) ପୁଣି ମେଷ ଆଦି ୬ ରାଶି ସର୍ବଦା ଉଦିତ ରହିଥାନ୍ତି ।

(କ୍ଷିତିଜ ଉପରେ ରହନ୍ତି) ଏହିପରି ଭାବରେ ଦେବଭାଗରେ (ଉତ୍ତର ଗୋଲାର୍ଦ୍ଧରେ) ଓ ରାକ୍ଷସ ଭାଗରେ (ଦକ୍ଷିଣ ଗୋଲାର୍ଦ୍ଧରେ) ଅକ୍ଷାଂଶ ଗଣନାରେ ହିଁ ଦୃଷ୍ଟ ଅଦୃଷ୍ଟ ହୁଏ, ଅର୍ଥାତ୍ ଦେବତାଙ୍କୁ ଯେଉଁ ବିଷୟଗୁଡ଼ିକ ସର୍ବଦା ଦୃଷ୍ଟ ହୁଅନ୍ତି ଅସୁରମାନଙ୍କୁ ସେ ବିଷୟ ଆଦୌ ଦେଖାଯାଏ ନାହିଁ ।

ଏପରି ଦେବାସୁର ବିଭାଜନ ବଡ଼ ବିଚକ୍ଷଣ । ଏଠାରେ ଯେଉଁ ରାଶି ସବୁର ଉଲ୍ଲେଖ କରାଗଲା ସେ ସବୁ ସାୟନ ବା ଅୟନ ସଂସ୍କୃତ ବୋଲି ବୁଝିବାକୁ ହେବ ।

ଗ୍ରହାଣାଂ ଯୋଜନଗତେଃ ସାମ୍ୟଂ ସ୍ୱୀକ୍ରିୟତେ ଯଦି
ତଦା ଗତିକ୍ରମାତ୍ କକ୍ଷାବିସ୍ତାରଃ କର୍ତ୍ତୁମିଷ୍ୟତେ । ୨୭ ।

ତଥା ସତି ନ ଦୃକ୍ ତୁଲ୍ୟା ଶୈଘ୍ରାଃ ପରିଧୟୋ ହି ଯତ୍
ଭବନ୍ତୀତ୍ୟୁଦିତାଃ ସୂର୍ଯ୍ୟବୁଧାଦ୍ୟାଃ କ୍ରମମନ୍ଦଗାଃ । ୨୮ ।

ହାନିବୃଦ୍ଧ୍ୟୁକ୍ତିତଃ ଶୈଘ୍ରଫଳାନାଂ କ୍ରାନ୍ତିବାଣୟୋଃ
ସିଦ୍ଧାନ୍ତେଽନୁକ୍ତମପ୍ୟୁକ୍ତଂ ଜ୍ଞାଦୀନାମର୍କବେଷ୍ଟନମ୍ । ୨୯ ।

ଭ୍ରମନ୍ତି ପରିତ ଇନ୍ଦ୍ୱର୍କୌ ମଧ୍ୟମାର୍କାଦ୍ ବୁଧାଦୟଃ
ମଧ୍ୟାର୍କସାବନଦିନେ ଯାବଦ୍ୟାନ୍ତି ପୂର୍ବଦିଶମ୍ । ୩୦ ।

ସ୍ୱାଭାବିକୀ ଗତିଃ ସୈଷାଂ ମନ୍ଦୋଚ୍ଚାକର୍ଷଣାତ୍ତୁ ସା
କଳାଦୈର୍ଘ୍ୟଭିଦ୍ୟତେ ନିତ୍ୟଂ ଦୂରସାମୀପ୍ୟଯାନତଃ । ୩୧ ।

ଗ୍ରହମାନଙ୍କର ଯୋଜନ ଗତି ସମାନ ବୋଲି ସ୍ୱୀକାର କଲେ ସେମାନଙ୍କର କକ୍ଷା ବିସ୍ତୃତି ମଧ୍ୟ କରିବାକୁ ହେବ । ତାହା ମଧ୍ୟ ଯଦି ମାନି ନଆଯାଏ ତାହାହେଲେ ଗ୍ରହମାନଙ୍କର ଯେଉଁ ଶୀଘ୍ର ପରିଧି ଅଛି ସେଗୁଡ଼ିକ ଦୃକ୍ ସିଦ୍ଧ ହେବେ ନାହିଁ ।

ପୂର୍ବୋକ୍ତ କାରଣରୁ ରବି କେନ୍ଦ୍ରରୁ କ୍ରମରେ ଥିବା ବୁଧ ଓ ଶୁକ୍ର ଆଦି ଗ୍ରହ ଯଥାକ୍ରମେ ଅଳ୍ପ ଅଳ୍ପ ଯୋଜନ ଗତି କରନ୍ତି ବୋଲି ବରାବର ମୁଁ କହି ଆସୁଛି ।

ପୂର୍ବ ସିଦ୍ଧାନ୍ତ ମାନଙ୍କରେ ଗ୍ରହମାନଙ୍କର କ୍ରାନ୍ତି, ବାଣ ଓ ଶୀଘ୍ର ଫଳର କ୍ଷୟବୃଦ୍ଧି ରହିଥିବାରୁ ଜଣାଯାଏ ଯେ ସେମାନେ ସୂର୍ଯ୍ୟ କେନ୍ଦ୍ରିକ କକ୍ଷା ସ୍ୱୀକାର କରୁଛନ୍ତି—ମାତ୍ର କହୁନାହାନ୍ତି । ମୁଁ କିନ୍ତୁ ସେକଥା ସ୍ପଷ୍ଟ ପ୍ରକାଶ କରିଦେଲି ଏହାହିଁ ପ୍ରଭେଦ ।

ପୃଥିବୀର ଚାରିପାଖରେ ସୂର୍ଯ୍ୟ ଓ ଚନ୍ଦ୍ର ଭ୍ରମଣ କରୁଅଛନ୍ତି ଏବଂ ବୁଧ ଆଦି ଅନ୍ୟ ଗ୍ରହମାନେ ମଧ୍ୟମ ରବିକୁ ପରିଭ୍ରମଣ କରୁଛନ୍ତି । ମଧ୍ୟମ ରବି ସାବନ ଦିନରେ (ରବିର

ମଧ୍ୟମ ଗତି କଳା ସୂସ୍ପତ·ନକ୍ଷତ୍ର ୬° ଦଣ୍ଡରେ) ଏମାନଙ୍କର ଦୈନିକ ଗତି ହୁଏ । ଏବଂ ଏହି ଦୈନିକ ଗତିରେ ସେମାନେ ବରାବର ପୂର୍ବ ଆଡ଼କୁ ଯାଉଅଛନ୍ତି । ଏହାହିଁ ସେମାନଙ୍କର ସ୍ୱାଭାବିକ ଗତି । ଏହି ଗତିହିଁ ମନ୍ଦୋଚ୍ଚାକର୍ଷଣରୁ ହୋଇଥାଏ । ଗ୍ରହମାନଙ୍କର ପୃଥିବୀଠାରୁ ଦୂର ଓ ନିକଟସ୍ଥିତିବଶତଃ କଳାଦି ଗତି ଭିନ୍ନ ଭିନ୍ନ ହୋଇଥାଏ ।

ନାନାଚାର୍ଯ୍ୟୈରୁକ୍ତାନାଂ ଭଗଣାନାଂ ବିଭେଦତଃ
କୈଶ୍ଚିତ୍ କଲ୍ପାଦିକାଳସ୍ୟ ଗଣନାସମ୍ମତା ନ ଯତ୍ । ୩୨ ।

ତତ୍ ପାଷଣ୍ଡମତଂ ଯସ୍ମାତ୍ ସିଦ୍ଧାନ୍ତୋଦିତ ପର୍ଯ୍ୟୟୈଃ
ତଦୁକ୍ତକୁଦିନାନୀତମଧ୍ୟମେନ୍ଦୁବିବସ୍ୱତୋଃ । ୩୩ ।

ଅଦ୍ୟାବଧ୍ୟାର୍ଯ୍ୟଭଟସ୍ୟ କାଳାତ୍ ଶକ୍ରଶତାବ୍ଦତଃ
କଳାଭେଦୋଽପି ନୋ ଲବ୍ଧସ୍ତତ୍କଥଂ ଭ୍ରାନ୍ତିର୍ମୃଷା । ୩୪ ।

ସ୍ଥିରତ୍ୱାନ୍ମନ୍ଦତୁଙ୍ଗସ୍ୟ ଭାନୋର୍ମଧ୍ୟଗତର୍କନୈଃ
ଭୂଚ୍ଛାୟାଦିସମାଲୋକାଦୁପଞ୍ଜଷାଦେ ପ୍ରତୀୟତାମ୍ । ୩୫ ।

ଚନ୍ଦ୍ର-ତତ୍ତୁଙ୍ଗୟୋର୍ନିତ୍ୟଂ ଚଳନାଦ୍ଭଗଣାସ୍ତୟୋଃ
ନ ଶକ୍ୟନ୍ତେ ନୃଭିର୍ଜ୍ଞାତୁଂ ବିନା ସିଦ୍ଧାନ୍ତଦର୍ଶନାତ୍ । ୩୬ ।

ଜ୍ଞାୟତାଂ ତଦ୍ୱିଶେଷୋଽପି ବହୁଭ୍ରମଣଦର୍ଶିଭିଃ
ମନ୍ଦୋଚ୍ଚାଭ୍ୟାଂ ଶନେର୍ଭେଦଂ ଶତାବ୍ଦୈର୍ଜ୍ଞାୟତେ କଥମ୍ । ୩୭ ।

ତସ୍ମାଦ୍ରବିନ୍ଦୁଭଗଣା ବର୍ଷ ମାସ ଦିନାନି ଚ
ଲଙ୍କାର୍ଦ୍ଧରାତ୍ରଃ ସର୍ବାଦିରତ ସିଦ୍ଧାନ୍ତବାଗ୍ ଧ୍ରୁବା । ୩୮ ।

ଜ୍ୟୋତିଷରେ ଆଚାର୍ଯ୍ୟମାନେ ଗ୍ରହ ଓ ଉଚ୍ଚାଦିର ଭଗଣ କହିବାରେ ଭିନ୍ନ ଭିନ୍ନ ମତ ପୋଷଣ କରୁଥିବାର ଦେଖି କେହି କେହି ଗଣକ କଳ୍ପ ଆଦି କାଳର ମଧ୍ୟ ଗଣନା ଠିକ୍ ନୁହେଁ ବୋଲି କହିଛନ୍ତି । କିନ୍ତୁ ଏପରି କହିବା ଶାସ୍ତ୍ର ବିରୁଦ୍ଧ ଅଟେ । (ଏଠାରେ ଆର୍ଯ୍ୟଭଟ୍ଟଙ୍କ ଉକ୍ତିକୁ ନିନ୍ଦା କରାଯାଇଛି କାରଣ ଏପରି ମତ ସେ ପୋଷଣ କରିଛନ୍ତି ।

ଆର୍ଯ୍ୟଭଟ୍ଟଙ୍କ ସମୟରୁ ବର୍ତ୍ତମାନ (ସାମନ୍ତଙ୍କ ସମୟ) ସମୟ ୧୮୦୦ ବର୍ଷ ହୋଇ-ଯାଇଥିଲେ ହେଁ ପ୍ରାଚୀନ ସିଦ୍ଧାନ୍ତରେ ପ୍ରଦତ୍ତ ମଧ୍ୟମସୂର୍ଯ୍ୟ ଓ ଚନ୍ଦ୍ରର ଭଗଣରୁ କଳ୍ପସାବନ୍-ଦିନାଦିଦ୍ୱାରା ଆନୀତ ବର୍ତ୍ତମାନର ମଧ୍ୟମସୂର୍ଯ୍ୟ ଓ ମଧ୍ୟମ ଚନ୍ଦ୍ରରେ କଳାଟିଏ ଭେଦମଧ୍ୟ

ପରିଲକ୍ଷିତ ହେଉନାହିଁ । ତେଣୁ ପ୍ରାଚୀନ ଋଷିମାନେ କରିଥିବା ଶାସ୍ତ୍ର ଭ୍ରାନ୍ତ ବୋଲି କହିବା ଅତ୍ୟନ୍ତ ଅସମୀଚୀନ । ରବି ମନ୍ଦୋଚ୍ଚର ସ୍ଥିରତା (ଅତ୍ୟଳ୍ପ ଗତି) ହେତୁ ରବିର-ମଧ୍ୟମଗତି ଲୋକେ ପାଞ୍ଚ ଛଅ ବର୍ଷରେ ଭୂମି ଓ ଗ୍ରହ୍ୟାଦିଦ୍ୱାରା ଜାଣି ପାରିବେ । କିନ୍ତୁ ଚନ୍ଦ୍ରର ତଥା ତାହାର ମନ୍ଦୋଚ୍ଚର ପ୍ରତ୍ୟକ୍ଷ ଚଳତା (ଅତି ବେଶି ଗତି ) ହେତୁ ସେମାନଙ୍କ ଭଗଣ ସିଦ୍ଧାନ୍ତ ଗ୍ରନ୍ଥ ବ୍ୟତୀତ ଜାଣିବା କଷ୍ଟକର, ପ୍ରାୟ ଜାଣି ହେବନାହିଁ । ଚନ୍ଦ୍ରର ଗତି-ଭେଦ କେବଳ ବାରମ୍ବାର ପ୍ରତ୍ୟକ୍ଷୋପଲବ୍ଧି କରିବା ଲୋକ ହିଁ ଜାଣିପାରିବ । ଶନିର ଗତି ଅତ୍ୟନ୍ତ କମ୍ ହୋଇଥିବାରୁ ୧୦୦ ବର୍ଷରେ ମଧ୍ୟ ତାର ମଧ୍ୟ ଓ ମନ୍ଦୋଚ୍ଚ ଗତି ପ୍ରଭେଦ ଜାଣିହେବନାହିଁ । ଏହି ସବୁ କାରଣରୁ ରବି ଓ ଚନ୍ଦ୍ରର ଭଗଣ ବର୍ଷ, ମାସ, ଦିନ ଆଦିର ଗଣନା (କଳ୍ପରେ) ଅସତ୍ୟ ନୁହେଁ ଯଥାର୍ଥ । ଲଙ୍କା ଅର୍ଦ୍ଧରାତ୍ରିରେ ଯେ ସବୁ କଥାର (ଯେ ଭଗଣ, ଦିନ, ମାସ ବର୍ଷ ଆଦିର) ପ୍ରାରମ୍ଭ, ଏହି ସିଦ୍ଧାନ୍ତ ବଚନ ମଧ୍ୟସତ୍ୟ—କଦାପିମିଥ୍ୟା ନୁହେଁ ।

**ଚନ୍ଦ୍ରୋଚ୍ଚପାତଭୌମାଦୌ ବିସଂବାଦୋଯଦୀକ୍ଷ୍ୟତେ**
**ତତ୍ସର୍ବଂ ସ୍ଥୂଳଦୃଷ୍ଟ୍ୟୋକ୍ତଂ ଯୁଗପର୍ଯ୍ୟୟବାଦତଃ ।୩୯।**

ଚନ୍ଦ୍ରର ଉଚ୍ଚ ଓ ପାତ ଭଗଣରେ ଯେଉଁ ପ୍ରଭେଦ ଦେଖାପଡ଼େ, ତାହା ଯୁଗ ଭଗଣାଦି ଦୃଷ୍ଟିରୁ ହୋଇଥାଏ ଏବଂ ଏହାସବୁ ସ୍ଥୂଳ ଦୃଷ୍ଟିର କଥା । ସୂକ୍ଷ୍ମଗଣନା ବା କଳ୍ପାଦି ଭଗଣରେ ନୁହେଁ ।

**ମତିମାନ୍ ଭାସ୍କରାଚାର୍ଯ୍ୟଃ ପ୍ରଭେଦଂ ଯୁଗପର୍ଯ୍ୟୟୈଃ**
**ଗ୍ରହାଣାଂ ବୀକ୍ଷ ତତ୍ସଂଖ୍ୟାଂ କଳ୍ପେ ପୂର୍ଣ୍ଣାମକଳ୍ପୟତ୍ ।୪୦।**

**ସୃଷ୍ଟିକାଳସ୍ୟ ଚ ତ୍ୟାଗମକୃତ୍ୱା କଳ୍ପବକ୍ତ୍ରତଃ**
**କାଳସ୍ୟ ଗଣନାଂଚକ୍ରେ ଲଙ୍କାମଧ୍ୟାର୍ଯ୍ୟମୋଦୟାତ୍ ।୪୧।**

ବୁଦ୍ଧିମାନ ଭାସ୍କରାଚାର୍ଯ୍ୟ ଯୁଗଭଗଣ ଧରିବାଦ୍ୱାରା ପ୍ରଭେଦ ପଡ଼ୁଥିବାର ଦେଖି କଳ୍ପରେ ପୂର୍ଣ୍ଣ ଅଖଣ୍ଡ ଭଗଣ କଳ୍ପନା କରି ନେଇଛନ୍ତି । ସେ କଳ୍ପାରମ୍ଭ ଓ ସୃଷ୍ଟି କାଳ ମଧ୍ୟରେ ପ୍ରଭେଦ ନ ମାନି ଅର୍ଥାତ୍ କଳ୍ପର ଆରମ୍ଭଠାରୁ ହିଁ କାଳଗଣନା ଆରମ୍ଭ କରି ଦେଇଛନ୍ତି । ଏହି ଆରମ୍ଭ ତାଙ୍କ ମତରେ ଲଙ୍କାର ଅର୍ଦ୍ଧରାତ୍ରିରୁ ନ ହୋଇ ଲଙ୍କାର ମଧ୍ୟମ ସୂର୍ଯ୍ୟୋଦୟଠାରୁ ହିଁ ହୋଇଅଛି । ତାଙ୍କର ମଧ୍ୟମ ଅହର୍ଗଣ ମଧ୍ୟ ଲଙ୍କାର ସୂର୍ଯ୍ୟୋଦୟଠାରୁହିଁ ହୋଇଅଛି ।

**କ୍ଳୃପ୍ତାହର୍ଗଣସଂଖ୍ୟାୟା ଅଳ୍ପତ୍ୱାଦ୍ରବିଚନ୍ଦ୍ରୟୋଃ**
**କଳିବକ୍ତ୍ରାତ୍ ସ୍ୱକାଳାନ୍ତଂ ଭଗାଦ୍ୟାଧିକ୍ୟପାତତଃ ।୪୨।**

ଖାଭ୍ରଖାର୍କୈର୍ହୃତେତ୍ୟାଦ ସିଦ୍ଧବୀଜକଳୋଜ୍ଝନାତ୍
ସିଦ୍ଧାନ୍ତମାସ୍ୟମାର୍ମୀୟସମୟେ କୃତବାଂସ୍ତୟୋଃ ।୪୩।

ଇତ୍ଥମନ୍ୟଗ୍ରହାଣାଂ ଚ କର୍ମାୟ ଭଗଣାବଳମ୍
ସ୍ୱସ୍ୱବୀଜୈର୍ଯୁତୋନାନାଂ ତେଷାଂ ଦୃକ୍‌ସିଦ୍ଧିମୈକ୍ଷତ ।୪୪।

ସିଦ୍ଧାନ୍ତସିଦ୍ଧିରର୍କେନ୍ଦ୍ୱୋର୍ବୀଜେନାପି ଯଦୀପ୍ସିତା
ସ୍ୱପର୍ଯାୟାସିରତ୍ୱଂ ହ ତତ୍ତେନାବଷ୍କୃତଂ ସ୍ୱୟମ୍ ।୪୫।

ଅଧୁନୈତନ୍ମଧ୍ୟମୟୋଃ ସିଦ୍ଧାନ୍ତାନୀତୟୋର୍ଯତଃ
ଦୃକ୍‌ସିଦ୍ଧିର୍ଭୃତତସ୍ୟୋକ୍ତ୍ୟା ଦୃଶ୍ୟତେ ମହଦନ୍ତରମ୍ ।୪୬।

ଯଦ ତତ୍ପୂର୍ବସମୟେ କଶ୍ଚିତ୍ତଦ୍‌ସଦୃଶଃସୁଧୀଃ
ଅକରଷ୍ୟତ ଦୃକ୍‌ସିଦ୍ଧିଂ କଳ୍ପିତୈଃ କଳ୍ପପର୍ଯ୍ୟୟୈଃ ।୪୭।

ତଦୈବେଦଗ୍‌ର୍ବସଂବାଦୋ ଭାସ୍କରୋକ୍ତେର୍ନ ସମ୍ଭବେତ୍
ସ୍ୱପୂର୍ବକାଳସମ୍ବାଦାଦ୍ୟତଃ ସ୍ୟା ଦନ୍ତରଗ୍ରହଃ ।୪୮।

ଆଗ୍ୟୈର୍ଯ୍ୟୈଃ କଳ୍ପଭଗଣାନ୍ ଯଦାହୈଷ ମହାନ୍ ଗୁଣଃ
ପ୍ରବୃତ୍ତିଦିନମାସାଦସଂଖ୍ୟାଭେଦସ୍ତୁ ଦୂଷଣମ୍ ।୪୯।

ତଥାପ୍ୟେଷ ନଜେ କାଳେ ଲଖିତ୍ୱା ଦୃକ୍‌ସମାନ୍ ଗ୍ରହାନ୍
ମହୋପକାରମକରୋନ୍ମାଦୃଶାମଳ୍ପସବଦାମ୍ ।୫୦।

କଳିଯୁଗର ପ୍ରାରମ୍ଭରୁ ନଜର ସମୟ ପର୍ଯ୍ୟନ୍ତ ସେ ଯେଉଁ ଅହର୍ଗଣ କଳ୍ପନା କଲେ ତାହାର ସଂଖ୍ୟା ଅତି କମ୍ ହେବାରୁ ସେଥିରୁ ଯେଉଁ ରବ ଓ ଚନ୍ଦ୍ର ଅଣା ଗଲା ତାହାର ଅଂଶାଦରେ ମଧ ଆଧିକ୍ୟ ଦେଖା ଗଲା । ତେଣୁ ସେ ଶିରୋମଣିରେ "ଖାଭ୍ର ଖାର୍କୈହୃତାଃକଳ୍ପ ଯାତାଃସମାଃ" ଇତ୍ୟାଦଦ୍ୱାରା ସିଦ୍ଧ ବୀଜ କଳା ତ୍ୟାଗ କଲେ । ଫଳରେ ତାଙ୍କ ସମୟରେ ସେ ରବ ଓ ଚନ୍ଦ୍ରର ଶ୍ରେଷ୍ଠ ସିଦ୍ଧାନ୍ତ କରି ଦେଇଗଲେ ।

ଏହିପରି ଭାବରେ ସେ ଅନ୍ୟ ଗ୍ରହମାନଙ୍କର ମଧ ଭଗଣାଦ ସ୍ଥିରକରି ନଜର ବୀଜକୁ ଯୋଗ ବିଯୋଗ ପୂର୍ବକ ସେ ସବୁ ଗ୍ରହର ଦୃକ୍‌ସିଦ୍ଧ କରିଗଲେ । ବୀଜ ସଂସ୍କାର କରି ରବ ଓ ଚନ୍ଦ୍ର ସ୍ଫୁଟ ଯେ ସେ କଲେ ସେଥିରୁହିଁ ତାଙ୍କ ରଚିତ ଗ୍ରହ ଭଗଣ ଗୁଡ଼ିକ ଅନିଷ୍ଟିତ ବୋଲି ଧରା ପଡ଼ିଗଲା । ବର୍ତ୍ତମାନ ସିଦ୍ଧାନ୍ତ (ସିଦ୍ଧାନ୍ତ ଦର୍ପଣ) ଦ୍ୱାରା ଯେଉଁ ମଧ୍ୟମ ରବ-ଚନ୍ଦ୍ର ସାଧନ କରାଯାଉଛି, ତାହା ଭଲ ଭାବରେ ଦୃକ୍ ସିଦ୍ଧ ହେଉଅଛି । ମାତ୍ର ଭାସ୍କରଙ୍କ

ଗ୍ରନ୍ଥରେ ତାହା ଆଣିଲେ ବହୁତ ପ୍ରଭେଦ ଆସିଯାଉଛି । ଭାସ୍କରଙ୍କ ଠିକ୍ ପୂର୍ବେ କୌଣସି ବିଦ୍ୱାନ୍ କଳ୍ପ ଭଗଣାଦି ନେଇ ଗ୍ରହ ଦୃକ୍ ସିଦ୍ଧ କରିଥିଲେ ଭାସ୍କରଙ୍କ ଯୁକ୍ତିରେ ଏତେ ବୈସାଦୃଶ୍ୟ ଦେଖାଦେଇ ନଥାନ୍ତା । ଏଠାରେ ମନେ ରଖିବାକୁ ହେବ ଯେ ଭାସ୍କର (ତାଙ୍କର ୫୧୬ ବର୍ଷ ପୂର୍ବେ) ବ୍ରହ୍ମଗୁପ୍ତଙ୍କ ଗ୍ରହ ଭଗଣ ନେଇ କାର୍ଯ୍ୟାରମ୍ଭ କରି ଅଛନ୍ତି ଏବଂ ନିଜ ସମୟରେ ପ୍ରଭେଦ ପଡ଼ି ଯାଉଥିବାର ଦେଖି ନିଜେ କଳ୍ପ ଗ୍ରହ ଭଗଣ ଗୁଡ଼ିକ କହି ଯାଇଛନ୍ତି । ଏହା ଅବଶ୍ୟ ତାଙ୍କର ଏକ ମହାଗୁଣ । କିନ୍ତୁ ଲଙ୍କାର ମଧ୍ୟମ ସୂର୍ଯ୍ୟୋଦୟବେଳେ କଳ୍ପାଦି ଓ ଗ୍ରହଗତିର ଆରମ୍ଭ ହେବା କହିବା ତଥା ସାବନ, ଚାନ୍ଦ୍ରଦିନ, ମାସ ପ୍ରଭୃତିର ସେ ଯେଉଁ ସଂଖ୍ୟାଦେଇ ଦେଇଗଲେ ସେଥିରେ ଯେଉଁ ପାର୍ଥକ୍ୟସବୁ ଦେଖାଯାଉଛି, ତାହା ଦୋଷ ଗୁଣ ନୁହେଁ । ଏ ସବୁ ଦୋଷ ଗୁଣ ସତ୍ତ୍ୱେ ସେ ନିଜ ସମୟରେ ଯେଉଁ ଦୃକ୍‌ସିଦ୍ଧ ଗ୍ରହଗଣିତ କରିଦେଇଗଲେ ତଦ୍ଦ୍ୱାରା ମୋପରି ଅଳ୍ପଜ୍ଞ ଲୋକର ମହୋପକାର କରି ଯାଇଛନ୍ତି ।

ଆର୍ଯ୍ୟଭଟ୍ଟ ଶତାନନ୍ଦ ଭାସ୍କରାଣାଂ ସ୍ୱକାଳଜୈଃ
ତତ୍ତତ୍ ମତ ସମାନୀତୈଃ କାମାଭଟ୍ଟାଦିସମ୍ମତୈଃ । ୫୧ ।

ଗ୍ରହୈଃ ସ୍ୱାନୀତଖେଟାନାଂ କୃତ୍ୱା ସମ୍ବାଦମାତ୍ମନଃ
କାଳେନାହଂ ଦୃଷ୍ଟିସିଦ୍ଧାନ୍ ସୃଷ୍ଟବାନ୍ ଭଗଣାନମୂନ୍ । ୫୨ ।

ତଥିଭେଦୌ ଘଟୀଭେଦୋ ଭାଗଭେଦଃ କୁଜାଦିଷୁ
ଭବିଷ୍ୟତ୍ୟଯୁତାଦ୍ଦାନ୍ତଂ ନୈତେଭ୍ୟ ଇତି ମେ ମତଃ । ୫୩

ଆର୍ଯ୍ୟଭଟ୍ଟ, ଶତାନନ୍ଦ ଓ ଭାସ୍କର ପ୍ରଭୃତିଙ୍କ ଦ୍ୱାରା ନିଜ ସମୟରେ ଯେଉଁ ଗ୍ରହ ଅଣାଗଲା ଏବଂ ଯାହା କାମାଭଟ୍ଟାଦିଙ୍କ ଦ୍ୱାରା ଗଣିତ ସହିତ ସମାନହେଲା, ସେ ସବୁକୁ ମୁଁ ନିଜ ସମୟରେ ମୋ ଗ୍ରନ୍ଥରେ ଆନୀତ ଗ୍ରହ ସହିତ ତୁଳନା କରି ଦେଇଛି ଏବଂ ସେ ଦୃଷ୍ଟିରୁ ଦୃକ୍ ସିଦ୍ଧ ମୋର ଏ ଭଗଣ ଗୁଡ଼ିକ ରଚନା କରିଅଛି । ଏଣୁ ମୋର ଧାରଣା— ଆଜିଠାରୁ ଅଯୁତେ ବର୍ଷ ପରେ ମଧ୍ୟ ମୋର ଏ ଗଣନା ଠିକ୍ ଆଜି ପରି ଦୃକ୍ ସିଦ୍ଧ ହେବା ତିଥି ନକ୍ଷତ୍ର ଆଦିରେ ଦଣ୍ଡ ଭେଦ ହେବ ନାହିଁ କି ମଙ୍ଗଳ ଆଦି ଗ୍ରହ ସ୍ପଷ୍ଟ କଲାବେଳେ ଅଂଶ ଭେଦ ହେବ ନାହିଁ । ମୋର ଏ ଭଗଣାଦି ରଚନା ଅନ୍ତ ମାହାରେ ନିର୍ଭୁଲ ଥିବା ମୋର ବିଶ୍ୱାସ ।

ତ୍ରିକାଳଜ୍ଞାନହୀନତ୍ୱାନ୍‌ମାଦୃଶାଂ ଚିରକାଳତଃ
ଅଂଶାଦିଭିଃ ପ୍ରଭେଦଶ୍ଚେତ୍‌ସାକ୍ଷାତ୍‌କାର୍ଯ୍ୟଃ ପ୍ରମାତୃଭିଃ । ୫୪ ।

ତଦା ମୟୋକ୍ତପୂର୍ବେଷୁ ଭଗଣେଷ୍ୱପି ପର୍ଯ୍ୟୟାଃ
ଦେୟା ହେୟା ବକ୍ଷ୍ୟମାଣା ହାନିବୃଦ୍ଧ୍ୟନୁସାରତଃ ।୫୫।

ବେଦତତ୍ତ୍ୱାନି ପଞ୍ଚର୍ଷିସିନ୍ଧବୋ ନବଖାଦ୍ରୟଃ
ରାମବ୍ୟଙ୍କାଃ ସମୁଦ୍ରାଙ୍ଗରୁଦ୍ରାଃ ସପ୍ତେନ୍ଦୁଭାସ୍କରାଃ ୫୬।

ଦ୍ୱିଶୈଳରସମେଦନ୍ୟଶ୍ଚନ୍ଦ୍ରାଷ୍ଟ ଗୁଣବାହବଃ
ଶରାଗ୍ନିରସନେତ୍ରାଣି ଖନନ୍ଦଗଗନାଗ୍ନୟଃ । ୫୭ ।

ଏବଂ ଦଶବିଧା ଭେଦା ଧନର୍ଣ୍ଣତ୍ୱେନ ସମ୍ମତାଃ
ଭୌମାଦେଃ କଳ୍ପିତାଃ କଳ୍ପଭଗଣାନାଂ ବିଶୁଦ୍ଧୟେ ।୫୮।

ଅତ୍ର ତୁ ପ୍ରଥମୋ ଭେଦୋ ଦ୍ୱିଗୁଣଃ କ୍ୱଚିଦିଷ୍ୟତେ
ତୃତୀୟୋ ଦ୍ୱିବିବେଦଘ୍ନସ୍ତୁର୍ଯ୍ୟଃ ପଞ୍ଚଗୁଣାବଧିଃ । ୫୯ ।

ତଥୈବାଷ୍ଟମପକ୍ଷଃ ସ୍ୟାତ୍ ସପ୍ତମୋ ଦଶ୍‌ଗୁଣାବଧିଃ
ଅନ୍ତ୍ୟା ଦ୍ୱିବିଗୁଣୋ ଗ୍ରାହ୍ୟସ୍ତ୍ରୟସ୍ତ୍ରିଂଶଦ୍‌ଭେଦା ଇତ । ୬୦।

ଏଷାମନ୍ୟୋନ୍ୟଯୋଗାଚ୍ଚ ଯେ ସ୍ୟୁସ୍ତେଽପ୍ୟସ୍କରସ୍ୟ ମେ
ସଂବାଦାତ୍‌କାଳୟୋର୍ଗ୍ରାହ୍ୟାସ୍ତ୍ରିଂଶଲ୍ଲିପ୍ତାନ୍ତରାଦପି ।୬୧।

ତଥ୍ୟାବେବୌ ଗ୍ରହଣାଦୌ ଚ ଚନ୍ଦ୍ରମନ୍ଦୋଚ୍ଚପାତୟୋଃ
ସର୍ବୋପାଦେୟତାହେତୋସ୍ତଦ୍ବିଶେଷଂ ବ୍ରୁବେ ପୁନଃ ।୬୨।

ଖଚତୁର୍ନବସପ୍ତେଶବସୁନାଗକୃତା ଇତ
ଉକ୍ତପୂର୍ବାନ୍ନୂୟା ଚନ୍ଦ୍ରମନ୍ଦୋଚ୍ଚଭଗଣବ୍ରଜାତ୍ । ୬୩ ।

କାଳାନ୍ତରେ ସୁସାଧ୍ୟସ୍ୟ ତୁଙ୍ଗସ୍ୟେକ୍ଷଣସିଦ୍ଧିତଃ
ଆଧିକ୍ୟଂ ନ୍ୟୂନତା ବାପି ଭବିତା ଚେତ୍ତଦାପ୍ୟମୀ । ୬୪।

ଗ୍ରାହ୍ୟା ଦୃକସିଦ୍ଧୟେଭେଦା ଦ୍ୱିସପ୍ତରସଭୂମୟଃ
ଚନ୍ଦ୍ରାଷ୍ଟ ଗୁଣପକ୍ଷା ବା କମ୍ବାଗ୍ନୀଷୁଖସାଗରାଃ । ୬୫।

ତତ୍‌ପାତଭଗଣାନାନ୍ତୁ ଶଙ୍କା ନାସ୍ତି ବିପର୍ଯ୍ୟୟେ
ତଥାପ୍ୟବ୍ଦାୟୁତେଽତୀତେ ଭେଦୋ ଭାଗାଧିକୋ ଯଦି ।୬୬।

ଭବୀ ତଦ୍ଵ୍ୟବ୍ଦିଷଟ୍ଚନ୍ଦ୍ରାସ୍ତେଷୁ ଦୃଷ୍ଟ୍ୟନୁସାରତଃ
କ୍ରାନ୍ତିପାତସ୍ୟ ଭଗଣେଷ୍ଵଭ୍ରଗୋଗଗନାଗ୍ନୟଃ । ୭୭ ।

ଖାଦ୍ରିଦ୍ଵ୍ୟର୍ଥାଃ ଖଧୃତ୍ୟଙ୍ଗାନ୍ୟଭ୍ରଷଡ୍ଗୁଣଦନ୍ତିନଃ
ଏତେ ଦ୍ଵିଘ୍ନାସ୍ତ୍ରିଜଘ୍ନାଶ୍ଚ ଦସ୍ରକାଙ୍କନଶାକରାଃ । ୭୮ ।

ଖାଦ୍ରିଚନ୍ଦ୍ରାଷ୍ଟପକ୍ଷାଶ୍ଚ ଯୋଜ୍ୟାସ୍ତ୍ୟାଜ୍ୟା ସ୍ତଥାପି ଚେତ୍
ଦୃକ୍ସିଦ୍ଧିର୍ନ ତଦା ସନୋର୍ବ୍ୟତ୍ୟୟା ଭବନଶ୍ଚୟ୍ୟାତ୍ । ୭୯ ।

ଗଣିତା ଗତସୂକ୍ଷ୍ମାର୍କ ଚ୍ଛାୟାର୍କାନ୍ତରସମ୍ମିତାଃ
ଅୟନାଂଶାଦୟୋ ଗ୍ରାହ୍ୟା ବଶେଷୋଽବେତ କୀର୍ତ୍ତିତଃ ।୮୦।

ଅୟୁତେ (୧୦ ହଜାର) ବର୍ଷ ପରେ ପୁଣି ମୋର ଏହି ଭଗଣାଦିଦ୍ଵାରା ସାଧିତ ଗ୍ରହରେ ଉପଲବ୍ଧି କଲାବେଳେ ତଫାତ୍ ଦେଖାଗଲେ ଏହାପରି କିଛି ସଂସ୍କାର କରିବାକୁ ହେବ । କାରଣ ମୁଁ ତ୍ରିକାଳଜ୍ଞ ନୁହେଁ । ଏଣୁ ବହୁ ବର୍ଷ ପରେ ମୋର ଏହି ରଚନାଦ୍ଵାରା ଉପଲବ୍ଧି କଲାବେଳେ ଅଂଶାଦି ପ୍ରଭେଦ ଦେଖା ଦେଇପାରେ । ସତରେ ଯଦି ତାହା ହୁଏ, ତାହାହେଲେ ମୁଁ ଯେଉଁ ସବୁ ଗ୍ରହ ଭଗଣ ସଂଖ୍ୟା କହିଛି, ସେଥିରେ ହାନିବୃଦ୍ଧି ଅନୁସାରେ ଏହି କେତେକ ସଂଖ୍ୟା ଯୋଗ ବିୟୋଗ କରିବାକୁ ହେବ ।

ଗ୍ରହ ମୋର ପ୍ରଦର୍ଶିତ ରୀତିରେ ସାଧି ପ୍ରତ୍ୟକ୍ଷ କଲାବେଳେ ଯଦି ଗଣିତରୁ ପ୍ରତ୍ୟକ୍ଷ ବେଶୀ ହୁଏ, ତାହା ହେଲେ ଦତ୍ତ ସଂଖ୍ୟା ଗ୍ରହ ଭଗଣ ସଂଖ୍ୟାରେ ଯୋଗ କରିବ । ପୁଣି ଗଣିତରୁ ପ୍ରତ୍ୟକ୍ଷ କମ ହେଲେ ଗ୍ରହ ଭ ଗଣ ସଂଖ୍ୟାରୁ ଉକ୍ତ ସଂଖ୍ୟା ଫେଡ଼ ଦେବାକୁ ହେବ । ଏପରି କଲେ ଗଣିତରେ ଆସିଥିବା ଗ୍ରହ ଓ ଉପଲବ୍ଧ ଗ୍ରହ ମଧ୍ୟରେ କୌଣସି ପାର୍ଥକ୍ୟ ଆଉ ରହିବ ନାହିଁ । କେଉଁ ଗ୍ରହ ଭ ଗଣରେ କେତେ ମିଶାଯିବ ବା ଫେଡ଼ାଯିବ ତାହା ଏଠାରେ ଦିଆଯାଇଅଛି ।

| | | |
|---|---|---|
| ମଙ୍ଗଳ ଭ ଗଣରେ | + ୨୫୪ ମିଶା | —୪୫୫ ଫେଡ଼ା |
| ବୁଧ ,, | + ୭୦୯ ,, | —୨୬୩ ,, |
| ବୃହସ୍ପତି ,, | +୧୧୬୪ ,, | —୧୨୧୭ ,, |
| ଶୁକ୍ର ,, | +୧୬୭୨ ,, | —୨୩୮୧ ,, |
| ଶନି ,, | +୨୬୩୫ ,, | —୩୦୯୦ ,, |

ଏଠାରେ ଦିଆଯାଇଥିବା ପ୍ରଥମ ଭେଦ କଦାଚିତ୍ ଦୁଇଗୁଣ ମଧ୍ୟ ହୋଇଯାଇପାରେ । ୩ୟ ଭେଦଟି ୨, ୩ ବା ୪ ଗୁଣ ମଧ୍ୟ ହୋଇପାରେ । ୪ର୍ଥ ଭେଦଟି ୨, ୩, ୪ ଓ ୫ ଗୁଣ ମଧ୍ୟ ହୋଇପାରେ । ୮ମ ଭେଦ ମଧ୍ୟ ସେହିପରି ୨, ୩, ୪ ବା ୫ ଗୁଣ ହୋଇପାରେ । ୭ମ-

ଭେଦଟି ୨ଗୁଣ ହୋଇପାରେ । ଶେଷ ଭେଦଟି ୨ ବା ୩ ଗୁଣ ହୋଇପାରେ । ଏପରି ବୁଝିବାକୁ ଗଲେ ଏହି ଭେଦ ଗୁଡ଼ିକର ମୋଟ ସଂଖ୍ୟା ହେଲା ୩୩ ।

ଭାସ୍କରଙ୍କ ସମସ୍ତ ଓ ମୋ ସମସ୍ତ ମଧ୍ୟରେ ଦୃକ୍‌ସିଦ୍ଧିକୁ ନେଇ ୩୦ କଳା ଅନ୍ତର (ତଫାତ୍) ଯଦି ପଡ଼ିଯାଏ, ତାହାହେଲେ ମଧ୍ୟ ଏହି ଯୋଗ ବିଯୋଗ ଗ୍ରହଣ କରାଯାଇ-ପାରେ ।

ତିଥି ଓ ନକ୍ଷତ୍ର ଆଦି ଆଣିବାରେ ତଥା ଗ୍ରହଣ ପ୍ରଭୃତିରେ ଚନ୍ଦ୍ରମନ୍ଦୋଚ୍ଚ ଓ ପାତରେ ସର୍ବୋପଯୋଗିତା ଦୃଷ୍ଟିରୁ ସେଥିରେ ମଧ୍ୟ ନିମ୍ନ ପ୍ରକାରେ ଯୋଗ ବିଯୋଗ କରିବ ।

ଚନ୍ଦ୍ରମନ୍ଦୋଚ୍ଚ ଭଗଣରେ +୧୬୭୨, ୨୩୮୧ ବା ୪୦୫୩ ୪୮୮୧୧୭୯୪୦

ଚନ୍ଦ୍ରପାତ ଭ ଗଣରେ + ୧୬୭୨ ( ତଫାତ ଅନ୍ତତଃ ୧° ହେଲେ ଏହାର ପରିବର୍ତ୍ତନ ଅବଶ୍ୟମ୍ଭାବୀ)

କ୍ରାନ୍ତିପାତ ଭ ଗଣରେ +୩୦୯୦, ୫୨୭୦, ୬୧୮୦, ୮୩୬୦, ୧୬୭୨୦,
୨୫୦୮୦, ୧୯୮୧୦, ୨୮୧୭୦

* କ୍ରାନ୍ତି ପାତଭଗଣ ସଂଖ୍ୟା=୬୪୦୧୭୦

କ୍ରାନ୍ତିପାତ ଭଗଣରେ ଯେଉଁ ଆଠ ପ୍ରକାର ପ୍ରଭେଦ ସଂଖ୍ୟା ଯୋଗ ବିଯୋଗ କରିବା ନିମନ୍ତେ ଦିଆଗଲା, ସେ ସବୁ କରିବା ପରେ ମଧ୍ୟ ଯଦି କ୍ରାନ୍ତି ଦୃକ୍‌ସିଦ୍ଧ ନ ହୁଏ, ତାହାହେଲେ ଗଣିତରେ ସୂର୍ଯ୍ୟ ଆଣି ତ୍ରିପ୍ରଶ୍ନାଧିକାର ରୀତିରେ ସ୍ପଷ୍ଟ ସୂର୍ଯ୍ୟ ପୁଣି ଆଣି ଉଭୟର ଅନ୍ତର ସମାନ ଅୟନାଂଶ ଗ୍ରହଣ କରିବ । ଗଣିତରେ ଆସିଥିବା ସୂର୍ଯ୍ୟ ପ୍ରତ୍ୟକ୍ଷ ନ ହେଲେ ଏହା ବରାବର କରିବାକୁ ହେବ ବୋଲି ଜାଣିବାକୁ ହେବ ।

**ଯଦା ପ୍ରଜାପତିଃ ଖେଟାନ୍ ସୃଷ୍ଟ୍ୱା କାଦୌନ୍ୟବୀବିଶତ୍**
**ତତୋ ଦ୍ୱିଦ୍ୱ୍ୟବ୍ଦତଃ କୁମ୍ଭରାଶ୍ୟାଦୌ ନିଦଧେ ଗୁରୁମ୍ ।୭୧।**

**ତଦାଦିପ୍ରଭବସ୍ତସ୍ମାତ୍‌ପ୍ରବୃତ୍ତୋଽବ୍ଦୋ ଗୁରୌ ପୁନଃ**
**ମେଷାଦିକସ୍ଥେ ଶୁକ୍ଳାଦ୍ୟା ଇତି ସାଂହିତକୋକ୍ତିତଃ ।୭୨।**

---

* (ଆର୍ଯ୍ୟ ଭଟ୍ଟ, ଭାସ୍କର ଓ ଶତାନନ୍ଦ ଆଦିଙ୍କର ରୀତିରେ ଗଣନା କଲପରେ ଉପଲବ୍ଧିରୁ ଏ ଅନ୍ତର ଦେଖାଯାଇଛି । ଏପରି ପ୍ରତ୍ୟକ୍ଷ ଉପରେ ଏବଂ ପୂର୍ବାଚାର୍ଯ୍ୟମାନଙ୍କ ଗଣିତ ଉପରେ ନିର୍ଭର କରି ଏ ଯେଉଁ ପ୍ରସ୍ତାବ, ତାହା ବଡ଼ ଚମତ୍କାର ! ଏହାଦ୍ୱାରା ପ୍ରଖର ବୁଦ୍ଧିର ମଧ୍ୟ ପରିଚୟ ମିଳେ । )

ରାଶିଦ୍ୱୟଯୁତଃ ପ୍ରୋକ୍ତା ମୟା ମଧ ବୃହସ୍ପତୌ
ତତ୍‌ପର୍ଯ୍ୟୟବିପର୍ଯ୍ୟାସେ ସମ୍ଭବିଷ୍ୟତି ପଣ୍ଡିତୈଃ ।୭୩।

ଭଗଣାଃ ପଞ୍ଚନଃଶେଷାଃ କଲ୍ପ୍ୟାସ୍ତଦ୍‌ଶରଦାବଳିଃ
ସୃଷ୍ଟେର୍ବିଶ୍ୱାବସୁ ମୁଖା କପିଲାଖ୍ୟା-ଦରେବ ବା ।୭୪।

ଶୁକ୍ଲାଦେର୍ବା ବୃଷାଦେର୍ବା ବିଜୟାଦେରଥାପି ବା
ଲେଖ୍ୟାଃ ସ୍ୱକାଳସିଦ୍ଧାନାମଦ୍ଧାନା-ମବରୋଧତଃ ।୭୫।

କିନ୍ତୁ ଖାବ୍ଧ୍ୟଷ୍ଟସପ୍ତାର୍ଥଦ୍ୱ୍ୟବ୍ଧିଷଡ୍‌ଗୁଣପର୍ଯ୍ୟୟାଃ
ଶୁକ୍ଲାଦ୍ୟବ୍ଦଗଣାଃ ସର୍ବପକ୍ଷତଃ ସାଧବୋ ମତାଃ ।୭୬।

ଏତଭଗଣ ଜେଷ୍ଟିନ୍ଦୁ ଲପ୍ତନୈକ୍ୟସ୍ୟ ସଂପ୍ରତି
ଦୃକ୍‌ସାମ୍ୟାତ୍ ପଦକଂ ଲେଖ୍ୟଂ ଧ୍ରୁବଗତ୍ୟାଦସଙ୍ଗତମ୍ ।୭୭।

ଖବଦ୍ୱ୍ୟବ୍ଧିଶ ବର୍ଷାନ୍ତେ ମତଦ୍ୱୟଜଗୀଷ୍ପତେଃ
ସମତ୍ୱଂ ଭବିତା ତନ୍ନ କାର୍ଯ୍ୟା ଦୃକ୍‌ସିଦ୍ଧିରୁତ୍ତମୈଃ ।୭୮।

ଶାସ୍ତ୍ରସ୍ୟାସ୍ୟ ବିସମ୍ବାଦେ ଧର୍ମଗୋପ୍ତ୍ରାଚ୍ୟୁତେନ ଚେତ୍
ସମ୍ବାଦ୍ୟୋ ଗ୍ରନ୍ଥକୃତ୍ କଶ୍ଚିଦ୍ରହସ୍ୟଂ ତତ୍‌କୃତେ ହ୍ୟଦଃ ।୭୯।

ବରାହମିହିରଙ୍କ ବୃହତ୍ ସଂହିତାରେ ଅଛି, ଯେତେବେଳେ ସୃଷ୍ଟିର ଆରମ୍ଭ ହେଲା ସେତେବେଳେ ବୃହସ୍ପତି ମେଷରାଶିର ଆଦ୍ୟରେ ଥିଲେ । ବୃହସ୍ପତି ମଧ୍ୟମମାନରେ ବର୍ଷକେ ଗୋଟିଏ ରାଶି ଭୋଗକରେ । ଏଣୁ ୨୨ ବର୍ଷରେ ସେ କୁମ୍ଭ ରାଶିର ଆଦ୍ୟରେ ନିଶ୍ଚୟ ରହିପାରିବ । ସେଠାରୁ ପ୍ରଭବନାମକ ଗୁରୁବର୍ଷ ଆରମ୍ଭ ହେବା ଯୁକ୍ତିଯୁକ୍ତ । ପୁଣି ବୃହସ୍ପତି ମେଷାଦିରେ ହେଲେ ଉକ୍ତ ବର୍ଷର ନାମ ଶୁକ୍ଲ ଆଦି ହୋଇପାରେ ।

ଭବିଷ୍ୟତରେ ବୃହସ୍ପତି ସାଧନ କଲାବେଳେ ଯଦି ଭଗଣ ପରିବର୍ତ୍ତନ ହିସାବକୁ ଆସେ, ତେବେ ପଣ୍ଡିତମାନେ ଗୁରୁ ଭଗଣକୁ ୫ରେ ହରିବେ । କାରଣ ଗୁରୁବର୍ଷ ସଂଖ୍ୟା ୬୦ ଏବଂ ୫ ବର୍ଷରେ ଗୋଟିଏ ଗୋଟିଏ ସମ୍ବତ୍ସର ହେଉଥିବାରୁ ଏହାକୁ ୫ରେ ହରିଲେ ୧୨ଟି ସମ୍ବତ୍ସର ହେବ । ସୃଷ୍ଟି ପ୍ରାରମ୍ଭରେ ବିଶ୍ୱାବସୁ, କପିଳ (ପିଙ୍ଗଳ), ଶୁକ୍ଲ, ବୃଷ ବା ବିଜୟ ଆଦି ସମ୍ବତ୍ସର ହିଁ ହେବେ । କାରଣ ୬୦କୁ ୫ରେ ହରିଲେ ଯେଉଁ ୧୨ ପଡ଼ିବ,

ସେହି ପ୍ରତ୍ୟେକ ୧୨ ଆଦ୍ୟରେ ଏହି ପାଞ୍ଚଟି ମଧ୍ୟରୁ କେହି ଗୋଟିଏ ପଢ଼ିବାକୁ ବାଧ । ନିଜ ଦେଶରେ ପ୍ରଚଳିତ ଅକ୍ଷର ନାମ ଲେଖିବାର କଥା । ବୃହସ୍ପତିଙ୍କ ଭଗଣ ସଂଖ୍ୟା ୩୬୪୨୫୬୮୪୦ ମାନିବା ଲୋକ ପକ୍ଷରେ ଶୁକ୍ଳାଦି ସମ୍ବତ୍ସର ଆରମ୍ଭ କରିବା ଉଚିତ ହେବ । ଉଲ୍ଲିଖିତ ଭଗଣରୁ ଅହର୍ଗଣରେ ଯେଉଁ ସ୍ପଷ୍ଟ ବୃହସ୍ପତି ଆଣାଯିବ, ସେଥିରୁ ୧୫କଳା ବାଦ୍ ଦେଲେ ତାହା ଆକାଶରେ ପ୍ରତ୍ୟକ୍ଷ ହେବ । ଏଥିରେ ଧ୍ରୁବଗତି ଆଦି ଯୋଗକରି ପଦକ ଲେଖି ଦେବାକୁ ହେବ । ୧୧୪୨ ବର୍ଷପରେ ଉଲ୍ଲିଖିତ ମତ ଓ ଆଗରୁ ଚଳିଆସୁଥିବା ମତ ଅନୁସାରେ ଗୁରୁ ସାଧନ କରି ଦେଖିବ ଯେ, ଏ ଉଭୟ ମତରେ ଆନୀତ ବୃହସ୍ପତି ଦ୍ୱୟର ସମାନତା ଆସୁଛି । ତେତେବେଳେ ସୂକ୍ଷ୍ମବୁଦ୍ଧିଶାଳୀ ଲୋକେ ଦୃକ୍‌ସିଦ୍ଧି କରିବେ । ଜ୍ୟୋତିଷ ଶାସ୍ତ୍ରର ଗଣନା ଦୃକ୍‌ସିଦ୍ଧ ନ ହେଲେ ଧର୍ମରକ୍ଷକ ଭଗବାନ୍ ଏ ଶାସ୍ତ୍ରର ସଂସ୍କାରକ ଉତ୍ପନ୍ନ କରନ୍ତି । ତାଙ୍କୁ ଏ ଗୋପନୀୟ ଶାସ୍ତ୍ରର ରହସ୍ୟ ଜଣାପଡ଼ିଯାଏ । ଅନ୍ୟ ଲୋକ ଏ ରହସ୍ୟ ବୁଝିପାରେନାହିଁ ।

କଳାଦ୍ୟା ଦଶଧା ଭୁକ୍ତିର୍ଗ୍ରହାଣାଂ ଯା ପୁରୋଦିତା
କ୍ରମାଦ୍ଦଶଗୁଣୈକାଦିଦିନସଂଖ୍ୟାହତାଥ ସା ॥୮୦॥

ଅନ୍ତତଃ କ୍ରମଷଷ୍ଟ୍ୟାପ୍ତୈର୍ବିବରାନ୍ତସମନ୍ୱିତା
ତତୋ ଦ୍ୱ୍ୟାଦିନନ୍ଦାନ୍ତଗୁଣିତା ଖରସାଦିଭିଃ ॥୮୧॥

ବିପରାଦିଗୃହାନ୍ତାନାଂ ସ୍ୱହାରୈର୍ବିହୃତା କ୍ରମାତ୍
ଫଳଯୁକ୍‌ଶେଷସଂସ୍ଥାନୈଃ ସିଦ୍ଧଂ ଯଦ୍‌ଭିଦପଞ୍ଚକମ୍ ॥୮୨॥

ତଦ୍ କୋଷ୍ଠକେଷୁ ସଂଲେଖ୍ୟଂ ସସଂଖ୍ୟପଦକାଖ୍ୟୟା
କର୍ମେଦଂ ଭଗଣୈଃ ଖେଟାନୟନାଦ୍ ସୁକରଂ ମତମ୍ ॥୮୩॥

ଯୋକ୍ତା ପରିଧିଜୈର୍ମାନ୍ଦ୍ୟଶୈଘ୍ର୍ୟୈଃ ସ୍ପଷ୍ଟୀକୃତୈଃ ଫଳୈଃ
ଭୂଲୋକ ଏବ ସା ତୁଲ୍ୟା ନ ତୁ ଲୋକାନ୍ତରେଷ୍ୱପି ॥୮୪॥

ଅନ୍ୟଖେଟେଷୁ ଲୋକେଷୁ ଦୃକ୍‌ସିଦ୍ଧ୍ୟୈ ତଦ୍ ପ୍ରମାଣତଃ
ରବିକର୍ଣ୍ଣାନୁସାରେଣ ସୋନ୍ନେୟା ଫଳବାସନା ॥୮୫॥

ପୂର୍ବରୁ ମଧ୍ୟମାଧିକାରରେ ଗ୍ରହମାନଙ୍କର କଳାଦି ଦଶ ପ୍ରକାରର ଯେଉଁ ଗତି ଦିଆଯାଇଛି (ଦୈନିକ) ତାକୁ ୧୦ଗୁଣ ଦିନ ସଂଖ୍ୟାରେ ଗୁଣିବ । ଫଳକୁ ଶେଷ ଅଙ୍କରୁ ୬୦ରେ ଭାଗ ଦେଇ ଦେଇ ଆଣିବ ଏବଂ ଫଳଗୁଡ଼ିକୁ ଉପର ଉପରକୁ ଉଠାଇ ଯୋଗକରି ଆଣିବ । ଏହାପରେ ଗୁଣନ ଫଳକୁ ପୁଣି ୨, ୩ ଆଦି ୯ ପର୍ଯ୍ୟନ୍ତ ସଂଖ୍ୟାରେ ଗୁଣି ୬୦ରେ ହରି ହରି ବିପରା ଆଦି ୫ ସ୍ଥାନରେ ଫଳରେ ରଖିବ । ଏହା ରାଶି ଆଦି ପାଞ୍ଚ ସ୍ଥାନର

ହେବ । ଏହାକୁ କୋଠିରେ ଲେଖି ରଖିବ । ଏହାକୁ ହିଁ ପଦକ କହନ୍ତି । ଭ ଗଣକୁ ନେଇ ଅନୁପାତରେ ଇଷ୍ଟ ସାବନଦ୍ୟୁଗଣକୁ ଗ୍ରହ ଆଣିବା ପ୍ରକ୍ରିୟା ଅପେକ୍ଷା ଏହି ଗଣିତ ସୁକର । (ଦଶବୃଦ୍ଧ ଗଣିତକୁ ଗୁଣିଲେ ଅହର୍ଗଣରେ ମଧ୍ୟମ ଗ୍ରହ ଆସେ ଏହାହିଁ ସବୁଠାରୁ ଭଲ ଗଣିତ) ।

ମନ୍ଦଫଳ ଶୀଘ୍ର ଫଳ ସଂସ୍କାରରେ ଗ୍ରହମାନେ ସ୍ପଷ୍ଟ କରାଯାନ୍ତି ବୋଲି ଯାହା କୁହାଯାଇଛି ପୃଥିବୀସ୍ଥ ଲୋକ ଦୃଷ୍ଟିରୁ ହିଁ ତାହା ଯଥାର୍ଥ । ଅନ୍ୟ ଗ୍ରହଲୋକରେ ରହିବାଲୋକ ଦୃଷ୍ଟିରୁ ତାହା କୁହାଯାଇନାହିଁ । ଅନ୍ୟ ଲୋକରେ ଏହିପରି ଗ୍ରହ ସ୍ପଷ୍ଟ କରାଯାଇପାରେ । ତେବେ ସେଠାରେ ସେହି ଲୋକର ତଫାତ୍ ତଥା ରବି କର୍ଣ୍ଣର ଆଶ୍ରୟ ନେଇ ଏହା କରାଯିବାର କଥା । ଏହା ହିଁ ଗ୍ରହର ମନ୍ଦଫଳ, ଶୀଘ୍ରଫଳ ସାଧନ କରିବାର ବାସନା । ପୃଥିବୀକୁ ଅପେକ୍ଷା ରଖି ଏହା କରାଯାଇଛି । ପରେ ଅନ୍ୟ ଗ୍ରହଲୋକ ନିମନ୍ତେ ପୁଣି ତର୍କଣା କରାଯାଇପାରେ ।

ଟି—ଭୂମେର୍ମଧ୍ୟେ ଖଲୁ ଭବଳୟସ୍ୟାପି ମଧ୍ୟଂ ଯତଃ ସ୍ୟାତ୍
ଯସ୍ମିନ୍ ବୃତ୍ତେ ଭ୍ରମତି ଖଚରୋ ନାସ୍ୟ ମଧ୍ୟଂକୁମଧ୍ୟେ ।
ଭୂସ୍ଥୋ ଦ୍ରଷ୍ଟା ନ ହି ଭବଳୟେ ମଧ୍ୟତୁଲ୍ୟଂ ପ୍ରପଶ୍ୟେତ୍
ତସ୍ମାତ୍ତଜ୍‌ଜ୍ଞୈଃ କ୍ରିୟତ ଇହ ତଦ୍ଦୋଃଫଳଂ ମଧ୍ୟଖେଟେ ।୮୬।

ସ୍ଫୁଟୀକୃତଂ ନଭୋଗାନାଂ ସାକ୍ଷାତ୍‌କର୍ତ୍ତୁଂ ସମୀକ୍ଷିତୌ
ସାଷ୍ଟାଦଶକଳାଦ୍ୟର୍ଥାଙ୍ଗୁଳ ସୂତ୍ରେଣ ଶୀତଗୋଃ ।୮୭।

କକ୍ଷାବୃତ୍ତଂ ଲିଖେଦାଦୌ ଭଗଣାଂଶାଙ୍ଗୁଳାଙ୍କିତମ୍
ପୂର୍ବୋତ୍ତରାଦିକମତୋ ରାଶିଚହ୍ନାନ୍ୟଜାଦିତଃ । ୮୮ ।

ହିତ୍ୱାନ୍ତର୍ଦ୍ୱ୍ୟଙ୍ଗୁଳବ୍ୟାସଂ ଭୂଗୋଲଂ ବିଲିଖେଦ୍ବୁଧଃ
ମେଷାଦସ୍ଥଂ ସ୍ୱମନ୍ଦୋଚ୍ଚଂ କଳ୍ପୟିତ୍ୱାଲ୍ପଦୂରଗମ୍ । ୮୯ ।

ଦ୍ୱିଗୁଣାନ୍ତ୍ୟଫଳଜ୍ୟାନ୍ତ ସାର୍ଦ୍ଧଦଶଭିରଙ୍ଗୁଳୈଃ
ଦୂରେ ମନ୍ଦୋଚ୍ଚକାଷ୍ଠାୟାଂ ଦଦ୍ୟାଦ୍ବିନ୍ଦୁଂ କୁମଧ୍ୟତଃ । ୯୦ ।

ତନ୍ନ ଚ କ୍ଷିତିମଧ୍ୟେ ଚ ନିଶ୍ଚଳାଗ୍ରଯୁଗେ ଗୁଣେ
ନିଜ୍ୟାନ୍ତ୍ୟଫଳଶିଞ୍ଜିନ୍ୟୋର୍ବର୍ଗଯୋଗପଦକ୍ରମାତ୍ । ୯୧ ।

ଦ୍ୱିଗୁଣ୍ୟାଦ୍ବିକଳାଢ୍ୟାର୍ଥୈରୁଦ୍ରାଙ୍ଗୁଳୈର୍ମିତେ ପୁନଃ
ଦତ୍ୱା ସୂଚୀଂ ସମାକୃଷ୍ୟ ତତ୍ସୂତ୍ରସ୍ୟ ସରଦ୍ୱୟମ୍ । ୯୨ ।

ଭ୍ରାମୟେତ୍ ପରତସ୍ତାଂ ତେଦ୍ୟା ରେଖୋତ୍ପଦ୍ୟତେ ତତଃ
ପ୍ରତମଣ୍ଡଳନାମାସୌ ମନ୍ଦୋଚ୍ଚାକର୍ଷଣୋଦ୍ଭବା । ୯୩ ।

କକ୍ଷାବୃତ୍ତସମୈବ ସ୍ୟାଦୋଜପାଦାନ୍ତୟୋରଯୌ
ଯୁଗ୍ମାନ୍ତଗେନ୍ଦୁକକ୍ଷାୟାଃ ଷଡ୍‌ବଂଶତକଳାଧିକା । ୯୪ ।

ଭଗୋଲର କେନ୍ଦ୍ର ଭୂଗୋଳ (ପୃଥିବୀ) ମଧ୍ୟରେ ଅଛି । କିନ୍ତୁ ଗ୍ରହ ଯେଉଁ ବୃତ୍ତରେ (କକ୍ଷାରେ) ବୁଲେ, ତାହାର କେନ୍ଦ୍ର ପୃଥିବୀର କେନ୍ଦ୍ର ନୁହେଁ । ଫଳତଃ ପୃଥିବୀ ପୃଷ୍ଠରେ ଥିବା ଦ୍ରଷ୍ଟା ଭଗୋଲରେ ଗ୍ରହକୁ ମଧ—ସମାନ ଦେଖିବାକୁ ପାଇପାରେନାହିଁ । ଏଥି ନିମନ୍ତେ ସ୍ପଷ୍ଟ ବାସନା ଜାଣିବା ଲୋକେ ମଧ୍ୟମ ଗ୍ରହରେ ଭୁଜଫଳ (ମନ୍ଦ ବା ଶୀଘ୍ର) ଦେଇ ଗ୍ରହ ସ୍ପଷ୍ଟ କରଥାନ୍ତି । (ଶିରୋମଣି) ଗ୍ରହମାନଙ୍କର ସ୍ପଷ୍ଟୀକରଣ ନିମନ୍ତେ ୯ଟି ଏହା ସ୍ପଷ୍ଟ ଭାବରେ ଦେଖିବା ନିମନ୍ତେ ସମଭୂମିରେ (୬° କଳାରେ ଏକ ଆଙ୍ଗୁଳ ଧର) ୫୭ । ୧୮ ଆଙ୍ଗୁଳ ପ୍ରମାଣ ବ୍ୟାସାର୍ଦ୍ଧରେ ପ୍ରଥମେ ଚନ୍ଦ୍ରର ୩୬° ଆଙ୍ଗୁଳ ପରିମିତ କକ୍ଷାବୃତ୍ତ ଲେଖିବ, ଅନନ୍ତରର ଗଣକ ମେଷାଦିରୁ ପୂର୍ବ ଉତ୍ତରାଦିକ୍ରମରେ ୧୦ଟି ରାଶି ଭାଗ ଅଙ୍କିତ କରିବା ମଧ୍ୟରେ ଭୂଗୋଳ ରଚନା କରିବ ଏବଂ ଏହାର ବ୍ୟାସ ହେବ ମାତ୍ର ଦୁଇ ଆଙ୍ଗୁଳ ।

ପୃଥିବୀରୁ ଅଳ୍ପ ଦୂରରେ ମେଷାଦିରେ ନିଜର ମନ୍ଦୋଚ୍ଚକୁ ( ଚନ୍ଦ୍ରମନ୍ଦୋଚ୍ଚ ଏଠି କ୍ଷେତ୍ରରେ) ରଖିବା ପରେ ଏହି ପୃଥିବୀ କେନ୍ଦ୍ରରୁ ୬°° (ଦ୍ଵିଗୁଣ ଅନ୍ତ୍ୟ ଫଳଜ୍ୟା) ଅନୁସାରେ ୧° ଆଙ୍ଗୁଳ ଦୂରରେ ମନ୍ଦୋଚ୍ଚ ଦିଗରେ ଗୋଟିଏ ବିନ୍ଦୁ ଦେବ । ସେଠାରୁ ଭୂକେନ୍ଦ୍ର ବିନ୍ଦୁ ପର୍ଯ୍ୟନ୍ତ ରେଖା ଟାଣିବ । ସେଥିରେ ପୁଣି ତ୍ରିଜ୍ୟା ଓ (ଚନ୍ଦ୍ର) ଅନ୍ତ୍ୟଫଳଜ୍ୟା ଯୋଗକରି ସେଥିରୁ ବର୍ଗମୂଳ ବାହାର କରି ନେବ । ଏହାକୁ ପୁଣି ଦ୍ଵିଗୁଣ କରିବାପରେ ଆଙ୍ଗୁଳ କରିବା ନିମନ୍ତେ ପୁଣି ୬°ରେ ହରିବ । ଲବ୍‌ଧି ଏଠାରେ ହେବ —

୨ √ ତ୍ରିଜ୍ୟା² + ଚନ୍ଦ୍ରଅଜ୍ୟା² = √ ୩୪୩୮² + ୩୦୦²
= √ ୧୧୮୧୯୮୪୪ + ୯୦୦୦୦ = ୩୪୫୧ । ୪ । ଏହାକୁ ଆଙ୍ଗୁଳ କରିବା ନିମନ୍ତେ ୬°ରେ ହରିଲେ ହେଲା ୫୭ । ୩୧ ଏହାକୁ ଦ୍ଵିଗୁଣ କଲେ ହେବ ୧୧୫ । ୨ । ଏତିକି ଅଙ୍ଗୁଳ ସୂତ୍ରରେ ସମଦ୍ଵିବାହୁ ରଚନା କରି ଏହି ଭୁଜ ଦ୍ଵୟକୁ ଟାଣି ବୁଲାଇ ଦେଲେ (ଗୃହ ପାଖରେ) ସେଥିରୁ ଯେଉଁ ରେଖା ଉତ୍ପନ୍ନ ହେବ ତାହାକୁ ପ୍ରତିବୃତ୍ତ କୁହାଯିବ ଏବଂ ଏହି ପ୍ରତିବୃତ୍ତ ମନ୍ଦୋଚ୍ଚ ଆକର୍ଷଣରୁ ହେଲା ବୋଲି ବୁଝିବାକୁ ହେବ । ଏହି ପ୍ରତି ମଣ୍ଡଳ-ରେଖା ପୁଣି କକ୍ଷାର ବିଷମ ପଦାନ୍ତରେ କକ୍ଷା ବୃତ୍ତ ସହିତ ସଂପାତ କରେ ଏବଂ ସମାନ ହୁଏ । ପୁଣି ଏହି ବୃତ୍ତ ସମପଦାନ୍ତରେ ଚନ୍ଦ୍ରକକ୍ଷା ଠାରୁ ୨୬ କଳା ଅଧିକ ରହିବ । ଏହା ଦୀର୍ଘ ବୃତ୍ତ ହେବ ।

ବିପରୀତା କେନ୍ଦ୍ରଗତର୍ମନ୍ଦାନ୍ମଧ୍ୟସ୍ୟ ଶୋଧନାତ୍
ପ୍ରତିବୃତ୍ତେ ତତୋଽଜାଦ୍ୟା ଲେଖ୍ୟାଃ ପ୍ରାଗ୍ଦକ୍ଷିଣକ୍ରମାତ୍ । ୯୫ ।

ମନ୍ଦୋଚ୍ଚରୁ ମଧ୍ୟ ଗ୍ରହକୁ ଅନ୍ତର କଲେ କେନ୍ଦ୍ର (ମନ୍ଦକେନ୍ଦ୍ର) ହୁଏ । ଏହି କେନ୍ଦ୍ରର ଗତି ଗ୍ରହର ବିପରୀତ ଦିଗରେ । କେନ୍ଦ୍ରଗତି ପ୍ରତି-ବୃତ୍ତରେ ହୋଇଥାଏ । ତେଣୁ ସେଥିରେ ପୂର୍ବରୁ ଦକ୍ଷିଣ କ୍ରମରେ ମେଷ ଆଦି ରାଶି ଲେଖିବାକୁ ହେବ ।

ପ୍ରାକ୍ ପଶ୍ଚିମାନ୍ତରଂ କକ୍ଷାପ୍ରତିମଣ୍ଡଳରେଖୟୋଃ
ତଦେକ ଶରାଙ୍ଗୁଳଂ ବିଶ୍ୱଲପ୍ତାଢ୍ୟଂକେନ୍ଦ୍ରଜେବଧୋଃ । ୯୬ ।

ଚକ୍ରାର୍ଦ୍ଧେ ବିଶ୍ୱଲପ୍ତୋନପଞ୍ଚାଙ୍ଗୁଳମିତଂ ଯତଃ
ସ୍ୱାସନ୍ନସ୍ୟ ତତୋ ଯୁକ୍ତା ତୁଙ୍ଗାକର୍ଷଣଭୂରିତା । ୯୭ ।

ଅନ୍ଦୋଚ୍ଚସ୍ୟ ପୁରଃସ୍ଥତ୍ୱାଦ୍ କକ୍ଷ୍ୟାତଃ ପ୍ରତିମଣ୍ଡଳମ୍
ପ୍ରାଗାକୃଷ୍ଟମତଃ କକ୍ଷାମିଥୁନାନ୍ତସ୍ଥିତୋ ବିଧୁଃ । ୯୮ ।

ପ୍ରତିମଣ୍ଡଳଚାପାନ୍ତେ କକ୍ଷାଚାପାନ୍ତଗସ୍ତ୍ୱୟମ୍
ପ୍ରତିବୃତ୍ତଦ୍ୱିରାଶ୍ୟନ୍ତେ ତିଷ୍ଠତ୍ୟେବଂ ଗୃହାନ୍ତରାଦ୍ । ୯୯ ।

ପ୍ରାକର୍ଷବଶାଦ୍କକ୍ଷା ସୌମ୍ୟସ୍ତେଽଜାଦଭାର୍ଦ୍ଧକେ
ପ୍ରତ୍ୟଙ୍ମୁଖେ ମଧ୍ୟଖଗାଦୂନଃ ସ୍ୟାଦ୍ ବିସ୍ଫୁଟଗ୍ରହଃ । ୧୦୦ ।

କକ୍ଷାଯାମ୍ୟସ୍ତୁତୌଲ୍ୟାଦ ଭ ଦଳେ ପ୍ରାଙ୍ମୁଖେ ପୁନଃ
ମଧ୍ୟମା ଦଧିକଃ ସ୍ପଷ୍ଟଶ୍ଚକ୍ରଚକ୍ରାର୍ଦ୍ଧୟୋଃ ସମଃ । ୧୦୧ ।

ଭୂମଧ୍ୟା ଦ୍ରଚୟେଦ୍ରେଖାଂ ମଣ୍ଡଳଦ୍ୱୟଭେଦନୀମ୍
ସ୍ପୃଷ୍ଟମଧ୍ୟଗ୍ରହାମେକାଂସ୍ପୃଷ୍ଟସ୍ପଷ୍ଟଖଗାଂ ପରାମ୍ । ୧୦୨ ।

ତୟୋଃ ସଂଜାୟତେ ଯାବତ୍ ପ୍ରତିବୃତ୍ତେ କଳାନ୍ତରମ୍
ତତ୍ସ୍ୟାଦ୍ବାହୁଫଳଂ ତର୍ଯ୍ୟଗ୍ ଦ୍ୱିତୀୟା ଯା ତୁ ରେଖିକା । ୧୦୩ ।

ବୃତ୍ତୟୋରନ୍ତରଗତା ତଦୂର୍ଦ୍ଧ୍ୱଂ କୋଟିଜଂ ଫଳଂ
ଦୋଃକୋଟିଫଳବର୍ଗୈକ୍ୟମୂଳଂ ଯା କର୍ଣ୍ଣରେଖିକା । ୧୦୪ ।

ଉଚ୍ଚୋନ୍ମୁଖୀ ଭବେଦ୍ ସୈବାକର୍ଷଣପ୍ରମିତମଂତା
ଚନ୍ଦ୍ରଗ୍ରହୋକ୍ତକର୍ଣ୍ଣାଦେଃ ସମ୍ୟାଦୋଽବାପି ଚିନ୍ତ୍ୟତାମ୍ । ୧୦୫ ।

ଦୃଶ୍ୟଶ୍ଚନ୍ଦ୍ରାନ୍ତଗସ୍ୟାଣୁର୍ବିମ୍ବଶ୍ଚନ୍ଦ୍ରାର୍ଦ୍ଧଗସ୍ୟ ତୁ
ପୃଥ୍ୱୀବାହୁଫଳାଭ୍ରବସ୍ତ୍ୱତକୋଟିଫଳଂ ମହତ୍ । ୧୦୬ ।

କେନ୍ଦ୍ରସ୍ୟୌଜପଦାନ୍ତସ୍ଥଗ୍ରହସ୍ୟ ମୃଦୁଦୋଃଫଳମ୍
ମହତ୍ କୋଟୀଫଳାଭ୍ରବସ୍ତ୍ୱ ବମ୍ବସମୋ ଭବେତ୍ । ୧୦୭ ।

ଚକ୍ରେ ଦୂରସ୍ଥିତେଭୂର୍ମେଶ୍ଚନ୍ଦ୍ରାର୍ଦ୍ଧେ ନିକଟସ୍ଥିତେଃ
ପ୍ରାଗ୍ଗତେର୍ନ୍ୟୂନତାଧିକ୍ୟଂ ଭବେଦ୍‌ଖେଟସ୍ୟ ବମ୍ବବତ୍ । ୧୦୮ ।

ତନ୍ମନ୍ଦାଦୌ ମନ୍ଦକେନ୍ଦ୍ରେ ଗତେଃ ଫଳମୃଣାଭିଧମ୍
କର୍କ୍ୟାଦୌ ତଦ୍ଧନଂ ପ୍ରୋକ୍ତଂସାମ୍ୟେଽପି ଗତବର୍ତ୍ମନଃ । ୧୦୯ ।

ଶି—ଯଥା ଭବେତ୍ତୈଳକଯନ୍ତ୍ରମଧ୍ୟେ
କାଷ୍ଠଭ୍ରମୋ ଗୋଭ୍ରମତୋ ବଲୋମଃ ।
ନୀଚୋଚ୍ଚବୃତ୍ତେ ଭ୍ରମଣଂ ତଥାନ୍ୟତ୍
ସ୍ୟାଦ୍‌ଗଚ୍ଛତୋଽପି ପ୍ରତମଣ୍ଡଳେନ । ଇତି । ୧୧୦ ।

ଚନ୍ଦ୍ରର ଦ୍ୱାଦଶ ରାଶି କେନ୍ଦ୍ରରେ କକ୍ଷା ଓ ପ୍ରତି ମଣ୍ଡଳର ପୂର୍ବ ପଶ୍ଚିମ ପରମାନ୍ତର ୫ । ୧୩ ଅଙ୍ଗୁଳ ପୁଣି ଛ ରାଶୀ କେନ୍ଦ୍ରରେ ସେହି ପରମାନ୍ତର ୪ । ୪୭ ଅଙ୍ଗୁଳ ମାତ୍ର ( ସେଠାରେ ୫''+୧୩'' ଏଠାରେ ୫'—୧୩' ) ଏହି ସ୍ଥାନର ଅତି ସମୀପରେ ଉଚ୍ଚ ଓ ନୀଚ ଜନିତ ଆକର୍ଷଣ ବେଶି ହେବାର କଥା ।

ମନ୍ଦୋଚ୍ଚ ପୂର୍ବରେ ଥିବାରୁ ପ୍ରତିମଣ୍ଡଳ କକ୍ଷାଠାରୁ ପୂର୍ବ ଆଡ଼କୁ ଆକୃଷ୍ଟ ହୁଏ । କକ୍ଷାରେ ମିଥୁନ ରାଶିର ଶେଷରେ ଥିବା ଚନ୍ଦ୍ର ପ୍ରତିବୃତ୍ତରେ ଧନୁରାଶିର ଶେଷରେ ଏବଂ କକ୍ଷାରେ ଧନୁରାଶିର ଶେଷରେ ଥିବା ଚନ୍ଦ୍ର ପ୍ରତିବୃତ୍ତରେ ମିଥୁନ ଶେଷରେ ରହେ ।

ଉଚ୍ଚ ଗ୍ରହକୁ ତା ଆଡ଼କୁ ପୂର୍ବାଭିମୁଖରେ ଟାଣିବା ହେତୁ କକ୍ଷାର ଉତ୍ତରରେ ଯେଉଁ ମେଷାଦି ଛ ରାଶି ସେଥିରେ ସ୍ପଷ୍ଟ ଗ୍ରହ ମଧ୍ୟଗ୍ରହଠାରୁ କମ୍ ଏବଂ କକ୍ଷାର ଦକ୍ଷିଣରେ ଯେଉଁ ତୁଳାଦି ଛ ରାଶି, ସେଥିରେ ମଧ୍ୟ ଗ୍ରହଠାରୁ ସ୍ପଷ୍ଟ ଗ୍ରହ ଅଧିକ ହୋଇଥାଏ । ମେଷ ଓ ତୁଳାର ଆଦ୍ୟରେ ସ୍ପଷ୍ଟଗ୍ରହ ଓ ମଧ୍ୟଗ୍ରହ ସମାନ ହୁଅନ୍ତି ।

ଭୂମଧ୍ୟ କେନ୍ଦ୍ରରୁ ମଧ୍ୟଗ୍ରହ ଯାଏ ଗୋଟିଏ ଏବଂ ସ୍ପଷ୍ଟଗ୍ରହ ଯାଏଁ ଆଉ ଗୋଟିଏ ଏପରି ଦୁଇଟି ରେଖା କରିବାକୁ ହେବ । ଏ ଦୁଇ ରେଖା କକ୍ଷା ଓ ପ୍ରତି ବୃତ୍ତ ଉଭୟ ବୃତ୍ତକୁ ଭେଦ କରି ଯିବେ । ପ୍ରତି ବୃତ୍ତରେ ଏ ଉଭୟ ରେଖା ମଧ୍ୟରେ ଯେତେ ଅନ୍ତର (କଳାଦି) ହେବ ତାହାହିଁ ମନ୍ଦଭୁଜ ଫଳ ଏହା ଚର୍ଯକ୍ ହୋଇଥାଏ । ଉଭୟ ବୃତ୍ତର

ଅନ୍ତରରେ ଭୂକେନ୍ଦ୍ରରୁ ସ୍ପଷ୍ଟଗ୍ରହ ଯାଏ, ଯାଇଥିବା ରେଖାର ଉପରେ କୋଟି ବା କୋଟିଫଳ । ଏହି ଭୁଜ ବର୍ଗ ଓ କୋଟି ବର୍ଗର ଯୋଗରୁ ମୂଳ ବାହାର କଲେ ତାହା କର୍ଣ୍ଣରେଖା ହୁଏ । ଏହି ରେଖା ପୁଣି ଉଚ୍ଚ ଆଡ଼କୁ ହୋଇଥାଏ । ଏହି କର୍ଣ୍ଣରେଖାହିଁ ଉଚ୍ଚ ଆକର୍ଷଣର ଅସଲ ପରିମାଣ । ଏହାକୁହିଁ ଅନ୍ତ୍ୟଫଳ ବା ଅନ୍ତ୍ୟଫଳଜ୍ୟା କୁହାଯାଏ ।

ଏହି ଯେଉଁ ଚନ୍ଦ୍ରସ୍ପଷ୍ଟ କରିବାର ପରିଲେଖ ବର୍ଣ୍ଣିତ ହେଲା, ଏଥିରୁ ଚନ୍ଦ୍ରଗ୍ରହଣ ପରିଲେଖାର ମଧ୍ୟ ସ୍ପଷ୍ଟ ସୂଚନା ମିଳିପାରେ । ସେଥିରେ ଚନ୍ଦ୍ରବିମ୍ବ ଓ କର୍ଣ୍ଣର ଦୃକ୍‌ସିଦ୍ଧି ମଧ୍ୟ ହୋଇପାରିବ । ଉଚ୍ଚ ସ୍ଥାନରେ ଥିବାଗ୍ରହର ବିମ୍ବସୂକ୍ଷ୍ମ ଏବଂ ନୀଚ ସ୍ଥାନରେ ଥିବା ଗ୍ରହର ବିମ୍ବସ୍ଥୂଳ । ଛ ରାଶି ଏବଂ ଦ୍ୱାଦଶ ରାଶି କେନ୍ଦ୍ରର ଗ୍ରହରେ ଭୁଜଫଳ ହୁଏ ନାହିଁ । ଏଣୁ କୋଟିଫଳ ସର୍ବାଧିକ ହୋଇଥାଏ । ବିଷମ ପଦାନ୍ତରେ ଅର୍ଥାତ୍ ୩ୟ ଓ ୯ମ ରାଶି ଶେଷରେ ମନ୍ଦଫଳ ସର୍ବାଧିକ ଓ କୋଟିଫଳ ନ୍ୟୂନ ହୁଏ । ଏଠାରେ ଗ୍ରହବିମ୍ବ ମଧ୍ୟ ସମାନ ହୁଏ । ଅର୍ଥାତ୍ ଉଚ୍ଚ ଓ ନୀଚ ସ୍ଥାନରେ ଯାହା ହୁଏ, ସେ ଦୁଇ ବିମ୍ବକୁ ମିଶାଇ ଅଧା କଲେ ଯାହା ହୁଏ, ତାହାର ସମାନ ହୁଏ ।

ଉଚ୍ଚ ସ୍ଥାନରେ ଗ୍ରହ ପୃଥିବୀ କେନ୍ଦ୍ରରୁ ଅତି ଦୂରରେ ଏବଂ ନୀଚ ସ୍ଥାନରେ ଗ୍ରହ ପୃଥିବୀ କେନ୍ଦ୍ରର ଅତି ନିକଟରେ ରହୁ ଥିବାରୁ ଉଚ୍ଚ ସ୍ଥାନରେ ଗ୍ରହର ପୂର୍ବଗତି ଅତିକମ୍ ଏବଂ ନୀଚ ସ୍ଥାନରେ ଉକ୍ତ ଗ୍ରହର ପୂର୍ବ ଗତି ଅତି ବେଶୀ ହୁଏ ।

ଦୈନିକ ଗତି ମାର୍ଗର ସମାନତା ଆସିଲେ ମଧ୍ୟ ମକରାଦି କେନ୍ଦ୍ରରେ ଗତିଫଳ ଋଣ (ବିଯୁକ୍ତ —) ହୁଏ ଏବଂ କର୍କଟାଦି ଛ ରାଶି କେନ୍ଦ୍ରରେ ପୁଣି ଏହି ଗତିଫଳ ଧନ ଅର୍ଥାତ୍ ଯୁକ୍ତ (+) ହୁଏ ।

ଘଣାରେ ଯେପରି ପେଡ଼ା (ତେଲ ପେଡ଼ିବାକୁ ଥିବା) କାଠଟା ଘଣା ଟଣାରେ ନିଯୁକ୍ତ ବଳଦଙ୍କ ବିପରୀତ ଦିଗରେ ଗତିକରେ ସେପରି ଫଳ ନିମନ୍ତେ ପ୍ରାଚୀନମାନେ ଗ୍ରହର ଉଚ୍ଚଠାରୁ ବିପରୀତ ଗତି ଦେଖାଇଅଛନ୍ତି ।

ରବୀନ୍ଦୂଚ୍ଚୌ ଭକକ୍ଷାୟାଂ ସ୍ଥିତୌ ଚେଦ୍‌ଭୂସ୍ପୃଗ୍ୱୃତ୍ତଃ
ଉଚ୍ଚାଭିମୁଖୌ ନୀଚପାଦାନ୍ତେ କର୍ଣ୍ଣଃ ସ୍ୟାତ୍ତ୍ରିଗୁଣାଧିକଃ ।୧୧୧।

କେନ୍ଦ୍ରୌ ତାଭ୍ୟାଂ ନ୍ତଗତୟୋସ୍ତ୍ରିଜ୍ୟାସାମ୍ୟଂ ମୃଦୁଶ୍ରୁତେଃ
ଚେଦ୍ବିମ୍ବାର୍ଦ୍ଧମୁରୀକାର୍ଯ୍ୟଂ ତଦାକର୍ଷଣରେଖୟୋଃ ।୧୧୨।

କଳ୍ପିତ୍ ବକ୍ରତୟା ମଧ୍ୟରବୀନ୍ଦ୍ୱୋଃ କ୍ଷିତିମଧ୍ୟତଃ
ଅନ୍ତରଂ ଯାବଦେବ ତାବଦ୍ଭବତୁ ସ୍ଫୁଟୟୋରପି ।୧୧୩।

ତତ୍ରାର୍କେନ୍ଦ୍ୱୋର୍ମଧ୍ୟକର୍ଣ୍ଣୌ ବିଶରୈସ୍ତ୍ରିଭୁଜୈଃ କ୍ରମାତ୍
ଗୁଣିତୌ ସ୍ୱୋଚ୍ଚକର୍ଣ୍ଣୌସ୍ତଃ କକ୍ଷାପ୍ୟେବଂ ପ୍ରକଳ୍ପ୍ୟତାମ ।୧୧୪।

ବିଧୋସ୍ତୁଙ୍ଗାନ୍ତରାଖ୍ୟସ୍ୟ ପାକ୍ଷିକସ୍ୟ ଫଳସ୍ୟ ଚ
ସପାତୈତଦ୍ଧିଗଂଶସ୍ୟୋପଲବ୍ଧିର୍ବାସନା ମତା ।୧୧୫।

ରବି ଓ ଚନ୍ଦ୍ରର ମନ୍ଦୋଚ୍ଚ ଭ କକ୍ଷାରେ ରହିଲେ ଭାସ୍କରାଚାର୍ଯ୍ୟଙ୍କ କଥିତ କର୍ଣ୍ଣ (ମନ୍ଦକର୍ଣ୍ଣ) ବିଷମପଦାନ୍ତରେ ତ୍ରିଜ୍ୟାଠାରୁ ଅଧିକ ହେବ । ଏଠାରେ ଗତି ବି ସରଳ ବା ଋଜୁ । କେନ୍ଦ୍ର ବିଷମ ପଦାନ୍ତରେ ଥିବା ରବିଚନ୍ଦ୍ରର ବିମ୍ବ ସମତା ନିମନ୍ତେ ମନ୍ଦକର୍ଣ୍ଣକୁ ତ୍ରିଜ୍ୟା ସମାନ ଗ୍ରହଣକଲେ, ଦୁଇଟିଯାକ ପ୍ରତିବୃତ୍ତ ସାମାନ୍ୟ ବିନ୍ଦୁ ହେତୁ ମଧ୍ୟମ ରବି ଓ ଚନ୍ଦ୍ରର ଭୂକେନ୍ଦ୍ରରୁ ଯେତେଦୂରତା ସ୍ଫୁଟ, ରବି ଚନ୍ଦ୍ରର ମଧ୍ୟ ଭୂ ଗର୍ଭରୁ ସେତିକି ହିଁ ଦୂରତା ହେବ । (ମଧ୍ୟକର୍ଣ୍ଣ, ସ୍ଫୁଟକର୍ଣ୍ଣ ସମାନ ହେବ) । ରବି, ଚନ୍ଦ୍ରର ମନ୍ଦକର୍ଣ୍ଣ ଯଥାକ୍ରମେ ୭୬°୮୨୯.୪ ଓ ୪୮୭°୫ । ଏ ଦୁଇଟିକୁ ଯଥାକ୍ରମେ ୫୩ ଓ ୨୩ରେ ଗୁଣିଲେ ଉଭୟଙ୍କର ଉଚ୍ଚ କର୍ଣ୍ଣ ହେବ । ରବି ଉଚ୍ଚ କର୍ଣ୍ଣ = ୭୬°୮୨୯୪ × ୫୩ = ୪°୩୨୩୯୫୮୨ । ଚନ୍ଦ୍ର ଉଚ୍ଚର କର୍ଣ୍ଣ = ୪୮୭°୫ × ୨୩ = ୧୧୨°୨୧୫ । ଏହି କର୍ଣ୍ଣ ପାଇବାପରେ ତଦନୁଯାୟୀ କକ୍ଷା କଳ୍ପନା କରାଯାଇପାରେ । ଚନ୍ଦ୍ରର ଭୁଙ୍ଗାନ୍ତର, ପାକ୍ଷିକ, ପାତ ଓ ଚନ୍ଦ୍ରର ବିଗଂଶଫଳ ଇତ୍ୟାଦି ଯାହାସବୁ କୁହାଯାଇଛି, ସେସବୁର ଯୁକ୍ତି କିଛି ନାହିଁ । ଉପଲବ୍ଧି ଉପରେ ହିଁ ସେ ସବୁ ନିର୍ଭର କରେ ।

ଦ୍ୱିତୀୟଯନ୍ତ୍ରବତ୍ ସୂର୍ଯ୍ୟକକ୍ଷାଂ ସଗ୍ରହକକ୍ଷିକାମ୍
ବିଲିଖ୍ୟ ଭୂମିଂମଧ୍ୟସ୍ଥାଂ ତତଃ ପଶ୍ୟେଚ୍ଚଳକ୍ରିୟାମ୍ ।୧୧୬।

ତତ୍ରାନୁଲୋମଗଂ କେନ୍ଦ୍ରଂ ଶୀଘ୍ରଂତୁଙ୍ଗସ୍ୟ ଯଦ୍‌ଗତଃ
ବହ୍ୱୀମଧ୍ୟଗତେର୍ଭୁକ୍ତିଃ ସ୍ଫୁଟା ସ୍ୟାଦ୍ଦୋଃଫଳଂ କ୍ରମାତ୍ ।୧୧୭।

ବହୁକକ୍ଷ ଯନ୍ତ୍ରପରି ମଙ୍ଗଳ ଆଦିର କକ୍ଷା ସହିତ ସୂର୍ଯ୍ୟକକ୍ଷା ରଚନା କରି ସୂର୍ଯ୍ୟକକ୍ଷାର ମଧ୍ୟସ୍ଥଳରେ ଭୂଗୋଲ ରଖିବ । ତାପରେ ବୁଲାଇ ଶୀଘ୍ରଫଳ କିପରି ହୁଏ ଦେଖାଇବ । ନିଜେ ବି ଦେଖିବ । ପ୍ରତି ମଣ୍ଡଳରେ ଶୀଘ୍ର କେନ୍ଦ୍ରକୁ ଅନୁଲୋମରେ ଦେବ । ଶୀଘ୍ରୋଚ୍ଚର ଗତି ଗ୍ରହର ମଧ୍ୟଗତିଠାରୁ ବହୁତ ଅଧିକ । ତେଣୁ ଶୀଘ୍ରଫଳ କ୍ରମରେ (ଅନୁସାରେ) ହିଁ ସ୍ଫୁଟଗ୍ରହ ଗତି ହେବାର କଥା । ଗ୍ରହରେ ଶୀଘ୍ରଫଳ ସଂସ୍କାର କଲେ, ଯେପରି ସ୍ଫୁଟଗ୍ରହ ହୁଏ ଠିକ୍ ସେହିପରି ଗତିରେ ଶୀଘ୍ରଗତିଫଳ ସଂସ୍କାର କଲେ ସ୍ଫୁଟ ଗତିହୁଏ ।

ଚକ୍ରାର୍ଦ୍ଧେ ତତ୍‌ସମୀପେ ଚ ପ୍ରାଗ୍‌ଗତେଃ ସୂର୍ଯ୍ୟତୋ ଯତଃ
ବହୁଗତ୍ୟାର୍କ୍କସିତୟୋଃ ସୂର୍ଯ୍ୟଭୂମଧ୍ୟସଂସ୍ଥିତଃ ।୧୧୮।

ତତୋ ବକ୍ରା ଗତର୍ଦୃଶ୍ୟା ଭୌମେଜ୍ୟାର୍କଭୁବାଂ ପୁନଃ
ଶୀଘ୍ରତୋ ଭିନ୍ନଦକ୍ସ୍ଥାନାନ୍ମନ୍ଦଗାନାଂ ତଥୈବ ସା ।୯୯।

ନୀଚ ସ୍ଥଳରେ ବା ନୀଚ ନିକଟରେ ସୂର୍ଯ୍ୟର ପୂର୍ବଗତିଠାରୁ ଅଧିକ ଗତିଶାଳୀ ବୁଧ ଏବଂ ଶୁକ୍ରର ଅବସ୍ଥିତି ସୂର୍ଯ୍ୟ ଏବଂ ପୃଥିବୀ ମଧ୍ୟରେ ହୋଇଥିବାରୁ ସେ ଦୁହିଁଙ୍କର ବକ୍ରଗତି ଦେଖିହୁଏ ।

ପୁଣି ସୂର୍ଯ୍ୟଠାରୁ ମନ୍ଦ ଗତିଶାଳୀ ଏବଂ ଭିନ୍ନ ଦିଗରେ ସ୍ଥିତ (ଭୂଗୋଳ ନିକଟରେ ସ୍ଥିତ) ମଙ୍ଗଳ, ଗୁରୁ ଓ ଶନିର ଚନ୍ଦ୍ରାର୍ଦ୍ଧରେ ଅର୍ଥାତ୍ ପୃଥିବୀ ନିକଟରେ (ନୀଚସ୍ଥାନରେ) ଓ ତାର (ଚନ୍ଦ୍ରାର୍ଦ୍ଧର) ସମୀପରେ ବକ୍ରଗତି ଦେଖାପଡ଼େ ।

ବସ୍ତ୍ରରେଣୋତ୍ୟତେ ବକ୍ରା ବକ୍ରା ଭୁକ୍ତିଃ ସବାସନା
କର୍ଣ୍ଣଯୋଜନସଂଖ୍ୟାୟ୍ୱା ଅଙ୍ଗୁଳତ୍ୱଜୁଷଃ କ୍ଷିତୌ । ୯୬୦ ।

ତ୍ରୟୋଦଶାୟୁତାଂଶେନ ଗଜାର୍ଥାଙ୍ଗୁଳକେନ ହ
ସୂତ୍ରେଣ ରଚୟେଦ୍ ବୃତ୍ତଂ ରବିକକ୍ଷେତି ସମ୍ମତମ୍ । ୯୬୧ ।

ମଧ୍ୟେ ନ୍ୟସ୍ୟ ମହୀବିନ୍ଦୁଂ ମଧ୍ୟାର୍କଂ ତସ୍ୟ ପଶ୍ଚିମେ
ସପ୍ତାଶୀତ୍ୟଙ୍ଗୁଳେନୈବ କକ୍ଷାଂ ତତ୍ପରତୋଽସୃଜଃ । ୯୬୨ ।

ପ୍ରାଗ୍‌ଭାଗେ କଜକକ୍ଷାୟାଂ ନ୍ୟସେଦ୍‌ବୃତ୍ତଂ ମହୀଭୁବଃ
ସୂର୍ଯ୍ୟଭୂମଙ୍ଗଳସ୍ୟୈତ ସୂତ୍ରାଗ୍ରେ ବହୁଦୂରତଃ । ୯୬୩ ।

ପ୍ରକଲ୍ପ୍ୟ ତାରକାଂ କାଂଚିତ୍ ପ୍ରାଚ୍ୟାଂ କୌ ତତ୍ସମଂ କୁଜମ୍
ଦୃଷ୍ଟ୍ୱା ଚନ୍ଦ୍ରାର୍ଦ୍ଧଗଂ ଯାମ୍ୟଗମୂର୍ଦ୍ଧ୍ୱଂ ବଗ୍ରୈର୍ଯ୍ୟ ଚ । ୯୬୪ ।

ମଧ୍ୟାର୍କଂ ଦକ୍ଷିଣଂ ନୀତ୍ୱାହର୍ଗତ୍ୟାଙ୍ଗୁଳମାନୟା
ତଥା ଭୌମଂ ସକକ୍ଷଂଚ ସ୍ୱାର୍ଥାଂଶୋନାଙ୍ଗୁଳାମ୍ମନା । ୯୬୫ ।

ସ୍ୱଗତ୍ୟୋତ୍ତରଣଂ କୁର୍ଯ୍ୟାତ୍ତାଭ୍ୟାଂହ୍ୱାସ୍ୱଯାମ୍ୟଗଃ
ଷଷ୍ଟ୍ୟଂଶକୈର୍ଦ୍ୱାଦଶଭି ର୍ଦୃଶ୍ୟତେଽନ୍ତରତଃ ସ୍ଫୁଟଃ । ୯୬୬ ।

ଭୂମି ପ୍ରର୍ଯାନ୍ତଗର୍ଦ୍ଧଂ ଯଦ୍‌ଭୂମିର୍ଭୌମାନ୍ତର-ଶ୍ରବଃ
ତତଃ ସିଦ୍ଧକଳା ଦୃଶ୍ୟା ସାକ୍ଷାଦ୍‌ବକ୍ରା ଗତର୍ଭୁବ । ୯୬୭ ।

ଚନ୍ଦ୍ରେ କୁଜାର୍କୟୋରେକଦଗ୍ଗତେନଂଶେଦକ୍ଳା
ଭୌମଯାମ୍ୟଗତଃସୂର୍ଯ୍ୟଂକ୍ୟଣ୍ଡୁଘ୍ନୀ ନଜକଣ୍ଡୁହୃତ୍ । ୧୨୮ ।

ସମାବ୍ଧ୍ୟକଲକା ସାକ୍ଷାଦ୍ବୃକ୍ଜ୍ୟୀ ଭବତ ତଦ୍ଗତଃ
ଇତ୍ଥମନ୍ୟଗ୍ରହାଣାଂ ଚ ଦ୍ରଷ୍ଟବ୍ୟା ବବଧା ବୁଧୈଃ । ୧୨୯ ।

ପ୍ରାକ୍ସିଦ୍ଧାନ୍ତମତେ ସୈବ ରବକକ୍ଷା କୁଜସ୍ୟ ତୁ
ନବାଂଶାଙ୍ଗୁଳ ସୂତ୍ରୋତ୍ଥା କାର୍ଯ୍ୟା ଭୂବେଷ୍ଟନକ୍ରମାତ୍ । ୧୩୦ ।

ଏକସୂତ୍ରେଽର୍କଭୂଭୌମାଃ ସ୍ଥାପ୍ୟା ଭଂ ଚ ପୁନଃ ପୁନଃ
ସ୍ୱଶୀଘ୍ରତପନାକୃଷ୍ଟଃ ପଶ୍ଚାଦ୍ ଦ୍ୱ୍ୟଦ୍ର୍ୟଙ୍ଗୁଳାନ୍ତରେ । ୧୩୧ ।

ସ୍ଥିତଃଶ୍ଚନ୍ଦ୍ରାର୍କଗୋ ଦୃଶ୍ୟସ୍ତତୋ ଦନଗତଃ ସମା
ଯାମ୍ୟେ ସୌମ୍ୟେଽର୍କଲୁଜୟୋର୍ଦତ୍ୱା ପ୍ରାଗ୍ବତ୍ ସ୍ୱକକ୍ଷୟୋଃ । ୧୩୨ ।

ତଦ୍ସ୍ତାବଦନାକୃଷ୍ଟେରଙ୍ଗୁଳାଗାଂଶ ଉତ୍ତରେ
ସୂତ୍ରାଦ୍ଗତସ୍ୟ ଦୃଶ୍ୟାସ୍ୟ ପ୍ରାଗ୍ଗତର୍ବିଶ୍ୱଲପ୍ତିକା । ୧୩୩ ।

ଭୂମଧ୍ୟାର୍କସମେ ସୂତ୍ରେ ଭକକ୍ଷାୟାଂ ଯଦୀଷ୍ୟତେ
ଶୀଘ୍ରୋଚ୍ଚସ୍ତଦ୍ଗତର୍ଦ୍ୱେଧା ଚନ୍ଦ୍ରଚନ୍ଦ୍ରାର୍କୟୋର୍ଭବେତ୍ । ୧୩୪ ।

ତଦାକର୍ଷାତ୍ କୁଜାଦୀନାଂ ଯତ୍ ଯତ୍ସ୍ୟାତ୍ ପ୍ରତମଣ୍ଡଳମ୍
ତତ୍ତନ୍ମଧ୍ୟେଽର୍କମଧ୍ୟସ୍ୟ ସ୍ଥିତେଃ ସିଦ୍ଧ୍ୟତ ତଦ୍ଭ୍ରମଃ । ୧୩୫ ।

ଯଦ ଭୂମଧ୍ୟକା କକ୍ଷା ମନ୍ୟତେ ତନ୍ମୃଦୂଚ୍ଚକାତ୍
ଆକର୍ଷଣାନ୍ନ ଭିଦ୍ୟେତ ଶରସ୍ତେଷାଂ ବଧୋରବ । ୧୩୬ ।

କେବଳଂ ଶୀଘ୍ରଜାକର୍ଷାତ୍ଭେଦେ ଯଃ ପ୍ରତପଦ୍ୟତେ
ସବିଜ୍ୟାଘ୍ନାନ୍ତ୍ୟକର୍ଣ୍ଣାପ୍ତମଧ୍ୟେଷୋ ରେବ ସିଦ୍ଧ୍ୟତ । ୧୩୭ ।

ତତ୍ରାର୍କୋତ୍ଥଗୁଣଦ୍ୱନ୍ଦ୍ୱେ ଶରାନ୍ତ୍ୟୌଲଗତୋ ଯତଃ
ମନ୍ଦାକୃଷ୍ଟସ୍ୟ ନୀଚୋଚ୍ଚଗତାବପି ନଭଃସଦଃ ।୧୩୮।

ମଦୁକ୍ତ୍ୟା ଶରଶ୍ଚତ୍ୟା ସଂସ୍କୃତେଷୋଃ ସ୍ଫୁଟତ୍ୱତଃ
ମଧ୍ୟାର୍କାଭିଭ୍ରମଃ ସିଦ୍ଧଃ ଶୁକ୍ରେଜ୍ୟାର୍କବୁଧାସୃଜାମ୍ ।୧୩୯ ।

**ମଧ୍ୟାର୍କକେନ୍ଦ୍ରକା କକ୍ଷା ଯତ୍ରାଗ୍ରଖ୍ୟନଭଃସଦାମ୍**
**ତନ୍ମନ୍ଦାକୃଷ୍ଟିରେଖୈଷାଂ ଭୂମୌ ଭିନ୍ନେକ୍ଷ୍ୟତେଽର୍କତଃ ।୧୪୦।**

ବର୍ତ୍ତମାନ ଯୁକ୍ତି ସମ୍ବନ୍ଧ ବକ୍ର ଓ ମାର୍ଗୀ ଗତି କଥା ବିସ୍ତୃତ ଭାବରେ କୁହାଯାଉଅଛି । ରବିର ମଧ୍ୟମକର୍ଣ୍ଣ ହେଲା ୭୬୦୮୨୯୪ । ଏହାର ୧୩୦୦୦ ଅଂଶ ଅର୍ଥାତ୍ (ସ୍ୱଲ୍ପାନ୍ତର) ୫୮ ଅଙ୍ଗୁଳ ବ୍ୟାସାର୍ଦ୍ଧରେ ରବି କକ୍ଷା ସୁସମ ଧରା ତଳରେ ଲେଖିବ । ଏହି କକ୍ଷାର ମଧ୍ୟ ସ୍ଥଳରେ ପୃଥିବୀ ବିନ୍ଦୁ ନେଇ ଏବଂ ଏହାର ପଶ୍ଚିମରେ ମଧ୍ୟମ ରବିକୁ ରଖି ତାହାର ଚାରି-ପାଖରେ ୮୭ ଅଙ୍ଗୁଳ ବ୍ୟାସାର୍ଦ୍ଧରେ ମଙ୍ଗଳର କକ୍ଷା ରଚନା କରିବ । ଏହି କକ୍ଷାର ପୂର୍ବ ଦିଗରେ ମଙ୍ଗଳର ବିମ୍ବ ବସାଇବ । ପୃଥିବୀ, ରବି ଓ ମଙ୍ଗଳର କେନ୍ଦ୍ର ନେଇ ଏକ ରେଖା ଟାଣି ବହୁ ଦୂରରେ ପୂର୍ବ ଦିଗରେ ଗୋଟିଏ ତାରା କଳ୍ପନା କରି ବସାଇବ । ଭୂମିର ଅତି ନିକଟରେ ମଙ୍ଗଳକୁ ବସାଇ ତାକୁ ସେହି ତାରା ସମାନରେ ରଖିବ । ଏହା କକ୍ଷାର ଦକ୍ଷିଣ ଭାଗରେ ହେବ ଏବଂ ଏହି ଦକ୍ଷିଣ ଭାଗକୁ ଊର୍ଦ୍ଧ୍ୱ ମନେକରି ଦୈନିକ ଅଙ୍ଗୁଳ ଗତିରେ ମଧ୍ୟମ ରବିକୁ ଦକ୍ଷିଣ ଆଡ଼କୁ ଚଳାଇବ । କକ୍ଷା ସମ୍ବନ୍ଧ ମଙ୍ଗଳକୁ ୪୮ ଅଙ୍ଗୁଳ ଗତିରେ ଉତ୍ତରକୁ ଚଳାଇବ । ଏପରି କଲେ ତାରା ସୂତ୍ରର ଦକ୍ଷିଣକୁ ସେହି ସ୍ପଷ୍ଟ ମଙ୍ଗଳ ୧୨ଷଷ୍ଠ୍ୟଂଶ କଳାରେ ଅନ୍ତରିତ ହେବାର ଦେଖାଯିବ । ଭୂସୂର୍ଯ୍ୟାନ୍ତରର ଅଧା, ଭୂମି ଓ ମଙ୍ଗଳାନ୍ତର କର୍ଣ୍ଣ ଏବଂ ପୃଥିବୀରେ ( ଚକ୍ରରେ ) ୨୦ କଳା ମାତ୍ର ମଙ୍ଗଳର ବକ୍ରଗତି ଦେଖାଯିବ ।

ଉଚ୍ଚ ସ୍ଥାନରେ ରବି ଓ ମଙ୍ଗଳର ଏକ ଦିଗରେ ଅବସ୍ଥାନ ହେତୁ ୧୦୭ କଳା ମଙ୍ଗଳ ଦକ୍ଷିଣ ଗତିକୁ ସୂର୍ଯ୍ୟ କର୍ଣ୍ଣରେ ୫୮ରେ ଗୁଣି ରବି ସ୍ୱ କକ୍ଷା ବ୍ୟାସାର୍ଦ୍ଧ ଯୋଗରେ ୧୪୫ ଭାଗ ଦେଲେ $\frac{୧୦୭ \times ୫୮}{୧୪୫} = ୦୩$ ଏତିକ କଳା ମଙ୍ଗଳର ମାର୍ଗୀଗତି ହେବ ।

ଏହା ଉକ୍ତ ଚକ୍ରରେ ସାକ୍ଷାତ୍ ଉପଲବ୍ଧ ହେଉଅଛି । ଏପରି ଦୃଷ୍ଟାନ୍ତ ଦେଇ ଅନ୍ୟ ଗ୍ରହ-ମାନଙ୍କର ବକ୍ର ଓ ମାର୍ଗୀ ଆଦି ଗତି ଗଣକ ପ୍ରତ୍ୟକ୍ଷ କରିବେ ।

( ଏ ପ୍ରତ୍ୟକ୍ଷ ପ୍ରକାର ଭୂ ତଳରେ ଚକ୍ରକରି ଦେଖିବାକୁ ହେବ )

ପୂର୍ବ ସିଦ୍ଧାନ୍ତ ମତରେ ପୂର୍ବୋକ୍ତ ରବିକକ୍ଷାକୁହିଁ ରବିକକ୍ଷା ବୋଲି ଧରିବାକୁ ହେବ । ପୃଥିବୀ କେନ୍ଦ୍ରହିଁ ମଙ୍ଗଳ କକ୍ଷାର କେନ୍ଦ୍ର । ପୃଥିବୀ ଚାରି ପାଖରେ ଭୂକେନ୍ଦ୍ରରୁ ୧୦୯ ଅଙ୍ଗୁଳ ବ୍ୟାସାର୍ଦ୍ଧରେ ମଙ୍ଗଳ କକ୍ଷା କରିବ । ଗୋଟିଏ ସୂତ୍ରରେ ସୂର୍ଯ୍ୟ, ପୃଥିବୀ ଓ ମଙ୍ଗଳର ବିମ୍ବକୁ ରଖି ଭୂକକ୍ଷାର ଗୋଟିଏ ନକ୍ଷତ୍ରକୁ ମଧ୍ୟ ସେହି ସୂତ୍ର ମଧ୍ୟରେ ରହିବା ପରି କରିବ । ମଧ୍ୟମ-ସୂର୍ଯ୍ୟ ମଙ୍ଗଳର ଶୀଘ୍ରୋଚ୍ଚ । ତଦ୍ଦ୍ୱାରା ଆକୃଷ୍ଟ ହୋଇ ମଙ୍ଗଳ ପଶ୍ଚିମ ଦିଗରେ ୭୨ ଅଙ୍ଗୁଳ ଅନ୍ତରରେ ମାତ୍ର ସ୍ଥାନରେ ଦେଖାଯିବ । ଏହାପରେ ରବି ଓ ମଙ୍ଗଳର ଦୈନିକ ଗତି ଯଥାକ୍ରମ ଦକ୍ଷିଣ ଓ ଉତ୍ତରକୁ ନିଜ ନିଜ କକ୍ଷାରେ ଦେବ । ସେଠାରୁ ସୂର୍ଯ୍ୟାକର୍ଷଣର ସପ୍ତମାଂଶ ½ ଅଂରେ ଉତ୍ତରକୁ ମଙ୍ଗଳର ୧୩ କଳା ପୂର୍ବଗତି ଦୃଶ୍ୟ ହେବ । ପରନ୍ତୁ

ନୀଚସ୍ଥ ମଙ୍ଗଳର ବକ୍ର ପଶ୍ଚିମ ଗତି ଦୃଶ୍ୟ ହୋଇପାରେ । ପୃଥିବୀ କେନ୍ଦ୍ର ଓ ସୂର୍ଯ୍ୟ କେନ୍ଦ୍ର ଗତ ସୂତ୍ର ଭକକ୍ଷାକୁ ଯେଉଁଠାରେ କାଟିବ ସେଠାରେ ଶୀଘ୍ରୋଚ୍ଚ କଳ୍ପନା କଲେ ଉଚ୍ଚ ଓ ନୀଚ ସ୍ଥାନରେ ଦୁଇ ପ୍ରକାର ଗ୍ରହ ଗତି ହେବ । ଗୋଟିଏ ପୂର୍ବ ଓ ଅନ୍ୟଟି ପଶ୍ଚିମ ।

ଶୀଘ୍ରୋଚ୍ଚ ଆକର୍ଷଣରୁ ମଙ୍ଗଳ ଆଦି ଗ୍ରହର ଯେଉଁ ଶୀଘ୍ର ପ୍ରତିବୃତ୍ତ ସବୁ ହୁଏ, ସେହି ସବୁ ପ୍ରତିବୃତ୍ତ ମଧ୍ୟରେ ଅର୍ଥାତ୍ କେନ୍ଦ୍ରରେ ରବିର କେନ୍ଦ୍ର ଥିବାରୁ ମଧ୍ୟମ ରବିର ମଧ୍ୟ ଭ୍ରମଣ ଏହି ପ୍ରସଙ୍ଗଦ୍ୱାରା ସିଦ୍ଧ ହେବ ।

କିନ୍ତୁ ମଙ୍ଗଳ ଆଦିର କକ୍ଷା ଯଦି ପୃଥିବୀ କେନ୍ଦ୍ରିକ ହୁଏ, ତାହାହେଲେ ମନ୍ଦୋଚ୍ଚ ଆକର୍ଷଣରୁ ଚନ୍ଦ୍ରର ଭିନ୍ନଶର ନ ହେଲା ପରି ଏମାନଙ୍କ ଶର ମଧ୍ୟ ହୁଅନ୍ତା । (ଅର୍ଥାତ୍ ଚନ୍ଦ୍ରଶର ନିମନ୍ତେ ଯେପରି ଗୋଟିଏ ମାତ୍ର ଅନୁପାତ କରାଯାଏ, ଏମାନଙ୍କ ଶର ପାଇଁ ମଧ୍ୟ ତାହା କରାଯାନ୍ତା । ଆଉ ଦୁଇଟି ଅନୁପାତର ଆବଶ୍ୟକତା ରହନ୍ତା ନାହିଁ ) । ତାହା ହେଉ ନ ଥିବାରୁ ଅର୍ଥାତ୍ ଶୀଘ୍ରୋଚ୍ଚ ଆକର୍ଷଣରୁ ସେମାନଙ୍କ ଆକର୍ଷଣର ପ୍ରଭେଦ ପ୍ରତିପନ୍ନ ହେଉ ନ ଥିବାରୁ ତାହାକୁ (ସେହି ଶରକୁ ) ତ୍ରିଜ୍ୟାରେ ଗୁଣି ୪ର୍ଥ କର୍ଣ୍ଣରେ ହରିଲେହିଁ ବାସ୍ତବ ଭଗୋଳୀୟ ଶର ହୋଇଥାଏ ।

ରବି କେନ୍ଦ୍ରିକ ଗ୍ରହ କକ୍ଷାରେ ମନ୍ଦୋଚ୍ଚାକୃଷ୍ଟ ଗ୍ରହ ନୀଚ ଉଚ୍ଚ ଆଡ଼କୁ ଗତି କରିବା ସମୟରେ ରବିଠାରୁ ଗ୍ରହ ଗୋଳୀୟ ବିମଣ୍ଡଳ ପ୍ରତିମଣ୍ଡଳଗତ ସୂତ୍ରରେ ଦୁଇଟିଯାକ ଶରାନ୍ତ ଲଗିଯାଏ । ତେଣୁ ପୂର୍ବରୁ ମୁଁ ଯେପରି କହିଛି, ସେହିପରି ଶର ସାଧନ ଯୋଗ୍ୟ କର୍ଣ୍ଣ ଦ୍ୱାରା ସ୍ଫୁଟରେ ହେଉଥିବାରୁ ଶୁକ୍ର, ଗୁରୁ, ଶନି, ବୁଧ ଓ ମଙ୍ଗଳ ମଧ୍ୟାର୍କର ଚାରିପଟେ ଭ୍ରମଣ କରୁଥିବା ସୁସିଦ୍ଧ ହୋଇଯାଏ । ମଙ୍ଗଳ ଆଦି ତାରା ଗ୍ରହମାନଙ୍କର ( ପଞ୍ଚ ତାରା ଗ୍ରହର ) କକ୍ଷାଗୁଡ଼ିକ ରବି କେନ୍ଦ୍ରିକ ଏବଂ ଏମାନଙ୍କ ମନ୍ଦାକର୍ଷଣ ରେଖା ପୃଥିବୀରେ ବରାବର ଭିନ୍ନ ହେଉଥିବାର ଦେଖାଯାଏ । (ସୂକ୍ଷ୍ମ ବିଚାରରେ ଦେଖିଲେ ପଞ୍ଚତାରା ଗ୍ରହର ଦୁଇଟି ଉଚ୍ଚ ଭିତରୁ ଗୋଟିଏ ଯେ ସୂର୍ଯ୍ୟ ଏଥିରେ ଆଦୌ ସନ୍ଦେହ ରହେ ନାହିଁ ।

ତତୋ ମନ୍ଦସ୍ଫୁଟଂ ଖେଟଂ ଜ୍ଞାତୁଂ କର୍ଣଦ୍ୱୟଂ କୃତମ୍
ଶୈଘ୍ର୍ୟମାନ୍ଦ୍ୟାର୍ଦ୍ଧନାମାଦୌ ତତଃ ସ୍ପଷ୍ଟାଂ ମୃଦୁକ୍ରିୟାମ୍ । ୧୪୧ ।

ମନ୍ଦସ୍ପଷ୍ଟସ୍ୟ ଭୂଗୋଲଦୂରତା ଦୂରତାବଶାତ୍
ଭଚକ୍ରାବସ୍ଥିତୀକ୍ଷାପ୍ତ୍ୟୈ ତୁର୍ଯ୍ୟଂ ଦ୍ରାକ୍‌କର୍ଣନର୍ତ୍ତିତମ୍ । ୧୪୨ ।

ଇତ୍ଥଂ ଶୈଘ୍ର୍ୟାର୍ଦ୍ଧମାନ୍ଦ୍ୟାର୍ଦ୍ଧ ମାନ୍ଦ୍ୟଶୈଘ୍ର୍ୟୈଃ ଫଳୈରପି
ଜ୍ଞାରକୀଣାଂ କ୍ରିୟତେ ଭେଦଲବଓତ୍ ଶୁଦ୍ଧୟେ ମୟା । ୧୪୩ ।

ପରୋଚ ସଂସ୍କୃତଃ ପ୍ରୋକ୍ତା ବଧୋସ୍ଫୁଙ୍ଗାନ୍ତରାଦ ଯତ୍
ତତ୍ତତ୍ ଫଳଂ ମୁନିପ୍ରୋକ୍ତବୀଜମିତ୍ୟବଧାର୍ଯ୍ୟତାମ୍ । ୧୪୪ ।

**ଆର୍ଷସିଦ୍ଧାନ୍ତତୋ ଯେ ଯେ ବିଶେଷା ଦୃଷ୍ଟିସିଦ୍ଧୟେ**
**ସ୍ଫୁଟୀକୃତୌ ପ୍ରକଲ୍ପ୍ୟନ୍ତେ ତେ ବୀଜତ୍ୱେନ ସମ୍ମତାଃ । ୧୪୫ ।**

**ତଥାହୁର୍ବାର୍ତ୍ତିକେ—**

**ଜ୍ଞାତଗ୍ରହୋପଦେଶାଦ୍ବୀଜଂ ଜ୍ଞାତ୍ୱା ସୁଦୈବଜ୍ଞୈଃ**
**ତତ୍ସଂସ୍କୃତଗ୍ରହେଭ୍ୟଃ କର୍ତ୍ତବ୍ୟୌ ନିର୍ଣ୍ଣୟାଦେଶୌ ।ଇତି ୧୪୭ ।**

ମଙ୍ଗଳ ଆଦି ଗ୍ରହମାନେ ରବିକେନ୍ଦ୍ରିକ ନିଜ ନିଜ କକ୍ଷାରେ ବୁଲୁଥିବାରୁ ମନ୍ଦସ୍ଫୁଟ ଗ୍ରହ ଜାଣିବା ନିମନ୍ତେ ପ୍ରଥମେ ମଧ୍ୟମ ଗ୍ରହରେ ଶୀଘ୍ର ଫଳାର୍ଦ୍ଧ ଓ ତା ପରେ ମନ୍ଦ ଫଳାର୍ଦ୍ଧ ସଂସ୍କାର କରାଯାଇଅଛି । ତାହାପରେ ସ୍ଫୁଟ ମନ୍ଦଫଳ ସଂସ୍କାର କରାଯାଇଅଛି । ତାହାପରେ ଭୂଗୋଳର ଅତି ଦୂରତା ଦୃଷ୍ଟିରୁ ଏବଂ ମନ୍ଦସ୍ଫୁଟ ଗ୍ରହର ଉପରେ ଅବସ୍ଥାନ ଦେଖିବା ନିମନ୍ତେ ଚତୁର୍ଥ ଶୀଘ୍ରଫଳ ସଂସ୍କାର କରାଯାଇଛି ।

ଏହିପରି ଶୀଘ୍ରଫଳାର୍ଦ୍ଧ, ମନ୍ଦଫଳାର୍ଦ୍ଧ ମନ୍ଦଫଳ ଓ ଶୀଘ୍ରଫଳ ଚାରିଫଳ ସଂସ୍କାରରେ ମଙ୍ଗଳ, ବୁଧ ଓ ଶନିର ସ୍ପଷ୍ଟତା କରାଗଲା ପରେ ମଧ୍ୟ ପ୍ରତ୍ୟକ୍ଷରେ କେତେକ ତଫାତ୍ ଦେଖାଯାଇଥିବାରୁ ମୁଁ ପୁଣି ଏ ସବୁରେ ପରୋକ୍ଷ ସଂସ୍କାର କରିଅଛି । ଚନ୍ଦ୍ରର ଭୁଜାନ୍ତର ଆଦି ଯେତେ ଫଳ ସଂସ୍କାର କଥା କୁହାଯାଇଛି ସେ ସମସ୍ତଙ୍କୁ ଆର୍ଷବୀଜ ବୋଲି ଗ୍ରହଣ କରିବାକୁ ହେବ । ଗ୍ରହଙ୍କୁ ଦୃକ୍‌ସିଦ୍ଧ କରିବା ନିମନ୍ତେ ଆର୍ଷସିଦ୍ଧାନ୍ତରୁ ଅଲଗା ଯେତେବେଳେ ବିଶେଷ ସଂସ୍କାର ପ୍ରକାର କଳ୍ପନା କରାଯାଏ ସେ ସବୁକୁ ବୀଜ ସଂସ୍କାର ରୂପରେ ଗ୍ରହଣ କରାହୁଏ । ଉତ୍ତମ ଜ୍ୟୋତିଷୀମାନେ ପ୍ରସିଦ୍ଧ ଜ୍ୟୋତିଷଶାସ୍ତ୍ରମାନଙ୍କରୁ ବୀଜସଂସ୍କାର ଦେଖି ପ୍ରୟୋଗ କରି ସ୍ଫୁଟଗ୍ରହ ସାଧନ କରିବେ ଏବଂ ଏହି ବୀଜ ସଂସ୍କୃତ ସ୍ଫୁଟ ଗ୍ରହରୁ ତିଥି ଗ୍ରହଣାଦିର ନିର୍ଣ୍ଣୟ ତଥା ଲୋକଙ୍କର ଶୁଭାଶୁଭ ଫଳ କହିବେ ।

**ଶିରୋମଣୌ :—**

**ମଧ୍ୟୋ ହି ମନ୍ଦପ୍ରତିମଣ୍ଡଳେ ସ୍ୱେ**
**ମନ୍ଦସ୍ଫୁଟୋ ଦ୍ରାକ୍ ପ୍ରତିମଣ୍ଡଳେ ଚ ।**
**ଭ୍ରମତ୍ୟତଶ୍ଚଞ୍ଚଳକର୍ମ୍ମଣୀହ**
**ମନ୍ଦସ୍ଫୁଟୋ ମଧ୍ୟଖଗଃ ପ୍ରକଲ୍ପ୍ୟଃ ।୧୪୭।**

ମନ୍ଦ ପ୍ରତିବୃତ୍ତରେ ମଧ୍ୟଗ୍ରହ ଓ ଶୀଘ୍ରପ୍ରତିବୃତ୍ତରେ ମନ୍ଦସ୍ଫୁଟ ଗ୍ରହଭ୍ରମଣ କରନ୍ତି । ଏଣୁ ଶୀଘ୍ରଫଳ ସଂସ୍କାର କଲାବେଳେ ମନ୍ଦସ୍ଫୁଟ ଗ୍ରହକୁ ମଧ୍ୟମଗ୍ରହ ବୋଲି ଗ୍ରହଣ କରାଯିବା ଉଚିତ ।

**ଭ୍ରମନ୍ ଗ୍ରହଃ ସ୍ୱେ ପ୍ରତମଣ୍ଡଳେ ନୃଭିଃ**
**ସ ଯତ୍ର କକ୍ଷାବଳୟେ ବିଲୋକ୍ୟତେ ।**
**ସ୍ଫୁଟୋ ହି ତତ୍ରାସ୍ୟ ଫଳୋପପତ୍ତୟେ**
**ପ୍ରକଳ୍ପିତଂ ତୁଙ୍ଗମିହାଦ୍ୟସୂରିଭିଃ ।୧୪୮।**

ନିଜ ପ୍ରତିବୃତ୍ତରେ ଗ୍ରହ ବୁଲୁଥିବାବେଳେ ତାକୁ ମନୁଷ୍ୟ କକ୍ଷା ବୃତ୍ତର (ଭ କକ୍ଷା) ଯେଉଁଠାରେ ଦେଖେ, ତାହାହିଁ ବାସ୍ତବ ସ୍ଫୁଟଗ୍ରହ । ତେଣୁକ ହିଁ ତେତେବେଳର ସ୍ଫୁଟ ଗ୍ରହ । ଏହି ସ୍ଫୁଟଗ୍ରହର ଗଣ୍ୟାଦ ପାଇବାନିମନ୍ତେ (ଅର୍ଥାତ୍ ଏଣୁକ ଗଣ୍ୟାଦରେ ପହୁଞ୍ଚିବା ପାଇଁ ପ୍ରାଚୀନ ଆଚାର୍ଯ୍ୟ ମାନେ ଉଚ୍ଚ (ମନ୍ଦୋଚ୍ଚ, ଶୀଘ୍ରୋଚ୍ଚ) କଳ୍ପନା କରିଅଛନ୍ତି ।

**ଯଃ ସ୍ୟାତ୍ପ୍ରଦେଶଃ ପ୍ରତମଣ୍ଡଳସ୍ୟ**
**ଦୂରେ ଭୁବସ୍ତସ୍ୟ କୃତୋଚ୍ଚସଂଜ୍ଞା ।**
**ସୋଽପି ପ୍ରଦେଶଶ୍ଚଲତୀତି ତସ୍ମାତ୍**
**ପ୍ରକଳ୍ପିତା ତୁଙ୍ଗଗତିର୍ଗତଜ୍ଞୈଃ ।୧୪୯।**

ପ୍ରତିବୃତ୍ତର ଯେଉଁ ସ୍ଥାନ ପୃଥିବୀଠାରୁ ଦୂରତମ ତାହାକୁହିଁ ଉଚ୍ଚନାମ ଦିଆଯାଇଛି । ଏହି ସ୍ଥାନ ମଧ୍ୟ ଗତିଶୀଳ ହୋଇଥିବାରୁ ଗତି ବିଜ୍ଞମାନେ ଉଚ୍ଚଗତିର କଳ୍ପନା କରିଅଛନ୍ତି ।

**ଉଚ୍ଚାଦ୍ଭଷଟ୍କାନ୍ତରିତଂ ଚ ନୀଚଂ**
**ମଧ୍ୟଃ ସ୍ୱନୀଚୋଚ୍ଚସମୋ ଯଦା ସ୍ୟାତ୍ ।**
**କକ୍ଷାସ୍ଥମଧ୍ୟୋପରିକର୍ଣ୍ଣ-ସୂତ୍ର—**
**ପାତାତ୍ ସ୍ଫୁଟୋ ମଧ୍ୟସମସ୍ତଦାନୀମ୍ ।୧୫୦।**

ଉଚ୍ଚଠାରୁ ଛ'ରାଶି ଅନ୍ତରରେ (ପ୍ରତିବୃତ୍ତରେ ଯେଉଁ ସ୍ଥାନ ପୃଥିବୀର ନିକଟତମ) ନୀଚ ସ୍ଥାନ ମଧ୍ୟ ଗ୍ରହ ଉଚ୍ଚ ସନ୍ନିଡ ବା ନୀଚ ସନ୍ନିଡ ସମାନ ହେଲେ କର୍ଣ୍ଣସୂତ୍ର (ସ୍ପଷ୍ଟଗ୍ରହ ଓ ଭୂକେନ୍ଦ୍ରଗାମୀ ସୂତ୍ର) କକ୍ଷାବୃତ୍ତରେ ଥିବା ମଧ୍ୟ ଗ୍ରହସ୍ଥାନ ଦେଇଯାଉଥିବାରୁ (ଫଳର ଅଭାବ ହୁଏ) । ସ୍ଫୁଟଗ୍ରହ ମଧ୍ୟ ଗ୍ରହସହ ସମାନ ହୋଇଥାଏ ।

**ଉଚ୍ଚସ୍ଥିତୋ, ବ୍ୟୋମଚରଃ ସୁଦୂରେ**
**ନୀଚସ୍ଥିତଃ ସ୍ୟାନ୍ନିକଟେ ଧରିତ୍ର୍ୟାଃ ।**
**ଅତୋଽଣୁବିମ୍ବଃ ପୃଥୁଲଶ୍ଚ ଭାତି**
**ଭାନୋସ୍ତଥା ସନ୍ନସୁଦୂରବର୍ତ୍ତୀ । ଇତି ।୧୫୧।**

ଗ୍ରହ, ଉଚ୍ଚ ନକକ୍ଷରେ ଥିଲେ ପୃଥିବୀଠାରୁ ସେ ଦୂରତମ ପ୍ରଦେଶରେ ରହେ । ଗ୍ରହ, ନୀଚ ନକକ୍ଷରେ ହେଲେ ତାହା ପୃଥିବୀଠାରୁ ନିକଟତମ ହୁଏ । ଫଳରେ ଉଚ୍ଚସ୍ଥ ଓ ନୀଚସ୍ଥ ଗ୍ରହବିମ୍ବ ଯଥାକ୍ରମେ ଛୋଟ ଓ ବଡ଼ ଦେଖାଯାଇଥାଏ ।

ଛାୟାଲୋକାଦ୍ ଯନ୍ତ୍ରବେଧାଦୟନାଂଶଦ୍ୱୟଂ ରବେଃ
ସପ୍ତାବ୍ଧ୍ୟଂଶାନ୍ତରଂ ଦୃଷ୍ଟ୍ୱା ତତ୍ସିଦ୍ଧାଂଶାଲ୍ପକୋପମଃ ।୧୫୨।

ଚନ୍ଦ୍ରଗ୍ରହସ୍ୟ ଗଣିତଂ ସବାସନ ମୁଦାହୃତମ୍
ଲମ୍ବନସ୍ୟୋପପତ୍ତିଶ୍ଚ ତସ୍ୟାଲ୍ପବହୁତୋଚ୍ୟତେ । ୧୫୩ ।

ଚନ୍ଦ୍ରାର୍କାନ୍ତରତୌ ତୁଲ୍ୟଭଗକଣ୍ଠାବଲମ୍ବିକୌ
ସ୍ୟାତାଂ ଯଦର୍କଶଶିନୌ ଶବଲ୍ପଦ୍ୱେ ତଦା ବଧୌ ।୧୫୪।

ଭୂଚ୍ଛାୟା ନଗତତ୍ୟବ ସମକକ୍ଷାସ୍ଥିତେସ୍ତୟୋଃ
ଲମ୍ବନାବନତୀ ନ ସ୍ତୋ ରଜନୀରମଣଗ୍ରହେ । ୧୫୫ ।

ସୂର୍ଯ୍ୟଗ୍ରହେ ତୁ ସୂର୍ଯ୍ୟେନ୍ଦ୍ୱୋର୍ଭିନ୍ନକକ୍ଷାନିବାସତଃ
ଦେଶଭେଦାଦ୍ଗ୍ରାସଭେଦୋ ଲମ୍ବନାବନତୀ ତଥା ।୧୫୬।

ଶଙ୍କୁ ଓ ତାଂର ଛାୟା, ଯନ୍ତ୍ରବେଧ ତଥା ଆୟନ ଚକ୍ରର ପ୍ରଭୃତିରୁ ମୁଁ ଦେଖୁଛି ଯେ ରବିର ଉଭୟ କ୍ରାନ୍ତି (ଉତ୍ତର ଓ ଦକ୍ଷିଣ) ୪୭° ହିଁ ହେଉଅଛି । ସେଥିରୁ କାରଣରୁ ମୁଁ କ୍ରାନ୍ତି ୨୪° (ଉଭୟ ୪୮) ରୁ କମ୍ ମାନ ନେଇଛି । ପ୍ରତ୍ୟେକ କ୍ରାନ୍ତି ୨୩°।୩୦ ମାନ । ପ୍ରାଚୀନ ମତରେ ପରମ କ୍ରାନ୍ତିମାନ ୨୪° । —(ଯନ୍ତ୍ର ରାଜବନ୍ଧରେ କ୍ରାନ୍ତି କଏକୋଟି ମାନୁଥିଲେ ତାର ଉପରେ ତାଲିକା ଅଛି ଦେଖିବେ)

ଚନ୍ଦ୍ରଗ୍ରହଣର ଗଣିତ ସବୁ ଯୁକ୍ତିସହ କୁହାଯାଇଅଛି । ଏହିକ୍ଷଣି ଲମ୍ବନର ଉପପତ୍ତି ଓ ଲମ୍ବନର ଅଳ୍ପତା ଏବଂ ବହୁତା କହୁଅଛି ।

ଯେତେବେଳେ ରବି ଓ ଚନ୍ଦ୍ର ଉଭୟେ ଛଅରାଶି ଅନ୍ତରରେ ରହି ଅଂଶ, କଳା ଓ ବିକଳାରେ ସମାନ ହେବେ ତେତେବେଳେ ମାନୈକ୍ୟାର୍ଦ୍ଧରୁ ଚନ୍ଦ୍ରଶର ଅଳ୍ପହେଲେ ଚନ୍ଦ୍ରବିମ୍ବରେ ଭୂଛାୟା ଲାଗିଯାଏ । ଏଥିରୁ ଜଣାଗଲା ଯେ ଚନ୍ଦ୍ର ଗ୍ରହଣରେ ଚନ୍ଦ୍ର ଓ ଭୂଛାୟା ଏକ କକ୍ଷାରେ (ଚନ୍ଦ୍ରକକ୍ଷାରେ ହିଁ) ରହିଥାନ୍ତି । ଏଣୁ ସେଠାରେ ନତି ଲମ୍ବନ ହୁଏନି । ସୂର୍ଯ୍ୟ

ଗ୍ରହଣରେ ସୂର୍ଯ୍ୟ ଗ୍ରାହ୍ୟ ଓ ଚନ୍ଦ୍ର ଗ୍ରାହକ । ଏ ଉଭୟେ ଏକ କକ୍ଷା (ସୂର୍ଯ୍ୟ କକ୍ଷା ବା ଚନ୍ଦ୍ର କକ୍ଷା କୌଣସି ଗୋଟିଏ କକ୍ଷାରେ) ରହୁ ନଥିବାରୁ ଅର୍ଥାତ୍ ଉଭୟେ ଭିନ୍ନ ଭିନ୍ନ କକ୍ଷାରେ ରହୁଥିବାରୁ ଭୂମିର ସ୍ଥାନଭେଦରୁ ଗ୍ରାସ ମଧ୍ୟ କମ୍ ଅଧିକ ଜଣାପଡ଼େ । ଏହି ଗୋଟିଏ କାରଣରୁ ହିଁ ଲମ୍ବନ ଓ ନତି ମଧ୍ୟ ହୁଏ ।

ଦୃଙ୍ମଣ୍ଡଲଦଲଂ ଦୃଶ୍ୟଂ କୁର୍ଦ୍ଧୋନଂ ଗୋଲପୃଷ୍ଠଗୈଃ
ଗ୍ରହସ୍ୟ ଯତ୍ତତୋ ଦୃଷ୍ଟିମଣ୍ଡଲେ ସମ୍ଭବେନ୍ନତଃ । ୧୫୭ ।

କ୍ଷିତଜୋପଗତେ ସୂର୍ଯ୍ୟେ ଦର୍ଶାନ୍ତେ ଭୂମିଗର୍ଭତଃ
ରବିବିମ୍ବାର୍ଦ୍ଧଗେ ସୂତ୍ରେ ବିମ୍ବମଧ୍ୟଂ ଲଗେଦ୍ବିଧୋଃ । ୧୫୮ ।

ଭୂପୃଷ୍ଠାଦ୍ଭାନୁବିମ୍ବାର୍ଦ୍ଧଚୁମ୍ବିସୂତ୍ରାଦ୍ବିଧୁର୍ଯତଃ
ଅଧୋ ବିଲମ୍ବତେ ତସ୍ମାତ୍ କ୍ଷିତଜେଽସ୍ମିନ୍ ପରା ନତିଃ । ୧୫୯ ।

ଗର୍ଭଦୃକ୍ସୂତ୍ରୟୋରୈକ୍ୟାତ୍ ଖମଧ୍ୟେ ନ ଭବେଦସୌ
ଖାର୍ଦ୍ଧକ୍ଷିତଜୟୋରନ୍ତଃ ସା ସ୍ୟାତ୍ ସୂତ୍ରାନ୍ତରୋନ୍ମିତାଃ । ୧୬୦ ।

ଖାର୍ଦ୍ଧେ ଯଦାପବୃତ୍ତଂ ସ୍ୟାତ୍ତଦା ତଦ୍ଦୃଷ୍ଟିବିମ୍ବୟୋଃ
ଐକ୍ୟାନ୍ନାବନତିଃ କିନ୍ତୁ ଲମ୍ବନଂ ପରମଂ କୁଜେ । ୧୬୧ ।

ଯଦା ଦୃକ୍କ୍ଷେପବୃତ୍ତସ୍ଥଃ ଖେଚରସ୍ତେଽବନତସ୍ତଦା
ପରମାଲମ୍ବନାଭାବସ୍ତତୋ ଦୃକ୍କ୍ରାନ୍ତବୃତ୍ତୟୋଃ । ୧୬୨ ।

ନତ୍ୟନ୍ତଜାନ୍ତରକାଳାଧିକ୍ୟାତ୍ ଲମ୍ବନସଂକ୍ଷୟଃ ।
କ୍ରାନ୍ତଦୃଗ୍ବୃତ୍ତସଂଯୋଗାତ୍ ଖାର୍ଦ୍ଧଗସ୍ୟ ନ ତଦ୍ଯୁଗମ୍ । ୧୬୩ ।

ବିତ୍ରିଭୋନଲଗ୍ନ ଜାଦ୍ଯସ୍ମାତ୍ କ୍ରାନ୍ତିବୃତ୍ତାଦ୍ଗତଃ ଶରଃ
ପ୍ରାପ୍ନୋତ ନଭସୋ ମଧ୍ୟଂ ମଧ୍ୟାହ୍ନେ ତୁ ଶରାଗ୍ରତଃ । ୧୬୪ ।

ଯାମ୍ୟାଦ୍ଗଲମ୍ବିତଶ୍ଚନ୍ଦ୍ରୋ ଦର୍ଶାନ୍ତେଽର୍କସମୋ ନ ଯତ୍
ଲମ୍ବନେଽବନତୌ ତସ୍ମାଦ୍ ଗ୍ରାହ୍ୟୋ ଲଗ୍ନତ୍ରିଭୋନତଃ । ୧୬୫ ।

ତସ୍ୟ ଖାର୍ଦ୍ଧେ ନତଜ୍ୟା ଯା ସା ପ୍ରାକ୍ପଶ୍ଚିମସଂସ୍ଥିତେଃ
ବଦ୍ଧତ୍ୱାତ ସଂଭବେଦ୍ବହ୍ନୀ ତଦ୍ବସିଦ୍ଧାବୁଦୟଜ୍ୟକା । ୧୬୬ ।

ଉକ୍ତା ଯଦ୍‌ବଳିଭତନ୍ନ କ୍ରାନ୍ତିବୃତ୍ତଂ ଯଥା ଯଥା
ବକ୍ରଂ ତଥା ତଥା ଲଗ୍ନକ୍ରାନ୍ତିଜ୍ୟା ମହତୀ ଭବେତ୍ । ୧୬୭ ।

ଯଦା ବଳିଭଲଗ୍ନସ୍ୟ କ୍ରାନ୍ତିଃ ସୌମ୍ୟାକ୍ଷତୁଲ୍ୟତାମ୍
ପ୍ରୟାତି ବିଷୁବଦ୍‌କ୍ରାନ୍ତିରୁଦେତି ଚ ଯଦା ତଦା । ୧୬୮ ।

ସମତା ସମ୍ଭବେଦ୍ ମଧ୍ୟଲଗ୍ନ ବଳିଭ ଲଗ୍ନୟୋଃ
ନାନ୍ୟଦା ତତ୍ତୟୋଃ ସ୍ୟାତାଂ ଯେନ ତଜ୍ଜ୍ୟେ ତଦନ୍ତରମ୍ । ୧୬୯ ।

ଶରବଦ୍‌ଭାତ ଦୃକ୍‌କ୍ଷେପୋ ଦୃଗ୍‌ଜ୍ୟା ସା ବଳିଭାଙ୍ଗଜା
ବିକ୍ଷେପାଗ୍ରସ୍ଥିତସ୍ୟେନ୍ଦୋର୍ଭବେଦବନତିଃ ସ୍ଫୁଟା । ୧୭୦ ।

ତଚ୍ଛରେଣାକ୍ଷସଂସ୍କାରେ କୃତେ ତସ୍ମାତ୍ ଶରାକ୍ଷତଃ
କ୍ରାନ୍ତିସଂସ୍କାରସଂସିଦ୍ଧୋ ଦୃକ୍ଷେପଃ ସ୍ୟାତ୍ ପରସ୍ଫୁଟଃ । ୧୭୧ ।

ପୃଥିବୀ ଗୋଲ ପୃଷ୍ଠରେ ଥିବା ଲୋକେ ଯେ କୌଣସି ଗ୍ରହର ଭୂବ୍ୟାସାର୍ଦ୍ଧ ଗୃପୋନତ ଦୃଙ୍‌ମଣ୍ଡଳାର୍ଦ୍ଧ ଦେଖିଥାନ୍ତି । ତେଣୁ ଦୃଙ୍‌ମଣ୍ଡଳରେ ଗ୍ରହର ନମନ ହୋଇଥାଏ । ଅମାନ୍ତ ସମୟରେ ସୂର୍ଯ୍ୟ ପୃଷ୍ଠ କ୍ଷିତିଜକୁ ଆସିଗଲେ ପୃଥିବୀ କେନ୍ଦ୍ରରୁ ସୂର୍ଯ୍ୟ କେନ୍ଦ୍ରାଗତ ରେଖାରେ ଚନ୍ଦ୍ର କେନ୍ଦ୍ର ମଧ୍ୟ ରହିଥାଏ । (ଏହା ସୂର୍ଯ୍ୟ ଗ୍ରହଣ ସମୟର ଅବସ୍ଥିତି, ସବୁ ଅମାନ୍ତର ନୁହେ) । କିନ୍ତୁ ଭୂମିପୃଷ୍ଠରୁ ରବି ବିମ୍ବ ମଧ୍ୟ ଗତ ରେଖାଠାରୁ ଚନ୍ଦ୍ର ଲମ୍ବି ଯାଉଥିବାରୁ ଏବଂ ଏହା ସବୁଠାରୁ ବେଶୀ ହେଉଥିବାରୁ ଏହାକୁ ପରମ ନତି ବା ପରମ ଲମ୍ବନ କୁହାଯାଏ । ଆକାଶର ମଧ୍ୟ ସ୍ଥଳରେ ଅର୍ଥାତ୍ ଖ ସ୍ୱସ୍ତିକଠାରେ ଗର୍ଭଦୃକ୍-ସୂତ୍ର ଓ ପୃଷ୍ଠ-ଦୃକ୍ ସୂତ୍ର ଏକ ହୋଇଥିବାରୁ (ଗର୍ଭଦୃକ୍-ସୂତ୍ରରେ ପୃଷ୍ଠଦୃକ୍-ସୂତ୍ର ମଜ୍ଜିତ ହୋଇଯାଉ ଥିବାରୁ) ଏଥି ତଫାତ ଦେଖାଯାଏନାହିଁ । ଖ ସ୍ୱସ୍ତିକ ଓ କ୍ଷିତିଜ ମଧ୍ୟରେ ଉକ୍ତ ଗର୍ଭ ଓ ପୃଷ୍ଠ ଦୃକ୍ ସୂତ୍ର ମଧ୍ୟରେ ଏଥି ନତି ବା ଲମ୍ବନ ରହେ ।

ଖ ସ୍ୱସ୍ତିକରେ ରବି ରହିଲେ କ୍ରାନ୍ତିବୃତ୍ତ ହିଁ ଦୃଙ୍‌ମଣ୍ଡଳ ହେବ । ଏଣୁ ନତି ହେବ- ନାହିଁ । ମାତ୍ର ପୃଷ୍ଠକ୍ଷିତିଜରେ ପରମ ଲମ୍ବନହେବ । ଗ୍ରହ ଦୃକ୍ଷେପ ବୃତ୍ତରେ ଥିବାବେଳେ ନତି ହୁଏ । କିନ୍ତୁ ପରମ ଲମ୍ବନର ଅଭାବ ହୁଏ । କ୍ରାନ୍ତିବୃତ୍ତ ଓ ଦୃଙ୍‌ମଣ୍ଡଳରେ ଲମ୍ବିତ ଦୁହିଁଙ୍କର ଉତ୍ତର ଓ ଦକ୍ଷିଣ ଅନ୍ତରକଳା ବଢ଼ିଯିବାରୁ ଉଭୟର ପୂର୍ବାପରାନ୍ତର କଳାର ବିନାଶ ହୁଏ । ଖ ମଧ୍ୟରେ ଖ ସ୍ୱସ୍ତିକରେ ଗ୍ରହ ଥିବାବେଳେ (ରବି) କ୍ରାନ୍ତିବୃତ୍ତ ଓ ଦୃଙ୍- ମଣ୍ଡଳର ଏକତା ହେଉ ଥିବାରୁ (ଉଭୟେ ପୂର୍ଣ୍ଣତଃ ମିଳି ଯାଇଥିବାରୁ) ନତି ବା ଲମ୍ବନ ହୁଏ ନାହିଁ । ତ୍ରିଭୋନ ଲଗ୍ନ ସମ୍ବନ୍ଧୀ ଶର କ୍ରାନ୍ତିବୃତ୍ତରୁ ନିର୍ଗତ ହୋଇ ଆକାଶର ମଧ୍ୟଦେଶ

(ଖ,ସ୍ୱସ୍ତିକ ପର୍ଯ୍ୟନ୍ତ)କୁହାଯାଇଥାଏ । ମଧ୍ୟାହ୍ନରେ ପୁଣି ଶରାଗ୍ରରେ ଲମ୍ବିତ ଚନ୍ଦ୍ର ଅମାନ୍ତରେ ରବି ସମାନ ହୋଇପାରେ ନାହିଁ । ଅର୍ଥାତ୍ ରବି ଦୃକ୍ ସୂତ୍ରରେ ଚନ୍ଦ୍ର ତେତେବେଳେ ରହିପାରେ-ନାହିଁ । ତେଣୁ ଲମ୍ବନ ନତସାଧନ କରିବାବେଳେ ବିତ୍ରିଭ ଲଗ୍ନ ଗ୍ରହଣ କରିବା ସର୍ବଥା ଉଚିତ । ବିତ୍ରିଭର ଯାମ୍ୟୋତ୍ତର ବୃତ୍ତରେ ଯେଉଁ ନତ ଜ୍ୟା (ଦୃଗ୍‌ଜ୍ୟା) ତାହା ବିତ୍ରିଭର ପୂର୍ବ ପଶ୍ଚିମାନ୍ତରଠାରୁ ବଡ଼ ହେଉଥିବାରୁ ଅଧିକ ହେବାର କଥା । ବିତ୍ରିଭ ଲଗ୍ନର ନତାଂଶ ବିତ୍ରିଭ ଦୃଙ୍‌ମଣ୍ଡଳରେ ଅର୍ଥାତ୍ ଦୃକ୍ଷେପ ବୃତ୍ତରେ ହିଁ ହୁଏ । ଏହି ଦୃଗ୍ ବୃତ୍ତ ବା ଦୃକ୍ଷେପ ବୃତ୍ତ କଦମ୍ବ ପ୍ରୋତ ହୋଇ ଥିବାରୁ କ୍ରାନ୍ତିବୃତ୍ତ ଉପରେ ବରାବର ଲମ୍ବରୂପରେ ବିଦ୍ୟମାନ । ନତଜ୍ୟା ସାଧନ ନିମନ୍ତେ ଲଗ୍ନ କ୍ରାନ୍ତିଜ୍ୟା କଥା କୁହାଯାଇଛି । ବିତ୍ରିଭକ୍ରାନ୍ତିବୃତ୍ତ ଯେପରି ବଡ଼ହୁଏ, ଲଗ୍ନ କ୍ରାନ୍ତିଜ୍ୟା ସେହି ଅନୁପାତରେ ବଢ଼ିଯାଏ । ବିତ୍ରିଭ ଲଗ୍ନର ଉତ୍ତର କ୍ରାନ୍ତି ଯେଉଁ ଦେଶର ଅକ୍ଷାଂଶ ସହିତ ସମାନ ହୁଏ, ସେହି ଦେଶରେ ସାୟନ ମେଷାଦି ଯେତେ-ବେଳେ ଉଦୟ ହୁଏ, ତେତେବେଳେ ମଧ୍ୟଲଗ୍ନ (ଦଶମ ଲଗ୍ନ) ଓ ବିତ୍ରିଭଲଗ୍ନ ସମାନ ହୋଇଯାଏ । ଅନ୍ୟଥା ତାହା ହୁଏନାହିଁ; ଅର୍ଥାତ୍ ବିତ୍ରିଭ ଓ ମଧ୍ୟ ଲଗ୍ନର ସମତା ଯେତେବେଳେ ଯେଉଁ ଦେଶରେ ହୁଏ ନାହିଁ ତେତେବେଳେ ସେ ଦୁଇଟିର (ମଧ୍ୟ ଲଗ୍ନ ଓ ବିତ୍ରିଭ) ଯେ ନତଜ୍ୟା ହେବେ ସେ ଦୁଇଟି ବିତ୍ରିଭ ମଧ୍ୟରୁ ଦୃଗ୍‌ଜ୍ୟା ଶରପରି ଜଣାଯାଏ । ଶରର ଅଗ୍ରରେ ଥିବା ଚନ୍ଦ୍ରର ଏହି ଅବସ୍ଥାରେ ସ୍ଫୁଟ ଅବନତି ହୁଏ । ତେଣୁ ଶରରେ ଅକ୍ଷ ସଂସ୍କାର କରିବା ପରେ ତାହାକୁ ପୁଣି ବିତ୍ରିଭ କ୍ରାନ୍ତିଦ୍ୱାରା ସଂସ୍କୃତ କଲେ ଦୃକ୍ଷେପ ପରିସ୍ଫୁଟ ହୁଏ ।

ପର୍ବାନ୍ତୋ ଯଃ ସମୁଦିତଃ ସ୍ଫୁଟୋ ଲମ୍ବନସଂସ୍କୃତଃ
ଅର୍କେନ୍ଦ୍ୱୋଃ କ୍ରାନ୍ତିବୃତ୍ତୋଦଗ୍ ଯାମ୍ୟସ୍ଥିତ୍ୟୈ
ସ କେବଲମ୍ । ୧୭୨ ।

ତ୍ରିଭୋନଲଗ୍ନଜକ୍ରାନ୍ତିଗତବୃଦ୍ଧୀ ଯଥା ଯଥା
ଶରାନ୍ ସାରତୋ ଗ୍ରାସକାଳଭେଦସ୍ତଥା ତଥା । ୧୭୩ ।

ଲମ୍ବନ ସଂସ୍କୃତ ଯେଉଁ ସ୍ଫୁଟ ପର୍ବାନ୍ତ (ଅମାନ୍ତ) କୁହାଗଲା ତାହା ପୃଷ୍ଠାଭିପ୍ରାୟରେ ରବି ଓ ଚନ୍ଦ୍ରର ଏକ କଦମ୍ବ ପ୍ରୋତ ବୃତ୍ତରେ ଦକ୍ଷିଣ ଓ ଉତ୍ତର ଅବସ୍ଥାନକୁ ଲକ୍ଷ୍ୟକରି କୁହାଯାଇଅଛି । ତ୍ରିଭୋନ ଲଗ୍ନର କ୍ରାନ୍ତିଗତି ଯେପରି ବଢ଼ିବ ଶରଗତି କ୍ରମରେ ଗ୍ରାସ ଓ ସ୍ପର୍ଶାଦି କାଳର ତଫାତ୍ ମଧ୍ୟ ସେହିପରି ବଢ଼ିଯିବ ।

ଉକ୍ତା ଗ୍ରାହକମାର୍ତ୍ତସ୍ୟ ଚ୍ଛେଦକେ ଯାଦୃଶୀ ସ୍ଥିତିଃ
ତତ୍ କ୍ରମାଚ୍ଛନ୍ନତେ ତସ୍ମିନ୍ ଗ୍ରାସକାଳୋ ଭବେତ୍ ସ୍ଫୁଟଃ ।୧୭୪।

ବହ୍ନେବୋଦୟକାଲେ ଚେତ୍ ପର୍ବଲମ୍ବନସଂସ୍କୃତମ୍
ତଦା ମଧ୍ୟଗ୍ରହସ୍ଫୁଟେଲ୍ୟାଽନ୍ୟଥା ନ୍ୟୂନୋଽଧିକୋ ଭବେତ୍ ।୧୭୫।

ଏବଂ ତଦ୍ଭୂଦୟେ ସ୍ପର୍ଶମୋକ୍ଷକାଳସ୍ୟ ତୁଲ୍ୟତା
ଉଦୟୁତେ୍ୟାଦ୍ଭବଃ କାଳଭେଦଃ ସ୍ୟାଦ୍ଧିକ୍ଶର କ୍ରମାତ୍ । ୧୭୬ ।

ଗର୍ଭାତ୍ ପୃଷ୍ଠାତ୍ ଭୁବଃ ସୂତ୍ରେ କ୍ଷିତଜସ୍ଥଂ ବଧ୍ନଂ ପ୍ରତ
ପ୍ରସାରତେ ସମେ ସ୍ୟାତାଂ ତତଶ୍ଚନ୍ଦ୍ରେ ସମୁଦ୍ଗତେ । ୧୭୭ ।

କ୍ରମାତ୍ ପୃଷ୍ଠୋଦ୍ଗତଂ ସୂତ୍ରମଲ୍ପ ସ୍ୟାଦ୍ଗର୍ଭସୂତ୍ରତଃ
ସନ୍ନିକର୍ଷାଦ୍ବଧୋସ୍ତସ୍ମାନ୍ମାନାଧିକ୍ୟଂ ନଗ୍ରେଦ୍ଭବମ୍ । ୧୭୮ ।

ଭିନ୍ନକକ୍ଷାସ୍ଥିତବଶାତ୍ ରବୀନ୍ଦ୍ୱୋଃ ଶଂକୁସମ୍ଭବା
ତମସୋଽଧିକତା ଗ୍ରାସକାଳୟୋର୍ବୃଦ୍ଧିଦା ଭବେତ୍ । ୧୭୯ ।

ଗ୍ରାହ୍ୟଗ୍ରାହକୟୋରେକକକ୍ଷାବାସାଦ୍ବଧୂଗ୍ରହେ
ନ କାଳଗ୍ରାସଭେଦଃ ସ୍ୟାନ୍ମାନାଧିକ୍ୟେଽପି ଶଂକୁଜେ । ୧୮୦ ।

ବମଣ୍ଡଳଗତବଂକ୍ତା ପୂର୍ଣ୍ଣିମାନ୍ତେଽପମଣ୍ଡଳାତ୍
ଯାବତ୍ ସ୍ୟାଭନ୍ତଶ୍ଚନ୍ଦ୍ରଗତ୍ୟର୍କାଂଶ—ମିତା ଯତଃ । ୧୮୧ ।

ସ୍ପର୍ଶାଦ୍ୟାଃ ଶଶିନଃ ତସ୍ମାତ୍ ଶରାର୍କାଂଶୋତ୍ଥକାଳତଃ
ପ୍ରାକ୍ପଶ୍ଚାଦ୍ଭବମାୟାନ୍ତି ମଧ୍ୟଗ୍ରାସଶ୍ଚ ଭୂରତାମ୍ । ୧୮୨ ।

ଗ୍ରାହକାନ୍ୟଦଶି ସ୍ପଷ୍ଟୋ ଗ୍ରାହ୍ୟସ୍ୟୈବ ଯତଃ ଶରଃ
ତତଶ୍ଚନ୍ଦ୍ରଗ୍ରହେ ଗ୍ରାସବାଣୟୋର୍ଦିଗ୍ଭିଦା ମତା । ୧୮୩ ।

ଗ୍ରାହକସ୍ୟୈବ ଚନ୍ଦ୍ରସ୍ୟ ସ୍ଫୁଟେଷ୍ୱର୍ଥତ୍ ସ୍ୱଦିଗ୍ଗତଃ
ତଦ୍ଗ୍ରାସବାଣୟୋଃ ସିଦ୍ଧଂ ଦିକ୍ସାମ୍ୟଂ ସୂର୍ଯ୍ୟପର୍ବଣି । ୧୮୪ ।

ଚନ୍ଦ୍ରସ୍ୟୈବ ଯତଃ ସିଦ୍ଧଂ ବଳନଂ ଗ୍ରହଣଦ୍ୱୟେ
ତସ୍ମାଦ୍ଗ୍ରାହ୍ୟସ୍ୟ ଚନ୍ଦ୍ରସ୍ୟ ସ୍ପର୍ଶେ ତତ୍ ସ୍ୟାତ୍ ସ୍ୱଦିଗ୍ଗତମ୍ ।୧୮୫।

ବ୍ୟସ୍ତଦଙ୍ମୋକ୍ଷକାଳେ ସ୍ୟାଦ୍ଗ୍ରାହକସ୍ୟ ରବଗ୍ରହେ
ମୋକ୍ଷକାଳେ ନିଜାଶାସ୍ଥଂ ସ୍ପର୍ଶେ ତଦବପରୀତଗମ୍ । ୧୮୬ ।

ଗ୍ରହଣ ପରିଲେଖରେ ଗ୍ରାହକ ମାର୍ଗର ଯେପରି ଅବସ୍ଥାନ ବର୍ଣ୍ଣିତ ହୋଇଛି, ସେହି ସ୍ଥାନରେ ଗ୍ରାହକ ମାର୍ଗକୁ ଚଳାଇ ନେଲେ ଗ୍ରହଣ ସମସ୍ତ ସ୍ପଷ୍ଟ ହୋଇଯିବ । ସାୟନ ମେଷାଦିର ଉଦୟ ସମୟରେ ଯଦି ସ୍ପୁଟ ଅମାନ୍ତ ପଡ଼େ, ତେବେ ପ୍ରଥମେ ଅଣାଯାଇ ଥିବା ମଧ୍ୟ ଗ୍ରହଣ କାଳହିଁ ସମାନ ହେବ । ଅର୍ଥାତ୍ ଆଉ ସେଥିରେ କିଛି ଯୋଗ ଓ ବିଯୋଗ କରିବାର ଆବଶ୍ୟକତାନାହିଁ । କାରଣ ତେତେବେଳେ ଲଗ୍ନାନ୍ତର ଅଭାବ । ଅନ୍ୟ ସମୟରେ ଅମାନ୍ତକାଳ ହେଲେ ଏଥିରେ ଅର୍ଥାତ୍ ମଧ୍ୟ ଓ ସ୍ପୁଟ ଅମାନ୍ତ ଭିତରେ ଅନେକ ପ୍ରଭେଦ ହେବ । ବିତ୍ରିଭୋଦୟର ସ୍ପର୍ଶ ମୋକ୍ଷ କାଳର ମଧ୍ୟ ଭୁଲିଥା ଜାଣିବାକୁ ହେବ । ଲଗ୍ନ ସ୍ଥାନ୍ତ୍ରଜ୍ୟା ଠାରୁ ଉତ୍ପନ୍ନ ସମୟର ଭେଦଶରର ଦିଗବଶତଃ ହୋଇଥାଏ ।

ଭୂଗର୍ଭ ଓ ଭୂପୃଷ୍ଠରୁ ପୃଷ୍ଠ କ୍ଷିତିଜରେ ଥିବା ଚନ୍ଦ୍ର ପର୍ଯ୍ୟନ୍ତ ଦୁଇଟି ସୂତ୍ର ନେଲେ ଉଭୟର ଦୀର୍ଘତା ସମାନ ହେବ । ଗର୍ଭ ତିର୍ଯ୍ୟକ୍ ରେଖା ଓ ପୃଷ୍ଠ ତିର୍ଯ୍ୟକ୍ ରେଖା ଯେଉଁଠାରେ ଚନ୍ଦ୍ର କକ୍ଷାକୁ କାଟିବେ ସେ ଉଭୟଙ୍କର ମଧ୍ୟଦେଶକୁ ଟାଣିଲେ ଏ ଦୁଇରେଖା ସମାନ ହେବେ, ଅନ୍ୟଥା ନୁହେଁ । କ୍ଷିତିଜରୁ ( ପୃଷ୍ଠ କ୍ଷିତିଜରୁ ) ଉପରକୁ ଉଠିଗଲେ ଚନ୍ଦ୍ରପର୍ଯ୍ୟନ୍ତ ଏହି ଯେଉଁ ଦୁଇରେଖା ହେବ, ସେଥିରେ ପୃଷ୍ଠଗତ ସୂତ୍ରଟି ନିଶ୍ଚୟ · ଗର୍ଭଗତ ସୂତ୍ରଠାରୁ ଶ୍ରେଷ୍ଠ ହେବ । ଫଳରେ ସେଠାର ଚନ୍ଦ୍ରଶଙ୍କୁ ମଧ୍ୟ ବେଶି ହୋଇଯିବ । ରବି ଓ ଚନ୍ଦ୍ର ବିଭିନ୍ନ କକ୍ଷାରେ ଥିବାରୁ ଶଙ୍କୁଜାତ ଅନ୍ଧକାରର ଆଧିକ୍ୟ ହେବ ଏବଂ ଗ୍ରାସ ଓ ଗ୍ରହଣ କାଳର ମଧ୍ୟ ବୃଦ୍ଧି ହେବ। ଚନ୍ଦ୍ର ଗ୍ରହଣରେ ଗ୍ରାହ୍ୟ ଓ ଗ୍ରାହକଙ୍କର ଏକକକ୍ଷାରେ ଅବସ୍ଥାନ ହେତୁ ଶଙ୍କୁରୁ ଉତ୍ପନ୍ନ ଗୁପ୍ତାପରିମାଣର ଅଧିକତା ହେଲେ ମଧ୍ୟ, ଗ୍ରହଣ ସମୟ ଓ ଗ୍ରାସର ପ୍ରଭେଦ ଆସିବ ନାହିଁ । ପୂର୍ଣ୍ଣାନ୍ତରେ ବିମଣ୍ଡଳ ଓ କ୍ରାନ୍ତିବୃତ୍ତ ଉପରେ ପ୍ରାୟ ଲମ୍ବରୂପରେ ଥିବାରୁ ଶରଗତି ମଧ୍ୟ ବକ୍ର । ଶରଗତିର ପରିମାଣ ପୁଣି ଚନ୍ଦ୍ରଗତିର ଦ୍ୱାଦଶାଂଶ ସହିତ ସମାନ । ତେଣୁ ଚନ୍ଦ୍ରର ସ୍ପର୍ଶାଦି ସମୟ ଗୁଡ଼ିକ ଶରର ଦ୍ୱାଦଶାଂଶରୁ ଉତ୍ପନ୍ନ ସମୟଠାରୁ ଆଗରେ ବା ପଛରେ ହୁଅନ୍ତି । (ଗଣିତରେ ଆଗତ ସ୍ପର୍ଶାଦି ସମୟଠାରୁ ବାସ୍ତବ ସ୍ପର୍ଶାଦି ସମୟ ଶର/୧୨ ସମୟର ପୂର୍ବରୁ ବା ପରେ ହୋଇଥାଏ) ମଧ୍ୟଗ୍ରାସ ସମୟ ମଧ୍ୟ ଏଥିଯୋଗୁଁ ବଢ଼ିଯାଇଥାଏ ।

ଗ୍ରାହକର ବିପରୀତ ଦିଗରେ ଗ୍ରାହ୍ୟର ଶେ ର ରହୁଥିବାରୁ ଗ୍ରାସ ଓ ଶରର ଦିଗଭେଦ ହୋଇଯାଏ । ଏହା ସବୁ ଚନ୍ଦ୍ରଗ୍ରହଣର କଥା, ସୂର୍ଯ୍ୟ ଗ୍ରହଣରେ ଗ୍ରାହକ ଚନ୍ଦ୍ରର ସ୍ପୁଟଶର ଗ୍ରାହକ ଦିଗକୁ ରହେ । ସେଥି ନିମନ୍ତେ ଗ୍ରାସ ଓ ଶରର ଗୋଟିଏ ଦିଗହୁଏ; ଦିଗଭେଦ ହୁଏନାହିଁ ।

ଉଭୟ ଗ୍ରହଣରେ ଚନ୍ଦ୍ରର ହିଁ ବଳନହୁଏ । ସେଥିପାଇଁ ଚନ୍ଦ୍ର ଗ୍ରହଣରେ ଚନ୍ଦ୍ରର ସ୍ପର୍ଶବେଳେ ସ୍ପଷ୍ଟ ବଳନକୁ ପ୍ରାଚୀ ଚିହ୍ନରୁ ନିଜେଥିବା ଦିଗରେ ଏବଂ ମୋକ୍ଷ କାଳରେ ପଶ୍ଚିମ ଚିହ୍ନରୁ ବିପରୀତ ଦିଗରେ ଦିଆଯିବ । ସୂର୍ଯ୍ୟ ଗ୍ରହଣରେ ପୂର୍ବଦିଗରେ ମୋକ୍ଷ ହେଉଥିବାରୁ ମୋକ୍ଷ ସମୟରେ ପୂର୍ବଚିହ୍ନରୁ ନିଜର ଦିଗଆଡ଼କୁ ସ୍ପଷ୍ଟ ବଳନଦିଆଯିବ ଏବଂ ସ୍ପର୍ଶ ସମୟରେ ପଶ୍ଚିମ ଚିହ୍ନରୁ ବିପରୀତ ଦିଗରେ ଦିଆଯିବ ।

ଉଦୟେଽସ୍ତମୟେ ମଧ୍ୟେ ବ୍ୟକ୍ଷେ ପ୍ରାୟୈକଦଙମୁଖମ୍
ବିମ୍ବଂସ୍ୟାଦନ୍ୟ ଦେଶେଽସ୍ମା ଦକ୍ଷଜଂ ବଳନଂ ଭବେତ୍ । ୧୮୭ ।

ଧ୍ରୁବାଭିମୁଖବଭ୍ରାନ୍ତେ ସ୍ତଦୁନ୍ନତ୍ୟନୁସାରତଃ
ପ୍ରାକ୍‌ଚନ୍ଦ୍ରଂ ବିମ୍ବଗଂ ଖାର୍ଦ୍ଧେ ଯତ୍ତଦ୍ ପୂର୍ବକପାଳକେ । ୧୮୮ ।

ଭବେଦୁଦଙମୁଖଂ ପ୍ରତ୍ୟକ୍‌ପାଳେ ଦକ୍ଷିଣାମୁଖମ୍
ତଭେଦାଦାୟନଂ ଦୃଶ୍ୟଂ ବଳନଂ ଚ ପୃଥଗ୍ବିଧମ୍ । ୧୮୯ ।

ନିରକ୍ଷ ପ୍ରଦେଶରେ ଉଦୟ, ଅସ୍ତ ଓ ମଧ୍ୟାହ୍ନ ସମୟରେ ଗ୍ରହବିମ୍ବ ତାର ବାସ୍ତବ ଦିଗ ଆଡ଼କୁ ହିଁ ରହେ । ଅନ୍ୟ ଦେଶରେ (ସାକ୍ଷ ଦେଶରେ) ଆକ୍ଷ ବଳନ ହୁଏ । ଗ୍ରହବିମ୍ବ ଧ୍ରୁବ ଅଭିମୁଖରେ ଭ୍ରମଣ କରୁଥିବାରୁ ଧ୍ରୁବର ଉନ୍ନତି ଅନୁସାରେ (ଅକ୍ଷାଂଶ ଅନୁସାରେ) ଆକାଶର ମଧ୍ୟ ସ୍ଥଳରେ ବିମ୍ବରେ ଯେଉଁ ପୂର୍ବ ଚିହ୍ନ ତାହା ପୂର୍ବ କପାଳରେ ଉତ୍ତରାଭିମୁଖ ହୁଏ । ପଶ୍ଚିମ କପାଳରେ ଏହାପୁଣି ଦକ୍ଷିଣାଭିମୁଖ ହୁଏ । ଆକ୍ଷ ବଳନ ବଶତଃ ବିମ୍ବର ଦିଗଭେଦ ଦେଖାଯାଉଥିବାରୁ ଦୃକ୍‌ସିଦ୍ଧ ଆୟନ ବଳନ ଭିନ୍ନ ପ୍ରକାରର ହୋଇଥାଏ ।

ଶି—ହିଜ୍ୟାବର୍ଗୋଦୟନବଳନଜ୍ୟାକୃତଂ ପ୍ରୋଜ୍‌ଝ୍ୟ ମୂଳଂ
ଯଷ୍ଟିର୍ଯଷ୍ଟ୍ୟା ଦ୍ୟୁଚରଶ୍ରବଣୀଘ୍ନ ସ୍ତାଡ଼ିତସ୍ତ୍ରିଜ୍ୟୟାପ୍ତଃ ।
ଯଦ୍ବା ଭଣିଦ୍ୟୟଯୁତଖଗଦୁଯଜ୍ୟକାଘ୍ନସ୍ତ୍ରିମୌର୍ବ୍ୟା
ଭକ୍ତଃ ସ୍ପଷ୍ଟୋ ଭବତି ନିୟତଂ କ୍ରାନ୍ତିସଂସ୍କାରଯୋଗ୍ୟଃ ।ଇତି ।୧୯୦।

ହିଜ୍ୟାର ବର୍ଗରୁ ଅୟନ ବଳଜ୍ୟାର ବର୍ଗକୁ ବିୟୋଗ କରି ତାହାର ମୂଳନିଅ । ଏହାକୁ ଯଷ୍ଟି କୁହାଯାଏ । ଗ୍ରହର (ଏଠାରେ ଚନ୍ଦ୍ରର) ଶରକୁ ଏହି ଯଷ୍ଟିରେ ଗୁଣି ହିଜ୍ୟା ୩୪୩୮ରେ ହରିଲେ କ୍ରାନ୍ତି ସଂସ୍କାର ନିମନ୍ତେ ଉପଯୋଗୀ ଶର ଆସିଯାଏ । ଅଥବା ଗ୍ରହର ଗଣ୍ଯାଦିରେ ତିନ ରାଶି (୯୦°) ମିଶାଇ ତାହାର ଭୁଜଜ୍ୟା ବାହାର କର । ଏହାଦ୍ୱାରା ଶରକୁ ଗୁଣି ହିଜ୍ୟାରେ ଭାଗଦେଲେ ମଧ୍ୟ ସେହି କ୍ରାନ୍ତି ସଂସ୍କାର ଉପଯୋଗୀ ଶର ଆସେ ।

ଇତି ଯଦ୍ ଭାସ୍କରଃ ପ୍ରାହ ସ୍ପଷ୍ଟବାଣସ୍ୟ ତାନବମ୍
ଯୁକ୍ତ୍ୟଯୁକ୍ତଂ ନ ତଦ୍‌ଯସ୍ମାତ୍ ବହୁତାୟନଦୃକ୍ଳିୟଃ । ୧୯୧ ।

ଧ୍ରୁବପୃଷ୍ଠସମଃ ଖେଟୋ ଭବେଦ୍‌ଭଗ୍ରହଯୋଗୟୋଃ
ତଦ୍‌ଦୃକ୍କର୍ମଭବା କଷ୍ଟା ଧନର୍ଣ୍ଣାଖ୍ୟା ଭୁଜା ମତାଃ । ୧୯୨ ।

କଦମ୍ବାଭିମୁଖୋ ବାଣଃ କୋଟୀ ତନ୍ମାର୍ଗଯୁକ୍‌ପଦମ୍
ଧ୍ରୁବୋନ୍ମୁଖସ୍ତୁ ଚେଷ୍ଟଃ ସ୍ୟାତ୍ କର୍ଣ୍ଣସ୍ତାନ୍ମଧ୍ୟତୋ ମହାନ୍ । ୧୯୩ ।

ଏହି ଶ୍ଳୋକରେ (ହି ଜ୍ୟା ବର୍ଗାତ୍...) ସ୍ପଷ୍ଟସ୍ପଷ୍ଟାର୍ଯ୍ୟ ସୂକ୍ଷ୍ମ ଶରର (ସ୍ଫୁଟ ଧ୍ରୁବପ୍ରୋତ ବୃତ୍ତୀୟ) ଯେଉଁ ଅଲ୍ପତା (ଚନୁତା) ଦର୍ଶାଇଲେ ଅର୍ଥାତ୍ ସ୍ଫୁଟ ଧ୍ରୁବ ପ୍ରୋତ ବୃତ୍ତୀୟ ଶରର କଦମ୍ବ ପ୍ରୋତ ବୃତ୍ତୀୟ ଶରଠାରୁ ଯେଉଁ ଅଲ୍ପତା ଦର୍ଶାଇଲେ, ତାହା ଯୁକ୍ତିଯୁକ୍ତ ହୋଇ ନ ପାରେ। କାରଣ, ଆୟନ ଦୃକ୍‌କର୍ମ ସଂସ୍କୃତ, ଗ୍ରହ, ନକ୍ଷତ୍ର ଓ ଗ୍ରହ ଯୋଗରେ ଧ୍ରୁବପ୍ରୋତ ବୃତ୍ତୀୟ ହେବ। ତେଣୁ ଦୃକ୍‌କର୍ମରୁ ଉତ୍ପନ୍ନ ଯେଉଁ ଯୁକ୍ତ ବା ବିଯୁକ୍ତ କଳାନ୍ତ ବୃତ୍ତରେ ହୁଏ, ତାହା ଭୁଜ, କଦମ୍ବ ପ୍ରୋକ୍ତୀୟ ମଧ୍ୟ ଶର କୋଟି ଏବଂ ଏ ଦୁଇଟିର ବର୍ଗ ଯୋଗକରି ତାହାର ମୂଳ ନେଲେ ହେବ କର୍ଣ୍ଣ। ଏହାହିଁ ଧ୍ରୁବୋନ୍ମୁଖ ସ୍ଫୁଟଶର। ଏହି କର୍ଣ୍ଣ, କୋଟି ରୂପକ ମଧ୍ୟ ଶରଠାରୁ ବଡ଼ ହେଉଅଛି। କମ ତ ହେଉ ନାହିଁ।

**ମାସଷଟ୍‌କମିତା ରାତ୍ରିର୍ମେରୌ ଯା ତତ୍ର ଖେଚରାଃ**
**ଚନ୍ଦ୍ରାଦ୍ୟା ଉଦୟଂ ଗ୍ଲସ୍ତଂ ଯାନ୍ତ୍ୟୁଦକ୍‌କ୍ରାନ୍ତି ଭଗକୈଃ। ୧୯୪।**

**ସୂର୍ଯ୍ୟାଗ୍ରପଶ୍ଚାତ୍ତେରାଶିଦ୍ୱୟାନ୍ତର୍ବର୍ତ୍ତିନୋ ଯଦି**
**ତଦୋଦୟା-ସ୍ତମମୟୋର୍ବିଗ୍ରହଃ କର୍ତ୍ତୁମିଷ୍ୟତେ। ୧୯୫।**

**କାଳାଂଶା ଯେ ନିଗଦିତା ଗ୍ରହାଣାମୁଦୟାସ୍ତକାଃ**
**ତତ୍‌ସମଂ ଗୃହ୍ୟତାମତ୍ର ସୌମ୍ୟକ୍ରାନ୍ତ୍ୟନ୍ତରଂ ରବେଃ। ୧୯୬।**

ମେରୁରେ ଉଦୟ ଓ ଅସ୍ତ ନିର୍ଣ୍ଣୟ କରାହେଉଛି:—

ମେରୁରେ ଛ ମାସ ବ୍ୟାପି ରାତ୍ରି ହୁଏ। ଏହା ସାୟନ ତୁଳାଦି ଛ ରାଶିରେ ସୂର୍ଯ୍ୟ ଥିବାବେଳେ ହୁଏ। ଚନ୍ଦ୍ର ଆଦି ଗ୍ରହମାନେ ସେମାନଙ୍କର ଉତ୍ତରକ୍ରାନ୍ତି ଥିବାପାଏ, ଉଦୟ ଓ ଅସ୍ତ ହୁଅନ୍ତି। ଏହି ଗ୍ରହମାନେ ସୂର୍ଯ୍ୟଠାରୁ ପୂର୍ବକୁ ବା ପଶ୍ଚିମକୁ ଯଦି ଦୁଇରାଶି ମଧ୍ୟରେ ଥାନ୍ତି, ତାହାହେଲେ ଏମାନଙ୍କ ଉଦୟ ଓ ଅସ୍ତ ବିଚାର କରାଯିବ। ଗ୍ରହମାନଙ୍କର ଯେଉଁ ସବୁ ଉଦୟ ଓ ଅସ୍ତ କାଳାଂଶ କୁହାଯାଇଛି, ଗ୍ରହ ଓ ରବିର ଉତ୍ତର କ୍ରାନ୍ତ୍ୟଂଶର ଅନ୍ତର ସେତିକ ହେଲେ ଉଦୟାସ୍ତ ଆରମ୍ଭ ହେବ।

**ଉଦଗ୍‌ଦେଶାନ୍ତରର୍କ୍ଷଃ ସ୍ୟାଦ୍‌ଯଥା ବ୍ୟକ୍ଷାତ୍ତଥାପମଃ**
**ଯାମ୍ୟେ ନତଃ ପ୍ରାୟଶୋଽସ୍ମାତ୍ ସୌମ୍ୟଶୃଙ୍ଗୋନ୍ନତର୍ବିଧୋଃ। ୧୯୭।**

**ରବୀନ୍ଦୁମାର୍ଗୟୋର୍ଭୂରିବପ୍ରକର୍ଷେଽପି ତଦ୍ଭୃଶୋଃ**
**ସଙ୍ଗଃ ସ୍ୟାନ୍ମହାପାତେ କ୍ରାନ୍ତିସାମ୍ୟାତ୍ ପୁରୋଦିତାତ୍। ୧୯୮।**

ଉତ୍ତର ଶୃଙ୍ଗୋନ୍ନତ ବାସନା କୁହାଯାଉଛି—

ନିରକ୍ଷ ଦେଶଠାରୁ ଉତ୍ତର ଅକ୍ଷାଂଶ ଯେପରି ବଢ଼ିବ, ସେପରି କ୍ରାନ୍ତି ବୃତ୍ତଟି ପ୍ରାୟ ଦକ୍ଷିଣରେ ଚନ୍ଦ୍ର ଦୃକ୍‌ମଣ୍ଡଳରୁ ନତ ରହିବ । ଏହି କାରଣରୁ ଉତ୍ତର ଶୃଙ୍ଗୋନ୍ନତ ହେବା କଥା । ମହାପାତର ଯୁକ୍ତି କୁହାଯାଉଛି—

ବୈଧୃତ ଓ ବ୍ୟତୀପାତକୁ ମହାପାତ କୁହାଯାଇଥାଏ । ସୂର୍ଯ୍ୟ ଓ ଚନ୍ଦ୍ରକକ୍ଷାର ବହୁ ଅନ୍ତରରେ ଏ ଦୁହେଁ ହେଲେ ମଧ୍ୟ ପୂର୍ବୋକ୍ତ କ୍ରାନ୍ତି ସମତା ହେତୁ ଏ ଦୁହିଁଙ୍କଠାରେ ଦୃଗ୍‌ରଶ୍ମିର ମିଳନ ହୋଇପାରେ ।

ଯଦେକମୂର୍ତ୍ତେର୍ମେଦିନ୍ୟା ଗୋଲଗର୍ଭାଦ୍ବହିଃସ୍ଥିତମ୍
ସୂକ୍ଷ୍ମଂ ଚନ୍ଦ୍ରାଦର୍ଶନୀୟନ୍ତଗ୍ରହଣାମପବୃତ୍ତଭିତ୍ । ୧୯୯ ।

ଉପକାରୋ ମହ୍ୟା ଦୃଷ୍ଟୋ ଭଗଣାନ୍ତଗତୋ ମହାନ୍
ଯତ୍ ସୂର୍ଯ୍ୟାତ୍ ସମ୍ଭରତବୋ ବୃଦ୍ଧିଃ ସ୍ଥିରଜଙ୍ଗମାଣାମ୍ । ୨୦୦ ।

ଭବତ୍ୟ-ପରମେୟାଶ୍ଚ ତମୋହୃତ୍ୟାଦୟୋ ଗୁଣାଃ
ତଥୈବ ରଜନୀଭର୍ତ୍ତୁର୍ହ୍ଲାଦାଦ୍ୟା ଅନେକଶଃ । ୨୦୧ ।

ଚନ୍ଦ୍ରାର୍କାଲୋକନାଲୋକେ ଧୃଷ୍ୟତାଧୃଷ୍ୟତେଶିଭୁଃ
ଜନୈରୁନ୍ନୀୟତେ କାର୍ଯ୍ୟାତ୍ କାରଣାବଗଡର୍ଣ୍ଣତଃ । ୨୦୨ ।

ଲବ୍ଧଗ୍ରହର୍କ୍ଷଭୁକ୍ତୀନାଂ ସାକ୍ଷାତ୍କାରାତ୍ ଶରୀରିଣାମ୍
ଶୁଭାଶୁଭାନି କର୍ମାଣି ଜ୍ଞାୟନ୍ତେ ପ୍ରାକ୍କୃତାନ୍ୟପି । ୨୦୩ ।

ତଥା ତଦ୍ଭ୍ରମ୍ୟମାନାନାଂ କକ୍ଷାଣାଂ ଯୋଜନାନି ଚ
ତତ୍ତଦ୍ବିକ୍ଷେପତୋ ଭୂମେ ସ୍ଥିରତ୍ୱଂ ଚନ୍ଦ୍ରମାନତଃ । ୨୦୪ ।

ଭଚକ୍ରାଲୋକତୋ ଲୋକସ୍ପୃଷ୍ଟଲୋକୋତ୍ତରାକୃତଃ
ପ୍ରତୀୟତେଽନ୍ଧତମସଂ ତତୋଽବତ-ମସୀଭବେତ୍ । ୨୦୫ ।

ପଥିକାନାଂ ମତମତାଂ ପ୍ରଶମଂ ଯାତ ଦିଗ୍‌ଭ୍ରମଃ
ଇତ୍ୟାଦୟୋ ବହୁବିଧା ଉପକାରା ଭବନ୍ତ୍ୟତଃ । ୨୦୬ ।

ତପୋ ବର୍ଷାସ୍ତତଃ ଶୀତଂ କାଳସ୍ୟୈତ ଗୁଣାସ୍ତ୍ରୟଃ
ତତ୍ତଦ୍ଦୈର୍ଘ୍ୟ-ବିଧ୍ୟତୋ ଲୋକେ ଷଡ଼୍ ଭବନ୍ତ୍ୟୃତବଃ ଖଳୁ । ୨୦୭ ।

**ପ୍ରାୟଶୋ ଭାରତେବର୍ଷେ ତେଷାଂ ସଂପୂର୍ଣ୍ଣଭୁକ୍ତୟଃ**
**ଭବନ୍ତି ଭୂମିଭେଦେଭ୍ୟ ଉକ୍ତାଃ କେଽପ୍ୟନୁତ୍କଟାଃ । ୨୦୮ ।**
**ତପସ୍ୟ ପ୍ରାଗ୍‌ଦଳଂ ସୌଖ୍ୟାଦ୍ ବସନ୍ତୋ ହ୍ୟପରଂ ଦଳମ୍**
**ଗ୍ରୀଷ୍ମଃ ସ୍ୟାଦଥ ବର୍ଷାଣାଂ ତେ ପ୍ରାବୃଟ୍‌ଶରଦୌ ମତେ । ୨୦୯ ।**
**ହେମନ୍ତଃ ଶିଶିରଃ ଶୀତଃପ୍ରାକ୍‌ପଶ୍ଚିମଦଳେ ଇତ**
**ସୂର୍ଯ୍ୟକ୍ରାନ୍ତିବଶାତ୍ତେ ସ୍ୟୁର୍ଦେଶଭେଦାତ୍ ପୃଥଗ୍‌ବିଧାଃ । ୨୧୦ ।**

ଭଗଣାଦିର ଉପକାରିତା କୁହାଯାଇଛି—

ପୃଥିବୀ କେନ୍ଦ୍ରରୁ ଚନ୍ଦ୍ର ଆଦି ଶନି ପର୍ଯ୍ୟନ୍ତ ଗ୍ରହମାନଙ୍କର କ୍ରାନ୍ତି ବୃତ୍ତର ମେଷାଦି ଭେଦକରି ଯେଉଁ ଗୋଟିଏ ସରଳରେଖା ଯାଇଅଛି, ତାହାହିଁ ଭଗଣାରମ୍ଭକ ସ୍ଥଳ । ଭଗଣାରମ୍ଭରୁ ଗ୍ରହଗଣିତ ଆରମ୍ଭ ହୁଏ । ଏଥିନିମନ୍ତେ ଏହି ସୂତ୍ରଦ୍ୱାରା ପୃଥିବୀର ଅଶେଷ ଉପକାର ହୁଏ ।

ସୂର୍ଯ୍ୟରୁ ଋତୁ ପ୍ରବୃତ୍ତି ହୁଏ । ସ୍ଥାବର ଜଙ୍ଗମ ବୃଦ୍ଧି ପାଆନ୍ତି । ଅନ୍ଧକାର ଦୂର ହୁଏ । ଏହିପରି ସୂର୍ଯ୍ୟର ଅନେକ ଗୁଣ ଅଛି । କାର୍ଯ୍ୟରୁ କାରଣ ଜଣାପଡ଼ିଥାଏ । ଲୋକେ ସୂର୍ଯ୍ୟ ଓ ଚନ୍ଦ୍ରକୁ ଦେଖି ସ୍ରଷ୍ଟାଙ୍କର ସହସ୍ରାପୂର୍ତା ଓ ଅସହସ୍ରାପୂର୍ତା ଗୁଣର କଳନା କରନ୍ତି । ବିବିଧ ଗ୍ରହମାନଙ୍କର ନାନାବିଧ ଗତି ଦେଖି ଶରୀରଧାରୀଙ୍କର ପୂର୍ବଜନ୍ମକୃତ ଶୁଭାଶୁଭ କର୍ମ ଜାଣି ହୋଇଥାଏ । ଗ୍ରହ କକ୍ଷା ଯୋଜନ ଓ ଗ୍ରହ ବିମ୍ବ ଯୋଜନ ମଧ୍ୟ ଜଣାପଡ଼ିଥାଏ । ଗ୍ରହ-ମାନଙ୍କ ଶରରୁ ଅନୁମାନଦ୍ୱାରା ପୃଥିବୀର ସ୍ଥିରତା ଜଣାପଡ଼େ । ଭୂମଣ୍ଡଳ (ଭୂଗୋଳ) ଦେଖି ବିଶ୍ୱସ୍ରଷ୍ଟାଙ୍କର ଅସାଧାରଣ କାର୍ଯ୍ୟ ଅନୁମିତହୁଏ । ଗାଢ଼ ଅନ୍ଧକାର ପୁଣି କ୍ଷୀଣ ହୋଇପଡ଼େ । ଭୂଗୋଳ ଓ ତାରା ଗୋଲକୁ ଦେଖି ବୁଦ୍ଧିମାନ୍ ପଥିକର (ନାବିକ ବିଶେଷତଃ) ଦିଗଭ୍ରାନ୍ତି ହୁଏ ନାହିଁ । ଏପରି ଏ ସବୁଦ୍ୱାରା ଅନେକ ଉପକାର ହୁଏ ।

ଅକ୍ଷାଂଶ ଓ କ୍ରାନ୍ତ୍ୟଂଶଦ୍ୱାରା ଋତୁ ନିର୍ଣ୍ଣୟ —

ଗ୍ରୀଷ୍ମ, ବର୍ଷା ଓ ଶୀତ ଏପରି ତିନୋଟି ପ୍ରଧାନ ଗୁଣ କାଳର ଅଛି । ଏ ପ୍ରତ୍ୟେକର ଦୁଇ ଦୁଇ ଭେଦ ନେଇ ଛ'ଟି ଋତୁ ହୋଇଥାଏ । ଭାରତବର୍ଷରେ ଛ'ଟି ଯାକ ଋତୁର ଭୋଗ ପୂର୍ଣ୍ଣ ମାତ୍ରାରେ ହୋଇଥାଏ । ଭୂମି (ସ୍ଥାନ) ଭେଦକୁ ନେଇ ଏହି ଋତୁମାନେ କେଉଁଠି ଅତି ଉତ୍କଟ ଏବଂ କେଉଁ କେଉଁଠାରେ ଅତି କମ୍ ଫଳ ଦିଅନ୍ତି ।

ଗ୍ରୀଷ୍ମର ପ୍ରଥମାର୍ଦ୍ଧ ବସନ୍ତପରି ସୁଖକର । ଦ୍ୱିତୀୟ ଅର୍ଦ୍ଧଟି ଗ୍ରୀଷ୍ମ । ବର୍ଷା କାଳରେ ପ୍ରଥମାର୍ଦ୍ଧ ବର୍ଷା ଓ ଶେଷାର୍ଦ୍ଧ ଶରତ । ଶୀତର ପୂର୍ବାର୍ଦ୍ଧ ହେମନ୍ତ ଓ ପରାର୍ଦ୍ଧ ଶିଶିର । ଦେଶ ଭେଦ (ଅକ୍ଷାଂଶ) ଓ ସୂର୍ଯ୍ୟ କ୍ରାନ୍ତି ଭେଦରୁ ଏହି ଋତୁଗୁଡ଼ିକ ପୃଥକ୍ ପୃଥକ୍ ଦେଖାଯାନ୍ତି ।

ତରଣ୍ଡୀନାଃ କଷ୍ଟ ଯତ୍ର ପତନ୍ତ୍ୟର୍କସ୍ୟ ଭୂତଳେ
ନାତ୍ୟୁଷ୍ଣ ତତ୍ତଥା ତାପଂ ତତ୍ର ଶୀତଂ ବଳୋତ୍ତରମ୍ । ୨୯୧ ।

ପତନ୍ତ୍ୟୃଜୁତୟା ଯତ୍ର ତତ୍ର ତାପାତରେକତଃ
ତତ୍ରତ୍ୟାନାଂ ତପର୍ତ୍ତୁଃ ସ୍ୟାଦ୍ରବସମ୍ମୁଖବୃତ୍ତିକାତ୍ । ୨୯.୨ ।

ତୀକ୍ଷ୍ଣୈଃ ସୂର୍ଯ୍ୟାଂଶୁଭିଃ ସିନ୍ଧୋଲଘୂତୋୟଂ ସମୁତ୍ଥିତମ୍
ପତତ୍ୟାକର୍ଷଣାଦ୍ ଭୂମୌ ତତ୍ତପାନ୍ତେ ଘନାଗମଃ । ୨୯୩ ।

ନରକ୍ଷଦେଶତୋଽଂଶାନାମକ୍ଷାଣାଂ ଯାବଦଷ୍ଟକମ୍
ହେମନ୍ତଶିଶିରୌ ନ ସ୍ତୋଗ୍ରୀଷ୍ମବର୍ଷାତରେକତଃ । ୨୯୪ ।

ପୃଥିବୀର ଉପରେ ସୂର୍ଯ୍ୟ କିରଣ ଯେତେବେଳେ ତିର୍ଯ୍ୟକ୍ ଭାବରେ ପଡ଼େ, ସେତେବେଳେ ଉଷ୍ଣତା ବେଶୀ ନ ହେବାରୁ ଶୀତ ବଢ଼ି ବଢ଼ି ଯାଏ । ଏବଂ ସୂର୍ଯ୍ୟ କିରଣ ସରଳ ଭାବରେ (ଲମ୍ବଭାବରେ) ପଡ଼ିଲେ ଉଷ୍ଣତା ବଢ଼ିବା ଯୋଗେ ସେଠାରେ ଗ୍ରୀଷ୍ମ ଋତୁ ହୁଏ ।

ଏତିକବେଳେ ସୂର୍ଯ୍ୟର ଲମ୍ବ କିରଣ ସମୁଦ୍ରରେ ପଡ଼ିବାରୁ ପାଣି ତାତିଯାଇ ହାଲୁକା ହୋଇ (ବାଷ୍ପାକାରରେ) ଉପରକୁ ଉଠେ । ଏଗୁଡ଼ିକ ପୁଣି ଭୂମିର ଆକର୍ଷଣକୁ ନେଇ ଥଣ୍ଡା ହେବା ପରେ (ଆକାଶରେ) ପୃଥିବୀ ଉପରେ ପଡ଼େ । ଗ୍ରୀଷ୍ମଋତୁର ଅବସାନରେ ସେଥିପାଇଁ ବର୍ଷାଋତୁ ହୋଇଥାଏ ।

ଅକ୍ଷାଂଶ ଅନୁସାରେ ଶୀତ, ଉଷ୍ଣ ଓ ସମମଣ୍ଡଳ (କୁମାରିକା ଅନ୍ତରୀପ ଓ ତନ୍ନିକଟବର୍ତ୍ତୀ ସ୍ଥାନରେ) ଉତ୍ତର ଅକ୍ଷାଂଶ ୮° ସ୍ଥାନରେ ଗ୍ରୀଷ୍ମ ଓ ବର୍ଷା ଅତି ତୀବ୍ର ଭାବରେ ହେବାରୁ ହେମନ୍ତ ଓ ଶୀଶିର ହୁଅନ୍ତି ନାହିଁ ।

ପ୍ରାବୃଡ଼ନ୍ତେ ଶରତ୍କାଳସ୍ତ୍ରପାଦୌ ସ୍ୟାଦ୍ବସନ୍ତକଃ
ଏତୟୋରନ୍ତରେ କିଂଚତ୍ ଶୀତଂ ଦେଶେ ଜଳାଧିକେ । ୨୯୫ ।

ପୌଷମାଘଦ୍ୱୟଂ ଶୀତଂ ଦ୍ୱିତୀୟେଽକ୍ଷଲବାଷ୍ଟକେ
ଦଶସ୍ୱନ୍ୟେଷୁ ମାସେଷୁ ବସନ୍ତାଦଚତୁଷ୍ଟୟମ୍ । ୨୯୬ ।

ତୃତୀୟେଽଂଶାଷ୍ଟକେ-ଶୀତଂ ସ୍ୟାନ୍ମାର୍ଗାଦଚତୁଷ୍ଟୟମ୍
ଚୈତ୍ରାଦେଂଷୁ ବସନ୍ତାଦ୍ୟାଶ୍ଚତ୍ୱାରୋଽତ୍ରୈବ ଷଟ୍ ସମାଃ । ୨୯୭ ।

ଚତୁର୍ବିଂଶତରଂଶାନାମିୟଂ ସ୍ୟାଦୁଷ୍ଣମଣ୍ଡଳମ୍
ଇତଃ ଷୋଡ଼ଶକଂ ପ୍ରୋକ୍ତଂ ସମମଣ୍ଡଳନାମକମ୍ । ୨୧୮ ।

ଚତୁର୍ଥୈଃଂଶାଷ୍ଟକେ ବ୍ୟକ୍ଷାଦ୍‌ଭାର୍ଦ୍ଧମୂର୍ଜାଦ ଶୀତଳମ୍
ମାଧବାଦ୍ୟୁଷ୍ଣମତ୍ରୈବ ବସନ୍ତାଦଚତୁଷ୍ଟୟମ୍ । ୨୧୯ ।

ଇଷାଦ୍ୟଂ ଶୀତଳଂ ପ୍ରୋକ୍ତଂ ପଞ୍ଚମେଃଂଶାଷ୍ଟକେଃଷ୍ଟକଂ
ବସନ୍ତାଦଚତୁଷ୍କଂ ସ୍ୟାତ୍ତତ୍ର ଜ୍ୟୈଷ୍ଠଚତୁଷ୍ଟୟେ । ୨୨୦ ।

ଇତଃ କେନ୍ଦ୍ରାନ୍ତମକ୍ଷାଂଶାଃ ପଞ୍ଚାଶଦ୍ ଶୀତମଣ୍ଡଳମ୍
ନରକ୍ଷାଦଷ୍ଟକେ ଷଟ୍ସୁ ଭଗାନାଂ ଭଦ୍ରତୋ ଦଶ । ୨୨୧ ।

ମାସାଃ ଶୀତାଃ ଶୁଚଦ୍ୱଦ୍ୱେ ବସନ୍ତା ଦ୍ୟୂତବୋଃଲ୍ପକାଃ
ଇତ୍ୟୁକ୍ତଂ ଷଡ଼୍‌ଋତୁସ୍ଥାନମଷ୍ଟାମ୍ଯୋଧିଲବାବଧି । ୨୨୨ ।

ଆସୁମେରୁ ତତୋ ହ୍ୟର୍ଦ୍ଧି ଭଗସ୍ଥଂ କେବଳଂ ହିମମ୍
ଏବଂ ଦୈବେଃ ସ୍ୱବଂଶେ ତୁ ତୁଲାଦ୍ୟାଃ ସ୍ୟୁରଜାଦବତ୍ । ୨୨୩ ।

ବର୍ଷା ଶେଷରେ ଶରତ୍‌କାଳ ହୋଇଥାଏ ! ଗ୍ରୀଷ୍ମର ଆଦ୍ୟରେ ବସନ୍ତ ହୁଏ । ଶରତ ଓ ବସନ୍ତ ମଧ୍ୟରେ ଜଳାଧିକ୍ୟ ଦେଶରେ ସାମାନ୍ୟ ଶୀତ ହୋଇଥାଏ । ଅକ୍ଷାଂଶ ୮ରୁ ଅକ୍ଷାଂଶ ୧୬ ମଧ୍ୟରେ ପୌଷ ଓ ମାଘ ଦୁଇଟି ମାସ ଶୀତ ହୁଏ ଏବଂ ବାକି ଦଶ ମାସରେ ବସନ୍ତ ଆଦି ଗ୍ରୀଷ୍ଟି ଋତୁ ମାତ୍ର ହୁଏ । ଅକ୍ଷାଂଶ ୧୬ରୁ ଅକ୍ଷାଂଶ ୨୪ ମଧ୍ୟରେ ଥିବା ଭାରତୀୟ ଦେଶରେ ମାର୍ଗଶୀରକୁ ଆରମ୍ଭ କରି ଚାରି ମାସ ଯାଏ ଶୀତ ହୁଏ ଏବଂ ଚୈତ୍ର ଆଦି ଆଠ ମାସରେ ବସନ୍ତ ଆଦି ଚାରିଟି ଋତୁ ହୁଏ । ୨୪ ଅକ୍ଷାଂଶ ଦେଶରେ ଛଅଋତୁ ଯାକ ଦୁଇ ଦୁଇ ମାସ ଧରି ସମାନ ଭାବରେ ହୁଅନ୍ତି । ୨୪ ଅକ୍ଷାଂଶ ପର୍ଯ୍ୟନ୍ତ ଉଷ୍ଣ ମଣ୍ଡଳ ହୁଏ । ଅକ୍ଷାଂଶ ୨୪ରୁ ୪୦ ପର୍ଯ୍ୟନ୍ତ ସ୍ଥାନ, ସମମଣ୍ଡଳ ନାମରେ କଥିତ । ଅକ୍ଷାଂଶ ୨୪ରୁ ୩୨ ମଧ୍ୟରେ କାର୍ତ୍ତିକ ଆଦି ଛମାସ ଶୀତ ମାସ ହୁଏ । ଏଠାରେ ବୈଶାଖ ଆଦି ଛମାସ ଉଷ୍ଣ ହୁଏ । ଏହି ଛମାସରେ ବସନ୍ତ ଆଦି ଚାରି ଋତୁ ହୁଏ । ଅକ୍ଷାଂଶ ୩୨ରୁ ଅକ୍ଷାଂଶ ୪୦ ମଧ୍ୟସ୍ଥ ଦେଶମାନଙ୍କରେ ଆଶ୍ୱିନ ଆଦି ଆଠ ମାସ ଶୀତ ହୁଏ ଏବଂ ଜ୍ୟେଷ୍ଠ ଆଦି ଚାରି ମାସରେ ବସନ୍ତ ଆଦି ଚାରି ଋତୁ ହୁଏ । ଅକ୍ଷାଂଶ ୪୦ ଠାରୁ ୫୦ ପର୍ଯ୍ୟନ୍ତ ଶୀତମଣ୍ଡଳ । ଅକ୍ଷାଂଶ ୪୦ରୁ ଅକ୍ଷାଂଶ ୪୮ ମଧ୍ୟରେ ଭାଦ୍ରବଠାରୁ ଆରମ୍ଭ କରି ଦଶମାସ ପର୍ଯ୍ୟନ୍ତ ଶୀତ ହୁଏ ଏବଂ ଆଷାଢ଼ ଓ ଶ୍ରାବଣରେ ଅଳ୍ପ ସମୟ ପାଇଁ ବସନ୍ତ ଆଦି ଋତୁ ହୋଇଥାଏ । ଅକ୍ଷାଂଶ ୪୮ ଠାରୁ ୫୨ ପର୍ଯ୍ୟନ୍ତ (ମେରୁ ପର୍ଯ୍ୟନ୍ତ) କେବଳ ତୁଷାରାଚ୍ଛନ୍ନ ଥାଏ । ଏହା ଗଳ୍ପ

ଉତ୍ତରାର୍ଦ୍ଧର କଥା । ଦକ୍ଷିଣ ଗୋଲାର୍ଦ୍ଧରେ ତୁଳା ଆଦି ଛରାଶିରେ ଉତ୍ତର ଗୋଲାର୍ଦ୍ଧର ମେଷାଦି ଋତୁପରି ହୋଇଥାଏ ।

**ଅଥ ମଧ୍ଵାଦୟୋ ମାସାଃ ସଂସ୍କୃତସ୍ୟାୟନାଂଶକୈଃ**
**ଭାନୋର୍ମେଷପ୍ରବେଶାଦେଃ ସ୍ଵୀକାର୍ଯ୍ୟା ଋତୁଭୁକ୍ତୟେ ।୧୨୪।**

ସାୟନ ରବିର ମେଷ ପ୍ରବେଶଠାରୁ ବୈଶାଖ ପ୍ରଭୃତି ବାରମାସ ଋତୁଭୋଗ ସକାଶେ ଗ୍ରହଣ କରିବା ଉଚିତ ।

**ବସନ୍ତକାଲେଽବନିଭୃଦ୍ବନୀନାଂ**
**ବାତୈଷ୍ଣୁଦୈର୍ବୀତ ଇଲାତଲେଽଲମ୍ ।**
**ବଂଶଦ୍ରୁମାନ୍ୟୋନ୍ୟ ବିଘଟ୍ଟନୋତ୍ଥ**
**ବହ୍ନିର୍ବିସର୍ପନ୍ ବନମପ୍ୟବାନମ୍ ।୧୨୫।**

**ଦନ୍ଦହ୍ୟତେଽସ୍ମାଦ୍ଦହନୋଽଥ ଧୂମୋ**
**ବ୍ୟୋମୋଦରଂ ବ୍ୟାପ୍ୟ ବିଶେଷ ଦୂରମ୍ ।**
**ଉଦ୍ଗତ୍ୟ ଭୌମାନ୍ମରୁତୋ ଲଘୁତ୍ୱା—**
**ତ୍ତିଷ୍ଠତ୍ୟବାପ୍ୟ ସ୍ଵସମଂତମଭ୍ରେ ।୧୨୬।**

**ଚଣ୍ଡାଂଶୁସନ୍ତପ୍ତଧରୋଷ୍ମଣାବ୍ଧେ**
**ରୁତ୍ଥାୟ ବାଷ୍ପାଣି ଘନାନି ଧୂପୈଃ ।**
**ପୃକ୍ତାନି ମେଘାଃ ପ୍ରଭବନ୍ତି ଚେତ୍ଥମ୍**
**ଜ୍ୟୋତିର୍ମରୁଦ୍ଧୂମକସନ୍ନିପାତାତ୍ ।୧୨୭।**

ମେଘର ଉତ୍ପତ୍ତି ଓ ବର୍ଷା—

ବସନ୍ତରେ ପର୍ବତ ଓ ଅରଣ୍ୟରେ ବହୁତ ଶୁଖିଲା ପତ୍ର ପଡ଼ି ବନଭୂମି ବିଶେଷ ଭାବରେ ଆବୃତ ହୋଇଥାଏ । ବାଉଁଶ ଗଛ ପରସ୍ପର ଘଷିହୋଇ ନିଆଁ ବାହାରିଲେ ଶୁଖିଲା ପତ୍ରକୁ ଧରେ ଏବଂ ଫଳରେ ସମଗ୍ର ବନ ଜଳି ପୋଡ଼ିଯାଏ ।

ଏଥିରୁ ଅତ୍ୟନ୍ତ ଘନକୃଷ୍ଣ ଧୂମ ଉଦ୍‌ଗତ ହୋଇ ଲଘୁ ଉତ୍ତପ୍ତ ଭୂ-ବାୟୁର ରୂପରେ ଉପରକୁ ଉଠିଯାଏ । ଏହି ଧୂମ ପଟଳ ଆକାଶକୁ ଆବୃତ କରେ ଏବଂ ନିଜେ ଉଷ୍ଣ ଓ ହାଲ୍କା ଭୂ-ବାୟୁ ଜୋରରେ ଆକାଶରେ ରହିଥାଏ । ଗ୍ରୀଷ୍ମକାଳର ପ୍ରଖର ସୂର୍ଯ୍ୟ କିରଣରେ

ଧର **ଉତ୍ତପ୍ତ** ହେଲେ ସମୁଦ୍ରର ଜଳ ବାଷ୍ପରୂପରେ ଉପରକୁ ଉଠେ ଏବଂ **ବଣ୍ଟିତ** ଧୂମରେ **ମିଶି** ଗୋଳେଇ ହୋଇଯାଏ । ଏହିପରି ଭାବରେ ଜ୍ୟୋତି, ପାଣି ଓ ଧୂଆଁ ମିଶି ମେଘ ହୁଏ । (ମେଘରେ ଧୂଆଁ ମିଶିଥିଲେ ବର୍ଷା ପାଣି କାଳିଆ ହୁଅନ୍ତା । ଧୂଆଁ ଏଥିରେ ମିଶ ନଥାଏ । ପାଣି ଜମାଟ ବାନ୍ଧିଲେ ଦୂରକୁ କାଳିଆ ଦିଶେ ମାତ୍ର । )

**ବସ୍ତୈରବାର୍କେର୍ଭୂର୍ଯମଣିଃ କରୌଘୈ—**
**ର୍ବାତଣ୍ଡଶୁଣ୍ଡାସଦୃଶୈଃ ପୟୋଧେଃ ।**
**ଉଦ୍ଧୃତ୍ୟ ବାରୀଣି ଘନେଷୁ ତେଷୁ**
**ସଂବ୍ୟାପୟେତ୍ତେ ଦ୍ରୁସିତା ଘନତ୍ୱାତ୍ । ୨୨୮ ।**

**ଭରାତରେକାଦ୍ ଗୁରବୋଽମ୍ବୁଧାରା**
**ବର୍ଷନ୍ତ ତେ ଭୂର ଭୁବାଭି କୃଷ୍ଟାଃ ।**
**କ୍ରୋଶାଂଘ୍ରିତଃ କ୍ରୋଶଦଳାବଧିସ୍ଥା**
**ଭୂପୃଷ୍ଠତୋ ନତ୍ୱତଦୂରସଂସ୍ଥାଃ ।୨୨୯।**

ନଜର କରଣ ହେତୁ ସୂର୍ଯ୍ୟ ମଧ୍ୟ ବସ୍ତ୍ରରେ ପାଣି ଆଣିଲା ପରି ହାତୀ ଶୁଣ୍ଢ ପରି ମେଘ (କରଣ ?) ଦ୍ୱାରା ସମୁଦ୍ରରୁ ପାଣି ଉଠାଇ ଆଣି ଏହି ମେଘରେ ଜଡ଼ାଇ ଦିଏ । ଏତଦ୍ୱାରା ମେଘଗୁଡ଼ିକ ସାନ୍ଦ୍ର ହୋଇ ଘନ ହୁଏ ଏବଂ କୃଷ୍ଣ ଦିଶେ । (ପତଳା ମେଘକୁ ଏଠାରେ ହାତୀଶୁଣ୍ଢ ଓ ବସ୍ତ୍ର ସହିତ ତୁଳନା କରାଯାଇଛି । କରଣ ରାଶିକୁ ମଧ୍ୟ ବସ୍ତ୍ର ସଙ୍ଗେ ତୁଳନା କରାଯାଇପାରେ । )

ଏହି ଘନ ସାନ୍ଦ୍ର ମେଘ—ଗୋଟିଏ କ୍ରୋଶର ¼ ଠାରୁ ½ ପର୍ଯ୍ୟନ୍ତ (ଭୂମିଠାରୁ) ଦୂରରେ ରହିଥାନ୍ତି ଏବଂ ଓଜନରେ ବେଶୀ ହୋଇଯିବା ଫଳରେ ପୃଥିବୀଦ୍ୱାରା ଆକୃଷ୍ଟ ହୋଇ ପାଣି ବରଷନ୍ତି । (ଏହିମାନେହିଁ ଜଳରେ ପରିଣତ ହୋଇ ବୃଷ୍ଟିରେ ପରିଣତ ହୁଅନ୍ତି । )

**ଦୈବେନ ଦିକ୍କାଳସଖେନ ଧାତ୍ରୁ**
**ବାଞ୍ଛାନୟନ୍ମେଘନ ଜନୋତ୍କରସ୍ୟ ।**
**ସ୍ୟାଦ୍‌ବୃଷ୍ଟିରତ୍ର ଧ୍ୱନିବଦ୍ୟୁଦାଦ୍ୟଂ**
**ଜ୍ଞେୟଂ ଶ୍ରୁତେଭ୍ୟୋ ମିହିରାଦିକେଭ୍ୟଃ । ୨୩୦ ।**

ବଧାଚାର ଇଚ୍ଛାରେ ଦୈବ (ଭାଗ୍ୟ) ନିୟନ୍ତ୍ରିତ । ସେ ପୁଣି ବଗ କାଳର ସଖା ଅର୍ଥାତ୍ ସଙ୍ଗୀ । ଜନ ସମୂହର ସମ୍ବନ୍ଧ ନେଇ ଏହ୍ବ ଦୈବଦ୍ୱାରା ବୃଷ୍ଟିପାତ ହୁଏ । ଉକ୍ତରର ଅର୍ଥ ସମୃଦ୍ଧ (ଧାନ୍ୟାଦ ଶସ୍ୟ ସମୃଦ୍ଧ ନୁହେଁ) । ମେଘ ଗର୍ଜନ ବଜୁଲି ଆଦର କଥା ଓ ସେ ସବୁର ଫଳ ବରାହ ମିହିର ପ୍ରଭୃତ ଲେଖିଥିବା ଶାସ୍ତ୍ରରୁ ଜାଣି ନେବାକୁ ହେବ । (ଏଠାରେ ସେ କଥା କୁହାଯାଉ ନାହିଁ । )

ସୂର୍ଯ୍ୟୋଷ୍ଣଶୀତଲଘବଃ ପରମାଣବୋଽପ୍ୟ
ମୂର୍ତ୍ତ୍ୟଂତ୍ରକାନ୍ତ ଗୁରୁବୋ ଲବଣସ୍ୟତେନ ।
ତେନାଭିବୃଷ୍ଟସଲିଲଂ ମଧୁରଂ ମହାବ୍ଧେଃ
ସିଦ୍ଧଂ ପୁନଃ ଲୁତୁକତୋ ଗଣିତଂ ବ୍ରୁବେଽଲ୍ପମ୍ । ୨୩୧ ।

ଘନଃ ସମାଙ୍କର୍ବିତୟେସ୍ୟ ଘାତ
ସ୍ତୃତୀୟମୂଲାନୟନାୟ ସୂତ୍ରମ୍ ।
ଯଥାଙ୍କପଂକ୍ତେଶ୍ଚରମେ ବିଧାୟ
ବିନ୍ଦୁଂତତୋ ବାମଗତେ ଚତୁର୍ଥେ । ୨୩୨ ।

ତତ୍ତଚ୍ଚତୁର୍ଥେ କ୍ରମଶଶ୍ଚ ଦତ୍ତ୍ୱା
ସବିନ୍ଦୁଶିଷ୍ଟାଙ୍କିତ ଏବ ଯସ୍ୟ ।
ଯାତୁଂ ଘନୋ ଯୁଜ୍ୟତ ଏତମଙ୍କଂ
ଲବ୍ଧଂ ନ୍ୟସେତ୍ତଦ୍‌ଘନବର୍ଜିତାୟାଃ । ୨୩୩ ।

ପଂକ୍ତେଃ ସ୍ଥିରତ୍ଵ ବିବଧାଙ୍କ ହାନ—
ଜାତଦ୍ୱିତୀୟାଦକଲବ୍ଧ ସିଦ୍ଧେ ।
ତସ୍ୟାସ୍ତଲେ ନ୍ୟସ୍ୟ ପୃଥକ୍ ସ୍ଥିତାୟା
ଲବ୍ଧାଙ୍କବର୍ଗଂ ବିଶତଘ୍ନମେବମ୍ । ୨୩୪ ।

ବାମା ଦ୍ୱିତୀୟାଦସବିନ୍ଦୁକାଙ୍କ—
ସ୍ୟାଧୋଽନ୍ତ୍ୟ ଶୂନ୍ୟସ୍ୟ ଯଥା ସ୍ଥିତଃ ସ୍ୟାତ୍ ।
ତେନୈବ ତସ୍ୟା ହରଣେ ପ୍ରବୃତ୍ତେ
ନବାଧିକଂ ଚେତ୍ ପତତୀହ ଲବ୍ଧମ୍ । ୨୩୫ ।

ନବୈବ କୃତ୍ୱା ତଦନେନ ହାରଂ
ହୃତ୍ୱା ପୃଥକ୍ ପଂକ୍ତିତଳେ ନିଧାୟ ।
କୃତଂ ଦ୍ୱିତୀୟାଦଫଳସ୍ୟ ପୂର୍ବ—
ଲବ୍ଧୈର୍ହତାଂ ଖାଗ୍ନିଗୁଣାଂ ତତୋଽଧଃ । ୨୩୭ ।

ଘନଂ ଦ୍ୱିତୀୟାଦଫଳସ୍ୟ ଚୈବଂ
ବିଧାଂକଯୋଗଂ ଖଜହାରୁ ପଂକ୍ତେଃ ।
ସାଲ୍ପା ଯଦ ବ୍ୟଙ୍କଯୁତେର୍ଦ୍ୱିତୀୟା
ଚଦ୍ୟୈକୈକହୀନଂ କ୍ରମଶୋଽବ ଲବ୍ଧମ୍ । ୨୩୭ ।

କୃତ୍ୱା ଖଦଧାଦ୍ ବିଖଧାଙ୍କଯୋଗଂ
ସ୍ଥିରଂ ଖଶୁଦ୍ଧ୍ୟନ୍ତମଥାଙ୍କପଂକ୍ତେଃ ।
ତତୋନୋକ୍ତିଦ୍ୱିତାୟାଃ ପୁନରନ୍ୟଲବ୍ଧା
ନେ୍ୟବଂ ଫଳାଙ୍କା ଘନମୂଳସଂଜ୍ଞାଃ । ୨୩୮ ।

ପତନ୍ତପଂକ୍ତ୍ୟର୍ଦ୍ଧଗବହ୍ନତୁଲ୍ୟା
ସ୍ତେଷାଂ ଘନଃ ପୂର୍ବବଦଂକପଂକ୍ତେଃ ।
ସା ଚେତ୍ ସହସ୍ୱାଳ୍ପତୟା ସ୍ଥିତା ସ୍ୟାଦ୍
ସକୃଦ୍ଭବେତ୍ତଦଘନମୂଳମେକମ୍ । ୨୩୯ ।

ମହାସାଗରରେ ଲବଣ ଜଳ ଅଛି । ସୂର୍ଯ୍ୟତାପରେ ଜଳର ଅତି ଲଘୁ ପରମାଣୁଗୁଡ଼ିକ ଉପରକୁ ଉଠିଯାନ୍ତି । ଲବଣର ପରମାଣୁ କିନ୍ତୁ ଉପରକୁ ଉଠିପାରନ୍ତି ନାହିଁ । ସେଥିପାଇଁ ବର୍ଷାପାଣି ଲୁଣିଆ ନ ହୋଇ ମିଠା ହୁଏ ।

ବର୍ତ୍ତମାନ କୌତୁକବଶତଃ କିଛି ଗଣିତ (ପାଟୀ ଗଣିତ) କହୁଅଛି । ଘନମୂଳ ଆନୟନ-ସମାନ ତିନୋଟି ଅଙ୍କର ଗୁଣନ ଫଳକୁ ଘନ କହନ୍ତି । ଏହି ଘନାଙ୍କର ମୂଳ ଆଣିବା ନିମନ୍ତେ ଏହି ସୂତ୍ର କୁହାଯାଉଅଛି ।

ଘନ ସଂଖ୍ୟାର (ଶ୍ରେଣୀର) ଶେଷରେ ଅର୍ଥାତ୍ ସବୁଠାରୁ ଦକ୍ଷିଣରେ ଥିବା ଅଙ୍କ ଉପରେ ବିନ୍ଦୁ ଦେଇ ସେଠାରୁ ବାମ ଆଡ଼କୁ ପ୍ରତି ଚତୁର୍ଥ ଅଙ୍କରେ ସେହିପରି ବିନ୍ଦୁ ଦେଇ ଯାଅ । ବାମରୁ ଦକ୍ଷିଣ ଆଡ଼କୁ ପ୍ରଥମ ବିନ୍ଦୁ ପର୍ଯ୍ୟନ୍ତ ଅଙ୍କରେ ଯେଉଁ ସଂଖ୍ୟା ହେବ, ସେଥିରୁ

ଯେଉଁ ସଂଖ୍ୟାର ଘନ, ଅନ୍ତର ହୋଇ ପାରିବ ତାହା ବାଦ ଦିଆଯାଉ । ଯାହାର ଘନ ବାଦ ଦିଆଯାଇ ପାରିଲା, ତାହାକୁ ଲବ୍ଧି ଆକାରରେ ରଖ । ତେଣେ ଭାଜ୍ୟ ହୋଇ ବାକି ଯାହା ରହିଲା ତାହାକୁ ଯାହାର ଘନ ବାଦ ଦିଆଯାଇଛି ତାହାର ବର୍ଗକୁ ୩୦୦ ରେ ଗୁଣି ହର । ଫଳ ଯାହା ପଡ଼ିବ ତାକୁ ଲବ୍ଧିରେ ପୁଣି ରଖ । ବର୍ତ୍ତମାନ ୨ୟ ଲବ୍ଧିରେ ଭାଜକକୁ ଗୁଣି ସେଥିରେ ତାର ବର୍ଗ, ପୂର୍ବଲବ୍ଧାଙ୍କ ତଥା ୩୦ ଗୁଣ ଫଳ ଓ ଲବ୍ଧାଙ୍କ ଘନକୁ (ଏପରି ତିନୋଟିକୁ) ମିଶାଇ ଆସିଥିବା ଭାଜ୍ୟରୁ ଫେଡ଼ । ଏହିପରି କରୁ କରୁ ଶେଷରେ ପଂକ୍ତି ବା ଯେଉଁ ଲବ୍ଧି ହେବ ତାହାହିଁ ଉକ୍ତ ସଂଖ୍ୟାର ଘନମୂଳ ହେବ । ଘନଅଙ୍କ ସଂଖ୍ୟାରେ ଯେତୋଟି ବିନ୍ଦୁ ଥିବ ଘନମୂଳ ସଂଖ୍ୟାଟି ସେତିକି ସଂଖ୍ୟା ବିଶିଷ୍ଟ ହେବ । ଅଙ୍କଯୋଗ ବା ଘନ ଆଦି ସବୁ ଫେଡ଼ିଲା ବେଳେ ଆଗକୁ ଯେପରି କାର୍ଯ୍ୟ ହେବ ସେପରି ଦେଖି କରିବାକୁ ହେବ । (ଘନମୂଳ ଯେ ଆସିବ ତାର ଘନ କରିଦେଲେ ପୁଣି ପୂର୍ବ ସଂଖ୍ୟା ଆସିଯିବ) ଘନ ସଂଖ୍ୟାଟି ଏକ ହଜାରରୁ ଅଳ୍ପ ହୋଇଥିଲେ ଘନ ମୂଳଟି ଏକ ଅଙ୍କ ବିଶିଷ୍ଟହିଁ ହେବ । ଏଣୁ ଥରକରେ ତାହାର ଘନମୂଳ ବାହାରିଯିବ । ଆଉ ଏତେ ପ୍ରକାର କରିବାକୁ ପଡ଼ିବ ନାହିଁ ।

ଭାସ୍କର ପାଟ୍ୟାଂ ଘନେକରଣଂ ସୂତ୍ରଂ ବୃତ୍ତତ୍ରୟଂ—

ସମତ୍ରିଘାତଶ୍ଚ ଘନଃ ପ୍ରଦିଷ୍ଟଃ
ସ୍ଥାପ୍ୟୋ ଘନୋଽନ୍ତ୍ୟସ୍ୟ ତତୋଽନ୍ତ୍ୟବର୍ଗଃ ।
ଆଦିତ୍ରିନିଘ୍ନସ୍ତତ ଆଦିବର୍ଗ—
ସ୍ତ୍ର୍ୟନ୍ତ୍ୟାହତଶ୍ଚାଦି ଘନଶ୍ଚ ସର୍ବେ । ୨୪୦ ।

ସ୍ଥାନାନ୍ତରତ୍ୱେନ ଯୁତା ଘନ ସ୍ୟାତ୍
ପ୍ରକଳ୍ପ୍ୟ ତତ୍ଖଣ୍ଡଯୁଗଂ ତତୋଽନ୍ତ୍ୟମ୍ ।
ଏବଂ ମୁହୁର୍ବର୍ଗଘନପ୍ରସିଦ୍ଧା—
ବାଦ୍ୟାଙ୍କତୋବା ବିଧିରେଷ କାର୍ଯ୍ୟଃ । ୨୪୧ ।

ଖଣ୍ଡାଭ୍ୟାଂ ବା ହତୋ ରାଶିସ୍ତ୍ରିଘ୍ନଃ ଖଣ୍ଡଘନୈକ୍ୟଯୁକ୍
ବର୍ଗମୂଳଘନଃ ସ୍ୱଘ୍ନୋ ବର୍ଗରାଶିର୍ଘନୋ ଭବେତ୍ । ୨୪୨ ।

ଭାସ୍କରଙ୍କ ଘନସୂତ୍ର—

ତିନି ସମାନ ଅଙ୍କର (ସଂଖ୍ୟାର) ଗୁଣଫଳକୁ ଉକ୍ତ ସଂଖ୍ୟାର ଘନ କୁହାଯାଏ । ସଂଖ୍ୟାକୁ ରଖି ତାହାର ଶେଷରେ ଯେଉଁ ଅଙ୍କ ଥିବ ତାର ଘନକୁ ରଖିବ । (ଅନ୍ତ୍ୟ) ଶେଷ ଅଙ୍କର ବର୍ଗକୁ ଆଦିଅଙ୍କ ଓ ତିନି ଦ୍ୱାରା ଗୁଣି ତା'ପରେ ସ୍ଥାନାନ୍ତରରେ ରଖିବ ।

ପୁଣି ତା'ତଳେ ଆଦ୍ୟ ଅଙ୍କର ବର୍ଗକୁ ତିନ ଓ ଅନ୍ତ୍ୟ ଅଙ୍କ ଦ୍ୱାରା ଗୁଣି ସ୍ଥାନାନ୍ତରରେ ରଖିବ । ଶେଷରେ ଆଦ୍ୟ ଅଙ୍କର ଘନକୁ ମଧ୍ୟ ସ୍ଥାନାନ୍ତରରେ ରଖି ସମସ୍ତଙ୍କୁ ମିଶାଇ ଦେବ । ତାହାହେଲେ ପୂର୍ବ ସଂଖ୍ୟାଟିର ଘନଫଳ ଆସିଯିବ ।

ସଂଖ୍ୟାର ଦୁଇଟି ଖଣ୍ଡ କରି ମଧ୍ୟ ଏପରି ଭାବରେ କାମ କରିବା ପରେ (ଅନ୍ତ୍ୟ) ଶେଷ ଖଣ୍ଡକୁ ଛାଡ଼ ପୂର୍ବପରି କାର୍ଯ୍ୟ କରିଯିବ । ତାହାହେଲେ ଘନ ଆସିଯିବ । ଏଠାରେ ଅନ୍ତ୍ୟ ଅଙ୍କରୁ (ଶେଷ) କାର୍ଯ୍ୟ କରିଯିବାକୁ କୁହାଯାଇଛି । ଆଦ୍ୟ ଅଙ୍କରୁ ମଧ୍ୟ ଏ ବିଧିରେ ଘନ ଅଣାଯାଇ ପାରିବ ।

ସଂଖ୍ୟାଟିକୁ ଦୁଇ ଖଣ୍ଡ କରି ଉକ୍ତ ସଂଖ୍ୟାକୁ ଉଭୟ ଖଣ୍ଡରେ ଅଲଗା ଅଲଗା କରି ଗୁଣିବ । ଉଭୟଙ୍କୁ ପୁଣି ତିନରେ ଗୁଣିବ । ଏହି ଦୁଇଟି ସଂଖ୍ୟାକୁ ମିଶାଇ ସେଥିରେ ଉଭୟ ଖଣ୍ଡର ଘନ ଆଣି ଯୋଗ କରିଦେବ । ତାହାହେଲେ ମଧ୍ୟ ମୋଟ ସଂଖ୍ୟାଟିର ଘନଫଳ ଆସିଯିବ ।

ସଂଖ୍ୟାର ବର୍ଗମୂଳ ବାହାର କରି ତାହାର ଘନ ଆଣିବ । ତାକୁ ସେହି ଘନ ସଂଖ୍ୟାରେ ଗୁଣିଦେଲେ ବର୍ଗଶ୍ରେଣୀର ଘନଫଳ ଆସିଯିବ ।

ଘନମୂଳେ କରଣସୂତ୍ରଂ ବୃତ୍ତଦ୍ୱୟଂ—

ଆଦ୍ୟଂ ଘନସ୍ଥାନ ମଥାଘନେ ଦ୍ୱେ
ପୁନସ୍ତଥାନ୍ତ୍ୟାଦ୍‌ଘନତୋ ବିଶୋଧ୍ୟ ।
ଘନଂପୃଥକ୍‌ସ୍ଥଂ ପଦମସ୍ୟ କୃତ୍ୟା
ତ୍ରିଘ୍ନ୍ୟା ତଦାଦ୍ୟଂ ବିଭଜେତ୍ ଫଳଂତୁ । ୨୪୩ ।

ପଂକ୍ତ୍ୟାଂ ନ୍ୟସେତ୍‌ତତ୍‌କୃତମନ୍ତ୍ୟନିଘ୍ନୀଂ
ତ୍ରିଘ୍ନୀଂ ତ୍ୟଜେତ୍ ତତ୍ ପ୍ରଥମାତ୍ ଫଳସ୍ୟ ।
ଘନଂ ତଦାଦ୍ୟାଦ୍ ଘନମୂଳ ମେବଂ
ପଂକ୍ତିର୍ଭବେଦେବମତଃ ପୁନଶ୍ଚ । ୨୪୪ । ଇତି ।

ଭାସ୍କରଙ୍କ ଘନମୂଳ ଆଣିବା ସୂତ୍ର—

ଘନସଂଖ୍ୟାଟିକୁ ରଖି ସର୍ବଶେଷ ଦକ୍ଷିଣରେ ଥିବା ଅଙ୍କ ଉପରେ ଘନଚିହ୍ନ ( । ଗାର) ଦେବ । ତାକୁ ଲାଗି ତାର ବାମକୁ ଥିବା ଦୁଇଟି ଅଙ୍କ ଉପରେ ଅଘନ ଚିହ୍ନ ( . ) ଦେବ । ଏହିପରି ପୂରା ସଂଖ୍ୟାଟିରେ ଥିବା ଅଙ୍କମାନଙ୍କୁ ଘନ-ଅଘନ ଚିହ୍ନିତ କରିଦେବ । ଏପରି କରିସାରିବା ପରେ ଅନ୍ତ୍ୟ ଘନ ସଂଖ୍ୟାରୁ ଯେଉଁ ଅଙ୍କର ଘନ ବାଦ ଦିଆଯାଇପାରେ ତାକୁ ବାଦ ଦେବ । ଏହି ସଂଖ୍ୟାକୁ (ଯାହାର ଘନ ବାଦଦିଆଗଲା) ଅଲଗା ଯାଗାରେ

ରଖିବ । ଏହାର ବର୍ଗକୁ ୩ରେ ଗୁଣି ସଂଖ୍ୟାରେ ଥିବା ପୁଣି ଆଦ୍ୟ ଅଙ୍କକୁ ହରିବ । ଫଳକୁ ପ୍ରଥମ ଘନମୂଳ ରହିଥିବା ପଂକ୍ତିର ଡାହାଣକୁ ରଖିବ, ଫଳର ବର୍ଗକୁ ପଂକ୍ତିରେ ଥିବା ଶେଷ ଅଙ୍କରେ ଗୁଣି ଏବଂ ତାକୁ ୩ରେ ଗୁଣି, ପୁଣି ଆଗରେ ଥିବା ରାଶିରୁ ଫେଡ଼ିବ । ପୁଣି ଯାହା ଭଜ୍ୟରେ ଅବଶେଷ ରହିବ ସେଥିରୁ ଏହି ଫଳ ଅଙ୍କର ଘନକୁ ବାଦ ଦେବ । ଏହିପରି ବାରମ୍ବାର କରିବା ପରେ ଆସିବା ପଂକ୍ତିହିଁ ଉକ୍ତ ଘନ ସଂଖ୍ୟାର ଘନମୂଳ ହୋଇଯିବ ।

ମୂଳାବଶେଷାତ୍ କଥୟାମି ସିଦ୍ଧିଂ
ଷଷ୍ଟ୍ୟଂଶକାନାଂ ପଦଶେଷଭକାମ୍ ।
ପଦଂ ଘନୀକୃତ୍ୟ ପଦୋତ୍ତରାଙ୍କ—
ଘନାଦ୍ ବିଜହ୍ୟାଦ୍ୟ ଇହାବଶେଷଃ । ୨୪୫ ।

ସ ଚ୍ଛିନ୍ନ୍ୟହାରେ ଯଦ ମୂଳସଂଖ୍ୟା
ତ୍ରିଂଶଦ୍‌ବହୁସ୍ତବ ପଦାବଶେଷଃ ।
ଷଷ୍ଟ୍ୟାହତୋଽନ୍ତ୍ୟେନ ହରେଣ ଭକ୍ତଃ
ଫଳଂ କଳାସ୍ତତ୍ ପଦମଲ୍ପକଂ ଚେତ୍ । ୨୪୬ ।

ବ୍ୟୋମାନଳେଭ୍ୟ ସ୍ତଦହାନ୍ତ୍ୟ ହାର
ନ୍ମୂଳାବଶେଷଂ ବିରହଯ୍ୟ ଶେଷଃ ।
ଗୁଣ୍ୟୋଽନ୍ତ୍ୟ ହାରତ୍ରୁ ସରୂପ ମୂଳ—
ଭକ୍ତାତ୍ ଫଳଂ ସ୍ୟାଦ୍ ଗୁଣକାଭିଧାନମ୍ । ୨୪୭ ।

ତତ୍କ୍ଷୁଣ୍ଣଗୁଣ୍ୟୋଽନ୍ତ୍ୟ ହରେଣ ଭକ୍ତଃ
ଫଳୋକ୍ତିତୋଽନ୍ତ୍ୟସ୍ଫୁଟହାର ଉକ୍ତଃ ।
ମୂଳାବଶେଷୋ ବିୟଦଗ୍ନିନଘ୍ନୋ—
ଽନ୍ତ୍ୟାମୟଃ ସ୍ୟାତ୍ ସ୍ଫୁଟହାରଭକ୍ତଃ । ୨୪୮ ।

ପୁରୋଦିତଂ ବର୍ଗପଦଂ ମୟାଙ୍କ
ବହୂପଯୋଗାଦ୍ ଘନମୂଳମୁକ୍ତମ୍ ।
ଦର୍ଶିତା ସାଧନବାସନା ଯା
ଗୋଲଜ୍ଞଗମ୍ୟାନୁଦିତାଖିଳା ଯତ୍ । ୨୪୯ ।

ଷଷ୍ଠ୍ୟଂଶେ ସାବୟବ ଘନାଙ୍କର ମୂଳ ଆଣିବା ସୂତ୍ର—

ସାବୟବ ଘନ ସଂଖ୍ୟାରୁ ପ୍ରଥମେ ଯେତେ ମୂଳ ମିଳିବା କଥା (ପୂର୍ବ ସୂତ୍ରରେ) ବାହାରିଯିବା ପରେ ଅର୍ଥାତ୍ ସେଥିରୁ ଯାହାର ଘନ ଅନ୍ତର ହୋଇପାରିବ, ସେତିକ ବାଦ୍ ଦେବାପରେ ତାହାକୁ ଘନ କରି ତାହାର ପର ସଂଖ୍ୟାର ଘନରୁ ଅନ୍ତର କରିବ । ଫଳର ନାମ ହେବ ଶେଷହାର (ଅନ୍ତ୍ୟହାର) ।

ମୂଳ ସଂଖ୍ୟାଟି ୩୦ରୁ ଅଧିକ ହେଲେ ମୂଳ ଶେଷକୁ ୬୦ରେ ଗୁଣି ଅନ୍ତ୍ୟହାରରେ ହରିବ । ଫଳ କଳାହେବ, ମୂଳ ସଂଖ୍ୟାଟି ୩୦ରୁ କମ୍ ହେଲେ ଅନ୍ତ୍ୟହାରରୁ ମୂଳାବଶେଷକୁ ବାଦ ଦେଇ ତାକୁ ଗୁଣ୍ୟ ନାମ ଦେଇ ରଖିବ । ଅନ୍ତ୍ୟହାରକୁ ମୂଳରେ ୧ମିଶାଇ ହରିଲେ ଯାହା ଲବ୍ଧ ହେବ ତାହାକୁ ଗୁଣକ କରି ଥୋଇବ । ଏହି ଗୁଣ୍ୟ ଓ ଗୁଣକକୁ ପରସ୍ପର ଗୁଣି ତାହାକୁ ଅନ୍ତ୍ୟହାରରେ ଭାଗଦେବ । ଫଳକୁ ପୁଣି ଅନ୍ତ୍ୟହାରରୁ ବାଦ ଦେଲେ ଅନ୍ତ୍ୟ ସ୍ଫୁଟହାର ହେବ । ମୂଳାବଶେଷକୁ ୬୦ରେ ଗୁଣି ଏହି ସ୍ଫୁଟ ହାରରେ ହରିଲେ ଲପ୍ତା ହେବ । ଏହି ଲପ୍ତା ଓ ପୂର୍ବରୁ ଆସିଥିବା ମୂଳ ମିଶିଲେ ସାବୟବ ଘନମୂଳ ହୋଇଯିବ ।

ବର୍ଗମୂଳ ଆଣିବାର ସୂତ୍ର ଆଗରୁ ମୁଁ କହିଛି, ଗଣିତରେ ଅତି ଆବଶ୍ୟକ ହେଲୁ ଘନମୂଳ କଥା ମଧ୍ୟ କହିଲି । ଗଣିତ ସାଧନର ଯୁକ୍ତି ଠିକେ ଠିକେ କହିଗଲି । ବାକି ଯାହାସବୁ କହିନାହିଁ ସେସବୁ ଯୁକ୍ତି, ଗୋଲଜ୍ଞ ଗଣକମାନେ ଆପେ ଆପେ ଜାଣି ନେବେ ।

ଶ୍ଳୋ- ଇଷଦୀଷଦତ୍ର ମଧ୍ୟଗମାର୍ଦୌ
ଗ୍ରନ୍ଥଗୌରବଭୟେନ ମୟୋକ୍ତା ।
ବାସନା ମତମତା ସକଳୋହ୍ୟା
ଗୋଲବୋଧ ଇଦମେବ ଫଳଂ ହି । ୬୫୦ । ଇତି ।

ସିଦ୍ଧାନ୍ତ ଶିରୋମଣିରେ ଅଛି—ଗ୍ରନ୍ଥର କଳେବର ବଢ଼ିଯିବା ଭୟରେ ମୁଁ (ଭାସ୍କରାଚାର୍ଯ୍ୟ) ପ୍ରଥମେ ଟିକିଏ ଟିକିଏ ଯୁକ୍ତି କହି ଚାଲି ଯାଉଛି, ସମସ୍ତ ଯୁକ୍ତି ବୁଦ୍ଧିମାନ୍ ଲୋକେ ସହଜରେ ଜାଣିପାରିବେ । ଗୋଲଜ୍ଞାନ ହେବାଦ୍ୱାରା ଏହି ଫଳ ମିଳିଥାଏ ଅର୍ଥାତ୍ ଗୋଲଜ୍ଞାନ ଥିବା ଲୋକ ସହଜରେ ସବୁ ଯୁକ୍ତି ଜାଣିପାରେ ।

ହୃଦ୍ପ୍ରାଣେନ୍ଦ୍ରିୟରୋଧଶୋଧିତତମଶ୍ଚୋଧ ସ୍ଫୁରଦ୍ଦ୍ୱିଷଃ—
ପଞ୍ଚକ୍ଲେଶମୁଚେ ନ ଯତ୍ କ୍ଷଣମପି ଦ୍ରଷ୍ଟୁଂ କ୍ଷମା ଯୋଗିନଃ ।
ତଦ୍‌ଯଃ ସ୍ୱଂ ପରମଂ ପଦଂ ସ୍ୱଚରଣପ୍ରେମାଧ୍ୱପାନ୍ଥୈର୍ଜନୈଃ
ସୁପ୍ରାପଂ ବିଦଧାତି ନଃ ସ ଭଗବାନବ୍ୟାଦ୍ଭବବ୍ୟାପଦଃ । ୬୫୧ ।

ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରିଥିବାଯୋଗେ ଯୋଗୀମାନେ କାମ, କ୍ରୋଧ ଓ ମୋହଆଦି ଶତ୍ରୁମାନଙ୍କୁ ଜୟକରି ପକାନ୍ତି । ଫଳରେ ସେମାନେ ପଞ୍ଚକ୍ଳେଶରୁ ମୁକ୍ତ ହୋଇଯାନ୍ତି । ଅବିଦ୍ୟା, ଅସ୍ମିତା, ଅନୁରାଗ, ଦ୍ୱେଷ ଓ ଅଭିନିବେଶକୁ ପଞ୍ଚକ୍ଳେଶ କୁହାଯାଏ । ଏହାପରି ଯୋଗୀମାନେ ମଧ୍ୟ ପରମପଦକୁ କ୍ଷଣକପାଇଁ ଦେଖିବା ନିମନ୍ତେ ସମର୍ଥ ହୋଇପାରନ୍ତି ନାହିଁ । (ବେଣୀ ସମ୍ପୁ ଧରି ତାହା ଦେଖିବା ତ ଦୂରରେ ରହିଲା) ମାତ୍ର ସେହି ପରମପଦକୁ ପୁଣି ତାଙ୍କର ଚରଣ ସେବକ (ଭକ୍ତ) ମାନଙ୍କୁ ସେ ସହଜରେ ପାଇପାରିବାର ସୁବ୍ୟବସ୍ଥା କରି ଦେଇଥାନ୍ତି । ଅର୍ଥାତ୍ ପରମହଂସଯୋଗୀ ଯାହା କ୍ଷଣକ ପାଇଁ ମଧ୍ୟ ପାଇ ନ ପାରନ୍ତି ତାହା ତାଙ୍କର ଭକ୍ତମାନେ ଅତି ସହଜରେ ପାଇଥାନ୍ତି । ଭଗବାନ ଭକ୍ତବନ୍ଧୁ । ଏଣୁ ସେ ସଂସାରର ଆପଦ ବିପଦରୁ ଆମ୍ଭମାନଙ୍କୁ ଉଦ୍ଧାର କରନ୍ତୁ ।

ଇତ୍ୟୁତ୍କଳୋଦ୍ଭବନୃପାଳକୁଳପ୍ରସୂତ
ଶ୍ରୀଚନ୍ଦ୍ରଶେଖର କୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
ସଦ୍‌ବାସନୋଽନଖ ସଂଖ୍ୟ ଇତଃ ପ୍ରକାଶଃ । ୬୫୨ ।

ଇତି ଶ୍ରୀ ଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ ଗୋଳାଧିକାରେ ବାସନା-
ଶେଷ ରହସ୍ୟ ବର୍ଣ୍ଣନୋ ନାମୈକବିଂଶତିତମଃ ପ୍ରକାଶଃ ।

ଏଠାରେ ୨୧ଶ ପ୍ରକାଶ ଶେଷ ହେଲା । ଏଥିରେ ଅନେକ ଗୁଢ଼ଏ ଯୁକ୍ତିର ଅବତାରଣା କରାଯାଇଅଛି । ଏଠାରେ ଗୋଳାଧିକାର ମଧ୍ୟ ଶେଷ ହୋଇଅଛି ।

## କାଳାଧିକାରଃ

### ଦ୍ୱାବିଂଶଃ ପ୍ରକାଶଃ

### ସଂବତ୍ସରାଦି ବର୍ଣ୍ଣନମ୍

କାଳାତ୍ମାନମକାଳଦଣ୍ଡନିଳୟଂ କାଳାମ୍ବୁଜନ୍ମଦ୍ୟୁତଂ
କାଳୀକେଳକଳାକଚର୍ଚ୍ଚିତପଦଂ କାଳାଚଳାଳଙ୍କୃତମ୍ ।
କ୍ରୁଧ୍ୟତ୍କାଳୟକାଳକୃଞ୍ଜନକୃତଂ କାକୋଦରୀକାକୁଭିଃ
କୃଷ୍ଣଂ କୃପ୍ତକୃପଂ କରୋମ୍ୟଭିବଦନ୍ କାଳାଧିକାରକ୍ରମମ୍ । ୧ ।

ଭଗବାନ୍ ଶ୍ରୀକୃଷ୍ଣ କାଳସ୍ୱରୂପୀ ଅଟନ୍ତି । ଯମଦଣ୍ଡର ଘର ସେ ଆଦୌ ନୁହନ୍ତି । ତାଙ୍କୁ ସ୍ମରଣ କଲେ ଯମଦଣ୍ଡ ଦୂରୀଭୂତ ହୁଏ । ତାଙ୍କର କା ନୀଳକମଳ ପରି । ପାର୍ବତୀଙ୍କର କ୍ରୀଡ଼ାଚନ୍ଦ୍ର ସ୍ୱୟଂ ଶିବ ତାଙ୍କର ପୂଜା କରନ୍ତି । ସେ ନୀଳାଚଳର ଭୂଷଣ ଶ୍ରୀ ଜଗନ୍ନାଥ । କ୍ରୁଦ୍ଧ କାଳୀୟ ସର୍ପର ଫଣାଗୁଡ଼ିକୁ ସେ ଦାବ ଦେଇ ନୁଆଇଁ ଦେଇଥିଲେ । ନାଗାଙ୍ଗନାମାନଙ୍କର ଦୁଃଖ ସୂଚକ କ୍ରନ୍ଦନ ଧ୍ୱନି ଶୁଣି ସେ ସେମାନଙ୍କ ପ୍ରତି ଦୟା ଦେଖାଇ ଥିଲେ । ତାଙ୍କୁ ମୁଁ ପ୍ରଣାମ କରି କାଳାଧିକାର ଲେଖୁଅଛି ।

କାଳସ୍ତୁ ଦ୍ୱିବିଧୋ ନିତ୍ୟୋ ଜନ୍ୟଶ୍ଚେତି ପ୍ରକୀର୍ତ୍ତିତଃ
ନିତ୍ୟଃ ଶ୍ରୀପରମେଶୋଽୟ କାଳକାଳାପରାହ୍ୱୟଃ । ୨ ।

ବିଶ୍ୱେଷାଂ କଳନାତ୍କାଳୋ ଜନ୍ୟଃ ସ ତୁ ତଥେଶ୍ୱରଃ
ତତ୍ସ୍ମୃତଃ ସର୍ବକାର୍ଯ୍ୟେଷୁ କର୍ତ୍ତବ୍ୟା ମଙ୍ଗଳାର୍ଥିଭିଃ । ୩ ।

କାଳ ଦୁଇ ପ୍ରକାର—ଗୋଟିଏ ନିତ୍ୟ ଏବଂ ଆଉ ଗୋଟିଏ ଜନ୍ୟ । ସ୍ୱୟଂ ପରମେଶ୍ୱର ନିତ୍ୟକାଳ ଅଟନ୍ତି । ସେ କାଳ ବା ସମୟର କଳନା ବା ଗଣନା କରନ୍ତି ବୋଲି ତାଙ୍କର ଅନ୍ୟ ନାମ କାଳକାଳ । ଏଣୁ କଲ୍ୟାଣକାମୀ ଲୋକେ ସବୁ କାର୍ଯ୍ୟରେ ସେହି ପରମେଶ୍ୱରଙ୍କର ସ୍ମରଣ କରିବା ଉଚିତ ।

କୌର୍ମେ—ଅନାଦିରେଷ ଭଗବାନ୍ କାଳୋଽନନ୍ତୋଽକ୍ଷରଃପରଃ
ସର୍ବଗତ୍ୱାତ୍ ସ୍ୱତନ୍ତ୍ରତ୍ୱାତ୍ ସର୍ବାତ୍ମତ୍ୱାତ୍ ମହେଶ୍ୱରଃ । ୪ ।

ପରଂ ବ୍ରହ୍ମ ଚ ଭୂତାନି ବାସୁଦେବୋଽପି ଶଙ୍କରଃ
କାଳେନୈବ ଚ ସୃଜ୍ୟନ୍ତେ ସ ଏବ ଗ୍ରସତେ ପୁନଃ । ୫ । ଇତି ।

ଭଗବାନ୍ ଅନାଦି ଓ ଅନନ୍ତ କାଳରୂପୀ ଅଟନ୍ତି । ତାଙ୍କର କ୍ଷୟ ନାହିଁ । ସେ ସବୁର ପର ପାରରେ ଥାନ୍ତି । ସେ ମହାଈଶ୍ୱର ଅଟନ୍ତି । କାରଣ ସେ ସର୍ବଗତ, ସ୍ୱତନ୍ତ୍ର ଓ ସମସ୍ତଙ୍କର ଆତ୍ମାରୂପୀ ।

କାଳହିଁ ପରମବ୍ରହ୍ମ, ବାସୁଦେବ ଓ ଶଙ୍କର । ତେଣୁ ସମୟହିଁ ସର୍ବଗ୍ରାସ କରେ । ପୁଣି ସମସ୍ତ କ୍ରମେ ଏହି କାଳହିଁ ଭୂତ ସୃଷ୍ଟି କରିଥାଏ ।

ସ୍ମୃତଃଶ୍ଚ—ସର୍ବେଷୁ କାଲେଷୁ ସମସ୍ତ ଦେଶେ—
ଷ୍ୱଶେଷକାର୍ଯ୍ୟେଷ୍ୱ ତଥେଶ୍ୱରେଶ୍ୱରଃ ।
ସର୍ବୈଃ ସ୍ୱରୂପୈର୍ଭଗବାନନାଦି—
ର୍ମମାସ୍ତୁ ମାଙ୍ଗଲ୍ୟବିବୃଦ୍ଧୟେ ହରିଃ । ୭ ।

ଯସ୍ୟ ସ୍ମୃତ୍ୟା ଚ ନାମୋକ୍ତ୍ୟା ତପୋଯଜ୍ଞକ୍ରିୟାଦିଷୁ
ନ୍ୟୂନଂସମ୍ପୂର୍ଣ୍ଣତାଂ ଯାତି ସଦ୍ୟୋ ବନ୍ଦେ ତମଚ୍ୟୁତମ୍ । ୭ । ଇତି ।

ସ୍ମୃତିରେ ଅଛି—ସବୁ ସମୟରେ, ସବୁ ଦେଶରେ ଏବଂ ସକଳ କର୍ମରେ ଈଶ୍ୱରଙ୍କର ପ୍ରଭୁ ରୂପରେ ଅବସ୍ଥିତ ରହି ଆସିଛି । ସେ ଭଗବାନ୍, ଅନାଦି ଏବଂ ସର୍ବ ସ୍ୱରୂପରେ ବିଦ୍ୟମାନ । ତାଙ୍କୁ ହରି ରୂପରେ ମଧ୍ୟ ଗ୍ରହଣ କରାଯାଇଥାଏ । ମୋର କଲ୍ୟାଣ ବୃଦ୍ଧି ଦିଗରେ ସେ ସର୍ବଦା ଆଶୀର୍ବାଦ କରୁଥାନ୍ତୁ ।

ଯାହାର ସ୍ମରଣରେ ଏବଂ ନାମ ଗାନରେ ତପସ୍ୟା ଓ ଯଜ୍ଞ ଆଦି ସବୁ କର୍ମ ନିଶ୍ଚିତ ଭାବରେ, ସେହିକ୍ଷଣି, ପରିପୂର୍ଣ୍ଣ ହୋଇଥାଏ ସେହି ଅଚ୍ୟୁତଙ୍କୁ ମୁଁ ବନ୍ଦନା କରୁଅଛି ।

ନିର୍ଗୁଣତ୍ୱାତ୍ ପରେଶସ୍ୟ ତତ୍ ସ୍ମୃତି ର୍ଘଟତେ କଥମ୍
ଇତି ଚେଦୁଚ୍ୟତେ ତସ୍ୟ ବାଣିଷ୍ଟୋକ୍ତ୍ୟା ଶରୀରିତା । ୮ ।

ଯଦି ପରମେଶ୍ୱର ନିର୍ଗୁଣ ଅଟନ୍ତି ତାହାହେଲେ ତାଙ୍କର ସ୍ମରଣ କିପରି କରାଯାଇପାରେ ଏହି ପ୍ରଶ୍ନ ହେଲେ ବାଶିଷ୍ଠ ରାମାୟଣରେ ତାଙ୍କର ଶରୀର ଧାରଣ କଥା ଯାହା କଥିତ ଅଛି, ତାହା କହୁଛି—

ତଥାହି ବାଶିଷ୍ଠ ରାମାୟଣେ

ନତେନ୍ୟା ଜନ୍ୟଶ୍ଚ କାଳୌ ଦ୍ୱୌ ତୟୋରାଦ୍ୟଃ ପରେଶ୍ୱରଃ
ସୋଽବାଙ୍ମନସଗମ୍ୟୋଽପି ଦେହୀ ଭକ୍ତାନୁକମ୍ପୟା । ୯ ।

ଖଡ୍ଗପାଶଧରଃ ଶ୍ରୀମାନ୍ କୁଣ୍ଡଳୀ କବଚାନ୍ୱିତଃ ।
ଚତୁଷ୍ଟମ୍ମୟୋଦାରବକ୍ତ୍ର ଷଟ୍କ ସମନ୍ୱିତଃ । ୧୦ ।

**ମାସଦ୍ୱାଦଶକୋଦ୍ଦାମଭୁଜଦ୍ୱାଦଶକୋଭଟଃ**
**ସ୍ୱାକାରସମୟା ବହ୍ୟାକୃତଃ କଙ୍କରସେନୟା । ୧୧ । ଇତ ।**

ଯୋଗବାଶିଷ୍ଠ ରାମାୟଣରେ ଏହିପରି ଅଛି—

ନିତ୍ୟ ଓ ଜନ୍ୟ ଭେଦରେ ସମସ୍ତ (କାଳ) ଦୁଇପ୍ରକାର । ଏହି ଦୁଇଟି ମଧ୍ୟରୁ ପରମେଶ୍ୱର ହିଁ ପ୍ରଥମ ଓ ନିତ୍ୟକାଳ । ସେହି ପରମେଶ୍ୱର ବଚନ ଓ ମନର ଅଗୋଚର ହେଲେ ମଧ୍ୟ ଭକ୍ତଙ୍କୁ ଦୟା ଦେଖାଇବା ନିମନ୍ତେ ଦେହ ଧାରଣ କରନ୍ତି ।

ସେ ଖଡ୍ଗ ଓ ପାଶ ଧରି ଅଛନ୍ତି । ସେ ଦେଖିବାକୁ ସୁଶ୍ରୀ । ତାଙ୍କର ଦେହରେ ସାଞ୍ଜୁ ଓ କାନରେ କୁଣ୍ଡଳ ଅଛି । ଛଅ ଋତୁମୟ ହେବାରୁ ସେ ଛଅଟି ମସ୍ତକ ଧାରଣ କରି ଅଛନ୍ତି । ବାରଟି ମାସ ତାଙ୍କର ବାରଟି ଉଦ୍ଦାମ ବାହୁ ରୂପରେ ଦେଖାଯାନ୍ତି । ନିଜର ଆକାର ଓ ଅବସ୍ଥା ଥିବା ଭୃତ୍ୟ ଓ ସେନାଗଣଙ୍କ ଦ୍ୱାରା ସେ ସର୍ବଦା ସେବିତ ହୋଇ ରହିଅଛନ୍ତି ।

**ଯଦ୍ୟପ୍ୟେତତ୍ କାଳରୂପଂ ତଥାପ୍ୟସ୍ୟ ରମାପତେଃ**
**ଧୃତନାନାତନୋର୍ଭକ୍ତ୍ୟୈ କାର୍ଯ୍ୟା ସ୍ୱେଷ୍ଟାକୃତସ୍ମୃତଃ । ୧୨ ।**

**ନିତ୍ୟାଜ୍ଜନ୍ୟସ୍ୟ କାଳସ୍ୟ ସମୁତ୍ପତ୍ତିରଭୂଦତ**
**ଶ୍ରୁତପ୍ରାମାଣ୍ୟମାସାଦ୍ୟ ପ୍ରାହ ସ୍ୱାୟମ୍ଭୁବୋ ମନୁଃ । ୧୩ ।**

ଲକ୍ଷ୍ମୀପତିଙ୍କର ଏହିପରି କାଳରୂପ ହେଲେ ମଧ୍ୟ ସେ ଅନେକ ଶରୀର ଧାରଣ କରିଥାନ୍ତି । ଏଥିରୁ ଇଚ୍ଛାନୁଯାୟୀ ଯେ କୌଣସି ଗୋଟିଏ ଆକାରର ସ୍ମରଣ ଭକ୍ତି ନିମନ୍ତେ କରାଯାଇ ପାରେ । ଏତକ କରିବା ଦ୍ୱାରା ଭକ୍ତି ବଢ଼େ ।

ଏହି ନିତ୍ୟ କାଳରୂପୀ ପରମେଶ୍ୱରଙ୍କଠାରୁ ଜନ୍ୟ କାଳର ଉତ୍ପତ୍ତି ହୋଇଅଛି । ଏହି କଥା ବେଦରେ ଅଛି । ଏହା ପୁଣି ସ୍ୱାୟମ୍ଭୁବ ମନୁ କହିଅଛନ୍ତି ।

**ତଥାହ—କାଳଃ କାଳବିଭକ୍ତୀଶ୍ଚ ନକ୍ଷତ୍ରାଣି ଗ୍ରହାଂସ୍ତଥା**
**ସୃଷ୍ଟିଂ ସସର୍ଜ ଚୈବେମାଂ ସ୍ରଷ୍ଟୁମିଚ୍ଛନ୍ନିମାଃ ପ୍ରଜାଃ । ୧୪ । ଇତ ।**

ଈଶ୍ୱରରୂପୀକାଳ ଏହି ପ୍ରଜା ସୃଷ୍ଟି କରିବାକୁଯାଇ କାଳର ବିଭାଗ (ଦିନ, ମାସ ଆଦି) ନକ୍ଷତ୍ର, ଗ୍ରହ ତଥା ଏହି ବିଶ୍ୱସୃଷ୍ଟିକୁ ରଚନା କରିଅଛି ।

**କାଳାତ୍ମା ଦନକୃତ୍ ପ୍ରୋକ୍ତୋ ହୋରାସ୍କନ୍ଧେ ଯତସ୍ତତଃ**
**ସିଦ୍ଧାନ୍ତଗଦତା ସୃଷ୍ଟିର୍ନ ବିରୋଧମିହାର୍ହତ । ୧୫ ।**

ତୃଟ୍ୟାଦପ୍ରଳୟାନ୍ତେଷୁ ଜନ୍ୟକାଳେଷୁ ବତ୍ସରଃ
ପ୍ରଧାନଭୂତୋଽବୟବୀ ସ୍ୱାଙ୍ଗୈର୍ଯୁକ୍ତୋଽୟନାଦଭିଃ । ୧୬ ।

ସମ୍ୟଗ୍‌ବସନ୍ତ ଯଦର୍ତ୍ତୁ ମାସପକ୍ଷଦନାଦୟଃ ।
ପ୍ରାଚୀନୈଃ କାଳବଶେଷୋଽସୌ ସମ୍ବତ୍ସର ଇତରତଃ । ୧୭ ।

ହୋରାସ୍କନ୍ଧରେ (ବୃହଜ୍ଜାତକ ଆଦରେ) ସୂର୍ଯ୍ୟଙ୍କୁ କାଳାତ୍ମା ବୋଲି କୁହାଯାଇଅଛି । ସେହି ସୂର୍ଯ୍ୟଙ୍କଠାରୁ ହିଁ କାଳର ପ୍ରବୃତ୍ତି । ଏହି ହେତୁରୁ ସିଦ୍ଧାନ୍ତ ଗ୍ରନ୍ଥରେ ଦଆଯାଇଥିବା ସୃଷ୍ଟି ଏହି କଥାର ବରୋଧ କରୁଛି ବୋଲି ଭାବବା ଅନୁଚତ, କାରଣ ସୂର୍ଯ୍ୟଙ୍କୁ କାଳାତ୍ମା ମାନଲେ ସେ ସୃଷ୍ଟିର କାରଣ ଆପେ ଆପେ ହୋଇଯିବେ ।

ଜନ୍ୟକାଳ ତ୍ରୁଟିଠାରୁ ଆରମ୍ଭ ହୋଇ ପ୍ରଳୟ ପର୍ଯ୍ୟନ୍ତ ରହିଅଛି । ଏଥିରେ ଥିବା ବର୍ଷ ପ୍ରଧାନ ଅଟେ ଏବଂ ଏହି ବର୍ଷକୁ ଅବୟବୀ କହିଥାନ୍ତି । ଅୟନ, ଋତୁ, ମାସ ଓ ପକ୍ଷ ଆଦ ଏହାର ଅବୟବ । ଦନ, ଦଣ୍ଡ ଆଦ ମଧ୍ୟ ଏହାର ଅବୟବ ଏବଂ ଏ ସମସ୍ତେ ଅବୟବୀଠାରେ ହିଁ ରହିଥାନ୍ତି, କାରଣ ଅବୟବକୁ ନ ନେଇ ଅବୟବୀ ହୋଇ ନ ପାରେ । ଏହି ବର୍ଷ ଆଦ ଯେ କାଳବଶେଷ ଏଥିରେ ସନ୍ଦେହ ନାହିଁ । ଏହାର ଅନ୍ୟ ନାମ ସମ୍ବତ୍ସର ।

ଅୟତେ ଯେନ୍ ପୂଷର୍ତ୍ତୁ ବୟେଣୋଦଗ୍‌ଦଶଂ ତଥା
ଦକ୍ଷିଣାଶାଂ ତଦେବୋକ୍ତମୟନଂ ସୌରମାନଜମ୍ । ୧୮ ।

ଇୟର୍ତ୍ତ୍ୟଶୋକପୁଷ୍ପାଦଲଙ୍ଗଂ ସାଧାରଣେତରମ୍
ଯଃ ସ କାଳବଶେଷୋଽବ ବସନ୍ତାଦ୍ୟୃତୁରୁଚ୍ୟତେ । ୧୯ ।

ମାସ୍ୟତେ ପରମୀୟେତେ ଯେନ ଚନ୍ଦ୍ରର୍କିସଂକ୍ଷୟୌ
ସୂର୍ଯ୍ୟରାଶିଗତର୍ଯ୍ୟଦ ମାସ୍ୟତେଽହ୍ନାଂଚ ଯଦ ହ । ୨୦ ।

ମାସ୍ୟତେ ତ୍ରିଂଶତଃ ସଂଖ୍ୟା ତଥାହ୍ନାଂ ଭଭ୍ରମୋଦ୍ୟତାମ୍
ମାସଃ ସ ଉଚ୍ୟତେ ଚାନ୍ଦ୍ରଃ ସୌରଃ ସାବନ ଋକ୍ଷଜଃ । ୨୧ ।

ସୂର୍ଯ୍ୟ ଯେଉଁ ଛଅ ଋତୁ (ଛମାସ) ଧରି ଉତ୍ତର ଦଗ ଓ ଦକ୍ଷିଣ ଦଗକୁ ଯାଏ ସେହି ଛଅ ଋତୁକୁ ହିଁ ଅୟନ କହନ୍ତି । ଏହା ସୌରମାନ ଅର୍ଥାତ୍ ସୂର୍ଯ୍ୟର ଗତିକୁ ନେଇ ହିଁ ଅୟନ (ଦକ୍ଷିଣ ବା ଉତ୍ତର) ହୋଇଥାଏ । ଅୟ ଧାତୁର ଅର୍ଥ ଗତ । (ଅୟ୍ + ଅନ = ଅୟନ) ଯେପରି ଯେଉଁ ସମୟ (ଦୁଇମାସ) ଅଶୋକ ପୁଷ୍ପ ପ୍ରଭୃତ ଅସାଧାରଣ ଚହ୍ନ ଧାରଣ କରେ ତାହାକୁ ବସନ୍ତ ଋତୁ କୁହାଯାଏ । ତଦନୁ କ୍ରମେ ବଭନ୍ନ ଅସାଧାରଣ ଚହ୍ନରୁ ଅନ୍ୟାନ୍ୟ ଋତୁ ଜଣାଯାଏ । ଋ + ତୁ = ଋତୁ ଉଣାଦ ।

ଯେତକ ସମୟରେ ମପା ଯାଏ (ହିସାବ କରାଯାଏ) ତାହାକୁ ମାସ କହନ୍ତି । ଚନ୍ଦ୍ରର କ୍ଷୟ ବୃଦ୍ଧି ଯେ ମାପେ ସେ ଚାନ୍ଦ୍ର ମାସ । ସୂର୍ଯ୍ୟର ରାଶିଗତି ଯେ ମାପେ ସେ ସୌର ମାସ । ୩୦ଟି ସୂର୍ଯ୍ୟୋଦୟ ହେଉ ସାବନ ମାସ ପୁଣି ୩୦ଟି ନକ୍ଷତ୍ର ଭ୍ରମଣ ପରିମାପକ ସମୟକୁ ନାକ୍ଷତ୍ର ମାସ କହନ୍ତି ।

ପକ୍ଷେ୍ୟତେ ପରିଗୃହ୍ୟେତେ ଦେବତାପିତୃକାର୍ଯ୍ୟୟୋଃ
ଯୌ ତୌ ପକ୍ଷୌ ଶୁକ୍ଳକୃଷ୍ଣୌ ଚନ୍ଦ୍ରବୃଦ୍ଧିକ୍ଷୟୋଦ୍ଭବୌ । ୨୨ ।

ତନୋତି ଯୋ ବର୍ଦ୍ଧମାନାଂ କ୍ଷୀୟମାଣାଂ କଳାଂ ବିଧୋଃ
ଏକାଂ କାଳବିଶେଷୋଽୟଂ ତିଥିରିତ୍ୟୁଚ୍ୟତେ ବୁଧୈଃ । ୨୩ ।

ଇତ୍ଥଂ ଯାମମୁହୂର୍ତ୍ତାଦିକାଳାଙ୍ଗାନାମନେକଶଃ
ବ୍ୟୁତ୍ପତ୍ତିର୍ନ ମୟା ପ୍ରୋକ୍ତା ଗ୍ରନ୍ଥବିସ୍ତରସାଧ୍ୱସାତ୍ । ୨୪ ।

ଚନ୍ଦ୍ରର କଳାବୃଦ୍ଧି ଓ କ୍ଷୟକୁ ନେଇ ଶୁକ୍ଳ ଓ କୃଷ୍ଣପକ୍ଷ ହୁଏ । ଏ ଦୁଇଟି ଯାକ ପକ୍ଷ ଦେବ ଓ ପିତୃକାର୍ଯ୍ୟରେ ଗୃହୀତ ହୋଇଥାନ୍ତି ।

ବଢୁଥିବା ବା ଛିଡ଼ୁଥିବା ଏକ ଏକ ଚନ୍ଦ୍ର କଳାକୁ ଯେଉଁ ସମୟ ବିସ୍ତାରକରେ (ପ୍ରକାଶ କରେ) ତାହାର ନାମ ତିଥି । (ତିଥି=ତନ୍+ଇଥିନ୍—ପୃଷୋଦରାଦି)

ଏହିପରି ଯାମ ଓ ମୁହୂର୍ତ୍ତ ଆଦି ନାମରେ ସମୟର ଅନେକ ଅଙ୍ଗ ବିଭାଗ ଅଛି । ଏ ଗୁଡ଼ିକର ବ୍ୟୁତ୍ପତ୍ତି ମୁଁ ଦେଇ ନାହିଁ । କାରଣ ତାହାକଲେ ଏହି ଗ୍ରନ୍ଥର କଳେବର ବହୁତ ବଢ଼ିଯିବ—ଏହି ଡର ମୋତେ ତାହା କରିବାକୁ ଦେଉନାହିଁ । (ସାଧ୍ୱସ—ଭୟ)

ନବଧା କାଲମାନାନି ଚାନ୍ଦ୍ରମାର୍କ୍ଷଂ ଚ ସାବନମ୍
ବାର୍ହସ୍ପତ୍ୟଂ ତତଃ ସୌରଂ ମାନବଂ ପୈତ୍ର୍ୟମେବ ଚ । ୨୫ ।

ଦୈବଂ ବ୍ରାହ୍ମ୍ୟମିତି ପ୍ରୋକ୍ତାନ୍ୟେବ ପଞ୍ଚଭିରାଦିମୈଃ
ବ୍ୟବହାରୋ ମନୁଷ୍ୟାଣାଂ ମନ୍ୱାଦୀନାଂ ସ୍ୱନାମତଃ । ୨୬ ।

ଭୂଗର୍ଭନଃସୃତାତ୍ ସୂତ୍ରାତ୍ ସୂର୍ଯ୍ୟମଣ୍ଡଳମଧ୍ୟଗାତ୍ ।
ପ୍ରାଚୀଂ ଯଦ୍ୟାତି ଶୀତାଂଶୁସ୍ତାନ୍ଦ୍ରମାନଂ ତଦୁଚ୍ୟତେ । ୨୭ ।

ବ୍ୟର୍କେନ୍ଦ୍ରଭଗଣୋ ମାସସ୍ତଦର୍ଦ୍ଧଂ ପକ୍ଷ ଇଷ୍ୟତେ
ତଥିସ୍ତତ୍‌ଶରଲୂପାଂଶ ସ୍ତଦର୍ଦ୍ଧଂ କରଣଂ ମତମ୍ । ୨୮ ।

ବ୍ରତୋପବାସପର୍ବାଦକୃତ୍ୟାକୃତ୍ୟପିତୃକ୍ରିୟାଃ
ଚାନ୍ଦ୍ରମାନେନ ଗୃହ୍ୟନ୍ତେ ମାସବୃଦ୍ଧିକ୍ଷୟାଦୟଃ । ୨୯ ।

ସମସ୍ତ ବିଭାଗ ନଅ ପ୍ରକାର ଯଥା—ଚାନ୍ଦ୍ର, ନାକ୍ଷତ୍ର, ସାବନ, ବାର୍ହସ୍ପତ୍ୟ, ସୌର, ମାନବ, ପୈତ୍ର୍ୟ, ଦୈବ ଓ ବ୍ରାହ୍ମ୍ୟ । ଏଥିରୁ ପ୍ରଥମ ପାଞ୍ଚଟି ସମସ୍ତ ବିଭାଗହିଁ ମୁଖ୍ୟତଃ ମନୁଷ୍ୟ ବ୍ୟବହାରରେ ଆସନ୍ତି । ମାନବଠାରୁ ଆରମ୍ଭ କରି ବାକି ଚାରିଟିର ବ୍ୟବହାର ନାମାନୁସାରେ ହୋଇଥାଏ ମାତ୍ର ।

ଭୂମିର କେନ୍ଦ୍ର ବିନ୍ଦୁରୁ ସୂର୍ଯ୍ୟର କେନ୍ଦ୍ର ପର୍ଯ୍ୟନ୍ତ ଗୋଟିଏ ରେଖା ଟାଣିଲେ ସେହି ରେଖାର ପୂର୍ବକୁ ଯେତେବେଳେ ଚନ୍ଦ୍ର ୧୨° ଚାଲି ଯାଏ ତାହାକୁ ହିଁ ଚାନ୍ଦ୍ରମାନ କୁହାଯାଏ । ଏହାହିଁ ଏକ ତିଥି ।

ଚନ୍ଦ୍ରରୁ ସୂର୍ଯ୍ୟର ଅନ୍ତର ଏକ ଭଗଣ ହେଲେ (୩୬୦°) ଗୋଟିଏ ଚାନ୍ଦ୍ରମାସ ହୁଏ । ଏହାର ଅଧାକୁ ପକ୍ଷ କହନ୍ତି । ପକ୍ଷର ପଞ୍ଚଦଶାଂଶକୁ .ତିଥି ଏବଂ ତିଥିର ଅଧାକୁ କରଣ କହନ୍ତି ।

ମାସର ବୃଦ୍ଧି—କ୍ଷୟ, ବ୍ରତ, ଉପବାସ, ପର୍ବପର୍ବାଣି କୃତ୍ୟ—ଅକୃତ୍ୟ କାଳ ତଥା ପିତୃକ୍ରିୟା ଚାନ୍ଦ୍ରମାନରେ ହିଁ (ତିଥିରେ) ସମ୍ପନ୍ନ କରାଯାଇଥାଏ ।

ପର୍ବାନ୍ତେ କୃତ୍ତିକାଦୀନାଂ ଯୋଗାଦେଷ୍ୟ କାର୍ତ୍ତିକାଦୟଃ
ମାସାଃ ପ୍ରାଗ୍‌ଭିର୍ମତାସ୍ତଦ୍ଵଦ୍ ଯଦୃକ୍ଷସ୍ଥବୃହସ୍ପତେଃ । ୩୦ ।

ଉଦୟସ୍ତତ୍ତନାମ୍ନାବ୍ଦାଃ ସୂର୍ଯ୍ୟସିଦ୍ଧାନ୍ତସମ୍ମତାଃ
ତଲ୍ଲକ୍ଷଣାନ୍ୟତଦ୍ୟାପ୍ତୈର୍ନୋକ୍ତ ପ୍ରୋକ୍ତାନ ବସ୍ତୁରାତ୍ । ୩୧ ।

କୃତ୍ତିକାଶବ୍ଦବାଚ୍ୟଂ ଯତ୍ କୃତ୍ତିକାରୋହଣୀଦ୍ୱୟମ୍
ତତ୍‌ପର୍ବାନ୍ତାନ୍ୱୟାନ୍ମାସୋ ନିରୁକ୍ତଃ କାର୍ତ୍ତିକୋ ଯଦି । ୩୨ ।

ତଦୃକ୍ଷ୍ମାର୍ଗପର୍ବାନ୍ତଭରଣୀରୋହଣୀଯୁତୌ
ଅବେଦ୍ଧ୍ୟକ୍ଷୋର୍ଜତାପତ୍ତିର୍ଭବେତ୍ କାର୍ତ୍ତିକମାର୍ଗୟୋଃ । ୩୩ ।

ତଥାପି ପୂର୍ବଚଳତଦ୍ୟବହାରବଶାଦମେ
କୃତ୍ତିକାମୃଗଶୀର୍ଷାଦନାମଭିଃ ପ୍ରାୟିକା ମତାଃ । ୩୪ ।

ପୂର୍ଣ୍ଣିମାନ୍ତରେ ଚନ୍ଦ୍ର ସହିତ କୃତ୍ତିକା ଆଦି ନକ୍ଷତ୍ରର ଯୋଗକୁ ନେଇ ପ୍ରାଚୀନମାନେ ଯେପରି କାର୍ତ୍ତିକ ଆଦି ଚାନ୍ଦ୍ର ମାସର ନାମ ଗ୍ରହଣ କରି ଅଛନ୍ତି, ଠିକ୍ ସେହିପରି ଯେଉଁ ନକ୍ଷତ୍ରରେ ରବି ବୃହସ୍ପତି ଉଦୟ ହୁଏ, ସେହି ନକ୍ଷତ୍ର ନାମରେ ସେହି ବାର୍ହସ୍ପତ୍ୟ ବର୍ଷର ନାମ ଗ୍ରହଣ ହୁଏ । ଏହି କଥା ସୂର୍ଯ୍ୟ ସିଦ୍ଧାନ୍ତରେ ଅଛି । ମାତ୍ର ବର୍ତ୍ତମାନ ଏହି ସବୁ ଲକ୍ଷଣ ଗ୍ରନ୍ଥ ବିସ୍ତାର ଭୟରେ କୁହାଯାଉ ନାହିଁ ।

କୃତ୍ତିକା ଓ ରୋହିଣୀ ଉଭୟଙ୍କୁ କୃତ୍ତିକା ମନେକରି, ଏଥିରୁ ଗୋଟିକର ଯେଉଁ ପୂର୍ଣ୍ଣାନ୍ତ ସହିତ ଯୋଗ ହେଲା, ତାହାକୁ ଯଦି କାର୍ତ୍ତିକ କୁହାଯିବ, ତାହାହେଲେ କାର୍ତ୍ତିକ ଓ ମାର୍ଗଶୀର ପୂର୍ଣ୍ଣାନ୍ତରେ ଯଥାକ୍ରମେ ଭରଣୀ ଓ ରୋହିଣୀ ଯୋଗ ପାଇଲେ ସେହି ବର୍ଷ ଏହି ଦୁଇ ମାସକୁ ଯଥାକ୍ରମେ ଆଶ୍ୱିନ ଓ କାର୍ତ୍ତିକ କାହିଁକି କୁହାନଯିବ ? ଏପରି ଅସୁବିଧାର ସମ୍ମୁଖୀନ ହେଉଥିବା ସତ୍ତ୍ୱେ ପ୍ରାଚୀନ କାଳରୁ ପ୍ରଚଳିତ ଯେଉଁ ବ୍ୟବହାର ଚାଲି ଆସିଛି, ତଦନୁଯାୟୀ କାର୍ତ୍ତିକ, ମାର୍ଗଶୀର୍ଷ ଆଦି ମାସ ଗଣନା ମଧ୍ୟ ହୋଇ ଆସୁଛି । ଏହି ନକ୍ଷତ୍ର ଯୋଗ ମଧ୍ୟ ପ୍ରାୟ ଘଟିଥାଏ । (ପ୍ରଥମେ ଠିକ୍ ଠିକ୍ ଘଟୁଥିଲା; ମାତ୍ର ଏବେ ତାହା ନ ଘଟିଲେ ମଧ୍ୟ ଆମ୍ଭେମାନେ ରକ୍ଷଣଶୀଳ ବୋଲି ଏହି ପରଂପରା ମାନି ଚାଲିଛୁ । )

ଏକଃ ପଶ୍ଚାଦ୍ ଭ୍ରମୋ ଭାନାଂ ନାକ୍ଷତ୍ରଂ ଦିନମୁଚ୍ୟତେ
ଘଟିକାଦିକମାୟୁଶ୍ଚ ତନ୍ମାନେନୈବ ସିଦ୍ଧ୍ୟତି । ୩୫ ।

ନାକ୍ଷତ୍ରମାନସଂସିଦ୍ଧମାୟୁଃ କଲ୍ପାର୍କବାସରୈଃ
ଗୁଣିତଂ ତଦ୍ଭମାବାପ୍ତଂ ସୌରବ୍ଦାଦି ସ୍ଫୁଟଂ ଭବେତ୍ । ୩୬ ।

ଯଦ୍ୟପି ସ୍ୟାଦଭଗ୍ରହାଣାଂ ସ୍ୱସ୍ୱୋଦୟଯୁଗାନ୍ତରମ୍
ତତ୍ତତ୍ସାବନଘସ୍ରାଖ୍ୟମୁକ୍ତପୂର୍ବଂ ତଥାପି ହି । ୩୭ ।

ମଧ୍ୟାର୍କଗତଯୁକ୍ଚକ୍ରକଳକାସଂଖ୍ୟକାସୁଭିଃ
ସମ୍ମିତଂ ସାବନଂ ମଧ୍ୟଗ୍ରହାନୟନକର୍ମଣି । ୩୮ ।

ସ୍ଫୁଟ ସୂର୍ଯ୍ୟୋଦୟ ଦ୍ୱନ୍ଦ୍ୱ ବିବରଂ ସାବନଂ ଦିନମ୍ ।
ପ୍ରସିଦ୍ଧଂତେନ ଯଜ୍ଞାଦି ସୂତକାଦ୍ୟଦ୍ଧିପାଦୟଃ । ୩୯ ।

ନକ୍ଷତ୍ରର ଗୋଟିଏ ପଶ୍ଚିମ ଭ୍ରମଣ ଯେତିକି ସମୟରେ ହୁଏ, ତାହାକୁ ଗୋଟିଏ ନାକ୍ଷତ୍ର ଦିନ କହନ୍ତି । ଘଟି-ପଳ ଆଦି ଏହିମାନରେ ଧରାଯାଏ । ବ୍ରହ୍ମାଙ୍କର ପରମାୟୁମାନ ଏହି-ମାନରେ ହିଁ ଧରା ଯାଇଥାଏ । ନାକ୍ଷତ୍ର ମାନର ଆୟୁ କାଳକୁ କଳ୍ପ ସୌର ଦିନରେ ୧୫୫୫୨୦୦୦୦ ୦୦୦୦ ଗୁଣି କଳ୍ପ ନାକ୍ଷତ୍ର ଦିନରେ ୧୫୮୨୨୩୭୮୨୮୦୦୦ ହରିଲେ ଫଳ ସ୍ଫୁଟ ସୌର ବର୍ଷାଦି ହୁଏ ।

ସାବନ ଦିନ—ଆଗରୁ କୁହାଯାଇଛି ଯେ ଗ୍ରହ ବା ନକ୍ଷତ୍ରର ଗୋଟିଏ ଉଦୟରୁ ଅନ୍ୟ ଅବ୍ୟବହିତ ଉଦୟ ପର୍ଯ୍ୟନ୍ତ, ସେହି ଗ୍ରହ ବା ନକ୍ଷତ୍ରର ସାବନ ଦିନ । ତଥାପି ଗଣିତରେ ମଧ୍ୟମ ଗ୍ରହ ଆଣିବା ନିମନ୍ତେ ରବିର ମଧ୍ୟମ ଗତି କଳାଯୁକ୍ତ ୨୧୬୦୦ କଳାକୁହିଁ ସାଧାରଣତଃ ସାବନ ଦିନ ବୋଲି ଧରିବାକୁ ହୋଇଥାଏ । ତାହାର ପରିମାଣ ହେଲା— ୨୧୬୫୯ । ୮ଅସୁ । ଲଗ୍ ଲଗ୍ ଦୁଇଟି ସ୍ଫୁଟ ସୂର୍ଯ୍ୟ ଉଦୟର ଅନ୍ତର କାଳକୁ ସ୍ଫୁଟ ସାବନ ଦିନ କହନ୍ତି ଏବଂ ଏହାକୁ ହିଁ ଲୋକେ ସାଧାରଣତଃ ସାବନ ଦିନ ନାମରେ ବ୍ୟବହାର କରିଥାନ୍ତି । ଏହି ସାବନ ଦିନକୁ ଧରି ଯଜ୍ଞ କାର୍ଯ୍ୟ, ସୂତକ, ଅଶୌଚ ଆଦିର ଦିନ ଗଣନା ଏବଂ ବର୍ଷପତି ଓ ମାସାଧିପତି ଆଦି ଅଣାଯାଇ ଥାଆନ୍ତି ।

**ଜ୍ଞେୟା ଜୈବେନ ମାନେନ ବତ୍ସରାଃ ପ୍ରଭବାଦୟଃ**
**ଲୁପ୍ତବର୍ଷାର୍ଦ୍ଧବର୍ଷାଦି ସ୍ୱରାଦ୍ୟାଃ ସଂହିତୋକ୍ତିଭିଃ । ୪୦ ।**

**ଏକାଂଶପ୍ରାଗ୍‌ଗତର୍ଭାନୋଃ ସୌରଂ ଦିନମିତୀର୍ଯ୍ୟତେ**
**ତ୍ରିଂଶତା ତଦ୍ଦିନୈର୍ମାସୋ ବର୍ଷଂ ଦ୍ୱାଦଶଭିଶ୍ଚ ତୈଃ । ୪୧ ।**

**ସୌରମାନେନ ଗୃହ୍ୟନ୍ତେ ସଂକ୍ରମର୍ତ୍ତ୍ୱୟନାଦୟଃ**
**ଦେବାସୁରଦ୍ୟୁରଜନୀଯୁଗମନ୍ୱନ୍ତରକ୍ଷୟାଃ । ୪୨ ।**

**ବିବାହବ୍ରତଚୂଡ଼ାଦିବେଶ୍ମାରମ୍ଭାଦୟଃ କ୍ରିୟାଃ**
**ମାସାଦିନିୟମାଃ ପର୍ବାଣ୍ୟପି ଦେଶବିଶେଷତଃ । ୪୩ ।**

ବାର୍ହସ୍ପତ୍ୟ ମାନର ଆବଶ୍ୟକତା—ବାର୍ହସ୍ପତ୍ୟ ମାନରେ ପ୍ରଭବ ଆଦି ସମ୍ୱତ୍ସର, ଲୁପ୍ତ-ବର୍ଷ, ଅର୍ଦ୍ଧବର୍ଷ ତଥା ସ୍ୱର ଶାସ୍ତ୍ରୋକ୍ତ ଅଙ୍କ ଓ ସ୍ୱର ଆଦି ଧରାଯାଏ ବୋଲି ସଂହିତା ( ବୃହତ୍ ସଂହିତା) ରେ ବର୍ଣ୍ଣିତ ଅଛି ।

ସୌରମାନ ଓ ତାର ପ୍ରୟୋଜନ—ସୂର୍ଯ୍ୟ ଯେତିକି ସମୟରେ ଗୋଟିଏ ଅଂଶ ଗତି କରେ ସେହି ସମୟକୁ ଗୋଟିଏ ସୌର ଦିନ କୁହାଯାଏ । ଏଥିରୁ ୩୦ଟି ସୌର ଦିନରେ ଗୋଟିଏ ସୌର ମାସହୁଏ । ଏହିପରି ୧୨ଟି ସୌର ମାସରେ ଗୋଟିଏ ସୌର ବର୍ଷ ହୁଏ । ସୌରମାନରେ ସଂକ୍ରାନ୍ତି, ଅୟନ ଋତୁଆଦି ପାଳିତ ହୁଏ । ଦେବତା ଓ ଅସୁରମାନଙ୍କର ଦିନ ଓ ରାତି, ଯୁଗ ତଥା ମନ୍ୱନ୍ତର ପ୍ରଭୃତିର ପରିସମାପ୍ତି ମଧ୍ୟ ସୌରମାନରେ ହୋଇଥାଏ ।

ବିବାହ, ବ୍ରତ, ଚୂଡ଼ାକର୍ମ, ଗୃହାରମ୍ଭ ପ୍ରଭୃତି ଶୁଭ କାର୍ଯ୍ୟ; ମାସ, ବର୍ଷ ଓ ବ୍ରତାଦିର ପାଳନ ଓ ପର୍ବାଦିନ ଆଦି ଦେଶ ବିଶେଷରେ ସୌରମାନରେ ମଧ୍ୟ ଗୃହୀତ ହୋଇଥାଏ ।

ଏଗୁଡ଼ିକ ସାଧାରଣତଃ ଗ୍ରନ୍ଥମାନରେ ହେଉଥିବା କଥା ଆଗରୁ କୁହାଯାଇଅଛି । ଏବେ ସୌରମାନରେ ମଧ୍ୟ ହୋଇଥାଏ ବୋଲି କହିବାଦ୍ୱାରା ସ୍ପଷ୍ଟ ଜଣାଯାଉଛି ଯେ, ସ୍ଥଳ ବିଶେଷରେ ଗ୍ରନ୍ଥ ଓ ଅନ୍ୟ ସ୍ଥଳରେ ସୌରମାନରେ ଗୃହୀତ ହୋଇଥାଏ ।

ସୌରେ—

ତୁଲାଦିଷଡ଼ଶୀତ୍ୟଂଶୈଃ ଷଡ଼ଶୀତିମୁଖଂ ଦିନମ୍
ତଚ୍ଚତୁଷ୍ଟୟମେବ ସ୍ୟାଦ୍‌ଦ୍ୱିଃସ୍ୱଭାବେଷୁ ରାଶିଷୁ । ୪୪ । ଇତ୍ୟ

ଧନୁଷଃ ସପ୍ତବିଂଶୋଽଂଶ ସ୍ତ୍ରୟୋବିଂଶୋଽନ୍ତ୍ରଜସ୍ୟ ଚ
ଦ୍ୱନ୍ଦ୍ୱସ୍ୟୈକୋନବିଂଶଶ୍ଚ ସ୍ତ୍ରିୟାଃ ପଞ୍ଚଦଶଃ ସ୍ମୃତଃ । ୪୫ ।

ତତ୍ତନ୍ମାସେଷୁ ସୂର୍ଯ୍ୟସ୍ୟ ଷଡ଼ଶୀତିମୁଖାନ୍ୟତ୍
ଷଡ଼ଶୀତ୍ୟାଖ୍ୟୟା ପ୍ରୋକ୍ତା ଦ୍ୱ୍ୟାତ୍ମକକ୍ଷେତ୍ରସଂକ୍ରମାଃ । ୪୬ ।

ଓଜପାଦାଦଚରୟୋଃ ସଂକ୍ରମୌ ବିଷୁବାଭିଧୌ
ଯୁଗ୍ମାଦଚରୟୋର୍ଯାମ୍ୟସୌମ୍ୟାୟନତୟୋଦିତୌ । ୪୭ ।

ଚରଦ୍ୱ୍ୟାତ୍ମକୟୋର୍ମଧ୍ୟେ ସ୍ଥିରରାଶିଚତୁଷ୍ଟୟମ୍
ଭାନୋର୍ବିଷ୍ଣୁପଦୀସଂଜ୍ଞାସ୍ତତ୍ପ୍ରବେଶାଃ ପ୍ରକୀର୍ତ୍ତିତାଃ । ୪୮ ।

ସୂର୍ଯ୍ୟ ସିଦ୍ଧାନ୍ତରେ ଅଛି—ତୁଲାର ଆରମ୍ଭରୁ ୮୬ ଦିନରେ ଷଡ଼ଶୀତି ମୁଖ ନାମକ ଦିନ ହୁଏ । ଏହି ଷଡ଼ଶୀତିମୁଖ ବର୍ଷରେ ଚାରିଥର ହୁଏ ଏବଂ ଏଗୁଡ଼ିକ ରବି ଦ୍ୱ୍ୟାତ୍ମକ ରାଶିରେ ଥିଲାବେଳେ ହିଁ ହୋଇଥାଏ ।

ଧନୁରାଶିର ୨୭ ଅଂଶ, ମୀନର ୨୩ ଅଂଶ, ମିଥୁନର ୧୯ ଅଂଶ ଓ କନ୍ୟାର ୧୫ ଅଂଶରେ ସେହି ସେହି ମାସରେ ସୂର୍ଯ୍ୟ ଯାଉଥିବାରୁ (ରବି ଆସୁଥିବାରୁ) ଏବଂ ଏଗୁଡ଼ିକ ୮୬ ଅଂଶ ପରେ ପରେ ପଡ଼ୁଥିବାରୁ ଏଗୁଡ଼ିକୁ (ଏହି ସଂକ୍ରାନ୍ତି ଗୁଡ଼ିକୁ) ଷଡ଼ଶୀତି ମୁଖ କହନ୍ତି । ଏଗୁଡ଼ିକ ଦ୍ୱ୍ୟାତ୍ମକ ରାଶିରେ ହିଁ ହୋଇଥାଏ ।

ବିଷମ ପଦରେ ଥିବା ଦୁଇଟି ଚର ରାଶି (ମେଷ ଓ ତୁଳା) ସଂକ୍ରାନ୍ତିକୁ ବିଷୁବ ସଂକ୍ରାନ୍ତି କୁହାଯାଏ । ସମପଦରେ ଥିବା ଦୁଇଟି ଚରରାଶି (କର୍କଟ ଓ ମକର) ସଂକ୍ରାନ୍ତିକୁ ଯଥାକ୍ରମେ ଦକ୍ଷିଣ ଓ ଉତ୍ତର ଅୟନ ସଂକ୍ରାନ୍ତି କୁହାଯାଏ । ଚର ଓ ଦ୍ୱ୍ୟାତ୍ମକ ରାଶି ମଧ୍ୟରେ ଯେଉଁ ଚାରୋଟି ରାଶି (ବୃଶ୍ଚିକ, କୁମ୍ଭ, ବୃଷ ଓ ସିଂହ) ରହିଲେ ସେଥିରେ ରବି ପ୍ରବେଶ କରିବା ଦ୍ୱାରା ଯେଉଁ ଚାରୋଟି ସଂକ୍ରାନ୍ତି ହୁଏ ତାହାକୁ (ସେଗୁଡ଼ିକୁ) ବିଷ୍ଣୁପଦୀ ସଂକ୍ରାନ୍ତି କହନ୍ତି ।

ପୂର୍ବୋକ୍ତକ୍ରମସଂସିଦ୍ଧା ରବିସଂକ୍ରାନ୍ତି ସମ୍ଭବାଃ
ପୁଣ୍ୟନାଡ୍ୟସ୍ତ୍ରୟସ୍ତ୍ରିଂଶତ୍ ସ୍ୱମଧ୍ୟସ୍ଥାର୍କସଂକ୍ରମାଃ । ୪୯ ।

ଗ୍ରାହ୍ୟା ଦଶସୁ ସଂକ୍ରାନ୍ତିଷ୍ୱୟନେ ଦକ୍ଷିଣେ ତୁ ତାଃ
ଅନ୍ତସ୍ଥସଂକ୍ରମାଃ ସୌମ୍ୟାୟନେ ତ୍ୱାଦିସ୍ଥସଂକ୍ରମାଃ । ୫୦ ।

ଅତି ପୁଣ୍ୟତମାଃ ପ୍ରୋକ୍ତାଃ ସଂକ୍ରମାସନ୍ନନାଡ଼ିକାଃ
ଚଳନାସନ୍ନତା ଯତ୍ର ଦିବାସ୍ନାନାଦିକଂ ତଦା । ୫୧ ।

ତନ୍ନିଶାର୍ଦ୍ଧାଦଧଶ୍ଚୋର୍ଦ୍ଧ୍ୱଂ ସଂକ୍ରମେ ପ୍ରାକ୍ପରଂ ତତଃ
ଆସନ୍ନଦ୍ୟୁଦଳଂ ପୁଣ୍ୟଂ ନିଶୀଥେ ଚେତ୍ତଦା ତଥୋଃ । ୫୨ ।

ସଂକ୍ରାନ୍ତିକାଳନିଷ୍ଟାୟା ଯଦ୍ଦିନେ ମହତୀ ସ୍ଥିତିଃ
ତତ୍ର କାର୍ଯ୍ୟାଃ କ୍ରିୟା ଏଷ ବିଶ୍ଚେବ ହ୍ୟୟନାଦୃତେ । ୫୩ ।

ଶର୍ବରୀ ଯାମ୍ୟାୟନେ ପୂର୍ବଦିନସ୍ୟାନ୍ତ୍ୟଦଳଂ ମତମ୍
ସୌମ୍ୟାୟନେ ପରଦିନସ୍ୟାଦିମଂ ପୁଣ୍ୟଦଂ ଦଳମ୍ । ୫୪ ।

ଅହଃସଂକ୍ରମଣେ ପୁଣ୍ୟମହଃ କୃତ୍ସ୍ନଂ ପ୍ରକୀର୍ତ୍ତିତମ୍
ସ୍ମାର୍ତ୍ତୈସ୍ତଥାପି ସଂକ୍ରାନ୍ତେ ରାସତ୍ତିର୍ବହୁ ମନ୍ୟତେ । ୫୫ ।

ଉକ୍ତୋ ବିଧେରୟଂ କାଳୋ ନିଷେଧେ ତ୍ୱାନିଶାଦିନଃ
ପୂର୍ବାସ୍ତ୍ରିଂଶତ୍ ପରାସ୍ତ୍ରିଂଶଦ୍‌ଗ୍ରାହ୍ୟାଃ ପର୍ବାକ୍ଷନାଡ଼ିକାଃ । ୫୬ ।

ସଂକ୍ରାନ୍ତିର ପୁଣ୍ୟ କାଳ—ଗୋଟିଏ ରାଶିର ଶେଷ ବିନ୍ଦୁ ଓ ତତ୍ପର ରାଶିର ଆଦ୍ୟ ବିନ୍ଦୁ । ସେହି ବିନ୍ଦୁ ରବିର ବିମ୍ବ ପରିଧି ସ୍ପର୍ଶ କଲେ ସଂକ୍ରମଣ ବା ସଂକ୍ରାନ୍ତି ଆରମ୍ଭ ହୋଇ-ଯାଏ । ରବିର ପୁଣି ଅନ୍ୟ ପ୍ରାନ୍ତ ସେହି ବିନ୍ଦୁରେ ଆସି ପହଞ୍ଚିଲେ ପୂର୍ଣ୍ଣ ରବି ସେହି ସଂକ୍ରମଣ ବିନ୍ଦୁକୁ ପାର କରିଥାଏ । ଏତିକ ହେବାପାଇଁ ୩୩ଦଣ୍ଡ ସମୟ ଲାଗେ । ଏଣୁ ଏହି ୩୩ଦଣ୍ଡ ହିଁ ସଂକ୍ରାନ୍ତିର ପୁଣ୍ୟକାଳ । ଦୁଇ ଅୟନ ସଂକ୍ରାନ୍ତି ଛାଡ଼ି ବାକି ୧୦ଟି ଯାକ ସଂକ୍ରାନ୍ତିରେ ପ୍ରାରମ୍ଭରୁ ଦଣ୍ଡ ୩୩ ହିଁ ପୁଣ୍ୟ କାଳ, ଦକ୍ଷିଣାୟନ ସଂକ୍ରାନ୍ତିର ପ୍ରଥମ ଦ° ୧୬।୩୦ ପୁଣ୍ୟକାଳ ଏବଂ ଉତ୍ତରାୟଣ ସଂକ୍ରାନ୍ତିର ପ୍ରଥମ ଦ ୧୬।୩୦ ପରେ ଦ ୩୩ ପର୍ଯ୍ୟନ୍ତ ପୁଣ୍ୟ କାଳ । ଏହା ଅତି ପୁଣ୍ୟ ଫଳଦାୟକ ଅଟେ । ଏ ଗୁଡ଼ିକ ଋଷିମାନଙ୍କର ସଂଗୃହ ସମୟ । ଏହି ପୁଣ୍ୟ ସମୟ ଦିବା ଭାଗରେ ପଡ଼ିଲେ ସ୍ନାନଦାନାଦି କରିବାକୁ ହେବ । ରାତ୍ରିର ପୂର୍ବାର୍ଦ୍ଧରେ ସଂକ୍ରାନ୍ତି ହେଲେ ତହିଁ ପୂର୍ବଦିବସର ଶେଷାର୍ଦ୍ଧ ଏବଂ ରାତ୍ରିର ଶେଷାର୍ଦ୍ଧରେ ସଂକ୍ରାନ୍ତି ହେଲେ ତତ୍ପର ଦିବସର ପୂର୍ବାର୍ଦ୍ଧ ପୁଣ୍ୟ କାଳ । ରାତ୍ର୍ୟର୍ଦ୍ଧରେ ସଂକ୍ରାନ୍ତି ପଡ଼ିଲେ ଯେଉଁ ତିଥିରେ ସଂକ୍ରାନ୍ତି

ହେଲ ତାହାର ଅଧିକଭାଗ ଯେଉଁଦିନ ରହୁଛି, ସେହି ତିଥିରେ ସେହି ସମସ୍ତ ସମୟ ପୁଣ୍ୟକାଳ ହୁଏ। ଏଣୁ ସେତେବେଳେ ପୁଣ୍ୟକ୍ରିୟା ଆଦି କରିବ। ଅୟନ ସଂକ୍ରମଣରେ ଏପରି ବିଚାର କରାଯିବ ନାହିଁ।

ଯାମ୍ୟାୟନ ବା କର୍କଟ ସଂକ୍ରାନ୍ତି ରାତ୍ରିରେ ହେଲେ, ପୂର୍ବଦିନର ଶେଷାର୍ଦ୍ଧ ପୁଣ୍ୟ କାଳ ଏବଂ ଉତ୍ତରାୟଣ ବା ମକର ସଂକ୍ରାନ୍ତି ରାତ୍ରିରେ ହେଲେ ଉକ୍ତ ରାତ୍ରି ପରେ ଯେଉଁଦିନ ହେବ ତାହାର ପୂର୍ବାର୍ଦ୍ଧ ପୁଣ୍ୟ କାଳ ହେବ। ଏହା ସ୍ମାର୍ତ୍ତମାନଙ୍କର ମତ ହେଲେ ମଧ୍ୟ ସଂକ୍ରମଣର ନିକଟବର୍ତ୍ତୀ ସମୟ ନିଶ୍ଚୟ ବହୁ ପୁଣ୍ୟଦାୟକ।

ସଂକ୍ରାନ୍ତି କାଳରେ ବିଧେୟ ସ୍ନାନଦାନାଦି କାର୍ଯ୍ୟ ଆଗରୁ କୁହାଯାଇଅଛି। ସଂକ୍ରାନ୍ତି ମଧ୍ୟ ଗୋଟିଏ ପର୍ବ ଦିନ। ଏଣୁ ଆମିଷ ଭୋଜନ, ସଂକ୍ରାନ୍ତିର ଦ ୩୦ ପୂର୍ବରୁ ଓ ପରେ (ଦ ୩୦ ଯାଏ) ତ୍ୟାଗ କରିବାକୁ ହେବ।

> ମାସାନ୍ତାଖ୍ୟନିରଂଶାଖ୍ୟୌ ମାସସ୍ୟାନ୍ତ୍ୟାଦିମୌ ଲବୌ
> ଯାତ୍ରୋଦ୍‌ବାହାଦିକାର୍ଯ୍ୟେଷୁ ତ୍ୟାଜ୍ୟୌ କଲ୍ୟାଣମିଚ୍ଛୁଭିଃ ।୫୭।
>
> ବହ୍ମାନ୍ତବର୍ତ୍ତିନଃ ପୁଂସଃ ସଂକ୍ରାନ୍ତିସମୟୋ ନୃଭିଃ
> ଜ୍ଞାତୁଂ ସହସ୍ରଭାଗଦ୍ୱାଦିବଗନ୍ତୁଂ ନ ଶକ୍ୟତେ ।୫୮।

ମାସାନ୍ତ ଓ ନିରଂଶ ଦିବସ—କୌଣସି ରାଶିର ୩୦ ତମ ଅଂଶ ମାସାନ୍ତ ନାମରେ ଏବଂ ପ୍ରଥମ ଅଂଶ ନିରଂଶ ନାମରେ କଥିତ ହୁଏ। ମାତ୍ର ଏ ଦୁଇ ସ୍ଥାନରେ ରବି ଥିବାବେଳେ ମାସାନ୍ତ ଓ ନିରଂଶ କାଳ ହୁଏ। ମଙ୍ଗଳକାମୀ ଲୋକେ ଏହି ଦୁଇ ଦିନରେ ଯାତ୍ରା ଓ ବିବାହ ଆଦି ଶୁଭ କାର୍ଯ୍ୟ କରିବା ଉଚିତ ନୁହେ। ଏ ଦୁଇଟି ଦିନ ଶୁଭ କର୍ମ ନିମନ୍ତେ ବର୍ଜ୍ୟ ଅଟନ୍ତି। କଲ୍ୟାଣ ଇଚ୍ଛା କରୁ ନ ଥିବା ଲୋକେ ଏ ଦିନମାନଙ୍କରେ ଶୁଭ କାର୍ଯ୍ୟ କରିପାରନ୍ତି।

ସୂର୍ଯ୍ୟ ବିମ୍ବ କେନ୍ଦ୍ରରେ ଥିବା ସଂକ୍ରାନ୍ତି ପୁରୁଷର ସଂକ୍ରମଣ କାଳ (ସୂର୍ଯ୍ୟ କେନ୍ଦ୍ର ବିନ୍ଦୁ କେତେ ସମୟରେ ବା କେଉଁ ସମୟରେ ରାଶିର ଆରମ୍ଭ ବିନ୍ଦୁକୁ ଅତିକ୍ରମ କଲା) ଗୋଟିଏ ତ୍ରୁଟିର ହଜାରେ ଭାଗରୁ ଭାଗେ ହୋଇପାରେ। ଏଣୁ ତାହା ଜାଣିବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେ।

> ସୌରେ—ଭଚକ୍ରନାଭୌ ବିଷୁବଦ୍ ଦ୍ୱିତୟଂ ସମସୂତ୍ରଗମ୍
> ଅୟନଦ୍ୱିତୟଂ ଚୈବ ଚତସ୍ରଃ ପରମାସ୍ତୁ ତାଃ । ଇତ ।୫୯।
>
> ସୌମ୍ୟାୟନାନ୍ତାସୟୁତୈଃ ଶିଶିରାଦ୍ୟୃତବସ୍ତ୍ରୟଃ
> ତଥୈବ ଯାମ୍ୟାୟନତଃ ପ୍ରାବୃଡ଼ାଦ୍ୟାସ୍ତ୍ରୟୋ ମତାଃ ।୬୦।

ଉଦଯର ନାଭରେ ଅର୍ଥାତ୍ ମେଷାଦରୁ ୯୦° । ୯°° ଅଂଶ ଦୂରରେ ଥିବାରୁ ଦୁଇ ବିଷୁବ ସଂକ୍ରାନ୍ତି ଓ ଦୁଇ ଅୟନ ସଂକ୍ରାନ୍ତି ଏପରି ଚାରୋଟି ସଂକ୍ରାନ୍ତି ଶ୍ରେଷ୍ଠ ଅଟନ୍ତି । ସାୟନ ମେଷାଦି ଓ ତୁଳାଦି ଯେପରି ପୂର୍ବାପର ସୂତ୍ରଗତ ଏବଂ ମେରୁ (ଉଭୟ ଧ୍ରୁବ) ଠାରୁ ୯୦°ରେ ବର୍ତ୍ତମାନ, ଠିକ୍ ସେହିପରି ସାୟନ କର୍କଟାଦି ଓ ମକରାଦି ମଧ୍ୟ ଧ୍ରୁବଠାରୁ (ଉଭୟ ଧ୍ରୁବ) ସମଦୂରବର୍ତ୍ତୀ ଓ ଏକ ସୂତ୍ରଗତ ଅଟନ୍ତି । ଏଣୁ ଏ ଦୁହିଁଙ୍କର ମହାତ୍ମ୍ୟ ମଧ୍ୟ ସମାନ ଭାବରେ ଗୃହୀତ ହୋଇଅଛି । ଏହା ସୂର୍ଯ୍ୟ ସିଦ୍ଧାନ୍ତର ବଚନ ।

ସାୟନ ଉତ୍ତର ଅୟନ ଠାରୁ ଦୁଇ ଦୁଇ ମାସରେ ଅର୍ଥାତ୍ ସାୟନ ମକର ସଂକ୍ରାନ୍ତିଠାରୁ ଦୁଇ ଦୁଇ ସୌର ମାସରେ ଶୀତ ଆଦି ଋତୁ ହୁଏ । ଛଅ ଋତୁ ଛ' ମାସ । ପୁଣି ସାୟନ କର୍କଟାଦିରୁ ଦୁଇ ଦୁଇ ସୌର ମାସରେ ବର୍ଷାଦି ଛଅ ଋତୁ ହୁଅନ୍ତି । ଏଠାରେ ମଧ୍ୟ ଛଅ ଋତୁ ଛଅ ମାସ ।

**ଅଥ ପଞ୍ଚବିଧାବ୍ଦାନାଂ ରବିମଧ୍ୟମସାବନୈଃ**
**ଦିନୈର୍ମାନାନି କଥ୍ୟନ୍ତେ ମଧ୍ୟଭୁକ୍ତ୍ୟନୁସାରତଃ ।୭୧।**

**ଦ୍ୱ୍ୟକ୍ଷିନାଡ୍ୟଧିକାବ୍ଧ୍ୟର୍ଥରାମା ଚାନ୍ଦ୍ରାବ୍ଦବାସରାଃ**
**ସୈକନାଡ୍ୟଂକବାଣାଗ୍ନିସଂଖ୍ୟା ନାକ୍ଷତ୍ରବର୍ଷଜାଃ ।୭୨।**

**ସାବନାବ୍ଦସ୍ୟ ତେ ଷଷ୍ଟି ସମନ୍ୱିତ ଶତତ୍ରୟମ୍**
**ସପଞ୍ଚଦଣ୍ଡରୂପାଙ୍ଗ ବହ୍ନ୍ୟୟୋ ଜୈବବର୍ଷଜାଃ ।୭୩।**

**ସୌରାବ୍ଦବାସରାଃ ପଞ୍ଚ ଷଷ୍ଟ୍ୟୁତ୍ତରଶତତ୍ରୟମ୍**
**ତିଥିଭିଃ ଖାଗ୍ନିଭି ର୍ଣ୍ଣାଡ଼ୀଭିଃ ସିଦ୍ଧୈର୍ଦ୍ଦଣ୍ଡାଦିଭିର୍ଯୁତମ୍ ।୭୪।**

**ଋକ୍ଷେଶଭଗଣଂ କେଚଦାର୍କ୍ଷଂ ମାସଂ ପ୍ରଚକ୍ଷତେ**
**ଅଷ୍ଟଦଣ୍ଡୋନନାଗାକ୍ଷିଗୁଣାସ୍ତଦ୍ବର୍ଷବାସରାଃ ।୭୫।**

**ମନୂନାଂ ରାଜ୍ୟକାଳୋଽବ ମାନବଂ ମାନମୁଚ୍ୟତେ**
**ନ ପୃଥଗ୍‌ଦିନମାସାଦିକମୟମସ୍ତବ ସମ୍ମତଃ ।୭୬।**

ପାଞ୍ଚ ପ୍ରକାର ବର୍ଷର ସାବନ ଦିନମାନ ସଂଖ୍ୟା କୁହାଯାଉଅଛି । ଏହା ପୁଣି ରବିର ମଧ୍ୟମ ଗତି ଅନୁସାରେ ଗଣନା କରାଯାଇଅଛି । ଯଥା—

| | | | | |
|---|---|---|---|---|
| ଚାନ୍ଦ୍ର | ବର୍ଷର | ସାବନ ଦିନ | ସଂଖ୍ୟା | ୩୫୪।୨୨ |
| ନାକ୍ଷତ୍ର | ,, | ,, | ,, | ୩୨୯। ୧ |
| ସାବନ | ,, | ,, | ,, | ୩୬୦। ୦ |

ବାର୍ହସ୍ପତ୍ୟ ବର୍ଷର ସାବନ ଦିନ ସଂଖ୍ୟା ୩୬୧।୫
ସୌର " " " ୩୬୫।୧୫।୩୧।୩୧।୨୪

ଚନ୍ଦ୍ର ଭଗଣକୁ କେହି କେହି ନାକ୍ଷତ୍ର ମାସ ବୋଲି ମଧ୍ୟ କହିଥାନ୍ତି । ତାହାହେଲେ ନାକ୍ଷତ୍ର ବର୍ଷର ସାବନ ଦିନ ସଂଖ୍ୟା ହେବ—୩୨୭।୫୨ ।

ମନୁ ଆଦିର ମାନ—ସ୍ୱାୟମ୍ଭୁବ ଆଦି ମନୁମାନେ ଯେତେ କାଳଧରି ରାଜତ୍ୱ କରୁଥିଲେ ସେହି କାଳକୁ ହିଁ ମନୁ କୁହାଯାଉଅଛି । ଏଥିରେ ଅଲଗା ଦିନ ମାସ ଆଦିର ହିସାବ ନାହିଁ ।

ଚାନ୍ଦ୍ରୋ ମାସଃ ପିତୃଦିନଂ ଯତ୍ତୈଃ ଖାଙ୍ଗଗୁଣୈଃସମା
ସାବନୈସ୍ତତ୍ ପ୍ରମାଣଂ ତଦ୍ଭୂପାଗ୍ନିରସଦିଗ୍ ଦିନୈଃ ।୭୭।

ଦୈବଂ ମାନଂ ଯଦେବୈତଦାସୁରଂ ପରିକୀର୍ତ୍ତିତମ୍
ସୌରାବ୍ଦସ୍ତଦହୋରାତ୍ରୋ ଦିନରାତ୍ରିବିପର୍ଯ୍ୟୟାତ୍ ।୭୮।

ସଷଷ୍ଟିତ୍ରିଂଶତାହୋଭି ସ୍ତଦବ୍ଦଃ ସ ତୁ ସାବନୈଃ
ସମ୍ମିତଃ ସାଙ୍କଦସ୍ରାଗ୍ନିଗୋଶଙ୍କାଗ୍ନିକୁଭି ର୍ଦିନୈଃ ।୭୯।

ସୌରବର୍ଷୈ ରଷ୍ଟଦିଗୁଣୈଃ କୃତଦନ୍ତଚନ୍ଦ୍ରବହ୍ନିଭିଃ
ସମ୍ମିତଂ ବ୍ରହ୍ମଣୋ ବର୍ଷଂ ପୁରୋକ୍ତାସ୍ତଦିନାଦୟଃ ।୭୦।

ଗୋଟିଏ ଚାନ୍ଦ୍ରମାସକୁ ହିଁ ପିତୃମାନଙ୍କର ଅହୋରାତ୍ର କହନ୍ତି । ଏହିପରି ୩୬୦ ପିତୃଦିନରେ ଗୋଟିଏ ପିତୃ ବର୍ଷ ହୁଏ । ଏକ ପିତୃବର୍ଷରେ ୧୦୬୩୧ ସାବନ ଦିନ ରହେ ।

ଦେବମାନ ଯାହା ଅସୁରମାନ ମଧ୍ୟ ତାହା । ଦୈବ ଓ ଆସୁର ଅହୋରାତ୍ର ସମାନ ଓ ଅପରବର୍ତ୍ତୀମାତ୍ର । ଅବଶ୍ୟ ଗୋଲସ୍ଥିତିରୁ ଜଣାଯାଏ ଯେ, ଯେତେବେଳେ ଦେବତାମାନଙ୍କର ଦିନ, ତେତେବେଳେ ଅସୁରମାନଙ୍କର ରାତି । ଏହିପରି ୩୬୦ ଦିନରେ (ସୌର) ଦିବ୍ୟ ବର୍ଷ ବା ଆସୁର ବର୍ଷ ହୁଏ; କଳ୍ପ ଏହି ଦିବ୍ୟ ବା ଆସୁର ବର୍ଷରେ ୧୩୧୪୯୩୯ ସାବନ ଦିନ ଥାଏ । ବ୍ରହ୍ମାଙ୍କ ବର୍ଷ ୩୧୧୦୪୦୦୦୦୦୦୦୦୦ ସୌର ବର୍ଷରେ ହୋଇଥାଏ । ବ୍ରହ୍ମାଙ୍କ ଦିନର କଥା ଆଗରୁ କୁହାଯାଇଅଛି ।

ମନୂନାଂ ଯତ୍ ପୃଥଙ୍ମାନଂ ହରିବଂଶେଽସ୍ତି ତଦ୍ଭବେଃ
ଗତ୍ୟାପ୍ୟଶକ୍ୟମାନେଭ୍ୟଂ ଲକ୍ଷାମ୍ୟାର୍ଷୋକ୍ତ ଗୌରବାତ୍ ।୭୧।

ଯଥା ହରିବଂଶେ—

ଦିବ୍ୟମବ୍ଦଂ ଦଶଗୁଣମହୋରାତ୍ରଂ ମନୋଃ ସ୍ମୃତମ୍
ଅହୋରାତ୍ରଂ ଦଶଗୁଣଂ ମାନବଃ ପକ୍ଷ ଉଚ୍ୟତେ ।୭୨।

ପକ୍ଷୋ ଦଶଗୁଣୋ ମାସୋ ମାସୈର୍ଦ୍ୱାଦଶଭିର୍ଗୁଣୈଃ
ଋତୁର୍ମନୂନାଂ ସଂପ୍ରୋକ୍ତଃ ପ୍ରାକ୍କୈସ୍ତତ୍ତ୍ୱାର୍ଥ ଦର୍ଶିଭିଃ । ଇତ । ୭୩ ।

କାଳବ୍ୟାପ୍ତିବିନ୍ଦୁବଧା ଶ୍ରୌତସ୍ମାର୍ତ୍ତେଷୁ କର୍ମସୁ
ତତ୍‌ଶୁଦ୍ଧିଶ୍ଚ ବିବାହାଦୌ ନୋକ୍ତା ସ୍ମୃତ୍ୟୁକ୍ତିଭବତଃ ।୭୪।

ହରିବଂଶରେ ମନୁର ଯେଉଁ ଅଲଗା (ଭିନ୍ନ) ପରିମାଣ ଦିଆଯାଇଅଛି ତାହା ସୂର୍ଯ୍ୟର ଗତିକୁ ଧରି ଆଣିହେବ ନାହିଁ । ଋଷିମାନଙ୍କ ବଚନ ପ୍ରତି ମୋର ସମ୍ମାନ ଅଛି । ସେଥିପାଇଁ ସେହିକଥା ମଧ୍ୟ ଏଠାରେ ଉଲ୍ଲେଖ କରୁଅଛି ।

ବ୍ରହ୍ମ ସାକ୍ଷାତ୍କାର କରିଥିବା ମୁନିମାନେ କହିଛନ୍ତି—

୧୦ ଦିବ୍ୟ ବର୍ଷରେ ମନୁର ଗୋଟିଏ ଅହୋରାତ୍ର ହୁଏ ।
୧୦ ମାନବ ଅହୋରାତ୍ରରେ ମନୁର ଗୋଟିଏ ପକ୍ଷ ହୁଏ ।
୧୦ ,, ପକ୍ଷରେ ,, ,, ମାସ ହୁଏ ।
୧୨ ,, ମାସରେ ,, ,, ଋତୁ ହୁଏ ।

ବୈଦିକ ଓ ସ୍ମାର୍ତ୍ତ କର୍ମରେ ନାନାରକମର କାଳ ବିଭାଗ ଅଛି । ସ୍ମୃତିରେ ସେହି କାଳର ବ୍ୟବସ୍ଥା ରହିଥିବାରୁ ବିବାହାଦିରେ କାଳଶୁଦ୍ଧି ବ୍ୟବସ୍ଥା ଦିଆଯାଉନାହିଁ ।

ଚନ୍ଦ୍ରଗତ୍ୟନୁସାରେଣ ଜଳୋଲ୍ଲାସାନ୍ମହାମ୍ବୁଧେଃ
ଗଙ୍ଗାଦ୍ୟାବ୍‌ବୃଦ୍ଧିର୍ନିୟମଃ କ୍ୱାପତ୍‌କେତ୍ତ୍ୱାଦଲେଖି ନୋ । ୭୫ ।

ଚନ୍ଦ୍ରର ଗତି ଅନୁସାରୀ ମହାସାଗରଗୁଡ଼ିକର ପାଣି ଉପରକୁ ଉଠିଆସେ । ଏହି ଦୃଷ୍ଟିରୁ ଗଙ୍ଗା ଆଦି ନଦୀରେ ମଧ୍ୟ ପାଣି ବଢ଼ୁଥିବ, ଏପରି ବିଚାର ସବୁବେଳେ ଠିକ୍ ନୁହେ । ଏଣୁ ସେ ବିଷୟରେ ଏଠାରେ କିଛି ଲେଖାଯାଉ ନାହିଁ ।

"ଭସ୍ୱଦ୍‌ସମ୍ମୁଖଭାଗଦଳେ ଦ୍ୟୁତଭୃତୋଽନ୍ୟଦାତ୍ମନଶ୍ଛାୟୟା
ବ୍ୟାପ୍ତେ ସୈନ୍ଦବଗୋଳକସ୍ୟ ସତତସ୍ମାସମ୍ମୁଖୈକାର୍ଦ୍ଧତଃ
ସୂର୍ଯ୍ୟାଂଶଂ ତ୍ୟଜତୋଽୟୁତୋ ଧବଳତାଂ ବୃଦ୍ଧିକ୍ଷୟାବୀକ୍ଷତେ
ଲୋକସ୍ତଦ୍‌ପିତରଃ କ୍ୱ ସମ୍ମୁଖଦଳେ ମାସାର୍କପଣ୍ଣାଦ୍ ଭ୍ରମମ୍ ।୭୬।

ଚନ୍ଦ୍ରର ଯେଉଁ ଅଧକ ସୂର୍ଯ୍ୟ ଆଡ଼କୁ ଥାଏ, ସେଥିରେ ସୂର୍ଯ୍ୟ କିରଣ ପଡ଼ି ଆଲୋକିତ ହୋଇଥାଏ । ଯେଉଁ ଅଧକ ସୂର୍ଯ୍ୟର ବିପରୀତ ଦିଗରେ ଥାଏ ତାହା ସୂର୍ଯ୍ୟର ଆଲୋକରହିତ- ସେହି ଚନ୍ଦ୍ରରୁ ଉତ୍ପଥିତ ଛାୟାଦ୍ୱାରା ଆବୃତ ରହେ । ଏହି ଯେଉଁ ଅଧକ ଛାୟାବୃତ ରହିଲା

ତାହାର ସମ୍ମୁଖରେ ଥିବା ପୃଥିବୀର ଲୋକେ ବରାବର ଦେଖନ୍ତି ଯେ ଚନ୍ଦ୍ର ସୂର୍ଯ୍ୟଆଡ଼, ଘୁଞ୍ଚିଯାଉଥିବାବେଳେ କଳା ବୃଦ୍ଧି ହେଉଥାଏ । ଅନ୍ୟ ପାଖରେ କଳା ହ୍ରାସ ହେଉଥାଏ । ମାତ୍ର ଏହି ଅର୍ଦ୍ଧରେ ଥିବା (ଲୋକଙ୍କର) ପିତୃଲୋକେ ଚନ୍ଦ୍ର ମଣ୍ଡଳରେ ରହି (ସେମାନଙ୍କ ସମ୍ମୁଖରେ) ମାସେ ଯାଏ ରବିଙ୍କର ପଶ୍ଚାଦ୍ ଭ୍ରମଣ ଦେଖି ପାରୁଥିବା ସମ୍ଭବ ହେଉଛି କି ?

ନବ୍ୟାଭ୍ରଭ୍ରମରପ୍ରଭଙ୍କରସୁତାପାଥଃପ୍ରଫୁଲ୍ଲୋତ୍ପଳ—
ପ୍ରାଲେୟାଂଶୁକଳଙ୍କକଜ୍ଜଳମହାନୀଳାଶ୍ମନୀଲୋଜ୍ଜ୍ୱଳଃ ।
ଶଂପାଚଂପକନୀପକୁଙ୍କୁମତମୀଗ୍ୱମୀକରାଭାମ୍ବରଃ
କୃଷ୍ଣଃ ସଦ୍‌ଭଶର୍କରାଧ୍ୱଜକନତାଂ ମୁଷ୍ଣାତୁ ତୃଷ୍ଣାଂ ମମ । ୭୭ ।

ନୂଆ କଳାହାଣ୍ଡିଆ ମେଘ, ଭ୍ରମର, ଯମୁନା ଜଳ, ଉତ୍ଫୁଲ୍ଲ ନୀଳ କଇଁ, ଚନ୍ଦ୍ରର କୃଷ୍ଣ-କଳଙ୍କ, କଜ୍ଜଳ ରାତ୍ର ଓ ମହାନୀଳମଣିପରି ଚକ୍‌ଚକ୍-କଳା ହୋଇ ଥିଲେହେଁ ବକୁଳ, ଚଂପାଫୁଲ, କଦମ୍ବ ଫୁଲ, କୁଙ୍କୁମ, ହଳଦୀ ଓ ସୁନାର ମିଶ୍ରିତ ବର୍ଣ୍ଣପରି ଗାଢ଼ ହଳଦିଆ ଲୁଗା ଯେ ପରିଧାନ କରନ୍ତି, ସେହି କୃଷ୍ଣ ଶ୍ରୀ ଜଗନ୍ନାଥ ସଂସାର ରୂପକ କଙ୍କରିଳ ପଥରେ ଜନ୍ମିଥିବା ମୋର ତୃଷ୍ଣାକୁ ଖଣ୍ଡନ କରନ୍ତୁ ।

ଇତ୍ୟୁତ୍କଳୋଜ୍ଜ୍ୱଳନୃପାଳକୁଳପ୍ରସୂତ—
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତୈକଷିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧ
ଦ୍ୱାତ୍ରିଂଶକଃ ପ୍ରଥିତକାଳ ଇତଃ ପ୍ରକାଶଃ । ୭୮ ।

ଇତି ଶ୍ରୀ ଚନ୍ଦ୍ରଶେଖର ସିଂହ କୃତୌ ସିଦ୍ଧାନ୍ତ ଦର୍ପଣେ କାଳାଧିକାରେ ସମୃଦ୍ଧିଵାଦ ବର୍ଣ୍ଣନୋ ନାମ ଦ୍ୱାତ୍ରିଂଶତ୍ତମଃ ପ୍ରକାଶଃ ।

ଏଠାରେ ୨୨ଶ ପ୍ରକାଶ ଶେଷ ହେଲା । ଏଥିରେ କାଳର (ସମୟ) ଆଲୋଚନା କରାଯାଇଅଛି ।

## ତ୍ରୟୋବିଂଶଃ ପ୍ରକାଶ

### ପୁରୁଷୋତ୍ତମ ସ୍ତବ ବର୍ଣ୍ଣନମ୍

ଯା ବାଗ୍ବ୍ରହ୍ମଶର୍ବୈରୂତଗୁଣବତତେଃ ଶ୍ରୀପତେର୍ବର୍ଣ୍ଣନାଢ୍ୟା
ଯା ଯସ୍ୟାଦ୍ରଶ୍ମାଶୁଭଘ୍ନୀ ସତତମପି ଯୁତା ଗଦ୍ୟବଦ୍ଧପଦ୍ୟୈଃ ।
ଯା ତଦ୍ରକ୍ତାସୁପ୍ଲୁତାପି ଚ ସୁଭଗପଦୈସ୍ତ୍ୟଜ୍ୟତେ ସଦ୍ଭିରେଷା
ତସ୍ମାତ୍କୃଷ୍ଣାଚଳେଶାମଲଗୁଣଜଲଧେର୍ବର୍ଣ୍ଣନୀୟୋଽଦବଦ୍ଭିଃ । ୧ ।

ଲକ୍ଷ୍ମୀପତି ଶ୍ରୀ ଜଗନ୍ନାଥ, ସରସ୍ୱତୀ ବ୍ରହ୍ମା ଓ ଶିବଙ୍କ ଦ୍ୱାରା ପୂଜିତ ଏବଂ ତାଙ୍କର ଅଶେଷ ଗୁଣ ବିଦ୍ୟମାନ । ଯେଉଁ ବାକ୍ୟାବଳୀରେ ସେହି ଜଗନ୍ନାଥଙ୍କର ବର୍ଣ୍ଣନା ଅଛି ଏବଂ ଯେଉଁ ବାକ୍ୟପୁଞ୍ଜ ପୁଣି ପ୍ରଶସ୍ତ ଗଦ୍ୟପଦ୍ୟଭରା ତାହା ବିଶ୍ୱ ସଂସାରର ଯେ କ୍ଲେଶ ନାଶ କରେ, ଏଥିରେ ସନ୍ଦେହ କରିବାର କିଛି ନାହିଁ ।

ପକ୍ଷାନ୍ତରେ ଯେଉଁ ବାକ୍ୟାବଳୀ ଲଳିତ ପଦବିନ୍ୟାସଦ୍ୱାରା ପୁଷ୍ଟ ଅଥଚ ସେଥିରେ ଭଗବାନଙ୍କ ଗୁଣ କୀର୍ତ୍ତନ କରାଯାଇ ନାହିଁ, ତାହାକୁ ସଜ୍ଜନମାନେ ଗ୍ରହଣ କରନ୍ତି ନାହିଁ ।

ଏଣୁ ବିଶୁଦ୍ଧ ଗୁଣର-ସାଗର ନୀଳାଚଳନାଥ ଶ୍ରୀ ଜଗନ୍ନାଥଙ୍କର ଅତି ଅଳ୍ପ ବର୍ଣ୍ଣନା ଏଠାରେ କରାଯାଇଅଛି, ଗୁଣର ସାଗରଙ୍କର ସବୁଗୁଣ ବର୍ଣ୍ଣିବା ଅସମ୍ଭବ ।

ଯତ୍ର କ୍ଷେତ୍ରଂ ପବିତ୍ରଂ ବିଳସତି ସିତରୁଚି୍ର୍ଯତ୍ରନୈକସ୍ୟ ଗାତ୍ରଂ
ଗୋତ୍ରା ଯତ୍ରାତମାତ୍ରାସ୍ତଦବୟବସ୍ମୃତା ଦୀପବତ୍ୟୋ ବିଚିତ୍ରାଃ ।
ସ୍ୱସ୍ଥାନସ୍ଥାଃ ପଦସ୍ଥାପିତନିଜଜନତା ଦେବତାଃ ସନ୍ତି ନିତ୍ୟା
ମର୍ତ୍ତ୍ୟାଃ ସ୍ମାର୍ତ୍ତାଃ ସ୍ମରାର୍ତ୍ତା ହରିଚରଣରତାଶ୍ଚୋତ୍କଳ ସ୍ତାତ୍କଳଘ୍ନଃ । ୨ ।

### ଉତ୍କଳ ବର୍ଣ୍ଣନା

ଯେଉଁ ଦେଶରେ ଇନ୍ଦୀବର ନେତ୍ର ଶ୍ରୀକୃଷ୍ଣଙ୍କର ଦେହ ତଥା ପବିତ୍ର କ୍ଷେତ୍ର ଅଛି; ଯେଉଁ ଦେଶର ଅବୟବ ରୂପରେ ଅନେକ ଉନ୍ନତ ପର୍ବତ ଅଛି; ଯେଉଁ ଦେଶର ଦେବ-କୁଳରେ (ମନ୍ଦିରମାନଙ୍କରେ) ଦିନ ରାତି ସର୍ବଦା ଦୀପ ଜଳୁଥାଏ; ଯେଉଁ ଦେଶର ଦେବାଦେବୀଗଣ ସ୍ୱ ସ୍ୱ ମନ୍ଦିରରେ ବିରାଜମାନ କରୁଥିଲେ ମଧ୍ୟ ଭକ୍ତମାନଙ୍କୁ ଉଚ୍ଚ ପଦରେ ଅବସ୍ଥାପିତ କରୁଅଛନ୍ତି ଏବଂ ଯେଉଁ ଦେଶର ଲୋକେ ସ୍ମାର୍ତ୍ତ କର୍ମକରି ନାମସ୍ମରଣ କରିବାରେ ସବୁବେଳେ ବ୍ୟସ୍ତ ଏବଂ ଶ୍ରୀହରିଚରଣ ସେବା ତତ୍ପର, ସେହି ଏ ଉତ୍କଳ ଦେଶ କଳିଯୁଗର ଆପଦ ବିପଦ ନାଶ କରୁ ।

**ସ୍ତବ୍ୟା ଭବ୍ୟା ଅଭବ୍ୟା ଅପି ବଚନଚୟୈର୍ନବ୍ୟନବୈଂଶ୍ଚ ଦବୈ୍ୟ-**
**ବାସ୍ତବ୍ୟା ଯତ୍ ପୃଥିବ୍ୟାମବନତବଦନୈର୍ବ୍ୟୋମ୍ନି ନବର୍ଣ୍ଣ୍ୟମାନାଃ ।**
**ବାହୁବ୍ୟୂହାଗ୍ରବଭ୍ରାଜିତବନଜଗଦାକମ୍ବୁଚକ୍ରା ଇତବୋଚେ—**
**ଯୋଡ୍ରଃ ପ୍ରୌଢ଼-ପ୍ରଭବୋ ଜୟତ ପରବୃଢ଼ଃ ସର୍ବଦେଶସ୍ୟ ଯୋଽୟଂ ।୩।**

## ଓଡ୍ର ବର୍ଣ୍ଣନା

ଯେଉଁ ଭୂମିରେ ବାସ କରୁଥିବା ଲୋକେ ଅଯୋଗ୍ୟ ହେଲେ ମଧ୍ୟ, ହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥିବା ଅବର୍ଣ୍ଣନୀୟ ବିଷ୍ଣୁ ଲୋକଙ୍କ ପରି ଦିଶନ୍ତି ଏବଂ ଏଥି ଯୋଗେ ଯେଉଁମାନଙ୍କୁ ଦେବତାମାନେ ଆକାଶରେ ଅବନତ ବଦନ ହୋଇ ଉନ୍ନତ ଓ ନୂତନ ବାକ୍ୟାବଳୀରେ ସ୍ତୁତି କରି ଯୋଗ୍ୟବୋଲି ପ୍ରମାଣିତ କରନ୍ତି, ଏ ସେହି ଓଡ୍ର ଦେଶ । ଏହାର ପ୍ରଭାବ ଅତି ପ୍ରାଚୀନ ଏବଂ ଏ ଦେଶ ଅନ୍ୟ ଦେଶମାନଙ୍କର ଅଧିପତି ଭାବରେ ସର୍ବାତିଶାୟୀ ହୋଇ ବରାବର ରହିଅଛି ।

**ନାନୋଦ୍ୟାନୋଦ୍ୟତାନୋକହବହଳଦଳଚ୍ଛାୟଶାନ୍ତାତପାର୍ତ୍ତି—**
**ର୍ନିତ୍ୟପ୍ରତ୍ୟଗ୍ରସୌଧାବଳଦଳିତକଲାନାଥଭୃତ୍ ଶୈଳକାନ୍ତିଃ ।**
**ଅଶ୍ରାନ୍ତଭ୍ରାନ୍ତବାତପ୍ରମଥିତପଥିକଶ୍ରାନ୍ତିରକ୍ଷେମଶାନ୍ତିଂ**
**କୁର୍ଯ୍ୟାତ୍ପର୍ଯ୍ୟନ୍ତଗର୍ଜଜ୍ଜଳଧିରଧିରୁଚିଃ କମ୍ବୁଭୂଃ କାପିପୂର୍ଣ୍ଣିଃ । ୪ ।**

## ପୁରୁଷୋତ୍ତମ ଓ ନୀଳାଦ୍ରି ବର୍ଣ୍ଣନା

ଅସଂଖ୍ୟ ଉଦ୍ୟାନ ଓ ତହିଁରେ ଥିବା ବୃକ୍ଷସମୂହର ଘନପତ୍ରଚ୍ଛାୟାରେ ଯେଉଁ ପୁରୀ ସୂର୍ଯ୍ୟ ଆତପଜନିତ ପୀଡ଼ାକୁ ଶାନ୍ତକରେ; ଯାହାର ନିତ୍ୟ ନୂତନ ସୌଧାବଳୀ କୈଳାସପର୍ବତର ଶୋଭାକୁ ନ୍ୟୂନକରେ; ଯାହାର ଅନବରତ ବାୟୁ ପ୍ରବାହ, ପଥିକ-ମାନଙ୍କର କ୍ଲାନ୍ତି ଅପନୋଦନ କରେ, ଯାହାର ଗୋଟିଏ ପ୍ରାନ୍ତରେ ଗର୍ଜ୍ଜୁମାନ ସମୁଦ୍ର ରହିଅଛି—ଶଙ୍ଖର ଦୀପ୍ତି ପରି ଯାହାର ଦୀପ୍ତି ଏବଂ ଯେଉଁ ପୁରୀ ଅତ୍ୟନ୍ତ ଶୋଭାଶାଳିନୀ ସେ ଆମ୍ଭମାନଙ୍କର ନିର୍ବାଣ ଶାନ୍ତି ବିଧାନ କରୁ । ଏହା (ପୁରୁଷୋତ୍ତମ) ଅନିର୍ବଚନୀୟ ।

**ଯତ୍ରାମର୍ତ୍ତ୍ୟାଃ ପରତ୍ରାକୃତସୁକୃତଜନବାସିନୋଽପ୍ୟେତ୍ତମର୍ତ୍ତ୍ୟାନ୍**
**ହ୍ରିସ୍ତା ବେତ୍ରହସ୍ତା ନନୁ ହନୁତକୃତଃ ପ୍ରେକ୍ଷ୍ୟ ସଖେଦ୍ୟଚ୍ଛବିଃ ସ୍ତୁବଃ ।**
**ଦେବା ଦେବାଧିଦେବାନନନଳିନଦୃଶଃ ସନ୍ତନାନାମ୍ବଜଃ**
**କୁର୍ଯ୍ୟାତ୍ ପର୍ଯ୍ୟାପ୍ତବୀର୍ଯ୍ୟା ଶମନଶମସିତା ହାର୍ଯ୍ୟଧୃର୍ଯ୍ୟା ପୁରୀନଃ ।୫।**

ଯେଉଁଠାରେ ଦେବତାମାନେ ପୂର୍ବ ଜନ୍ମରେ ଅକର୍ମ କରିଥିବାରୁ ଉପରେ ବେତବାଡ଼ି ଧରିଥିଲେ ହେଁ (ମନ୍ଦିରରେ) ସ୍ତୁତିପାଠରତ ମନୁଷ୍ୟମାନଙ୍କୁ ଦେଖି ସେମାନଙ୍କର

ମୈତ୍ରୀ ଇଚ୍ଛା କରନ୍ତି, ଯେଉଁଠାରେ ପୁଣି ଏହି ଦେବଲୋକେ ନାନା ରୂପରେ ବାସକରି ଦେବାଧିଦେବ ଜଗନ୍ନାଥଙ୍କର କମଳନୟନକୁ ଦୃଷ୍ଟି ରଖିଛନ୍ତି; ଯାହାର ଶକ୍ତି ଅତି ବେଶି ଏବଂ ଯେ ନୀଳଗିରିର ଭାର ବହିବାରେ ସମର୍ଥ ହୋଇ ରହିଛନ୍ତି—ସେହି ପୁରୁଷୋତ୍ତମ ପୁରୀ ଆମ୍ଭମାନଙ୍କର କଲ୍ୟାଣ ଓ ମଙ୍ଗଳ ବିଧାନ କରୁ ।

(ମନ୍ଦିରର ବେଶଧାରୀ ପୁରୁଷମାନେ ଦେବତା ଏବଂ ପୂର୍ବ ଜନ୍ମରେ ପାପକର୍ମରତ ଥିଲେ ମଧ୍ୟ ଏଠାରେ ଭଗବାନଙ୍କ ଭକ୍ତ—ତେଣୁ ଏ କ୍ଷେତ୍ରର ମହାତ୍ମ୍ୟ ଏହିପରି ବୋଲି ଗ୍ରନ୍ଥକାରଙ୍କ ମତ ।)

ଅନ୍ତର୍ବେଦୀ ବିବେଦୀକଗଦତମହିମାଧିତ୍ୟକା ନତ୍ୟକାନ୍ତା
ସ୍ଫୁଙ୍ଗାଃ ଶୃଙ୍ଗାଣି ଯସ୍ୟାମରନିକରଗୃହାଃ ପାବନୀଯଦ୍ଦନୀଶ୍ରୀଃ ।
ପ୍ରାକାରୋ ଯତ୍ପ୍ରପାତଃ ପ୍ରମଥପତିନୁତୋପତ୍ୟକାପୂର୍ଯଦୀୟା
ସ ଶ୍ରୀଶାମ୍ଭୋଦଗୌରୀ ବିତରତୁ ଜଗତାଂ ମେଚକଂ ମେଚକାଦ୍ରିଃ ।୭।

ଯେଉଁ ଅନ୍ତର୍ଯାମୀ ନାଥଙ୍କର ମହିମା ୩ଟି ଯାକ ବେଦରେ ଉଚ୍ଚ ପ୍ରଶଂସିତ, ଯାହାର ଉନ୍ନତ ଅଧିତ୍ୟକା ( ପର୍ବତର ଉଚ୍ଚଭୂମି ) ଗୁଡ଼ିକ ଅତି ରମଣୀୟ, ଯାହାର ଶୃଙ୍ଗ-ଗୁଡ଼ିକରେ ଦେବତାମାନେ ଘରକରି ରହିଅଛନ୍ତି, ଯାହାର ବନ ସମୂହର ଶୋଭା ପବିତ୍ର-କାରଣୀ, ଯାହାର ପ୍ରାଚୀର (ମେଘନାଦ ପାଚେରୀ) ଅତି ପର୍ବତ (ଯାହା ଉପରକୁ ଚଢ଼ି ହେବନାହିଁ) ରୂପରେ ବିରାଜମାନ, ଯାହାର ତଟଭୂମିକୁ ଶିବ ସର୍ବଦା ସ୍ତୁତି କରୁଅଛନ୍ତି ଏବଂ ଯାହାର ନଗରୀ ( ପୁରୀ ) ଜଗନ୍ନାଥରୂପକ ବର୍ଷୁକ ମେଘଶ୍ରୀରେ ଭାସମାନ ସେହି ନୀଳଗିରି ମୋର ସୁଖ ବିଧାନ କରନ୍ତୁ ।

ତୁଙ୍ଗପ୍ରାସାଦଶୃଙ୍ଗପ୍ରବଳପବନାନ୍ଦୋଳିତା ବୈଜୟନ୍ତୀ
ବାଞ୍ଛାକଳ୍ପଦ୍ରୁତୀର୍ଥେଶ୍ୱରଶିରସି ଚରତ୍ପଲ୍ଲବଶ୍ରୀ ଜୟନ୍ତୀ ।
ଯାମ୍ୟସ୍ୱାମ୍ୟାତତାମ୍ୟଜ୍ଜନବୃଜିନଚମୂ ମୂର୍ଜିତାଂ ତର୍ଜୟନ୍ତୀ
ପାୟାନ୍ନାୟାଭବାଧ୍ୱଶ୍ରମମିବ ଶମିନାଂ ବୀଜନୈର୍ମାଜୟନ୍ତୀ ।୭।

ପତାକା

ଜଗନ୍ନାଥଙ୍କ ଉଚ୍ଚ ମନ୍ଦିର ଚୂଳରେ ପ୍ରତି ମୁହୂର୍ତ୍ତରେ ବୈଜୟନ୍ତୀ ପତାକା ଫରଫର ହୋଇ ଉଡ଼ୁଅଛି । ସେଠାରେ କେବେହେଲେ ପବନର ଅଭାବ ନାହିଁ । ଏ ତୀର୍ଥେଶ୍ୱରର ବାଞ୍ଛା କଳ୍ପଦ୍ରୁମ - ମଥା ଉପରେ ହଲଚଲ ହେଉଥିବା ବଟପତ୍ରର ଶୋଭାକୁ ମଧ୍ୟ ଏହି ବୈଜୟନ୍ତୀ ପତାକା ପରାଜିତ କରୁଅଛି । ଯେଉଁ ପତାକା ଯମ ରାଜାଙ୍କଦ୍ୱାରା ଅତିମାତ୍ରାରେ ପୀଡ଼ିତ ହୋଇଥିବା ଲୋକଙ୍କର ପରାକ୍ରାନ୍ତ ପାପରୂପକ ସେନାବାହିନୀକୁ ଭୟ ପ୍ରଦାନ କରୁଅଛି ଏବଂ ସେ ପଙ୍ଖା ଶ୍ରାନ୍ତ ଋଷିମାନଙ୍କର ଶ୍ରମ ଅପନୋଦନ କଲାପରି ସେହି ପତାକା ଏହି ମାୟାସଂସାର ପଥରେ କ୍ଳାନ୍ତ ଆମ୍ଭମାନଙ୍କର ପଥଶ୍ରମ ଅପନୋଦନ ପୂର୍ବକ ରକ୍ଷାକରୁ ।

**ଶୌଣ୍ଡାନାଂ ଦଣ୍ଡପାଣେରପି ଚରଣଜୁଷାଂ ଦଣ୍ଡଦଃ କେତୁଦଣ୍ଡ—**
**ଶ୍ଚଣ୍ଡାଲଯେୟାର୍ଦ୍ଧ୍ବଗତ୍ୟା ଅପି କମୁ ବଦଳଚ୍ଚଣ୍ଡମାର୍ତ୍ତଣ୍ଡବମ୍ବଃ ।**
**ଚଞ୍ଚଚ୍ଚଞ୍ଚତ୍ପତାକାଶୟବଧୂତମିଷାଦ୍ଧାହ୍ବୟନ୍ନାହୃତଲୋକଃ**
**ପ୍ରାସାଦସେ୍ୟବ ଦୂରାଦପନୟତୁ ଭୟଂ ପଙ୍କଜଃ କିଂକରାଣାମ୍ ।୮।**

ପତାକାଦଣ୍ଡ—

ଯମଙ୍କର ପଦ ସେବକ ସ୍ବଭାବରେ ଅତି ପ୍ରଚଣ୍ଡ ଯମଦୂତମାନଙ୍କର ଯେ ଉଣ୍ଡଦାତା; ପତାକାର ଊର୍ଦ୍ଧ୍ୱ ଗତି ଦ୍ୱାରା ପ୍ରଖର ସୂର୍ଯ୍ୟବିମ୍ବର ଉତ୍ତାପକୁ ଯେ (ଚଢ଼ି ଦେଉଅଛି) ପରାଜିତ କରୁଅଛି; ଅତି ରମଣୀୟ ଭାବରେ ହଲା ହଲି ହାତରେ ଠାରିଲା ପରି ଯେ ଲୋକମାନଙ୍କୁ ଦୂରରୁ ଡ଼ାକୁଅଛି; ଏହି ଯେଉଁ ପତାକା ଦଣ୍ଡ ସେ ଅକଂଚନ୍ଦ୍ରକର ଭୃତ୍ୟ ଆମ୍ଭମାନଙ୍କର ପାପଜନିତ ଭୟକୁ ନାଶ କରୁ ।

**ଚକ୍ରଂ ତନ୍ନକ୍ର ଶକ୍ର ନକଚକଟୂତନୁ କ୍ଷାନ୍ତ୍ୟ-ବକ୍ରାନ୍ତଦକ୍ର—**
**କ୍ଳାନ୍ତପ୍ରାନ୍ତାତଶାନ୍ତାଜିତମହୃତମହଃ ସଂହରେଦଂହସାଂନଃ ।**
**ସଂଘଂ ସଂଘାତପାତାଦବତୁମବକଳଂ ହନ୍ତ ପାତତ୍ୟଭକ୍ତେ—**
**ଭ୍ରାଜତ୍ ପ୍ରାସାଦଶୃଙ୍ଗୋପରିପତତଦୃଶଃ ଶ୍ରୀଶତୂର୍ଯ୍ୟାଂଶରୂପମ୍ ।୯।**

ଚକ୍ର—

ମନ୍ଦିର ଉପରେ ଦେଦୀପ୍ୟମାନ ଚକ୍ରଟି ଆମ୍ଭମାନଙ୍କର ପାପ ସମୂହ ନାଶ କରୁ । ଏହି ଚକ୍ର ଲକ୍ଷ୍ମୀପତିଙ୍କର ଚତୁର୍ଥାଂ ରୂପ । ସେ କରତ ପରି କୁମ୍ଭୀରରାଜର ତୀକ୍ଷ୍ଣ ଶରୀରରେ ପଶିଯିବା ପରେ (କୁମ୍ଭୀରକୁ ହାଣି ଦେବାରେ) ମଧ୍ୟ ଅବିକୃତ ଥିଲେ । ସେ ଗଜର କ୍ଳେଶ ଅପନୋଦନ କରିବା ପରେ ଅତି ଶାନ୍ତ ଓ ଅପରାଜିତ ବୋଲି ପୂଜା ପାଇଥିଲେ । ଏବେ ସେ ନିଜକୁ ଦର୍ଶନ କରୁଥିବା ପାପୀମାନଙ୍କୁ ପ୍ରମାଦ ଓ ସଙ୍କଟରୁ ପୂର୍ଣ୍ଣଭାବରେ ରକ୍ଷା କରିବା ନିମନ୍ତେ ଚକ୍ ଚକ୍ କରୁଅଛି ଏବଂ ଆନନ୍ଦିତ ହେଉଅଛି ।

**ପର୍ଯ୍ୟନ୍ତୋତ୍କୀର୍ଣ୍ଣନାନାଭରଣରଣତାତନୂଶ୍ଚାତନୂଃ ଶାତଦାୟୀ**
**ଯୋଽନନ୍ତଃସନ୍ତାପଶାନ୍ତ୍ୟୈ ବଳୟତୁ କଳଶଃ ସତ୍ସୁଧାଧାରିଧାମା ।**
**ଯଃ ପଦ୍ମାକାନ୍ତସଦ୍ମାଭିଧବବୁଧଶିରୋଗର୍ଭଜାକାରଚକ୍ରା—**
**କ୍ରାନ୍ତଶ୍ଚୂଡ଼େବ ନଃଶ୍ରେୟସପଥପଥିକାନର୍ଥିହୃଦ୍ଭଦ୍ରକୁମ୍ଭଃ ।୧୦।**

କଳଶ—

(ଚକ୍ର ତଳକୁ ଥିବା) ପୂର୍ଣ୍ଣକୁମ୍ଭଟି ମନ୍ଦିରର କଳଶ । ତାହା ଦେଖିବାକୁ ସୁନ୍ଦର ଓ ତାହାର ଶରୀରର ଚାରିପାଖରେ ନାନାରକମର ଚିତ୍ର ରଚନା କରାଯାଇଅଛି । ସେ ଉତ୍ତମ

ଅମୃତର ଆଧାର ସ୍ଥଳ । ସେ ସାଧାରଣତଃ ସୁଖଦାୟୀ ଓ ମୋକ୍ଷ ମାର୍ଗରେ ପଥିକମାନଙ୍କର ଅନର୍ଥ ନାଶକାରୀ ଅଟେ । ଲକ୍ଷ୍ମୀକାନ୍ତ ଜଗନ୍ନାଥଙ୍କ (ଦେବରୂପକ) ମନ୍ଦିର ମସ୍ତକର କେନ୍ଦ୍ରରେ ଚକ୍ର ଘୋଡ଼ାଇଲା ପରି ରହି ଥିବାରୁ ସେ ମନ୍ଦିରର ଚୂଡ଼ା ପରି ଦେଖାଯାଉଅଛି । (ଆମର) ଅନ୍ତର୍ଗତ ଦୁଃଖ ସମୂହ ନାଶ କରିବାରେ ସେ ବିଭ୍ରାଜିତ ହେଉଥାଉ ।

ସଦ୍ବର୍ଣ୍ଣାକର୍ପରିଢ଼୍ୟାମଲକତତରତଦେଧ୍ୟାତତା ଦେଧ୍ୟାତୟନ୍ତୀ
ପ୍ରାସାଦସ୍ଥୂଳମୂର୍ତ୍ତେର୍ଭବତୁ ଭଗବତଃ ସର୍ବତୋ ବକ୍‌ଷଶ୍ରବମ୍ ।
ଯାଷ୍ଟାଶୀତ୍ୟଙ୍ଗଜୁଷ୍ଟାଷ୍ଟପରଗୁଣଚତୁଃଷଷ୍ଟିମୁଷ୍ଟ୍ୟନ୍ତକଷ୍ଟୈ—
ର୍ଦୃଷ୍ଟା ଭ୍ରଷ୍ଟଂ ଶିରୋବେଷ୍ଟନମପି ତନୁତେ ଯାମମାକଷ୍ଟନଷ୍ଟ୍ୟୈ ।୧୧ ।

ଅଂଳାବେଢ଼ା —

(ମନ୍ଦିର କଳସର ତଳକୁ) ଅଁଳା ବେଢ଼ା ମୋର ଅନଷ୍ଟ ନାଶକରୁ । ଏହି ଅଁଳା-ବେଢ଼ା ବଡ଼ ବଡ଼ ଘଣ୍ଟ କପାଳର ଆକାର ଧାରଣ କରି ବିଶେଷଭାବରେ ଶୋଭା ପାଉଅଛି । ଭଗବାନଙ୍କ ମନ୍ଦିର ରୂପ ସ୍ଥୂଳ ଶରୀରର ଚତୁପାଖରେ ଥିବା ମସ୍ତକ ମାଳାପରି ଏଗୁଡ଼ିକ ଦେଖାଯାଉ ଅଛି । ଏହି ଅଁଳାବେଢ଼ାର ୮୮ଟି ଅଙ୍ଗ ଅଛି ( ଅଁଳା ବେଢ଼ାର ମୋଟ ୮୮ଟି ଅଁଳା ଅଛି) ଏହାକୁ (୬୪×୮=୫୧୨) ୫୧୨ ମୁଷ୍ଟି ଦୂରରୁ ଦେଖିବା ଲୋକର ମୁଣ୍ଡରୁ ମଧ୍ୟ ପଗଡ଼ି ଖସିପଡ଼େ । (୮୮ ଅଁଳା ଓ ୫୧୨ ମୁଠି ଉଚ୍ଚାର ହିସାବ ମାଦଳାପାଞ୍ଜି ଦେଖି ସ୍ଥିର କରାଯିବା ଉଚିତ ହୋଇଅଛି । )

ସ୍ପଷ୍ଟା ସ୍ପଷ୍ଟାସୁ କାଷ୍ଠାସ୍ୱନୁଘଟିତପତଚ୍ଛେଷ୍ଠକଣ୍ଠୀରବେନ୍ଦ୍ରୈଃ
ପର୍ଶ୍ୱଦ୍ୱିଶ୍ୟାଘନାଗପ୍ରଭବପରଭବୋଲ୍ଲୁଣ୍ଠନାକୁଣ୍ଠବୀର୍ଯ୍ୟୈଃ ।
ଦୃଷ୍ଟିପ୍ରେଷ୍ଠପ୍ରକୃଷ୍ଟପ୍ରତକୃତିରତୁଳଃ ସୁଷ୍ଠୁ ନୋଽଧିଷ୍ଠିତାଙ୍ଗୋ
ବୈକୁଣ୍ଠାଗାରକଣ୍ଠୋ ବିଘଟୟତୁ ହଠାତ୍କଷ୍ଟଦାଦୃଷ୍ଟସୃଷ୍ଟିମ୍ । ୧୨ ।

ବେଉଳ କଣ୍ଠ —

ବିଷ୍ଣୁଙ୍କ ଦେଉଳର କଣ୍ଠ ( ବଡ଼ ଦେଉଳ କଣ୍ଠ—ଅଁଳା ବେଢ଼ା ତଳକୁ ) ଶୀଘ୍ର ଆମର କଷ୍ଟପ୍ରଦ ପାରବ୍ଧ କର୍ମକୁ ଭଲଭାବରେ ଛଡ଼ି ଦେଉ ( ନାଶ କରୁ ) । ଏ କଣ୍ଠର ୮ ଦିଗରେ ( ୪ ଦିଗ ୪ କୋଣ) ପାପରୂପକ ଦିଗ୍‌ଗଜ ଦେଖା ଯାଉଛନ୍ତି ଏବଂ ଏମାନଙ୍କର ପ୍ରଭାବରୁ ଉତ୍ପନ୍ନ ହେଉଥିବା ତିରସ୍କାରକୁ (ଅପମାନ) ପୂରାପୂରି ଭାବରେ ଦବେଇ ଦେବାକୁ ପରାକ୍ରମ ନେଇ ଗୋଟିଏ ଶ୍ରେଷ୍ଠ ସିଂହ ଏହି ସବୁ ଦିଗ୍‌ଗଜମାନଙ୍କ ଉପରେ ଅଙ୍କିତ ହୋଇ ରହିଛନ୍ତି । ଫଳରେ ତାହାର ଆକାରଟି ଅତି ଭଲ ଦେଖାଯାଉଛି ଏବଂ ମନ୍ଦିରର ଶରୀରକୁ ଲାଗି ରହିଥିବାରୁ ତାର ତୁଳନା ଅନ୍ୟ ପରି ମନେ ହେଉ ନାହିଁ । ପାପ ରୂପକ ହାତୀଗୁଡ଼ିକର

ପ୍ରଭାବକୁ ନଷ୍ଟ କରି ଦେଉଥିବା ସିଂହଗୁଡ଼ିକ ସେମାନଙ୍କ ଉପରେ ଅଙ୍କିତ ହୋଇ ଏହି ଦେଉଳ କଣ୍ଠରେ ଥିବାରୁ କଣ୍ଠର ଶୋଭା ଅତୁଳନୀୟ ହୋଇ ଉଠିଛି । କଣ୍ଠର ଆଠ ଦିଗରେ ୮ଟି ହାତୀ ଓ ତା ଉପରେ ସିଂହ ମାଡ଼ି ବସିଛନ୍ତି ।

**ଜମ୍ବୁଦ୍ୱୀପାଖ୍ୟଭୂପାଖିଳଭୁବନଜୟସ୍ତମ୍ଭ ସମ୍ଭାର ହାରୀ**
**ଗର୍ଭସ୍ଥାନନ୍ତବିଶ୍ୱମ୍ଭରଶରଣତୟା ବାଙ୍ମୟାତୀତମାନଃ ।**
**ସାଙ୍ଗୋପାଙ୍ଗୋଽତତୁଙ୍ଗୋଽନୁଗୁଣପୃଥୁଳତଃ ପ୍ରେକ୍ଷକାନନ୍ଦକନ୍ଦଃ**
**ପ୍ରାସାଦେଶୋଽନିଶଂ ନଃ ସ୍ପୃଶତୁ ବସଦୃଶଃ ସ୍ୱାଶୟଂ ଶ୍ରୀଶମୂର୍ତ୍ତିଃ ।୧୩।**

**ଦେଉଳ—**

ସମସ୍ତ ଜମ୍ବୁଦ୍ୱୀପର ଅଧିପତିମାନଙ୍କର ଦେଶ ଜୟ କରିବାରେ ଯେଉଁ ଜୟସ୍ତମ୍ଭ କରାଗଲା ସେଗୁଡ଼ିକର ଓଜନରେ ଭାରହାନ୍ତ ଏହି ପ୍ରାସାଦ ନିଜର ଗର୍ଭରେ ଅନନ୍ତ ବ୍ରହ୍ମାଣ୍ଡ-ନାଥଙ୍କୁ ଧରି ଏବଂ ତାଙ୍କର ଶରଣ ପାଇଥିବାରୁ ଅତ୍ୟନ୍ତ ସମ୍ମାନିତ ହୋଇଅଛି । ଏହି ପ୍ରାସାଦ ଅତି ତୁଙ୍ଗ ଏବଂ ଏହାର କୌଣସି ଅବୟବ ଖଣ୍ଡିତ ହୋଇ ନାହିଁ । ଏହାର ସ୍ଥୂଳତା ( ମୋଟାଇ ) ଗୁଣର ଅନୁରୂପ ହୋଇଅଛି । ଏଣୁ ଦର୍ଶକମାନଙ୍କୁ ବିଶେଷ ଆନନ୍ଦ ଦେଇ ପାରୁଅଛି । ଏହି ପ୍ରାସାଦ ପ୍ରଭୁ ଲକ୍ଷ୍ମୀପତିଙ୍କ ମୂର୍ତ୍ତିପରି ଅତୁଳନୀୟ । ସେ ଆମ୍ଭମାନଙ୍କର ଇଚ୍ଛାକୁ ସର୍ବଦା ପୂରଣ କରୁଥାନ୍ତୁ ।

**ପ୍ରାକାରଦ୍ୱନ୍ଦ୍ୱମଧ୍ୟପ୍ରତତସମଦୃଶଦ୍‌କୁଟ୍ଟିମାଚ୍ଛାପକୃଷ୍ଟ—**
**ପ୍ରାସାଦାବେଷ୍ଟିତୋଽଧସ୍ତୃତମସୃଣଲସଦ୍ ମୁଦ୍ଗପାଷାଣପଟ୍ଟଃ ।**
**ନାନାକାରାବତାରୈର୍ହରିଣନରବରୈଃ କୁଞ୍ଜରୈ ରଞ୍ଜିତୋଽଙ୍ଗଃ**
**ପୁଞ୍ଜଂ କୁଞ୍ଜାଧିରାଜାଲୟ ଉପଚୟିନଂ ବ୍ୟଞ୍ଜୟେଚ୍ଛର୍ମ୍ମଣାଂ ନଃ ।୧୪।**

ଏହାର ଦୁଇଟି ପ୍ରାଚୀର ମଧ୍ୟରେ ( ଭିତର ଓ ବାହାର ବେଢ଼ାରେ ) ଥିବା ଭୂମି ସମାନଆ କଠା ପଥରରେ ଆବୃତ ହୋଇଅଛି । ଏହା ଉପରେ ଶ୍ରେଷ୍ଠ ଶ୍ରେଷ୍ଠ ଦେବ ପ୍ରାସାଦ ରହିଅଛି । ପ୍ରଧାନ ମନ୍ଦିରର (ବିମାନର) ଠିକ୍ ତଳେ ଚିକ୍କଣ ମୁଗୁନିପଥର ବିଛା ଯାଇଅଛି । ମନ୍ଦିର ଗାତ୍ରରେ ମତ୍ସ୍ୟ କଚ୍ଛପ ଆଦି ନାନା ଅବତାର ସିଂହ ଓ ହାତୀମୂର୍ତ୍ତି ରଖାଯାଇ ଅଛି । କୁଞ୍ଜର ଅଧିରାଜ ଜଗନ୍ନାଥଙ୍କର (କୃଷ୍ଣ) ଘର ଏହି ବଡ଼ ଦେଉଳ ଆମ୍ଭମାନଙ୍କର ବର୍ଦ୍ଧମାନ (ବଢ଼ି ଉଠୁଥିବା) ସୁଖ ସମୂହକୁ ପ୍ରକାଶ କରି ଦେଉ । ଆମ୍ଭେମାନେ ବେଶି ସୁଖ ପାଉଁ ।

ପ୍ରଗ୍ରୀବଂ ପ୍ରୋଦ୍ଧ୍ୱଭାଗଂ ଶିଖରମ୍ପୁତରଂ ମଞ୍ଜରୀଂ ମଞ୍ଜୁଳାଙ୍ଗଂ
ଭିତ୍ତିଂ ଧ୍ୱସ୍ତାଘଭୀତଂ ହିତନତନୁଗୃହାନ୍ ବକ୍ତ୍ରଶାଳାଂ ବଶାଳାମ୍ ।
ପୀଠଂ ଶୀଷ୍ଟାଭିଜୁଷ୍ଟଂ ଗୃହମତବତତଂ ଶ୍ରୀଜଗନ୍ମୋହନାଖ୍ୟଂ
ଭୋଗାର୍ଥଂ ମଣ୍ଡପଞ୍ଚାଦ୍ଭୁତମବନଧବସ୍ୟାଶ୍ରୟେ ପ୍ରଶ୍ରୟେଣ । ୧୪ ।

ପୃଥିବୀ ପତି ଶ୍ରୀ ଜଗନ୍ନାଥଙ୍କର ଏହି ସବୁ ଜନପଦକୁ ମୁଁ ଉତ୍କଣ୍ଠା ଓ ଭକ୍ତିର ସହିତ ଆଶ୍ରୟ କରୁଅଛି । ମନ୍ଦିରର କଣ୍ଠ ତଳକୁ ଥିବା ସ୍ତମ୍ଭ (ପ୍ରଗ୍ରୀବ) ଏବଂ ତାର ଉର୍ଦ୍ଧ୍ୱଭାଗ ଅଛି । ଏହି ସ୍ତମ୍ଭ ଓ ଉର୍ଦ୍ଧ୍ୱଭାଗରେ ଥିବା ଶ୍ରେଷ୍ଠ ମନ୍ଦିରଗୁଡ଼ିକର ସରଳ ଶିଖର (ଜଗନ୍ନାଥଙ୍କ ମନ୍ଦିର ଗାତ୍ରରେ ଅନେକ ଶ୍ରେଷ୍ଠ ଦେଉଳର ସରଳ ଚିତ୍ର ହୋଇଛି ଏବଂ ତାର ଶୃଙ୍ଗ ତିଆରି ହୋଇ ସୁନ୍ଦର ଦେଖାଯାଉଅଛି ) ଏବଂ ଏହାର ତଳକୁ ସେହି ସ୍ତମ୍ଭରେ ଥିବା ସରଳରେଖା ସମୂହ (ମଞ୍ଜରୀ) ଅତି ରମଣୀୟ ଦେଖାପଡ଼େ । ମନ୍ଦିରର ଗୋଲାକାର କାନ୍ଥକୁ ଦେଖିଲେ ପାପ ଭୟ ନଷ୍ଟ ହୋଇଯାଏ । ତା ତଳକୁ ତିନୋଟି ଶ୍ରେଷ୍ଠ ଘର ଅଛି । ( ଯେଉଁଥିରେ ଗଣେଶ, ବରାହ ଓ ବାମନ ଅଛନ୍ତି ମନ୍ଦିର ଗାତ୍ରକୁ ଲାଗି ) । ତାପରେ ବିଶାଳ ମୁଖଶାଳା । ଏହାପରେ ଜଗମୋହନ ନାମକ ଗୃହପୀଠ—ଯେଉଁ ଗୃହ ଅତି ବିସ୍ତୃତ ଏବଂ ଯହିଁରେ ଶିଷ୍ଟ ଲୋକେ ବରାବର ବସି ରହିଥାନ୍ତି । ଶେଷରେ ଭୋଗ ମଣ୍ଡପ ଅଛି, ଯହିଁରେ ସାଧାରଣ ଭୋଗ ଲାଗେ । [ପ୍ରଗ୍ରୀବର ଅର୍ଥ ଆମେ ସ୍ତମ୍ଭ କରିଛୁ ( ପ୍ର+ଗ୍ରୀବା ) । ପ୍ରଗ୍ରୀବର ଅସଲ ଅର୍ଥ କିନ୍ତୁ ସ୍ତମ୍ଭ ନୁହେଁ କାଠର ବାଡ଼ ବା Painted Terese ] ।

ପ୍ରେଙ୍ଖନ୍ ଶଙ୍ଖସ୍ୟନାଭୌ ସତତଗତବଶାଦ୍ବାହୁଦଣ୍ଡୈଃ ପ୍ରଚଣ୍ଡୈଃ
ଶାଖାଭିଶ୍ଚଣ୍ଡବେଗସ୍ତନ୍ନଜନଜନାନ୍ ବାରୟନ୍ କିଂ ବଦୂସଦ୍ ।
କଲ୍ପାନ୍ତେଽପ୍ୟନ୍ତହୀନଃ ସକଳକଳୁଷହୃଦ୍ ସିନ୍ଧୁରାଜୋଽଧିରୋଧୋ—
ନ୍ୟଗ୍ରୋଧଃ କ୍ରୋଧକାମାଦ୍ୟରିପରିଭବକୃଦ୍ଭୂତବର୍ଗସ୍ୟ ଭୂୟାତ୍ । ୧୭।

ମନ୍ଦିରରେ ଥିବା କଳ୍ପବଟ କଳ୍ପ କାଳରେ ମଧ୍ୟ ନାଶ ହୁଏ ନାହିଁ, ସେ ସକଳ ପ୍ରକାର ପାପ ନାଶକରେ । ସେ ମହାସାଗରର ତୀରରେ (ଉତ୍କଳ ମହୋଦଧି) ଅବସ୍ଥିତ ରହିଛି । ସେ ପ୍ରାଣୀମାନଙ୍କର କ୍ରୋଧ, କାମ ଆଦି ଶତ୍ରୁମାନଙ୍କୁ ପରାସ୍ତ କରୁ ଏହା ମୋର ପ୍ରାର୍ଥନା । ଶଙ୍ଖ କ୍ଷେତ୍ରର ନାଭିରେ ରହି ପବନ ଯୋଗେ ପ୍ରଚଣ୍ଡ ଭୁଜଦଣ୍ଡ ରୂପକ ଶାଖା ହଲାଇବାରେ ସୂର୍ଯ୍ୟପୁତ୍ର ଯମର ଦୂତମାନଙ୍କୁ କହୁ ଦୂରରୁ ଏହି କଳ୍ପବଟ ବାରଣ କରୁଅଛି କି ?

ଭଦ୍ରାଭୂମାଧବଶ୍ରୀମୁଷଳଭୃଦରଭିଃ ଶୋଭିତଃ ଶ୍ରୀବପୁଷ୍ମା—
ନସ୍ମାନ୍ସ୍ତ୍ରାଂଶୁକୋଷ୍ମାଗମଶମନଘନଃ ପାତୁ ଦେବାଧିଦେବଃ ।
ଜନ୍ତୁର୍ମନ୍ତୁନ୍ନିହନ୍ତୁଂ ପ୍ରଭବତ ଶତଶୋଽହ୍ନାୟ ଯନ୍ନାମ ଗୃହ୍ନନ୍
ପଶ୍ୟନ୍ ଭ୍ରଶ୍ୟତ୍ୟବଶ୍ୟଂ ବଷୟଜଳନଧୌ ନୈବ ଯଂ ଦୈବଭୂତ୍ୟଃ
।୧୭।

ଅଦୃଷ୍ଟାଧୀନ ପ୍ରାଣୀ ମଧ୍ୟ ଯେଉଁ ଜଗନ୍ନାଥଙ୍କର ନାମ ୧୦୦ ଥର ଗ୍ରହଣ କଲେ (ଜପ କଲେ) ତତ୍‌କ୍ଷଣାତ୍ ନିଜର ଅପରାଧ (ପାପ) ନାଶ କରି ଦେବାକୁ ସମର୍ଥ ହୁଏ; ଯାହାଙ୍କୁ ଦେଖିବା ମାତ୍ରେ ସଂସାର (ବିଷୟ) ସାଗରରେ ପଡ଼ିବାକୁ ହୁଏ ନାହିଁ; ଯେଉଁ ଜଗନ୍ନାଥ ଦେବତାମାନଙ୍କର ପ୍ରଭୁ (ଦେବାଧିଦେବ); ଯେ ଶୋଭନ ବପୁଶାଳୀ; ଯେ ସୂର୍ଯ୍ୟପୁତ୍ର ଯମଙ୍କୁ ଶାନ୍ତ କରିବାରେ (ଜିଷ୍ଣୁ ଶାନ୍ତ ନିମନ୍ତେ) ବର୍ଷୁକ ମେଘର କାମ କରନ୍ତି ଏବଂ ଯେଉଁ ଜଗନ୍ନାଥ, ସୁଭଦ୍ରା, ଭୂଦେବୀ, ମାଧବ, ବଳଭଦ୍ର ଓ ସୁଦର୍ଶନଙ୍କ ଦ୍ୱାରା ଶୋଭା ପାଉ-ଅଛନ୍ତି ସେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ସାର୍ଦ୍ଧଂ ଯେନେନ୍ଦୁପଦ୍ମାଦ୍ୟଖିଳମୁପମିତଦ୍ରବ୍ୟମାସୀତ୍ କୃତାର୍ଥଂ
ବାଦଭିର୍ବର୍ଣ୍ଣ୍ୟମାନଂ ଯଦନୁମିତକୃତଃ କୃତ୍ରିମଂ ବିଶ୍ୱମାହୁଃ ।
ଶବ୍ଦବ୍ରହ୍ମ ପ୍ରମାଣଂ ଯଦବୟବଜନେର୍ଯୋଽସକୃନ୍ନାରଦାଦ୍ୟୈଃ
ସାକ୍ଷାଲ୍ଲକ୍ଷୋଽପି ସାକ୍ଷୀ ଭବତ ନବନବଃ ଶ୍ରୀଧବଃ ସୋଽବତାନ୍ନଃ ।୧୮

ଚନ୍ଦ୍ର ଓ ପଦ୍ମ ପ୍ରଭୃତି ଉପମାନବସ୍ତୁ ଯାହା ସମ୍ପର୍କରେ ( କୃଷ୍ଣଚନ୍ଦ୍ର, ପଦ୍ମମୁଖ, ପଦ୍ମଲୋଚନ, ପଦ୍ମନାଭ ଆଦି ) ଧନ୍ୟ ହୋଇ ଅଛନ୍ତି, ଯାହାଙ୍କୁ ଅନୁମାନ କରିବାଦ୍ୱାରା ତାର୍କିକମାନେ, ପଣ୍ଡିତମାନେ ବର୍ଣ୍ଣନା କରିଥିବା ଏହି (ସଚରାଚର) ବିଶ୍ୱକୁ କୃତ୍ରିମ ବୋଲି କହନ୍ତି; ଯାହାଙ୍କ ଅବୟବରୂପୀ ଜଗତର ଉତ୍ପତ୍ତି ନିମନ୍ତେ ଶବ୍ଦରୂପୀ ବ୍ରହ୍ମହିଁ ପ୍ରମାଣ ଏବଂ ଯାହାଙ୍କୁ ନାରଦ ଆଦି ମହର୍ଷିମାନେ ପ୍ରତ୍ୟକ୍ଷରେ ଦେଖି ପାରୁଥିଲେ ମଧ୍ୟ ସେ ସ୍ୱୟଂ ଦ୍ରଷ୍ଟାରୂପରେ ରହିଛନ୍ତି, ସେହି ଲକ୍ଷ୍ମୀପତି ଶ୍ରୀ ଜଗନ୍ନାଥ ନିତ୍ୟ ନୂତନ ହୋଇ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ଦ୍ରବ୍ୟୈର୍ଜାତୁପମାନଂ ନ ଭବତ କୃତନାଂ ପ୍ରାକୃତୈର୍ଜାତଦୋଷଂ
ସର୍ବାନ୍ତର୍ଯାମିତ୍ୱାଦ୍ଦ୍ରୁତମତ କୃତଭିର୍ଯସ୍ୟ ଲୋକୋତ୍ତରସ୍ୟ ।
ବ୍ୟକ୍ତାବ୍ୟକ୍ତେଷୁ ସତ୍ତ୍ୱେଷ୍ୱପରିମିତନିଜବ୍ୟାପ୍ତିମୁଦ୍ବ୍ୟକ୍ତୁକାମଃ—
ସ୍ତମ୍ଭାଦେର୍ୟା ଦବ୍ୟସିଂହୋଽଭବଦହ ଚ ମହାଦାରୁଦେହଃ ସନୋଽବ୍ୟାତ୍
। ୧୯ ।

ଶ୍ରୀ ଜଗନ୍ନାଥ ଲୋକୋତ୍ତର ହେତୁ ସର୍ବାନ୍ତର୍ଯାମୀ । ତେଣୁ ପ୍ରାକୃତ ( ଅସଂସ୍କୃତ ) ଦ୍ରବ୍ୟ ତାଙ୍କର ଉପମାନ ହେଲେ ଦୋଷ ଉତ୍ପତ୍ତିକ ! ଏଥିନିମନ୍ତେ ରୂପ, ବୁଦ୍ଧି ଓ ପ୍ରଦ୍ୟୁମ୍ନ ଇତ୍ୟାଦିମାନଙ୍କର ହେବା ଅନୁଚିତ । ସେ ବ୍ୟକ୍ତ ଓ ଅବ୍ୟକ୍ତ ଏବଂ ସବୁ ଦ୍ରବ୍ୟରେ ନିଜର ଅସଂଖ୍ୟ ପ୍ରକାଶ ଦେଖାଇବା ନିମନ୍ତେ ଖୁଣ୍ଟରୁ ମଧ୍ୟ ଦିବ୍ୟ ସିଂହରୂପ ଧରି ବାହାରି ହୋଇଥିଲେ ସେହି ମହାଦାରୁବ୍ରହ୍ମ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

**ପାରାବାରପ୍ରତୀରପ୍ରଥିତବଟମହାପାଦପସ୍ପର୍ଶନାଶା—**
**ପ୍ରୋଦ୍ୟଦ୍ ପ୍ରାସାଦପୀଠାର୍ପିତବିପୁଳବପୁଃ ପାଣ୍ଡୁପଦ୍ମୋପମାକ୍ଷ୍ୟଃ ।**
**ପୂର୍ଣ୍ଣପ୍ରେମପ୍ରଦାନପ୍ରବଣ ଉପନିଷଦ୍‌ପ୍ରାର୍ଥ୍ୟମାନାନୁନମ୍ରଃ**
**ପାପୌଘାନ୍ନାଂ ପୁନୀୟାଦ୍ ପତିତପତିମୟଂ ପୂତନାପ୍ରାଣପାୟୀ । ୬୦ ।**

ସାଗର ତୀରରେ ଥିବା ପ୍ରସିଦ୍ଧ ମହାକଳ୍ପ ବଟବୃକ୍ଷର ସ୍ପର୍ଶଥିବା ସ୍ଥାନରେ ଯେଉଁ ସୁନ୍ଦର ମନ୍ଦିର ରହିଅଛି ତହିଁରେ ଥିବା ପୀଠରେ ( ରତ୍ନସିଂହାସନରେ ) ମହାକାୟ ଜଗନ୍ନାଥ ବସି ରହି ଅଛନ୍ତି । ତାଙ୍କର ଆଖି ଦୁଇଟି ଧଳା ପଦ୍ମପରି ଦେଖାଯାଉଛି । ସେ ପୂତନା ରାକ୍ଷସୀର ପ୍ରାଣକୁ ଶୋଷି ଦେଇଥିଲେ । ଉପନିଷଦ (ବେଦ) ତାଙ୍କର ସ୍ତୁତିଗାନ କରୁଅଛନ୍ତି । ସେ ଅନୁଗତମାନଙ୍କ ନିକଟରେ ଅତି ବିନୀତ । ସେ ଭକ୍ତମାନଙ୍କୁ ପୂର୍ଣ୍ଣସ୍ନେହ ପ୍ରଦାନ କରିବାରେ ତତ୍ପର । ମୁଁ ପତିତମାନଙ୍କର ରାଜା । ମୋତେ ପାପ ରାଶିରୁ ଏହି ପ୍ରଭୁ ଶ୍ରୀ ଜଗନ୍ନାଥ ଉଦ୍ଧାର କରିବେ (ଏହାହିଁ ପ୍ରାର୍ଥନା) ।

ଅଥ ଶ୍ରୀ ଜଗନ୍ନାଥସ୍ୟ ଦ୍ୱାଭ୍ୟାଂ ସମ୍ଭୂକ୍ତ ସାମ୍ୟମ୍

**ଲକ୍ଷ୍ମୀଭୃନ୍ନାଗସଦ୍ମାମୃତଖନିରଶନିବାସିତକ୍ଷ୍ମାଭୃଦୀଶ—**
**ସ୍ଥାନଂ ସ୍ୱର୍ଗାପଗାୟାଃ ପ୍ରଭୁରଖିଳନୃଣାଂ ପାପସନ୍ତାପହନ୍ତା ।**
**ଶ୍ୟାମଶ୍ରୀର୍ମୀନକୂର୍ମାଦ୍ୟମିତତନୁଧରଃ ଶଙ୍ଖଚକ୍ରାବ୍‌ଜବାହୁଃ**
**କଳ୍ପାନ୍ତଗ୍ରସ୍ତଲୋକଃ କଳୟତୁ କମଳଂ ତୀର୍ଥରାଟ୍‌କ୍ଳାନ୍ତଶାନ୍ତ୍ୟୈ । ୬୧ ।**

ଶ୍ରୀ ଜଗନ୍ନାଥ ଲକ୍ଷ୍ମୀଧର ଓ ପ୍ରେମ-ସୁଧାର ଆକର ଅଟନ୍ତି । ସେ ଶେଷ ଉପରେ ଶୋଇଛନ୍ତି ଏବଂ ବଜ୍ର ପୀଡ଼ାଗ୍ରସ୍ତ (ଗୋବର୍ଦ୍ଧନ) ପର୍ବତକୁ ଆଶ୍ରୟ ଦେଇଅଛନ୍ତି । ସ୍ୱର୍ଗଗଙ୍ଗାର ( ତାଙ୍କ ପଦାଙ୍ଗୁଳରୁ ବାହାରିଥିବାରୁ ) ସେ ପ୍ରଭୁ । ସମଗ୍ର ମାନବ ସମାଜର ପାପଜନିତ ସନ୍ତାପକୁ ସେ ହରଣ କରନ୍ତି । ତାଙ୍କର ଦେହ କଳା ଓ ସେ ସର୍ବଦା ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଥାନ୍ତି । ଆବଶ୍ୟକ ହେଲେ ସେ ମତ୍ସ୍ୟ, କୂର୍ମ ଆଦି ଅନେକ ଶରୀର ଧାରଣ କରନ୍ତି । କଳ୍ପଶେଷରେ ସେ ସମସ୍ତ ସଂସାରକୁ ଗ୍ରାସ କରନ୍ତି । ସେ ତୀର୍ଥର ରାଜା ଅଟନ୍ତି । ସେ ଭାରତର ଶ୍ରେଷ୍ଠ ତୀର୍ଥମାନଙ୍କ ରାଜା ଅଟନ୍ତି ।
ଦୁଃଖ ଅପନୋଦନ କରିବା ନିମନ୍ତେ ସେ ବିଶେଷ ଭାବରେ ସୁଖ ବିତରଣ କରନ୍ତୁ ।

ସମୁଦ୍ର ପକ୍ଷେ—ସମୁଦ୍ର ଲକ୍ଷ୍ମୀଙ୍କର ପାଳକ (ପିତା) ଓ ଜଳ ହସ୍ତୀମାନଙ୍କର (ନାଗ-ହାତୀ) ଘର । ସେ ଅମୃତର (ସୁଧା ବା ପାଣି) ଆକର । ବଜ୍ର ଶାନ୍ତିଗ୍ରସ୍ତ (ମୈନାକ) ପର୍ବତ ରାଜଙ୍କର ସେ ଆଶ୍ରୟ ସ୍ଥଳ । ଗଙ୍ଗାନଦୀର ସେ ପ୍ରଭୁ (ସ୍ୱାମୀ) । ମତ୍ସ୍ୟ, କଚ୍ଛପ ଆଦି ଅଶେଷ ଜଳଜନ୍ତୁଙ୍କୁ ସେ (ନିଜ ଭିତରେ) ଧରି ରଖିଛନ୍ତି । ଶଙ୍ଖ ସମୂହ (ରତ୍ନ) ଓ ଜଳଜାତ ଅନ୍ୟାନ୍ୟ ବସ୍ତୁର ସେ ବାହକ । କଳ୍ପ ଶେଷରେ ସେ (ଚତୁର୍ଦ୍ଦଶ) ଭୁବନକୁ ଜଳ ପ୍ଲାବିତ କରି ଗ୍ରାସ କରନ୍ତି । ସେ ସକଳ ତୀର୍ଥର (ଗଙ୍ଗା ଆଦି) ରାଜା । କ୍ଲାନ୍ତି ଶାନ୍ତି ନିମନ୍ତେ ସେ ବେଶୀ ପାଣି ଦିଅନ୍ତୁ (କ—ଜଳ) । କ୍ଲାନ୍ତି ଜଳରେ କମି ଯାଇଥାଏ ।

ଯଦ୍ୱାଚେନ୍ଦ୍ର ଯାନୁବମ୍ବୋଦ୍ଗତସିତକିରଣପ୍ରୋଜ୍ଜ୍ୱଳଂ ନେତ୍ରଯୁଗ୍ମଂ

ନାସାବାହୂଦରାଂଘ୍ରି ସ୍ଫୁରନ୍ତି ଚ ବିବିଧଦ୍ୱୀପଶୋଭାନୁକାରି ।

ବାରୀବ ଶ୍ୟାମଳଶ୍ରୀର୍ମକରସ୍ଫୁରିତରେ କୁଣ୍ଡଳେ ବାଡ଼ବାଗ୍ନି—

ଜ୍ୱାଲେବୋଦ୍ୟତ୍କିରୀଟଂ ତରଣିବଦଧରଃ ସୋଽସ୍ତୁ ଶାନ୍ତ୍ୟୈ କୃପାବ୍ଧିଃ

। ୨୨ ।

ଯାହାର ନେତ୍ର ଦୁଇଟି ଚନ୍ଦ୍ର ଓ ତାହାର ପ୍ରତିବିମ୍ବ ପରି ବଡ଼ ଉଜ୍ଜ୍ୱଳ; ଯାହାର ନାକ, ବାହୁ, ଉଦର ଓ ପାଦ ନାନାରକମର ଦ୍ୱୀପ ପରି ଶୋଭାଧାୟକ; ଯାହାର ଶ୍ୟାମଳ ଶୋଭା ଜଳ ପରି, ଯେ ଦୁଇଟି ମକରକୁଣ୍ଡଳ ପରିଧାନ କରି ଅଛନ୍ତି; ଯାହାର କିରୀଟ (କିରୀଟ ମଣି) ବାଡ଼ବାଗ୍ନିର ଜ୍ୱାଳାପରି ଜାଜ୍ୱଲ୍ୟମାନ ଏବଂ ଯାହାର ଅଧର ନୌକାପରି ସେହି ଦୟାସାଗର ଜଗନ୍ନାଥ ଆମର ଶାନ୍ତି ନିମନ୍ତେ ବିରାଜମାନ ଥା'ନ୍ତୁ ।

ସମୁଦ୍ରପକ୍ଷେ—

ଯାହାର ସୂର୍ଯ୍ୟ ଓ ତାର ପ୍ରତିବିମ୍ବ (ଚନ୍ଦ୍ର ଓ ତାର ପ୍ରତିବିମ୍ବ) ପରି ଦୁଇଟି ନେତ୍ର ଉଦିତ ହୋଇଥାଏ (ଉଦୟବେଳେ ଏହା ଲକ୍ଷ୍ୟକରି ହୁଏ); ଯାହାର ଭିତରେ ଅନେକ ଦ୍ୱୀପ ତାହାର ନାକ, ଭୁଜ, ଉଦର ଓ ପାଦପରି ଦେଖାଯାନ୍ତି; ଯାହାର କାନ୍ତି ଜଳ ଭଳି ଶ୍ୟାମଳ, ଯାହା ଭିତରରେ ମକର କୁଣ୍ଡଳାକାରରେ ଅଛି—ଯାହାର ବାଡ଼ବାଗ୍ନିର ଜ୍ୱାଳା କିରୀଟ (ମଣି)ପରି ଚକ୍ ଚକ୍ କରୁଥାଏ, ଯାହାର ନୌକାହିଁ ଅଧର ପରି ସେହି ଦୟାସାଗର (ପ୍ରାଣୀଙ୍କୁ ମେଘଦ୍ୱାରା ଜଳ ଦେଇ) ସମୁଦ୍ର, ଆମର ଶାନ୍ତି ନିମନ୍ତେ ବିରାଜମାନ ଥା'ନ୍ତୁ ।

### ଏକେନ ବ୍ରହ୍ମାଣ୍ଡସାମ୍ୟମ୍

**ବଭ୍ରଦ୍ବସ୍ତ୍ରକ୍ଷପେଣୀ ନୟନଯୁଗମୈଷାଦଭ୍ରଶୋଭମଦଭ୍ରାଂ**
**ଶୁଭ୍ରଶ୍ରୀବଂକଦଦଧ୍ମାଦଧରପୁଟରୁଚବ୍ୟୋଜତଃ ସାନ୍ଧ୍ୟବେଳାମ୍ ।**
**ତର୍ଯ୍ୟଗ୍ବସ୍ତୀର୍ଣ୍ଣବୃତ୍ତାଭୁଳଭୁଜବଳୟଚ୍ଛଦ୍ମନଶ୍ଚକ୍ରବାଳଂ**
**ଶୈଳଂ ମଧ୍ୟକ୍ଷଳାକାଞ୍ଚନମୁପଚନୁତାଦ୍ବଶ୍ବଭର୍ତ୍ତା ଶୁଭଂ ନଃ । ୬୩ ।**

### ଶ୍ରୀ ଜଗନ୍ନାଥଙ୍କର ବ୍ରହ୍ମାଣ୍ଡସାମ୍ୟ

ବ୍ରହ୍ମାଣ୍ଡରେ ସୂର୍ଯ୍ୟ ଚନ୍ଦ୍ର ଅଛନ୍ତି । ଜଗନ୍ନାଥ ମଧ୍ୟ ତାଙ୍କର ଚନ୍ଦ୍ର ସୂର୍ଯ୍ୟ ପରି ଦୁଇନେତ୍ର ଧରି ରହିଛନ୍ତି । ବ୍ରହ୍ମାଣ୍ଡରେ ମେଘ ଅଛି । ସେ ମଧ୍ୟ ବିଶେଷଭାବରେ ମେଘର ଶୋଭାକୁ ଧାରଣ କରି ଅଛନ୍ତି । ବ୍ରହ୍ମାଣ୍ଡ ସ୍ୱତଃ ଶୁଭ୍ର—ଶ୍ରୀ ଜଗନ୍ନାଥ ମଧ୍ୟ ନିର୍ମଳ ଶୋଭାଧାୟକ । ବ୍ରହ୍ମାଣ୍ଡର ସନ୍ଧ୍ୟା ସମୟ ହୁଏ । ପ୍ରଭୁଙ୍କର ଅଧର ପୁଟର ରଙ୍ଗ ସନ୍ଧ୍ୟାର ରଙ୍ଗପରି । ବ୍ରହ୍ମାଣ୍ଡର ଦିଗ୍‌ବଳୟ ଅଛି । ପ୍ରଭୁ ଅତୁଳନୀୟ, ଅନୁପମ, ବୃତ୍ତାକାର ଓ ବିସ୍ତୀର୍ଣ୍ଣ ତର୍ଯ୍ୟକ୍ ଦୁଇଟି ଭୁଜ ଦ୍ୱାରା ଦିଗ୍‌ବଳୟର ଶୋଭାକୁ ଧରି ରହିଛନ୍ତି । ବ୍ରହ୍ମାଣ୍ଡର ମଧ୍ୟ ଦେଶରେ ସୁବର୍ଣ୍ଣ ମେରୁଗିରି ବିଦ୍ୟମାନ । ପ୍ରଭୁ ମଧ୍ୟ ନିଜର କଟି ବ୍ୟାଜରେ (କଟିରେ ପୀତବସନ ପିନ୍ଧିଥିବାରୁ) ସୁବର୍ଣ୍ଣ ପର୍ବତ ଧାରଣ କରିଅଛନ୍ତି, ବ୍ରହ୍ମାଣ୍ଡର ପାଳକ (ନାଥ) ଆମର ମଙ୍ଗଳ କରନ୍ତୁ ।

### ଏକେନ ଶିବ ସାମ୍ୟମ୍

**ଭୂତେଶୋ ଭୂତଭୂମିର୍ଦ୍ଦବଜଭୟଭବବ୍ରୋଦ୍ଦେଦଭେଦପ୍ରଭାବୋ—**
**ଭୂୟାଦ୍ଭୋଗୀନ୍ଦ୍ରଭୋଗାଭରଣବପୁରଭୀଷ୍ଟବଦୋ ଭୂତଭୂତେଃ ।**
**ଭୂଭୃଦ୍‌ଭୂମୀନ୍ଦ୍ରମୌଳିଭୃତବରକମଳୋ ଗୌରଭା ଭେଣ ଭଙ୍ଗ—**
**ପ୍ରଭାଜଦ୍ଭାଳଭିତ୍ତିବୃଷଭରଣଚଣଃ ସତ୍ୟଦଭ୍ରାଭିସନ୍ଧିଃ । ୬୪ ।**

### ଶ୍ରୀ ଜଗନ୍ନାଥଙ୍କର ଶିବ ସାମ୍ୟ

ଜଗନ୍ନାଥ ପ୍ରାଣୀମାନଙ୍କର ପ୍ରଭୁ । ସେ ଅଣିମାଦି ଐଶ୍ୱର୍ଯ୍ୟମାନଙ୍କର ସ୍ଥାନ । ସାଂସାରିକ ଅତିଶୟ ଭୟ ପ୍ରକାଶର ସେ ନାଶକର୍ତ୍ତା ଭାବରେ ପ୍ରଭାବଶାଳୀ । ଅନନ୍ତଙ୍କ ଶରୀର ତାଙ୍କ ଶରୀରର ଭୂଷଣ । ସେ ପର୍ବତରାଜର (ନୀଳାଚଳର) କିରୀଟ ରୂପକ ଶ୍ରେଷ୍ଠ କମଳାଙ୍କୁ ସେ ଧାରଣ କରିଅଛନ୍ତି । ତାଙ୍କର କାନ୍ତି କଳା, ଖଣ୍ଡଚନ୍ଦ୍ର ପରି ତାଙ୍କର ବିସ୍ତୃତ ଭାଲ ସ୍ଥଳ । ସେ ଧର୍ମ ରକ୍ଷଣପର ବା ବୃଷାସୁରର ନାଶକର୍ତ୍ତା । ସାଧୁ ଲୋକ ନିକଟରେ ତାଙ୍କର ହୃଦ୍‌ଗତଭାବ ଅତି ବେଶି ମୁକ୍ତଥାଏ । ସେ ପ୍ରାଣୀମାନଙ୍କ ଉନ୍ନତିରେ ଅଭୟ ଦାତା ହୋଇ ରହିଥାନ୍ତି ।

ଶିବ ପକ୍ଷରେ :—

ଶିବ ଭୂତ ପିଶାଚ ଆଦିଙ୍କର ପ୍ରଭୁ । ଭୂତି (ସଂପତ୍ତି ବା ଭସ୍ମ)ର ସେ ଆଶ୍ରୟ ସ୍ଥଳ । ତାଙ୍କ ଶରୀରରେ ସର୍ପରାଜମାନଙ୍କର ଦେହ ଗୁଡ଼ାଇ ହୋଇ ରହିଛି । କୈଳାସ ପର୍ବତର ସେ ମୁକୁଟ ପରି । ଶ୍ରେଷ୍ଠ ଜଳ ଗଙ୍ଗାଙ୍କୁ ସେ ଧାରଣ କରିଅଛନ୍ତି । ତାଙ୍କର ବିସ୍ତୃତ ଭାଲ ସ୍ଥଳରେ ଚନ୍ଦ୍ର ଖଣ୍ଡ ଶୋଭା ପାଉଅଛି । ସେ ଦକ୍ଷତା ସହକାରେ ବୃଷଭର ପାଳକ । ସତୀ ଦକ୍ଷ କନ୍ୟାଙ୍କଠାରେ ତାଙ୍କର ହୃଦ୍‌ଗତ ସମସ୍ତ ମନୋଭାବ ବିଶେଷ ଭାବରେ ପୂର୍ଣ ରହିଥିଲା । ପ୍ରାଣୀମାନଙ୍କ ଉନ୍ନତି ନିମନ୍ତେ ସେ ଅଭିପ୍ରାୟବାନ୍ । ସାଂସାରିକ ଉତ୍ପାତଗୁଡ଼ିକୁ ସେ ନାଶ କରିବାରେ ଦକ୍ଷ ହୋଇଥାନ୍ତି । ତାଙ୍କର ଶରୀର କାନ୍ତି ଗୌର ।

ଏକେନଗୌରୀ ସାମ୍ୟମ୍ :—

**ସର୍ବାଭୀଷ୍ଟ ସିତଲ୍କ୍ଷ୍ମୀଧରପରମପଦଶୋଭିନ୍ଦ୍ରବିଖ୍ୟାତହେତୁ—**
**ର୍ମାତା ଚଣ୍ଡିକସ୍ୟ ଦୃପ୍ୟନ୍ମଧୁବଧୁମୁଦିତାଦିତ୍ୟଗୀତପ୍ରଶସ୍ତିଃ ।**
**ପାତାଚଣ୍ଡୀଦିତିଦୈତ୍ୟାଭିଭବନଖରରୁକ୍‌ଚନ୍ଦ୍ରିକାଚନ୍ଦ୍ରୋତ୍ତମାଙ୍ଗ—**
**ଶ୍ରୀରସ୍ମାନ୍ ସର୍ବଦୋଚମଶ୍ଚର ଉଦିତରତଃ କେଳିକାନ୍ତାଙ୍ଗସଂଭୃତ୍ ।୬୫।**

ସର୍ବ ବସ୍ତୁ ପ୍ରଦ, ମା ଲକ୍ଷ୍ମୀଙ୍କର ଈଶ୍ୱର (ଲକ୍ଷ୍ମୀପତି) ଜଗନ୍ନାଥ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ କେଳି ନିମନ୍ତେ ନିଜ କାନ୍ତା ଲକ୍ଷ୍ମୀଙ୍କୁ ସ୍ୱଶରୀରରେ ଧାରଣ କରିଥାନ୍ତି । ତାଙ୍କ ଠାରୁ ସବୁବେଳେ ଅନୁରାଗ ବାହାରୁ ଥାଏ । ତାଙ୍କର ମସ୍ତକରେ ମୟୂରପୁଚ୍ଛ ଶୋଭା ପାଉ-ଥାଏ । ଅତ୍ୟନ୍ତ ଉଗ୍ର ପ୍ରଥମ ଦୈତ୍ୟ (ହିରଣ୍ୟ କଶିପୁ)ର ପରାଭବ ନିମନ୍ତେ ସେ ତାଙ୍କ ନଖ ଗୁଡ଼ିକର ଦୀପ୍ତି ଦେଖାଇଥିଲେ । ଗର୍ବୀ ମଧୁ ଦୈତ୍ୟକୁ ବଧ କରିବାରେ ଆନନ୍ଦିତ ଦେବତା ମାନେ ତାଙ୍କୁ ଅତି ଉଚ୍ଚ ପ୍ରଶଂସା କରିଥିଲେ । ସେ (ଚତୁର୍ଦ୍ଦଶ) ବ୍ରହ୍ମାଣ୍ଡର ନିର୍ମାତା । ସେ ସମସ୍ତଙ୍କର ପୂଜ୍ୟ । ନୀଳାଚଳର ଯଶ ରୂପକ ସମ୍ପତ୍ତି ବିଖ୍ୟାତ ହେବାରେ ସେ କାରଣ ହୋଇ ରହିଅଛନ୍ତି ।

ଗୌରୀ ପକ୍ଷେ :—

ଗୌରୀ ସମସ୍ତଙ୍କର ଆରାଧ୍ୟା । କୈଳାସ ଗିରିର ସମସ୍ତ ଯଶ ସମ୍ପତ୍ତିର ସେ ହିଁ କାରଣ । (ସକଳ) ଲୋକର ସେ ମାତା । ଚଣ୍ଡ ଆଦି ଦୈତ୍ୟମାନଙ୍କୁ ପରାଭବ ଦେବାରେ ତାଙ୍କର ଅତି ତୀକ୍ଷ୍ଣ ତେଜ ଥିଲା । ଈଶ୍ୱର (ଶିବ)ଙ୍କ ଠାରେ ତାଙ୍କର ଅନୁରାଗ ବିଶେଷ ଭାବରେ ଉଦ୍‌ଗତ ହୋଇଥିବାରୁ ସେ କ୍ରୀଡ଼ା ନିମନ୍ତେ ସ୍ୱକାନ୍ତ ଶିବଙ୍କ (ବାମ) ଅଙ୍ଗକୁ ଆଶ୍ରୟ କରିଛନ୍ତି । ଖଣ୍ଡିତ ଚନ୍ଦ୍ର ଯୋଗେ ତାଙ୍କ ମସ୍ତକର ଶୋଭା ବୃଦ୍ଧି ପାଉଅଛି । ତାଙ୍କର ନାମ ଉମା ମଧ୍ୟ । ଦୃପ୍ତ ମଧୁଦୈତ୍ୟକୁ ବଧ କରିବାରେ ଦେବତାମାନେ ଖୁସି ହୋଇ ତାଙ୍କର

ଉକ୍ତ ସ୍ତୁତି କରିଥିଲେ । (ବ୍ରହ୍ମସ୍ତୁତିରେ ସନ୍ତୁଷ୍ଟ ହୋଇ ଭଗବତୀ ଭଗବାନଙ୍କ ଯୋଗ ନିଦ୍ରାରୁ ଉଠାଇ ଦେଇଥିଲେ । ଭଗବାନ ମଧୁଦୈତ୍ୟଙ୍କୁ ବିନାଶ କରିଥିଲେ ବୋଲି ଚଣ୍ଡୀରେ ଅଛି) ।

ବାଗ୍ଦେବୀ ଧ୍ୟାନମ୍ :—

ଶ୍ରୀମଦ୍ ଗୌରାମ୍ବରାଡମ୍ବରରୁଚିରପୟୋରାଶିଶିତ୍ୟଙ୍ଗଲକ୍ଷ୍ମୀ
ର୍ଲକ୍ଷ୍ମୀଶେଶନାଦ୍ୟୈ ର୍ତାଙ୍ଗସ୍ତୁ ତ ଚିତମସ୍ତମନଃ ସଂଗତ-ବାଙ୍ମନତାଂଘ୍ରିଃ ।
ବ୍ରହ୍ମାନନ୍ଦୈକଭୂମିର୍ଭ୍ରମଶମନପଟୁଃ ସ୍ୱାଶ୍ରିତାନାମବଦ୍ୟାଂ
ଭିଦ୍ୟାଦସ୍ମତ୍କଦେହାହୃତସକଳଜଗଦ୍ଧୀରମେୟସ୍ଥିତିର୍ନଃ ।୨୭।

ସରସ୍ୱତୀ ସାର୍ଥ :—

ଶ୍ରୀ ଜଗନ୍ନାଥ ଆମ୍ଭମାନଙ୍କର ମାୟା ଛେଦନ କରନ୍ତୁ । ସେ ଶୋଭିତ ପୀତବସନରେ ସୁନ୍ଦର ଦେଖାଯାଉ ଅଛନ୍ତି । ତାଙ୍କ ଶରୀର କାନ୍ତି ସମୁଦ୍ର (ଜଳସମୂହ) ପରି ନୀଳ । ତାଙ୍କୁ ଲକ୍ଷ୍ମୀ, ଶିବ ଓ ସୂର୍ଯ୍ୟ ଆଦର (ପୂଜା) କରନ୍ତି । ତାଙ୍କଠାରେ ଦେବତାମାନଙ୍କର ମିଳନ ହୋଇଥାଏ । ସରସ୍ୱତୀ ତାଙ୍କର ଚରଣ ଦୁଇଟିକୁ ପ୍ରଣାମ କରନ୍ତି । ଭକ୍ତମାନଙ୍କ ଅଜ୍ଞାନ ନାଶ କରିବା ଦିଗରେ ଅତି ଦକ୍ଷ ସେ । ସେ ବ୍ରହ୍ମାନନ୍ଦର ସ୍ଥାନ । ସୂକ୍ଷ୍ମ ଦେହରେ ସମସ୍ତ ଜଗତକୁ ସେ ରଖି ପାରନ୍ତି । ପଣ୍ଡିତମାନେ ହିଁ ତାଙ୍କର ଅବସ୍ଥିତି ସ୍ଥିର କରି ପାରନ୍ତି ।

ସରସ୍ୱତୀ ପକ୍ଷେ :—

ସରସ୍ୱତୀ ଆମର ମାୟା ନାଶ କରନ୍ତୁ । ସେ ସୁନ୍ଦର ଧଳା ଲୁଗା ପରିଧାନ କରି ସୁନ୍ଦର ଦେଖା ଯାଉଅଛନ୍ତି । ଦୁଗ୍ଧରାଶିପରି ତାଙ୍କର ଶରୀର କାନ୍ତି ଶୁକ୍ଳ । ବିଷ୍ଣୁଙ୍କଦ୍ୱାରା ସେ ଆଦୃତ ଏବଂ ପ୍ରଫୁଲ୍ଲ ପୁଷ୍ପରାଜିର ମିଳନ ତାଙ୍କଠାରେ ହୋଇଅଛି (ବିଷ୍ଣୁ ଯେଉଁ ଫୁଲକୁ ଭଲପାନ୍ତି ସରସ୍ୱତୀ ମଧ୍ୟ ସେଗୁଡ଼ିକୁ ଭଲପାନ୍ତି) । ଭକ୍ତମାନେ ତାଙ୍କର ଚରଣ ସେବା କରନ୍ତି । ତାଙ୍କୁ ପାଇଲେ ବ୍ରହ୍ମାନନ୍ଦ ପାଇଲା ପରି ହୁଏ । ଭକ୍ତମାନଙ୍କର ଅଜ୍ଞାନ ନାଶ କରିବାରେ ସେ ଧୁରନ୍ଧର । ତାଙ୍କର ସୂକ୍ଷ୍ମ ଦେହରେ ସେ ସକଳ ଜଗତକୁ ଧରି ରଖିଛନ୍ତି । ତାଙ୍କର ସ୍ଥିତି ପଣ୍ଡିତମାନେ ହିଁ କରିପାରନ୍ତି ।

ଗଣେଶ ଧ୍ୟାନମ୍ :—

ହସ୍ତୋଦ୍ୟତ୍ପୁଷ୍କରଶ୍ରୀଃ ଶ୍ରୁତଶିଖରଧୁତୋନ୍ନତଶତାଳଲେଖୋ—
ଽଳଂକର୍ତ୍ତା ଷାମମଧ୍ୟସ୍ତ୍ରିପୁରହରତନୂ ଦକ୍ଷପକ୍ଷସ୍ୟ ରକ୍ଷ୍ୟାତ୍ ।
ଯଦ୍ଦେବ୍ୟାଽବଦ୍ୟାନ୍ଧକାରାପୂରଶୁଧରପ୍ରସ୍ଥାର୍ଯ୍ୟଭୂବାର୍ଯ୍ୟବୀର୍ଯ୍ୟୋ—
ଦେବଃ ଶ୍ରୀପାର୍ବତୀବାଗ୍ବିଧିବତପଶାଃ ସ୍ୱର୍ଗବର୍ଗାଗ୍ରପୂଜ୍ୟଃ ।୨୭।

ଗଣେଶ ସାମ୍ୟ :—

ଦେବ ଶ୍ରୀ ଜଗନ୍ନାଥ ଅଜ୍ଞାନ ଅନ୍ଧକାରରୁ ଅତିଶୀଘ୍ର ଉଦ୍ଧାର କରନ୍ତୁ । ସେ ସ୍ୱର୍ଗରେ ଥିବା (ଇନ୍ଦ୍ରାଦି) ସମସ୍ତଙ୍କର ପୂଜ୍ୟ ଅଟନ୍ତି । ତାଙ୍କର କୀର୍ତ୍ତି ଲକ୍ଷ୍ମୀ, ପାର୍ବତୀ, ସରସ୍ୱତୀ ଓ ବ୍ରହ୍ମାଙ୍କଦ୍ୱାରା ବିସ୍ତାରିତ ହୋଇଅଛି । ତାଙ୍କୁ ପରଶୁଧାରୀ ଶିବ ପୂଜା କରନ୍ତି ଏବଂ ତାଙ୍କର ପରାକ୍ରମ ଦୁର୍ଦ୍ଧର୍ଷ । ତାଙ୍କର କଟି ଅତି କ୍ଷୀଣ ଏବଂ ସେ ଶିବଙ୍କ ଶରୀରର ଦକ୍ଷିଣ ଭାଗ ଅଳଙ୍କୃତ କରିଥାନ୍ତି (ହରିହର ମିଳନବେଳେ) । ତାଙ୍କର ହାତରେ ପଦ୍ମ ଅଛି ଏବଂ ତଦ୍ୱାରା ସେ ଶୋଭିତ । ଉନ୍ମତ୍ତ ନାସ୍ତିକମାନଙ୍କର ଲେଖାଗୁଡ଼ିକୁ ସେ ବେଦର ଶ୍ରେଷ୍ଠଭାଗ (ଉପନିଷଦ୍) ଦ୍ୱାରା ଖଣ୍ଡିତ (କମ୍ପିତ) କରିଅଛନ୍ତି । (ବେଦ ଉଦ୍ଧାରକଙ୍କଦ୍ୱାରା ନାସ୍ତିକ ବାଦଗୁଡ଼ିକ କଟିଗଲା) ।

ଗଣେଶ ପକ୍ଷେ :—

ଗଣେଶ ଉନ୍ମତ୍ତ ଭ୍ରମର ସମୂହକୁ ନିଜର କର୍ଣ୍ଣାଗ୍ରରେ (ଶୁଣ୍ଡାଗ୍ର) ବାରବାର ତଡ଼ିବାରେ ଲାଗିଅଛନ୍ତି । (ପୁତ୍ରଭାବରେ) ସେ ଶିବଙ୍କର ଶରୀରର ଦକ୍ଷିଣଭାଗକୁ ଅଳଙ୍କୃତ କରିଥାନ୍ତି । ତାଙ୍କର କଟି ଅତି ସ୍ଥୂଳ । ସ୍ୱର୍ଗରେ ଥିବା ଦେବତାଙ୍କ ମଧ୍ୟରେ ସର୍ବାଗ୍ରେ ସେ ପୂଜିତ ହୁଅନ୍ତି (ତା ପରେ ଅନ୍ୟ) । ଲକ୍ଷ୍ମୀ, ପାର୍ବତୀ, ସରସ୍ୱତୀ ଓ ବ୍ରହ୍ମା ତାଙ୍କର ଯଶ ବିସ୍ତାର କରିଅଛନ୍ତି । ସେ ମଧ୍ୟ ହାତରେ ପଦ୍ମଫୁଲ ଧରି ଶୋଭା ପାଆନ୍ତି । ଶୀଘ୍ର ସେ ଅବିଦ୍ୟା ରୂପକ ଅନ୍ଧକାରରୁ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ସୂର୍ଯ୍ୟ ସାମ୍ୟମ୍ :—

**ଛାୟାକାନ୍ତଃ କୃତାନ୍ତାର୍ଚ୍ଚିତଚରଣଯୁଗଃ ପାଣିରାଜତ୍ ସରୋଜଃ**
**ସ୍ୱାଗ୍ରୋଦ୍ୟଦ୍‌ବୈନତେୟୋ ରଜନିଚରସୁଖୋଚ୍ଛିତ୍ତ୍ୟୁଦ୍‌ବେଲ୍ଲଦକ୍ଷଃ ।**
**ସ୍ୱଚ୍ଛାନନ୍ତାଙ୍କଲୀଳଃ କ୍ଷପିତତମତମାଃ ସର୍ବତେଜୋଽଭିଭାବୀ**
**କାଳିନ୍ଦ୍ୟାନନ୍ଦକନ୍ଦଃ ପ୍ରମୁଦିତକମଳଃ ପାତୁ ପଙ୍କାମ୍ବରାର୍ଣ୍ଣଃ ।୨୮।**

ସୂର୍ଯ୍ୟ ସାମ୍ୟ :—

ଶ୍ରୀ ଜଗନ୍ନାଥ ପାପରୁ ଅମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ଲକ୍ଷ୍ମୀଙ୍କୁ ଆନନ୍ଦିତ କରାଇଥାନ୍ତି । ଯମୁନା ନଦୀକୁ ସେ ଅନେକ ଆନନ୍ଦ ଦେଇଅଛନ୍ତି । ସମସ୍ତ ତେଜଃ ପୁଞ୍ଜକୁ ସେ ଦବାଇ ଦେଇଥାନ୍ତି । ସେ ଅଜ୍ଞାନକୁ ନାଶ କରନ୍ତି । ଶୁକ୍ଳ ଅନନ୍ତ (ଶେଷ)ଙ୍କର କୋଳରେ (ଶରୀରରେ) ସେ କ୍ରୀଡ଼ା କରିଥାନ୍ତି (ଶୋଇଥାନ୍ତି) । ତାଙ୍କର ସାମନାରେ ଗରୁଡ଼ ବରାବର ବିରାଜିତ ଥାନ୍ତି । ରାକ୍ଷସମାନଙ୍କର ସମସ୍ତ ସୁଖ ନାଶ କରିବାରେ ସେ ଅତି ଦକ୍ଷ । ଯମ ସ୍ୱୟଂ ତାଙ୍କର ଚରଣ ସେବା କରନ୍ତି । ତାଙ୍କର ହାତରେ ପଦ୍ମ ଶୋଭା ପାଉଥାଏ । ସେ ଦେଖିବାକୁ ଛାୟାପତି କମନୀୟ (କଳା) ।

ସୂର୍ଯ୍ୟ ପକ୍ଷେ :—

ସର୍ବ ପାପରୁ ଆମ୍ଭମାନଙ୍କୁ ଉଦ୍ଧାର କରନ୍ତୁ । ସେ ସ୍ୱସ୍ଥ୍ୟ ଦେବାଙ୍କର ସ୍ୱାମୀ ଅଟନ୍ତି । (ପିତା ହେବୁ) ଯମ ତାଙ୍କର ପାଦପୂଜା କରନ୍ତି । ତାଙ୍କ ହାତରେ ପଦ୍ମ ଥାଏ । ତାଙ୍କର ସାମନାରେ ଅରୁଣ ବରାବର ବିରାଜିତ ଥାନ୍ତି । (ବିନତାଙ୍କଠାରୁ ଗରୁଡ଼ ଓ ଅରୁଣ ଜନ୍ମ ଥିବାରୁ ଉଭୟେ ବୈନତେୟ) । ରାତ୍ରି ଭରେ ଚୋରକ ଆଦିଙ୍କର ସମସ୍ତ ସୁଖନାଶ କରିବାରେ ସେ ଅତ୍ୟନ୍ତ ପଟୁ । ସ୍ୱଚ୍ଛ ଆକାଶରେ (ଅନନ୍ତ ର ନାମ,ଭର ଆକାଶ) ସେ ବରାବର ଲୀଳା ଲଗାଇଛନ୍ତି । ସେ ଅନ୍ଧକାରକୁ ଅନାୟାସ ଭାବରେ ନଷ୍ଟ କରିଦେଇଥାନ୍ତି । ନିଜ କନ୍ୟା କାଳନ୍ଦୀର ସେ ସୁଖଦାୟକ ଏବଂ ସେ ସର୍ବଦା ପଦ୍ମକୁ ଆମୋଦିତ କରି ରଖିଛନ୍ତି (ସୂର୍ଯ୍ୟ ଉଦୟରେ ପଦ୍ମ ଫୁଟେ) ।

ବିଶେଷଣୈର୍ନବଗ୍ରହ ସାମ୍ୟ :—

**ପଦ୍ମାନନ୍ଦୈକସଦ୍ମାମୃତନିଧିରବନୀନନ୍ଦନଶ୍ଚନ୍ଦ୍ରବଂଶୋ—**
**ତ୍ତଂସଃ ସ୍ୱର୍ଗେଶବର୍ଗୈଡ଼ିତଚରଣଯୁଗଃ ସଦ୍‌କବିଦ୍ୱାଶ୍ରୟଶ୍ଚ ।**
**ପକ୍ଷୀଭୂତୋରୁପକ୍ଷୀ ଜନନୟନଚୟାଗୋଚରୋ ନୀଚକେତୁ—**
**ର୍ଜ୍ୟୋତିଷ୍ମାନଚ୍ୟୁତୋଽସ୍ମାନବତୁ ଭବଭୟାଦାଶୁବିଶ୍ୱଗ୍ରହାତ୍ମା ।୬୯।**

ନବଗ୍ରହ ସାମ୍ୟ :—

ଜ୍ୟୋତିର୍ମୟ, ଅଚ୍ୟୁତ ଓ ବିଶ୍ୱରୂପକ ଗ୍ରହର ଆତ୍ମା ଶ୍ରୀ ଜଗନ୍ନାଥ ସଂସାର ଭୟରୁ ଶୀଘ୍ର ଆମ୍ଭମାନଙ୍କୁ ରକ୍ଷାକରନ୍ତୁ । ସେ ସତ୍ କବିଙ୍କର ଆଶ୍ରୟ (ସୃଷ୍ଟି ନିର୍ମାତା-ଯେ ନିର୍ମାଣ କରେ ସେ କବି—କବିପୁଙ୍ଗବ) ହୋଇ ମଧ୍ୟ ଲୋକଚକ୍ଷୁର ଅଗୋଚର । ଗରୁଡ଼ ତାଙ୍କର ବାହନ । ନୀଚ ପାଷଣ୍ଡମାନଙ୍କର ସେ ଧୂମକେତୁ (ସ୍ୱରୂପ) । ଇନ୍ଦ୍ରାଦି ଦେବତାମାନେ ତାଙ୍କର ପଦଦ୍ୱୟ ପୂଜା କରନ୍ତି । ଚନ୍ଦ୍ରବଂଶୀୟ ଯାଦବ ବଂଶର ସେ ଶିରୋଭୂଷଣ । ସେ ଜଗତର ପୃଥିବୀର ଆନନ୍ଦଦାୟକ । ଅମୃତର (ମୋକ୍ଷର) ସେ ଆଶ୍ରୟ ସ୍ଥଳ । ଲକ୍ଷ୍ମୀଙ୍କର ସେ ଏକମାତ୍ର ଆନନ୍ଦ-ଗୃହ ।

ନବଗ୍ରହ ପକ୍ଷେ :—

ପଦ୍ମଗୁଚ୍ଛକର ଆନନ୍ଦଗୃହ ରବି, ସୁଧାଶ୍ରୟୀ ଚନ୍ଦ୍ର, ଭୂମିପୁତ୍ର ମଙ୍ଗଳ, ଚନ୍ଦ୍ରଙ୍କ ବଂଶର ଭୂଷଣ ବୁଧ, ଇନ୍ଦ୍ରାଦି ଦେବତାମାନଙ୍କଦ୍ୱାରା ପୂଜିତ ବୃହସ୍ପତି, ସତ୍ କବିତ୍ୱାଶ୍ରୟ ଅର୍ଥାତ୍ କବି ଶୁକ୍ର, ଗୃଧ୍ରବାହନ ଶନି, କାହାରି ଆଖିକୁ ଦେଖାଯାଉ ନ ଥିବା ରାହୁ ଓ ଚଣ୍ଡାଳ ଅଧିପତି କେତୁ ଆମ୍ଭମାନଙ୍କୁ ସଂସାର ଭୟରୁ ଶୀଘ୍ର ରକ୍ଷା କରନ୍ତୁ । ରବିବିମ୍ବ, ଗ୍ରହର (ସବୁଗ୍ରହର) ଆତ୍ମା ଓ ଜ୍ୟୋତିର୍ମୟ ମଧ୍ୟ (ଅନ୍ୟ ଯାହା ପକ୍ଷରେ ଏ ଦୁଇଟି ବିଶେଷଣ ଲଗିପାରିବ, ଲଗାଇବାକୁ ହେବ) ।

ବନ୍ଦେ ବନ୍ଦାରୁବୃନ୍ଦାରକନକରଶିଖାରତ୍ନନକ୍ଷତ୍ରରାଜୀ—
ରଜ୍ୟତ୍ପାଦାରବିନ୍ଦସ୍ଫୁଟନଖରବିଧୁଧ୍ୱସ୍ତଚେତସ୍ତମସ୍କମ୍ ।
କୋଟିବ୍ରୀଡ଼ାଣ୍ଡଭାଣ୍ଡପ୍ରକଟଗୁଣଘଟୈଃ ସେବିତଂ ସ୍ୱାବତାରୈଃ
ଶ୍ରୀମଦ୍‌ଗୋବିନ୍ଦମିନ୍ଦୀବରରୁଚିରତନୁମିନ୍ଦିରାନନ୍ଦକନ୍ଦମ୍ ।୩୦।

## ଗୋବିନ୍ଦଙ୍କ ବନ୍ଦନା

ଶ୍ରୀ ଗୋବିନ୍ଦଙ୍କୁ ମୁଁ ପ୍ରଣାମ କରୁଅଛି । ପ୍ରଣାମ କରୁଥିବା ଦେବବୃନ୍ଦଙ୍କର ଶିଖାରେ ଥିବା ନକ୍ଷତ୍ର ରୂପକ ରତ୍ନ ସମୂହରେ ତାଙ୍କର ଚରଣକମଳ ତେଜୋଦୀପ୍ତ ଦେଖାଯାଏ । ତାଙ୍କର ନଖଗୁଡ଼ିକ ଚନ୍ଦ୍ର ପରି ଉଜ୍ଜଳ ହୋଇଥିବାରୁ ହୃଦୟାନ୍ଧକାରକୁ ନଷ୍ଟ କରିଦିଏ । କୋଟି ସଂଖ୍ୟକ ବ୍ରହ୍ମାଣ୍ଡରୂପକ ଭାଣ୍ଡ ତାଙ୍କର ଗୁଣଗ୍ରାମ ପ୍ରକାଶ କରୁଅଛନ୍ତି । ସେ ନିଜର ଅବତାରମାନଙ୍କକର୍ତ୍ତୃକ ମଧ୍ୟ ପରିପୂଜିତ । ତାଙ୍କର ଦେହ ନୀଳକମଳ ପରି ମନୋହର ଏବଂ ସେ ଲକ୍ଷ୍ମୀଙ୍କର ଆନନ୍ଦର ଝରଣା (ଆନନ୍ଦ ଦାୟକ) ।

## ଦଶାବତାର ସ୍ତୁତଃ

ମୀନୋଽଲୀନୋ ନଦୀନୋଦର ଉଷିତରୁଷିବ୍ରାତଗୋଷ୍ଠୀତରୀସ୍ଥଂ
ପାତୁଂ ସତ୍ୟବ୍ରତଂବାତରଦଦ୍ଧ ସୁମହାହାର୍ଯ୍ୟସନ୍ଦୋହଦେହଃ ।
ବେଦେଦ୍ଧାଗ୍ରୟ ଯୋଽଦ୍ଧା ବ୍ୟଧିତବଧମଦଶୌଣ୍ଡୀରବୃତ୍ରାରିଶତ୍ରୋ-
ସ୍ତ୍ରାଣଂ ତାପନ୍ନୟାନ୍ନଃ ତ୍ରିପୁରହର ପୁରସ୍କାରପାତ୍ରଂ ତନୋତୁ । ୩୧ ।

କୂର୍ମୋଽଶର୍ମୋପନର୍ମୋଚୟତୁ ରୟଭରଭ୍ରାନ୍ତମନ୍ଥସ୍ଥିସନ୍ଧୁ—
ଭ୍ରୂରଗ୍ରାବାଗ୍ରସଂଘଟନଘଟିତମହାତ୍ୱଷ୍ଟୁକଣ୍ଡୂତସୌଖ୍ୟଃ ।
ପଙ୍କଙ୍କୋଚଙ୍କଲେନୋଚ୍ଛଳଦଚଳହୃଦାଂ ମୀଳନଂ ସ୍ୱାଶ୍ରିତେଭ୍ୟୋ-
ଽନର୍ଥେଭ୍ୟଃ ପ୍ରୋତ୍‌ଥିତାସ୍ୟେନ ଚ ପବନସମୁତ୍‌ଥାନମର୍ଥାପୟନ୍ନଃ ।୩୨।

କୋଲଃ କୋଲଂ କୁଗୋଲଂ ଦଧଦଧିଜଲଧୀବାଧ ଉଦ୍ଧୃତ୍ୟ ଦନ୍ତ—
ପ୍ରାନ୍ତେଽଶାନ୍ତେ ଦୁରନ୍ତେ ପ୍ରଥମଦଣ୍ଡସୁତେ ବୃଦ୍ଧଦୁର୍ଦ୍ଧର୍ଷଯୁଦ୍ଧୈଃ ।
ଦେୟାଦାୟାସହନୋ ଦ୍ରୁହିଣହରହୟାଦ୍ୟାଦତେୟାର୍ହଣୀୟଃ—
ଶ୍ରେୟୋଦାମ୍ନାୟଗେୟକ୍ରତୁଜନୟମୟାମେୟକାୟଃ ଶ୍ରିୟଂ ନଃ ।୩୩।

ଅଂଘଃସଂଘଂ ନୃସିଂହୋ ଭବତୁ ଭବହରୋଽହ୍ନାୟ ସଂହର୍ତ୍ତୁମର୍ହୋ—
ଗର୍ହନ୍ନିର୍ହ୍ରାଦବୃନ୍ଦୈଃ ପ୍ରଳୟଜଳଧର ଧ୍ୱାନଧାରାସମୃଦ୍ଧିମ୍ ।
ଅକ୍ଷାନ୍ତ ସ୍ୱୀୟ ଭକ୍ତାକ୍ଷତରମରପରାଧ୍ୟକ୍ଷବକ୍ଷଃ କବାଟ—
କ୍ଷୋଭପ୍ରକ୍ଷର୍ଯ୍ୟମାଣକ୍ଷତଜଭୃତନଖୋ ଲକ୍ଷ୍ୟ ଲକ୍ଷ୍ମୀକବକ୍ଷାଃ ।୩୪।

ଖର୍ବୀକୁର୍ବୀତ ଦର୍ବୀକରଭୁବନକଗୀର୍ବାଣବର୍ଗାଳୟୋର୍ବୀ—
ଗର୍ଗାନର୍ବାକ୍ସୁପର୍ବାର୍ଯ୍ୟବନଧବମହାସଂପଦଂ ଲୁଂପମାନଃ ।
ବ୍ୟାପଦ୍ଧ୍ୟାପଚୟଂ ପତ୍ତ୍ରିତୟରୟଭରଦର୍ଶନାବ୍ୟାଜଖର୍ବଃ—
ସର୍ବଂ ଶର୍ବାଦସେବ୍ୟଃ ସ୍ରବଦମରଧୁନୀନୀରପର୍ଣ୍ଣୀରଜୋ ଯଃ ।୩୫।

ଷଷ୍ଠଃ କ୍ଷ୍ମାପ୍ରେଷ୍ଠଗୋଷ୍ଠୀକୁଠଗଣଲୁଠନାକୁଣ୍ଠତେଜଃକୁଠାରଃ—
ଶ୍ରୀବୈକୁଣ୍ଠାବତାରଃ କଠିନରଣଧୁରାଦୃଷ୍ଟଷଷ୍ଠୀଶଦୃଷ୍ଟଃ ।
ତଷ୍ଟୁନ୍‌କଣ୍ଠୀରବାଭୋଽର୍ଜ୍ଜୁନସୁଭଟଘଟାଘୋରମାତଙ୍ଗଯୂଥେ
ଶ୍ରେଷ୍ଠଃ କଷ୍ଟାନ ନଷ୍ଟେ କ୍ଷୟତୁ ଭୃଗୁଭୁବାଂ ନୀଳକଣ୍ଠାଂଘ୍ରିନିଷ୍ଠଃ ।୩୬।

ରାମଃ ଶାମାବ୍‌ଜଧାମା ଶମୟତୁ ସ ମମାଶର୍ମ ଘର୍ମାଂଶୁବଂଶୋ—
ତ୍ତଂସଃ ସଂସାରହଂସାବହମହମମହାମ୍ଭୋଧିରମ୍ଭୋଜନେତ୍ରଃ ।
ଶୌଣ୍ଡଶ୍ଚଣ୍ଡୀଶକାଣ୍ଡାସନବଳଦଳନେ ଦଣ୍ଡକାରଣ୍ୟଚାରୀ
ହାରୀ ବାରୀଶତାରୀ ସୁରପରବ୍ରସରପ୍ରାଣହାରୀଷୁଧାରୀ ।୩୭।

ଉଦ୍ଗର୍ଜ୍ଜଦ୍ଭେଜ୍ୟୋତରୁକ୍ଷ୍ମସ୍ଥଳବମଳହରହାର୍ଯ୍ୟରୁଗ୍ ରୈବତାଦ୍ରେଃ
ସଦ୍ୟଃ ପ୍ରୋଦ୍ୟଦ୍ଦିନେଶଭ୍ରମଦମଦଭରାଘୂର୍ଣ୍ଣିତାସ୍ତୀର୍ଣ୍ଣନେତ୍ରଃ ।
ପ୍ରତ୍ୟଗ୍ରାମ୍ଭୋଦବୃନ୍ଦପ୍ରତଭଟପଟଭୃଦ୍ଭୂରିବାସ୍ୱଦ୍‌ବଭୂଷୋ—
ଭୂୟାଦ୍ଭୂଗୋଲଧାରୀ ଭବଭୟଭରଭିଦ୍ଭାନୁଭୂଦ୍ଭେଦନୋ ନଃ ।୩୮।

ଅଧ୍ୟାତ୍ମଧ୍ୟାନବନ୍ଧାଦରବଧୃତଧୃତଧ୍ୱସ୍ତଶୁଦ୍ଧାଧ୍ୱରାଧ୍ୱ—
ଶ୍ରଦ୍ଧଃକ୍ରୋଧାଦିରୋଧାଦ୍‌ବଧ୍ୟବହୃତ କଥା ସାଧୁତାହିଦ୍ଧବୋଧଃ ।
ଦଧ୍ୟାଦ୍‌ବୁଦ୍ଧାଭିଧାନୋ ମଗଧଧରଣିଭୃଲ୍ଲବ୍ଧଜନ୍ମାଧିଦେବୋ—
ବାଧାବଦ୍ଧ୍ୟନ୍ଧକାରଦ୍ୟୁର୍ଯ୍ୟାଂ ଧିୟମଧନଧନଂ ଧର୍ମଧାରାଂ ଧରନ୍ନଃ ।୩୯।

ନିର୍ଦ୍ଧୂତାଧିମଧାରାଧରନକରନଭୋମଧ୍ୟବଦ୍ୟୋତମାନ—
ଦ୍ୟୋତପ୍ରାଗ୍‌ଭାରବାସ୍ତୃତ୍ ଭ୍ରମକରକରଯୁଙ୍‌ଣ୍ଡଳାଗ୍ରପ୍ରଚଣ୍ଡଃ ।
ସ୍ୱାଧାସ୍ୱଧୀରଘୋରେଙ୍କୁରତୁରଗଖୁରକ୍ଷୋଦଦକ୍ଷୋଣିରେଣୁ—
ଛନ୍ନଚ୍ଛାୟେଣ ଇଶୋ ଦଶତୁ ଦଶମକୋ ମ୍ଲେଚ୍ଛବିଚ୍ଛେଦକୃଚ୍ଛମ୍ ।୪୦।

## ଦଶାବତାର ସ୍ତୁତ

ମୀନାବତାର :—

ମୀନ ଅବତାରଧାରୀ ଭଗବାନ୍ ଶ୍ରୀ ଜଗନ୍ନାଥ ତାପତ୍ରୟରୁ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ଶିବଙ୍କର ପୂଜାପାତ୍ର । ବୃତ୍ର ଶତ୍ରୁ ଇନ୍ଦ୍ରଙ୍କର ଶତ୍ରୁର (ଶଙ୍ଖାସୁରର) ସେ ବଧବିଧାନ କରିଥିଲେ । ଶଙ୍ଖାସୁର ବେଦ ଚୋର ଥିଲା । ତେଣୁ ବେଦ ଉଦ୍ଧାର କରିବା ନିମନ୍ତେ ସେ ନିଶ୍ଚିତ ଭାବରେ ତାର ବିନାଶ ସାଧନ କରିଥିଲେ । ତାଙ୍କର ଦେହ ଅତି ବଡ଼ ବଡ଼ ପର୍ବତ ସମୂହ ପରି ବିଶାଳ ଥିଲା । ତେଣୁ ସମୁଦ୍ର ଗର୍ଭରେ ରହିପି ପାରିଲା ନାହିଁ । ତଥା ରୂପକ ପୃଥିବୀରେ ଥିବା ନଦୀଗଣ-ମଧ୍ୟ-ଗତ ଦୁଃଖିତ ସତ୍ୟବ୍ରତଙ୍କୁ ଉଦ୍ଧାର କରିବା ନିମନ୍ତେ ସେ (ଅନ୍ୟ) ଅବତାର ମଧ୍ୟ ଗ୍ରହଣ କରିଥିଲେ ।

କୂର୍ମାବତାର :—

କୂର୍ମରୂପୀ ଶ୍ରୀ ଜଗନ୍ନାଥ ଆମ୍ଭମାନଙ୍କର ଅମଙ୍ଗଳ ଦୂର କରନ୍ତୁ । ତାଙ୍କର ବିଶାଳ ପୃଷ୍ଠ ଦେଶରେ ମନ୍ଥନଦଣ୍ଡ ରୂପୀ ମନ୍ଦର ଗିରିର ଅତିଶୀଘ୍ର ଘୂର୍ଣ୍ଣନ ହେତୁ ଅନେକ ଗୁଡ଼ିଏ ପଥରର ଅଗ ଘଷି ହୋଇ ପୃଷ୍ଠ କଣ୍ଡୂ ନିବାରିତ ହୋଇଥିଲା ଏବଂ ଏଥିରୁ ସେ ଅତ୍ୟନ୍ତ ସୁଖ ଉପଭୋଗ କରୁଥିଲେ । ସେ ନିଜେ ନିଜର ପାଦ ସଙ୍କୋଚ କରି ବକ୍ଷିପ୍ତ ଲୋକମାନଙ୍କୁ ନିଜେ ଅଙ୍ଗ ଥିବା ଅନର୍ଥରୁ ସଂକୁଚିତ ହୋଇଯିବାକୁ ଏବଂ ପ୍ରୀତି ମେଳ କରିବାଦ୍ୱାରା (ନିଜେ କୂର୍ମ) ପବିତ୍ର କାର୍ଯ୍ୟରେ ପ୍ରବୃତ୍ତ ହେବାକୁ କହୁଥିବା ଭଳି ମନେ ହେଉଛି । (ନ ହେଲେ ପାଦ ସଂକୋଚ ଓ ପ୍ରୀତି ମେଳ କରିବାର ଫଳ କଣ ?) ।

ବରାହାବତାର :—

ବରାହରୂପୀ ଶ୍ରୀ ଜଗନ୍ନାଥ ଆମର ମଙ୍ଗଳ ବିଧାନ କରନ୍ତୁ । ସେ ଯଜ୍ଞମୟ ଓ ଅନନ୍ତ । ଶ୍ରେୟପ୍ରଦ ବେଦ ତାଙ୍କର କୀର୍ତ୍ତିଗାନ କରୁଛନ୍ତି । ବ୍ରହ୍ମା, ଇନ୍ଦ୍ର ପ୍ରଭୃତି ଦେବଗଣଙ୍କର ସେ ପୂଜ୍ୟ । ପ୍ରବଳ ଓ ଦୁର୍ଭେଦ୍ୟ ଯୁଦ୍ଧରେ ଦୈତ୍ୟଙ୍କର ପ୍ରଥମ ପୁତ୍ର ଦୁର୍ବୃତ୍ତ ହିରଣ୍ୟାକ୍ଷ ନଷ୍ଟ ହୁଅନ୍ତେ ସେ ବିନା ଆୟାସରେ ସମୁଦ୍ରରେ ନାକ ପରି ଦାନ୍ତ ଅଗରେ ପୃଥିବୀକୁ ଟେକି ଉଠାଇ ଧରି ନେଇଥିଲେ ।

ନୃସିଂହାବତାର :—

ସଂସାର ନାଶକ (ଜନ୍ମ ଓ ମୃତ୍ୟୁ ନାଶକ) ନୃସିଂହ ରୂପୀ ଶ୍ରୀ ଜଗନ୍ନାଥ ଶୀଘ୍ର ପାପ ସମୂହ ନାଶ କରିବାରେ ଯତ୍ନ କରନ୍ତୁ (ଯୋଗ୍ୟ ହୁଅନ୍ତୁ) । ତାଙ୍କର ଗୁହରେ ଲକ୍ଷ୍ମୀ ରହି ଅଛନ୍ତି । ସେ ଭକ୍ତମାନଙ୍କର କ୍ଷତକୁ ସହି ପାରନ୍ତି ନାହିଁ । ଦୈତ୍ୟରାଜ ହିରଣ୍ୟକଶିପୁଙ୍କର କବାଟ ରୂପକ ବକ୍ଷକୁ ସେ ଚିରି ଦେବାବେଳେ ସେଥିରୁ (ବକ୍ଷରୁ) ବହୁଥିବା ରକ୍ତରେ ତାଙ୍କର ନଖଗୁଡ଼ିକ (ନଖରନ୍ଧ୍ର) ପୂରି ଯାଇଥିଲା । ଠିକ୍ ଏହିକାବେଳେ ସେ ଯେଉଁ ଘୋର ଗର୍ଜନ କରିଥିଲେ ତଦ୍ଦ୍ୱାରା ପ୍ରଳୟକାଳୀନ ମେଘ ଗର୍ଜନକୁ ତୁଚ୍ଛ କରି ଦେଇଥିଲେ ।

ବାମନାବତାର :—

ବାମନ ରୂପୀ ଶ୍ରୀ ଜଗନ୍ନାଥ ଆମର ବିପଦ ସମୂହ ଖଣ୍ଡନ କରନ୍ତୁ । ସେ ଶିବ ପ୍ରଭୃତି ଦେବଗଣଙ୍କର ସେବ୍ୟ । ତାଙ୍କର ପାଦପଦ୍ମରୁ ଗଙ୍ଗାଜଳ ଝରୁଅଛି । ମାଗିବା ଛଳରେ ସେ ବାମନ ରୂପ ଧାରଣ କରିଥିଲେ । ଦୈତ୍ୟରାଜ (ବଳି) ଙ୍କର ବହୁ ସମ୍ପତ୍ତି ନାଶ କରି ତିନି ପାଦର ବେଗାଧିକ୍ୟରୁ ନାଗଲୋକ ପାତାଳ, ଦେବାଳୟ, ସ୍ୱର୍ଗ ଓ ପୃଥିବୀର ଗର୍ବକୁ ସେ ଆକ୍ରମଣ କରି ନଷ୍ଟକରି ଦେଇଥିଲେ ।

ପର୍ଶୁରାମାବତାର :—

ଭୃଗୁବଂଶର ଶ୍ରେଷ୍ଠ ଶ୍ରୀ ଜଗନ୍ନାଥଙ୍କ ଷଷ୍ଠ ଅବତାର ଓ ବିଷ୍ଣୁଙ୍କ ଅଂଶଧର ପର୍ଶୁରାମ ସ୍ୱୟଂ ବୈକୁଣ୍ଠାବତାର ରୂପରେ ଆମର କଷ୍ଟ ନଷ୍ଟ କରନ୍ତୁ । ସେ ନୀଳକଣ୍ଠ ମହାଦେବଙ୍କର ଭକ୍ତ ଥିଲେ ଏବଂ ତାଙ୍କର ଅକମ୍ପିତ ସିଂହପରି ଥିଲା—ସେତେବେଳେ ସେ କାର୍ତ୍ତବୀର୍ଯ୍ୟଙ୍କ ଯୋଦ୍ଧାମାନଙ୍କୁ ଗଜପରି ମନେ କରୁଥିଲେ । ନିଷ୍ଠୁର ଭାବରେ ଯୁଦ୍ଧ କରି ସେ କାର୍ତ୍ତିକେୟଙ୍କୁ ପରାଜିତ କରିଥିଲେ । ପୃଥିବୀ ପ୍ରିୟ ରାଜନ୍ୟ ମଣ୍ଡଳୀର ଗୋଷ୍ଠୀକୁ ବୃକ୍ଷରାଜିପରି ସେ ପରଶୁରେ କାଟି ଖଣ୍ଡ ଖଣ୍ଡ କରି ଦେବାରେ ଆଦୌ କୁଣ୍ଠାବୋଧ କରି ନଥିଲେ ।

ରାମାବତାର :—

ରାମାବତାର ରୂପୀ ଶ୍ରୀ ଜଗନ୍ନାଥ ମୋର ଅମଙ୍ଗଳ ନାଶ କରନ୍ତୁ । ସେ ସୂର୍ଯ୍ୟବଂଶର ଭୂଷଣ ଏବଂ ତାଙ୍କ ଶରୀରର କାନ୍ତି ଶ୍ୟାମ କମଳ ପରି ଥିଲା । ତାଙ୍କର ଆଖି ଦୁଇଟି ପଦ୍ମ ପରି ସୁନ୍ଦର । ସଂସାରରେ ହିଂସାବାହକ ଯେତେ ପ୍ରଭବ ସେ ସବୁ ପାଇଁ ସେ ମହାସାଗର (ଭିତରେ ପୋତି ଦେବାକୁ) ଥିଲେ । ଶିବଧନୁର ବଳକୁ ଦଳିଦେବା ନିମନ୍ତେ ସେ ବୀର ଥିଲେ । ସେ ଗୁହରେ ସର୍ବଦା ହାର ପିନ୍ଧିବାର ପକ୍ଷପାତୀ ଥିଲେ । ଦଣ୍ଡକାରଣ୍ୟରେ ସେ ବିଚରଣ କରିଛନ୍ତି ଏବଂ ମହାସମୁଦ୍ର (ଭାରତ ମହାସାଗର) ପାରି ହୋଇଛନ୍ତି । ଦେବଶତ୍ରୁ ରାବଣଙ୍କର ସେ ବିସର-ପ୍ରାଦେଶୀ ଥିଲେ । (ରାବଣର ଉନ୍ନତ ପ୍ରାଣ ତାଙ୍କ ଯେଗୁଁ ଗଲା) । ସେ ସବୁବେଳେ ଶର ବ୍ୟବହାର କରୁଥିଲେ ।

ବଳରାମାବତାର :—

ବଳରାମରୂପୀ ଶ୍ରୀ ଜଗନ୍ନାଥ ଆମର ସଂସାର ଖଣ୍ଡନାଶକ ହୁଅନ୍ତୁ । ସେ କାର୍ତ୍ତିକ-ପୂର୍ଣ୍ଣିମା (ଶରତ ପୂର୍ଣ୍ଣିମା) ଜହ୍ନପରି ଜ୍ୟୋତିଷ୍ମାନ୍ । ତାଙ୍କ ଶରୀରର ଶୁକ୍ଳିମା ଅତି ଶୁଭ୍ର ଓ ସ୍ୱଚ୍ଛ ହୋଇ କୈଳାସର ଜ୍ୟୋତିକୁ ମଧ୍ୟ ପରାସ୍ତ କରୁଥିଲା । ତାଙ୍କ ଆଖି ଦୁଇଟି ମଦଭରା ଏବଂ ଭ୍ରମଣଶୀଳ ଥିଲା । ସେ ଦୁଇଟିର ରଙ୍ଗ ବିସ୍ତୃତ ଓ ନାଲଥିବାରୁ ଉଦୟକାଳୀନ ସୂର୍ଯ୍ୟର ଭ୍ରମ ଉତ୍ପାଦନ କରାଉଥିଲେ । ନୂତନ ମେଘ ସମୂହର ପ୍ରତିପକ୍ଷ (ମେଘକୁ କଚ୍ଛ ପକାଉ ଥିବା) ବସ୍ତ୍ର ( ନୀଳାମ୍ବର ) ସେ ବ୍ୟବହାର କରୁଥିଲେ । ବସ୍ତୁତ-ଗୁଡ଼ିଏ ସ୍ୱଚ୍ଛ ଭୂଷଣ ସେ ଧାରଣ କରୁଥିଲେ । ପୃଥିବୀ ଗୋଲର ଭାର ସେ ଅକାତରରେ ବୋହି ପାରୁଥିଲେ ।

ବୁଦ୍ଧାବତାର :—

ବୁଦ୍ଧାବତାର ରୂପୀ ଶ୍ରୀ ଜଗନ୍ନାଥ ଆମର ବୁଦ୍ଧିକୁ ପୁଷ୍ଟ କରନ୍ତୁ । ସେ ଦରିଦ୍ରର ଧନ ଥିଲେ । ସେ ମଗଧଧରଣୀରେ କାଳଯାପନ କରିଥିଲେ । ବିପଦ ସମୁଦ୍ରରୁ ଉଦ୍ଧାର ପାଇବା ନିମନ୍ତେ ଉପଯୁକ୍ତ ଧର୍ମପ୍ରବାହ ସେ ସୃଷ୍ଟି କରି ଦେଇଗଲେ । ଆତ୍ମଚିନ୍ତାରେ ସେ ବାଧାଦର ରହି କେବେହେଲେ ଧୃତ (ଧୈର୍ଯ୍ୟ) ହରାଉ ନଥିଲେ । ବଧିବାଞ୍ଛିତ ପଶୁହତ୍ୟାକୁ ସେ ପ୍ରକାଶ୍ୟରେ ନିନ୍ଦା କରୁଥିଲେ । କାମ, କ୍ରୋଧ ଆଦି ଶତ୍ରୁମାନଙ୍କୁ ଦମନ କରିବାଠାରୁ ବୈଧହିଂସା ଯେ ଅପକର୍ଷ ସୂଚକ ତାହା ସେ (ସ୍ପଷ୍ଟଭାବେ) ଦେଖାଇ ଦେଇଥିଲେ ।

କଳ୍କି ଅବତାର :—

କଳ୍କି ଅବତାର ରୂପୀ ଶ୍ରୀ ଜଗନ୍ନାଥ ପ୍ରଭୁ ମଙ୍ଗଳ ବିଧାନ କରନ୍ତୁ । ସେ ଧର୍ମହୀନ ମ୍ଲେଚ୍ଛମାନଙ୍କର ସଂହାର କରିବେ । ଧୂଳିଧୂମହୀନ ମେଘମାଳାରୁ ପୂରାପୂରି ମୁକ୍ତ ଆକାଶ ମଧ୍ୟରେ ଏହି ଦଶମାବତାର କଳ୍କିଙ୍କର ପ୍ରକାଶ ହେବ । ତାଙ୍କର ଶରୀର ଉପର ଭାଗରେ ତେଜ ବିକୀରଣ କରି ହସ୍ତସ୍ଥ ତୀକ୍ଷ୍ଣ ଖଡ୍ଗ ସୂର୍ଯ୍ୟଙ୍କୁ ପରିଭ୍ରମଣ କରିବ (ସେ ଖଡ୍ଗ ବୁଲାଉଥିବେ) । ଏହି ସବୁ ବାସ୍ତବରେ ଭୟଙ୍କର । ତାଙ୍କର ବାହନ ଅଶ୍ୱ ଘୋର ଭୟଙ୍କର ତଥା ଚଞ୍ଚଳ ଥିବାରୁ ତାହାର ଖୁରାରେ ପୃଥିବୀ ଖୋଳହୋଇ ଯାଉଥିବ ଏବଂ ସେଥିରୁ ଉଦ୍‌ଗତ ଧୂଳିରେ ସୂର୍ଯ୍ୟ ସ୍ୱୟଂ ଆଚ୍ଛାଦିତ ହୋଇଯିବେ ।

ମତ୍ସ୍ୟାଦ୍ୟାକଳ୍କିରୂପଂ ଦଶବିଧତନୁଭାକ୍‌ସିଦ୍ଧସଂଖ୍ୟାମୂର୍ତ୍ତେ-
ର୍ଦ୍ୱାବିଂଶଦ୍‌ଗାତ୍ରଧର୍ତ୍ତା ଜଗଦୁପକୃତୟେ କ୍ଲୃପ୍ତନାନାବତାରଃ ।
ଭାଗାଂଶାଦ୍ୟୈର୍ବିଭେଦୈଃ ପରିଚରିତପଦଦ୍ୱନ୍ଦ୍ୱ ଇନ୍ଦ୍ରାଶ୍ମକାନ୍ତିଃ—
କୃଷ୍ଣସ୍ତୁଷ୍ଟାନ୍ତ୍ୟତାବ୍ରତଧଃ ସୃଜତୁ ନୃଜନଜାଦ୍‌ଦୁଷ୍କୃତାନ୍ନିଷ୍କୃତିଂ ମେ ।୪୧।

ଶ୍ରୀକୃଷ୍ଣ ରୂପୀ ଶ୍ରୀଜଗନ୍ନାଥ ଆଶା ରୂପକ ମିଥ୍ୟା ସାଗରରୁ ଏବଂ ମାନବ ଜନ୍ମ ହେବାରୁ ଯେଉଁ ପାପ ସବୁ କରିବାକୁ ପଡ଼ୁଛି, ସେଥିରୁ ମୋତେ ଉଦ୍ଧାର କରନ୍ତୁ । ଭକ୍ତଗଣ ତାଙ୍କର ଯୁଗଳ ପଦ ସେବା ବରାବର କରୁଥାନ୍ତି । ତାଙ୍କର ଶରୀରର କାନ୍ତି ଇନ୍ଦ୍ରନୀଳମଣି ପରି ନୀଳ । ସେ ଜଗତର ଉପକାର କରିବା ନିମନ୍ତେ ନିଜର ଅଂଶ ଓ ଭାଗ ପ୍ରଭୃତିକୁ ନେଇ ମତ୍ସ୍ୟରୁ ଆରମ୍ଭ କରି କଳ୍କି ପର୍ଯ୍ୟନ୍ତ ଦଶ ଅବତାର, ଚବିଶ ଅବତାର ପୁଣି ବତିଶ ଅବତାର ଗ୍ରହଣ କରିଥିଲେ । ଆବଶ୍ୟକ ହେଲେ ସେ ଆହୁରି ଅନେକ ଅବତାର ମଧ୍ୟ ଗ୍ରହଣ କରିଛନ୍ତି ଓ କରିବେ ।

ଯା ଲୀଳାଗୋକୁଳାନ୍ତର୍ମଧୁପୁର ରଚିତା ଯାଃ କୃତା ଦ୍ଵାରବତ୍ୟାଂ
କ୍ଷିତ୍ୟାଂ ନିତ୍ୟାବତାରୈଃ ପ୍ରତିଯୁଗମୁଚିତାଃ ସୂଚିତାଃ ପ୍ରାଙ୍ମୁନୀନ୍ଦ୍ରୈଃ ।
ତାସ୍ତାବିସ୍ତାରୟନ୍ ଯୋ ବସତି ଶିତଗିରୌ ବେଦବଦ୍ୟୋଽବତାରେ—
ନିତ୍ୟେ ଧାମ୍ନି ସ୍ଵନାମ୍ନି ସ୍ଫୁରତୁ ମୁରରିପୁଃ ସୋଽୟମନ୍ତଃ ସଦା ନଃ ।୪୨।

ଶ୍ରୀ ଜଗନ୍ନାଥ ଅବତାରୀ ଅଟନ୍ତି । ସେ ବେଦଦ୍ଵାରା ଜଣାଯାଇ ପାରନ୍ତି—ସେ ମୁରାରି । ନିତ୍ୟଧାମ ବୈକୁଣ୍ଠରୂପୀ ନୀଳାଚଳରେ ସେ ବିଜେ କରିଛନ୍ତି । ଦ୍ଵାରକା, ଗୋକୁଳ ଓ ମଥୁରାରେ ସେ ଯେଉଁ ଲୀଳା ପ୍ରକଟ କରିଛନ୍ତି ଏବଂ ପ୍ରତିଯୁଗରେ ପୃଥିବୀରେ ନିତ୍ୟାବତାର ରୂପଧରି ସେ ଯାହା ସବୁ କରିଯାଇଛନ୍ତି ବର୍ତ୍ତମାନ ସେହି ମୁରାରି ନୀଳାଚଳରେ ରହି ସେହିସବୁ ଲୀଳାର ବିସ୍ତାର ଦିଗରେ ପ୍ରେରଣା ଦେଉଛନ୍ତି ।

ଯୋଽସୌ ସର୍ବତ୍ର ଦୃଷ୍ଟୋଽପ୍ୟସିତଗିରିଦରୀକେଶରୀ ଯୋଽପ୍ୟରୂପଃ
ପଦ୍ମପ୍ରଦ୍ୟୁମ୍ନରୂପୋଽପ୍ୟଣୁରତନୁତନୁସଂଭୃତାଶେଷଲୋକଃ ।
ନିସ୍ତ୍ରୈଗୁଣ୍ୟୋଽପ୍ୟଗଣ୍ୟାମଳଗୁଣନିଳୟୋ ବାଙ୍ମନୋଽତୀତଧାମା—
ମାଦୃକ୍‌ଚର୍ମାକ୍ଷିଲକ୍ଷ୍ୟଃ ସ୍ଫୁରତୁ ମନସି ନଶ୍ଚିତ୍ରସିନ୍ଧୁର୍ମୁକୁନ୍ଦଃ ।୪୩।

ସେହି ମୁକୁନ୍ଦ ମୋହିତ ଲୋକଙ୍କର ଏହି ଚର୍ମଚକ୍ଷୁକୁ ଦେଖାଦିଅନ୍ତୁ । ସେ ବିଚିତ୍ରତାର ସାଗର ଅଟନ୍ତି । ମୋର ମନରେ ସେ ସବୁବେଳେ ପ୍ରକାଶିତ ହୁଅନ୍ତୁ । ସେ ଅବାଙ୍ମନସ ଗୋଚର ଏବଂ ନିର୍ଗୁଣ ହେଲେ ମଧ୍ୟ ଅପରିମେୟ ନିର୍ମଳଗୁଣର ଆଶ୍ରୟ । ସେ ସୂକ୍ଷ୍ମ ହେଲେ ମଧ୍ୟ ତାଙ୍କ ମହାଶରୀର ମଧ୍ୟରେ ଅଶେଷ ଲୋକଙ୍କୁ (ଚଉଦ ଭୁବନ) ଧରି ରଖିଅଛନ୍ତି । ତାଙ୍କର କୌଣସି ରୂପନାହିଁ । ତଥାପି ସେ କୂର୍ମ, ପ୍ରଦ୍ୟୁମ୍ନ ଆଦି ଅନେକ ରୂପ ଧରିଛନ୍ତି । ସବୁ ସମୟ ଓ ଦେଶରେ ପରିପୂର୍ଣ୍ଣ ଭାବରେ ବ୍ୟାପିଥିଲେ ମଧ୍ୟ ଅର୍ଥାତ୍ ସେ ମହା ବିରାଟ ହେଲେହେଁ ନୀଳଗିରିର ଗୁହାରେ ସିଂହ ରୂପରେ ରହିଛନ୍ତି ।

**ମାଧୂର୍ଯ୍ୟୈଶ୍ୱର୍ଯ୍ୟପୂର୍ଣ୍ଣଃ ଶିତିଧରପରମବ୍ୟୋମଗୋଲକନାଥଃ**
**ଶ୍ରୀଭୂଲୀଳାଦିସେବ୍ୟୋଦରକମଳଗଦାଚକ୍ରଭୃଦ୍‌ବେଣୁପାଣିଃ ।**
**ଭୁକ୍ତେର୍ମୁକ୍ତେଶ୍ଚ ଭକ୍ତେର୍ବିତରଣନିପୁଣଶ୍ଚିଦ୍‌ଘନାନନ୍ଦମୂର୍ତ୍ତିଃ—**
**ସର୍ବବ୍ୟାପୀ ପରାତ୍ମା ସ ଭବତୁ ଭଗବାନ୍ ବ୍ରହ୍ମଭୂତର୍ଗତିର୍ନଃ ।୪୪।**

ସେ ସର୍ବବ୍ୟାପୀ, ପରମାତ୍ମା ଓ ଭଗବାନ୍ ବ୍ରହ୍ମାଙ୍କର ଐଶ୍ୱର୍ଯ୍ୟରୂପ । ମୋକ୍ଷ, ଭୋଗ ଓ ଭକ୍ତିର ବିତରଣ ବିଷୟରେ ସେ ଅତ୍ୟନ୍ତ ଦକ୍ଷ । ପ୍ରେମ ବିଭୂତିରେ ସେ ପରିପୂର୍ଣ୍ଣ ଏବଂ ତାଙ୍କର ଶରୀର ଜ୍ଞାନାନନ୍ଦରେ ସମ୍ପୂର୍ଣ୍ଣ । ସେ ବଂଶୀଧର ଓ ଚୁଲହାତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରି ରହିଛନ୍ତି । ସେ ମହାଲକ୍ଷ୍ମୀ, ଭୂଦେବୀ ଓ ଲୀଳା ଆଦି ଦେବୀମାନଙ୍କଦ୍ୱାରା ବରାବର ସେବିତ ହେଉଛନ୍ତି । ସେ ନୀଳାଚଳରୂପକ ବୈକୁଣ୍ଠର ପ୍ରଭୁ ଅଟନ୍ତି । ସେ ଆମ୍ଭମାନଙ୍କର ଗତି ।

**ରାଜନ୍ ପ୍ରାସାଦରାଜେ ବୃଜିନବନରୁଜାକୁଞ୍ଜରଃ କୁଞ୍ଜପୁଞ୍ଜେ**
**ମଞ୍ଜୌ ସଂଜାତଶାତବ୍ରଜଯୁବତିଜନାନ୍ ରଞ୍ଜିତାନ୍ ବ୍ୟଞ୍ଜୟନ୍‌ଯଃ ।**
**ଗର୍ଜତ୍ପର୍ଜନ୍ୟରାଜିପ୍ରତିଭଟଲବଣାମ୍ଭୋଧିକୂଳସ୍ଥନୀଳ—**
**କ୍ଷ୍ମାଭୃଦ୍‌ଭୂସାର୍ବଭୌମଃ ସ ଭବତୁ ଭବିନାଂ ଭୂତୟେ ଦେବରାଜଃ ।୪୫।**

ସେହି ଦେବରାଜ ଶ୍ରୀଜଗନ୍ନାଥ ସଂସାରୀ ଲୋକଙ୍କୁ ଐଶ୍ୱର୍ଯ୍ୟ ପ୍ରଦାନ କରନ୍ତୁ । ସେ ସର୍ବୋତ୍ତମ ପ୍ରାସାଦରେ ବିରାଜମାନ ଅଛନ୍ତି । ପାପରୂପକ ବନର ରୋଗକୁ ଦଳିଦେବା ବିଷୟରେ ସେ ଗୋଟିଏ ହାତୀ । ମନୋହର କୁଞ୍ଜ ସମୂହରେ ଅନୁରକ୍ତ ଓ ସୁଖୀ ବ୍ରଜଯୁବତୀମାନଙ୍କର ଆନନ୍ଦକୁ ସେ ଖୁବ୍ ବଢ଼ାଇ ଦେଇଥିଲେ । ଗର୍ଜୁଥିବା ମେଘସମୂହର ପ୍ରତିଯୋଗୀଭାବରେ ଥିବା କ୍ଷୀର ସମୁଦ୍ରର (ଉତ୍କଳ ସାଗରର) ତୀରରେ ଯେଉଁ ନୀଳ ପର୍ବତ ଅଛି ସେଥିରେ ଥିବା ଭୂମିର ସେ ରାଜାଧିରାଜ ଅଟନ୍ତି ।

**କଂସାକର୍ଷକ୍ରିୟାକୃତ୍ କନକବସନକଃ କୁଞ୍ଜକେଳୀକଳାପୀ**
**କେଶୋଦ୍ୟତ୍ କେକିପୁଚ୍ଛଃ କୃତକଲିକଲୁଷକ୍ଲେଶକୃନ୍ତିଃ କୃତଜ୍ଞଃ ।**
**କଲ୍ପାନ୍ତାନ୍ତର୍ବିଲୋକୀକବଳନକଳତଙ୍କୂରକାଳାଗ୍ନିରୁଦ୍ରଃ**
**କୃଷ୍ଣଃ କଲ୍ୟାଣକାରୀ ଭବତୁ କବିକୁଲୋତ୍‌କୀର୍ତ୍ତିତାନେକକୀର୍ତ୍ତିଃ ।୪୬।**

କୃଷ୍ଣ ଆମର କଲ୍ୟାଣକାରୀ ହୁଅନ୍ତୁ । କବିମାନେ ତାଙ୍କର ଅସଂଖ୍ୟ କୀର୍ତ୍ତିକୁ ବର୍ଣ୍ଣନା କରିଯାଇଛନ୍ତି । ସେ ସ୍ୱର୍ଣ୍ଣପରି (ହଳଦିଆ) ଲୁଗା ପିନ୍ଧିଥିଲେ । କୁଞ୍ଜରେ କ୍ରୀଡ଼ା କରିବା ନିମନ୍ତେ ସେ ମୟୂର ଥିଲେ । ତାଙ୍କର କେଶରେ ମୟୂରପୁଚ୍ଛ ଶୋଭା ପାଉଥିଲା । ସେ କଂସାସୁରକୁ ନାଶକରି ଦେଇଥିଲେ । କଳିଯୁଗରେ ପାପ ଓ ଦୁଃଖକୁ

ସେ ନଷ୍ଟକରି ଦେଇଥିଲେ । ସେ କୃତଜ୍ଞ ଅର୍ଥାତ୍ ଭକ୍ତମାନଙ୍କ ନିମନ୍ତେ ତାଙ୍କର ବିଶେଷ ଦୟା ଥିଲା । କିନ୍ତୁ ଶେଷରେ ସେ ତ୍ରିଭୁବନ ଆକ୍ରମଣକରି ଗ୍ରାସ କରୁଥିବାରୁ ଅତି ନିଷ୍ଠୁର ଅଟନ୍ତି । ସେତେବେଳେ ହିଁ ସେ ଭୟଙ୍କର ଅଗ୍ନିରୂପ ଧାରଣ କରୁଥିବାରୁ ସେ ଭୟଙ୍କର ମଧ୍ୟ ଅଟନ୍ତି ।

**ସଂଖ୍ୟେଽସଂଖ୍ୟେୟଦୂଃକ୍ଷେପଣକୁଣପ୍ରଭୂଜାଂ ବକ୍ଷସି କ୍ଷିପ୍ତବାଣଃ**
**ପକ୍ଷେ ସଖ୍ୟେଽତିଦକ୍ଷେଽସୁରବରତନୁଜେ ଖ୍ୟାତସୌଖ୍ୟୋଽମ୍ବୁଜାକ୍ଷଃ ।**
**ଅକ୍ଷେଽଧିକ୍ଷେପଲକ୍ଷ୍ୟେ କୁରୁକୁଳନୃପତେ ଧର୍ମରାଜେ କୃପାଳୁ**
**ରକ୍ଷେଦକ୍ଷେମବିକ୍ଷେପକ ଉଦଧିତଟେ କ୍ଷେତ୍ରରାଟ୍ କ୍ଷ୍ମାପତିର୍ନଃ । ୪୭ ।**

ସାଗର ତଟରେ ଥିବା ତୀର୍ଥରାଜ ପୁରୁଷୋତ୍ତମର ରାଜା ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ଅମଙ୍ଗଳର ନାଶକ, ଯୁଦ୍ଧରେ ଅସଂଖ୍ୟ ଦୁର୍ଦ୍ଧର୍ଷ ରାକ୍ଷସଙ୍କର ବକ୍ଷସ୍ଥଳରେ ସେ ଶର ନିକ୍ଷେପ କରନ୍ତନ୍ତି । ହିରଣ୍ୟକଶିପୁଙ୍କର ତନୟ ପ୍ରହ୍ଲାଦ ତାଙ୍କ ମିତ୍ରପକ୍ଷର ଥିଲେ ଏବଂ ସେ ବଡ଼ ଚତୁର ଥିଲେ । ଭଗବାନ୍ ଶ୍ରୀ ଜଗନ୍ନାଥ ତାଙ୍କୁ ଅଶେଷ ଆନନ୍ଦ ଦେଇ ଅଛନ୍ତି । ସେ ପୁଣ୍ଡରୀକାକ୍ଷ । ଦ୍ୟୂତ କ୍ରୀଡାରେ କୁରୁକୁଳପତି ଦୁର୍ଯ୍ୟୋଧନ ଧର୍ମରାଜଯୁଧିଷ୍ଠିରଙ୍କୁ ଅପମାନ ଦେବାରେ ସେ ଯୁଧିଷ୍ଠିରଙ୍କ ପ୍ରତି ଦୟାଭାବ ଦେଖାଇଥିଲେ ।

**କାରାଗାରାନୁକାରାନ୍ନିତଭବଦବଚ୍ଛେଦ ନୋଦ୍ୟତ୍କୁଠାରଃ—**
**କାଳବ୍ୟାଳାସ୍ୟମୀଳଜ୍ଜଗଦଗଦନଗଦଃ ଶ୍ରୀଳନୀଳାଦ୍ରି ସିଂହଃ ।**
**ମାରାକାରାବକାରାନବରତରତନୁର୍ଭିନୁଭୂଦଣ୍ଡଖଣ୍ଡୀ**
**ସର୍ବାଗୀର୍ବାଣଗର୍ବାଚଳପବିରବତୁ ପ୍ରାକ୍ତନଃ ପୂରୁଷୋ ନଃ ।୪୮।**

ପୁରାଣ ପୁରୁଷ, ନୀଳାଚଳ କେଶରୀ ଶ୍ରୀ ଜଗନ୍ନାଥ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ସେ ସମସ୍ତ ଦୈତ୍ୟଙ୍କର ଗର୍ବରୂପୀ ପର୍ବତକୁ ବଜ୍ରପରି ଖଣ୍ଡନ କରିଥିଲେ । ତାଙ୍କର ଶରୀର କନ୍ଦର୍ପଙ୍କର ଆକୃତିକୁ ତୁଚ୍ଛ କରିବାରେ ଶ୍ରେଷ୍ଠ ଥିଲା । କାଳରୂପକ ସର୍ପର ମୁହଁରେ ପଡ଼ି ଗ୍ରସ୍ତହୋଇଥିବା ସଂସାରର ସେ ରକ୍ଷାକବଚ (ରକ୍ଷା ଔଷଧ) । କାରାଗାରର ଅନୁକରଣରେ ହୋଇଥିବା ସଂସାର ବୃକ୍ଷକୁ କାଟି ଦେବାରେ ସେ କୁରାଢ଼ିର କାମ କରନ୍ତି ।

**ଧୀରାର୍ଧାରଦସଲ୍ଲକ୍ଷଣତଣରମଣୀବର୍ଣ୍ଣସଙ୍ଗୀତରାଗଃ—**
**କ୍ଷାରାମ୍ଭୋରାଶିତୀରାବନଧରଶିଖରପ୍ରସ୍ତରାଗାରସାରଃ ।**
**ସ୍ମାରନ୍ନୀରଜିତାଂଘ୍ରିର୍ବୃହଦତୁଳଭୁଜଃ କୁଞ୍ଜରାପତ୍ତିଭେତ୍ତା**
**ହାରାହାରାବଦାତେ ବିତରତୁ ନିତରାଂ ଶ୍ରୀଧରଃ ଶ୍ରୀଭରଂ ନଃ ।୪୯।**

ଶ୍ରୀ ଜଗନ୍ନାଥ ଆମର ସୌନ୍ଦର୍ଯ୍ୟାତିଶଯ୍ୟର ବୃଦ୍ଧି ନିମନ୍ତେ ଚେଷ୍ଟା କରନ୍ତୁ । ତାଙ୍କର ଦୀର୍ଘ ଓ ଅତୁଳନୀୟ ଭୂଜଅଛି । ଇନ୍ଦ୍ର ତାଙ୍କର ପଦପୂଜା କରନ୍ତି । ସେ ଗଜର ବିପଦ ବିନାଶ କରିଥିଲେ । ଭୂମିର ଭାର ନିବାରଣ ପାଇଁ ସେ ବାରଂବାର ଅବତାର ଗ୍ରହଣ କରିଅଛନ୍ତି । ଲବଣ ସାଗରର ତଟ ଦେଶରେ ଥିବା ନୀଳାଚଳ ଶିଖରସ୍ଥ ପାଷାଣ ମନ୍ଦିରରେ ସେ ଶ୍ରେଷ୍ଠ (ଦେବତା ରୂପରେ) ରହିଛନ୍ତି । (ଦ୍ୱାପର ଯୁଗରେ) ଉତ୍ତମ ଲକ୍ଷଣଯୁକ୍ତ ଧୀରା, ଅଧୀରା ଆଦି ନାୟିକା (ଗୋପ ନାୟିକା) ମାନେ ତାଙ୍କ ଅନୁରାଗର ଅଶେଷ ପ୍ରଶଂସା କରିଛନ୍ତି ।

> ହ୍ଲାଦନ୍ୟାହ୍ଲାଦସୀମାର୍ବୁଦମଦନରୁଚଃ ସନ୍ଧିନୀସନ୍ଧିତାତ୍ମା
> ସଂବତ୍ସଂବାତଧାମା ନିଗମଗଣଶିରସ୍ତୁତ୍ୟସତ୍ୟପ୍ରଭାବଃ ।
> ଶେଷାଶେଷାଙ୍ଗାସଦ୍ମା ସୁରତରୁତଳଭାତ୍କଳ୍ପିତପ୍ରେମରୂପଃ—
> ଶ୍ରୀକୃଷ୍ଣଃ ପ୍ରେମଭକ୍ତିଂ ବିତରତୁହୃଦି ନଃ ସଚ୍ଚିଦାନନ୍ଦରୂପଃ ।୫୦।

ସଚ୍ଚିଦାନନ୍ଦରୂପୀ ଶ୍ରୀକୃଷ୍ଣ (ଶ୍ରୀ ଜଗନ୍ନାଥ) ଆମର ହୃଦୟରେ ପ୍ରେମ ଓ ଭକ୍ତି ବିତରଣ କରନ୍ତୁ । ସେ ହ୍ଲାଦିନୀ ଶକ୍ତି (ରାଧିକା) ଙ୍କର ସୁଖସୀମା । ଅର୍ବୁଦ କନ୍ଦର୍ପର କାନ୍ତି ତାଙ୍କ ପାଖରେ ମ୍ଳାନ ରହିଛି । ସନ୍ଧିନୀ ଶକ୍ତିରେ ତାଙ୍କର ମନ ମିଶି ରହିଅଛି । ସମ୍ବିତ୍ ଶକ୍ତିରେ ତାଙ୍କର ଶରୀର ଆପ୍ଳୁତ । ବେଦର ଅଗ୍ରଭାଗ ଉପନିଷଦ୍ ତାଙ୍କର ସ୍ତୁତି କରନ୍ତି । ତାଙ୍କର ପ୍ରଭାବ ସତ୍ୟରେ ପ୍ରତିଷ୍ଠିତ । ଅନନ୍ତଙ୍କର ସମସ୍ତ ଅଙ୍ଗରେ ତାଙ୍କର ଘର । ତାଙ୍କୁ ପ୍ରେମମୂର୍ତ୍ତି ଭାବରେ କଳ୍ପନା କରାଯାଇଥାଏ । କଳ୍ପବଟ ମୂଳହିଁ ତାଙ୍କର ଆଶ୍ରୟସ୍ଥଳ ।

> ରାଧାସାଧାରଣଶ୍ରୀକମନସୁମନସଂ କେକିପିଞ୍ଛାବତଂସଂ —
> ଚନ୍ଦ୍ରାବଲ୍ୟାଦିରାଗାଚ୍ଛିଦୁରସୁରନଦୀ ସଂଗ୍ରହାଗାଧସିନ୍ଧୁମ୍ ।
> ବଂଶୀସଂଶୀଳିତାସ୍ୟଂ କନକମଣିମୟାକଳ୍ପମାକଳ୍ପୟନ୍ତଂ
> ବନ୍ଧୁଂଦ୍ବନ୍ଦ୍ୱୋତବସ୍ତ୍ରଂ ନବଜଳଦରୁଚଂ ଶ୍ରୀଜଗନ୍ନାଥମୀଡ଼େ ।୫୧।

ଶ୍ରୀ ଜଗନ୍ନାଥଙ୍କୁ ମୁଁ ପୂଜା କରୁଅଛି । ସେ ଲକ୍ଷ୍ମୀଙ୍କୁ ରାଧା ସମାନ ଦେଖୁଥିଲେ ଏବଂ ତାଙ୍କର କାମୁକଦେବ ହୋଇରହିଥିଲେ । କେକୀ (ମୟୂର) ପୁଚ୍ଛ ତାଙ୍କର ଅଳଙ୍କାର ଅଟେ । ଚନ୍ଦ୍ରାବଳୀ ପ୍ରଭୃତି ଗୋପଯୁବତୀଙ୍କର ନିରବଚ୍ଛିନ୍ନ ଗଙ୍ଗାନଦୀ ପରି ଅନୁରାଗଧାରାର ସଂଗ୍ରହ ବିଷୟରେ ସେ ଅତଳସ୍ପର୍ଶୀ ସାଗର ଥିଲେ । ସବୁବେଳେ ସେ ବଂଶୀବାଦନ ରତ ଥିଲେ । ତାଙ୍କର ବେଶଭୂଷା ସ୍ୱର୍ଣ୍ଣ ଓ ରତ୍ନମୟ ଥିଲା (ସେ ସୁନା ଓ ରତ୍ନରେ ତାଙ୍କର ବେଶଭୂଷା ରଚନା କରିଥିଲେ) । ତାଙ୍କର ଲୁଗା ବିଜୁଳିପରି ଚକ୍ ଚକ୍ କରୁଥିଲା । ବର୍ଷୁକ ମେଘ-ପରି ତାଙ୍କ ଶରୀରର କାନ୍ତି ଅଟେ ।

**ଯସ୍ୟ ଶ୍ରୀବିଗ୍ରହୋଦ୍ୟଦ୍ଦ୍ୟୁତିରିତି ପରମବ୍ରହ୍ମ ବେଦାନ୍ତବେଦ୍ୟଂ**
**କୋଟୀବ୍ରହ୍ମାଣ୍ଡଭର୍ତ୍ତୁରୀ ପରମଶିବଭବଃ ଶ୍ରୀମହାବିଷ୍ଣୁରଂଶଃ ।**
**ଯସ୍ୟ ଭ୍ରୂକ୍ଷେପମାତ୍ରାତ୍ ସୃଜତି ହରିହରବ୍ରହ୍ମଶକ୍ରାଦିଦେବାନ୍**
**ମାୟାପାୟାଦପାୟାଦୟମୁଦିତଦୟଃ ପୁଣ୍ଡରୀକେଶ୍ୱରୋଽସ୍ମାନ୍ ।୫୨।**

ଯାହାର ସୁନ୍ଦର ଶରୀର ଜ୍ୟୋତି ଜାଜ୍ୱଲ୍ୟମାନ, ଯାହାପୁଣି ପରଂବ୍ରହ୍ମ ବୋଲି ବେଦାନ୍ତ(ଉପନିଷଦ) ରୁ ଜଣାଯାଏ; ଯେ କୋଟି ବ୍ରହ୍ମାଣ୍ଡର ଭାର ବହନକରି ରହିଅଛି ଏବଂ ଯାହାଠାରୁ ପରମ ମଙ୍ଗଳ ଜାତ ହେଉଅଛି; ସେ ସାକ୍ଷାତ୍‌ରେ ଶ୍ରୀମହାବିଷ୍ଣୁ । ଯାହାର ଭ୍ରୂକ୍ଷେପ ମାତ୍ର ମାୟା ବା ପ୍ରକୃତି ହରି, ହର, ବ୍ରହ୍ମା ଓ ଇନ୍ଦ୍ର ଆଦି ଦେବମାନଙ୍କୁ ସୃଷ୍ଟି କରିଦିଏ, ସେହି ଦୟାଳୁ ଏବଂ ହୃତ୍‌ପଦ୍ମର ଈଶ୍ୱର ଶ୍ରୀଜଗନ୍ନାଥ ଆମ୍ଭମାନଙ୍କୁ ମରଣରୁ ରକ୍ଷା କରନ୍ତୁ । ଆମେ ଅମର ହେଉ (ଏପରି କାର୍ଯ୍ୟକରୁ ଯାହାଫଳରେ ଅମର ହୋଇ ପାରିବୁ) ।

**କୃଷ୍ଣାକୃଷ୍ଣାମ୍ବୁଧିସ୍ଥ୍ୟାମ୍ବୁଜଚରଣରଣ କ୍ଷୀଣଗୀର୍ବାଣଶତ୍ରୋ—**
**କୃଷ୍ଣାକୃଷ୍ଣାଦିତୃଷ୍ଣାହରଣରଣରଣ ଶ୍ରୀନ୍ଦିରସ୍କାରକାରିନ୍ ।**
**ଉଷ୍ଣାନୁଷ୍ଣାଂଶୁବିସ୍ମାପନନୟନଯୁଗାକାର ତାରୁଣ୍ୟ ଭୀର-**
**ନ୍ମସ୍ମାନ୍‌ଭୀଷ୍ମାଦିକୋଷ୍ମାପହବହୁତମହାପାତକାନ୍ ପାହି ପାତାତ୍ ।୫୩।**

ହେ କୃଷ୍ଣ, ତୁମେ କ୍ଷୀର ସାଗରରେ ଘର କରିଅଛ । ତୁମର ପାଦ ଦୁଇଟି କମଳପରି । ତୁମେ ଯୁଦ୍ଧରେ ଦେବତାମାନଙ୍କର ଶତ୍ରୁମାନଙ୍କୁ ନାଶକରି ଦେଇଅଛ, ଦ୍ରୌପଦୀ ଓ ଅର୍ଜୁନ ପ୍ରଭୃତିଙ୍କର ତୃଷ୍ଣା ତୁମେ ହିଁ ନିବାରଣ କରିଛ । ତୁମେ କନ୍ଦର୍ପର ଶୋଭାକୁ ତିରସ୍କାର କରୁଅଛ, ତୁମର ଦୁଇଟି ଆଖି ଚନ୍ଦ୍ର ଓ ସୂର୍ଯ୍ୟର ବିସ୍ମୟ ଉତ୍ପାଦନ କରୁଅଛି, ତୁମେ ପୂର୍ଣ୍ଣ ଯୌବନକୁ ଧାରଣ କରିଅଛ, ତୁମେ ଭୀଷ୍ମ ଓ ଦ୍ରୋଣ ପ୍ରଭୃତିଙ୍କର ଗର୍ବ (ଈର୍ଷା) ଖଣ୍ଡନ କରିଅଛ । ଆମ୍ଭେମାନେ ପାପୀ—ଆମର ଅଧଃପତନରୁ ଆମକୁ ରକ୍ଷାକର ।

**ଶ୍ରୀରାଧାକାନ୍ତ କାନ୍ତାନନଜଳଜହରେ ରାମକୃଷ୍ଣାବତାରିନ୍**
**ଗୋବିନ୍ଦାନନ୍ଦକନ୍ଦାଦ୍ଭୁତଗୁଣବିତତେ ଶ୍ରୀପତେ ନୀପମାଳିନ୍ ।**
**କଂସାରେଽସାରସଂସାରହର ହରନୁତାପାରକାରୁଣ୍ୟସିନ୍ଧୋ**
**ଦୁଃଖାବ୍ଧେରୁଦ୍ଧୃତଂ ମେ ତନୁ ଦନୁଜରିପୋଽନୁଗ୍ରହପ୍ରଗ୍ରହେଣ ।୫୪।**

ହେ ରାଧାକାନ୍ତ, ତୁମର ମୁଖ ପଦ୍ମପରି ସୁନ୍ଦର । ହେ ହରି, ହେ ଗୋବିନ୍ଦ, ତୁମେ ରାମ, କୃଷ୍ଣ ଅବତାର ଗ୍ରହଣ କରିଥିଲ । ତୁମେ ଆନନ୍ଦର ଆଶ୍ରୟ—ତୁମ ପାଖରେ ଅଦ୍ଭୁତ ଗୁଣଗୁଡ଼ିଏ ଅଛି । ତୁମେ ଲକ୍ଷ୍ମୀଙ୍କର ସ୍ୱାମୀ । ତୁମର ଛାତିରେ କଦମ୍ବ ପୁଷ୍ପର ମାଳା ଶୋଭା ପାଉଅଛି । କଂସର ତୁମେ ହିଁ ଶତ୍ରୁ । ଏହି ସଂସାରରେ ସାର କିଛିନାହିଁ ।

ତୁମେ ଅସୀମ ଦୟାର ସାଗର । ତୁମକୁ ଶିବ ପୂଜା କରନ୍ତି । ତୁମେ ହିଁ ଦୈତ୍ୟମାନଙ୍କୁ ନାଶକରି ଦେଇଛ । ମୁଁ ଦୁଃଖ କୂଅରେ ପଡ଼ିଯାଇଛି । ତୁମେ ଅନୁଗ୍ରହରୂପକ ରଜ୍ଜୁ ଦ୍ୱାରା ମୋତେ ଉଦ୍ଧାର କର ।

**ପାର୍ଥାନର୍ଥପ୍ରମାଥପ୍ରଥିତପୃଥୁଯଶୋ ମନ୍ମଥପ୍ରାର୍ଥ୍ୟକାନ୍ତେ**
**ଶ୍ରୀମନ୍ନିତ୍ୟସ୍ଥବସ୍ଥାଗମପଥପଥିକପ୍ରାର୍ଥିତାର୍ଥାମରଦ୍ରୋ ।**
**ଶକ୍ରପ୍ରତ୍ୟର୍ଥିପାଥଃପତିମଥନମହାମନ୍ଥପୃଥ୍ୱୀଧରାନ୍ତଃ**
**ସ୍ଥାନଂ ନାଥାମି ତୀର୍ଥାଧିପତଟବଟୟୋଃ ଶ୍ରୀଜଗନ୍ନାଥ ଦୁଃସ୍ଥଃ ।୫୪।**

ହେ ଶ୍ରୀଜଗନ୍ନାଥ, ତୁମେ ପାଣ୍ଡବମାନଙ୍କର ଯାବତୀୟ ଅନିଷ୍ଟ ନଷ୍ଟ କରିଦେଇ ଅଶେଷ କୀର୍ତ୍ତି ରଖି ଯାଇଅଛ । ତୁମର କାନ୍ତିକୁ କନ୍ଦର୍ପ ମଧ୍ୟ ପ୍ରାର୍ଥନା କରୁଅଛି । ପ୍ରଭୁ, ତୁମେ ଲକ୍ଷ୍ମୀଯୁକ୍ତ ହୋଇ ନିତ୍ୟସ୍ଥଳ ମର୍ତ୍ତ୍ୟ ବୈକୁଣ୍ଠରେ ବିରାଜମାନ କରୁଅଛ । ଧର୍ମ ମାର୍ଗରେ ଥିବା ଲୋକଙ୍କର ଯାଚ୍ଞା ପୂରଣ କରିବା ଦିଗରେ ତୁମେ ଦେବବୃକ୍ଷ ପରି କାର୍ଯ୍ୟ କରିଅଛ । (ଦେବବୃକ୍ଷ—କଳ୍ପବଟ) ଇନ୍ଦ୍ରଙ୍କର ଶତ୍ରୁ ରୂପକ ସମୁଦ୍ର ମନ୍ଥନ କରିବାରେ ତୁମେ ମହା ମନ୍ଥନଦଣ୍ଡର କାମ କରିଥିଲ । ତୁମେ କୂର୍ମ ରୂପରେ ପୃଥିବୀକୁ ଧାରଣ କରିଥିଲ । ହେ ପ୍ରଭୁ, ମୁଁ ଦୁର୍ଗତ ଓ ଦରିଦ୍ର, ପୁରୀର କଳ୍ପବଟ ଓ ସାଗର ମଧ୍ୟରେ ମୋତେ ସ୍ଥାନ ଦେଇ ରଖ—ଏହା ହିଁ ମୋର ମାଗୁଣି (ପୁରୁଷୋତ୍ତମ କ୍ଷେତ୍ରର ବଟ ଓ ସାଗର ମଧ୍ୟସ୍ଥ ଭୂମି ହିଁ ମୁଖ୍ୟତଃ ମୁକ୍ତିପ୍ରଦ ବୋଲି ନୀଳାଦ୍ରି ମହୋଦୟରେ ବର୍ଣ୍ଣିତ ଅଛି ଏବଂ ସ୍ୱର୍ଗଦ୍ୱାର ତନ୍ମଧ୍ୟରେ ଅବସ୍ଥିତ । )

**ହାସୀପାଦରଜାଂସି ନିର୍ଜରଶିରୋଧାର୍ଯ୍ୟାଣି ସୂର୍ଯ୍ୟାତ୍ମଜ—**
**ସ୍ଫୂର୍ଜଦ୍ଦୁର୍ଜୟଦୃତଦର୍ପଦମନୀ ଯତ୍ର ସ୍ଥିତଃ ପାପିନାମ୍ ।**
**ତତ୍ର ସ୍ୱାଦୟମୋର୍ଦ୍ଧ୍ୱବୈଭବବତି କ୍ଷେତ୍ରୋତ୍ତମେକାତୁ ମେ**
**ନୈବ ଶ୍ରୀପୁରୁଷୋତ୍ତମେ ଶିବତମେ ସ୍ଥାତୁଂ ବିରାଗୋଦୟଃ ।୫୭।**

ଯେଉଁ ଶ୍ରୀକ୍ଷେତ୍ରର ଗୃହଦାସୀମାନଙ୍କ ପାଦଧୂଳିକୁ ଦେବତାମାନେ ମସ୍ତକରେ ଧାରଣ କରନ୍ତି ଏବଂ ଯେଉଁଠାରେ ରହିବାଦ୍ୱାରା ପାପୀମାନେ ମଧ୍ୟ ଯମଦୂତମାନଙ୍କର ଗର୍ବକୁ ଖର୍ବ କରନ୍ତି, ସେହି ମଙ୍ଗଳମୟ, ବିଶାଳ-ବିଭବଶାଳୀ କ୍ଷେତ୍ରରାଜ ପୁରୁଷୋତ୍ତମରେ ବାସ କରିବାରେ ମୋ ମନରେ କେବେହେଲେ ବିରକ୍ତି ନ ଆସୁ ।

ଇତ୍ୟୁତ୍କଳାଙ୍କଜନୃପାଳକୁଳପ୍ରସୂତ
ଶ୍ରୀଚନ୍ଦ୍ରଶେଖରକୃତୌ ଗଣିତେଽକ୍ଷିସିଦ୍ଧେ ।
ସିଦ୍ଧାନ୍ତଦର୍ପଣ ଉପାହୃତବାଳବୋଧେ
କୃଷ୍ଣସ୍ତୁତସ୍ତ୍ର୍ୟଧିକବିଂଶ ଇତଃ ପ୍ରକାଶଃ ।୫୭।

ଇତି ଶ୍ରୀଚନ୍ଦ୍ରଶେଖରସିଂହକୃତୌ ସିଦ୍ଧାନ୍ତଦର୍ପଣେ କାଳାଧିକାରେ ଶ୍ରୀପୁରୁଷୋତ୍ତମସ୍ତବ ବର୍ଣ୍ଣନୋ ନାମ ତ୍ରୟୋବିଂଶତିତମଃ ପ୍ରକାଶଃ ।

ବର୍ତ୍ତମାନ ତ୍ରୟୋବିଂଶ ପ୍ରକାଶ ଶେଷହେଲା । ଏଥିରେ କୃଷ୍ଣସ୍ତୁତି (ଜଗନ୍ନାଥଙ୍କର) ହିଁ ରହିଅଛି ଏବଂ ପୁରୁଷୋତ୍ତମର ବର୍ଣ୍ଣନା ମଧ୍ୟ ଅଛି ।

—※—

# ଚତୁର୍ବିଂଶ ପ୍ରକାଶଃ

## ଉପସଂହାର ବର୍ଣ୍ଣନମ୍

**ଉପକ୍ରମଃ ସ୍ୱେଷ୍ଟତମସ୍ୟ ବସ୍ତୋଃ**
**ସ୍ତବାଦନାଦୌ ରଚିତ ଶ୍ରୁତସ୍ୟ ।**
**ତତ୍ପାଦନତ୍ୟୋପତନସ୍ୟ ପୂର୍ତ୍ତି-**
**ମଥୋପସଂହାରମମୁଷ୍ୟ କୁର୍ବେ ।୧।**

ମୋର ଇଷ୍ଟତମ ଦେବ ଶ୍ରୀ ଜଗନ୍ନାଥଙ୍କର ସ୍ତବ କରି ଏହି ଗ୍ରନ୍ଥର **ଉପକ୍ରମ (ଆରମ୍ଭ)** କରିଥିଲି । ଶେଷରେ ପୁଣି ତାଙ୍କ ଚରଣ ତଳେ ପ୍ରଣାମ କରି ଏହି ଗ୍ରନ୍ଥର ପରିସମାପ୍ତି କରୁଅଛି ।

**ତସ୍ୟାଦତଃ କୌତୁକପଂକିକାଖ୍ୟଂ**
**ବକ୍ଷ୍ୟାମି କିଂଚଦ୍‌ଗଣିତଂ ମୟା ଯତ୍ ।**
**କୈଶୋରକଳାରଚ ପଞ୍ଜିକାଳଂ**
**ଦୃଷ୍ଟୈବ ପିତ୍ରା ଲିଖିତାଂ ପ୍ରଯତ୍ନାତ୍ ।୨।**

କୌତୁକ ପଞ୍ଜିକା—

ଗ୍ରନ୍ଥ ଉପସଂହାର କରିବା ପୂର୍ବରୁ କୌତୁକ ପଞ୍ଜିକା ନାମରେ କେତେକ ଗଣିତ ମୁଁ ଏଠାରେ କହିବି । ମୋର ପିତା ବହୁ ପରିଶ୍ରମ କରି ଗୁଡ଼ାଏ ପଞ୍ଜିକା ଲେଖିଥିଲେ ଏବଂ ମୁଁ କିଶୋର ଅବସ୍ଥାରେ ଥିବାବେଳେ ଏହି ଗୁଡ଼ିକ ଦେଖି ଏହି କୌତୁକ ପଞ୍ଜିକା ତିଆରି କରିଥିଲି ।

**ପଞ୍ଚାଙ୍ଗପଞ୍ଜୀଂ ପ୍ରବିଲୋକ୍ୟ ଚୈକା—**
**ମନ୍ୟାଂ ତତଃ କଳ୍ପୟିତୁଂ କ୍ଷମଃ ସ୍ୟାତ୍ ।**
**ଜନୋ ଧନୁର୍ଜ୍ୟାପଦକା-ଦ୍ୟ-ବିଜ୍ଞୋ**
**ଯଥା ତଥାୟଂ କ୍ରିୟତେ ପ୍ରକାରଃ ।୩।**

ରୂପଗଣିତ (ଜ୍ୟା, କୋଟି-ଜ୍ୟା ଆଦି) ନ ଜାଣି କେବଳ କେତେକ ( ପୁରୁଣା ) ପାଞ୍ଜି ଦେଖି ଯେଉଁ ଉପାୟରେ ଲୋକ (ନୂଆ) ପାଞ୍ଜିଟିଏ ତିଆରି କରି ପାରିବ ସେହି ଉପାୟ ମୁଁ ଏଠାରେ କହୁଛି ।

କ୍ଷୁବ୍ଧାସବ୍ଧ ନାଗଶରାଗ୍ନି ତୁଲ୍ୟା
ନାଗେନ୍ଦୁ ନାଡ଼୍ୟା ରସଭୂବନଡ଼୍ୟଃ ।
କୃତାଙ୍ଗରାମୈଃ ସ୍ଥିତଭୈଃ ସମାପ୍ତାଃ
ସୂର୍ଯ୍ୟମନ୍ଦକେନ୍ଦ୍ରୈକପଦାନ୍ତଗେଽର୍କେ । ୪ ।

ପଲୈସ୍ତ୍ରିଭି ର୍ବିଂଶମିତୈଶ୍ଚ ଦଣ୍ଡୈ—
ର୍ଯୁକ୍ତାନ୍ ପୂର୍ବୋକ୍ତମହୀଦନାନ୍ ।
ଋକ୍ଷୈଶ୍ଚତୁଃପଞ୍ଚଗୁଣୈଃ ସମାପ୍ତିଂ
ଯାନ୍ତ୍ୟେବ ନେଷ୍ଟଂ ରବମନ୍ଦକେନ୍ଦ୍ରମ୍ । ୫ ।

କ୍ଷୁବାସବାସ୍ତେ ସଦଳେନ୍ଦ୍ରନାଡ଼ୀ
ଯୁକ୍ତାଃ ଖନା-ଗଜ୍ୱଳନୈଃ ସହାର୍ଦ୍ଧୈଃ ।
ଯୋଗୈଃ ସମାପ୍ତିଂ ଖଳୁ ଯାନ୍ତି ମନ୍ଦ
କେନ୍ଦ୍ରୈକପାଦାନ୍ତଗତେ ଖରାଂଶୌ । ୬

ତଥ୍ୟର୍ଦ୍ଧକେ ଯଦ୍ୱ ଯଦସ୍ତୁମେତତ୍
ସମ୍ପୂର୍ଣ୍ଣରାନ୍ତେ କରଣଂ ପ୍ରମେୟମ୍ ।
ନକ୍ଷତ୍ରଯୋଗାଂଘ୍ରିବିବେଚନେନ
ନବର୍କ୍ଷପାଦାତ୍ମକରାଶୟଃ ସ୍ୟୁଃ । ୭ ।

ପୂର୍ଣ୍ଣେଷ୍ୱତୋ ଦ୍ୱାଦଶସୁ କ୍ଷପେଶ
ମାସେଷୁ ଯଦ୍ୟତ୍ତିଥିଭାଦ୍ୟମିଷ୍ଟମ୍ ।
ତତ୍ପୂର୍ବ ବର୍ଷେହ ତଥିଃ କୃତୋନା
ଗ୍ରାହ୍ୟା ଗୁଣୋନଂ ଭମଥାପି ଯୋଗଃ । ୮ ।

ସାର୍ଦ୍ଧଦ୍ୱୟେଯା-ନଃ ପରଗୃହ୍ୟତାଂ ତଦ୍
ଗ୍ରାହ୍ୟର୍କ୍ଷତଥ୍ୟନ୍ତ ଏବ ଦେୟାଃ ।
ପୁରୈବଦତାସ୍ତା ନଜନାଡ଼ିକାଦ୍ୟା
ଯୋଗସ୍ୟ ମଧ୍ୟାଦଥ ତତ୍ତ୍ୱଦାଢ଼୍ୟାଃ ।୯। ※

---

※ ଅତ୍ର ଟିପ୍ପଣ୍ୟାଂ—ତିଥିନାଡ଼୍ୟଃ ୧୮।୧୬ ଭନାଡ଼୍ୟଃ ୧୩।୩ ଯୋଗନାଡ଼୍ୟଃ ୧୪।୩୦ ।ଇତ୍ୟାଦି।

ତଥ୍ୟାଦୟଃ ଷଷ୍ଟିଘଟୀଭ୍ୟ ଊନା
ଭବନ୍ତି ଚେଦଷ୍ଟତମାସ୍ତଦୈକଃ ।
ଗ୍ରାହ୍ୟେ ଦିନେ ବାର ଇହୈବ ଦେୟୋ
ଦ୍ୱୌ ଷଷ୍ଟିଦଣ୍ଡାଧିକତାପି ଚେତ୍ତୌ । ୧୦ ।

ତଦ୍‌ଗ୍ରାହ୍ୟତଥ୍ୟାଂ ତଥୟଶ୍ଚତସ୍ରୋ
ଯୋଜ୍ୟାଶ୍ଚତସ୍ରଃ କିଲ ତାରକାୟାମ୍ ।
ଯୋଗେଚ ସାର୍ଦ୍ଧ-ଦ୍ୱୟମେବମିଷ୍ଟ-
ତଥ୍ୟାଦୟୋ ଗ୍ରାହ୍ୟତ ଉଦ୍‌ଭବନ୍ତି । ୧୧ ।

ନିଜର ମନ୍ଦୋଚ୍ଚଠାରୁ ସୂର୍ଯ୍ୟ ପୂର୍ବ ବା ପର ପଦାନ୍ତରେ ଥିଲେ ସେହି ବର୍ଷର ସାବନ ଦିନ ସଂଖ୍ୟା ୩୫୮।୧୮।୧୬ ହେବ । ଏତିକି ସାବନ ଦିନ ହେବା ପାଇଁ ଜନ୍ମ ୩୬୪ ତିଥି ବା ଚାନ୍ଦ୍ର ଦିବସ ଦରକାର ହେବ । ୩୫୮।୧୩।୩ ସାବନ ଦିନରେ ୩୫୪ ନକ୍ଷତ୍ର ଭୋଗହୁଏ । ଏ ହିସାବରେ ଚନ୍ଦ୍ର ମନ୍ଦକେନ୍ଦ୍ରର ଆବଶ୍ୟକତା ନାହିଁ । ୩୫୮।୧୪।୩୦ ସାବନ ଦିନରେ ୩୮୦½ ଯୋଗହୁଏ । ଯେଉଁ ତିଥିର ଯେଉଁ ଅର୍ଦ୍ଧରେ ଯେଉଁ କରଣ ଗୋଟିଏ ବର୍ଷ ପରେ ସେହି ତିଥିର ସେହି ଅର୍ଦ୍ଧରେ ପୁଣି ସେହି କରଣ ହୁଏ । ନକ୍ଷତ୍ରର ୪ ପାଦ ହିସାବ କରିବା ଦ୍ୱାରା ପ୍ରତି ରାଶିରେ ୯ ପାଦ ରହିବ । ଏଣୁ ୧୨ଟି ଚାନ୍ଦ୍ର ମାସ ପୂର୍ଣ୍ଣ ହେଲେ ଅର୍ଥାତ୍ ୩୫୮ ସାବନ ଦିନରେ (ଏକ ସୌରବର୍ଷର ଅନ୍ତପାତି ୩୫୮ ସାବନ ଦିନରେ) ଚାନ୍ଦ୍ର ବର୍ଷର ଚାରୋଟି ତିଥି, ପୂର୍ଣ୍ଣ ଭଗଣର ତିନଟି ନକ୍ଷତ୍ର ଏବଂ ପୂର୍ଣ୍ଣ ଯୋଗଗଣର ୨½ ଯୋଗ ଅଧିକ ହୋଇଥାଏ । ପୂର୍ବ ବର୍ଷର ଯେଉଁ ତିଥି ଆଦିକୁ ଗ୍ରହଣ କଲେ ବର୍ତ୍ତମାନ ବର୍ଷର ଇଷ୍ଟ ତିଥି ଆଦି ହୁଏ, ତାହାକୁହିଁ ଗ୍ରାହ୍ୟତିଥ୍ୟାଦି କହନ୍ତି । ଗ୍ରାହ୍ୟ ନକ୍ଷତ୍ର, ତିଥି ଓ ଯୋଗରେ ଯଥାକ୍ରମେ ଦ ୧୮।୧୬, ଦ ୧୩।୩ ଓ ଦ ୧୪।୩୦ ଯୋଗ କରିବାକୁ ହେବ । ଏ ସବୁ ଯୋଗ କରିବା ପରେ ଫଳ ଯଦି ୬୦ ଦଣ୍ଡରୁ କମ୍ ହୁଏ ତାହାହେଲେ ସେହି ଦିନର (ଗ୍ରାହ୍ୟ ଦିନରେ) ଗୋଟିଏ ଗୋଟିଏ ବାର ଯୋଗ କରିବାକୁ ହେବ । ଯଦି ତାହା ୬୦ ଦଣ୍ଡରୁ ଅଧିକ ହୁଏ ତାହାହେଲେ ସେଥିରେ ଦୁଇଟି ବାର ଯୋଗ କରିବାକୁ ହେବ । ଫଳରେ ଗ୍ରାହ୍ୟ ତିଥିରେ ୪ ତିଥି, ନକ୍ଷତ୍ରରେ ୪ ତାରା ଏବଂ ଯୋଗରେ ୨।୩୦ ଯୋଗ କରିବାକୁ ହେବ । ଏହିପରି ହିସାବରେ ଗ୍ରାହ୍ୟ ତିଥ୍ୟାଦିରୁ ଇଷ୍ଟ ତିଥ୍ୟାଦି ହୋଇଥାଏ ।

ମାସେଽବ ପକ୍ଷେଽବ ତଥୈର୍ମଦଷ୍ଟା
କୀଦୃଶ୍ୟମୁଷ୍ୟାଂ କଥମୃକ୍ଷଯୋଗୌ ।
ଇତ ସ୍ଥିତେ ପ୍ରଶ୍ନବଧୌ ତଥଃ ସା
ପଞ୍ଚାଙ୍ଗମୁଖ୍ୟା ପ୍ରତିଭାତି ଯସ୍ମାତ୍ । ୧୨ ।

ତଦ୍ୟତ୍ର ଯତ୍ରେ ଭବତୀଷ୍ଟତଥ୍ୟା
ପୂର୍ତ୍ତିର୍ଯଦୃକ୍ଷାଦ୍ୟଦିହାନ୍ତମେତ ।
ତଦଷ୍ଟମସ୍ମାତ୍ କ୍ଲଚଦେକ ଯୋଗୋ
ଗ୍ରାହ୍ୟେ କ୍ୱଚଚ୍ଚୈକବିଯୋଗ ଇଷ୍ଟଃ । ୧୩ ।

(ଏହି ମାସରେ, ଏହି ପକ୍ଷରେ) ଅର୍ଥାତ୍ ଚୈତ୍ରଆଦି ମାସରେ ଶୁକ୍ଳ ବା କୃଷ୍ଣପକ୍ଷରେ ମୋର ଇଷ୍ଟ ତିଥି କଣ ? ଏହି ତିଥିରେ ପୁଣି ନକ୍ଷତ୍ର ଓ ଯୋଗ କ'ଣ ଏପରି ପ୍ରଶ୍ନ ହୋଇପାରେ । ଏହି ତିଥି ଯେହେତୁ ପଞ୍ଚାଙ୍ଗରେ ମୁଖ୍ୟ ଅଟେ; ତେଣୁ ସୌରମାସର ଯେଉଁ ଦିନରେ ଇଷ୍ଟ ତିଥି ପୂର୍ଣ୍ଣହେବ, ଯେଉଁ ନକ୍ଷତ୍ର ବା ଯୋଗ ଏହି ତିଥିରେ ଶେଷ ହେବ ; ସେ ତିଥିକୁ ଇଷ୍ଟ ତିଥିଆଦି ଧରିନେବାକୁ ହେବ । ଏହି ଇଷ୍ଟ ତିଥିବଶତଃ ଗ୍ରାହ୍ୟ ଦିନରେ କେତେବେଳେ ଗୋଟିଏ ଦିନ ଯୋଗ ଓ ଅନ୍ୟ କେତେବେଳେ ଗୋଟିଏ ଦିନ ବିଯୋଗ କରିବାକୁ ହେବ ।

ଅଷ୍ଟାଗ୍ନୟୋ ନାଗରସାଗଜାଶ୍ୱା
ନାଗର୍ତ୍ତବୋନାଗଗୁଣା ବିନାଡ୍ୟଃ ।
ଦେୟାଃତଥାବଷ୍ଟତମେ କ୍ରିୟାଦି
ମାସେଷ୍ଣ ପଞ୍ଚସ୍ୱମୁନା କ୍ରମେଣ । ୧୪ ।

ହେୟାସ୍ତୁଲାଦଷ୍ୱଥ ଯୋଗ ଇଷ୍ଟେ
ପ୍ରୋକ୍ତେଷୁ ମାସେଷୁ ଧନର୍ଣ୍ଣବାମ୍ୟାତ୍ ।
ସୂକ୍ଷ୍ମା ଗୃହାଷ୍ଟା ଦଶଭଗଗୈର୍କେ
ଽନ୍ୟଦାନୁପାତାନ୍ ନତୁ ଭେଦିୟେୟମ୍ ।୧୫।

ମେଷରୁ ଆରମ୍ଭ କରି ସିଂହ ପର୍ଯ୍ୟନ୍ତ ୫ ମାସରେ ଇଷ୍ଟ ତିଥିରେ ଯଥାକ୍ରମେ ୩୮, ୬୮, ୭୮, ୬୮ ଓ ୩୮ ଲିତା ଯୋଗ କରିବାକୁ ହେବ । ଏହି ଲିତାକୁ କନ୍ୟାରୁ ତୁଳା ଆଦି ୫ ମାସରେ ଇଷ୍ଟ ତିଥିରେ ଯଥାକ୍ରମେ ବିୟୋଗ କରିବାକୁ ହେବ । ଏ ବ୍ୟବସ୍ଥା ଇଷ୍ଟ ସ୍ଥାନରେ ହେବ ।

ମାତ୍ର ଇଷ୍ଟ ଯୋଗରେ ଏହାର ବିପରୀତ ହେବ । ଅର୍ଥାତ୍ ମେଷଠାରୁ ସିଂହ ପର୍ଯ୍ୟନ୍ତ ୩୮, ୬୮, ୭୮, ୬୮, ୩୮ ଲିତା ବିଯୋଗ ଓ ତୁଳାଠାରୁ କୁମ୍ଭ ପର୍ଯ୍ୟନ୍ତ ତାହା ଯୋଗ ଯଥାକ୍ରମେ ଇଷ୍ଟ ସ୍ଥିତରେ କରିବା ଦରକାର ।

ଧନୁର ୧୮ ଅଂଶରେ ସୂର୍ଯ୍ୟ ଥିବାବେଳେ ଏହି ସୂକ୍ଷ୍ମ ଲମ୍ବ ସର୍ବାଧିକ ହେଉଥିବାରୁ ଅନ୍ୟ ଅଂଶରେ ଅନୁପାତରୁ ଏହି ଯୋଗ ଓ ବିଯୋଗ ବଳିତ ବାହାର କରିବାକୁ ହେବ । ଏହି ଯେଉଁ ଯୋଗ ଓ ବିଯୋଗ ବଳିତ ବିଷୟ ଏଠାରେ ଲେଖାଗଲା ତାକୁ ନକ୍ଷତ୍ରରେ ଯେପରି କେହି ପ୍ରୟୋଗ ନ କରନ୍ତୁ ।

ଅଥୋଦ୍ଧୃତୋ ଭବତ୍ୟକ୍ଷୟବୃଦ୍ଧି—
କାଳଃ କ୍ରମାନ୍ନାଃସୁ ଧନୁର୍ମୃଗେଷୁ
ତଥୀନ୍ଦ୍ର ବର୍ଣ୍ଣାର୍ଯ୍ୟମରୁଦ୍ରକାଷ୍ଟ।
ଗୋଦନ୍ତହେଶାର୍ଯ୍ୟମ ବର୍ଣ୍ଣଶକ୍ରୈଃ । ୧୬ ।

ତତ୍ତତ୍ ଫଳଂ ସ୍ୱେଷ୍ଟତଥାବୃଣାଢ୍ୟଂ
କାର୍ଯ୍ୟଂ କ୍ଷୟବୃଦ୍ଧ୍ୟୋରଥ ଭକ୍ଷୟବୃଦ୍ଧ୍ୟୋଃ ।
ଖସୂର୍ଯ୍ୟଭଗୋର୍ଜ୍ଜିତଯୁର୍ଭମିଷ୍ଟଂ
ସ୍ଫୁଟଂ ଭବେତ୍ତଚ୍ଚର-କର୍ମ ବକ୍ଷ୍ୟେ । ୧୭ ।

ସପ୍ତୋନତେ ଗ୍ରାହ୍ୟାଦନେ ଦନାର୍ଦ୍ଧଂ
ଯଦ୍ୟାତ୍ତ-ଦେବେଷ୍ଟଦନେଽକ୍ତତଃସ୍ୟାତ୍ ।
ତଦନ୍ତରଂ ଯଦ୍ଦିନ ସପ୍ତକୋଦ୍ଧ୍ୟଂ
ତଦ୍ୟାମ୍ୟସୌମ୍ୟାୟନୟୋଃ କ୍ରମେଣ ।୧୮।

ତଥ୍ୟାଦଷ୍ଟୁ କ୍ଷେପ୍ୟମୃଣଂ ବିଧେୟ—
ମିତ୍ଥଂ ସ୍ଫୁଟଂ ସ୍ଥୂଳମତପ୍ରସିଦ୍ଧମ୍ ।
ତଥ୍ୟାଦକଂ ସୂକ୍ଷ୍ମମିତୋଽପି କଳ୍ପ୍ୟଂ
ପୂର୍ବୋକ୍ତରୀତ୍ୟା ମୃଦୁତୁଙ୍ଗବୋଧାତ୍ । ୧୯ ।

ସ୍ୟାଦ୍ଗ୍ରାହ୍ୟତଥ୍ୟାଦ ଯଦୀହ ସୂକ୍ଷ୍ମଂ
ସ୍ଥୂଳୀକୃତସ୍ତସ୍ୟ ବିଧାତୁମିଷ୍ଟା ।
ବ୍ୟସ୍ତେ ତୁ ତୁଙ୍ଗାନ୍ତର ପାକ୍ଷିକାଖ୍ୟେ
କାର୍ଯ୍ୟେଫଳେ ତଦ ପୁନଃ ପ୍ରୟାସାତ୍ । ୨୦ ।

ନାଗର୍ତ୍ତବୋ ବାଣଦବାକସଣ୍ଟ
ଗୋତ୍ରୈନ୍ଦବଃ ଷଟ୍ପନୃପାଶରେନ୍ଦ୍ରାଃ ।
ଭୁଜଙ୍ଗନନ୍ଦାଣ୍ଟ କଲମ୍ବୁସାମାଃ
କ୍ରମୋତ୍କ୍ରମାଦାଦ୍ୟତଥେର୍ବିନାଡ୍ୟଃ । ୨୧ ।

ଧନୁ ମାସରୁ ଆରମ୍ଭ କରି ୧୨ ମାସରେ ତିଥି କ୍ଷୟ ଓ ବୃଦ୍ଧି କାଳକୁ ଯଥାକ୍ରମେ ତଳେ ଦିଆଯାଇଥିବା ସଂଖ୍ୟାରେ ଧରି ଇଷ୍ଟ ତିଥିରେ ଯଥାକ୍ରମେ ବିଯୋଗ ଓ ଯୋଗ କରିବାକୁ ହେବ ।

| | | | | |
|---|---|---|---|---|
| ଧନୁ ମାସରେ | ତିଥି | କ୍ଷୟ ଓ | ବୃଦ୍ଧି ସମୟ | —୧୫ |
| ମକର | ,, | ,, | ,, | —୧୮ |
| କୁମ୍ଭ | ,, | ,, | ,, | —୧୩ |
| ମୀନ | ,, | ,, | ,, | —୧୨ |
| ମେଷ | ,, | ,, | ,, | —୧୧ |
| ବୃଷ | ,, | ,, | ,, | —୧୦ |
| ମିଥୁନ | ,, | ,, | ,, | — ୯ |
| କର୍କଟ | ,, | ,, | ,, | —୧୦ |
| ସିଂହ | ,, | ,, | ,, | —୧୧ |
| କନ୍ୟା | ,, | ,, | ,, | —୧୨ |
| ତୁଳା | ,, | ,, | ,, | —୧୩ |
| ବୃଶ୍ଚିକ | ,, | ,, | ,, | —୧୪ |

ନକ୍ଷତ୍ର କ୍ଷୟ ବୃଦ୍ଧି କାଳରେ ୧୨୦ ଅଂଶ ସେହି କ୍ରମରେ ବିୟୋଗ ଓ ଯୋଗକଲେ ଇଷ୍ଟ ନକ୍ଷତ୍ର ମଧ୍ୟ ସ୍ଫୁଟ ହେବ । ତିଥ୍ୟାଦିର ଚରକର୍ମ କୁହାଯାଉଛି ।

ଗାହ୍ୟ ଦିନରୁ ୭ ବାଦ୍ ଦେଲେ ଯେଉଁ ଦିନ ହେବ ସେହି ଦିନର ଦିନାର୍ଦ୍ଧ ଇଷ୍ଟ ଦିନର ଦିନାର୍ଦ୍ଧ ସଙ୍ଗେ ସମାନ ହେବ । ତେଣୁ ୭ ଦିନ (୩୬୫–୩୫୮=୭) ସମ୍ବନ୍ଧୀ ଦିନାର୍ଦ୍ଧାନ୍ତରକୁ ଦକ୍ଷିଣ ଓ ଉତ୍ତରାୟଣ କ୍ରମରେ ତିଥି, ନକ୍ଷତ୍ର ଓ ଯୋଗରେ ଯୋଗ ଓ ଅନ୍ତର କରିବାକୁ ହେବ । ଏତିକ କରିଦେବାଦ୍ୱାରା ପ୍ରାଚୀନ ସୌର ମତରେ ଅଣାଯାଇଥିବା ତିଥ୍ୟାଦି ସ୍ଫୁଟ ହୋଇଯିବେ । ସ୍ଥୂଳ ମତ ସିଦ୍ଧ ତିଥି ଆଦିରୁ ମନ୍ଦୋଚ୍ଚ ଜ୍ଞାନ ହେଉଥିବାରୁ ପୂର୍ବୋକ୍ତ ରୀତିରେ ସୂକ୍ଷ୍ମ ତିଥ୍ୟାଦି କଳ୍ପନା କରିଯିବାକୁ ହେବ ।

ତିଥି ଆଦି ସୂକ୍ଷ୍ମ କରାଯାଇଥିଲେ ଏହି ଉପାୟରେ ସେ ସବୁକୁ ସ୍ଥୂଳ କରାଯାଇ-ପାରିବ :—ଭୁଜାନ୍ତର ଓ ପାକ୍ଷିକ ଫଳ ଦୁଇଟି ଅଣି ବିପରୀତ ଭାବେ ତିଥି ଆଦିରେ

**ସଂସ୍କାର** କରିବାକୁ ହେବ । ଏ କାମ କରିବାକୁ କଷ୍ଟ ହେଲେ ମଧ୍ୟ କରିବାକୁ ହେବ । ୬୮, ୧୨୫, ୧୫୯, ୧୬୨, ୧୪୫, ୯୮ ଓ ୮୫ ଲବ୍ଧ କ୍ରମରେ ପ୍ରତିପଦାଦି ୭ ତିଥିରେ ଯୋଗ ଏବଂ ଉତ୍କ୍ରମରେ ଅଷ୍ଟମୀଆଦି ୭ ତିଥିରେ ବିୟୋଗ କରିବାକୁ ହେବ ।

କାର୍ଯ୍ୟା ଧନର୍ଣ୍ଣାନ୍ୟଥ ବାହୁଲପ୍ତାଃ
ପୂର୍ବୋକ୍ତଭୁଜାନ୍ତରକେନ୍ଦ୍ରଜାତାଃ ।
ପକ୍ଷାର୍ଦ୍ଧଜାସ୍ତତ୍ତ୍ୱୟମୈର୍ବିଭକ୍ତା
ଲବ୍ଧାଃ ସ୍ୱଖଣ୍ଡାସ୍ତଦନୁ କ୍ରମୋତ୍ଥାଃ । ୨୨ ।

ବୃହସ୍ପତେର୍ମାଦ୍ୟଫଳସ୍ୟ ଲପ୍ତା
ଯାସ୍ତାଃ ଶରଘ୍ନାଦ୍ୱିହୃତା ବନାଡ୍ୟଃ ।
ଜ୍ଞେୟାଃ ପରାଃ ପକ୍ଷଦଳେ ପୁନସ୍ତା
ହୃତାଃ କ୍ରମାଦାଦତଥେସ୍ତ୍ରିଚନ୍ଦ୍ରୈଃ । ୨୩ ।

ତନ୍ତ୍ରୈଃ କଳମ୍ବାଗ୍ନିଭି ରର୍ଥବେଦୈଃ
ଦ୍ୱ୍ୟର୍ଥୈର୍ନଗାର୍ଥୈଃ ଖରସୈର୍ବିଲୋମମ୍ ।
ତଥାଷ୍ଟମୀତଃ ଖରସୈର୍ବିଭକ୍ତା
ବାମଂ ସ୍ୱଭୁଜାନ୍ତରବଦ୍ୟୁତୋନାଃ । ୨୪ ।

ଗ୍ରାହ୍ୟା ଇତ ସ୍ୟୁସ୍ତିଥୟୋ ଭମେବଂ
ତଥ୍ୟନ୍ତପୂର୍ଣ୍ଣଂ ତଦୃଣସ୍ୱନାଡ୍ୟଃ ।
ବଶ୍ୟାଂଶହୀନାସ୍ତିଥିଭନ୍ତୟୋଯତ୍
କାଳାନ୍ତରଂ ଯାତମନାଗତଂ ସ୍ୟାତ୍ । ୨୫ ।

ତଦ୍ଧ୍ନଂ ତଥିଦ୍ୱନ୍ଦ୍ୱଧନର୍ଣ୍ଣକାଳା
ନ୍ତରେଣ ଷଷ୍ଟ୍ୟାପ୍ତମିତୈଷ୍ୟ ଦୃଷ୍ଟ୍ୟା ।
ନ୍ୟୂନାଧିକଂ କାର୍ଯ୍ୟମଥର୍କ୍ଷକେଷୁ
ଗ୍ରାହ୍ୟେଷ୍ୱଶୋଧ୍ୟାଃ କ୍ରମତୋ ବନାଡ୍ୟଃ ।୨୬।

ଷଡ୍‌ବାହୁବଃ ଷଣ୍ଣଗମାସ୍ତ୍ରିବାଣା
ରସାବ୍ଧୟୋଽଙ୍ଗାକ୍ଷିମିତା ନୃଗାଦେଃ ।
ମାସେଷୁ କର୍କ୍ୟାଦଷୁ ଯୋଜନୀୟା
ଯଥାସ୍ଥିତାଃ କାର୍ମୁକଯୁଗ୍ମୟୋସ୍ତୁ । ୨୭ ।

ଠିକ୍ ଏହି ସ୍ଥଳରେ ତିଥ୍ୟନ୍ତରେ ଯେଉଁ ନକ୍ଷତ୍ର ପୂର୍ଣ୍ଣ ହେବ, ସେହି ତିଥିର ଯେଉଁ ବ୍ୟତୀପାତ ଓ ଯୋଗ ଦଣ୍ଡାଦି ତାହାର ୧୩ ଅଂଶ କମାଇ ଗ୍ରହଣ କରିଯିବ । ତିଥି ଶେଷରେ ନକ୍ଷତ୍ର ପୂର୍ଣ୍ଣ ନ ହେଲେ ତିଥି ଓ ନକ୍ଷତ୍ର ମଧ୍ୟର ସମୟକୁ ନକ୍ଷତ୍ର ସଂପୃକ୍ତ ଉଭୟ ତିଥିର ଯୋଗ, ବ୍ୟତୀପାତ କାଳାନ୍ତରରେ ଗୁଣି ୬୦ରେ ଭାଗ ଦେଲେ ଗତୈଷ୍ୟତା ଦୃଷ୍ଟିରୁ ନକ୍ଷତ୍ରରେ ଯୋଗ, ବ୍ୟତୀପାତ କରିବ । (ନକ୍ଷତ୍ର ଗତ ହୋଇଥିଲେ ବିୟୋଗ ଓ ଏଷ୍ୟ ହୋଇଥିଲେ ଯୋଗ କରିବ) । ଗ୍ରାହ୍ୟ ସ୍ଥୁଳ ନକ୍ଷତ୍ର ହେବ । ଗ୍ରାହ୍ୟ ନକ୍ଷତ୍ରରେ ମକରଠାରୁ ଆରମ୍ଭ କରି ପାଞ୍ଚ ମାସରେ ଯଥାକ୍ରମେ ୨୬, ୪୬, ୫୩, ୪୬, ୨୬ ଲିପ୍ତା ବିୟୋଗ କରିବାକୁ ହେବ । ଧନୁ ଓ ମିଥୁନ ମାସରେ ଏହି ଯୋଗ ବିୟୋଗ ପ୍ରଶ୍ନ ନାହିଁ ।

ଯୋଗେଽଏବଂ ତିଥ୍ୟୁକ୍ତ ଫଳାନ୍ୟଗାଂଶ ହୀନାନ କୁର୍ଯ୍ୟାଦ୍ ଭଇବାନୁପାତମ୍ ।
ଗ୍ରାହ୍ୟେଭଂ ଇଷ୍ଟାନ ପୂର୍ବୋକ୍ତବଦ୍ ସ୍ୟୁଃ ସ୍ଥୂଳାନ ସୂକ୍ଷ୍ମୀକରଣନ୍ତୁ ତେଷାମ୍ ।୨୮

ଇହୋକ୍ତଭୁଜାନ୍ତରପାକ୍ଷିକାଭ୍ୟାଂ ସ୍ୟାଦଙ୍ଗକାନାଂ ଧନହାନବାମ୍ୟାତ୍ ।
ଭାନାନ୍ତୁକର୍କ୍ୟାଦମୃଗାଦମାସଧନର୍ଣ୍ଣତା ସ୍ୟାଦପି ବୈପରୀତ୍ୟାତ୍ । ୨୯ ।

ବକ୍ଷ୍ୟମାଣ ଆଦି ଯୋଗ ଆଣିବା ବେଳେ ତିଥି ନିମନ୍ତେ କଥିତ ଯୋଗ ଓ ବ୍ୟତୀପାତ ଫଳରୁ ତାହାର ସପ୍ତମାଂଶ ବାଦ୍ ଦେଇ ଗ୍ରହଣ କରିବ । ନକ୍ଷତ୍ରରେ ଗତ ଓ ଗମ୍ୟ ନକ୍ଷତ୍ର ପରି ଗତଗମ୍ୟ କାଳାନ୍ତରରେ ଅନୁପାତ କରିବ । ପରେ ଗ୍ରାହ୍ୟ ତିଥ୍ୟାଦିରୁ ପୂର୍ବପରି ସ୍ଥୂଳ ତିଥି ଆଦି ହୋଇ ପାରିବ । ମାତ୍ର ସେହି ତିଥି ଆଦିର ସୂକ୍ଷ୍ମତା ନିମନ୍ତେ ଭୁଜାନ୍ତର ଓ ପାକ୍ଷିକ ଫଳ ଦ୍ୱାରା ତିଥି ଆଦିର ସଂସ୍କାର ଯୋଗ, ବିୟୋଗ ବୈପରୀତ୍ୟରେ ହେବ । ନକ୍ଷତ୍ରମାନଙ୍କରେ ଏହି ସଂସ୍କାର କର୍କଟ ଓ ମକରାଦିରେ ଯୋଗ ବିୟୋଗ ବୈପରୀତ୍ୟରେ ହେବ ।

ଗ୍ରାହ୍ୟୋଷ୍ଟମଧ୍ୟେ ତ୍ୱଧିମାସପାତ ଶ୍ଚେଦ୍‌ଗ୍ରାହ୍ୟମେବୋତ୍ତରମାସି ସର୍ବମ୍ ।
ରୂପାଦ୍ରବିମାସ୍ତିଥଯୋର୍କବର୍ଷେ ଯଦ୍ଧାନ୍ତ ପୂର୍ତ୍ତିଂ ସହ ଷୋଡ଼ଶାଂଶାଃ ।୩୦।

ଶରାଙ୍ଗରାମାଃ କୁଦନାନ ଦଣ୍ଡାଃ ପଞ୍ଚେନ୍ଦବଃ ପକ୍ଷଗୁଣା ବନାଡ୍ୟଃ ।
ନର୍ଯ୍ୟାନ୍ତ ଭନୋର୍ଭଗଣେ ତତୋ ଯଦ୍ବାରେ ଯଦୃକ୍ଷଂ ପ୍ରବଶେତ୍‌ସ ତତ୍ର ।୩୧।

ପୁନସ୍ତଦ୍ୱକ୍ଷାଭିଗତମେ ଚ ବାର ଏକଃ ପ୍ରଦେୟୋ ଘଟିକାଃ ପ୍ରବୋକ୍ତାଃ ।
ତାଃ ଷଷ୍ଟି ଦଣ୍ଡାଭ୍ୟଧିକା ଯଦ ସ୍ୟୁର୍ବାରାବୁଭୌ ସଂକ୍ରମଣେ ତଦଷ୍ଟେ ।୩୨।

ଗ୍ରାହ୍ୟ ମାସ ଓ ଇଷ୍ଟମାସ ମଧ୍ୟରେ ଅଧିମାସ ପଡ଼ିବାକୁ ଥିଲେ, ଅଧିମାସର ପରବର୍ତ୍ତୀମାସରେ ତିଥି ଆଦି ସବୁ ଗ୍ରହଣ କରିବାକୁ ହେବ । ଏହାର କାରଣ ଗୋଟିଏ ସୌର ବର୍ଷରେ (୩୬୧।୩।୫୩) ୩୭୧।୩।୪୫ ତିଥି ହୋଇଥାଏ । ଏହି ସଂଖ୍ୟା ୩୭୧ ଟି ଚାନ୍ଦ୍ରଦିନ ମାସ ।

ସୂର୍ଯ୍ୟର ଗୋଟିଏ ଭଗଣ ପୂର୍ତ୍ତିରେ (୨୭ ନକ୍ଷତ୍ର ସୂର୍ଯ୍ୟ ଅତିକ୍ରମ କରିବାରେ ଅର୍ଥାତ୍ ଗୋଟିଏ ସୌର ବର୍ଷରେ) ୩୬୫।୧୫।୩୨ ସାବନ ଦିନ ଅତୀତ ହୁଏ । ଯେଉଁ ବାରରେ ଯେଉଁ ନକ୍ଷତ୍ରକୁ ରବି ଯାଏ, ସେହି ନକ୍ଷତ୍ରର ସେହି ବାର ବୁଝିବାକୁ ହେବ । ପୁଣି ରବି ସେହି ନକ୍ଷତ୍ରକୁ ଆସିଲେ ଗୋଟିଏ ବାର ଦେବାକୁ ହେବ ଏବଂ ପୂର୍ବୋକ୍ତ ଭଗଣ ପୂର୍ତ୍ତି ସାବନ ଦିନ ସମ୍ବନ୍ଧୀ ଦ୧୫।୩୨ ମଧ୍ୟ ଦେବାକୁ (ମିଶାଇବାକୁ) ହେବ । କାରଣ ଭଗଣ ପୂର୍ତ୍ତି ସାବନ ଦିନାଦିକୁ ୭ରେ ହରିଲେ ୧।୧୫।୩୨ ଅବଶେଷ ରହୁଛି । ଯଦି ଏହି ଅବଶେଷ ତକ ୬୦ ଦଣ୍ଡରୁ ଅଧିକ ହୁଏ ଅର୍ଥାତ୍ ନକ୍ଷତ୍ର ପ୍ରବେଶ ସମୟରେ ଦଣ୍ଡାଦି ଯେତେ ସମୟ ସେଥିରେ ପୂର୍ବୋକ୍ତ ଭଗଣ ପୂର୍ତ୍ତି ଦଣ୍ଡ ଆଦି ମିଶାଇଲେ ଯଦି ଯୋଗଫଳ ୬୦ ଦଣ୍ଡରୁ ଅଧିକ ହୁଏ, ତାହାହେଲେ ଇଷ୍ଟ ସଂକ୍ରାନ୍ତି ବା ଭଗଣାରମ୍ଭ ସଂକ୍ରାନ୍ତିରେ ଦୁଇଟିବାର ଦେବାକୁ ହେବ । ( ୨ ବାର ମିଶାଇବାକୁ ପଡ଼ିବ) ।

ସଂକ୍ରାନ୍ତିତୋ ଯନ୍ନ ଦିନେ ସ୍ଫୁଟାର୍କୋ ଯଥା ତଥାଦ୍ୟାନ୍ତରତଦ୍ଦିନେ ସ୍ତଃ ।
ଲିପ୍ତାଭିରର୍ଥେନ୍ଦୁଭିରଷ୍ଟଚନ୍ଦ୍ର ବିଲିପ୍ତିକାଭୀ ରହିତଃ ସ୍ଫୁଟଃସ୍ୟାତ୍ । ୩୩ ।

ଯଦ୍ରାଶିଗ୍ରହସ୍ତିଥିଦଣ୍ଡତୋଽବା ଗଦ୍ଵିଘ୍ନମସଂଖ୍ୟୈଃ ପଲକୈର୍ଯୁତେଭ୍ୟଃ ।
ତନ୍ମାସ୍ୟଭିଷ୍ଟେ ଦିନ ଏକହୀନେ ପ୍ରାଗ୍ବର୍ଷଜାତ୍ସ୍ପଷ୍ଟ ଇନଃ ପୁରେବ ।୩୪।

କଳ୍ପ୍ୟ ଯାଃ ପ୍ରୋକ୍ତ୍ୟତୟା ନିରୁକ୍ତା ଲିପ୍ତାଦୟସ୍ତାଃସ୍ଫୁଟସୂର୍ଯ୍ୟଗତ୍ୟା ।
ହୃତା ବିଭକ୍ତାଃ ଖରସୈଃ ସ୍ଫୁଟାଃ ସ୍ୟୁଃତଦୂନତଃ ସୂକ୍ଷ୍ମ
ଇନୋଽଦ୍ୟତଃ ସ୍ୟାତ୍ ।୩୫।

ଗ୍ରାହ୍ୟା ହରର୍କୋଜ୍ଝିତ ଏଷ୍ୟଘସ୍ରସୂର୍ଯ୍ୟଃ ସ୍ଫୁଟା ଭୁକ୍ତିରତୋଽବଶେଷଃ ।
ଅତେ୍ୟତ ଦର୍ଶଂ ରବିସଂକ୍ରମଶ୍ଚେତ୍ତଦାଧିମାସଃ ସୁଧିୟାବଗମ୍ୟଃ ।୩୬।

କୌଣସି ସଂକ୍ରାନ୍ତିର ଯେତେ ଦିନରେ ରବିସ୍ଫୁଟ ଅନ୍ୟ ବର୍ଷର ସେହି ସଂକ୍ରାନ୍ତିର ତେତେ ଦିନରେ ୧୫।୧୮ କଳା ବାଦ ଦେଲେ ତାହା ସେହି ଦିନର ରବିସ୍ଫୁଟ ହୋଇଯିବ । ଯେଉଁ ମାସର ସଂକ୍ରାନ୍ତି ପୂର୍ବ ବର୍ଷର ମେଷ ସଂକ୍ରାନ୍ତିଠାରୁ ଦ୧୫।୩୨ ପରେ

ଦେଖାଯିବ । ସେହି ମାସର ଅଭୀଷ୍ଟ ଦିନରେ ଏକ ବିଯୁକ୍ତ କରି ପୂର୍ବ ବର୍ଷରେ ସେହି ସମୟ ରବିର ପୂର୍ବ କଥିତ ରୀତିରେ ରବିସ୍ଫୁଟ ହୋଇ ପାରିବ । ମାତ୍ର ସେଠାରେ ୨୧୫।୧୮ ଲିତା ଯାହା ବିଯୋଗ କରିବାକୁ କୁହାଯାଇଛି, ତାକୁ ସ୍ଫୁଟ ସୂର୍ଯ୍ୟ ଗତିରେ ଗୁଣି ୬୦ରେ ଭାଗ ଦେଲେ ସ୍ଫୁଟ ହେବ । ସେହି ସ୍ଫୁଟ କଳାଦି ଦ୍ୱାରା ପୂର୍ବ ବର୍ଷ ସେହି ଦିନର ସୂର୍ଯ୍ୟକୁ ରହିତ କଲେ ( ସୂର୍ଯ୍ୟରୁ ସ୍ଫୁଟ କଳାଦି ବିୟୋଗ କଲେ) ଏ ବର୍ଷ ଇଷ୍ଟ ଦିନର ସୂର୍ଯ୍ୟସ୍ଫୁଟ ହେବ । ଏଣୁ ଆଗାମୀ ଦିନର ସ୍ପଷ୍ଟ ସୂର୍ଯ୍ୟରୁ ଗ୍ରାହ୍ୟ ଦିନର ସୂର୍ଯ୍ୟ ବିୟୋଗ କଲେ ବିୟୋଗ ଫଳ ସୂର୍ଯ୍ୟର ସ୍ଫୁଟ ଗତି ହୋଇ ପାରିବ ।

ଦେଖିବ ଯଦି ରବି ସଂକ୍ରାନ୍ତି ଅମାନ୍ତକୁ ଅତିକ୍ରମ କରିଯାଏ, ତାହାହେଲେ ଅଧିମାସ ହେବବୋଲି ବୁଦ୍ଧିମାନ ଲୋକ ଜାଣି ପାରିବ ।

ଭଭୁକ୍ତନାଡ୍ୟୋଽସ୍ତ୍ରଶତୀ ବିନିଘ୍ନାଃ
ଯାଦ୍ୟନ୍ତନକ୍ଷତ୍ରଘଟୀବିଭକ୍ତାଃ ।
ଗତର୍କ୍ଷସଂଖ୍ୟାଷ୍ଟଶତୀଗୁଣାଢ୍ୟା
ଭବନ୍ତି ବିସ୍ପଷ୍ଟସୁଧାଂଶୁଲିପ୍ତାଃ । ୩୭ ।

ସହସ୍ରନିଘ୍ନାଭଗଜାଷ୍ଟପକ୍ଷାଃ
ଯାଦ୍ୟନ୍ତନକ୍ଷତ୍ରପଲୈର୍ବିଭକ୍ତାଃ ।
ଫଳଂ ବିଧୋର୍ଭୁକ୍ତିରନେକବର୍ଷ
ପାତୈଷ୍ୟତଥ୍ୟାଦି ବଦନ୍ତି ବିଜ୍ଞାଃ । ୩୮ ।

ଜଣାଥିବା ନକ୍ଷତ୍ରର ଗତ ଦଣ୍ଡ ଆଦିକୁ ୮୦୦ରେ ଗୁଣି ସେହି ନକ୍ଷତ୍ରର ଭୋଗ (ଆଦ୍ୟନ୍ତ) ଦଣ୍ଡ ଆଦିରେ ହରିଲେ ତାହା ସେହି ନକ୍ଷତ୍ରର, ନକ୍ଷତ୍ରଭୁକ୍ତ ଅଂଶାଦି ହେବ । ଜ୍ଞାତ ନକ୍ଷତ୍ରର ପୂର୍ବ ନକ୍ଷତ୍ର ସଂଖ୍ୟାକୁ ୮୦୦ରେ ଗୁଣି ସେଥିରେ ଜ୍ଞାତ ନକ୍ଷତ୍ରର ଭୁକ୍ତ ଅଂଶାଦି ମିଶାଇ ଦେଲେ ତାହା ଚନ୍ଦ୍ରର ସ୍ଫୁଟ କଳାଦି ହେବ । ଏହି କଳାକୁ ୬୦ରେ ହରି ଦେଲେ ଅଂଶାଦି ହେବ । ଅଂଶକୁ ୩୦ରେ ହରିଲେ ରାଶି ହେବ । ଏପରି ଭାବରେ ଚନ୍ଦ୍ରସ୍ଫୁଟ ରାଶ୍ୟାଦି ହୋଇଯିବ ।

୨୮୮୦୦୦କୁ ନକ୍ଷତ୍ରର ଆଦ୍ୟନ୍ତ ଲିତାରେ ହରି ଦେଲେ ଚନ୍ଦ୍ରର ସ୍ଫୁଟ ଗତି ହୋଇ ଯାଇପାରିବ । ବିଜ୍ଞ ଗଣକମାନେ ଏହିପରି ଅନେକ ବର୍ଷର ଜାତ ଏଷ୍ୟତଥ୍ୟ ଆଦି ଜାଣିପାରନ୍ତି ।

ଅଥେନ୍ଦୁସୂର୍ଯ୍ୟଗ୍ରହସମ୍ଭବାୟ
ଶ୍ଚନ୍ଦ୍ରାର୍କ ମାନାବଗତେରହାନ ।
ଆନୀୟ ବାରୈଃ ପରଶୋଧିତାନ
ସ୍ୱାଭୀଷ୍ଟପର୍ବାନୁଗତାନ ତେଭ୍ୟଃ । ୩୯ ।

ପାତଂ ସ୍ୱଗତ୍ୟା ପରିକଲ୍ପ୍ୟ ପାତା—
ଞ୍ଚଭାର୍ଦ୍ଧତୋ ବାଗ୍ନିକୁଭଗମଧ୍ୟେ ।
ପକ୍ଷାନ୍ତଜେଽର୍କେ ସ୍ଥିତ ଏବ ଚନ୍ଦ୍ର
ଗ୍ରହୋ ଭବେତ୍ତଦ୍ୱକ୍ରମ ଭକ୍ତପୂର୍ବୈଃ । ୪୦ ।

ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣର ସମ୍ଭାବନା ଜାଣିବା ନିମନ୍ତେ ଚନ୍ଦ୍ର ଓ ସୂର୍ଯ୍ୟ ର ପରିମାଣ (ସ୍ଫୁଟ ଗଣି ଆଦି) ଆଣିବାକୁ ହେବ । ସେଥିପାଇଁ ପ୍ରଥମେ ଯଥାକ୍ରମେ ପୂର୍ଣ୍ଣିମା ଓ ଅମାବାସ୍ୟାର ଅହର୍ଗଣ କରି ତାକୁ ଶୁଦ୍ଧ କରି ଦେବ—ଯେପରିକି ତାହା ଶୁଦ୍ଧ ଅହର୍ଗଣ ହୋଇଯିବ । ଏହି ଅହର୍ଗଣରୁ ଦୈନିକ ୩।୧୦।୪୮ କଳାଦି ଗତିରେ ଚନ୍ଦ୍ରପାତ (ରାହୁ) ବାହାର କରି ନେବାକୁ ପଡ଼ିବ । ଦେଖିବ ସ୍ଫୁଟ ସୂର୍ଯ୍ୟ ଏହି ପାତର ୬ ରାଶି ପରେ ୧୩° ମଧ୍ୟରେ ରହିଛି କି ? ପୂର୍ଣ୍ଣିମାନ୍ତରେ ଏ ବ୍ୟବସ୍ଥାକୁ ଦେଖିଲେ ଜଣାଯିବ ଯେ ସେତେବେଳର ସ୍ଫୁଟ ଚନ୍ଦ୍ରରୁ ପାତକୁ ବାଦ୍ ଦେବା ପରେ ତାହାର ଭୁଜାଂଶ ୧୩°ରୁ କମ୍ ହେଲେ ଚନ୍ଦ୍ରଗ୍ରହଣର ସମ୍ଭାବନା ଅଛି । ଚନ୍ଦ୍ରଗ୍ରହଣର ବିଧାନ କଥା ଆଗରୁ କୁହାଯାଇଛି ।

ଦର୍ଶାନ୍ତକାଳେ କ୍ରମତସ୍ତୁ ପୂର୍ବ
ପଶ୍ଚାନ୍ନ ତତ୍ତ୍ୟଂଶବହୀନ ଯୁକ୍ତେ ।
ତାତ୍କାଳକଲ୍ଗୌଦଗିଷୋସ୍ତିଭୋନ
ତନୂନତଜ୍ୟାଭ୍ରରସାଂଶକସ୍ୟ । ୪୧ ।

ଦଗ୍‌ଭେଦସାମ୍ୟାଦ୍‌ଥବୟୋଗଯୋଗ
ସିଦ୍ଧସ୍ଫୁଟେଷୌ ରଦଳପ୍ତିକୋନେ ।
ସ୍ୟାତ୍‌ସମ୍ଭବସ୍ତିଗ୍ମରୁଚ—ଗ୍ରହସ୍ୟ
ଗ୍ରାସାଦି ସର୍ବଂ ଗଦିତଂ ପୁରସ୍ତାତ୍ । ୪୨ ।

ଗଣିତରେ ଅମାନ୍ତକାଳ ବାହାର କରି ନେବ । ସେଥିରେ ଲମ୍ବନ ସଂସ୍କାର କରି ନେବ । ଲମ୍ବନ ସଂସ୍କୃତ ଦର୍ଶାନ୍ତ କାଳର ଚନ୍ଦ୍ର ଓ ତହିଁରୁ ଚନ୍ଦ୍ର ଦଗର ଶର ଆଣିବ । ବିତ୍ରିଭ ଲଗ୍ନ ଆଣି ସେଥିରୁ ଦୃକ୍ଷେପ ବାହାର କରିବ । ଶର ଓ ଦୃକ୍ଷେପର ସଂସ୍କାର କରି ସ୍ଫୁଟଶର ଆଣିବ । ଏହି ସ୍ଫୁଟଶର ୩° କଳାରୁ କମ୍ ହେଲେ ସୂର୍ଯ୍ୟଗ୍ରହଣ ସମ୍ଭାବନା ହେବ । ତା' ପରେ ଗ୍ରାସ ମୋକ୍ଷ ଆଦି ଜପର ଆଣିବାକୁ ହେବ ତାହା ପୂର୍ବରୁ କୁହାଯାଇଛି ।

ପର୍ବାନ୍ତମର୍କକ୍ରମଣାଦ୍ଦିନାଦ୍ୟଂ
ଯାବତ୍ ପ୍ରମାଣଂ ଭବତୀଷ୍ଟବର୍ଷେ ।
ଗ୍ରାହ୍ୟାବ୍ଦସଂକ୍ରାନ୍ତିତ ଏବ ତାବତ୍
କାଲୋତ୍ଥଖେଟୈଃ ସ୍ଫୁଟତା ରବୀନ୍ଦ୍ୱୋଃ ।୪୩।

ଇଷ୍ଟ ବର୍ଷରେ ସୂର୍ଯ୍ୟ ସଂକ୍ରାନ୍ତିରୁ ଅମାବାସ୍ୟା ଓ ପୂର୍ଣ୍ଣିମାନ୍ତ ପର୍ଯ୍ୟନ୍ତ ଯେତେ ସାବନ ଦିନ ହେବ ଗ୍ରାହ୍ୟ ବର୍ଷରେ ସେହି ସଂକ୍ରାନ୍ତିଠାରୁ ସେତିକି ଦିନର ରବିଚନ୍ଦ୍ର ଗତି ଆଣି ଅମାନ୍ତ ଓ ପୂର୍ଣ୍ଣାନ୍ତ ରବି, ଚନ୍ଦ୍ରରେ ଯଥାସ୍ଥିତରେ ଯୋଗକଲେ ରବି ଚନ୍ଦ୍ରସ୍ଫୁଟ ହୋଇଯିବ । କାରଣ ଅମାନ୍ତରେ ରବି ଓ ଚନ୍ଦ୍ରର ରାଶ୍ୟାଦିରେ ସମାନତ୍ୱ ରହେ ଏବଂ ପୂର୍ଣ୍ଣାନ୍ତରେ ସେ ଉଭୟଙ୍କର ଅଂଶାଦିରେ ସମତା ରହିଥାଏ ।

ଶରେନ୍ଦୁଭି ର୍ବାଣ ନୃପୈଃଖନାଗ
ଚନ୍ଦ୍ରୈଃ ଶରାଙ୍କେନ୍ଦୁଭିରଭ୍ରଦେବୈଃ ।
ରସାବ୍ଧିରାମୈଃ ଖରସାଗ୍ନ୍ୟାଶୈ—
ରେତାବତୀଭିସ୍ତିଥିଭିଃ କଦାଚିତ୍ ।୪୪।

ଗ୍ରହାଦ୍ ପୁନଃ ପ୍ରଗ୍ରହଣାନ୍ତରଂ ସ୍ୟା
ଦ୍ଭତସ୍ତତସ୍ତାଭିରତ କ୍ରମେଣ
ପାତାର୍କଶୀତାଂଶ୍ୱଧିମାସ ବଦ୍ଭି-
ର୍ଜ୍ଞେୟା ଗ୍ରହାଦ୍ୟା ଦଶବତ୍ସରାନ୍ତମ୍ । ୪୫ ।

ବୃନ୍ଦ ବର୍ଷ ମଧ୍ୟରେ ଗୋଟିଏ ଗ୍ରହଣଠାରୁ ପ୍ରାୟ ୧୫, ୧୬୫, ୧୮୦, ୧୯୫, ୩୩୦, ୩୪୫, ୩୬୦ ତିଥି ଅନ୍ତରରେ ପୁଣି ଗ୍ରହଣ ହୋଇପାରେ । ତତ୍ପରେ ପୁଣି ୧୫, ୧୬୫ ଆଦି ତିଥିରେ ଏପରି ଦଶ ବର୍ଷରେ ପୁଣି ଗ୍ରହଣ ହୋଇ ଯାଇପାରେ । ଏହି କଥା ରାହୁ, ଚନ୍ଦ୍ର ଓ ରବି ତଥା ଅଧିମାସ ଜାଣୁଥିବା ଲୋକେ ଭଲଭାବରେ ଜାଣିପାରନ୍ତି ।

ତାରାଗ୍ରହାଣାଂ ସମତୈକବର୍ଷେ
ନ ସ୍ୟାଦ୍ୟତସ୍ତଦ୍‌ବହୁପଞ୍ଜିକାନାମ୍ ।
କାର୍ଯ୍ୟୋ ବୁଧୈଃ ସଂଗ୍ରହ ଏବମନ୍ୟ
କର୍ଯ୍ୟାଣି ସିଦ୍ଧ୍ୟନ୍ତ୍ୟପି ସାଧୁ ତାଭ୍ୟଃ ।୪୬।

ଗୋଟିଏ ବର୍ଷରେ ମଙ୍ଗଳ ଆଦି ତାରା ଗ୍ରହମାନଙ୍କର ସମତା ଆସୁ ନ ଥିବାରୁ (ଅତଃ ଗୋଟିଏ ହେଲେ ଭଗଣ ପୂର୍ତ୍ତି ହେଉ ନ ଥିବାରୁ) ଗଣିତ ପଣ୍ଡିତମାନେ ବହୁ ବର୍ଷର ପଂଜିକା ସଂଗ୍ରହ କରିବା ଉଚିତ । ଏହି ପଞ୍ଜିକାଗୁଡ଼ିକଦ୍ୱାରା ଆହୁରି ଅନେକ ଭଲ କାର୍ଯ୍ୟ ସାଧନ କରାଯାଇ ପାରିବ ।

ସୌରେଣ ମାନେନ ରଦାବ୍ଦତଃପ୍ରାକ୍
ଯଥା କୁଜଃ ସୋଽପି ତଥୈଷ୍ଟବର୍ଷେ ।
ଚକ୍ରେ ଖନାଗେନ୍ଦୁ କଳାଭିରାଢ୍ୟ
ଏକାଦଶାଶ୍ୟନ୍ତରତସ୍ତୁ ସୂର୍ଯାତ୍ ।୪୭।

ଯୁତଃ କଳାଭିର୍ଦଶତାଡ଼ିତାଭିଃ
କୁବାହୁଭିର୍ଭୈରସବୀତହୋତ୍ରୈଃ ।
ଗଜାବ୍ଧିଭିର୍ବହ୍ନିରସୈଃ କୁନାଗୈ
ସ୍ତାଭିଃ ପୁନଃ କାର୍ମୁକପଞ୍ଚକସ୍ଥେ ।୪୮।

ତସ୍ମିନ୍ କ୍ରମାତ୍ପଞ୍ଚଦଶାଷ୍ଟପଞ୍ଚ
ମାତଙ୍ଗତଥ୍ୟାଂଶ ସମନ୍ୱିତାଭିଃ
ଯୁଗ୍ମାଦପଞ୍ଚର୍କ୍ଷଗତେ ତଦଂଶ
ହୀନାଭିରେବଂ ସ୍ଫୁଟତାମୁପୈତି ।୪୯।

ବର୍ତ୍ତମାନ ସୌର ବର୍ଷରେ ଯେଉଁ ମାସ ଯେଉଁ ଦିନରେ ମଙ୍ଗଳ ସ୍ଫୁଟରାଶ୍ୟାଦି ଯେତେ, ସେହି ଦିନର ଠିକ୍ ୩୨ ବର୍ଷ ପୂର୍ବେ ସେହି ମାସ ସେହି ଦିନରେ ମଙ୍ଗଳ ତାହା ହିଁ ଥିଲ (୩୨ ବର୍ଷ ପରେ ମଧ୍ୟ ତାହା ହିଁ ହେବ) । ତେବେ ସେ ୧୨ ରାଶିରେ ଥିବାବେଳେ ୯୮୦ କଳା ଯୋଗ କରିବାକୁ ପଡ଼ିବ । ସୂର୍ଯ୍ୟଠାରୁ ୧, ୨, ୩ ରାଶ୍ୟନ୍ତରରେ ମଙ୍ଗଳ ଥିଲେ ଯଥାକ୍ରମେ ୧୦ ଗୁଣିତ ୨୧୦, ୨୭୦, ୩୭୦, ୪୮୦, ୬୩୦, ୮୧୦ କଳା ମଙ୍ଗଳରେ ଯୋଗ କରିବ । ମଙ୍ଗଳ ଧନୁଠାରୁ ଆରମ୍ଭ କରି ୫ ରାଶିରେ ଥିଲେ ୧୫, ୮, ୫, ୮, ୧୫ ଅଂଶ ଯଥାକ୍ରମେ ମଙ୍ଗଳରୁ ବାଦ୍ ଦେବାକୁ ପଡ଼ିବ । ଏପରି କରିବାଦ୍ୱାରା ୩୦ ବର୍ଷ ପରେ ମଙ୍ଗଳ ସମତାକୁ ଆସିଯାଇ ପାରିବ ।

ବିଶ୍ୱାବ୍ଦତଃ ପ୍ରାକ୍ ଶଶିଜୋ ଯଥାଭୂ
ତ୍ତଥୈଷ୍ଟବର୍ଷେଽବ କିୟାନ୍ ବିଶେଷଃ ।
ଗତ୍ୟନ୍ତରେଣ ସ୍ଫୁଟସୌମ୍ୟମଧ୍ୟ
ଖଚନ୍ଦ୍ରବସ୍ୱଗ୍ନି ହୃତେନ ଚୈଷଃ ।୫୦।

ଯୁତୋନତଃ ସୂର୍ଯ୍ୟଗତେଃ ସ୍ୱଭୁକ୍ତି
ର୍ନ୍ୟୂନାଧିକତ୍ୱେ ସ ତୁ ବକ୍ରଗଶ୍ଚେତ୍ ।
ତଦାମୃଗସ୍ୱଦ୍‌ଗତଯୋଗନାଗ-
ସ୍ଥାତାଗ୍ନି ଭଗେନ ଯୁତଃ ସ୍ଫୁଟଃ ସ୍ୟାତ୍ ।୫୧।

ଇଷ୍ଟ ବର୍ଷରେ ଇଷ୍ଟ ସୌରମାସ ଓ ଇଷ୍ଟ ଦିନରେ ବୁଧର ଗଣ୍ୟାଦି ଯାହା ଏହାର ଠିକ୍ ୧୩ ବର୍ଷ ପୂର୍ବେ ସେହି ମାସର ସେହି ଦିନରେ ବୁଧର ଗଣ୍ୟାଦି ଠିକ୍ ତାହା ହିଁ ଥିଲା । ତେବେ ଏଠାରେ ସେ ବିଷୟରେ କେତେକ କଥା କୁହାଯିବ । ସ୍ଫୁଟ ବୁଧ ଓ ମଧ୍ୟମ ସୂର୍ଯ୍ୟର ଗତ୍ୟନ୍ତରକୁ ୮ରେ ଗୁଣି ୩ରେ ଭାଗ କରିଦିଅ । ବୁଧର ଗତି ୫୯।୮ରୁ କମ୍ ବେଶି ହୋଇଥିବାର ଦେଖିଲେ ଉପରେ ଅଣାଯାଇଥିବା ଲବ୍ଧିକୁ ଉକ୍ତ ବୁଧର ଗଣ୍ୟାଦିରେ ଯୋଗ୍, ବିୟୋଗ କରିବାକୁ ହେବ । ଯଦି ବୁଧ ବକ୍ରୀ ହୋଇଥାଏ ତାହାହେଲେ ସ୍ଫୁଟ ବୁଧ ଓ ମଧ୍ୟମ ସୂର୍ଯ୍ୟ ଗତି ଯୋଗକୁ ସେହିପରି ୮ ରେ ଗୁଣି ଓ ୩ ରେ ହରି ଫଳକୁ ବିସ୍ପଷ୍ଟ ବୁଧରେ ଯୋଗକଲେ ବୁଧସ୍ଫୁଟ ହେବ ।

ବୃହସ୍ପତର୍ଦ୍ୱାଦଶବର୍ଷତଃ ପ୍ରାକ୍
ଯଥା ତଥା ସ୍ୱାର୍କକଳାନ୍ତରସ୍ୟ ।
ଖାର୍କାଂଶ ଯୁଗ୍‌ଭିଃ ଖକୁଦିକ୍‌କଳାଭି—
ସ୍ତାଭିଃ ପୁନଃ କର୍କଟ ପଞ୍ଚକସ୍ଥେ ।୫୨।

ତସ୍ମିନ୍ ସୁଧାବ୍ଧୋ ଘନ, ରୁଦ୍ର, ମେଘ
ଦେବାଂଶ ହୀନାଭିରହୈବ ନକ୍ରାତ୍ ।
ଭପଞ୍ଚକସ୍ଥେ ତୁ ତଦଂଶଯୁଗ୍‌ଭିଃ
ସମନ୍ୱିତଃ ସନ୍ ସ୍ଫୁଟତାଂ ପ୍ରୟାତି ।୫୩।

ବୃହସ୍ପତି ବାର ବର୍ଷ ପୂର୍ବେ ଯାହାଥିଲା ଏବେ ତାହା ୧୩ ବର୍ଷ ମଧ୍ୟରେ । ଗୁରୁ ଓ ସୂର୍ଯ୍ୟର ଅନ୍ତର କଳାକୁ ୧୨୦ ରେ ହରି ଫଳକୁ ୨୧୦ କଳାରେ ମିଶାଅ । ଏହି ମିଶ୍ର ଫଳକୁ ବୃହସ୍ପତିରେ ଯୋଗ କରିବ । ପୁଣି ବୃହସ୍ପତି କର୍କଟ ଆଦି ୫ଟି ରାଶିରେ ଥିବା-ବେଳେ ରବି ଓ ଗୁରୁଙ୍କ ଅନ୍ତରକୁ ଯଥାକ୍ରମେ ୩୩, ୧୭, ୧୧, ୧୭ ଓ ୩୩ ରେ ହରି ଫଳକୁ ସେଥିରୁ ଅନ୍ତର କରି ଅନ୍ତର ଫଳକୁ ବୃହସ୍ପତିରେ ଯୋଗ କରିବ । ବୃହସ୍ପତି ମକର ଆଦି ୫ ରାଶିରେ ଥିଲେ ଏହି ଅନ୍ତର ଫଳକୁ ୨୧୦ କଳାରେ ଯୋଗକରି ତାହାକୁ ଗୁରୁରେ ପୁଣି ଯୋଗ କରି ଦେଲେ ବୃହସ୍ପତି ସ୍ଫୁଟ ହୋଇଯିବ ।

ବର୍ଷାଷ୍ଟକାତ୍ ପ୍ରାଗ୍‌ଭୃଗୁଜୋ ଯଥୈବ
ନିଷ୍ଟାଦିକେ ସୌରଦିନେ ଚ ତଜ୍ଜ୍ଞ ।
ସ୍ଫୁଟସ୍ୱଭୁକ୍ତ୍ୟର୍ଯ୍ୟମମଧ୍ୟଭୁକ୍ତ୍ୟ-
ନ୍ତରେଣ ବାଣଘ୍ନଭୁଜୋ-ଦ୍ଧୃତେନ । ୫୪ ।

ଉଦନୌ ଯୁତୌ ଭାନୁଗତେଃ ସ୍ୱଭୁକ୍ତୌ
ନ୍ୟୂନାଧିକାୟାଂ କ୍ରମତୋଽନ୍ତକୁର୍ଯ୍ୟାତ୍ ।
ଯୁତ୍ୟା ଶରଘ୍ନାକ୍ଷିହୃତସ୍ତ୍ୱଭସ୍ୱଦ
ଗତେଷ୍ୟାପ୍ତଦୋନଃ ସ୍ଫୁଟତାଂ ସ ଗଚ୍ଛେତ୍ । ୫୫ ।

ଶନଃ ଖସମାଦପୁର୍ବେ ଯଥାସୀତ୍
କଲ୍ୟାଦ୍ଭସୂର୍ଯ୍ୟାନ୍ତରଲିପ୍ତିକାନାମ୍ ।
ଖେନାଂଶଯୁଗ୍ମୈଃ ଶରବାଜିସମ
ଲିପ୍ତାଭିରଭିଃ ପୁନରବ ମେଷାତ୍ । ୫୬ ।

ପଞ୍ଚର୍କ୍ଷସଂସ୍ଥେ ନଖଦକ୍ ସ୍ୱବାଣା
ନଖାଂଶ ସଂଯୋଗବତୀଭିରସ୍ମିନ୍ ।
ତୁଲାଦପଞ୍ଚର୍କ୍ଷଗତେ ତଦଂଶ
ହୀନଭିରାଢ୍ୟଃ ସ୍ଫୁଟଖ୍ୱବମେକ । ୫୭ ।

ଇଷ୍ଟ ସୌର ବର୍ଷ, ମାସ ଓ ଦିନରେ ଶୁକ୍ରର ରାଶ୍ୟାଦି ଯାହା ହେବ, ଠିକ୍ ଆଠ ବର୍ଷ ପୂର୍ବେ ସେହି ମାସ ଓ ଦିନରେ ଶୁକ୍ରର ରାଶ୍ୟାଦି ତାହା ହୋଇଥିଲା । ଶୁକ୍ରର ସ୍ଫୁଟ ଗତି ଓ ସୂର୍ଯ୍ୟର ମଧ୍ୟମ ଗତି ଏ ଦୁହିଁଙ୍କର ଅନ୍ତରକୁ ୫ରେ ଗୁଣି ୨ରେ ହରିଲେ ଯାହା ଲବ୍ଧି ହେବ ତାହା ନେବ । ସୂର୍ଯ୍ୟ ମଧ୍ୟମ ଗତି ୫୯'। ୮''ରୁ ସ୍ଫୁଟ ଶୁକ୍ର ଗତି କମ୍ ବା ବେଶି ହେଉଛି ଦେଖି ତଦନୁସାରେ ସେହି ଲବ୍ଧିକୁ ସ୍ଫୁଟ ଶୁକ୍ରରୁ ଅନ୍ତର ବା ଯୋଗକରିଦେଲେ ତାହା ସ୍ଫୁଟ ଶୁକ୍ରର ରାଶ୍ୟାଦି ହେବ ।

ଶୁକ୍ର ବକ୍ରୀ ହୋଇଥିଲେ ସୂର୍ଯ୍ୟ ମଧ୍ୟମ ଗତି ଓ ଶୁକ୍ର ସ୍ଫୁଟ ଗତିର ଯୋଗକୁ ୫ରେ ଗୁଣି ୨ରେ ହରି ଫଳକୁ ସ୍ଫୁଟ ଶୁକ୍ରରୁ ଅନ୍ତର କଲେ ଶୁକ୍ର ସ୍ଫୁଟ ହୋଇଯିବ ।

ଶନି ୩୦ ବର୍ଷ ପୂର୍ବରୁ ଯାହା ଥିଲା ଇଷ୍ଟ ସୌର ବର୍ଷ ମାସ ଓ ଦିନରେ ଠିକ୍ ତାହାହିଁ ହେବ । ରାଶ୍ୟାଦିରେ ଭୁଲ୍ୟ ତ. ଆସିବ । ମଧ୍ୟମ ସୂର୍ଯ୍ୟ ଓ ସ୍ଫୁଟ ଶନିର ଅନ୍ତର କଳାକୁ ୧୨୦ରେ ହରି ଫଳକୁ ୩୭୫ ଲିତାରେ ମିଶାଇବ । ଏହି ଯୋଗଫଳକୁ ପୁଣି ସ୍ଫୁଟ ଶନିରେ ମିଶାଇ ଦେବ ।

ପୁଣି ଶନି, ମେଷାଦି ୫ ରାଶିରେ ଥିଲେ ସ୍ଫୁଟ ଶନି ଓ ମଧ୍ୟମ ସୂର୍ଯ୍ୟର ଅନ୍ତର କଳାକୁ ଯଥାକ୍ରମେ ୨୦, ୧୦, ୭, ୧୦, ୨୦ରେ ଭାଗ କରି ଫଳକୁ ସଂସ୍କୃତ ସ୍ଫୁଟ ଶନିରେ ମିଶାଇବ । ଶନି ତୁଳା ଆଦି ୫ ରାଶିରେ ଥିଲେ ଫେଡ଼ିବ ଏହାଦ୍ୱାରା ସ୍ଫୁଟ ଶନି ହୋଇଯିବ । ( ଶ୍ଳୋକରେ ଅଛି— ଅନ୍ତର ଫଳକୁ ଯଥାକ୍ରମେ ହରି ଫଳକୁ ୩୭୫ରେ

ପ୍ରଥମେ ମିଶା ଫେଡ଼ା କରି ସେହି ଫଳକୁ ସ୍ଫୁଟ ଶନିରେ ମିଶାଇବ । ) ଫଳ ଏକା ହେବା ଦୃଷ୍ଟିରୁ ହର ଦିଆଯାଇ ଥିବା ଫଳକୁ ଏକାବେଳକେ ସ୍ଫୁଟ ଶନିରୁ ଅନ୍ତର କରି ଦେବା ଭଲ ।

> ଅଦ୍ୟାରଜୀବାର୍କଭୁବାଂ ଯଦୁକ୍ତଂ
> ସୂର୍ଯ୍ୟାତ୍ ସ୍ୱଲ୍ପାନ୍ତରମେତଦେବ ।
> ନ ରାଶିଷଟ୍କାଦଧିକଂ କଦାଚି-
> ଦତଃ ପରଂ ଚନ୍ଦ୍ରଦଳେ ଧନଂ ସ୍ୟାତ୍ । ୫୮ ।
>
> ଅହର୍ଗଣଃ ଖାଗ୍ନିକୃତେନ୍ଦୁ ଭାଗ—
> ଯୁକ୍ତୋ ନବେନ୍ଦ୍ୱାପ୍ତ ଇତଃ ଫଳାଂଶୈଃ ।
> ଊନୋ ଯୁତୋ ଗ୍ରାହ୍ୟଦିନସ୍ୟ ରାହୁ
> ରେଷ୍ୟେ ଗତେଽଭୀଷ୍ଟଦିନେ ସ୍ଫୁଟଃ ସ୍ୟାତ୍ । ୫୯ ।
>
> ଦିନୋଚ୍ଚୟଃ ସ୍ୱାଭ୍ରକୃତାବ୍ଧିଭାଗ
> ଯୁକ୍ତୋ ନବାପ୍ତୈ ଫଳୈର୍ଲବାଦ୍ୟୈଃ ।
> ଯୁତୋଽନତୋ ଗ୍ରାହ୍ୟ ଦିନେନ୍ଦୁମନ୍ଦ
> ଏଷ୍ୟେ ଗତେଽ ଭୀଷ୍ଟଦିନେ ସ୍ଫୁଟଃ ସ୍ୟାତ୍ । ୬୦ ।

**ମଙ୍ଗଳ ଗୁରୁ** ତଥା ଶନିର ବିଶେଷ ସ୍ଫୁଟ ବିଧି:—

ସୂର୍ଯ୍ୟଠାରୁ ଏମାନଙ୍କର ଅନ୍ତର ୬ ରାଶିରୁ କେବେହେଲେ ଅଧିକ ହେବାର ନୁହେଁ । ୬ ରାଶି ପରେ ଚନ୍ଦ୍ରାର୍ଦ୍ଧରେ ସେହି ଲିପ୍ତାନ୍ତରକୁ ଯୋଗ କରିବାକୁ ହେବ । ଦିନା କଷ୍ଟରେ ଚନ୍ଦ୍ରପାତାନୟନ—ଗ୍ରାହ୍ୟ ଓ ଇଷ୍ଟ ଦିନ ସମ୍ବନ୍ଧୀ ଅହର୍ଗଣେ ଆଣି ତାହାର ୧୪୩ ଭାଗ ନେବ । ତାହା ସେହି ଅହର୍ଗଣରେ ମିଶାଇବ । ଏହି ଯୋଗ ଫଳକୁ ୧୯ରେ ହରି ଲବ୍ଧ ଅଂଶାଦିକୁ (ଅଂଶ ମାସ) ଗ୍ରାହ୍ୟ ଦିନଠାରୁ ଇଷ୍ଟ ଦିନ ଆଗାମୀ ହେଲେ ଚନ୍ଦ୍ରପାତରେ ବିଯୁକ୍ତ ଏବଂ ଗ୍ରାହ୍ୟ ଦିନରୁ ଇଷ୍ଟ ଗତ ହୋଇଥିଲେ ପାତରେ ଯୁକ୍ତ କଲେ ଚନ୍ଦ୍ରପାତ ସ୍ଫୁଟ ହେବ ।

ଚନ୍ଦ୍ରୋଚ୍ଚ ଆନୟନ ବିଧି:—

ଅହର୍ଗଣେକୁ ତାହାର ୪୪୦ ଭାଗରେ ଯୋଗକରି ୯ରେ ହର । ଫଳ ଅଂଶାଦିକୁ ଗ୍ରାହ୍ୟ ଦିନଠାରୁ ଇଷ୍ଟ ଦିନ ଆଗକୁ ଥିଲେ ବା ପଛକୁ ଥିଲେ ଯଥାକ୍ରମେ ଗ୍ରାହ୍ୟ ଦିନର ଚନ୍ଦ୍ର ମନ୍ଦୋଚ୍ଚରେ ମିଶାଅ ଓ ଫେଡ଼ । ଫଳସ୍ଫୁଟ ମନ୍ଦୋଚ୍ଚ ହେବ ।

କମ୍ପା ନବାଣ୍ଣୈର୍ଦିନନାଥ ବର୍ଷେ
ଦୈମିଣ୍ଡୁଭୂଃଷଷ୍ଟି କଳାଧିକଃ ସ୍ୟାତ୍ ।
ବୁଧୋଽଙ୍ଗବେଦୈର୍ବିଧୁଦକ୍କଲୋନୋ
ଗୁରୁସ୍ତ୍ରିନାଗୈଃ କୃତସପ୍ତ ହୀନଃ । ୭୧ ।

ଶୁକ୍ରସ୍ତ୍ରିସିନ୍ଧୈ ସ୍ତ୍ରିଚତୁ-ଷ୍କଳାଢ଼୍ୟଃ
ଶନିର୍ନବାର୍ଥୈ ନଗଶାୟ୍ୟ କାଢ଼୍ୟଃ ।
ରାହୁସ୍ତ୍ରିନନ୍ଦୈ ର୍ନଖ ଲିପ୍ତିକୋନଃ
ଶୀଘ୍ରୋ କଶୁକାବତରେଽବ ମଧ୍ୟାଃ । ୭୨ ।

ଇତ୍ୟାଦଷ୍ଟକ୍ରାଃ ପ୍ରତସୌରମାସଂ
ଯା ଯା ହୃତଃ ସ୍ୱର୍ଣ୍ଣବନାଡ଼ିକାସ୍ତାଃ ।
ଗ୍ରାହ୍ୟୈଷ୍ଟଘସ୍ରାର୍କ ଯୁଗାନ୍ତବାର୍ଦ୍ଧି
ଯୁକ୍ତେଷ୍ଟଘସ୍ରାର୍ଯମମାସତଃ ସ୍ୟୁଃ । ୭୩ ।

ତାବ୍ରଗ୍ରହେନ୍ଦ୍ରଂଶଭିଦେବଧୋଭନ୍ୱୋଃ
କଳାପ୍ରଭେଦ ସ୍ତିଥିଯୋଗଭେଷୁ ।
ପଲ ପ୍ରଭେଦୋଽବ୍ଦ ବୁଧୈର୍ନଗଣ୍ୟଃ
କୃତର୍ମଦୀୟା ଯଦସାବନୂନା । ୭୪ ।

ସ୍ନାନାଦଯୋଗାଂଶ୍ଚିରକାଳତୋଽସ୍ୟା
ଭୂବଷ୍ୟତୋ ଜ୍ଞାତୁମଳଂ ନରଃ ସ୍ୟାତ୍ ।
ମୃଷାପ୍ୟତଃ କୌତୁକ ପଞ୍ଜିକେୟଂ
ମହୋପକାରାୟ ସତାଂ ସଦାସ୍ତାମ୍ । ୭୫ ।

—ଇତ କୌତୁକ ପଞ୍ଜିକା ସମାପ୍ତା—

ନିର୍ଦ୍ଦିଷ୍ଟ ସୌର ବର୍ଷରେ ମଧ୍ୟ ଗ୍ରହଗୁଡ଼ିକ ଏହିପରି ସ୍ଥଳରେ ନ୍ୟୂନାଧିକ ହୋଇଥାନ୍ତି—

ମଙ୍ଗଳ ୭୯ ବର୍ଷରେ ୭୪ କଳା ବଢ଼ିଥାଏ ।

ବୁଧ ୭୪ ବର୍ଷରେ ୧୦୧ କଳା କମିଥାଏ ।

ବୃହସ୍ପତି ୮୩ ବର୍ଷରେ ୭୪ କଳା କମିଥାଏ ।

ଶୁକ୍ର ୨୪୩ ବର୍ଷରେ ୮୩ କଳା ବଢ଼ିଥାଏ ।

ଶନି ୫୯ ବର୍ଷରେ ୫୭ କଳା ବଢ଼ିଥାଏ ।

ରାହୁ ୯୩ ବର୍ଷରେ ୨୦ କଳା କମିଥାଏ ।

ବୁଧ ଓ ଶୁକ୍ରର ଶୀଘ୍ରୋଚ୍ଚ ଓ ଅନ୍ୟ ଗ୍ରହମାନେ ଠିକ୍ ଆସିଯାନ୍ତି । ଏମାନଙ୍କର କୌଣସି ତଫାତ୍ ମଧ୍ୟମ ଗ୍ରହରେ ଆସେ ନାହିଁ ।

ସୌର ମାସରେ ତିଥି ଓ ନକ୍ଷତ୍ର ଆଦି ନିମନ୍ତେ ଯେଉଁ ହରଣ ଓ ଦଣ୍ଡାଦି ଯୋଗ ବିଯୋଗ କଥା କୁହାଗଲା ସେଗୁଡ଼ିକର ଖା ଗ୍ରାହ୍ୟ ତଥା ଇଷ୍ଟ ଦିନ ସମ୍ବନ୍ଧୀ ସ୍ପଷ୍ଟ ସୂର୍ଯ୍ୟର ଅନ୍ତର୍ବର୍ଷରେ ଯୁକ୍ତ ଇଷ୍ଟ ଦିନର ସୂର୍ଯ୍ୟ ଯେଉଁ ରାଶିରେ ରହିବ, ସେହି ମାସରୁ ସେଗୁଡ଼ିକ ହେବେ ବୋଲି ଜାଣିବାକୁ ହେବ ।

କୌତୁକ ପଞ୍ଜିକାରେ ମଙ୍ଗଳ ଆଦି ତାରା ଗ୍ରହରେ ଅଂଶାଦି ଅନ୍ତର, ଚନ୍ଦ୍ର ଓ ସୂର୍ଯ୍ୟର କଳା ପ୍ରଭେଦ, ତିଥି, ଯୋଗ ଓ ନକ୍ଷତ୍ରରେ ନାଡ଼ୀ ପ୍ରଭେଦ ଦୈବଗଣକମାନେ ଲୁହ ଦେବେ । ଏପରି ତଫାତ୍ ଆସିବ ।

ଏହି ପ୍ରକାର କୌତୁକ ପଞ୍ଜିକା ଆଗରୁ କେହି କରି ନ ଥିଲେ । ଏଣୁ ଏହା ମୋର ନୂଆ କଥା । ଏହି ପଞ୍ଜିକାରୁ ଲୋକ ଆଗାମୀ ତୀର୍ଥ ସ୍ନାନ ଆଦି ଯୋଗ କଥା ବହୁ ପୂର୍ବରୁ ବେଶ୍ ଜାଣି ପାରିବେ । ଏଣୁ ଏହି କୌତୁକ ପଞ୍ଜିକା ଛୋଟ ହେଲେ ମଧ୍ୟ ସଜ୍ଜନମାନଙ୍କର ଅତି ଉପକାର କରୁ ଏହା ମୋର ଇଚ୍ଛା ।

## ଅଥାନୁକ୍ରମଃ

ସଲକ୍ଷଣୋଦାହରଣଂ କୃତତ୍ୟ
ସିଦ୍ଧାନ୍ତମଧ୍ୟେଽବ କୁତୂହଳାୟ ।
ଉଦ୍ଦେଶତୋ ଭୂୟ ଉଦୀର୍ଯ୍ୟତେଽସୌ
ଯତୋଽତବେଗାଦ୍ ବିଷୟ-ଗ୍ରହଃ ସ୍ୟାତ୍ । ୬୬ ।

ପ୍ରୋକ୍ତଂ ପ୍ରକାଶେ ପ୍ରଥମେ ପ୍ରମାଣଂ
ବୃତ୍ୟାଦିକାଳସ୍ୟ ଲୟାନ୍ତମସ୍ୟ ।
ସିଦ୍ଧାନ୍ତସଲ୍ଲକ୍ଷଣସୂଚିକାକ—
ସହାଙ୍କଚକ୍ରାଣି ଚ ସପ୍ରଶଂସମ୍ । ୬୭ ।

ସଂଖ୍ୟାଦ୍ୱିତୀୟେ ଭଗଣୋଭଚକ୍ରସ୍ୟ
କଳ୍ପାଦି ମାସ—ଦ୍ୟୁମିତିର୍ନିରୁକ୍ତା ।
ନଭଶ୍ଚରାଣାଂ ଦିନଭୁକ୍ତି—ଲପ୍ତା
ସ୍ତତ୍ସାଧନଂ ପର୍ଯ୍ୟୟ ଘସ୍ରକ୍ଲୃପ୍ତିଃ । ୬୮ ।

ଉକ୍ତସ୍ତୃତୀୟେ କୁଦିନୌଘ ଇଷ୍ଟୋ
ଦିନାଦିମାସାଧିପମଧ୍ୟଖେଟାଃ ।
ଚୈକାସ୍ତଥାଦ୍ୟା ଦ୍ୱିବିଧା ଗ୍ରହାଦି
ଧ୍ରୁବାଦ୍ୟୁଷଦ୍—ପାତମୃଦୂଚ୍ଚହାସ୍ତଃ । ୬୯ ।

ତୁର୍ଯ୍ୟେ ମହୀବେଷ୍ଟନଦେଶନାଡ଼ୀ
ବାରପ୍ରବୃତ୍ତିଷ୍ଟୁଧନର୍ଣ୍ଣଲପ୍ତାଃ ।
ଭୁଜାନ୍ତସଙ୍ଖ୍ୟା ଉଦୟାନ୍ତସଙ୍ଖ୍ୟା
ଶ୍ଚରେଦ୍ଭବାଃ ସତ୍ପଦକଂ ଧ୍ରୁବାଦ୍ୟୈଃ । ୭୦ ।

ଇତ୍ଥଂ ଚତୁର୍ଭିର୍ଗଦିତଃ ପ୍ରକାଶୈଃ
ମଧ୍ୟାଧିକାରଃ ସୁରବର୍ତ୍ମଗାନାମ୍ ।
ଅଥ ପ୍ରକାଶଦ୍ୱିତୟେନ ତେଷା
ମୁଦୀର୍ଯ୍ୟତେ ସ୍ଫୁଟତାଧିକାରଃ । ୭୧ ।

ପ୍ରତି ପ୍ରକାଶର ସାର ସଂଗ୍ରହ—

ଏହି ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥରେ ଉଦାହରଣ ସହ ଅନେକ ଲକ୍ଷଣ ବିସ୍ତୃତ ଭାବରେ ଦିଆଯାଇଛି । ତଥାପି ଏଠାରୁ ଯେଉଁସବୁ ବିଷୟ ବୋଧ ହେବ ସେହି ଉଦ୍ଦେଶ୍ୟରେ କୌତୂହଳ ନିବୃତ୍ତି କରିବା ପାଇଁ ସଂକ୍ଷେପରେ ସବୁ କଥା ପୁଣି କୁହାଯାଉଛି ।

ପ୍ରଥମ ପ୍ରକାଶରେ ଏହିସବୁ ବିଷୟ ଅଛି—

ସୃଷ୍ଟ୍ୟାଦି କାଳରୁ ଆରମ୍ଭ କରି ପ୍ରଳୟ ଶେଷ ପର୍ଯ୍ୟନ୍ତ କାଳର ପରିମାଣ, ସିଦ୍ଧାନ୍ତର ଲକ୍ଷଣ ସୃଷ୍ଟି କାଳ ଭେଦ ଓ ତାର ଅଙ୍ଗବିଭାଗ ଏବଂ ତାର ପ୍ରଶଂସା ।

ଦ୍ୱିତୀୟ ପ୍ରକାଶରେ ଏହିସବୁ କଥା ଅଛି—

ଗ୍ରହ, ଉଚ୍ଚ ଓ ପାତାଦିର ଭଗଣ ସଂଖ୍ୟା, କଳ୍ପରେ ବର୍ଷ, ମାସ ଓ ଦିନର ପରିମାଣ, ଗ୍ରହ, ଉଚ୍ଚ ଓ ପାତ ଆଦିର ଦୈନିକ ମଧ୍ୟମ ଗତି କଳା ଓ ତାହା କପରି ଆଣିହେବ । ତା'ର ସ୍ୱିତ ଓ ଭଗଣର ଦିନ ପରିମାଣ ।

ତୃତୀୟ ପ୍ରକାଶରେ ଏହିସବୁ କଥା ଅଛି—

ଇଷ୍ଟ ଅହର୍ଗଣଆନୟନ, କ୍ଷେପ, ମାସ, ବର୍ଷ ଆଦିର ଅଧିପତି ଆନୟନ ସ୍ୱିତ, ମଧ୍ୟଗ୍ରହ, ବାର୍ହସ୍ପତ୍ୟ ବର୍ଷ ଗ୍ରହ ଉଚ୍ଚ ଓ ପାତର ଧ୍ରୁବ ଓ ଉଚ୍ଚ ପାତର ହାର ।

ଚତୁର୍ଥ ପ୍ରକାଶରେ—

ଭୂପରିଧି, ଦେଶାନ୍ତର ଦଣ୍ଡ, ବାର ପ୍ରବୃତ୍ତି ଓ ଯୋଗ ବିଯୋଗ କଳା, ଭୁଜାନ୍ତର କଳା ଉଦୟାନ୍ତର କଳା, ଚର କଳା ଓ ବାହୁଗନ୍ତ ଫ୍ରେ ବିଷୟକ ଅଛି ।

ଏପରି ପ୍ରଥମ ଚାରି ପ୍ରକାଶରେ ଆଜ୍ଞାନୁଗତିକ ଗ୍ରହମାନଙ୍କର ମଧ୍ୟାଧିକାର ଶେଷ ହୋଇଅଛି । ଏହାପରେ ଦୁଇଟି ପ୍ରକାଶରେ ଗ୍ରହମାନଙ୍କର ସ୍ଫୁଟତା ସମ୍ବନ୍ଧେ ଯାହା କୁହାଯାଇଛି ତାହା ସଂକ୍ଷେପରେ କହୁଛି ।

ଏତକରେ ମଧ୍ୟମାଧିକାର ଶେଷ ହେଲା ।

ପଣ୍ଡୁଭୂରଃ ଖେଚରତଃ ପ୍ରମାଣଂ
ତଦୁଚ୍ଚପାତୋଽଭଥପ୍ରଥର୍ଗଭୂତମ୍ ।
ଜ୍ୟା ପଞ୍ଚମେ ଦୋଃ ଫଲଭୁକ୍ତଖଣ୍ଡାଃ
ପରଧ୍ୟପାତ୍ତାସ୍ତିଥ୍ୟୁହସର୍ବଃ ।୭୬ ।

